# ଭାବୁକ ଭାଗବତ

## ପଞ୍ଚମ ଖଣ୍ଡ



ଅପଣ୍ଡିତ ଦାମୋଦର ବଳୀୟାରସିଂହ

।। ଓଁ ନମୋ ଭଗବତେ ବାସୁଦେବାୟ ।।

# ଭାବୁକ ଭାଗବତ

## ପଞ୍ଚମ ଖଣ୍ଡ

## ସ୍କନ୍ଧ: ଦଶମ

ନକ୍ଷତ୍ର:
ଅଭିଜିତ୍-ଧନିଷ୍ଠା

ପ୍ରକରଣ:
୨୭ଶ-୩୬ଶ

ପରିବେଷକ
ଅପଣ୍ଡିତ ଦାମୋଦର ବଳୀୟାରସିଂହ

# ଭାବୁକ ଭାଗବତ

ଅପଣ୍ଡିତ ଦାମୋଦର ବଳୀୟାରସିଂହ

ପ୍ରଥମ ସଂସ୍କରଣ: ଖ୍ରୀଷ୍ଟାବ୍ଦ - ୨୦୧୫
ବିକ୍ରମ ସମ୍ବତ୍- ୨୦୭୧

ପ୍ରକାଶକ:
ଶ୍ରୀମତୀ କଳ୍ପନା ବଳୀୟାରସିଂହ
ନୀଳକଣ୍ଠନଗର ବ୍ରିଟ୍ କଲୋନି
ଷ୍ଟେଜ-୨, ଶ୍ୟାମ କୁଞ୍ଜମ୍
ବ୍ରହ୍ମପୁର (ଗଂଜାମ)
ମୋବାଇଲ: ୯୪୩୭୧୦୯୧୨୦

ଅକ୍ଷର: ସନ୍ତୋଷ ପଟ୍ଟନାୟକ
ପ୍ରଚ୍ଛଦ: କମ୍ପ୍ୟୁଟର ସଲ୍ୟୁସନ୍

ମୁଦ୍ରଣ : ମନମୋହନ ଟ୍ରେଡ଼ର୍ସ
ବାଲାଜୀପେଣ୍ଠ ଲେନ୍, ବ୍ରହ୍ମପୁର
ମୋ. : ୯୮୬୧୧୬୭୬୦୮

ମୂଲ୍ୟ: ଏକ ସେଟ୍ (ଛଅଖଣ୍ଡ) ପନ୍ଦରଶହ ଟଙ୍କା

# ଉତ୍ସର୍ଗ

ସକଳ ଭୌତିକ ଓ ଆଧ୍ୟାତ୍ମିକ ଜ୍ଞାନର ମୂଳସ୍ରୋତ ସର୍ବାଧିକ ପ୍ରାଚୀନ ଶାସ୍ତ୍ର ସଂସ୍କୃତ ସାହିତ୍ୟର ସନାତନ ବୈଦିକ ଗ୍ରନ୍ଥ ବେଦ । ଚାରି ବେଦଙ୍କ ସାର ୧୧୨୦ ଉପନିଷଦ (ଯେଉଁଥିରୁ ଏବେ ୧୦୮ଟି ଭାରତରେ ଉପଲବ୍ଧ) । ଉପନିଷଦମାନଙ୍କ ସାର ବେଦାନ୍ତ । ବେଦାନ୍ତସୂତ୍ରମାନଙ୍କ ବିଶ୍ଳେଷଣ କରୁ କରୁ ବଡ଼ ବଡ଼ ମହାତ୍ମା ଏପରିକି ମୂଳ ଜଗତ୍‌ଗୁରୁ ଉପାଧି ପ୍ରାପ୍ତ ବିଭୂତିମାନେ ଦ୍ୱୈତ, ଅଦ୍ୱୈତ, ଦ୍ୱୈତାଦ୍ୱୈତ ଇତ୍ୟାଦି ମତ ମତାନ୍ତରରେ ମାତି ନିଜମତ ମଣ୍ଡନ ଓ ପରମତ ଖଣ୍ଡନରେ ବ୍ୟସ୍ତ ଥିବାବେଳେ ଯେଉଁ କଳିଯୁଗ ପାବନ ଅବତାର କଳି ସନ୍ତରଣ ଉପନିଷଦର ରହସ୍ୟକୁ ନିଜେ ବୁଝି ନିଜ ପାର୍ଷଦମାନଙ୍କ ମାଧମରେ ବୁଝାଇବାକୁ ଯେଉଁ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ ମହାମନ୍ତ୍ର ସଂକୀର୍ତ୍ତନ ଧାରା ବୁହାଇଗଲେ ତାଙ୍କରି କର କମଳରେ ଦଶମ ସ୍କନ୍ଧର କଥାବସ୍ତୁ ଆଧାରିତ ଗ୍ରନ୍ଥଙ୍କର ପଞ୍ଚମ ଖଣ୍ଡକୁ ସାଦରେ ସମର୍ପଣ କରୁଛି ଉତ୍କଳ ଭାରତୀଙ୍କ ଗଳାରେ ଶୋଭାୟମାନ କରିବାକୁ ।

ଅଧମ ଲେଖକ

# ଭୂମିକା

ଭାରତୀୟ ସଂସ୍କୃତ ବାଙ୍‌ମୟରେ ଗୀତାଙ୍କୁ ଯୋଗଶାସ୍ତ୍ର ଓ ରାମାୟଣଙ୍କୁ ପ୍ରୟୋଗ ଶାସ୍ତ୍ର ବୋଲି କହିବାବେଳେ ଭାଗବତଙ୍କୁ ବିୟୋଗ ଶାସ୍ତ୍ର ବୋଲି କୁହାଯାଏ । ପୂର୍ବରୁ ବର୍ଣ୍ଣିତ ନବମ ସ୍କନ୍ଧ ପର୍ଯ୍ୟନ୍ତ ନବଧା ଭକ୍ତି (ବୈଧି ଭକ୍ତି) ଆଧାରରେ ଏକଶତ ଆଠଜଣ ଭକ୍ତଙ୍କର କଥା ଶୁଣାଇଛନ୍ତି ଶ୍ରୀଶୁକଦେବ ରାଜା ପରୀକ୍ଷିତଙ୍କୁ । ସେସବୁ କଥା କେବଳ ସ୍ୱଧର୍ମ ପାଳନ କଥା । ସ୍ୱଧର୍ମ ପାଳନ ଧର୍ମବୃକ୍ଷର ମାନ୍ୟତା ପାଇବାବେଳେ ସ୍ୱଧର୍ମ ତ୍ୟାଗକୁ ଧର୍ମବୃକ୍ଷର ରସାଳ ଫଳ ବୋଲି କୁହାଯାଏ । ପ୍ରଥମଟିରେ ଭକ୍ତ ଭଗବାନ ଉଭୟେ ମିଳନ ଜନିତ ଆନନ୍ଦ ପ୍ରାପ୍ତ ହୁଅନ୍ତି ସତ୍ୟ କିନ୍ତୁ ସ୍ୱଧର୍ମ ତ୍ୟାଗୀ ଦ୍ୱିତୀୟ ଶ୍ରେଣୀର ପ୍ରେମୀ ଭକ୍ତ ଓ ରସିକ ଭଗବାନ ଆହୁରି ଏକ ଉଚ୍ଚତର ରସ ପାନ କରିପାରନ୍ତି । ଏହି ବିଲକ୍ଷଣ ରସକୁ ରସ ଶାସ୍ତ୍ରରେ ଉଜ୍ଜ୍ୱଳ ଉନ୍ନତ ରସ କହି **ଅନର୍ପିତ ଚରିଂ ଚିରାତ୍** (ଆଠ ଶହ ଚଉଷଠୀ କୋଟି ବର୍ଷ ବ୍ରହ୍ମାଙ୍କ ଆୟୁଷର ଏକ ଅହୋରାତ୍ରରେ ଥରେ ମାତ୍ର ବିତରଣ କରାଯାଉଥିବାରୁ) ବୋଲି ସର୍ବୋଚ୍ଚ ସ୍ଥାନ ଦିଆଯାଏ ।

ଭଗବାନଙ୍କର ଅବତାର ସିନା ଅସଂଖ୍ୟ ହେଲେ ମୁଖ୍ୟତଃ ସାତ ପ୍ରକାରର । କାରଣାର୍ଣ୍ଣବଶାୟୀ, ଗର୍ଭୋଦକ ଶାୟୀ ଓ କ୍ଷୀରୋଦଶାୟୀ ନାରାୟଣଙ୍କର ତିନି ଅବତାର ତାଙ୍କର ପୁରୁଷାବତାର । ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ଶ୍ରୀନାରାୟଣଙ୍କର ତିନି ଗୁଣାବତାର । ମନ୍ୱନ୍ତର ଅବତାର ହେଉଛି ଯଜ୍ଞ ଅବତାର । ଶୁକ୍ଳ, ରକ୍ତ, କୃଷ୍ଣ ଓ ପୀତ୍ ଚାରି ଅବତାରଙ୍କୁ ଯୁଗାବତାର କୁହାଯାଏ । ମତ୍ସ୍ୟ ବାମନ, ନୃସିଂହ, ବରାହ, କୂର୍ମ ଆଦି ଅବତାର ସବୁ ଲୀଳା ଅବତାରର ଅନ୍ତର୍ଗତ । ବ୍ୟାସ, ନାରଦ ଓ ଚତୁଃସନ ଇତ୍ୟାଦି ଅବତାର ସବୁ ଶକ୍ତି ଆବେଶ ଅବତାର । ସପ୍ତମ ପ୍ରକାର ଅବତାରଟି ହେଉଛି ସ୍ୱୟଂ ଗୋଲୋକ ବିହାରୀ ଶ୍ରୀକୃଷ୍ଣଙ୍କ ଖାସ୍ ବା ଅତିବିଶେଷ ସ୍ୱତନ୍ତ୍ର ଅବତାର । ଅନ୍ୟ ଶବ୍ଦରେ ଆଦର୍ଶ ପ୍ରେମିକ ଅବତାର ।

ସମଗ୍ର ଦଶମ ସ୍କନ୍ଧର ସଂପୂର୍ଣ୍ଣ ନବେ ଅଧ୍ୟାୟରେ ଏହି ସଚ୍ଚିଦାନନ୍ଦ ପୂର୍ଣ୍ଣ

ପୁରୁଷୋତ୍ତମଙ୍କ ଅତ୍ୟନ୍ତ ବିରଳ ଅବତାର କାରଣ ଏଥିରେ ଭଗବାନ ନିଜର ଭଗବତ୍ତା ଭୁଲି ପ୍ରେମିକ ରସିକ ଭୂମିକାକୁ ଓହ୍ଲାନ୍ତି । ସେହିଭଳି ଜୀବକୁ ତାର ସର୍ବସ୍ୱ (ମନ, ବୁଦ୍ଧି, ଚିତ୍ତ) ସହିତ ଅହଂକାରକୁ ମଧ୍ୟ ସମର୍ପଣ କରି ପୂର୍ଣ୍ଣ ଶରଣାଗତି ସ୍ୱୀକାର କରିବାକୁ ପଡ଼ିଥାଏ । ପୁଣି କର୍ମଯୋଗ, ଜ୍ଞାନଯୋଗ, ଧ୍ୟାନଯୋଗ ତିନିଯୋଗ ଯାକ ପୁରୁଷାର୍ଥ ପରାୟଣ ହେଉଥିବା ବେଳେ ଏହି ସର୍ବ ସମର୍ପଣ ମୂଳକ ଭକ୍ତିଯୋଗ ସାଧନାରେ ପୁରୁଷାର୍ଥର ନାମ ଗନ୍ଧ ମିଳେନା । ଏହା କେବଳ କୃପାସାଧ୍ୟ ।

ବେଦାନ୍ତ ଶାସ୍ତ୍ର ବ୍ୟାସଦେବଙ୍କର ଏକ ମସ୍ତିଷ୍କ ବିକାଶକାରୀ ଅଲୌକିକ ରଚନା । ତାହା ନିଶ୍ଚିତ ରୂପେ ଅତି ଉଚ୍ଚ ଅଧିକାରୀମାନଙ୍କ ଲାଗି ଉଦ୍ଦିଷ୍ଟ ଓ ଅଭିପ୍ରେତ ଯାହା ପାଇଁ ପୂର୍ଣ୍ଣ ସଂସାରୀ ବୈରାଗ୍ୟ ସହିତ ମୁକ୍ତିର ଇଚ୍ଛା ବା ମୁମୁକ୍ଷାର ତ୍ୟାଗ ମଧ୍ୟ ଦରକାର । ସଂସାର ଭୋଗର ଇହଲୌକିକ ଓ ପାରଲୋକିକ ସ୍ୱର୍ଗ ସୁଖ ସହିତ ଅଣିମାଦି ଅଠେଇଶ ସିଦ୍ଧିର ଲୋଭ ମୂଳରୁ ତ୍ୟାଗ କରିବାକୁ ଶ୍ରୀପାଦ ଆଜି ଶଙ୍କର ଆଚାର୍ଯ୍ୟ ଆଦି ତାଙ୍କ ଶିଷ୍ୟମାନଙ୍କୁ ପରାମର୍ଶ ଦେଇଥାଆନ୍ତି । ସୁତରାଂ ବେଦାନ୍ତ ଶାସ୍ତ୍ରର ପ୍ରଥମ ସୂତ୍ର ଆରମ୍ଭ ହୋଇଛି ଅଥ ଅତୋ ବ୍ରହ୍ମ ଜିଜ୍ଞାସା ବୋଲି । ଅନ୍ୟପକ୍ଷରେ ଶ୍ରୀମଭାଗବତ ଯଦିଚ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ (ବିଷୟ ସୁଖ ଲୋଲୁପ, ସ୍ୱର୍ଗ କାମୀ ଓ ସିଦ୍ଧି କାମୀମାନଙ୍କୁ ଛାଡ଼ି) ତଥାପି ଅପେକ୍ଷାକୃତ ଅଧିକାଧିକ ଶ୍ରେୟକାମୀ ସାଧକମାନେ ଏହାର ଫାଇଦା ଉଠାଇପାରନ୍ତି । କି ଯୋଗୀ, ଭୋଗୀ, ରୋଗୀ, ସାଧକ, ସିଦ୍ଧ, ୪ ବର୍ଣ୍ଣ ଓ ୪ ଆଶ୍ରମୀ ସମସ୍ତଙ୍କ ଲାଗି ଏହା ଏକ ସହଜ, ସୁନ୍ଦର, ସରଳ ରାଜମାର୍ଗ ।

ପୂର୍ବରୁ ଦୀର୍ଘ ଚାରିଦିନ ଚାରି ରାତି ନନ୍‌ଷ୍ଟପ୍ ଭାଗବତ ପ୍ରବଚନ ଶ୍ରବଣ କରି ରାଜା ପରୀକ୍ଷିତ ଚାହିଁ ବସିଥାଆନ୍ତି ଏହି ଦଶମ ସ୍କନ୍ଧର ସ୍ୱଧର୍ମତ୍ୟାଗୀ ଭକ୍ତମାନଙ୍କର ଅଲୌକିକ ଦିବ୍ୟ ଚରିତକୁ ସାଦରେ ଶ୍ରବଣ କରିବେ ବୋଲି । ଶେଷରେ ତାଙ୍କର ଇଚ୍ଛାକୁ ସମ୍ମାନ ଦେଇ ବକ୍ତାଶ୍ରୀ ଶୁକଦେବ ଭବ୍ୟ କୃଷ୍ଣ ଲୀଳା ଶୁଣାଇଛନ୍ତି ଗୋକୁଳ ଲୀଳା, ବୃନ୍ଦାବନ ଲୀଳା, ମଥୁରା ଲୀଳା ସହିତ ଦ୍ୱାରକା ଲୀଳା ।

ବଲ୍ଲଭ ଆଚାର୍ଯ୍ୟଙ୍କ ସହିତ ଅନ୍ୟ ଭାଗବତ ରସିକମାନେ ଦଶମ ସ୍କନ୍ଧକୁ ନିରୋଧ (ମନର) ଲୀଳା କହୁଥିବା ବେଳେ ଶ୍ରୀଧର ସ୍ୱାମୀ କିନ୍ତୁ ଏହାକୁ ଆଶ୍ରୟ ସ୍କନ୍ଧ ବୋଲି କହିଥାଆନ୍ତି । ଦ୍ୱାଦଶ ସ୍କନ୍ଧକୁ ବଲ୍ଲଭ ଆଚାର୍ଯ୍ୟ ଇତ୍ୟାଦି ଆଶ୍ରୟ ଲକ୍ଷଣ କହୁଥିବା ବେଳେ ଶ୍ରୀଧର ସ୍ୱାମୀ ଏହାକୁ ନିରୋଧ ଲକ୍ଷଣଯୁକ୍ତ ବୋଲି ଘୋଷଣା

କରିଛନ୍ତି । ତେବେ ରସିକ ସାଧକ ନିରପେକ୍ଷ ଭାବେ ଦେଖିଲେ ଜାଣିପାରେ ଉଭୟ ପକ୍ଷଙ୍କ ଯୁକ୍ତି ଯଥାର୍ଥ । ସୁତରାଂ ଏ ବିଷୟରେ ବେଶୀ ମସ୍ତିଷ୍କ ଗରମ ନ କରି ଚକୁଳି ପିଠା ଖାଇ ବିନ୍ଧ ନ ଗଣିଲେ ଭଲ ନ୍ୟାୟରେ ଭାଗବତ ରସ ଆସ୍ୱାଦନ କରିଯିବା ବରଂ ଅଧିକ କଲ୍ୟାଣକାରକ ।

ସ୍ୱର୍ଗର ଅମୃତ ଦେବୀ ଦେବତାମାନଙ୍କର ଆସ୍ୱାଦ୍ୟ । ଗୀତା ଅମୃତ ଓ ଭାଗବତ ଅମୃତ କିନ୍ତୁ କି ଦେବତା, କି ମନୁଷ୍ୟ, କି ରାକ୍ଷସ, କି ପଶୁ ପକ୍ଷୀ, ବୃକ୍ଷ ଲତା ସମସ୍ତଙ୍କର ଆସ୍ୱାଦ୍ୟ । ସମୁଦ୍ର ମନ୍ଥନରୁ ଜାତ ସ୍ୱର୍ଗର ଅମୃତ ଦେଇ ପାରନ୍ତି ଦୀର୍ଘ ଜୀବନ କିନ୍ତୁ ଦିବ୍ୟ ଜୀବନ ଦେବାରେ ସେ ଅସମର୍ଥ । ଏ କଥା ପାରନ୍ତି ଭଗବାନ ଶ୍ରୀମନ୍ ନାରାୟଣ ଓ ଶ୍ରୀକୃଷ୍ଣଙ୍କ ମୁଖ କମଳରୁ ଜାତ ଶ୍ରୀମଭାଗବତ ।

ଭାରତର ସନାତନ ବୈଦିକ ବାଙ୍ମୟରେ ତିନୋଟି ଗ୍ରନ୍ଥଙ୍କ ପୂର୍ବରେ ଶ୍ରୀ ଲଗାଇବାକୁ ହୁଏ । ଶ୍ରୀମଦ୍ ବାଲ୍ମୀକି ରାମାୟଣ, ଶ୍ରୀମଭଗବତ୍ ଗୀତା ଓ ଶ୍ରୀମତ୍ ଭାଗବତ । କାରଣ ଏମାନଙ୍କୁ ଆଶ୍ରୟ କରିଥିବା ଜୀବମାତ୍ରକେ ମରଣଜୟୀ । ଏମାନଙ୍କ ପାଇଁ ଯମଦଣ୍ଡ ବା ନରକ ଯନ୍ତ୍ରଣା ଭୋଗର ବ୍ୟବସ୍ଥା ନାହିଁ ।

ଦ୍ରୋଣପୁତ୍ର ଅଶ୍ୱତ୍ଥାମା ବ୍ରହ୍ମାସ୍ତ୍ରରେ ମାତୃଗର୍ଭରେ ଯେଉଁ ପରୀକ୍ଷିତଙ୍କର ଦେହ ନଷ୍ଟ ହୋଇଥିଲା ଶୃଙ୍ଗୀ ବ୍ରାହ୍ମଣଙ୍କ ବାଙ୍ମୟ ଶାପ ଅସ୍ତ୍ରରେ ସେଇ ଦେହ ଜଳି ପୋଡ଼ି ପାଉଁଶ ହେବା ବିଧିଙ୍କର ବିଚିତ୍ର ବିଧାନ । ପରୀକ୍ଷିତଜୀଙ୍କର ମୃଣ୍ମୟ ଦେହ ସିନା ନଷ୍ଟ ହେଲା କିନ୍ତୁ ତାଙ୍କ ଚିନ୍ମୟ ଆତ୍ମାଙ୍କର ସଦ୍‌ଗତି ହେଲା ଅନ୍ୟ ଏକ ପ୍ରତିବାଙ୍ମୟ ଅସ୍ତ୍ର ଦ୍ୱାରା । ଏହି ଅଦ୍ଭୁତ ଅଲୌକିକ ପ୍ରତିବାଙ୍ମୟାସ୍ତ୍ର ହେଲା ଶ୍ରୀମଭାଗବତ ରୂପକ ଲୀଳାମୟ ଭଗବାନ କୃଷ୍ଣଙ୍କର କୃପାସାଗର ଅବତାର । ଗୀତା ଭଗବାନଙ୍କର ବାଣୀ ଅବତାର ସତ୍ୟ । ଭାଗବତ କିନ୍ତୁ ତାଙ୍କର କଥା ଅବତର । ବ୍ରହ୍ମଜ୍ଞାନୀ ଶୃଙ୍ଗୀଋଷିଙ୍କ ମୁଖରୁ ନିର୍ଗତ ବ୍ରହ୍ମଶାପ ଏତେ ଶକ୍ତିଶାଳୀ ଯେ ଏହାକୁ କାଟିବାକୁ ଶଙ୍କରଜୀଙ୍କ ତ୍ରିଶୂଳ, ବିଷ୍ଣୁଙ୍କର ଗଦା, ଶ୍ରୀକୃଷ୍ଣଙ୍କର ଶାର୍ଙ୍ଗଧନୁ ଏପରିକି ଶ୍ରୀମନ୍ ନାରାୟଣଙ୍କର ସୁଦର୍ଶନଚକ୍ର ମଧ୍ୟ ଅସମର୍ଥ । ଏ ସକଳ ଦିବ୍ୟ ଅସ୍ତ୍ରମାନଙ୍କଠାରୁ ଭଗବାନଙ୍କ କଥା ଅବତାର ଅସ୍ତ୍ର ଅଧିକ ଶକ୍ତିଶାଳୀ ବୋଲି ଖୁଲମ୍ ଖୁଲା ପ୍ରମାଣ ଦେବାକୁ ଷୋଳକଳା ବିଶିଷ୍ଟ ଶ୍ରୀକୃଷ୍ଣଙ୍କୁ ଭକ୍ତ ଶ୍ରେଷ୍ଠ ଉଦ୍ଧବଜୀଙ୍କ ଅନୁରୋଧରେ ତାଙ୍କର ସ୍ୱଦେହରେ ଗୋଲୋକ ପ୍ରତ୍ୟାଗମନ ପୂର୍ବରୁ ଭାଗବତ କଥା ଅର୍ଣ୍ଣବରେ ପ୍ରବେଶ କରିବାକୁ ପଡ଼ିଥିଲା । ଶ୍ରୀଶଙ୍କରଜୀଙ୍କ ବୈରାଗ୍ୟ ଓ ଶ୍ରୀରାଧାଙ୍କ ପ୍ରେମର

ମିଳିତ ବିଗ୍ରହ ଶ୍ରୀଶୁକଦେବ ପରମ ହଂସଙ୍କୁ ଅନେକ ବର୍ଷ ଅପେକ୍ଷା କରିବାକୁ ପଡ଼ିଲା ଜଣେ ଉପଯୁକ୍ତ ଶ୍ରୋତା ଖୋଜି ବାହାର କରିବାକୁ । ସେ ପ୍ରତିବଦ୍ଧ ଯେ ସେ କେବଳ ସତ୍‌ସଙ୍ଗ ମାଧ୍ୟମରେ କେବଳ ଜଣେ ସତ୍‌ପାତ୍ର ହସ୍ତରେ ଶ୍ରୀମଦ୍‌ଭାଗବତଙ୍କୁ ଅର୍ପଣ କରିବେ ।

ପଦ୍ମପୁରାଣର ଶ୍ରୀମଦ୍‌ଭାଗବତ ମାହାତ୍ମ୍ୟ ପ୍ରସଙ୍ଗରେ କୁହାଯାଇଛି ଯେ ସୃଷ୍ଟିର ସକଳ ଭକ୍ତି ସାଧନାମାନଙ୍କୁ ଏକତ୍ର କରି ତୁଳାଦଣ୍ଡରେ ଶ୍ରୀମଦ୍‌ଭାଗବତଙ୍କ ସହିତ ତୁଳିଥିଲେ ସୃଷ୍ଟି କର୍ତ୍ତା ବ୍ରହ୍ମାଜୀ । କି ଆଶ୍ଚର୍ଯ୍ୟ କଥା । ଶ୍ରୀମଦ୍‌ଭାଗବତଙ୍କ ପଲା ଭାରି ହେଲା । ସେଥିପାଇଁ ସିନା ମହାପାପୀ ଧୁନ୍ଧୁକାରୀ ମାତ୍ର ସାତଦିନ ଭାଗବତ ଶ୍ରବଣ କରି ପ୍ରେତ ଯୋନିରୁ ମଧ୍ୟ ମୁକ୍ତି ପାଇଗଲେ ଜଡ଼ ବାଉଁଶ ମଧ୍ୟରେ ରହି । ଶ୍ରଦ୍ଧା ବିଶ୍ୱାସ ସହିତ କୌଣସି ମନୁଷ୍ୟ ଯଦି ଭାଗବତ ସପ୍ତାହ ଶ୍ରବଣ କରନ୍ତି ତେବେ ଭୁକ୍ତି, ମୁକ୍ତି ଓ ପ୍ରେମ ଜୀବନ୍ମୁକ୍ତି କେଉଁ କଥା ଅବା ନ ମିଳିବ । ଅର୍ଥାତ୍ ନିଶ୍ଚୟ ମିଳିବ । କେବଳ ଗୋଟିଏ ସର୍ତ୍ତ ବକ୍ତା ଓ ଶ୍ରୋତା ଉଭୟ ଶରଣାଗତ ହେବା ଦରକାର । ତେଣୁ ଭଗବାନ ଓ ଭାଗବତଙ୍କ କୃପା ହାତେ ହାତେ ମିଳିବ ହିଁ ମିଳିବ ।

ଦଶମସ୍କନ୍ଧ ବର୍ଣ୍ଣିତ ନିରୋଧ (ମନର), ଏକାଦଶ ସ୍କନ୍ଧ ବର୍ଣ୍ଣିତ ପାଞ୍ଚମୁକ୍ତି (ସଂସାର ଆସକ୍ତିରୁ) ଓ ଜୀବର ଚରମ ଆଶ୍ରୟ (ଜ୍ଞାନୀ ପାଇଁ ନିର୍ଗୁଣ ବ୍ରହ୍ମ ଓ ଭକ୍ତ ପାଇଁ ସଗୁଣ ସାକାର ଭଗବାନ) ଆଲୋକ ବର୍ତ୍ତିକା ଜାଳି କାଳଜୟୀ ବ୍ୟାସଦେବ ନିଜେ ଲେଖି ସ୍ୱପୁତ୍ର ଜନ୍ମଜାତ ପରମହଂସ ଶ୍ରୀଶୁକଦେବ ଗୋସ୍ୱାମୀଙ୍କ ମୁଖରେ କୁହାଇ ଆମ ଭଳି ପରବର୍ତ୍ତୀ ପୀଢ଼ିର ଜୀବମାନଙ୍କୁ ଋଣୀ ରଖିଯାଇଛନ୍ତି । ଏଣିକି ଉପଯୁକ୍ତ ସଦ୍‌ଗୁରୁଙ୍କ ଶରଣାପନ୍ନ ହୋଇ ସେହି ଦିବ୍ୟ ରାଧାକୃଷ୍ଣ ପ୍ରେମରସ ଆସ୍ୱାଦନ କରିବା ଆମ ଦାୟିତ୍ୱ ଓ କର୍ତ୍ତବ୍ୟ । ଗ୍ରନ୍ଥଟିକୁ ସଶ୍ରଦ୍ଧ ପାଠ କରି ଯଦି କେହି ଜଣେ ବି ଭକ୍ତି କିମ୍ବା ଜ୍ଞାନ ମାର୍ଗୀ ସାଧକ କୃଷ୍ଣପ୍ରେମର ସନ୍ଧାନ ପାଆନ୍ତି ତେବେ ସାଧକଙ୍କର ଦିଶା ଦଶା ଠିକ୍ ବଦଳିଛି ବୋଲି ଲେଖକ ମନେ କରିବ । ନିଜକୁ କୃତାର୍ଥ ମଣିବ ।

ପରିବେଷକ

**ଅପଣ୍ଡିତ ଦାମୋଦର ବଳୀୟାରସିଂହ**

# ଦୈନିକ ପ୍ରାର୍ଥନା

ଆଚାର୍ଯ୍ୟଂ ମାଂ ବିଜାନୀୟାନ୍ ନ-ଅବମନ୍ୟେତ କର୍ହିଚିତ୍ ।
ନ ମର୍ତ୍ତ୍ୟ ବୁଦ୍ଧ୍ୟା-ଅସୂୟେତ ସର୍ବ ଦେବମୟୋ ଗୁରୁଃ ॥

ଭା-୧୧-୧୭-୨୭

ହେ ପରମ ପ୍ରିୟତମ ପୂର୍ଣ୍ଣତମ ଶ୍ରୀକୃଷ୍ଣ, ତୁମ୍‌ସେ ବିମୁଖ ହୋନେ କେ କାରଣ ଅନାଦି କାଳ ସେ ହମ୍‌ନେ ଅନନ୍ତ-ଅନନ୍ତ ଦୁଃଖ ପାୟେ ଏବଂ ପା ରହେ ହେଁ । ପାପ କରତେ କରତେ ଅନ୍ତଃକରଣ ଇତ୍‌ନା ମଲିନ୍ ହୋ ଚୁକା ହେ କି ରସିକୋଁ ଦ୍ୱାରା ୟହ ଜାନ୍‌ନେ ପର୍‌ଭୀ କି ତୁମ୍ ଅପନି ଭୁଜାଓଁ କୋ ପସାରେ ଅପନି ବାତ୍ସଲ୍ୟମୟୀ ଦୃଷ୍ଟି ସେ ହମାରି ପ୍ରତୀକ୍ଷା କର୍ ରହେ ହୋ ତୁହ୍ମାରୀ ଶରଣ ମେଁ ନହିଁ ଆ ପାତା ।

ହେ ଅଶରଣ ଶରଣ, ତୁହ୍ମାରୀ କୃପା କେ ବିନା ତୁହ୍ମେ କୋଇ ଜାନ୍ ଭି ତୋ ନହିଁ ସକ୍‌ତା । ଐସି ସ୍ଥିତି ମେଁ ହେ ଅକାରଣ କରୁଣ ପତିତପାବନ ଶ୍ରୀକୃଷ୍ଣ, ତୁମ ଅପନି ଅହୈତୁକୀ କୃପା ସେ ହୀ ହମ୍‌କୋ ଅପନା ଲୋ ।

ହେ କରୁଣା ସାଗର, ହମ୍ ଭୁକ୍ତି ମୁକ୍ତି ଆଦି କୁଛ ଭି ନହିଁ ଚାହତେ । ହମେଁ ତୋ କେବଲ ତୁହ୍ମାରେ ନିଷ୍କାମ ଭକ୍ତି କୀ ହି ଏକମାତ୍ର ଚାହ ହୈ ।

ହେ ନାଥ ଅପନି ବିରଦ (ପ୍ରତିଜ୍ଞା) କୀ ଔର ଦେଖକର ଇସ୍ ଅଧମକୋ ନିରାଶ ନ କରୋ ।

ହେ ଜୀବନ ଧନ୍, ଅବ୍ ବହୁତ ହୋ ଚୁକା, ଅବ୍ ତୋ ତୁହ୍ମାରେ ପ୍ରେମ କେ ବିନା ୟହ ଜୀବନ ମୃତ୍ୟୁ ସେ ଭୀ ଅଧିକ ଭୟାନକ ହୈ । ଅତଏବ

ପ୍ରେମ ଭୀକ୍ଷାଂ ଦେହି, ପ୍ରେମ ଭୀକ୍ଷାଂ ଦେହି, ପ୍ରେମ ଭୀକ୍ଷାଂ ହି ଦେହି ।

ବୋଲିଏ-

ସାଁକେତ ବିହାରୀ ଶ୍ରୀ ରାଘବେନ୍ଦ୍ର ସରକାର କୀ ଜୟ ।
ବୃନ୍ଦାବନ ବିହାରୀ ଶ୍ରୀ ଯାଦବେନ୍ଦ୍ର ସରକାର କୀ ଜୟ ।
ଶ୍ରୀମଦ୍ ସଦ୍‌ଗୁରୁ ସରକାର କୀ ଜୟ ।

-୦-

# ସୂଚୀପତ୍ର

(ଶୂନ୍ୟ) ନକ୍ଷତ୍ର-ଅଭିଜିତ୍

# ଦଶମ ସ୍କନ୍ଧଃ

## ଅଧ୍ୟାୟ ସଂଖ୍ୟା-୨୯, ଶ୍ଲୋକ ସଂଖ୍ୟା-୩୯୪୧

## ଲକ୍ଷଣ-ନିରୋଧ(ଶ୍ରୀଧର ସ୍ୱାମୀଙ୍କ ମତରେ ଆଶ୍ରୟ)

## ପ୍ରକରଣ-୨୭ କରୁଣ ରସ ଅଧ୍ୟାୟ(୧ମ-୯ମ)

### ଅଥ ପ୍ରଥମ ଅଧ୍ୟାୟଃ

### (ପୃଥିବୀର ପାପଭାର ହରଣ ପାଇଁ ଭଗବାନଙ୍କ ପ୍ରତିଶ୍ରୁତି)

ରାଜା ଉବାଚ

ପ୍ରଶ୍ନ-୧. ମୃତ୍ୟୁର ପୂର୍ବ ସଂକେତ କଂସ ଓ ପରୀକ୍ଷିତ ଉଭୟଙ୍କୁ ମିଳିଥିଲା । ଦାନବେନ୍ଦ୍ର କଂସ ମହାପାପୀ ଥିଲେ । ସୁତରାଂ ମୃତ୍ୟୁକୁ ମହାଭୟ କଲେ । ସାରା ରାଜ୍ୟରେ ଉତ୍ପାତ ଆରମ୍ଭ କରିଦେଲେ । ପାପର ଘଡ଼ା ବା କଳସ ଜଲଦି ପୂରିବାରେ ଲାଗିଲା । ମହାରାଜ ପରୀକ୍ଷିତ କିନ୍ତୁ ମହାପୁଣ୍ୟବାନ । ଜୀବନରେ ଗୋଟିଏ ବୋଲି ପାପ କରିଥିଲେ । ସେତ ପରମ କୃଷ୍ଣ ଭକ୍ତ । ତଥାପି ବିଧିର ବିଡ଼ମ୍ବନା । କପଟ ନର ରୂପଧାରୀ କଳିଯୁଗକୁ କ୍ଷମା କରି ସେ ନିଜେ କଳି ଦୌରାମ୍ୟର ଶିକାର ହେଲେ । ତୃଷାର ତାଡ଼ନାରେ ଶମିକ ନାମକ ଋଷି ଗଳାରେ ମୃତ ସର୍ପ ଲମ୍ବାଇ ପାଇଲେ ବ୍ରହ୍ମଶାପ । ସାତ ଦିନରେ ତକ୍ଷକ ନାଗ ଦଂଶନ କରିବ । ଆଦୌ ଡ଼ରିଲେ ନାହିଁ ସେ । ବ୍ରହ୍ମଶାପକୁ ମଧ୍ୟ କୃଷ୍ଣ କୃପା ମନେ କଲେ । ତତ୍କ୍ଷଣାତ୍ ୬୬ବର୍ଷର ସଂସାର ଜଞ୍ଜାଳକୁ ଇତି କଲେ । ପୁତ୍ର ଜନ୍ମେଜୟଙ୍କୁ ରାଜ ଗାଦି ଆସୀନ କରି ଗଙ୍ଗାକୂଳରେ ମହାସତ୍ସଙ୍ଗର ଆୟୋଜନରେ ବସିଗଲେ । ସଙ୍ଗେ ସଙ୍ଗେ ସୂଚନା ପାଇ ପହଞ୍ଚିଗଲେ ନାରଦ, ବ୍ୟାସ, ବଶିଷ୍ଠ, ବାମଦେବ ଆଦି ୬୬,୦୦୦ଋଷିମଣ୍ଡଳୀ । ସ୍ୱତଃ ପହଞ୍ଚିଗଲେ ପରମ ବୈରାଗୀ ବକ୍ତା ଶିରୋମଣି ଶୁକଦେବ ପରମହଂସ । ତାହା ରାଜାଙ୍କର ପୁଣି ବିନା ନିମନ୍ତ୍ରଣରେ ।

ବ୍ରହ୍ମଶାପକୁ ଖଣ୍ଡନ କରିବାକୁ ଭଗବାନ ନାରାୟଣଙ୍କ ସୁଦର୍ଶନ ଚକ୍ର, ଶାରଙ୍ଗଧନୁ, କୌମଦକୀ ଗଦା ଓ ବରୁଣ ପାଶ ଆଦି ସକଳ ଦିବ୍ୟ ଅସ୍ତ୍ର ଶସ୍ତ୍ର ମଧ ଅସମର୍ଥ ହେଲେ । ସୁତରାଂ ଭଗବାନଙ୍କୁ ଏଥରକ ସାହିତ୍ୟ ଅବତାର ହେବାକୁ ପଡ଼ିଲା । ଗୀତା ଭଗବାନଙ୍କର ବାଣୀ ଅବତାର । ଭାଗବତ କିନ୍ତୁ ଭଗବାନଙ୍କର କଥା ଅବତାର । ବେଦବ୍ୟାସ କୃଷ୍ଣ ଶ୍ରୀମଦ୍ ଭାଗବତ ବର୍ଣ୍ଣିତ କୃଷ୍ଣଙ୍କ ଲୀଳା କଥା ବ୍ରହ୍ମଶାପ କାଟିବାକୁ କଟୀବଦ୍ଧ । ସାତ ଦିନ ମଧ୍ୟରୁ କୃଷ୍ଣ କଥାର ଭୂମିକା ବର୍ଣ୍ଣନ କରୁ କରୁ ପ୍ରାୟ ଚାରିଦିନ ସରିଗଲାଣି । ଏ ପର୍ଯ୍ୟନ୍ତ ୯ସ୍କନ୍ଧରେ ୯ପ୍ରକାର ସାଧନ ଭକ୍ତି ଶୁଣାଇଲେଣି ବକ୍ତା ମହାଶୟ । ପୁଣି ୯ମ ସ୍କନ୍ଧରେ ବିସ୍ତୃତ ଭାବେ ବର୍ଣ୍ଣନା କଲେ ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶ ରାଜାମାନଙ୍କ ଜ୍ଞାନ, ବୈରାଗ୍ୟ ସାଧନ କଥା । ଶ୍ରୀରାମ, ପର୍ଶୁରାମ, ରଘୁ, ଅଜ, ରନ୍ତିଦେବ ଓ ଯଦୁ ଆଦି ଭଗବାନ ଓ ୧୦୮ (ଈଶାନୁକଥା)ଭକ୍ତଙ୍କ କଥା । ଶୁଣି ଶୁଣି ଧୈର୍ଯ୍ୟହରା ହେଲେଣି ମୁଖ୍ୟ ଶ୍ରୋତା ପରୀକ୍ଷିତଜୀ । କିଭଳି ନାଟକୀୟ ଢ଼ଙ୍ଗରେ ପରୀକ୍ଷିତ ମହାରାଜା ଅନ୍ୟାନ୍ୟ ଇତର କଥାକୁ ଏଡ଼ାଇ କେବଳ କୃଷ୍ଣକଥା ଶ୍ରବଣ ଲାଳସା ପ୍ରକଟ କଲେ ?

**କଥିତୋ ବଂଶ ବିସ୍ତାରୋ ଭବତା ସୋମ ସୂର୍ଯ୍ୟୟୋଃ ।**
**ରାଜ୍ଞାଂ ଚ-ଉଭୟ ବଂଶ୍ୟାନାଂ ଚରିତଂ ପରମ-ଅଦ୍ଭୁତମ୍ । ॥୧॥**

ଉ. ମୂଳବଂଶ ଚନ୍ଦ୍ରବଂଶର ଏକ ବିଖ୍ୟାତ ଉପବଂଶ ହେଉଛି ଯଦୁବଂଶ । ଚନ୍ଦ୍ରବଂଶୀ ରାଜା ଯାଯାତିଙ୍କ ପତ୍ନୀ ଦେବଯାନୀଙ୍କର ଦୁଇ ପୁତ୍ର ଯଦୁ ଓ ତୁର୍ବସୁ । ଅନ୍ୟତମା ପତ୍ନୀ ଶର୍ମିଷ୍ଠାଙ୍କର ଅନୁ, ଦ୍ରୁହ୍ୟୁ ଓ ପୁରୁ ନାମରେ ତିନିପୁତ୍ର ହେଲେ । ପୁରୁଙ୍କ ଠାରୁ ପୌରବ ପରେ କୁରୁଙ୍କ ଠାରୁ କୌରବ ବଂଶର ଉଦ୍ଭବ ହେଲା । ଯଦୁଙ୍କ ବଂଶରେ ଅଜମୀଢ଼ ଜନ୍ମ ନେଲେ । ତାଙ୍କର କ୍ଷତ୍ରିୟା ପତ୍ନୀଙ୍କ ଗର୍ଭରୁ ଶୂରସେନ ରାଜା ଓ ବୈଶ୍ୟ ପତ୍ନୀଙ୍କ ଗର୍ଭରୁ ନନ୍ଦ ରାଜା ଜନ୍ମ ନେଲେ । ଶୂରସେନଙ୍କ ପୁତ୍ର ବସୁଦେବଙ୍କର ୧୭ଜଣ ପତ୍ନୀ । ସେମାନଙ୍କ ମଧ୍ୟରୁ ପ୍ରଥମା ପତ୍ନୀ ଦେବକୀଙ୍କ ଗର୍ଭରୁ ଶ୍ରୀକୃଷ୍ଣ ଓ ଦ୍ୱିତୀୟା ପତ୍ନୀ ରୋହିଣୀଙ୍କ ଗର୍ଭରୁ ବଡ଼ଠାକୁର ବଳରାମଙ୍କ ପ୍ରାକଟ୍ୟ ହୋଇଥିଲା । ସେହି ବଂଶରେ ଉତ୍ପନ୍ନ ସକଳ ଭକ୍ତମାନଙ୍କର ଚରିତ ଅତ୍ୟନ୍ତ ଭବ୍ୟ, ବିଚିତ୍ର, ଏକୁ ଆରେକ ରସାଳ ମଧ ।

ପ୍ରଶ୍ନ-୨ : ପ୍ରତ୍ୟେକ ଯଦୁବଂଶୀ ରାଜା ଅତ୍ୟନ୍ତ ଯୋଗ୍ୟ (ନିତରାଂ), ଧର୍ମଶୀଳ ଥିଲେ । ଭଗବାନ ଶ୍ରୀକୃଷ୍ଣ ସ୍ୱୟଂ ଧର୍ମାତ୍ମା ବା ଧର୍ମର ଜୀବନ୍ତ ପ୍ରତିମୂର୍ତ୍ତି । ସେ ନିଜ ସ୍ୱାଂଶ ବଳରାମଙ୍କ ସହିତ ଏଭଳି ବଂଶରେ ଅବତାର ନେବାର ଅସଲି କାରଣ କ'ଣ ହୋଇପାରେ ?

**ଯଦୋଃ ଚ ଧର୍ମଶୀଳସ୍ୟ ନିତରାଂ ମୁନି ସତ୍ତମ ।**
**ତତ୍ର-ଅଂଶେନ-ଅବତୀର୍ଣ୍ଣସ୍ୟ ବିଷ୍ଣୋଃ ବିର୍ଯ୍ୟାଣି ଶଂସ ନଃ ॥୨॥**

ଉ. ଏ ବିଷୟରେ ଯଥାର୍ଥ ଶଙ୍କା ଉପୁଜିଛି ରାଜା ପରୀକ୍ଷିତଙ୍କ ମନରେ । ତାକୁ ଦୂର କରିବାକୁ ଅନୁରୋଧ କରିଛନ୍ତି ରାଜା ବକ୍ତା ମହାଶୟଙ୍କୁ ଅତ୍ୟନ୍ତ ବିନମ୍ର ସହକାରେ ଶଂସ ନଃ ବୋଲି କହି ।

ଶ୍ରୀହରି ଅବତାରର ଅବଶ୍ୟ ଅନେକ ଗୌଣ କାରଣ ସବୁ ଥିଲା । ଯଥା ଦୁଷ୍ଟ ଦଳନ, ସନ୍ଥ ପାଳନ, ଧର୍ମ ସଂସ୍ଥାପନ, ଲୋକାଦର୍ଶ ସ୍ଥାପନ, ଶ୍ରେୟ ମାର୍ଗ ପ୍ରଦର୍ଶନ ଇତ୍ୟାଦି ଇତ୍ୟାଦି କିନ୍ତୁ ମୁଖ୍ୟ କାରଣ ତାହା ନୁହେଁ । ଏସବୁ କର୍ମ ଐଶ୍ୱର୍ଯ୍ୟ ଅବତାରୀ ଶ୍ରୀବିଷ୍ଣୁ କିମ୍ବା ଶ୍ରୀମନ୍ ନାରାୟଣ କରିପାରିଥାନ୍ତେ । କିନ୍ତୁ ରୂପ ମାଧୁରୀ, ମୁରଲୀ ମାଧୁରୀ, ପ୍ରେମ ମାଧୁରୀ ସହିତ ବାଳଲୀଳା ମାଧୁରୀ ରୂପକ ଅତିବିଶିଷ୍ଟ ଚାରି ଚିଜର ପ୍ରକଟ ହୋଇଥାନ୍ତା କିପରି ? ଯାହାର ସଙ୍କେତ ବିଷ୍ଣୋଃ ବିର୍ଯ୍ୟାଣି ଶବ୍ଦ ଦ୍ୱୟରେ ଏଠାରେ ସଙ୍କେତ କରାଯାଇଛି । ଶ୍ରୀକୃଷ୍ଣଙ୍କ ଅପ୍ରକଟ ଲୀଳା ପ୍ରକଟ ହେବେ । ଗୋଲୋକରେ ତାଙ୍କ ଜନ୍ମ ଉତ୍ସବ, ନବନୀତ ଚୋରୀ ପ୍ରସଙ୍ଗ, ଗୋପୀ ବିରହ ଲୀଳା, ଚିରହରଣ ଲୀଳା, ମୃଦଭକ୍ଷଣ ଲୀଳା, ଉଦୁଖଳ ବନ୍ଧନ ଲୀଳା ହୋଇପାରେନା । ଠାକୁରଜୀଙ୍କୁ ବିରକ୍ତ ଲାଗିଲାଣି ଅନ୍ୟାନ୍ୟ ଚିରାଚରିତ ଲୀଳାରେ । ଗୋଲାକଧାମରେ ସେ ନିତ୍ୟ କିଶୋର । ଏବେ ସେ ନିତ୍ୟ ନବାୟମାନ ଲୀଳା ଅଭିଳାଷୀ । ପୁରୁଷ ସୂକ୍ତ, ବନ୍ଦନା, ଯଜ୍ଞ ଭାଗ ଗ୍ରହଣରେ ସେ ଏବେ ଅନାଗ୍ରହୀ । ଭକ୍ତ କାନମୋଡ଼ା, ଚୋର ଜାର ଶିଖାମଣି ଗାଳି, ଭକ୍ତ ପାଦର କଠଉ ସେ ମୁଣ୍ଡାଇବାକୁ ପରମ ଉତ୍ସୁକ ହେଲେଣି ।

ପ୍ରଶ୍ନ-୩: ସଂସ୍କୃତରେ ଜୀବଙ୍କୁ ଭୂତ କୁହାଯାଏ । ସେମାନଙ୍କୁ ପାଳନ କରୁଥିବା ଭଗବାନଙ୍କର ଗୁଣାବତାରଙ୍କୁ ଭୂତଭାବନ କୁହାଯାଏ । ଭଗବାନ କୃଷ୍ଣଙ୍କର ସୃଷ୍ଟି କ୍ରିୟା ଓ ସଂହାର କ୍ରିୟା ବିଷୟରେ ଶୁଣିବାକୁ ଇଛା ନକରି ରାଜା କାହିଁକି ପାଳନ କ୍ରିୟା ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନା କରିବାକୁ ଅନୁରୋଧ କଲେ ?

**ଅବତୀର୍ଯ୍ୟ ଯଦୋଃବଂଶେ ଭଗବାନ୍ ଭୂତଭାବନଃ ।**
**କୃତବାନ୍ ଯାନି ବିଶ୍ୱ-ଆତ୍ମା ତାନି ନୋ ବଦ ବିସ୍ତରାତ ॥୩॥**

ଉ. ସୃଷ୍ଟି-ସଂହାର କ୍ରିୟାର ବିଶେଷ ବିସ୍ତାର ୧ମରୁ ୯ମ ସ୍କନ୍ଧ ମଧରେ ସେ ଶୁଣି ସାରିଛନ୍ତି । ସୁତରାଂ କୃଷ୍ଣ ଅବତାର ସମ୍ବନ୍ଧୀୟ ବିଶେଷ ଭକ୍ତ ଅନୁଗ୍ରହ କୃପା ବା

ପୁଷ୍ଟି ଲୀଳା ଶୁଣିବାରେ ସେ ମାତ୍ରାଧିକ ଆଗ୍ରହୀ ହେବା ସ୍ୱାଭାବିକ । କୃଷ୍ଣ ହିଁ କେବଳ କୃପା କରିବା ବେଳେ ସଂସାର ଆଇନ କାନୁନ୍ ଭକ୍ତର ଯୋଗ୍ୟତା, ଅଯୋଗ୍ୟତା ବିଚାର କରି ନଥାନ୍ତି । ଜୀବକୁ ଦିବ୍ୟ ପ୍ରେମଦାନ କରିବାକୁ ସେ ଓର ଉଣ୍ଡୁଥାନ୍ତି । ହେଉ ପଛେ ସେ କଂସାସୁର, ଅଘାସୁର, ପୂତନା ବା ଶିଶୁପାଳ ଆଦି ଯାହା ତାହା । ସେ ଅଲବତ କୃପା କରିବେ । କୃପାର ପାତ୍ର ହେଉ କି ନ ହେଉ, ହାୟରେ ଭଗବାନ । ଧନ୍ୟ ତୁମ ଲୀଳା ! ଧନ୍ୟ ତୁମର ଭକ୍ତ ! ! ଧନ୍ୟ ତୁମର କୃପା ! ! !

ପ୍ରଶ୍ନ-୪: ବୈଦିକ ଆର୍ଯ୍ୟ ଧର୍ମରେ ମନୁଷ୍ୟ ଚାରି ପ୍ରକାରର । ତନ୍ମଧ୍ୟରେ ବ୍ୟାସ ନାରଦ ଶୁକଦେବ ଆଦି ଶୁଦ୍ଧାତ୍ମା ପୁରୁଷ । ଭୀଷ୍ମ, ଦ୍ରୋଣ, ବିଦୁର ମୈତ୍ରେୟ ଆଦି ମୁକ୍ତ ପୁରୁଷ । ପରୀକ୍ଷିତ, ଅର୍ଜୁନ ଆଦି ମୁମୁକ୍ଷୁ ପୁରୁଷ । ଦୁର୍ଯ୍ୟୋଧନ, ଧୃତରାଷ୍ଟ୍ର ଆଦି ବିଷୟୀ ବା ପାମର ପୁରୁଷ ବୋଲି କଥିତ । ଏହିଭଳି ସବୁଶ୍ରେଣୀର ଲୋକମାନଙ୍କ ପାଇଁ କୃଷ୍ଣ କଥା ଅତ୍ୟନ୍ତ ଉପଯୋଗୀ ଓ କର୍ଣ୍ଣମନ ରସାୟନ । ପୁଣି ସଂସାର ଆସକ୍ତି ଦୂର କରି ମନକୁ ଭଗବତ ଆସକ୍ତ କରାଇବାରେ ଭବ-ମହାଔଷଧି ଅଟେ । ଯେହେତୁ ଏହି କଥା ଶୁକଦେବ ପରମହଂସଙ୍କ ଭଳି ଅତ୍ୟନ୍ତ ବୈରାଗ୍ୟବାନ ସନ୍ଥଙ୍କ ଦ୍ୱାରା ପ୍ରଚାରିତ ଓ ପ୍ରସାରିତ ହୋଇଛି । ବିନା ଶଙ୍କା, ସନ୍ଦେହରେ କଳିଯୁଗୀ ପାପପ୍ରବଣ ମନୁଷ୍ୟ ଏହାକୁ ଶ୍ରବଣ କରିବା ଅତ୍ୟନ୍ତ ଶ୍ରେୟସ୍କର । ତଥାପି ଏହି ସଂସାରରେ ମଣିଷ ଗୋଟିଏକୁ ରୁଚି ଗୋଟିଏ । କେଉଁ ଭଳି ଲୋକଙ୍କର (କ) ଏହି ପବିତ୍ର କୃଷ୍ଣ (ଉତ୍ତମ ଶ୍ଳୋକ)କଥା ଶ୍ରବଣରେ ରୁଚି ହୁଏନା ?

**ନିବୃତ୍ତ ତର୍ଷୈ-ଉପଗୀୟ ମାନାଦ୍**
**ଭବ-ଔଷଧାତ୍ ଶ୍ରୋତ୍ର ମନୋଽଭିରାମାତ୍ ।**
**କ ଉତ୍ତମ ଶ୍ଳୋକ ଗୁଣ-ଅନୁବାଦାତ୍**
**ପୁମାନ୍ ବିରଜ୍ୟେତ ବିନା ପଶୁଘ୍ନାତ୍ ॥୪॥**

ଉ. ଉତ୍ତମ ଶ୍ଳୋକ ଦ୍ୱାରା ଯେଉଁ ପ୍ରେମ ପୁରୁଷୋତ୍ତମ କୃଷ୍ଣଙ୍କ ଲୀଳା ବର୍ଣ୍ଣନା କରାଯାଇଛି ତାହାହିଁ ଭକ୍ତ-ଭଗବାନ ଚରିତ ଶ୍ରୀମଦ୍ଭାଗବତ କଥା । କିନ୍ତୁ ଉତ୍ତମ ସଂସ୍କାରର ଅଭାବ ହେତୁ କଂସେଇ, ଆତ୍ମଘାତୀ (ପଶୁଘ୍ନ) ଲୋକଙ୍କର ଏଥିରେ ସହଜରେ ରୁଚି ହୁଏନା । ସୃଷ୍ଟିରେ ଦେଖାଯାଏ ଟିଙ୍କ ବିଚରା ଦୁଧିଆଳୀ ଗାଈ ସ୍ତନରୁ ଦୁଗ୍ଧ ପାନ କରିପାରେ ନାହିଁ । ସାଧାରଣ ମାଛି, ଗଣ ଗଣିଆ ମାଛିମାନେ ଫୁଲରୁ

ମଧୁ ସଂଗ୍ରହ କରିପାରନ୍ତି ନାହିଁ । ବରଂ ପଚା ସଢ଼ା ଦ୍ରବ୍ୟରୁ ଗଳିତ ରସ ସଂଗ୍ରହ ଲାଗି ସଦା ଲାଳାୟିତ ରହିଯାଆନ୍ତି । ଠିକ୍ ସେହିଭଳି କୁସଂସ୍କାରୀ, ଦୂରାଚାରୀ, ପାପୀ, ଦୂରାତ୍ମାମାନଙ୍କର କୃଷ୍ଣ କଥା ଶ୍ରବଣରେ ସ୍ୱଭାବତଃ ଅନାଗ୍ରହ ହୁଏ ।

ପ୍ରଶ୍ନ-୫ : ଭଗବାନ ଶ୍ରୀକୃଷ୍ଣ ସକଳ ଈଶ୍ୱରମାନଙ୍କର ମଧ୍ୟ ଈଶ୍ୱର ହୋଇଥିବାରୁ ପରମେଶ୍ୱର ବୋଲାନ୍ତି । ଏଭଳି କରିତ୍‌କର୍ମା ଅଦ୍ଭୁତକର୍ମା ପୁରୁଷଙ୍କ ଅତିମାନବତା ଅଲୌକିକତା ଜଣାଇବା ଲାଗି ରାଜା ପରୀକ୍ଷିତ କେଉଁ ଦୃଷ୍ଟାନ୍ତ ଉପସ୍ଥାପନ କଲେ ?

**ଦ୍ରୌଣି-ଅସ୍ତ୍ର ବିପ୍ଳୁଷ୍ଟଂ ଇଦଂ ମଦ୍‌ଅଙ୍ଗଂ**
**ସନ୍ତାନ ବୀଜଂ କୁରୁପାଣ୍ଡବାନାମ୍ ।**
**ଜୁଗୋପ କୁକ୍ଷିଂ ଗତ ଆତ୍ତଚକ୍ରୋ**
**ମାତୁଃ ଚ ମେ ଯଃ ଶରଣଂ ଗତାୟାଃ ॥୬॥**

ଉ. ଦ୍ରୋଣପୁତ୍ର ଅଶ୍ୱତ୍‌ଥାମା ଦୁର୍ଯ୍ୟୋଧନଙ୍କ ପ୍ରରୋଚନାରେ ସଂସାର ବକ୍ଷରୁ କୁରୁ ପାଣ୍ଡବମାନଙ୍କ ଶେଷ ସନ୍ତାନ ବୀଜର ବିନାଶ କରିବାକୁ ଚାହିଁଲେ । ସେତେବେଳକୁ ସୁଭଦ୍ରାପୁତ୍ର ଅଭିମନ୍ୟୁ ମହାଭାରତ ଯୁଦ୍ଧରେ ବୀରଗତି ପ୍ରାପ୍ତ ହୋଇସାରିଥାନ୍ତି । କୌରବଗଣ ମଧ୍ୟ ନିର୍ବଂଶ ହେଲେଣି । ଅଭିମନ୍ୟୁଙ୍କ ପତ୍ନୀ ଉତ୍ତରାଙ୍କ ଗର୍ଭରେ ମହାରାଜ ପରୀକ୍ଷିତ ଥାଆନ୍ତି । ଅତଏବ ଅଶ୍ୱତ୍‌ଥାମା ବ୍ରହ୍ମ ଶରକୁ ଅଭିମନ୍ତ୍ରିତ କରି ପ୍ରୟୋଗ କଲେ ଉତ୍ତରାଙ୍କ ଗର୍ଭନାଶ ଲାଗି । ଉତ୍ତରା ଦ୍ରୌପଦୀଙ୍କ ଭଳି ଅନ୍ୟ ପାଣ୍ଡବଗଣଙ୍କ ଶରଣାପନ୍ନ ନ ହୋଇ ସିଧା ସଳଖ ଶ୍ରୀକୃଷ୍ଣଙ୍କ ଶରଣ ଗଲେ । ଭଗବାନ କୃପା ସାଗର । ତତ୍‌କ୍ଷଣାତ୍ ଯୋଗ ବଳରେ ଉତ୍ତରାଙ୍କ ଗର୍ଭରେ ପ୍ରବେଶ କଲେ । ଆତ୍ତଚକ୍ର ବା ସୁଦର୍ଶନ ଚକ୍ର ଆଡୁଆଳରେ ତାଙ୍କ ଗର୍ଭ ରକ୍ଷା କରିଥିଲେ । ଏହା ଠାକୁରଜୀଙ୍କର ଅଲୌକିକ ଲୀଳାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ବୋଲି ରାଜା କହିଲେ । ସେହି ସର୍ବସମର୍ଥ ଭଗବାନଙ୍କ କୃପାରୁ ପାଣ୍ଡବମାନେ ମହାଭାରତ ସମରଭଳି ମହାନ୍ ରଣନଦୀକୁ ଗୋଖୁରାସ୍ଥିତ ଜଳ ଭଳି ପାର ହୋଇପାରିଥିଲେ । ଭକ୍ତକୁ ବିପଦରୁ ରକ୍ଷା କରିବା ଓ ଅଭକ୍ତକୁ ସମୁଚିତ ଦଣ୍ଡ ବିଧାନ କରି ବାଟକୁ ଆଣିବା ସହିତ ଦିବ୍ୟ ପ୍ରେମଦାନ ତାଙ୍କର କୃଷ୍ଣ ଅବତାରର ଉଦ୍ଦେଶ୍ୟ । ରାଜା ପୁଣି ପଚାରି କହିଲେ ସଙ୍କର୍ଷଣଙ୍କୁ କାହିଁକି ରୋହିଣୀ ଓ ଦେବକୀ ଉଭୟଙ୍କ ପୁତ୍ର ବୋଲି କୁହାଯାଏ ? କେଉଁ ପରିସ୍ଥିତିରେ ଭଗବାନ ମଥୁରା ତ୍ୟାଗ କରି ଗୋକୁଳ ନନ୍ଦଗାଁଓ ଚାଲିଗଲେ ? କଂସ ମାମୁଁ କୃଷ୍ଣ

ବିଦ୍ୱେଷୀ ହୋଇ ନିଜ ଭଣଜା ହାତରେ ମରିବାକୁ ଚାହିଁବା କାରଣ କିସ ? ବୃନ୍ଦାବନରେ ୧୧ବର୍ଷ, ମଥୁରାରେ ୧୪ବର୍ଷ ରହି ଦ୍ୱାରକାରେ ଏକଶତ ବର୍ଷ ରହି ସେ କି କି ଅଦ୍ଭୁତ ଲୀଳାମାନ କରିଥିଲେ ?

ପ୍ରଶ୍ନ-୬: ମହାରାଜ ପରୀକ୍ଷିତ ଦୀର୍ଘ ଚାରିଦିନ କାଳ ସତ୍‌ସଙ୍ଗରେ ଅନ୍ନ ଜଳ ପରିହାର କରି ପ୍ରାୟୋପବେଶନରେ ବସିଛନ୍ତି । ଶୁକଦେବ ନିଜେ କ୍ଷୁଧାତୃଷା ଜିଣିଥିବା ଯୋଗୀ ହେଲେ ମଧ୍ୟ ରାଜଚକ୍ରବର୍ତ୍ତୀ ପରୀକ୍ଷିତଙ୍କ କ୍ଷୁଧା ତୃଷାର କଷ୍ଟ ବିଷୟରେ ଦୃଷ୍ଟି ଆକର୍ଷଣ କରିଛନ୍ତି । କାରଣ କ୍ଷୁଧା ତୃଷା ମନୁଷ୍ୟର ପ୍ରାଣମୟ କୋଷର ଏକ ଅଲଙ୍ଘନୀୟ ଆବଶ୍ୟକତା । ଏ ପ୍ରଶ୍ନର ଉତ୍ତରରେ ରାଜା ପରୀକ୍ଷିତ କି ଉତ୍ତର ଦେଇ କୃଷ୍ଣ କଥା ଶ୍ରବଣକୁ ଆଗେଇ ନେବାରେ ଉତ୍ସୁକ ହେଲେ ?

**ନ-ଏଷା-ଅତି ଦୁଃସହା କ୍ଷୁତ୍‌ମାଂ ତ୍ୟକ୍ତ-ଉଦଂ ଅପି ବାଧତେ ।**
**ପିବନ୍ତଂ ତ୍ୱତ୍ ମୁଖ-ଆମ୍ଭୋଜ ଚ୍ୟୁତଂ ହରିକଥା-ଅମୃତମ୍ ।୧୩ ।**

ଉ. ରାଜା ଥରେ ତୃଷା ଆତୁର ହୋଇ ଶମିକ ମୁନିଙ୍କ ଆଶ୍ରମରେ ଋଷିଙ୍କ ଗଳାରେ ମୃତସର୍ପ ଗଳାଇ ବ୍ରହ୍ମଶାପ ଗ୍ରସ୍ତ । ମହାସତ୍‌ସଙ୍ଗରେ ମହାନ୍ ହରିଭକ୍ତଙ୍କ ମୁଖ କମଳରୁ ସେ ଏବେ ଦୀର୍ଘ ୪ଦିନ ଧରି ହରିକଥାମୃତ ପାନରେ ମଜ୍ଜି ଯାଇଛନ୍ତି । ଏହା ଏକ ଭବ ମହ-ଔଷଧି । ଏ ରସ ଏକ ବିଚିତ୍ର ରସ । ଏ ରସ ପାନରେ ସଂସାରର କ୍ଷୁଧା-ତୃଷା-କାମ-କ୍ରୋଧ ଆଦି ଜ୍ୱାଳା ପାଶୋର ଯାଏ । ଖାଲି ପ୍ରାଣମୟ କୋଷ କାହିଁକି ପଞ୍ଚକୋଷ (ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ) ନଷ୍ଟ ହୋଇଯାଆନ୍ତି । ଦିବ୍ୟ ଆନନ୍ଦମୟ କୋଷରେ ଦିବ୍ୟ ଆନନ୍ଦ ଆତ୍ମ ପ୍ରକାଶ କରେ । ଆଜି ସେହି ଅବସ୍ଥାରେ ମହାରାଜ ପରୀକ୍ଷିତ ପହଞ୍ଚି ସାରିଛନ୍ତି । ସୁତରାଂ କ୍ଷୁଧା ତୃଷାକୁ ଡ଼ରିବାର କାରଣ ନାହିଁ ତାଙ୍କ ପକ୍ଷରେ ।

**ଶ୍ରୀ ଶୁକ ଉବାଚ**

ପ୍ରଶ୍ନ-୭: ଏ ଯାବତ ବିଗତ ୧୩ଶ୍ଳୋକରେ ରାଜା ପରୀକ୍ଷିତ କେବଳ କୃଷ୍ଣ ସମ୍ବନ୍ଧୀୟ ପ୍ରଶ୍ନ ମାନଙ୍କର ଝଡ଼ି ଲଗାଇ ଚାଲିଥିଲେ । ରାଜାଙ୍କ ପ୍ରଶ୍ନରେ କ'ଣ ଏପରି ବିଶେଷତା ଥିବାର ଦେଖି ବକ୍ତା ଶୁକଦେବଜୀଙ୍କର ଚିତ୍ତ ପ୍ରସନ୍ନ ହୋଇଗଲା ?

**ସମ୍ୟକ୍ ବ୍ୟବସିତା ବୁଦ୍ଧିଃ ତବ ରାଜର୍ଷି ସତ୍ତମ ।**
**ବାସୁଦେବ କଥାୟାଂ ତେ ଯତ୍‌ଜାତା ନୈଷ୍ଠିକୀ ରତି ॥୧୫॥**

ଉ. ସାଧାରଣ ଲୋକେ ପିଲା କୁଟୁମ୍ବ, ଦେହ ପାଆ ଟଙ୍କା ପଇସା, କ୍ଷମତା, ଜମି ବାଡ଼ି ସମ୍ପର୍କୀୟ କଥା ହୁଅନ୍ତି ପ୍ରଶ୍ନ ଉତ୍ତର ମାଧ୍ୟମରେ । ଯାହାକୁ ଆଧ୍ୟାତ୍ମଶାସ୍ତ୍ରରେ ଗ୍ରାମ୍ୟ କଥା କହି ହେୟ ଭାବିବାକୁ ହୁଏ । କାରଣ ସେଭଳି କଥାର ପ୍ରଶ୍ନ-ଉତ୍ତର ଉଭୟ ଚିତ୍ତ ମଳିନତାର ଲକ୍ଷଣ ।

ଏଠାରେ ରାଜା କିନ୍ତୁ ଖାଣ୍ଟି କୃଷ୍ଣ କଥା ପଚାରି ବସିଛନ୍ତି । ମନ-ବୁଦ୍ଧି-ଚିତ୍ତ-ଅହଙ୍କାର ନିର୍ମଳତାର ଏହା ଏକ ନିଶ୍ଚିତ ଲକ୍ଷଣ । ଯାହା ସମ୍ୟକ୍ ବ୍ୟବସିତା ବୁଦ୍ଧି ଶବ୍ଦ ଦ୍ୱାରା ବ୍ୟଞ୍ଜିତ ହୋଇଛି । ସେଥିପାଇଁ ସିନା ରାଜାଙ୍କର କୃଷ୍ଣ କଥା ଶ୍ରବଣରେ ବଳବତୀ ଇଚ୍ଛା-ଆଗ୍ରହ-ରତି ହୋଇଛି । ତାହା ପୁଣି ନିଷ୍ଠାର ସହିତ କ୍ଷୁଧା-ତୃଷା ଭୁଲି । ବକ୍ତା ଶିରୋମଣି ଶୁକଦେବଜୀ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ରାଜାଙ୍କୁ ଏଭଳି ଆଗ୍ରହ ଲାଗି ସାଧୁବାଦ ଜଣାଇବାକୁ ଭୁଲି ନାହାନ୍ତି ।

ପ୍ରଶ୍ନ-୮ : ହରିକଥା ଶ୍ରବଣ-କୀର୍ତ୍ତନ ସ୍ଥାନକୁ ସତ୍‌ସଙ୍ଗ ସଭା କୁହାଯାଏ । ଏଭଳି ସତ୍‌ସଙ୍ଗରେ କ'ଣ କେବଳ ବକ୍ତା ଶ୍ରୋତାଙ୍କର ଶ୍ରେୟ ମଙ୍ଗଳ ସାଧିତ ହୁଏ ?

**ବାସୁଦେବ କଥା ପ୍ରଶ୍ନଃ ପୁରୁଷାନ୍ ତ୍ରୀନ୍ ପୁନାତି ହି ।**
**ବକ୍ତାରଂ ପୃଚ୍ଛକଂ ଶ୍ରୋତୃନ୍ ତତ୍‌ପାଦ ସଲିଳଂ ଯଥା ।।୧୬।।**

ଉ. ଗଙ୍ଗାନଦୀକୁ ତ୍ରିପଥଗା କୁହାଯାଏ । ଗଙ୍ଗାଜଳ ସ୍ୱର୍ଗରେ ସ୍ୱର୍ଣ୍ଣଦୀ (ସୁରନଦୀ), ପୃଥ୍ୱୀରେ ଭାଗିରଥୀ ଓ ପାତାଳରେ ଭୋଗବତୀ ବୋଲାଇ ତ୍ରିଲୋକ ପବିତ୍ର କରନ୍ତି । ପୁଣି ଶାଳଗ୍ରାମ ବା ଶ୍ରୀହରିଙ୍କ ବିଗ୍ରହ ଧୌତ ଜଳ ସାଧକର ସ୍ଥୂଳ, ସୂକ୍ଷ୍ମ ଓ କାରଣ ତିନି ଶରୀରଙ୍କୁ ପବିତ୍ର କରିଥାନ୍ତି । ସେହି ନ୍ୟାୟରେ କୃଷ୍ଣକଥା ବକ୍ତା, ଶ୍ରୋତା ମାନଙ୍କ ସହିତ କୃଷ୍ଣକଥା ସମ୍ବନ୍ଧୀୟ ପ୍ରଶ୍ନକର୍ତ୍ତା ଏଭଳି ତିନି ପ୍ରକାର ସାଧକକୁ ମାର୍ଗଦର୍ଶନ କରାଇଥାନ୍ତି । କିନ୍ତୁ ପ୍ରଶ୍ନକର୍ତ୍ତା ପ୍ରଣିପାତ ପୂର୍ବକ ସେବା ସହିତ ବିନମ୍ରତାଯୁକ୍ତ ହୋଇ ହରିକଥା ସମ୍ବନ୍ଧୀୟ ପରିପ୍ରଶ୍ନ କଲେ ତାହା ସମ୍ଭବ ହୁଏ ।

ପ୍ରଶ୍ନ-୯ : ମର୍ତ୍ତ୍ୟ ଲୋକରେ ପ୍ରାୟତଃ ବ୍ରହ୍ମା, ବିଷ୍ଣୁ ଓ ଶ୍ରୀ ଶଙ୍କରଜୀ ଅବତାର ଗ୍ରହଣ କରନ୍ତି । ବେଳେବେଳେ ବିଶେଷ ପରିସ୍ଥିତି ଉପୁଜିଲେ ତିନି ଠାକୁରଙ୍କ ନିୟନ୍ତ୍ରଣ କର୍ତ୍ତା ଶ୍ରୀ ବୈକୁଣ୍ଠ ବିହାରୀଙ୍କୁ ମଧ୍ୟ ଅବତାର ନେବାକୁ ହୋଇଥାଏ । ଏଥରକ ଏଭଳି କି ଅତିବିଶେଷ ପରିସ୍ଥିତି ଉପୁଜିଥିଲା ଯାହା ଫଳରେ ସ୍ୱୟଂ ଗୋଲୋକ ବିହାରୀ ଶ୍ରୀକୃଷ୍ଣଙ୍କୁ ଅବତାର ନେବାକୁ ପଡ଼ିଲା ?

**ଭୂମିଃ ଦୃପ୍ତ ନୃପ ବ୍ୟାଜ ଦୈତ୍ୟ ଅନୀକ ଶତ-ଅୟୁତୈଃ ।**
**ଆକ୍ରାନ୍ତା ଭୂରିଭାରେଣ ବ୍ରହ୍ମାଣଂ ଶରଣଂ ଯଯୌ ॥୧୭॥**

ଉ. ଦ୍ୱାପରଯୁଗ ଶେଷ ପାଦରେ କାଳପ୍ରବାହରେ ତମୋଗୁଣର ଅତ୍ୟନ୍ତ ବୃଦ୍ଧି ଘଟିଲା । ଆସୁରୀ ଶକ୍ତି ପ୍ରବଳ ହେଲା । ନାସ୍ତିକତା ଘୋଟିଗଲା । କପଟଚାରୀ ଲୋକେ ଶାସନଗାଦୀ ଅଧିକାରୀ କରିନେଲେ । ଅସଂଖ୍ୟ ଦୈତ୍ୟ ପ୍ରକୃତିର ଲୋକଙ୍କୁ ସୈନ୍ୟ ବାହିନୀରେ ସାମିଲ ହୋଇ ସନ୍ଥ, ସାଧୁ ସମାଜର ଦୁଃଖର କାରଣ ହେଲେ । କଂସ ଆଦି ରାକ୍ଷସ, ରାକ୍ଷସୀ ଉତ୍ପାତରେ ଭୂମାତା ମର୍ମାନ୍ତିକ ପୀଡ଼ା ଯନ୍ତ୍ରଣାରେ ତ୍ରାହି ତ୍ରାହି ଡ଼ାକିଲେ । ଶେଷରେ ଧରାଦେବୀ ଧେନୁରୂପ ଧାରଣ କରି ସୃଷ୍ଟିକର୍ତ୍ତା ବ୍ରହ୍ମଦେବଙ୍କ ଠାରେ ଶରଣ ପଶିଲେ । ଆଶୁ ପ୍ରତିକାର ଲୋଡ଼ିଲେ ।

ବ୍ରହ୍ମାଙ୍କର ପ୍ରତିକଳ୍ପ (ଏକଦିନ) ଆୟୁଷରେ ଭଗବାନ କୃଷ୍ଣଙ୍କର ଥରଟିଏ ଅବତାର ହୋଇଥାଏ । ୧୪ମନ୍ୱନ୍ତର କାଳ (ଏକ କଳ୍ପ) ମଧ୍ୟରୁ ୬ମନ୍ୱନ୍ତର କାଳ ବିତିସାରିଥାଏ । ୭ମ ମନ୍ୱନ୍ତର (ବୈବସ୍ୱତ)ର ୨୭ ଚତୁର୍ଯୁଗୀ ଅତୀତ ହୋଇସାରିଥାଏ । ଏହି ୨୮ତମ ଚତୁର୍ଯୁଗୀର ଦ୍ୱାପର ଯୁଗରେ ତାଙ୍କ ଅବତାରକାଳ ଉପସ୍ଥିତ । ବ୍ରହ୍ମା ତାଙ୍କ ଧ୍ୟାନ ବଳରେ ଜାଣିପାରିଲେ ଶ୍ରୀକୃଷ୍ଣଙ୍କର ଅବତାରର ସେଇ ଶୁଭ ମୁହୂର୍ତ୍ତ ଉପସ୍ଥିତ ।

ପ୍ରଶ୍ନ-୧୦: ଭୂମାତାଙ୍କୁ ସପ୍ତ ପର୍ବତ, ସପ୍ତ ସାଗର ଆଦି ଭାର ବୋଧ ହୋଇନଥାନ୍ତି । ତାଙ୍କ ସନ୍ତାନ ମନୁଷ୍ୟ-ରାକ୍ଷସ-ଅସୁର ଦେବତା ନିଜେ ହରି ଭଜନ ନ କଲେ ଓ ଅନ୍ୟକୁ କରାଇ ନଦେଲେ ବସୁମାତାଙ୍କୁ ଅତ୍ୟନ୍ତ ପୀଡ଼ା ହୁଏ । ସେଭଳି ସନ୍ତାନର ପାଦଭାରା ସହିବାକୁ ସେ କୁଣ୍ଠିତା ହୁଅନ୍ତି । କଂସ ଭଳି ଅସୁରମାନେ ସାଧୁ ବୈଷ୍ଣବଙ୍କ ପୀଡ଼ାର କାରଣ ହୁଅନ୍ତେ ବ୍ରହ୍ମାଜୀଙ୍କ ପାଖରେ ଅଶ୍ରୁପୂର୍ଣ୍ଣ ଲୋଚନରେ ଗୋଡ଼ ଭାଙ୍ଗି ଆଜି ଠିଆ ହୋଇଛନ୍ତି ସେ । ସୃଷ୍ଟିକର୍ତ୍ତା ଜାଣିଲେଣି ଏହାର ସମାଧାନ, ବିଷ୍ଣୁ, ଶଙ୍କର କି ନାରାୟଣ କାହାରି ହାତରେ ନାହିଁ । ସୁତରାଂ ବ୍ରହ୍ମାଜୀ ଏ ଅଡୁଆ ପରିସ୍ଥିତିରେ ପଡ଼ି କି ସମାଧାନ ସୂତ୍ର ବାହାର କଲେ ?

**ବ୍ରହ୍ମା ତଦ୍ ଉପଧାର୍ଯ୍ୟ-ଅଥ ସହ ଦେବୈଃ ତୟା ସହ ।**
**ଜଗାମ ସ ତ୍ରିନୟନଃ ତୀରଂ କ୍ଷୀର ପୟୋନିଧେ ॥୧୯॥**

ଉ. ସେ ଆଉ ଗର୍ଭୋଦକ ଶାୟୀ ବିଷ୍ଣୁଙ୍କ ପାଖକୁ ନଯାଇ ସିଧା ଚାଲିଲେ କାରଣାର୍ଣ୍ଣବଶାୟୀ ମହାବିଷ୍ଣୁଙ୍କ ପାଖକୁ । ସେ ନିଜେ ରଜୋଗୁଣୀ । ଗୁଣାତୀତ

ମହାବିଷ୍ଣୁଙ୍କୁ ପ୍ରସନ୍ନ କରିବାକୁ ହେଲେ ତମୋଗୁଣର ସାହାଯ୍ୟ ମଧ୍ୟ ଲୋଡ଼ା । ସୁତରାଂ ସେ ସତ୍ତ୍ୱଗୁଣୀ ଦେବତାମଣ୍ଡଳୀ (ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି ଆଦି) ଙ୍କ ସହିତ ତମୋଗୁଣୀ ଦେବତା ଶ୍ରୀଶଙ୍କରଜୀ ଓ ଧେନୁରୂପୀ ବସୁମାତାକୁ ସାଙ୍ଗରେ ନେଇ ପହଞ୍ଚିଲେ କ୍ଷୀର ସାଗର (କାରଣାର୍ଣ୍ଣବ) କୂଳରେ ଥାଟ ବାଟ ଧରି ।

ପ୍ରଶ୍ନ-୧୧: ଶ୍ରୀମନ୍ ନାରାୟଣଙ୍କର ସହସ୍ରନାମ ମଧ୍ୟରେ ଦେବ ଦେବ, ପୁରୁଷ, ଜଗନ୍ନାଥ ଓ ବୃଷାକପି ଆଦି ନାମ ଅତ୍ୟନ୍ତ କଲ୍ୟାଣକାରୀ । ଏଭଳି ନାମର ଜପ, ଧ୍ୟାନ ଓ ସ୍ମରଣରେ ମଧ୍ୟ ଦେବତା, ନର ଅସୁର ସମସ୍ତଙ୍କର ଚିତ୍ତ ପ୍ରସନ୍ନତା ଲାଭ ହୁଏ । ମହାବିଷ୍ଣୁ ସଦା ସର୍ବଦା ଯୋଗନିଦ୍ରାରେ ଥାଆନ୍ତି । ମହାଲକ୍ଷ୍ମୀଙ୍କର ପାଦ ସମ୍ବାହନରେ ମଧ୍ୟ ତାଙ୍କ ନିଦ୍ରା ଭାଙ୍ଗେନା । ତାଙ୍କୁ ଜାଗ୍ରତ କରିବା ପାଇଁ ଦେବତା ମଣ୍ଡଳୀ କି ଉପାୟ ଅବଲମ୍ବନ କଲେ ?

**ତତ୍ର ଗତ୍ୱା ଜଗନ୍ନାଥଂ ଦେବଦେବଂ ବୃଷାକପିମ୍ ।**
**ପୁରୁଷଂ ପୁରୁଷସୂକ୍ତେନ ଉପତସ୍ଥେ ସମାହିତଃ ॥୨୦॥**

ଉ. ସମସ୍ତେ ଦତ୍ତ ଚିତ୍ତ ହୋଇ ବେଦ ବର୍ଣ୍ଣିତ ପୁରୁଷ ସୂକ୍ତ ଦ୍ୱାରା ଗୁରୁ ଗମ୍ଭୀର ସ୍ୱରରେ ଭଗବାନଙ୍କୁ ଆବାହନ କରିଥିଲେ । ମହାବୈକୁଣ୍ଠ ରାଜ୍ୟରେ ବୈକୁଣ୍ଠାଧିପତି ମହାବିଷ୍ଣୁଙ୍କୁ ଜାଗ୍ରତ କରାଇବାର ତାହାହିଁ ଏକମାତ୍ର ନିୟମ ବା ପଦ୍ଧତି ।

ପ୍ରଶ୍ନ-୧୨: ବ୍ରହ୍ମାଦି ଦେବଗଣଙ୍କ ଆକୁଳ ନିବେଦନ ମହାବିଷ୍ଣୁଙ୍କ କର୍ଣ୍ଣଗୋଚର ହେଲା । ବ୍ରହ୍ମାଦିଙ୍କୁ ଜଳଦଗମ୍ଭୀର ସ୍ୱରରେ ଆଦେଶ ଦେଲେ ଭଗବାନ । ବସୁମାତାଙ୍କ ପୀଡ଼ାର କାରଣ ସେ ଅବଗତ ଅଛନ୍ତି । ଏବେ ଶ୍ରୀକୃଷ୍ଣଙ୍କର କଳ୍ପ ଅବତାର କାଳ ଉପସ୍ଥିତ । ସେ ନର ଅବତାରରେ ପ୍ରେମଦାନ ଲୀଳା କରିବେ । ସାଙ୍ଗରେ ରହି ନାରାୟଣ ଅସୁରାଦି ବିନାଶ ଲୀଳା କରୁଥିବେ । ଅସୁର ସଂହାର କରି ଭୂଭାର ଲାଘବ କରିବା ତାଙ୍କର ଉଦ୍ଦେଶ୍ୟ । ସୂର୍ଯ୍ୟବଂଶରେ ଭଗବାନ ନାରାୟଣଙ୍କର ଶ୍ରୀରାମ ଅବତାର ହୋଇସାରିଛି । ଏବେ ଚନ୍ଦ୍ରବଂଶ ଅନ୍ତର୍ଗତ ଯଦୁବଂଶରେ ସେ ବସୁଦେବ ଦେବକୀଙ୍କ ପୁତ୍ରତ୍ୱ ସ୍ୱୀକାର କରିବେ । ତତ୍ ସହିତ ଗୋଲୋକ ବିହାରୀ କୃଷ୍ଣ ମଧ୍ୟ ଗୋକୁଳରେ ନନ୍ଦ ଯଶୋଦାଙ୍କ କୋଳମଣ୍ଡନ କରିବେ ।

ଶ୍ରୀରାମ ଅବତାରରେ ସଙ୍କର୍ଷଣ ଭଗବାନ ସାନୁଜ ଲକ୍ଷ୍ମଣ ଭାବରେ ଲୀଳା ସହାୟକ ହୋଇଥିଲେ । ଲୀଳା ଶେଷରେ ସେ ଇଚ୍ଛା ପ୍ରକଟ କରିଥିଲେ ପରବର୍ତ୍ତୀ କୃଷ୍ଣ ଲୀଳାରେ ସେ ଅଗ୍ରଜ ଭୂମିକା ନିଭାଇବାରେ ଆଗ୍ରହୀ । ଜୀବ ହିସାବରେ ଲକ୍ଷ୍ମଣଙ୍କ

ହରି ସେବା ଅବିସ୍ମରଣୀୟ । ଲକ୍ଷ୍ମଣଙ୍କ ଇଛା ପୂରଣ ଲକ୍ଷ୍ୟରେ ଏହି ଦିବ୍ୟ କୃଷ୍ଣ ଲୀଳାରେ କି ବ୍ୟବସ୍ଥା କରାଗଲା ?

**ବାସୁଦେବ କଳା-ଅନନ୍ତଃ ସହସ୍ର ବଦନଃ ସ୍ୱରାଟ୍ ।**
**ଅଗ୍ରତୋ ଭବିତା ଦେବୋ ହରେଃ ପ୍ରିୟ ଚିକୀର୍ଷୟା ॥୨୪॥**

ଉ. ଚତୁର୍ବ୍ୟୂହ ଭାବରେ ନାରାୟଣଙ୍କ କଳା ରୂପରେ ଶ୍ରୀରାମ-ଲକ୍ଷ୍ମଣ-ଭରତ-ଶତ୍ରୁଘ୍ନ, ବାସୁଦେବ-ଶଙ୍କର୍ଷଣ-ପ୍ରଦ୍ୟୁମ୍ନ-ଅନିରୁଦ୍ଧ ଓ ମନ-ବୁଦ୍ଧି-ଚିତ୍ତ-ଅହଙ୍କାର ରୂପରେ ସେ ଜଣାଶୁଣା । ପ୍ରଭୁ ଗୁଣ ଗାନ କରିବା ଲକ୍ଷ୍ୟରେ ସେ ସହସ୍ର ବଦନ ଓ ସ୍ୱୟଂଶାସିତ (ସ୍ୱରାଟ) ମଧ୍ୟ । ଅତଏବ ତାଙ୍କର ପ୍ରାକଟ୍ୟ ସର୍ବାଗ୍ରେ ହେବ । ଯାହା ଫଳରେ ସେ ତାଙ୍କ ଇଛା ପୂରଣ କରିବା ସହିତ ଶ୍ରୀକୃଷ୍ଣ ଲୀଳାରେ ଲୀଳାମୟ, ଇଛାମୟ ଭଗବାନ କୃଷ୍ଣଙ୍କ ପ୍ରିୟ କାର୍ଯ୍ୟ ମଧ୍ୟ କରିପାରିବେ ।

ବ୍ୟବସ୍ଥା କରାଗଲା ମହାମାୟା ଓ ଯୋଗମାୟା ଉଭୟ ପ୍ରକଟ ହେବେ ଲୀଳା ସହାୟିକା ହେବା ନିମନ୍ତେ । ବ୍ରହ୍ମାଜୀ ପରମ ପ୍ରସନ୍ନ ହୋଇ ଦେବଗଣଙ୍କ ସହିତ ନିଜ ନିଜ ଲୋକକୁ ଫେରି ଆସିଲେ । ସୂକ୍ଷ୍ମ ଲୋକରେ ଥିବା ଦେବୀ, ଦେବତା, ଅସୁର, ମନୁଷ୍ୟ ଆଦିଙ୍କୁ ନିଜ ନିଜ ଭୂମିକା ବାଣ୍ଟିବାରେ ଲାଗି ପଡ଼ିଲେ ।

ପ୍ରଶ୍ନ-୧୩: ଯୋଗମାୟାଙ୍କ ଯୋଜନା ଅନୁସାରେ ଭଗବାନଙ୍କର ନିତ୍ୟ ଲୀଳାଭୂମି ମଥୁରାରେ ଯଦୁବଂଶରେ ଅନ୍ୟମାନଙ୍କ ସହିତ ଶୂରସେନ ମଧ୍ୟ ପ୍ରକଟ ହେଲେ । ଶୂରସେନଙ୍କ ପୁତ୍ର ରୂପେ ଜନ୍ମନେଲେ ବସୁଦେବ । ତାଙ୍କ ଜନ୍ମରେ ସ୍ୱର୍ଗର ଦେବତାମାନେ ଖୁସିରେ ଦୁନ୍ଦୁଭି ବାଦନ କଲେ । ସୁତରାଂ ବସୁଦେବଙ୍କ ନାମ ରଖାଗଲା ଆନକଦୁନ୍ଦୁଭି । କାଳକ୍ରମେ ଉଗ୍ରସେନଙ୍କ ଭାଇ ଦେବକଙ୍କ କନ୍ୟା ଦେବକୀଙ୍କ ସହିତ ତାଙ୍କର ବିବାହ ବଡ଼ ଧୁମ୍‌ଧାମରେ ସମାହିତ ହେଲା । ଝିଅ ଜ୍ୱାଇଁଙ୍କ ବିଦାୟ ପର୍ବ ଆରମ୍ଭ ହେଲା । ଯୁବରାଜ କଂସ ନିଜେ ସାରଥୀ ହୋଇ ଭଉଣୀ ଭିଣୋଇଙ୍କୁ ରଥରେ ବସାଇ ନିଜେ ରଥ ଚଳାଇଲେ । ଯୌତୁକରେ ମିଳିଲା ୪୦୦ହସ୍ତୀ, ୧୮୦୦ରଥ, ୧୦,୦୦୦ଅଶ୍ୱ ସହିତ ୨୦୦ସୁନ୍ଦରୀ ଦାସୀ । ବିଦାୟ ବେଳାରେ ଶଙ୍ଖ, ତୁରୀ, ନାଗରା, ମୃଦଙ୍ଗ ବାଦ୍ୟରେ ଗଗନ ପବନ ମୁଖରିତ ହେଲା ।

ଦେବତାମାନେ ଦେଖିଲେ କଂସ ଯଦି ଦେବକୀ ବସୁଦେବଙ୍କ ସହିତ ଏପରି ବୁଝାମଣାର ସହିତ ମିଳିମିଶି ଚଳିବ ତେବେ କଂସଙ୍କୁ ସେମାନଙ୍କ ପୁତ୍ର ରୂପେ ଜନ୍ମନେଇ ଭଗବାନ ମାରିବେ କାହିଁକି ? ସେମାନଙ୍କ କଂସ ବଧ ଯୋଜନା ଫସର

ଫାଟିଯିବ । ସେଥିପାଇଁ ଦେବତାମାନେ ସେମାନଙ୍କ ମଧ୍ୟରେ ଦ୍ୱେଷ ସୃଷ୍ଟି କରିବାକୁ କି ବ୍ୟବସ୍ଥା କଲେ ?

**ପଥି ପ୍ରଗ୍ରହିଣଂ କଂସଂ ଆଭାଷ୍ୟ-ଆହ-ଅଶରୀର ବାକ୍ ।**
**ଅସ୍ୟାଃ ତ୍ୱାଂ ଅଷ୍ଟମୋ ଗର୍ଭୋ ହନ୍ତା ଯାଂ ବହସେଽବୁଧ ॥୩୪॥**

ଉ. କଂସ ରଥବାହୁଥିବାବେଳେ ଦେବତାମାନେ ଗମ୍ଭୀର ସ୍ୱରରେ ଶୂନ୍ୟବାଣୀରେ କହିଦେଲେ ଯେଉଁ ଦୁହିଙ୍କୁ ସେ ରଥରେ ବସାଇ ନେଉଛନ୍ତି, ଏତେ ଆନନ୍ଦରେ ସେଇମାନଙ୍କ ଅଷ୍ଟମ ଗର୍ଭର ସନ୍ତାନ ହସ୍ତରେ କଂସଙ୍କର ମୃତ୍ୟୁ ହେବ । ସୁତରାଂ କଂସ ନିତାନ୍ତ ମୂର୍ଖ (ଅବୁଧ) ଅଟନ୍ତି ।

ବସୁଦେବ ଉବାଚ

ପ୍ରଶ୍ନ-୧୪: କଂସ ତ ସ୍ୱଭାବରେ ଅସୁର । ପୂର୍ବ ଜନ୍ମର କାଳନେମୀ ରାକ୍ଷସ । ଭଉଣୀ ଭିଣୋଇଙ୍କ ପ୍ରତି ଦେଖାଉଥିବା କପଟ ପ୍ରେମ ଏବେ ବଦଳିଗଲା ତୀବ୍ର ଘୃଣାରେ । ସେ ଭୋଜ ବଂଶର କୁଳ ପାଂଶୁଳ ପାପୀ ନିଜକୁ ମୃତ୍ୟୁ ମୁଖରୁ ବଞ୍ଚାଇବାକୁ ଚାହିଁ ନବବିବାହିତା ଭଉଣୀକୁ ହତ୍ୟା କରିବାକୁ ଉଦ୍ୟତ ହେଲେ । ହାତରେ ଦେବକୀଙ୍କ କେଶ ଆକର୍ଷଣ କରି ତାଙ୍କ ଜୀବନ ନେବାକୁ ତୀକ୍ଷ୍ଣ ଖଡ଼୍‌ଗ ଉତ୍‌ତୋଳନ କଲେ । ପାଖରେ ଥାନ୍ତି ମହାନ୍ ବୈଦିକ ବିଦ୍ୱାନ ହରିଭକ୍ତ ବସୁଦେବଜୀ । ବସୁଦେବ ନିଜ ଶାସ୍ତ୍ରଜ୍ଞାନ ପେଡ଼ି ଖୋଲି ମୂର୍ଖ କଂସକୁ କ'ଣ କହି ନାରୀହତ୍ୟା ପାପରୁ ରକ୍ଷା କରିବାକୁ ଉପଦେଶ ଦେଲେ ?

**ମୃତ୍ୟୁଃ ଜନ୍ମବତାଂ ବୀର ଦେହେନ ସହ ଜାୟତେ ।**
**ଅଦ୍ୟ ବା-ଅବ୍ଦ ଶତାନ୍ତେ ବା ମୃତ୍ୟୁଃ ବୈ ପ୍ରାଣିନାଂ ଧ୍ରୁବଃ ॥୩୮॥**

ଉ. ବସୁଦେବଜୀ କଂସଙ୍କୁ ବୀର ବୋଲି ପ୍ରଥମେ ସମ୍ବୋଧନ କଲେ । ଭୋଜ ବଂଶର ଉଦୀୟମାନ ସୂର୍ଯ୍ୟ ବୋଲି କହି ପ୍ରଶଂସା ଅଜାଡ଼ି ଦେଲେ । କହିଲେ ଯେ ଜୀବ ଦେହ ଧାରଣ କଲେ ଦିନକରେ ବା ଶହେ ବର୍ଷରେ ହେଲେ ମଧ୍ୟ ମରିବାକୁ ପଡ଼େ । ମଣିଷ ମଲେ ଜନ୍ମ ହେବ କି ନହେବ ହୁଏତ ସନ୍ଦେହ ରହିପାରେ କିନ୍ତୁ ଜନ୍ମହେଲେ ମରିବା କଥାରେ ସନ୍ଦେହ ନଥାଏ । କାରଣ ଜୀବଟିଏ ଦେହ ପାଇବାବେଳେ ତାର ଆୟୁଷ, ଧନପ୍ରାପ୍ତି, ବିଦ୍ୟାପ୍ରାପ୍ତି ଓ କନ୍ୟାପ୍ରାପ୍ତି ଆଦି ନିର୍ଦ୍ଧାରିତ ହୋଇ ତା ସଙ୍ଗେ ସଙ୍ଗେ ଆସିଥାନ୍ତି ।

ପ୍ରଶ୍ନ-୧୫: ଦେହ ମରଣଶୀଳ । ଆତ୍ମା କିନ୍ତୁ ନିତ୍ୟ ଅମର । ଦେହ ଦେହାନ୍ତର ଭ୍ରମଣ ଜୀବ ମାତ୍ରକେ କରୁଥାନ୍ତି । ସେଭଳି ଗମ୍ଭୀର ତାତ୍ତ୍ୱିକ ଜ୍ଞାନକୁ କଂସଭଳି ଅସୁର ପ୍ରକୃତି ବିଶିଷ୍ଟ ଜନ୍ତୁଟିକୁ କ'ଣ କହି ବସୁଦେବଜୀ ବୁଝାଇବାକୁ ଚେଷ୍ଟା କଲେ ?

**ଦେହେ ପଞ୍ଚତ୍ୱଂ ଆପନ୍ନେ        ଦେହୀ କର୍ମ-ଅନୁଗୋଽବଶଃ ।**
**ଦେହାନ୍ତରଂ ଅନୁପ୍ରାପ୍ୟ        ପ୍ରାକ୍ତନଂ ତ୍ୟଜତେ ବପୁଃ ॥୩୯॥**

ଉ. ବସୁଦେବଜୀ ବୁଝାଇଲେ ଯେ ଜୀବର ଦେହ କ୍ଷିତି-ଅପ୍-ତେଜ-ମରୁଦ-ବ୍ୟୋମ ଏହି ପଞ୍ଚ ତତ୍ତ୍ୱରେ ଗଢ଼ା । ପୂର୍ବ ପୂର୍ବ ଜନ୍ମମାନଙ୍କ କୃତ କର୍ମର ଫଳକୁ ବିଚାର କରି ସୃଷ୍ଟିକର୍ତ୍ତା ଜୀବକୁ ପ୍ରାରବ୍ଧ ଭୋଗ କରିବାକୁ ଉପଯୁକ୍ତ ଦେହଟିଏ ଦିଅନ୍ତି । ସେ ବୃକ୍ଷଲତା, ପଶୁ, ପକ୍ଷୀ, ମଣିଷ, ଅସୁର ବା ଦେବତା ଶରୀର ଯାହା ବି ହେଉ । ସ୍ରଷ୍ଟାଙ୍କ ଉଦ୍ଦେଶ୍ୟ ଜୀବ କୃତ କର୍ମର ଶୁଭ ଅଶୁଭ ଫଳ ରୂପେ ସୁଖ-ଦୁଃଖ ଭୋଗ କରି ଉପରକୁ ଉଠୁ । ଭଗବାନକୁ ଖୋଜୁ । ଜୀବନରେ ପାଉଥିବା ସତ୍‌ସଙ୍ଗର ଲାଭ ଉଠାଉ । ନିଜ ଜୀବନକୁ ସାର୍ଥକ କରୁ କ୍ରମେ ଧର୍ମ-ଅର୍ଥ-ମୋକ୍ଷ-ପ୍ରେମ ଲକ୍ଷ୍ୟରେ ସାଧନ ଭଜନ କରି ।

ଗୋଟିଏ ଦେହ ପୁରୁଣା ହୋଇଗଲେ ବା ସାଧନାର ଅନୁପଯୋଗୀ ହେଲେ ପ୍ରାରବ୍ଧ କ୍ଷୟ ହେଉ ହେଉ ପୁଣି ନୂଆ ଦେହଟିଏ ଭଗବାନ ଦିଅନ୍ତି ତାକୁ କୃତ ଶୁଭ-ଅଶୁଭ କର୍ମକୁ ବିଚାର କରି । ସୁତରାଂ ମୃତ୍ୟୁ ଆଦୌ ଭୟଙ୍କର ନୁହେଁ । ଏହା ତ ଜୀବର କେବଳ ଦେହ ବଦଳ କ୍ରିୟା । ମୃତ୍ୟୁକୁ ଆମେ ଆଦୌ ଭୟ ନ କରି ତାକୁ ସ୍ୱାଗତ କରିବା ଉଚିତ ।

ପ୍ରଶ୍ନ-୧୬: ବେଦବେଦାନ୍ତର ନିଗୂଢ଼ ତତ୍ତ୍ୱ ବା ଗୀତା ଉପନିଷଦଙ୍କର ରହସ୍ୟମୟ ଦେହ ବଦଳ କ୍ରିୟାକୁ କଂସ ବୁଝି ପାରୁନାହାନ୍ତି ବୋଲି ବସୁଦେବ ହୃଦୟଙ୍ଗମ କଲେ । ଜଟିଳ କଥାଟିକୁ ସରଳ ଭାବରେ ବ୍ୟାଖ୍ୟାନ କରିବାକୁ ଯାଇ ବସୁଦେବଜୀ କେଉଁ କେଉଁ ଦୃଷ୍ଟାନ୍ତ ମାନ ଉପସ୍ଥାପନ କଲେ ସେତେବେଳେ ?

**ବ୍ରଜନ୍ ତିଷ୍ଠନ୍ ପଦ-ଏକେନ        ଯଥା-ଏବ-ଏକେନ ଗଚ୍ଛତି ।**
**ଯଥା ତୃଣ-ଜଳୌକା-ଏବଂ        ଦେହୀ କର୍ମଗତିଂ ଗତଃ ॥୪୦॥**

ଉ. ଦ୍ୱିପାଦ ମନୁଷ୍ୟ ଚାଲିଲାବେଳେ ଗୋଟିଏ ପାଦ ଆଗରେ ରଖିଲେ ଯାଇ ପଛ ପାଦଟିକୁ ଉଠାଇଥାଏ । ଠିକ୍ ସେହିପରି ଜୋକ (ଜଳୌକା) ପୋକଟି

ତୃଣ (କ୍ଷୁଦ୍ର ବୃକ୍ଷ) ପତ୍ର ଦେଇ ଗତି କଲାବେଳେ ଆଗ ପତ୍ରଟିକୁ ତା ପାଦରେ ଜାବୁଡ଼ି ଧରିବା ପରେ ପଛର ପତ୍ରଟିକୁ ଛାଡ଼ିଥାଏ । ତା ପୂର୍ବରୁ ନୁହେଁ ।

ସେହି ନ୍ୟାୟରେ ଗୋଟିଏ ଜୀବ ମୃତ୍ୟୁ ସମୟରେ ତାର ଭବିଷ୍ୟତ ଶରୀରକୁ ଦେଖିପାରେ । ଏହା କୃପାମୟ ସୃଷ୍ଟି କର୍ତ୍ତାଙ୍କର ବିଧାନ । ମୃତ୍ୟୁ ହେଉ ହେଉ ନୂତନ ଶରୀର ଦୃଶ୍ୟମାନ ହୁଏ । ସେ ଭବିଷ୍ୟତରେ ସୂକ୍ଷ୍ମ ଶରୀରକୁ ପ୍ରବେଶ କରୁ କରୁ ପୁରୁଣା ଶରୀରକୁ ଛାଡ଼ିଥାଏ । ପାପୀ ଲୋକେ ଅଧମ ଶରୀରକୁ ଯାଉଥିବାରୁ ମୃତ୍ୟୁ ବେଳରେ ଦୁଃଖିତ ହେଉଥିବାବେଳେ ପୁଣ୍ୟବାନ୍ ସାଧକମାନେ ଉଚ୍ଚ ଉତ୍ତମ ଶରୀର ପ୍ରାପ୍ତିହେତୁ ମହା ଆନନ୍ଦରେ ପୁରୁଣା ଦେହ ତ୍ୟାଗ କରନ୍ତି । କେବଳ ଏତିକି ମାତ୍ର ପାର୍ଥକ୍ୟ ଜୀବର ପାପମୟ ଓ ପୁଣ୍ୟମୟ ଜୀବନଯାତ୍ରାରେ ।

ପ୍ରଶ୍ନ-୧୭: ମୃତ୍ୟୁର ଏହି ରହସ୍ୟ ଜାଣି ନଥିବା ଲୋକ ପାପ କରିବା ସ୍ୱାଭାବିକ । ଜଗତର ଆପାତ ରମଣୀୟ ଇନ୍ଦ୍ରିୟ ସୁଖ ଭୋଗ ଲାଳସା ହେତୁ ସେ ଅଯଥା ପାପ କର୍ମ କରେ । ମରିବାକୁ ଡ଼ରେ । କଂସ ଦେହାତ୍ମ୍ୟ ବୁଦ୍ଧି ହେତୁ ପାପ କରିବାକୁ ପଶ୍ଚାତ୍‌ପଦ ହେଉନାହାନ୍ତି । ମଥୁରାରେ ଦେବକୀ କେବଳ ଜଣେ ସାମାନ୍ୟ ନାରୀ ନୁହନ୍ତି । କଂସଙ୍କର ଭଉଣୀ ମଧ୍ୟ । ତାକୁ ହତ୍ୟାକରି ମହାପାପ କରିବା ଏକାନ୍ତ ଅନୁଚିତ । ଗର୍ହିତ କାର୍ଯ୍ୟ । କଂସ ଏଥିରୁ କ୍ଷାନ୍ତ ହେବା ବିବେକର କାର୍ଯ୍ୟ ହୁଅନ୍ତା । କଂସ କିନ୍ତୁ ନିଜ ମରଣ ଭୟ ମୋହ ଗ୍ରସ୍ତ । ବିବେକ କାହିଁ ତାଙ୍କ ପାଖରେ ? ସାଧୁ ସଙ୍ଗ ପ୍ରଭାବରେ ଅବୋଧ ମୂର୍ଖ ମାନଙ୍କର ବିବେକ ମଧ୍ୟ ଜାଗ୍ରତ ହୋଇପାରେ । ନାରଦ ମହର୍ଷିଙ୍କ ସଂସର୍ଗ ହେତୁ ଦସ୍ୟୁ ରତ୍ନାକର ମଧ୍ୟ ସୃଷ୍ଟିର ଆଦିକବି ବାଲ୍ମୀକୀ ହୋଇପାରନ୍ତି । କଂସଙ୍କର ସୌଭାଗ୍ୟରାଣୀ କଂସଙ୍କୁ ସାହାଯ୍ୟ କଲେ କି ?

ଶ୍ରୀ ଶୁକ ଉବାଚ

**ନିର୍ବନ୍ଧଂ ତସ୍ୟ ତଂ ଜ୍ଞାତ୍ୱା ବିଚିନ୍ତ୍ୟ-ଆନକ ଦୁନ୍ଦୁଭିଃ ।**
**ପ୍ରାପ୍ତଂ କାଳଂ ପ୍ରତିବୋଢୁଂ ଇଦଂ ତତ୍ର-ଅନ୍ୱପଦ୍ୟତ ॥୪୭॥**

ଉ. ସ୍ୱଭାବରେ କଂସ ତମୋଗୁଣୀ । ସୁତରାଂ ଅତ୍ୟନ୍ତ ହତଭାଗ୍ୟ । ସେ ମହାପାପ କରିବାକୁ ମଧ୍ୟ ବଦ୍ଧ ପରିକର । ବସୁଦେବ ଦେଖିଲେ କଂସଙ୍କର କାଳ ପୁରିଲାଣି (ପ୍ରାପ୍ତ କାଳଂ) । ତାଙ୍କୁ ଏଥିରୁ ରୋକିବା ସାମର୍ଥ୍ୟ (ପ୍ରତିବୋଢୁଂ) ବସୁଦେବଙ୍କର ନାହିଁ । ସୁତରାଂ ଅନ୍ୟ ବିକଳ୍ପ ଉପାୟ (ଅନୁପଦ୍ୟତ) ଚିନ୍ତନ କଲେ ।

କାରଣ ବସୁଦେବଜୀ ଜଣେ ଅସାଧାରଣ ବୁଦ୍ଧିମାନ ବ୍ୟକ୍ତି ଥିଲେ । ସେ ନବ ବିବାହିତା ପତ୍ନୀଙ୍କର ମୃତ୍ୟୁର ଯେନତେନ ପ୍ରକାରେଣ ସାମନା କରିବାକୁ ସାହସ ବାନ୍ଧିଲେ ।

ପ୍ରଶ୍ନ-୧୮: ବସୁଦେବ ଦେଖିଲେ ସଙ୍କଟକାଳ ଉପସ୍ଥିତ । ସେ ନିଷ୍ଠୁର, ନିର୍ଲ୍ଲଜ, କ୍ରୂର, ପାପୀ କଂସ ସମ୍ମୁଖରେ କୃତ୍ରିମ ହସଟିଏ ହସିଲେ । କହିଲେ ଯେ ଦେବକୀଙ୍କର ସନ୍ତାନ ତାଙ୍କର ଶତ୍ରୁ । ଭଉଣୀ ଦେବକୀ ନୁହନ୍ତି । ଖାଲି ଭଉଣୀର ଅଷ୍ଟମ ଗର୍ଭ ସନ୍ତାନ କାହିଁକି ଗୋଟି ଗୋଟି କରି ଆଠଟି ଯାକ ସନ୍ତାନ କଂସ ହାତରେ ଟେକି ଦେବାକୁ ସେ ଶପଥ କରିଥିଲେ । କଂସ ମାନିଗଲେ ଏଥର । ଦେବକୀଙ୍କର ପ୍ରାଣରକ୍ଷା ହୋଇଗଲା । ଭଉଣୀ ଭିଣୋଇ ଦୁହିଁଙ୍କୁ ନଜର ବନ୍ଦୀରେ ସାତ କବାଟ ବନ୍ଦ କରି ରଖିଲେ କଂସ । ବର୍ଷକ ପରେ ଜାତ ପ୍ରଥମ ସନ୍ତାନ କୀର୍ତ୍ତିମାନଙ୍କୁ କଂସ ହସ୍ତରେ ଅର୍ପଣ କଲେ ବସୁଦେବ । ଖଳଲୋକ ସଂସାରରେ ଯେ କୌଣସି କୁକାର୍ଯ୍ୟ କରିପାରେ । ସାଧୁ ଲୋକ ମଧ୍ୟ ନିଜ ସତ୍ୟ ରକ୍ଷା କରିବାକୁ ଯେକୌଣସି କଷ୍ଟକର କାର୍ଯ୍ୟ କରିପାରେ । ଶିବିଙ୍କ ମାଂସ ଦାନ, ହରିଶ୍ଚନ୍ଦ୍ରଙ୍କ ରାଜ୍ୟ ଦାନ, ଦଧୀଚୀଙ୍କ ଅସ୍ଥିଦାନ ଓ ବଳିରାଜଙ୍କ ସର୍ବସ୍ୱ ଦାନ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । କଂସ ମୁଗ୍ଧ ହେଲେ ବସୁଦେବଜୀଙ୍କ ସତ୍ୟପାଳନ ଘଟଣାରେ । ନବଜାତ ଶିଶୁକୁ ରାଜା କଂସ ସଙ୍ଗେ ସଙ୍ଗେ ହତ୍ୟା କରିଦେଲେ କି ?

**ପ୍ରତିଯାତୁ କୁମାରୋଽୟଂ ନ ହି-ଅସ୍ମାଦ୍ ଅସ୍ତି ମେ ଭୟମ୍ ।**
**ଅଷ୍ଟମାଦ୍ ଯୁବୟୋଃ ଗର୍ଭାତ୍ ମୃତ୍ୟୁଃ ମେ ବିହିତଃ କିଳ ॥୬୦॥**

ଉ. ଆଦୌ ହତ୍ୟା କଲେ ନାହିଁ । ଓଲଟି ଭିଣୋଇଙ୍କୁ ନରମ ଗଳାରେ ସାନ୍ତ୍ୱନାବାଣୀ ଶୁଣାଇଲେ ଯେ ସେମାନଙ୍କ ଅଷ୍ଟମ ଗର୍ଭଜାତ ସନ୍ତାନ ତାଙ୍କର ମୃତ୍ୟୁର କାରଣ ହେବ । ସୁତରାଂ ଏହି ପ୍ରଥମ ଗର୍ଭଜାତ ସନ୍ତାନକୁ ସେ ଆଦୌ ଭୟ କରୁନାହାନ୍ତି । ସେ ଆନନ୍ଦରେ ତାକୁ ଫେରାଇ ନେଇ ଯାଇ ପାରନ୍ତି ।

ପ୍ରଶ୍ନ-୧୯: ଉଦାସୀନ ମନରେ ଶିଶୁଟିକୁ ଧରି ବସୁଦେବ ପୁଣି ବନ୍ଦୀଶାଳାକୁ ଫେରି ଆସିଲେ । ନିଷ୍ଠୁର କଂସର ଦୟା ମାୟା ଉଭୟ କ୍ଷଣସ୍ଥାୟୀ । କି ଭରସା ଅସ୍ଥିର ମନା ଖଳ ଲୋକର ଆଶ୍ୱାସନା ବାଣୀରେ ?

ନନ୍ଦ, ଯଶୋଦା, ବସୁଦେବ, ଦେବକୀ, କଂସ ଓ କଂସ ଅନୁଚରଗଣ ସୂକ୍ଷ୍ମ ଲୋକରୁ ଆସିଥାନ୍ତି କୃଷ୍ଣ ଲୀଳାରେ ନିଜ ନିଜ ଅଂଶ ଅଭିନୟ କରିବାକୁ । ନିର୍ବିଘ୍ନରେ ଦେବକାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ ନାରଦଜୀଙ୍କୁ ଏବେ ପ୍ରେରଣ କଲେ ଦେବତାମାନେ । ନାରଦଜୀ କଂସ ରାଜା ପ୍ରାସାଦରେ ପହଞ୍ଚି ତାଙ୍କ ବୁଦ୍ଧିକୁ ଭ୍ରଂଶ କରିଦେଲେ ।

ଦେବତାମାନଙ୍କ ଉଦ୍ଦେଶ୍ୟ, ଯୋଗମାୟାଙ୍କ ଯୋଜନାର ସୂଚନା ଦେଇଦେଲେ । ଅଜଣା ମୃତ୍ୟୁ ଭୟ ଆଶଙ୍କାରେ କମ୍ପି ଉଠିଲେ କଂସ । ସେ ଭାବିଲେ ଯେ ଦେବକୀଙ୍କର ଯେ କୌଣସି ସନ୍ତାନ ମଧ୍ୟ ତାଙ୍କର କାଳ ହୋଇପାରନ୍ତି । ପୁଣି ନିଜ ଯୋଗ ବଳରେ ଜାଣିଗଲେ ଯେ ସେ ପୂର୍ବଜନ୍ମର ସେହି କାଳନେମୀ ଅସୁର । ବିଷ୍ଣୁ ତାଙ୍କୁ ବଧ କରିଥିଲେ ସେତେବେଳେ । ଫଳରେ ସେ ଅସମ୍ଭବ ଭାବେ ବିଷ୍ଣୁଦ୍ୱେଷୀ ହୋଇଗଲେ । ବୈଷ୍ଣବମାନଙ୍କୁ ଅକାରଣ ପୀଡ଼ା ଦେବାରେ ଲାଗିଲେ । ଦେବକୀ ବସୁଦେବଙ୍କ କଟୀ ଓ ପାଦରେ ଲୌହ ଶୃଙ୍ଖଳ ପିନ୍ଧାଇ ଦେଲେ । ପ୍ରଥମ ସନ୍ତାନ ସହିତ ବର୍ଷକୁ ବର୍ଷ ଜନ୍ମିତ ସନ୍ତାନମାନଙ୍କୁ ଜନ୍ମ ହେଉ ହେଉ ମାରି ପକାଇଲେ । କଂସଙ୍କର ନିଷ୍ଠୁରତା କ'ଣ ଏତିକିରେ ପୂର୍ଣ୍ଣତା ଲାଭ କଲା କି ?

**ଉଗ୍ରସେନଂ ଚ ପିତରଂ ଯଦୁ ଭୋଜ-ଅନ୍ଧକ-ଅଧିପମ୍ ।**
**ସ୍ୱୟଂ ନିଗୃହ୍ୟ ବୁଭୁଜେ ସୂରସେନାନ୍ ମହାବଳଃ ॥୬୯॥**

ଉ. କଦାପି ନୁହେଁ । ସେତେବେଳେ କଂସଙ୍କର ପିତା ଉଗ୍ରସେନ ଯଦୁ, ଭୋଜ, ଅନ୍ଧକ ବଂଶର ପ୍ରତିନିଧି ରୂପେ ରାଜ୍ୟ ଶାସନ କରୁଥାନ୍ତି । ରାଜ୍ୟର ନାମ ଶୂରସେନ । ରାଜଧାନୀର ନାମ ମଥୁରା । ଯୁବରାଜ କଂସ ନିଜର ପାରିବାର ପଣିଆ (ମହାବଳଃ) ପ୍ରଦର୍ଶନ କଲେ ଏଥର । ନିଜର ମୃତ୍ୟୁ ଭୟରେ ରାଜ୍ୟର ଶାସନ ଦଣ୍ଡ ସେ ନିଜ ହାତକୁ ନେଲେ । ପିତା ଉଗ୍ରସେନଙ୍କୁ କେବଳ ଜବରଦସ୍ତି ଗାଦିଚ୍ୟୁତ କଲେ ନାହିଁ । ଚୌକିଦାର ରୂପରେ ନିଯୁକ୍ତ କଲେ ଦେବକୀ ବସୁଦେବ ବନ୍ଦୀଥିବା ବନ୍ଦୀଶାଳାର । ଏହା ହିଁ ବୃଦ୍ଧ ରାଜା ଉଗ୍ରସେନଙ୍କର ଭାଗ୍ୟର ବିଡ଼ମ୍ବନା । ସେ ବି ତ ଭଗବାନଙ୍କ ପରମ ଭକ୍ତ । ସେ ସହର୍ଷ ସ୍ୱୀକାର କଲେ ଏ ନିଯୁକ୍ତିକୁ । ପ୍ରତୀକ୍ଷା କଲେ ଭଗବାନଙ୍କ ପରବର୍ତ୍ତୀ ଲୀଳାକୁ ।

# ଅଥ ଦ୍ୱିତୀୟ ଅଧ୍ୟାୟଃ

## (ବ୍ରହ୍ମାଦି ଦେବତାମାନଙ୍କର ଗର୍ଭ ସ୍ତୁତି)

ପ୍ରଶ୍ନ-୨୦. ପିତାଙ୍କୁ ଗାଦିଚ୍ୟୁତ କରି ପ୍ରତାପୀ କଂସ ମଥୁରାରେ ରାଜା ହେଲେ । ସେ ଥିଲେ ମହାବଳଶାଳୀ । ସଭାରେ ବାଛି ବାଛି ପ୍ରଳମ୍ବ, ବକ, ଚାଣୁର, ତୃଣାବର୍ତ୍ତ, ମୁଷ୍ଟିକ, ଅରିଷ୍ଟ, କେଶୀ, ଦ୍ୱିବିଦ, ପୂତନା ଆଦିଙ୍କୁ ରଖି ରାଜକାର୍ଯ୍ୟ ଚଳାଇଲେ । ଜରାସନ୍ଧଙ୍କର ଅସ୍ତି, ପ୍ରାପ୍ତି ନାମକ ଦୁଇକନ୍ୟାଙ୍କୁ ବିବାହ କରି ସେ ନିଜକୁ ଆହୁରି ଶକ୍ତିଶାଳୀ ମନେ କଲେ । ଧରାକୁ ସରା ମଣିଲେ । ବାଣାସୁର, ଭୌମାସୁର ଆଦିଙ୍କ ସହାୟତା ମଧ୍ୟ ତାଙ୍କୁ ମିଳୁଥାଏ ।

ନିଜ ମୃତ୍ୟୁ ଭୟରେ ସେ ଯଦୁବଂଶୀ ମାନଙ୍କୁ ବିଦ୍ୱେଷ କରିବାରେ ଲାଗିଲେ । ମହା ମହା ବୀର ଜ୍ଞାନୀ ପଣ୍ଡିତମାନେ ମଧ୍ୟ କଂସ ଅତ୍ୟାଚାରରେ କୁରୁ, ପାଞ୍ଚାଳ, କୈକେୟ, ବିଦର୍ଭ ଆଦି ପାଖ ରାଜ୍ୟମାନଙ୍କୁ ପଳାୟନ କଲେ । ଆଉ କିଛି ଲୋକ କପଟରେ ଆଜ୍ଞା, ହଜୁର କରି ନିଜ ପଦବୀରେ ରହିବାକୁ ବାଧ୍ୟ ହେଲେ । ଶେଷରେ ଯୋଗମାୟାଙ୍କ ଯୋଜନା ଅନୁଯାୟୀ ବଡ଼ଠାକୁର ବଳରାମଜୀ ଦେବକୀଙ୍କ କେଉଁ ଗର୍ଭରେ ସ୍ଥାନ ପାଇଲେ ?

ଶ୍ରୀ ଶୁକ ଉବାଚ

**ସପ୍ତମୋ ବୈଷ୍ଣବଂ ଧାମ ଯଂ ଅନନ୍ତଂ ପ୍ରଚକ୍ଷତେ ।**
**ଗର୍ଭୋ ବିଭୂବ ଦେବକ୍ୟା ହର୍ଷ ଶୋକ ବିବର୍ଦ୍ଧନଃ ॥୫॥**

ଉ. ମହାବିଷ୍ଣୁଙ୍କର ନିତ୍ୟ ବିଶ୍ରାମ ସ୍ଥାନ (ବୈଷ୍ଣବ ଧାମଂ) ବଳରାମଜୀଙ୍କୁ ଶେଷନାଗ ଅନନ୍ତ କୁହାଯାଏ । ଜୀବର ସୀମିତ ଗର୍ଭରେ ଅସୀମ କୃଷ୍ଣ ଭଗବାନଙ୍କ ପ୍ରାକଟ୍ୟ ଲାଗି ସେଇ ଅନନ୍ତଦେବ ହିଁ ସପ୍ତମ ଗର୍ଭରେ ଦେବକୀଙ୍କ ଉଦରକୁ ଆସିଲେ । କାରଣ ଅଷ୍ଟମ ଗର୍ଭରେ ଶ୍ରୀକୃଷ୍ଣଙ୍କୁ ଆସିବାକୁ ହେବ । ଭଗବାନଙ୍କ ପ୍ରାକଟ୍ୟ ଲାଗି ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତି ତାଙ୍କର ଦାୟିତ୍ୱ । ୭ମ ଗର୍ଭରେ ବଳଦେବ ସ୍ଥାନ ପାଆନ୍ତେ ଦେବକୀ ବସୁଦେବ ପ୍ରସନ୍ନ ହେଲେ (ହର୍ଷ) ଯେ ଅଷ୍ଟମ ଗର୍ଭରେ ଭଗବାନଙ୍କ ପ୍ରାକଟ୍ୟ କାଳ ପାଖେଇ ଆସିଲା । ସେମାନେ ପୁଣି ଶୋକାପ୍ଲୁତ ହେଲେ ଯେ କଂସ ଆସି ଏହାକୁ ହତ୍ୟା କରିଦେବ ।

ପ୍ରଶ୍ନ-୨୧: ଇତି ମଧ୍ୟରେ ବିଶ୍ୱନିୟନ୍ତା ଭଗବାନ ସ୍ୱଶକ୍ତି ଯୋଗମାୟାଙ୍କୁ ଆଦେଶ ଦେଇ ଦେବକୀଙ୍କର ଏହି ଗର୍ଭସ୍ଥ ସନ୍ତାନକୁ ବସୁଦେବଙ୍କ ଅନ୍ୟତମା ପତ୍ନୀ ରୋହିଣୀଙ୍କ ଗର୍ଭକୁ ସ୍ଥାନାନ୍ତରିତ କରିଦେଲେ । ରୋହିଣୀ ସେତେବେଳେ ଗୋକୁଳରେ ନନ୍ଦରାଜାଙ୍କ ଗୃହରେ ଆଶ୍ରୟ ନେଇଥାନ୍ତି କଂସର ଅତ୍ୟାଚାର ଭୟରେ । ତେଣେ ସାରା ବ୍ରଜବାସୀ ବର୍ଷସାରା ଏକାଦଶୀ ବ୍ରତ କରିଛନ୍ତି ରାଜା ନନ୍ଦଙ୍କ କୋଳରେ ପୁତ୍ର ହେଉ ବୋଲି । ନନ୍ଦ-ଯଶୋଦାଙ୍କ କୋଳକୁ ମଣ୍ଡନ କରିବା ପାଇଁ ଭଗବାନ କି ଆଦେଶ ଦେଲେ ଯୋଗାମୟାକୁ ଶୁଭେ (କଲ୍ୟାଣମୟୀ) ବୋଲି ସମ୍ବୋଧନ କରି ?

**ଅଥ-ଅହଂ-ଅଂଶ ଭାଗେନ ଦେବକ୍ୟାଃ ପୁତ୍ରତାଂ ଶୁଭେ ।**
**ପ୍ରାପ୍ସ୍ୟାମି ତ୍ୱଂ ଯଶୋଦାୟାଂ ନନ୍ଦ ପତ୍ନ୍ୟାଂ ଭବିଷ୍ୟସି ॥୯॥**

ଉ. ଭଗବାନଙ୍କ ଯୋଜନା ବଡ଼ ବିଚିତ୍ର ଅଲୌକିକ । ଯଶୋଦାଙ୍କ କୋଳକୁ ଯୋଗାମାୟା ଯିବେ । ଯମଜ ସନ୍ତାନ ରୂପେ ସେ ଏକ ଅଂଶରେ କୃଷ୍ଣ ରୂପରେ ଯଶୋଦାଙ୍କ ଗର୍ଭରେ ତାଙ୍କ ସହିତ ମିଳିତ ହେବେ । ଅନ୍ୟ ଭାଗକ ନାରାୟଣ କଳା ସ୍ୱରୂପରେ ମଥୁରାରେ ଦେବକୀଙ୍କ ପୁତ୍ର ରୂପେ ପ୍ରକଟ ହେବେ । ଉଭୟ ସନ୍ତାନ ଜନ୍ମ ହୋଇ ଉଭୟ ମାତାଙ୍କୁ ପୁତ୍ରପ୍ରାପ୍ତି ସୁଖ ପ୍ରଦାନ କରିବେ ।

ପରେ ବସୁଦେବ ନାରାୟଣଙ୍କୁ ନେଇ ଗୋକୁଳ ପହୁଞ୍ଚାଇବେ । ସେତେବେଳେ କୃଷ୍ଣ ନାରାୟଣଙ୍କ ମିଳନ ହେଲେ କୃଷ୍ଣଙ୍କ ଚିନ୍ମୟ ଦେହରେ ନାରାୟଣ କଳା ବିଲୀନ ହୋଇଯିବ ।

ପ୍ରଶ୍ନ-୨୨: ଏହି ଭଗବନ୍ତ ଶକ୍ତି ସ୍ୱରୂପିଣୀ ଯୋଗମାୟା କେବେ ଅଷ୍ଟଭୁଜା କେବେ ଦଶଭୁଜା ରୂପରେ ସଂସାରୀ ଲୋକଙ୍କର ମନୋକାମନା ପୂରଣ କରନ୍ତି । ଲୋକେ ତାଙ୍କୁ ଧୂପ, ଦୀପ, ବଳି ଉପହାର ଆଦି ଦ୍ୱାରା ସନ୍ତୁଷ୍ଟ କରି ଦୁର୍ଗା, ଭଦ୍ରକାଳୀ, ବିଜୟା, ବୈଷ୍ଣବୀ, କୁମୁଦା, ଚଣ୍ଡିକା, କୃଷ୍ଣା, ମାୟା, ନାରାୟଣୀ, କନ୍ୟକା, ଈଶାନୀ, ଶାରଦା, ଅମ୍ବିକା ଇତ୍ୟାଦି ନାମରେ, ରୂପରେ ଡ଼ାକନ୍ତି ଓ ଉପାସନା କରନ୍ତି ।

ଅଘଟନ ପଟୀୟସୀ ଯୋଗମାୟାଙ୍କ ଦ୍ୱାରା ଗର୍ଭ ଆକର୍ଷଣ କରାଯାଇଥିବାରୁ ରୋହିଣୀଙ୍କ ସନ୍ତାନକୁ ସଙ୍କର୍ଷଣ କୁହାଯାଇଥାଏ । ସମଗ୍ର ଯଦୁକୁଳର ଭକ୍ତଗଣଙ୍କୁ ନିଜ ଶକ୍ତି ବଳରେ ପ୍ରସନ୍ନ ରଖିବା ସାମର୍ଥ୍ୟ ଥିବା ହେତୁ ତାଙ୍କୁ ବଳରାମ ବା ବଳଭଦ୍ର ମଧ୍ୟ କୁହାଯାଏ ।

ଭଗବାନଙ୍କ ଆଦେଶ ଶିରୋଧାର୍ଯ୍ୟ କଲେ ଜଗନ୍ମାତା ଯୋଗମାୟା । ସ୍ୱୀୟ

ଯୋଗଶକ୍ତି ବଳରେ ସେ ଗର୍ଭାନ୍ତରୀକରଣ କଲେ ବଳଦେବଜୀଙ୍କୁ । ସ୍ୱୟଂ ଯଶୋଦାଙ୍କ ଗର୍ଭରେ ଠାକୁରଜୀଙ୍କ ଯମଜ ଭଗିନୀ ରୂପରେ ସ୍ଥାନ ଅଧିକାର କଲେ । ସମଗ୍ର ବିଶ୍ୱର ଆତ୍ମା ବିଶ୍ୱାତ୍ମା ଷଡ଼ ଐଶ୍ୱର୍ଯ୍ୟପୂର୍ଣ୍ଣ ପ୍ରକଟ କରିବା କ୍ଷମତା ରଖିଲେ ତାଙ୍କୁ ଲୋକେ ଭଗବାନ କହନ୍ତି । ସେ ଏବେ ନିଜକୁ ପ୍ରକଟ କରିବାକୁ କି ଉପାୟ କଲେ ?

**ଭଗବାନ୍ ଅପି ବିଶ୍ୱାତ୍ମା ଭକ୍ତାନାଂ ଅଭୟଙ୍କରଃ ।**
**ଆବିବେଶ-ଅଂଶ ଭାଗେନ ମନ ଆନକ ଦୁନ୍ଦୁଭେଃ ॥୧୬॥**

ଉ.ଜ୍ଞାନୀମାନଙ୍କ ପାଇଁ ସେ ଅଜନ୍ମା । ଭକ୍ତମାନଙ୍କୁ ଅଭୟ ଦେବାକୁ ଆନନ୍ଦ ଦେବାକୁ ପୂର୍ଣ୍ଣ ପୁରୁଷୋତ୍ତମ ହୋଇ ଅଂଶର ଅଂଶ ଭାଗ ବା କଳା ଆକାରରେ ଶ୍ରୀକୃଷ୍ଣ ଓ ଶ୍ରୀମନ୍ ନାରାୟଣ ଦୁଇ ରୂପରେ ପ୍ରକଟ ହେଲେ । ବସୁଦେବ (ଆନକ ଦୁନ୍ଦୁଭି)ଙ୍କ ମନ (ହୃଦୟ) ଶୁଦ୍ଧ, ପବିତ୍ର, ନିର୍ମଳ ଥିବାରୁ ନାରାୟଣଙ୍କ ପ୍ରଥମ ଆବିର୍ଭାବ ସେହିଠାରେ ହିଁ ହେଲା । ଫଳରେ ଭଗବାନଙ୍କ ଭକ୍ତମାନେ ବସୁଦେବଙ୍କ ଅଲୌକିକ ଶାରୀରିକ ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇପଡ଼ିଲେ । ଅସୁର ରାଜା ମଧ୍ୟ ଏଥିରୁ ବାଦ ପଡ଼ିଲେନି ।

ପ୍ରଶ୍ନ-୨୩: ପୁଣି ଭଗବାନ ମାତା ଦେବକୀଙ୍କ ଗର୍ଭରେ ଲୌକିକ ଉପାୟରେ ନା ଅଲୌକିକ ଉପାୟରେ ପ୍ରକଟ ହେଲେ ?

**ତତୋ ଜଗତ୍‌ମଙ୍ଗଳଂ ଅଚ୍ୟୁତ-ଅଂଶଂ**
**ସମାହିତ ଶୂର ସୁତେନ ଦେବୀ ।**
**ଦଧାର ସର୍ବ-ଆତ୍ମକଂ ଆତ୍ମଭୂତଂ**
**କାଷ୍ଠା ଯଥା-ଆନନ୍ଦ କରଂ ମନସ୍ତଃ ॥୧୮॥**

ଉ. ବଳଦେବଜୀଙ୍କ ଗର୍ଭାନ୍ତରୀକରଣ ଭଳି ଠାକୁରଜୀଙ୍କର ଏହି ସ୍ଥାନାନ୍ତରୀକରଣ ମଧ୍ୟ ସଂପୂର୍ଣ୍ଣ ଅଲୌକିକ । ଭଗବାନଙ୍କ ଲୀଳା ଜ୍ଞାନୀମାନଙ୍କ ଲାଗି କାଳେ କାଳେ ଅବୋଧ । ବ୍ରହ୍ମାଶଙ୍କରଙ୍କର ମଧ୍ୟ । ପୂର୍ବ ଦିଗରେ (କାଷ୍ଠା) ଚନ୍ଦ୍ରଦେବ (ଆନନ୍ଦକରଂ) ଉଦୟ, ପ୍ରକଟ ହେବା ଭଳି ଭଗବାନ ଏକ ରୂପରେ ଦେବକୀ-ବସୁଦେବ ଉଭୟଙ୍କ ବାହାରେ ଥାଇ ମଧ୍ୟ ଅନ୍ୟରୂପରେ ଜଣକର ଶୁଦ୍ଧ ମନରୁ ଅନ୍ୟ ଜଣକ ଶୁଦ୍ଧ ମନକୁ ବା ହୃଦୟରୁ ହୃଦୟକୁ ସ୍ଥାନାନ୍ତରିତ ହୋଇଗଲେ । କାରଣ ସେ ସର୍ବ ଆତ୍ମକ ଓ ସର୍ବଭୂତ ମଧ୍ୟ । ଜଗତ ମଙ୍ଗଳ ବା ଜୀବ କଲ୍ୟାଣ ଲାଗି ସେ ଯେକୌଣସି କାର୍ଯ୍ୟ କରିପାରନ୍ତି । କର୍ତ୍ତୁଂ ସମର୍ଥ, ଅକର୍ତ୍ତୁଂ ସମର୍ଥ ଓ ଅନ୍ୟଥା କର୍ତ୍ତୁଂ ସମର୍ଥ ବୋଲି ସିନା ସେ ଭଗବାନ ବୋଲାନ୍ତି ।

ପ୍ରଶ୍ନ-୨୪: ବନ୍ଦୀଗୃହରେ ଥାଇ ଦେବକୀ ଅଷ୍ଟମ ଗର୍ଭରେ ଭଗବାନଙ୍କୁ ଧାରଣ କରିବା କଥା କଂସ ଖବର ପାଇଲେ । ସେଠାରେ ପହଞ୍ଚି ସେ ଘୋର ଆଶ୍ଚର୍ଯ୍ୟରେ ବୁଡି ଗଲେ । ଦେବକୀଙ୍କର ତେଜୀୟାନ୍ ରୂପ ଦର୍ଶନରେ ସେ ବୁଝିଗଲେ ଯେ ଏଥରକ ନିଶ୍ଚୟ ତାଙ୍କ ଶତ୍ରୁ ସ୍ୱୟଂ ବିଷ୍ଣୁ ପ୍ରକଟ ଅପେକ୍ଷାରେ ଅଛନ୍ତି । ଭାଳେଣି କଲେ ଯେ ଦେବକୀଙ୍କୁ ମାଇଲେ ମଲି ପୁଣି ନ ମାଇଲେ ମଧ ମଲି । ଭଗିନୀ ରୂପ ।ଗର୍ଭିଣୀ ନାରୀ ବଧ କଲେ ତାଙ୍କର ଶ୍ରୀ, ଆୟୁଷ ଓ ଯଶ ସବୁ ନଷ୍ଟ ହେବ । ସହଜେ ପାପୀ ଲୋକର ଜୀବନ ମରଣ ଉଭୟ ନିନ୍ଦନୀୟ । ସୁତରାଂ ଠିକ୍ କଲେ ଏବେ ଭଗିନୀ ବଧ ନକରି ବରଂ ଶ୍ରୀହରିଙ୍କ ଜନ୍ମକୁ ପ୍ରତୀକ୍ଷା କରିବା ବିବେକୀର କାମ ହେବ । ନିଶ୍ଚିତ ଆସନ୍ନ ମୃତ୍ୟୁ ଭୟରେ ମହାବଳୀ କଂସଙ୍କ ଦୃଷ୍ଟିରେ ସାରା ସୃଷ୍ଟି କିଭଳି ବୋଧ ହେଲା ?

**ଆସୀନଃ ସଂବିଶନ୍ ତିଷ୍ଠନ୍ ଭୁଞ୍ଜାନଃ ପର୍ଯ୍ୟଟନ୍ ମହୀମ୍ ।**
**ଚିନ୍ତୟାନୋ ହୃଷୀକେଶଂ ଅପଶ୍ୟନ୍ ତତ୍ମୟଂ ଜଗତ୍ ॥୨୪॥**

ଉ. କଂସଙ୍କୁ ଆଉ ସଂସାର ଦିଶିଲା କେଉଁଠି ? ସାରା ଜଗତ ତାଙ୍କୁ କୃଷ୍ଣମୟ ବୋଧ ହେଲା । ବସିବାବେଳେ, ଶୟନେ ସ୍ୱପନେ ଜାଗରଣେ, ଭୋଜନବେଳେ (ଭୁଞ୍ଜାନଃ), ଗମନେ (ପର୍ଯ୍ୟଟନ୍ ମହୀମ୍) ଚିନ୍ତନରେ ମଧ ବିଶ୍ୱାତ୍ମା ହୃଷୀକେଶ ଜ୍ୟୋତି ରୂପରେ ତାଙ୍କୁ ଦୃଶ୍ୟମାନ୍ ହେଲେ ।

ପ୍ରଶ୍ନ-୨୫: ଭଗବାନଙ୍କ ପ୍ରକଟ ସମୟ ନିକଟ ହୁଅନ୍ତେ, ସୃଷ୍ଟିକର୍ତ୍ତା ବ୍ରହ୍ମାଜୀ, ଶଙ୍କରଜୀ, ନାରଦ, ବ୍ୟାସ ସନକାଦି ମୁନିଗଣଙ୍କ ସହିତ ଇନ୍ଦ୍ର, ବରୁଣାଦି ଦେବତାମାନଙ୍କୁ ଧରି ସୂକ୍ଷ୍ମ ରୂପରେ ସମସ୍ତଙ୍କ ଦୃଶ୍ୟ ଆଢୁଆଳରେ ରହି ବନ୍ଦୀ ଘରେ ଉପସ୍ଥିତ ହୋଇଗଲେ । ସେମାନେ ପରମ ସତ୍ୟ, ୧୬କଳା ଭଗବାନ କୃଷ୍ଣଙ୍କୁ ୧୬ଶ୍ଲୋକରେ (୨୬-୪୧) କିଭଳି ୯ଟି ସତ୍ୟ ଶବ୍ଦରେ ଗର୍ଭସ୍ତୁତି କରିଥିଲେ ?

**ସତ୍ୟବ୍ରତଂ ସତ୍ୟପରଂ ତ୍ରିସତ୍ୟଂ**
**ସତ୍ୟସ୍ୟ ଯୋନିଂ ନିହିତଂ ଚ ସତ୍ୟେ ।**
**ସତ୍ୟସ୍ୟ ସତ୍ୟଂ ଋତ ସତ୍ୟ ନେତ୍ରଂ**
**ସତ୍ୟାତ୍ମକଂ ତ୍ୱାଂ ଶରଣଂ ପ୍ରପଦ୍ୟେ ॥୨୬॥**

ଉ. ଭଗବାନଙ୍କ ଏକ ନାମ ସତ୍ୟ । ନଅ ସଂଖ୍ୟାଟି ଅବ୍ୟୟ ଅକ୍ଷୟ ସୂଚକ । ଅତଏବ ନଅଟି ସତ୍ୟ ଶବ୍ଦ ବ୍ୟବହାର କରି ତାଙ୍କର ସ୍ତୁତି ଗାନର ଆୟମାରମ୍ଭ କଲେ ।

ହେ ସତ୍ୟ ସଂକଳ୍ପ, ଆପଣ ସତ୍ୟଦ୍ୱାରା ପ୍ରାପଣୀୟ ସ୍ଥୁଳ, ସୂକ୍ଷ୍ମ, କାରଣ ତିନି ଅବସ୍ଥାରେ (ତ୍ରିସତ୍ୟଂ) ପ୍ରକଟିତ ହୁଅନ୍ତି । ଆପଣ ପୁଣି ସତ୍ୟର କାରଣ ଓ ଅଣ୍ଡାନ୍ତରସ୍ଥ ପରମାଣୁ ଚୟାନ୍ତରସ୍ଥ ରୂପେ ସତ୍ୟ ମଧ୍ୟରେ ନିହିତ । ଆପଣ ସତ୍ୟର ମଧ୍ୟ ସତ୍ୟ ସ୍ୱରୂପ ପରମ ସତ୍ୟ ଅଟନ୍ତି । ବେଦ ଓ ପୁରାଣ ଆପଣଙ୍କର ଦୁଇ ନେତ୍ର ସ୍ୱରୂପ । ଆପଣଙ୍କ ସମ୍ବନ୍ଧିତ ସକଳ ନାମ, ରୂପ, ଲୀଳା, ଗୁଣ, ଧାମ, ଭକ୍ତ, ଅସ୍ତ୍ର, ଶସ୍ତ୍ର, ଆଭୂଷଣ, ପୀତାମ୍ବର ଆଦି ବସ୍ତ୍ର ମଧ୍ୟ ସତ୍ୟାତ୍ମକ ବା ଦିବ୍ୟ ଅଟନ୍ତି । ଅତଏବ ଆପଣଙ୍କ ଚରଣ କମଳରେ ଆମେ ସମସ୍ତେ ଯୋଡ଼ ହସ୍ତରେ ଶରଣ ପଶୁଛୁ ।

ପ୍ରଶ୍ନ- ୨୬: ଭଗବାନଙ୍କ ଦିବ୍ୟ ସ୍ୱରୂପ ବର୍ଣ୍ଣନା କରି ସାରିବା ପରେ ଦେବଗଣ ଜୀବର ପଞ୍ଚଭୌତିକ ଜଡ଼ ପୁଣି ନାଶବାନ ଶରୀର(ସଂସାର ଅଂଶ)କୁ କିଭଳି ଶବ୍ଦରେ ବର୍ଣ୍ଣନା କଲେ ?

**ଏକାୟନୋଽସୌ ଦ୍ୱିଫଳଃ ତ୍ରିମୂଳଃ**
**ଚତୁଃରସଃ ପଞ୍ଚବିଧଃ ଷଡ଼୍-ଆତ୍ମା ।**
**ସପ୍ତତ୍ୱକ୍ ଅଷ୍ଟ ବିଟପୋ ନବ-ଅକ୍ଷୋ**
**ଦଶଛଦୀ ଦ୍ୱିଖଗୋ ହି-ଆଦି ବୃକ୍ଷଃ ॥୨୭॥**

ଉ. ୧ଠାରୁ ୧୦ ସଂଖ୍ୟା ଉଚ୍ଚାରଣ କରି ବଡ଼ ନାଟକୀୟ ଢ଼ଙ୍ଗରେ ଜୀବନର (ଅସୌ) ଶରୀର ବର୍ଣ୍ଣନା କଲେ ସେମାନେ । ଜୀବର ଦେହର ଗତି (ଅୟନ) କେବଳ ସେଇ ଏକ ପରମାତ୍ମା । ପାପ-ପୁଣ୍ୟ ଦୁଇ ବୀଜର ସୁଖ-ଦୁଃଖ ଦୁଇ ଫଳ ମିଳେ ଏଥିରୁ । ସତ୍ତ୍ୱ-ରଜ-ତମୋ ତିନି ଗୁଣରେ ଏହା ନିର୍ମିତ । ଧର୍ମ-ଅର୍ଥ-କାମ-ମୋକ୍ଷ ରୂପକ ଚାରୋଟି ରସ ଆସ୍ୱାଦନ କରାଯାଏ ଜୀବର ଭିନ୍ନ ଭିନ୍ନ କର୍ମଦ୍ୱାରା । ପଞ୍ଚ ଜ୍ଞାନେନ୍ଦ୍ରିୟ ସୂଚିତ କରୁଛନ୍ତି ପଞ୍ଚବିଧଃ ପଦ ଦ୍ୱାରା । ଜନ୍ମ-ମୃତ୍ୟୁ, ଶୋକ-ମୋହ ଓ କ୍ଷୁଧା-ତୃଷା ବା ଷଡ଼ ଉର୍ମି ଷଡ଼ ଆତ୍ମାଙ୍କୁ ସଙ୍କେତ କରୁଛନ୍ତି । ରସ, ରକ୍ତ, ମାଂସ, ମେଦ, ମଜ୍ଜା, ଅସ୍ଥି ଓ ଶୁକ୍ର ସପ୍ତତ୍ୱକ୍ । ପଞ୍ଚମହାଭୂତ ସହିତ ମନ, ବୁଦ୍ଧି ଓ ଅହଂକାର ଏହା ଦେହ ବୃକ୍ଷର ଅଷ୍ଟଶାଖା । ଦୁଇ ଚକ୍ଷୁ, ଦୁଇ କର୍ଣ୍ଣ, ଦୁଇ ନାସିକା, ମୁଖ, ଗୁଦା ଓ

ଜନନେନ୍ଦ୍ରିୟ ଏମାନେ ଏ ଦେହ ବୃକ୍ଷର ନଅକୋଟରର ସ୍ୱରୂପ । ପଞ୍ଚପ୍ରାଣ ଓ ପଞ୍ଚ ଉପପ୍ରାଣ ମିଶି ୧୦ପ୍ରାଣଙ୍କର ନିବାସ ସ୍ଥଳ (ଛଦ) ଏ ଦେହ । ଜୀବ ଓ ପରମ ରୂପକ ଦୁଇଟି ଚଢ଼େଇ ଏ ଦେହ ବୃକ୍ଷର ବାସିନ୍ଦା । ଏ ଦେହ ଜୀବକୁ କେବେ ମିଳିଲା ତା କାହାକୁ ଜଣା ନଥିବାରୁ ଏହାକୁ ଆଦି ବୃକ୍ଷ କୁହାଯାଏ । ଏହା କେବେ ସ୍ଥୂଳ, ସୂକ୍ଷ୍ମ ରୂପରେ ଥାଏ ତ ପୁଣି କେବେ କାରଣ ରୂପରେ କିନ୍ତୁ ଥାଏ ସର୍ବଦା ।

ପ୍ରଶ୍ନ-୨୭: ଦେବତାମାନେ ପୁଣି କହିଲେ ଯେ ବିବେକୀମାନେ ଏ ସମଗ୍ର ସୃଷ୍ଟିକୁ ଏକ ପରମାତ୍ମାଙ୍କ ମଧ୍ୟରେ କେବଳ ଭିନ୍ନ ଭିନ୍ନ ଦୃଶ୍ୟମାନ ହେଉଥିବା ଅଭେଦ କଥା କହନ୍ତି । ଅବିବେକୀମାନେ କିନ୍ତୁ ନାନା ନାମ ରୂପର ଭେଦ କଳ୍ପନା କରିଥାନ୍ତି । ଆପଣ ମତ୍ସ୍ୟ, କୂର୍ମ, ବରାହ, ବାମନ, ନୃସିଂହ ରୂପରେ ଅବତାର ନେଇ ଭକ୍ତକୁ ଆନନ୍ଦ ପ୍ରଦାନ କରନ୍ତି । ଅଭକ୍ତକୁ ସମୁଚିତ ଦଣ୍ଡ ବିଧାନ କରି ଉଦ୍ଧାର କରିବା ଉପାୟ କରନ୍ତି । ଏ କର୍ମ ଆପଣ ବେଳେ ବେଳେ ସଦ୍‌ଗୁରୁମାନଙ୍କୁ ପଠାଇ କରାଇ ନେଇଥାନ୍ତି । ଅବତାର ଦରକାର ପଡ଼େନା । ଯେଉଁମାନେ ମହାପୁରୁଷ ବା ସଦ୍‌ଗୁରୁମାନଙ୍କ ପ୍ରଦର୍ଶିତ ପଥରେ ସାଧନା ନକରି ଜ୍ଞାନ ମାର୍ଗରେ ଅଷ୍ଟାଙ୍ଗ ଯୋଗ ମାର୍ଗରେ ମନମାନି ସାଧନା କରନ୍ତି ସେମାନଙ୍କର କି ଗତି ହୁଏ ?

**ଯେଽନ୍ୟେଽରବିନ୍ଦ-ଅକ୍ଷ ବିମୁକ୍ତ ମାନିନଃ**
**ତ୍ୱୟି-ଅସ୍ତଭାବାତ୍ ଅବିଶୁଦ୍ଧ ବୁଦ୍ଧୟଃ ।**
**ଆରୁହ୍ୟ କୃଚ୍ଛ୍ରେଣ ପରଂ ପଦଂ ତତଃ**
**ପତନ୍ତି-ଅଧୋଽନାଦୃତ ଯୁଷ୍ମଦ୍ ଅଙ୍ଘ୍ରୟଃ ॥୩୨॥**

ଉ. ଅତ୍ୟନ୍ତ ଶୋଚନୀୟ ଅଧୋଗତି ହୁଏ ସେମାନଙ୍କର । ଜ୍ଞାନ ମାର୍ଗରେ ନିର୍ଗୁଣ ବ୍ରହ୍ମ ଅହଂ ବ୍ରହ୍ମାସ୍ମି ଚିନ୍ତନ କରି ଅଜାଣତରେ ନିଜକୁ ନାରାୟଣ ବୋଲାନ୍ତି । ଅଷ୍ଟାଙ୍ଗ ଯୋଗରେ ପ୍ରାପ୍ତ ଯୋଗସିଦ୍ଧିକୁ ବିକି ଭାଙ୍ଗି ଖାଆନ୍ତି । ଚମତ୍କାର ପ୍ରଦର୍ଶନ କରି ଲୋକଙ୍କୁ ଅଯଥା ଉଦ୍‌ବିଗ୍ନ କରନ୍ତି । ଜ୍ଞାନ ଓ ଯୋଗ ଭକ୍ତିହୀନ ହେଲେ ଉଭୟ ପଥର ସାଧକମାନେ ଆପଣଙ୍କ ଚରଣକମଳର ଆଶ୍ରୟ ବିମୁଖ ହୁଅନ୍ତି । ସମୁଦ୍ର ପାର ହୋଇ ଗୋରୁ ଖୋଜରେ ଥିବା ଚଳୁକେ ଜଳରେ ବୁଡ଼ି ମରନ୍ତି । ସଂସାର ମାୟାକୁ ଡ଼ରି କର୍ମତ୍ୟାଗ କରିଥାନ୍ତି । ପରଜନ୍ମ ପାଇଁ କିଛି ପୁଣ୍ୟ ସଂଚୟ କରି ନଥାନ୍ତି । ଅତୋ ଭ୍ରଷ୍ଟ ତତୋ ଭ୍ରଷ୍ଟ ହୋଇ ଅବିଶୁଦ୍ଧ ବୁଦ୍ଧି ହେତୁ ପୁଣି ମାୟା ଜାଲରେ ଜନ୍ମ ଜନ୍ମାନ୍ତର ଲାଗି ଛନ୍ଦି ହୋଇପଡ଼ନ୍ତି । ଭୁକ୍ତି-ଭକ୍ତି-ମୁକ୍ତି କିଛି ହାତକୁ ଆସେନା ସେମାନଙ୍କ ଜୀବନରେ ।

ପ୍ରଶ୍ନ-୨୮ : ଭକ୍ତର କିନ୍ତୁ ପତନ ହେଲେ ତାକୁ ଉଦ୍ଧାର କରିବା ଦାୟିତ୍ୱର ଠିକା ସ୍ୱୟଂ ଭଗବାନ ନେଇଥାନ୍ତି । ହିରଣ୍ୟକଶିପୁ ଭଳି ପ୍ରତାପୀ ଦାନବ ହସ୍ତରୁ ପ୍ରହ୍ଲାଦଙ୍କ ଭଳି ଭକ୍ତର ସକଳ ସୁରକ୍ଷା ସେ ନିଜେ କରିଥାନ୍ତି । ଦରକାର ପଡ଼ିଲେ ନିର୍ଜୀବ ଖମ୍ବରୁ ମଧ ତାଙ୍କୁ ଅବତାର ନେବାକୁ ପଡ଼େ । ବାପା-ମା ଦରକାର ପଡ଼ନ୍ତି ନାହିଁ ସେତେବେଳେ । ଦ୍ରୌପଦୀଙ୍କ ବିପଦବେଳେ ତାଙ୍କୁ ଅମ୍ବର, ବସ୍ତ୍ର ଅବତାର ସ୍ୱୀକାର କରିବାକୁ ପଡ଼େ । ଲୁଗା ହେବା ପାଇଁ ତାଙ୍କୁ କୌଣସି ଲୁଗାକଳକୁ ଯିବା ଦରକାର ପଡ଼େ ନାହିଁ । ତୀର୍ଥ, ବ୍ରତ, ତପ ଆଦି କୌଣସି ସାଧନା ବଳରେ ଆପଣଙ୍କୁ ଜାଣିବା ଅସମ୍ଭବ । ଆପଣଙ୍କ ଶରଣ ସ୍ୱୀକାର କଲେ ଆପଣଙ୍କ କୃପାରୁ କେବଳ ଆପଣଙ୍କୁ ଜାଣି ହୁଏ । ଅର୍ଜୁନ, ଦ୍ରୌପଦୀ, ଗଜରାଜ, ହନୁମାନ ଆଦି ଏହାର ଉଦାହରଣ । ଅତଏବ ବିଷ୍ଣୁ-ବୈଷ୍ଣବ ସେବା ବିନା ଭଗବାନଙ୍କ ଶରଣାଗତି ସଂପୂର୍ଣ୍ଣ ଅସମ୍ଭବ ।

ଭଗବାନଙ୍କ ଯମ, ରୂପ, ଲୀଳା, ଗୁଣ, ଧାମ ଭକ୍ତ ସମସ୍ତେ ଦିବ୍ୟ । ଏକଥା ଅଭକ୍ତମାନେ ବିଶ୍ୱାସ ନକରି କାଳ୍ପନିକ କହିଥାନ୍ତି । ତେବେ ଭକ୍ତମାନେ କି ସାଧନା କରି ଏ ଦିବ୍ୟତାକୁ ନିଜ ଅନୁଭବରେ ଆଣି ପାରନ୍ତି ?

**ଶୃଣ୍ୱନ୍ ଗୃଣନ୍ ସଂସ୍ମରନ୍ ଚ ଚିନ୍ତୟନ**
**ନାମାନି ରୂପାଣି ଚ ମଙ୍ଗଳାନି ତେ ।**
**କ୍ରିୟାସୁ ଯଃ ତ୍ୱତ୍ ଚରଣ-ଅରବିନ୍ଦୟୋଃ**
**ଆବିଷ୍ଟ ଚେତା ନ ଭବାୟ କଳ୍ପତେ ॥୩୭॥**

ଉ. ଭକ୍ତି ମାର୍ଗରେ ଏ ଉପାୟଟି ଅତ୍ୟନ୍ତ ସରଳ । ପୂର୍ବ ଜନ୍ମର ସଂଚିତ ଶୁଭ ଭକ୍ତି ସଂସ୍କାର ସେମାନଙ୍କୁ ବାଟ କଢ଼ାନ୍ତି । ବୈଷ୍ଣବ ମୁଖରୁ ସେମାନେ ଭଗବାନଙ୍କ ଦିବ୍ୟ ନାମ, ଲୀଳା, ଗୁଣ ଆଦି ଶ୍ରଦ୍ଧାରେ ଶ୍ରବଣ କରନ୍ତି । ଦିବ୍ୟ ରୂପକୁ ମନରେ ଧ୍ୟାନ କରନ୍ତି । ପୁଣି ଦିବ୍ୟ ନାମ ଜପରେ ଲାଗି ପଡ଼ନ୍ତି । ଆପଣଙ୍କ ଚରଣ କମଳକୁ ମନେ ମନେ ଧ୍ୟାନ କରୁଥାନ୍ତି । ଏକଥା ଦେଖି ମହାମାୟା ମହାରାଣୀ ମସ୍ତକରେ ଓଢ଼ଣା ଟାଣି ଭକ୍ତମାନଙ୍କ ପିଛା ଛାଡ଼ି ଦୂରକୁ ପଳାୟନ କରନ୍ତି । ସେମାନେ ସଂସାରରେ ଥାଇ ମଧ ଅସଂସାରୀ । ସିଦ୍ଧ ଜ୍ଞାନଯୋଗୀ ମୃତ୍ୟୁ ପରେ ସିନା ମୁକ୍ତ ହୁଏ । ଭକ୍ତିଯୋଗୀ କିନ୍ତୁ ଜୀବନ୍‌ମୁକ୍ତ ହୋଇ କାଳ କଟାନ୍ତି ।

ପ୍ରଶ୍ନ-୨୯ : ଦେବତାମାନେ କହିଲେ ଯେ ବଡ଼ ସୌଭାଗ୍ୟର କଥା । ଭଗବାନଙ୍କ ଅବତାରରେ ବସୁମାତାଙ୍କର, ସାଧୁ ବୈଷ୍ଣବ ମୁନି ଋଷିମାନଙ୍କର ପୀଡ଼ା ଲାଘବ ହୋଇଯିବ । ଏଥର ଅସୁର ମାରଣ ଯଜ୍ଞ ପରେ ପରେ ତ୍ରିଲୋକରେ ଶାନ୍ତି ସ୍ଥାପିତ ହେବ । ସଂସାରରେ ଜୀବ ମାତ୍ରକେ ଦେହ ଧାରଣ କରନ୍ତି ଶୁଭ-ଅଶୁଭ କର୍ମଫଳ ଭୋଗ କରିବା ନିମିତ୍ତ । ଭଗବାନଙ୍କ ପ୍ରାକଟ୍ୟରେ କ'ଣ ତାଙ୍କୁ ଫଳ ପାପ-ପୁଣ୍ୟ ଫଳ ଭୋଗ କରିବାକୁ ପଡ଼େ କି ?

**ନ ତେଽଭବସ୍ୟ-ଈଶ ଭବସ୍ୟ କାରଣଂ**

**ବିନା ବିନୋଦଂ ବତ ତର୍କୟାମହେ ।**

**ଭବୋ ନିରୋଧଃ ସ୍ଥିତିଃ ଅପି-ଅବିଦ୍ୟୟା**

**କୃତା ଯତଃ ତ୍ୱୟି-ଅଭୟ-ଆଶ୍ରୟ-ଆତ୍ମନି ॥୩୯॥**

ଉ. ଆଦୌ ନୁହେଁ । ସେ ତ ଅଜନ୍ମା । ତାଙ୍କର ଜନ୍ମ (ଭବ) ମରଣ (ନିରୋଧଃ) ପାପ-ପୁଣ୍ୟ ଆସିବ କୁଆଡୁ ? ତାଙ୍କ କର୍ମର ନାମ ହିଁ ଲୀଳା । ଜ୍ଞାନୀ ଲୋକେ ତାଙ୍କ ଦିବ୍ୟ ଲୀଳା ବୁଝି ନ ପାରି ତର୍କ କରିଥାନ୍ତି । ସେ ଆପ୍ତକାମ-ଆତ୍ମାରାମ ଉଭୟ । କାମନା ଥିଲେ ସିନା ସକାମ ହୁଅନ୍ତେ । ସୃଷ୍ଟି-ସଂହାର ଆଦି ଲୀଳା ମଧ ତାଙ୍କ ଅନ୍ତରଙ୍ଗ ଶକ୍ତି ଯୋଗମାୟାଙ୍କ ଦ୍ୱାରା ସାଧିତ ହୁଏ । ତାହା ପୁଣି ଜୀବ କଲ୍ୟାଣ ଲାଗି । ଭକ୍ତକୁ ସର୍ବୋଚ୍ଚ ଆନନ୍ଦ ଦେବା ଲକ୍ଷ୍ୟରେ ସେ ସକଳ ଲୀଳା କରୁଥାନ୍ତି ।

ପ୍ରଶ୍ନ-୩୦ : ବ୍ରହ୍ମାଦି ଦେବଗଣ ଭଗବାନଙ୍କର ମତ୍ସ୍ୟ, କଚ୍ଛପ, ହୟଗ୍ରୀବ, ନୃସିଂହ, ବରାହ, ବାମନ, ଶ୍ରୀରାମ ଓ ପର୍ଶୁରାମ ଆଦି ଅନେକ ଅବତାର ଲୀଳା ଦର୍ଶନ କରିଛନ୍ତି । କିନ୍ତୁ ଯଦୁ ବଂଶରେ ତାଙ୍କର ଏ ବିଲକ୍ଷଣ ଅବତାର ଗୋପାଙ୍ଗନାଙ୍କୁ ମହାରାସ ରସ ଆସ୍ୱାଦନ କରାଇବା ଲକ୍ଷ୍ୟରେ ହେଉଛି । ସେମାନେ ମାତା ଦେବକୀଙ୍କୁ ଅଭୟ ଦେବାକୁ ଯାଇ କହିଲେ ଯେ ସେ କଂସକୁ ଭୟ କରିବା ଅନୁଚିତ । କାରଣ ସ୍ୱୟଂ ଭୟ ମଧ କୃଷ୍ଣଙ୍କୁ ଭୟ କରେ । କଂସ ସହିତ ଅନ୍ୟ ଅସୁରମାନଙ୍କୁ ସଂହାର କରି ଯଦୁବଂଶୀଙ୍କୁ ଆନନ୍ଦ ଦେବା ପାଇଁ ସେ ଦେହ ଧାରଣ କରୁଛନ୍ତି । ୧୬ଶ୍ଳୋକରେ ଗର୍ଭସ୍ତୁତି କରି ଦେବଗଣ ପୁଣି କଲେ କ'ଣ ?

**ଇତି ଅଭିଷ୍ଟୁୟ ପୁରୁଷଂ ଯତ୍ ରୂପଂ ଅନିଦଂ ଯଥା ।**
**ବ୍ରହ୍ମ-ଈଶାନୌ ପୁରୋଧାୟ ଦେବାଃ ପ୍ରତିଯଯୁଃ ଦିବମ୍ ।।୪୨।।**

ଉ. ଏହିଭଳି ଦିବ୍ୟ (ଅନିଦଂ) ସ୍ତୁତି କରି ସାରି (ଅଭିଷ୍ଟୁୟ) ବ୍ରହ୍ମଦେବ ବ୍ରହ୍ମଲୋକକୁ ଏବଂ ଶଙ୍କରଜୀ କୈଳାସକୁ ଯିବା ପରେ ଇନ୍ଦ୍ରାଦି ଅନ୍ୟାନ୍ୟ ଦେବଗଣ ସ୍ୱର୍ଗଲୋକର ନିଜ ନିଜ ଆବାସକୁ ଫେରିଗଲେ (ପ୍ରତିଯଯୁଃ ଦିବଂ) ।

# ଅଥ ତୃତୀୟ ଅଧ୍ୟାୟଃ

## (ପୂର୍ଣ୍ଣତମ ପୁରୁଷୋତ୍ତମ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରାକଟ୍ୟ)

ପ୍ରଶ୍ନ-୩୧ : ଭଗବାନ ଅଜନ୍ମା । ଭକ୍ତକୁ ଆନନ୍ଦ ଦେବାକୁ ଓ ନିଜେ ନୂତନ ନୂତନ ଆନନ୍ଦ ପାଇବାକୁ ସେ ଜନ୍ମ-ମରଣ (ପ୍ରକଟ-ଅପ୍ରକଟ) ସ୍ୱୀକାର କରନ୍ତି । ତାଙ୍କର ଜନ୍ମ-କର୍ମ-ଲୀଳା-ଗୁଣ-ଧାମ-ଗୁଣ-ସନ୍ଥ ସବୁ ଦିବ୍ୟ । ଏପରିକି ପିନ୍ଧା ବସନ, ହସ୍ତର ବେଣୁ, ପାଦର ପାଉଞ୍ଜି ଆଦି ଚିନ୍ମୟ, ଜୀବନ୍ତ ଓ ଦିବ୍ୟ । ପୂର୍ବରୁ ବହୁ ତପସ୍ୟା କରି ଗୋଟିଏ ଜନ୍ମରେ ପୃଷ୍ଣି ଓ ସୁତପାଙ୍କ କୋଳ ମଣ୍ଡନ କରିଥିଲେ ପୃଷ୍ଣି ଗର୍ଭବେଳେ । ପର ଜନ୍ମରେ ସେମାନେ ଅଦିତି-କଶ୍ୟପ ରୂପରେ ଭଗବାନଙ୍କୁ ପୁତ୍ର ରୂପରେ ପାଇଥିଲେ ବାମନ ଅବତାର ବେଳେ । ଭଗବାନ କଥା ଦେଇଥିଲେ ତାଙ୍କୁ ମୁଁ ତିନି ତିନି ଥର ତୁମକୁ ମାତା-ପିତା ରୂପେ ସ୍ୱୀକାର କରିବି ବୋଲି । ଏବେ ତୃତୀୟ ଜନ୍ମରେ ସେଇ ଅଦିତି-କଶ୍ୟପ ଦେହ ଧରିଛନ୍ତି ଦେବକୀ-ବସୁଦେବ ରୂପରେ । ଭାଗ୍ୟର କଠୋର ପରୀକ୍ଷା । ରାଜ ପରିବାର ପଦମର୍ଯ୍ୟାଦା ଧନ-ଜନ ଗୋପ ଲକ୍ଷ୍ମୀ ସେ ସବୁ ହରାଇ ବସିଛନ୍ତି । ସାତ ସାତଟା କବାଟ ଲଗା ବନ୍ଦୀ ଗୃହରେ ଅପେକ୍ଷା କରିଛନ୍ତି ଭଗବାନଙ୍କୁ । ହାତେ ହାତ କଡ଼ି ପାଦରେ ବେଡ଼ି । ତଥାପି ଅପେକ୍ଷାର ଅନ୍ତ ନାହିଁ । ସାତ ସାତ ସନ୍ତାନ ବଳି ପଡ଼ିଲେଣି । ଅଷ୍ଟମ ଗର୍ଭର ବେଦନା ସହିବାକୁ ସେ ପଶ୍ଚାତ୍‌ପଦ ହେଉନାହାନ୍ତି ।

ବ୍ରହ୍ମାଦିଦେବଗଣ ଗର୍ଭସ୍ତୁତି କରି ବାହୁଡ଼ି ଗଲେଣି । ଭଗବାନଙ୍କ ପ୍ରାକଟ୍ୟ ସମୟ ଆସନ୍ନ ହୁଅନ୍ତେ ପ୍ରକୃତିରାଣୀ ତାଙ୍କ ପୁତ୍ର ମହାକାଳଙ୍କୁ କି ଆଜ୍ଞା ଦେଲେ ?

ଶ୍ରୀ ଶୁକ ଉବାଚ

**ଅଥ ସର୍ବ ଗୁଣ-ଉପେତଃ କାଳଃ ପରମ ଶୋଭନଃ ।**
**ଯର୍ହି-ଏବ-ଅଜନ ଜନ୍ମଃ ଋକ୍ଷଂ ଶାନ୍ତଃ ଗ୍ରହ ତାରକମ୍ ।।୧।।**

ଉ. କାଳ (ଯମ) ହିଁ ସୂର୍ଯ୍ୟଙ୍କ ସନ୍ତାନ । କାଳଙ୍କର କାଳ ମହାକାଳ ପ୍ରକୃତି । ପ୍ରକୃତିଙ୍କ ଅଧୀଶ୍ୱର ଭଗବାନ୍ । ସୁତରାଂ ପ୍ରକୃତିଙ୍କ ସଙ୍କେତ ପାଇ ଗ୍ରହ-ନକ୍ଷତ୍ର-ତାରା ସମସ୍ତେ ଶୋଭନୀୟ ନିଜ ନିଜର ଅନୁକୂଳ ସ୍ଥାନକୁ ଚାଲିଗଲେ । ରୋହିଣୀ ନକ୍ଷତ୍ର ଚନ୍ଦ୍ରଙ୍କ ୨୭ପତ୍ନୀ ମଧ୍ୟରେ ଅତ୍ୟନ୍ତ ରମଣୀୟା । ଚନ୍ଦ୍ରଙ୍କ ପ୍ରିୟତମା ମଧ୍ୟ । ସେହି ନକ୍ଷତ୍ର ଉଦୟ ହୁଅନ୍ତେ ଅଭିଜିତ ବେଳା ଦେଖି ଶ୍ରୀକୃଷ୍ଣଙ୍କ ପ୍ରାକଟ୍ୟର ଯୋଜନା କରାଗଲା ।

ପ୍ରଶ୍ନ-୩୨: କାଳ ମହାକାଳଙ୍କ ପ୍ରସ୍ତୁତି ଦେଖି ଭୂମଣ୍ଡଳ ଆକାଶ ମଣ୍ଡଳ କିଭଳି ସଜ ହେଲେ ଭଗବାନଙ୍କୁ ସ୍ୱାଗତ କରିବା ଲାଗି ?

**ଦିଶଃ ପ୍ରସେଦୁଃ ଗଗନଂ ନିର୍ମଳ-ଉଡୁଗଣ-ଉଦୟମ୍ ।**
**ମହୀ ମଙ୍ଗଳ ଭୂୟିଷ୍ଠ ପୁର ଗ୍ରାମ ବ୍ରଜ-ଆକରା ।।୨।।**

ଉ. ଦିଗ ନାରୀମାନେ ନିର୍ମଳ ବସନ ଭୂଷଣ ପିନ୍ଧି ପକାଇଲେ । ସେମାନଙ୍କ ଆନନ୍ଦରେ ତାଳ ଦେଇ ଅସଂଖ୍ୟ ତାରା (ଉଡୁ)ଗଣ ଆନନ୍ଦ ମନରେ ଜୁଲୁ ଜୁଲୁ ହୋଇ ଆଲୋକ ବିକିରଣ କଲେ । ମଥୁରା ରାଜ୍ୟର ନଗର, ଗ୍ରାମ, ଗୋଚାରଣ ଭୂମି ଖଣି, ଖାଦାନ ସବୁ ମନୁଷ୍ୟ ପଶୁ ପକ୍ଷୀମାନଙ୍କର ଖାଦ୍ୟ, ପାନୀୟ ଔଷଧ ସଜାଡ଼ି ରଖିଲେ । ସୃଷ୍ଟି କଲ୍ୟାଣକାରୀ ଭଗବାନଙ୍କ ଲୀଳା ପ୍ରକଟ ପାଇଁ ଯୋଗମାୟା ସମସ୍ତଙ୍କ ମନରେ ଭରିଦେଲେ ଅଫୁରନ୍ତ ଆନନ୍ଦ ଓ ପ୍ରସନ୍ନତା ।

ପ୍ରଶ୍ନ-୩୩: ଠାକୁରଜୀଙ୍କ ସ୍ୱାଗତ ସତ୍କାର ଲାଗି ବୃକ୍ଷ ଲତାମାନେ ପତ୍ର ପୁଷ୍ପ ଫଳ ଭାରରେ ଲୋଟି ପଡୁଥାନ୍ତି । ବନରାଜୀ ଆଜି ସବୁଜିମା ମଣ୍ଡିତା । ଧରଣୀ ରାଣୀ ସତେକି ଭଗବାନଙ୍କ ଚରଣ କମଳ ପ୍ରାପ୍ତି ଆଶାରେ ରୋମାଞ୍ଚିତ ହେଉଛନ୍ତି ଏହି ସବୁଜ ତୃଣ, ଗୁଳ୍ମ ମାଧ୍ୟମରେ । ଶୁଷ୍କନଦୀ ପୁଷ୍କରିଣୀ ଆଦି ନିର୍ମଳ ଜଳରେ ପୂର୍ଣ୍ଣ । ଭ୍ରମର, ହଂସ, ହଂସରାଳି କୂଜନରେ ସମଗ୍ର ମଥୁରା ରାଜ୍ୟ ଗୁଞ୍ଜରିତ । ବାୟୁଦେବତା କାହିଁକି ବା ପଛରେ ପଡ଼ନ୍ତେ । ସେ ମନ୍ଦ ମନ୍ଦ ସୁଗନ୍ଧିତ ଶୀତଳ ବାୟୁରୂପରେ ବହିଲେ ।

ସନ୍ଧ୍ୟା କାଳରେ ଯଜ୍ଞ କୁଣ୍ଡମାନଙ୍କରେ ଶେଷ ଆହୁତି କରାଯାଇଥିଲା । ଅଗ୍ନିଦେବତା ବିଶ୍ରାମ ନେଇଥିଲେ କିନ୍ତୁ ଏ କ'ଣ ? ହଠାତ୍ ଅଗ୍ନିଦେବତା ବିନା ଇନ୍ଧନରେ ସପ୍ତ ଶିଖା ଟେକି ଯଜ୍ଞ କୁଣ୍ଡମାନଙ୍କରେ ଆବିର୍ଭୂତ ହୋଇଗଲେ । ଶ୍ରୀକୃଷ୍ଣଙ୍କ ପ୍ରାକଟ୍ୟରେ ଭୂଃ ଓ ଭୁବ (ଅନ୍ତରୀକ୍ଷ) ଲୋକ ଆନନ୍ଦିତ ହେଉଥିଲାବେଳେ ସ୍ୱର୍ଗଲୋକରେ ଦେବତାମାନେ କ'ଣ କଲେ ?

**ମନାସି-ଆସନ୍ ପ୍ରସନ୍ନାନି ସାଧୂନାଂ ଅସୁରଦ୍ରୁହାନାମ୍ ।**
**ଜାୟମାନେଽଜନେ ତସ୍ମିନ୍ ନେଦୁଃ ଦୁନ୍ଦୁଭୟଃ ସମମ୍ ।।୫।।**

ଉ. ପ୍ରଥମେ କାଳ ଶୁଦ୍ଧି, ପରେ ପରେ ଜନ୍ମ ନକ୍ଷତ୍ର ଶୁଦ୍ଧି, ଦେଶ-ପ୍ରଦେଶ, ଦିଗ-ଦିଗନ୍ତ, ଆକାଶ, ପୃଥିବୀ, ଜଳ ଶୁଦ୍ଧି ସହିତ ବାୟୁ ଓ ସାଧୁ, ସନ୍ଥ, ବ୍ରାହ୍ମଣ ଦେବତାମାନଙ୍କ ଅନ୍ତଃକରଣ ଶୁଦ୍ଧି ହୋଇଗଲା । ଭଗବାନଙ୍କ ଟୁର ପ୍ରୋଗ୍ରାମ ପାଇ କିଏ ଅବା ଆନନ୍ଦିତ ନ ହୋଇ ରହିପାରିବ ? ଇନ୍ଦ୍ରାଦି ଦେବତାମାନେ ସବୁଠୁ ବେଶୀ ପ୍ରସନ୍ନ ହେଲେ । ଅସଲି କାମ ପରା ତାଙ୍କର । ଦୈତ୍ୟ ଦାନବ ଅସୁର ପୀଡ଼ାରେ ସେମାନେ ଆତଙ୍କବାଦର ମୁଖ୍ୟ ଶିକାର । ତାଙ୍କ ଭୋଗ ଲାଳସା କ୍ଷତିଗ୍ରସ୍ତ ଓ ବାଧା ପ୍ରାପ୍ତ । ସୁତରାଂ ଖୁସିରେ ସେମାନେ ସ୍ୱର୍ଗବାଦ୍ୟ ଦୁନ୍ଦୁଭି ବଜାଇଲେ । ଗନ୍ଧର୍ବମାନେ ଓ ଅପସରାମାନେ ନୃତ୍ୟ କଲେ । କିନ୍ନରମାନେ ଗାଉଣ ବାଜଣା ଇତ୍ୟାଦି କଲେ । ବିଦ୍ୟାଧରୀମାନେ ଦିବ୍ୟ ସଙ୍ଗୀତ ଗାନ କଲେ । ଅନ୍ୟ ଦେବୀ ଦେବତାମାନେ ହରିବୋଲ ହୁଳହୁଳି ନାଦ ସହିତ ସ୍ୱର୍ଗ ପୁଷ୍ପ ବୃଷ୍ଟି କରିବାରେ ଲାଗିଗଲେ । ଇନ୍ଦ୍ର ଦେବତା ମନ୍ଦ ମନ୍ଦ ମଧୁର ଜଳ ବର୍ଷା କରି ତାଙ୍କ ପ୍ରସନ୍ନତା ବ୍ୟକ୍ତ କଲେ ।

ପ୍ରଶ୍ନ-୩୪: ବେଦଜ୍ଞାନୀଙ୍କ ମତରେ ଭଗବାନଙ୍କ ଜନ୍ମ ନାହିଁ । କାରଣ ସେ ଅଜନ୍ମା । ଭକ୍ତମାନଙ୍କ ମତରେ ଆମେ ଜନ୍ମ-ଜନ୍ମାନ୍ତର ଧରି ତାଙ୍କ କାମ କରି ଲାଗିଛୁ । ଆମକୁ ଆନନ୍ଦ ଦେବାକୁ ତାଙ୍କୁ ଜନ୍ମନେବାକୁ ପଡ଼ିବ । ଭଗବାନ ଭକ୍ତ ବତ୍ସଳ ଓ କୃପାମୟ । ଏ ଅଡୁଆ ପରିସ୍ଥିତିରେ ସେ କଥାକୁ ସମ୍ମାନ ଦିଅନ୍ତି ଓ କିପରି ଦିଅନ୍ତି ?

**ନିଶୀଥେ ତମ -ଉଦ୍ଭୂତେ ଜାୟମାନେ ଜନାର୍ଦ୍ଦନେ ।**
**ଦେବକ୍ୟାଂ ଦେବରୂପିଣ୍ୟାଂ ବିଷ୍ଣୁ ସର୍ବ ଗୁହ-ଆଶୟଃ ।**
**ଆବିରାସୀତ୍ ଯଥା ପ୍ରାଚ୍ୟାଂ ଦିଶି-ଇନ୍ଦୁଃ ଇବ ପୁଷ୍କଳଃ ।।୮।।**

ଉ. ସେ ଉଭୟଙ୍କ କଥାକୁ ସମ୍ମାନ ଦିଅନ୍ତି । ଜ୍ଞାନୀଏ ବୁଝନ୍ତି ଯେ, ଯିଏ ଜନ୍ମ

ନିଅନ୍ତି ସେ ଭଗବାନ ନୁହନ୍ତି । ମାୟାଧୀନ ହୋଇ ବିଷ୍ଣୁ ନାରାୟଣ ନରଲୀଳା କରନ୍ତି । ଭକ୍ତମାନେ କହନ୍ତି ଅଖିଆ, ଅପିଆ ରହି ଏକାଦଶୀ ବ୍ରତ କରିଥିଲୁ । ହେଇ ଦେଖ ଦେବକୀଙ୍କର ଗର୍ଭ ଯନ୍ତ୍ରଣା ହେଲାଣି । ବିନା ଜନ୍ମରେ ଗର୍ଭ ଯନ୍ତ୍ରଣା କ'ଣ ସମ୍ଭବ କି ଭାଇ ? ବେଦ ବ୍ୟାସଜୀ ସୁନ୍ଦର ସମାଧାନ କରିଛନ୍ତି ଆବିରାସୀତ୍ (ପ୍ରକଟ ହେବା) ଶବ୍ଦ ପ୍ରୟୋଗ କରି । ଉଦାହରଣଟି ମଧ୍ୟ ଅତ୍ୟନ୍ତ ବିଲକ୍ଷଣ । ଚନ୍ଦ୍ର ପୂର୍ଣ୍ଣିମା ତିଥିରେ ଉଦୟ ହେବା ଭଳି ସେ ପ୍ରକଟ ହେଲେ । ବାସ୍ତବରେ ଚନ୍ଦ୍ର କେବେବି ଆକାଶରୁ ପଳାଇ ନଥାନ୍ତି ଅମାବାସ୍ୟା ହେଉ କି କୃଷ୍ଣ ପକ୍ଷ ହେଉ । ସେ ସର୍ବଦା ଥାନ୍ତି । କେବେ କେବେ କେବଳ ପ୍ରକଟ-ଅପ୍ରକଟ ହୁଅନ୍ତି ।

ଦେବକୀ ଆମ ଭଳି କୌଣସି ସାଧାରଣ ନାରୀ ନୁହନ୍ତି । ସେ ବିଶୁଦ୍ଧ ବୁଦ୍ଧି ଚେତନ ସ୍ୱରୂପା ଦେବୀ । ଯେ ପ୍ରକଟ ହୁଅନ୍ତି କୃଷ୍ଣ ରୂପରେ ସେ ପୁଣି ସକଳ ଜୀବ ଅନ୍ତଃକରଣରେ ସଦା ବାସ କରୁଥିବା (ସର୍ବଗୁହ ଆଶ୍ରୟଃ) । ସେ ମଧ୍ୟ ଜୀବକୁ କୃତ କର୍ମର ଶୁଭ-ଅଶୁଭ କର୍ମ ଭୋଗ କରାଉଥିବା ସର୍ବେଶ୍ୱର (ଜନାର୍ଦ୍ଦନ) ।

ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥି ମଧ୍ୟରାତ୍ରୀ (ନିଶୀଥ) ରୋହିଣୀ ନକ୍ଷତ୍ର ବୁଧବାର ଅଭିଜିତ ବେଳାରେ ଠାକୁରଜୀ କଂସ କାରାଗାରରେ ଦେବକୀ ବସୁଦେବଙ୍କ ପୁତ୍ରତ୍ୱ ସ୍ୱୀକାର କରି ଚତୁର୍ଭୁଜ ରୂପରେ ପ୍ରକଟ ହେଲେ ।

ପ୍ରଶ୍ନ-୩୫: ଚତୁର୍ଭୁଜ ରୂପରେ ଦେବକୀ ବସୁଦେବଙ୍କ ନିକଟରେ ଏଭଳି ଅଦ୍ଭୁତ ବାଳକ ରୂପ ଧରି ପ୍ରକଟ ହେବାବେଳେ ବ୍ୟାସଦେବ କିଭଳି ଶବ୍ଦରେ ତାଙ୍କର ଦିବ୍ୟ ଶୃଙ୍ଗାର ବର୍ଣ୍ଣନ କଲେ ?

**ତଂ ଅଦ୍ଭୁତଂ ବାଳକଂ ଅମ୍ବୁଜ-ଈକ୍ଷଣଂ**
**ଚତୁର୍ଭୁଜଂ ଶଙ୍ଖ ଗଦା-ଉଦାୟୁଧଂ ।**
**ଶ୍ରୀବସ୍ତ ଲକ୍ଷ୍ମଂ ଗଳଶୋଭି କୌସ୍ତୁଭଂ**
**ପୀତାମ୍ବରଂ ସାନ୍ଦ୍ର ପୟୋଦ ସୌଭଗମ୍ ।।୯।।**

ଉ. ସେତେବେଳକୁ ମାତା ଦେବକୀ ଅଚେତନ । ବସୁଦେବ ଜାଗ୍ରତ ଥାଇ ଦେଖିଲେ ବାଳକଟିର ନେତ୍ର ସାଧାରଣ ମନୁଷ୍ୟ ନେତ୍ର ଭଳି ନୁହେଁ । କମଳ ଲୋଚନ । ଚାରି ହସ୍ତରେ ଶଙ୍ଖ-ଚକ୍ର-ଗଦା-ପଦ୍ମ ଚାରି ଦିବ୍ୟ ଆୟୁଧ । ବକ୍ଷରେ ଶ୍ରୀବସ୍ତ ବ୍ରାହ୍ମଣଙ୍କ ଭୃଗୁ ଲତା ବା ପଦ ଚିହ୍ନ । ଗଳାରେ ଦିବ୍ୟ କୌସ୍ତୁଭ ମଣିହାର । ବସ୍ତ୍ର ମଧ୍ୟ ସାଧାରଣ ନୁହେଁ । ଦିବ୍ୟ ପୀତାମ୍ବର ପାଟ ବସ୍ତ୍ର । ଅଙ୍ଗକାନ୍ତି କଳା କି ଗୋରା ନୁହେଁ । ନୂତନ ବର୍ଷଣ ମୁଖର ମେଘ ଭଳି ଘନଶ୍ୟାମ କାନ୍ତି ।

ମସ୍ତକରେ ବୈଦୁର୍ଯ୍ୟ କିରୀଟ । କର୍ଣ୍ଣରେ ଦିବ୍ୟ କୁଣ୍ଡଳ । ଶିରରେ ଦିବ୍ୟ କୁନ୍ତଳରାଜି । ଦିବ୍ୟ ଅଙ୍ଗରେ ଦିବ୍ୟ କଟୀସୂତ୍ର, ଅଙ୍ଗଦ, କଙ୍କଣ, ମଞ୍ଜିର, ନୂପୁର ଆଦି ଭୂଷଣ ସଜ୍ଜିତ । ସେ ନିଶ୍ଚିତ ହୋଇଗଲେ ଏ ବାଳକ ତାଙ୍କ ପୁତ୍ର ନୁହନ୍ତି ସ୍ୱୟଂ ନାରାୟଣ । ସେ ସଙ୍ଗେ ସଙ୍ଗେ ଖୁସିରେ ମନେ ମନେ ୧୦ହଜାର ସବତ୍ସା ଗୋଦାନ କରିଦେଲେ । ତାଙ୍କ ପାଖରେ ନତ ଜାନୁ ହେଲେ । କୃତାଞ୍ଜଳି ମୁଦ୍ରାରେ ଯତ୍‌ପରୋନାସ୍ତି ସ୍ତୁତି ଗାନ ଆରମ୍ଭ କରିଦେଲେ ।

୧୦ଶ୍ଳୋକରେ ବ୍ୟାସଦେବଜୀ ଉଲ୍ଲେଖ କଲେ ତାଙ୍କ ସ୍ତୁତି । ସ୍ତୁତିରେ ବସୁଦେବ ଜଣାଇଲେ ଯେ ସେ ବାସ୍ତବରେ ତାଙ୍କ ପୁତ୍ର ନୁହନ୍ତି ବରଂ ସ୍ୱୟଂ ବୈକୁଣ୍ଠବିହାରୀ ନାରାୟଣ । ଜୀବ ଅବଶ୍ୟ ତାଙ୍କୁ ଜାଣିବାକୁ ନିଜ ମନ-ବୁଦ୍ଧି-ବିବେକ ପ୍ରୟୋଗ କଲେ ତାଙ୍କୁ ଦିବ୍ୟ ନର ଲୀଳା ବୁଝିବାକୁ ହେଲେ ସର୍ବଥା ନିରାଶ ହେବାକୁ ପଡ଼େ ତାକୁ । ତାଙ୍କ କୃପାରୁ କେବଳ କୌଣସି ବିରଳ ଜୀବ ତାଙ୍କୁ ବୁଝିପାରେ । ବ୍ରହ୍ମା, ଶଙ୍କର ଓ ଇନ୍ଦ୍ରାଦି ଦେବତାମାନଙ୍କ ପାଇଁ ମଧ୍ୟ ସେଇ ନିୟମ ଲାଗୁ ହୁଏ ।

ଜୀବ ତାଙ୍କର ଶରଣାଗତ ହୋଇ ବୁଝେ ଯେ ଭଗବାନ ମାୟାଧୀନ ଜୀବ କିମ୍ବା ମାୟାତୀତ ମହାପୁରୁଷ ନୁହନ୍ତି । ସେ ମାୟାଧୀଶ ଅଲୌକିକ ପୂର୍ଣ୍ଣ ପୁରୁଷୋତ୍ତମ ନାରାୟଣ । ପୁଣି କୃଷ୍ଣଙ୍କର କଳା ତାଙ୍କ ଠାରେ । ମାୟାଙ୍କର ତିନି ଗୁଣର ସ୍ପର୍ଶ ନାହିଁ । ସେ କିନ୍ତୁ ସେହି ସତ୍ତ୍ୱଗୁଣ ଅଂଶରେ ବିଷ୍ଣୁ ରୂପରେ ସୃଷ୍ଟିର ପାଳନ କରିଥାନ୍ତି । ଯାହାକୁ ରଜୋଗୁଣ ଅଂଶରେ ସୃଷ୍ଟି କରି ତମୋଗୁଣ ଅଂଶରେ ସଂହାର କରିବା ଲକ୍ଷ୍ୟରେ । ବଡ଼ ଅବୋଧ ତାଙ୍କର କାଣ୍ଡ କାରଖାନା । ନାମ-ରୂପ-ଲୀଳା-ଗୁଣ-ଧାମ-ସନ୍ଥ ସବୁ ତାଙ୍କର ନିଆରା । ବେଦଜ୍ଞ ଓ ବେଦାନ୍ତୀଙ୍କର ହଜମ ବାହାର ତଥ୍ୟ ଓ ତତ୍ତ୍ୱ ଏହି ଦିବ୍ୟ କୃଷ୍ଣ ଲୀଳା ।

ପ୍ରଶ୍ନ-୩୬: ସଦ୍‌ଗୁରୁ ତାଙ୍କ ନିଜ ଶିଷ୍ୟମାନଙ୍କର ଅନ୍ତର୍ଯ୍ୟାମୀ । ଭଗବାନ କିନ୍ତୁ ସର୍ବାନ୍ତର୍ଯ୍ୟାମୀ । ଏ କଥା ଜାଣି ମଧ୍ୟ ଭକ୍ତ ବସୁଦେବଜୀ ଭଗବାନଙ୍କୁ ଜଣାଉଛନ୍ତି ଯେ ସେ ଆସିବାରେ ଖୁବ୍ ଡ଼େରି କରିଦେଲେ । ଏହି ଅବସରରେ ତାଙ୍କର ସାତ ସନ୍ତାନଙ୍କୁ କଂସ କାଳ ମୁଖକୁ ଠେଲି ସାରିଲାଣି । ଏ ଅଷ୍ଟମ ସନ୍ତାନଙ୍କୁ ରକ୍ଷା କରିବା ତାଙ୍କ ସାମର୍ଥ୍ୟ ବାହାରେ । ସୁତରାଂ ଭଗବାନ ଏବେ ନିଜେ ନିଜକୁ ରକ୍ଷା କରିବା ବ୍ୟବସ୍ଥା କରନ୍ତୁ । ବସୁଦେବଙ୍କ ସ୍ତୁତିର ଇତି ହେଲା । ଚେତନା ପ୍ରାପ୍ତ ହେଲେ ମାତା ଭୂମିକାରେ ଲୀଳା ଅଭିନୟ କରୁଥିବା ଦେବକୀ । ସେ ଅଷ୍ଟଧା ପ୍ରକୃତିଙ୍କର ଦିବ୍ୟ ଅଂଶ । ସେ ଆଠଟି ଶ୍ଳୋକ (୨୪-୩୧) ରେ ଭଗବାନଙ୍କର କି ସ୍ତୁତି କଲେ ?

ଦେବକୀ ଉବାଚ

**ରୂପଂ ଯତ ତତ୍ ପ୍ରାହୁଃ ଅବ୍ୟକ୍ତଂ ଆଦ୍ୟଂ**

**ବ୍ରହ୍ମ ଜ୍ୟୋତିଃ ନିର୍ଗୁଣଂ ନିର୍ବିକାରମ୍ ।**

**ସତ୍ତା ମାତ୍ରଂ ନିର୍ବିଶେଷଂ ନିରୀହଂ**

**ସ ତ୍ୱଂ ସାକ୍ଷାତ୍ ବିଷ୍ଣୁଃ ଅଧ୍ୟାତ୍ମଦୀପଃ ।।୨୪।।**

ଉ. ଭକ୍ତ ପାଇଁ ଯେ ସଗୁଣ-ସାକାର ଭଗବାନ, ଜ୍ଞାନୀ ପାଇଁ ସେ ସଗୁଣ-ନିରାକାର ପରମାତ୍ମା ଓ କର୍ମଯୋଗୀ ପାଇଁ ସେ ବ୍ରହ୍ମ (ନିର୍ଗୁଣ-ନିରାକାର) ଏଠାରେ ଦେବକୀ ପ୍ରଥମ ଦର୍ଶନରେ ନିର୍ଗୁଣ-ନିରାକାର ବ୍ରହ୍ମ ସ୍ୱରୂପରେ ସ୍ତୁତିର ଅୟମାରମ୍ଭ କରିଛନ୍ତି । ତାଙ୍କୁ ଆଦ୍ୟ, ଅବ୍ୟକ୍ତ, ବ୍ରହ୍ମଜ୍ୟୋତି, ନିର୍ଗୁଣ, ନିରାକାର, ସତ୍ତାମାତ୍ର, ନିର୍ବିଶେଷ, ନିରୀହ, ଅଧ୍ୟାତ୍ମ୍ୟ ଦୀପ ବୋଲି ଅନେକ ବିଶେଷଣମାନଙ୍କର ପ୍ରୟୋଗ କରି କିନ୍ତୁ ସ୍ୱୀକାର କରିବାକୁ ଭୁଲିନାହାନ୍ତି ସେ ଭକ୍ତର ଭଗବାନ ବିଷ୍ଣୁ, ନାରାୟଣ, ରାମ ବା କୃଷ୍ଣ ବୋଲି ।

ବ୍ରହ୍ମ ପ୍ରଳୟ ବେଳେ ନିଖିଳ ସୃଷ୍ଟି ଭାଙ୍ଗି ରୁଜି ଯାଇ ଅବ୍ୟକ୍ତରେ ପରିଣତ ହୋଇ ଅଦୃଶ୍ୟ ହୋଇଯାଏ । ସେତେବେଳେ ଶ୍ରୀମନ୍ ନାରାୟଣ ଶେଷନାଗ ବା ସଂକର୍ଷଣ ରୂପରେ ଏକାକୀ ରହନ୍ତି । ଯୋଗ ନିଦ୍ରାରେ ଅପେକ୍ଷା କରନ୍ତି ପରବର୍ତ୍ତୀ ସୃଷ୍ଟି ପାଇଁ । ବ୍ରହ୍ମା-ଶଙ୍କର-ଇନ୍ଦ୍ରାଦି ଜୀବ ମାତ୍ରକେ ଦିନେ ନା ଦିନେ ମରଣଶୀଳ । ମୃତ୍ୟୁ ଭୟରେ ଦୁର୍ବାସାଙ୍କ ଭଳି ଲୋକ ଲୋକାନ୍ତର ପଳାୟନ କଲେ ମଧ ମୃତ୍ୟୁର ହାବୁଡ଼ରୁ ଜୀବର ଦେହ ରକ୍ଷା ପାଇପାରେନା । ଅଥଚ ଭକ୍ତ କିମ୍ବା ଭଗବାନଙ୍କ ଚରଣକମଳରେ ଶରଣ ପଶିଲେ ସେଇ ଜୀବ ମାର୍କଣ୍ଡେୟ ଋଷିଙ୍କ ଭଳି ମୃତ୍ୟୁକୁ ମଧ ଡ଼ରାଏ । ଧ୍ରୁବଙ୍କୁ ମୃତ୍ୟୁ ଲୋକରୁ ବିଦାୟ ଦେବାବେଳେ ଯମ ରାଜା ମସ୍ତକ ଅବନତ କରନ୍ତି । ଯାହା ଉପରେ ପାଦ ଥାପି ଧ୍ରୁବଜୀ ଧ୍ରୁବଲୋକକୁ ଯାଆନ୍ତି ।

ଦେବକୀ ଏବେ ସାହସ ବାନ୍ଧି ଭଗବାନଙ୍କୁ ବୁଦ୍ଧି ବତାଉଛନ୍ତି କଂସ ହାତରୁ ଭଗବାନଙ୍କୁ ବଞ୍ଚାଇବା ଲାଗି । କହୁଛନ୍ତି ଯେ ସେ ଚତୁର୍ଭୁଜ ରୂପ ଗୋପନ କରି ନିଅନ୍ତୁ । ସେ ଭଗବାନଙ୍କୁ ପଣତ ଘୋଡ଼େଇ ଲୁଚେଇବାର ଚେଷ୍ଟା କରିବେ । ହୁଏତ କଂସ ଆଢୁଆଳରେ ବର୍ତ୍ତିଯିବେ ଭଗବାନ । ସୁନ୍ଦର ଉଦାହରଣଟିଏ ମଧ ଦେବକୀ ଭଗବାନଙ୍କ ସମ୍ମୁଖରେ ରଖିଛନ୍ତି । ନିଜକୁ ଗୋପନ କରିବା କାଇଦା ନାରାୟଣଙ୍କୁ ଅଜଣା ନୁହେଁ । ପ୍ରଳୟ କାଳରେ ସମଗ୍ର ସୃଷ୍ଟିକୁ ସେ ଆତ୍ମସାତ କରନ୍ତି ନିଜ ମୁଖ

କମଳରେ ନିଜ କର କମଳ ସାହାଯ୍ୟରେ ପଦ କମଳଙ୍କୁ ପାଟିରେ ପୁରାଇ । ଜଗନ୍ନାଥ ମନ୍ଦିର ବେଢ଼ାର ଅକ୍ଷୟ ବଟର ପତ୍ରରେ ସର୍ବଜ୍ଞାନତା ଭଗବାନ କିଛି ନ ଜାଣିବା ଭଳି ଶୋଇ ପଡ଼ନ୍ତି । ଦେବକୀ ମାତା ପୁଣି ଆଶ୍ଚର୍ଯ୍ୟ ପ୍ରକଟ କରୁଛନ୍ତି ଯେ ସେ ଏତେ ବଡ଼ ବିଶାଳ ବ୍ରହ୍ମାଣ୍ଡକୁ ଧାରଣ କରି ତାଙ୍କ ଟିକି ଗର୍ଭରେ ଦଶମାସ କାଳ ରହିଲେ କିପରି ! ! !

ପ୍ରଶ୍ନ-୩୭ : ଏ କଥା ଶ୍ରବଣ କରି ଭଗବାନଙ୍କୁ ମଧ୍ୟ ସାମାନ୍ୟ ହସ ମାଡ଼ିଲା । ଭାବିଲେ ଆଉ ଡ଼େରି କରି ଲାଭ ନାହିଁ । କିଭଳି ଶବ୍ଦରେ ଭଗବାନ ଦେବକୀଙ୍କ ଆଗରେ ନିଜ ଜନ୍ମ ରହସ୍ୟ ପ୍ରକଟ କଲେ ?

ଶ୍ରୀ ଭଗବାନ ଉବାଚ

**ତ୍ୱଂ ଏବ ପୂର୍ବ ସର୍ଗେଽଭୂଃ ପୃଶ୍ନିଃ ସ୍ୱାୟମ୍ଭୁବେ ସତି ।**
**ତଦା-ଅୟଂ ସୁତପା ନାମ ପ୍ରଜାପତିଃ ଅକଲ୍ମଷଃ ॥୩୨॥**

ଉ. ଭଗବାନ କୋମଳ କଣ୍ଠରେ ଜଣାଇଦେଲେ ଯେ ଏବେ ସପ୍ତମ ବୈବସ୍ୱତ ମନ୍ୱନ୍ତରର ୨୮ତମ ଚତୁର୍ଯୁଗରେ ଦ୍ୱାପର ଯୁଗ ହୋଇସାରିଛି । ପୂର୍ବରୁ ବ୍ରହ୍ମାଜୀଙ୍କର ଏହି କଳ୍ପର ପ୍ରଥମ ମନ୍ୱନ୍ତର (ସ୍ୱାୟମ୍ଭୁବ) କାଳରେ ଦେବକୀଙ୍କ ନାମ ପୃଷ୍ଣି ଥିଲା । ତାଙ୍କ ପତି ବସୁଦେବ ପ୍ରଜାପତି ସୁତପା ହୋଇ ନିର୍ମଳ ହୃଦୟରେ (ଅକଲ୍ମଷଃ) ଅନେକ ତପସ୍ୟା କରି ଭଗବାନଙ୍କୁ ପ୍ରସନ୍ନ କରିଥିଲେ । ସେତେବେଳେ ସେ ତିନି ଜନ୍ମରେ ତାଙ୍କ ପୁତ୍ରତ୍ୱ ସ୍ୱୀକାର କରିବାକୁ ବଚନ ବଦ୍ଧ ହୋଇଥିଲେ ।

ପ୍ରଶ୍ନ-୩୮ : ପୃଷ୍ଣି ସୁତପା ପୁତ୍ରଟିଏ ତାଙ୍କୁ ମାଗୁଥିଲେ ବ୍ରହ୍ମାଜୀଙ୍କ ଆଦେଶରେ ଆଦର୍ଶ ଗୃହସ୍ଥାଶ୍ରମ କରିବାକୁ । ସେତେବେଳେ ଭଗବାନ କୌଣସି ସାଧୁସନ୍ଥଙ୍କୁ ତାଙ୍କୁ ପୁତ୍ର ରୂପେ ନଦେଇ ସ୍ୱୟଂ କାହିଁକି ତିନି ତିନି ଥର ନର ଅବତାର ଗ୍ରହଣ କରିବା କଷ୍ଟ ସ୍ୱୀକାର କଲେ ?

**ଗତେ ମୟି ଯୁବାଂ ଲବ୍ଧ୍ୱା ବରଂ ମତ୍ ସଦୃଶଂ ସୁତମ୍ ।**
**ଗ୍ରାମ୍ୟାନ୍ ଭୋଗାନ୍ ଭୁଞ୍ଜାଥାଂ ଯୁବାଂ ପ୍ରାପ୍ତ ମନୋରଥୈଃ ॥୪୦॥**

ଉ. ଭଗବାନଙ୍କର ତ ଅସଲି ଉଦ୍ଦେଶ୍ୟ ଲୀଳା କରିବା । ବାରମ୍ବାର ଭିନ୍ନ ଭିନ୍ନ ଅବତାର ଗ୍ରହଣ କରି ଜୀବକୁ ଆନନ୍ଦ ପ୍ରଦାନ କରିବା । ଏ ଦୁହେଁ ସର୍ତ୍ତ ରଖିଦେଲେ ଯେ ଭଗବାନଙ୍କ ସଦୃଶ ତାଙ୍କର ପୁତ୍ର ହେବା ଦରକାର । ବଡ଼ ଅଡୁଆ ପରିସ୍ଥିତିରେ ପଡ଼ିଗଲେ ଭଗବାନ । ତାଙ୍କ ସମାନ ପୁଅଟିଏ ସେ କେଉଁଠୁ ପାଇବେ ? ବାଧ୍ୟ ହୋଇ ତାଙ୍କୁ ହିଁ ଆସିବାକୁ ପଡ଼ିଲା । ଭକ୍ତ-ଭଗବାନ ସମସ୍ତେ ପ୍ରସନ୍ନ । ଭଗବାନ

ଅନ୍ତର୍ଦ୍ଧାନ ହୁଅନ୍ତେ ଭକ୍ତ ଦୁହେଁ ପୁଣି ଯୋଗମାୟାଙ୍କ ଜାଲରେ ପଡ଼ିଗଲେ । ଭଗବାନ ପୃଷ୍ଣି ଗର୍ଭ ହୋଇ ଜନ୍ମ ନେଇ ତାଙ୍କର ପୁତ୍ରତ୍ୱ ଅଭିଳାଷ ସିନା ପୂରଣ କରିଦେଲେ ତଥାପି ଭକ୍ତ ଦୁହେଁ ମୁକ୍ତିଠାରୁ ଦୂରେଇ ଗଲେ । ଭଗବାନଙ୍କୁ ପୁଅ ଭାବି ପୁଣି ଅଦିତି କଶ୍ୟପ ରୂପରେ ଜନ୍ମନେଇ ବାମନ ଭଗବାନଙ୍କୁ ପ୍ରାପ୍ତ ହେଲେ । ସେଥରେ ମଧ୍ୟ ସେଇ କଥା ହେଲା ସେମାନେ ମୁକ୍ତି ମାଗି ପାରିଲେ ନାହିଁ ।

ଅତଏବ ତୃତୀୟ ଥରକୁ ଶେଷ ଥର ବୋଲି ଜଣାଇଦେବାକୁ ସେ ସାଧାରଣ ବାଳକ ରୂପରେ ଜନ୍ମ ନ ହୋଇ ଚତୁର୍ଭୁଜ ନାରାୟଣ ରୂପରେ ପ୍ରକଟ ହୋଇଛନ୍ତି ବୋଲି ଜଣାଇଦେଲେ ପିତାମାତା ଉଭୟଙ୍କୁ ।

ପ୍ରଶ୍ନ-୩୯ : ଅବତାର ଲୀଳା ରହସ୍ୟକୁ ପ୍ରକଟ କରିସାରି ଭଗବାନ ସେମାନଙ୍କୁ କି ନିର୍ଦ୍ଦେଶ ଦେଲେ ନିଜର ନରଲୀଳାକୁ ଆଗକୁ ବଢ଼ାଇବାକୁ ?

ଶ୍ରୀ ଶୁକ ଉବାଚ

**ଇତି-ଉକ୍ତ୍ୱା-ଆସୀତ୍ ହରିଃତୂଷ୍ଣୀଂ ଭଗବାନ-ଆତ୍ମ ମାୟୟା ।**
**ପିତ୍ରୋଃ ସମ୍ପଶ୍ୟତୋଃ ସଦ୍ୟୋ ବଭୂବ ପ୍ରାକୃତଃ ଶିଶୁଃ ॥୪୬॥**

ଉ. ଭଗବାନ କଂସ ଭୟରୁ ରକ୍ଷା ପାଇବାକୁ ତାଙ୍କୁ ନନ୍ଦଙ୍କ ଘରକୁ ନେଇ ତାଙ୍କ କନ୍ୟାଙ୍କୁ ବଦଳେଇ ଆଣିବାକୁ ଆଦେଶ ଦେଲେ । ପରେ ପରେ ସଂପୂର୍ଣ୍ଣ ନୀରବ ହୋଇଗଲେ । ଯୋଗମାୟାଙ୍କ ସାହାଯ୍ୟରେ ନିଜ ଚତୁର୍ଭୁଜ ନାରାୟଣ ରୂପକୁ ଗୋପନ କରିଦେଲେ । ପିତାମାତାଙ୍କ ଦେଖୁଥିବା ଅବସ୍ଥାରେ ସାଧାରଣ ମଣିଷ ଶିଶୁଟିଏ ହୋଇ କୁଆଁ କୁଆଁ ପାଟି କଲେ । ପୁଣି ପିତାମ୍ବର ଲୁଚାଇ ଲଙ୍ଗଳା ମଧ୍ୟ ହେଲେ ।

ଭଗବାନଙ୍କ କାମ ଆରମ୍ଭ ହେଉ ହେଉ ଯୋଗାମୟା ମଧ୍ୟ ତାଙ୍କ କାମ ଆରମ୍ଭ କରିଦେଲେ । ଗୋକୁଳରେ ନନ୍ଦ ରାଜାଙ୍କ ଘରେ ଯୋଗମାୟା ରୂପରେ ଶ୍ରୀକୃଷ୍ଣଙ୍କ ଯମଜ ଭଗନୀ ରୂପେ ପ୍ରକଟ ହୋଇଗଲେ । ବସୁଦେବ ଏକ ପାତ୍ରରେ ଭଗବାନଙ୍କୁ ଥୋଇ ନିଜ ମସ୍ତକରେ ରଖିଲେ । ଗୋଟିକ ପରେ ଗୋଟିଏ ଚମତ୍କାର ଘଟଣା ଘଟିବାରେ ଲାଗିଲା । ସକଳ ଅଭକ୍ତ ଚେତନ ପ୍ରାଣୀଗଣ ଅଚେତନ ହୋଇଗଲେ । ଅଚେତନ ପଦାର୍ଥମାନ ଚେତନ ହୋଇଗଲେ । ସକଳ ପ୍ରହରୀ, ଦ୍ୱାରୀ ଯୋଗ ନିଦ୍ରାରେ ଶୋଇଗଲେ । ସପ୍ତ ଦ୍ୱାରର ତାଲା ଗୁଡ଼ିକ ବିନା ଚାବିରେ ଖୋଲିଗଲା । କବାଟ ଗୁଡ଼ିକ ଆପଣା ଛାଏଁ ମୁକୁଳା ହୋଇ ଯାଉଥାନ୍ତି । ବସୁଦେବ ବନ୍ଦୀ ଘରୁ ବାହାରନ୍ତେ ମୁଖ୍ୟ ଦ୍ୱାରପାଳ ଭଗବାନଙ୍କ ଭକ୍ତ ଉଗ୍ରସେନ ଚେତାରେ ଥିବାରୁ ବାଟ ଓଗାଳିଲେ । ନିଜ ପୁତ୍ରର ଆଦେଶ ପାଳନ କରିବେ ସେ । ପୁତ୍ରର ମୃତ୍ୟୁ ଦେବକୀଙ୍କର

ଅଷ୍ଟମ ଗର୍ଭ ସନ୍ତାନଙ୍କୁ ଧରି ପଳାଇବାକୁ ସେ ସହ୍ୟ କରନ୍ତେ କିପରି ? ଭଗବାନ ନିଜର ସ୍ୱରୂପ ଦର୍ଶନ କରି ଦିଅନ୍ତେ ସେ ମଧ୍ୟ ଯିବାକୁ ବାଟ ଛାଡ଼ିଦେଲେ ।

ନିଶାର୍ଦ୍ଧ ସମୟ । ଆକାଶରେ ବିଜୁଳି ବାଟ କଢ଼ାଉଛନ୍ତି । ବର୍ଷା ଜଳରୁ ରକ୍ଷା କରିବାକୁ ଭଗବାନ ଅନନ୍ତ ଫଣା ଟେକି ପଛେ ପଛେ ଚାଲିଲେ । ଯମୁନା କୂଳରେ ପହଞ୍ଚି ବସୁଦେବ ଦେଖିଲେ ଯମୁନା ନଦୀ ପୂର୍ଣ୍ଣଗର୍ଭା । ବସୁଦେବ ଭଗବାନଙ୍କୁ ମସ୍ତକରେ ଧାରଣ କରିଛନ୍ତି । ଡ଼ରନ୍ତେ କାହିଁକି ? ସାହାସ ବାନ୍ଧି ପଶିଲେ ସିନା କ୍ରମେ ପାଣି ଆଣ୍ଠୁଏ, ଅଣ୍ଟାଏ, ଛାତିଏ ହୋଇ ନାକ ଛୁଇଁଲା । ଭକ୍ତ ଯମୁନା ନ ଛୋଡ଼ ବନ୍ଧା । ସେ ମଧ୍ୟ ଭଗବାନଙ୍କ ସହିତ ଲୀଳା କରିବାକୁ କଟୀବଦ୍ଧା । ଶ୍ରୀରାମ ଲୀଳାରେ ଭଗବାନ ତାଙ୍କ ଭଉଣୀ ଗଙ୍ଗାଙ୍କୁ ଚରଣ ସ୍ପର୍ଶ କରାଇ କୃତାର୍ଥ କରି ସାରିଛନ୍ତି । ଏଥର ତାଙ୍କ ପାଳି । ସେ ପରିସ୍ଥିତିର ଲାଭ ଉଠାଇଲେ । ଯମୁନା ଆନନ୍ଦରେ ଫୁଲି ଉଠିଲେ ।

ଜଳର ଗଭୀରତା ବେଳକୁ ବେଳ ବଢ଼ିଚାଲିଲା । ମହାତ୍ମାମାନେ ଯମୁନା ଜଳର ବୃଦ୍ଧି ବିଷୟରେ ପୁଣି କାରଣ କହନ୍ତି ଯେ-ଯମୁନା ମହାରାଣୀ ଭାବିଲେ ଯେ ପରମପୁରୁଷଙ୍କ ଦର୍ଶନ ନିମିତ୍ତ ଯୋଗୀନ୍ଦ୍ର ମୁନୀନ୍ଦ୍ରମାନେ ହଜାର ହଜାର ବର୍ଷ ତପ ସମାଧିରେ ପଡ଼ି ରହନ୍ତି ଏବେ ଭଗବାନ ସ୍ୱୟଂ ଆସିଛନ୍ତି ତାଙ୍କୁ ଦର୍ଶନ ଦେଇ କୃତାର୍ଥ କରିବାକୁ । ପ୍ରେମରେ ତାଙ୍କର ଆନନ୍ଦ ଅଶ୍ରୁ ବହିଚାଲିଲା । ଫଳରେ ଜଳସ୍ରୋତରେ ଅହେତୁକ ବୃଦ୍ଧି ହେଲା ।

ଅନ୍ୟ କେହି ତୃତୀୟ କାରଣ କହନ୍ତି । ଯମୁନା ଭାବିଲେ, ସହଜେ ଲୋକେ ତାଙ୍କୁ ଯମଙ୍କ ଭଉଣୀ ସୂର୍ଯ୍ୟପୁତ୍ରୀ କହନ୍ତି । ସୂର୍ଯ୍ୟବଂଶୀ ଲୀଳା ସେ କରିସାରିଛନ୍ତି ବୋଲି କାଳେ ମୁହଁ ଫେରାଇ ନେବେ । ସୁତରାଂ ତାଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ସେ ବାଟ ଓଗାଳିବାକୁ ପସନ୍ଦ କଲେ ।

ପୁଣି କେହି ଚତୁର୍ଥ କାରଣ ମଧ୍ୟ ଦର୍ଶାନ୍ତି । ଯମୁନା ଭାବିଲେ. ମୋ କୂଳରେ ଗୋଟିଏ ଭୟଙ୍କର ସର୍ପ କାଳୀୟ ରହି କୃଷ୍ଣ ଭକ୍ତଙ୍କୁ ହଇରାଣ କରୁଛି । ଏବେ କୃଷ୍ଣଙ୍କ ପଛେ ପଛେ ଆହୁରି ଏକ ଭୟଙ୍କର ଶେଷ ନାଗ ସର୍ପ ଆସିଲାଣି । ତାଙ୍କୁ ସମ୍ଭାଳିବା ମୁସ୍କିଲ୍ ହୋଇପାରେ । ସେଥିପାଇଁ ତାଙ୍କୁ ଡ଼ରାଇବାକୁ ଧମକାଇବାକୁ ଜଳସ୍ତର ବଢ଼ାଇ ଫୁ ଫୁ ଗର୍ଜନ କରୁଥିଲେ ।

କାରଣ ଯାହା ହେଉ ନା କାହିଁକି ଯମୁନାଙ୍କର ଦରକାର ଠାକୁରଜୀଙ୍କର ଚରଣ ସ୍ପର୍ଶ । ଭକ୍ତ ବାଞ୍ଛା କଳ୍ପତରୁ ଭଗବାନ ଜାଣିପାରିଲେ ଯମୁନାଙ୍କ ମନ କଥା

ଭିତିରି ଉଦ୍ଦେଶ୍ୟ । ଡ଼େରି ନ କରି ନିଜର ପଦ କମଳ ସ୍ପର୍ଶ କରାଇଦେଲେ । କୃତ୍ୟ କୃତ୍ୟ ହେଲେ ଯମୁନାଜୀ । ବସୁଦେବଜୀଙ୍କୁ ବାଟ ଛାଡ଼ି ଦେଲେ । ଚାହୁଁ ଚାହୁଁ ଯମୁନା ଜଳ ଦୁଇଭାଗ ହୋଇଗଲା ।

ଯମୁନା ବାଟ ଛାଡ଼ିଦେବାର ଅନେକ କାରଣ ଦର୍ଶାନ୍ତି ମହାତ୍ମାମାନେ । ଯମୁନା ଭାବିଲେ କାଳେ ଶ୍ରୀକୃଷ୍ଣ ଭାବିବେ ଯେ ଏତେ ଜଳରେ ମୁଁ ଗୋପାଙ୍ଗନା ଓ ଗୋପ ବାଳକମାନଙ୍କ ସହିତ ଲୀଳା କରିବି କିପରି ! ହୁଏତ ଯୋଗମାୟା ଲୀଳା ବନ୍ଦ କିମ୍ବା ବଦଳାଇ ଦେଇପାରନ୍ତି । ଏହି ଭୟରେ ଜଳସ୍ରୋତ ବନ୍ଦ କରିଦେଲେ ।

ଅନ୍ୟ ଏକ କାରଣ ଦର୍ଶାନ୍ତି ଆଉ ଜଣେ ମହାତ୍ମା । ଯମୁନା କୋଳରେ କାଳୀୟ ନାଗର ଅବସ୍ଥିତିରେ ଲୀଳା ବାଧକତା ଜଣାଇବା ଲାଗି ସେ ହୁଏତ ନିଜର ଦୁଃଖ ପ୍ରକାଶ କଲେ ଜଳସ୍ରୋତକୁ କ୍ଷୀଣରୁ କ୍ଷୀଣତର କରି ।

ଜଣେ ମହାତ୍ମାଙ୍କ ମତରେ ଆଗକୁ ଯମୁନା ଦେବୀଙ୍କର କୃଷ୍ଣ ପାଟରାଣୀ ହେବାର ଆକାଙ୍‌କ୍ଷା ଥିଲା । ସୁତରାଂ ଉଚ୍ଛୃଙ୍ଖଳତା ବନ୍ଦ କରିଦେଇ ସେ ସୁଧାର କନ୍ୟା ହେବାକୁ ପସନ୍ଦ କରିଥିଲେ ।

ଆଉ ଜଣେ ମହାତ୍ମା କହିଲେ ଯେ ଯମୁନା ଭାବିଲେ ମୋର ନାମ କୃଷ୍ଣା । ମୋର ଜଳ କୃଷ୍ଣ (ବର୍ଣ୍ଣରେ) । ଏବେ ମୋ ବାହାରେ କୃଷ୍ଣ ଅଛନ୍ତି । ସୁତରାଂ ମାର୍ଗ ଛାଡ଼ିଦେଲେ ମୁଁ ତାଙ୍କୁ ମୋ ଜଳଦେହ ମଧ୍ୟରେ ଧାରଣ କରି ସଂପୂର୍ଣ୍ଣ ଆତ୍ମସାତ୍ କରିନେବି । ଏହି ଦିବ୍ୟ ଭାବନାରେ ଯମୁନା ନିଜକୁ ମଧ ହଜାଇ ଦେଲେ । ଜଳଶୂନ୍ୟ ହେଲେ ଯମୁନା ନଦୀ ।

କେହି ଜଣେ ଭକ୍ତ କହିଲେ ଅନ୍ୟ ଏକ ଅନୁପମ ସୁନ୍ଦର ଭାବ । ରାମାବତାର କାଳରେ ସେ ସୂର୍ଯ୍ୟବଂଶରେ ଜନ୍ମ ନେଇଥିଲେ । ଚନ୍ଦ୍ରମାଙ୍କ ପିତା ସମୁଦ୍ରକୁ ବାନ୍ଧି ପକେଇଥିଲେ ଲଙ୍କାକୁ ଯିବାକୁ ବାଟ ନ ଦେବାରୁ । ଏବେ ସେ ଚନ୍ଦ୍ରବଂଶରେ ଜନ୍ମ ନେଇଛନ୍ତି । ଯମୁନା ସୂର୍ଯ୍ୟପୁତ୍ରୀ । ବାଟ ନଦେଲେ କାଳେ ଯମୁନା ଜଳରାଶିକୁ ଏବେ ବାନ୍ଧିନେବେ । ଏଇ ଡ଼ରରେ ସ୍ୱୟଂ ଦୁଇ ଭାଗ ହୋଇ ବାଣ୍ଟି ହୋଇଗଲେ ।

ଆଉ ଜଣେ ମହାତ୍ମାଙ୍କ ମତରେ ଯମୁନା ଶୁଣିଥିଲେ, ସାଧୁ ମହାତ୍ମାମାନେ ତାଙ୍କୁ ଅନ୍ତରରେ ଧାରଣ କରି ଅଲୌକିକ ଆନନ୍ଦ ପ୍ରାପ୍ତ ହୋଇଥାନ୍ତି । ସେଇ ଦିବ୍ୟ ଆନନ୍ଦ ପ୍ରାପ୍ତ ଲୋଭରେ ସେ ଜଳସ୍ତର ହ୍ରାସ କରି ତାଙ୍କୁ ଅଦୃଶ୍ୟ ରୂପରେ ଧାରଣ କରିବାର ପ୍ରୟାସ କଲେ ।

ପ୍ରଶ୍ନ-୪୦: ବସୁଦେବ ଏଥର ଗୋକୁଳରେ ପହଞ୍ଚି କ'ଣ କଲେ ?

**ଦେବକ୍ୟାଃ ଶୟନେ ନ୍ୟସ୍ୟ ବସୁଦେବୋଽଥ ଦାରିକାମ୍ ।**
**ପ୍ରତିମୁଚ୍ୟ ପଦୋଃ ଲୋହଂ ଆସ୍ତେ ପୂର୍ବବତ୍ ଆବୃତଃ ॥୫୨॥**

ଉ. ନନ୍ଦ ରାଜାଙ୍କ ପ୍ରାସାଦରେ ପହଞ୍ଚି ବସୁଦେବ ଦେଖିଲେ ଯୋଗାମାୟାଙ୍କ କୃପାରୁ ପରିସ୍ଥିତି ସଂପୂର୍ଣ୍ଣ ଅନୁକୂଳ ହୋଇସାରିଛି । ସମସ୍ତେ ଗଭୀର ନିଦ୍ରାରେ ଅଚେତ । ଯଶୋଦାଙ୍କ ମହଲ ପର୍ଯ୍ୟନ୍ତ ସକଳ କବାଟ ମୁକୁଳା । ସ୍ୱୟଂ ଯଶୋଦା ମଧ୍ୟ ଅଚେତନ । ଚେତନ ଥାଆନ୍ତି ଶିଶୁ କୃଷ୍ଣ ଓ ଶିଶୁ କନ୍ୟା ଯୋଗମାୟା । ଯୋଗମାୟା ମଥୁରା ଆସିବାକୁ ବ୍ୟାକୁଳ ହେଉଥାନ୍ତି । ବସୁଦେବ ଭଗବାନ ନାରାୟଣଙ୍କୁ ଯଶୋଦାଙ୍କ କୋଳରେ ରଖୁ ରଖୁ ଶ୍ରୀକୃଷ୍ଣଙ୍କ ମାଧୁର୍ଯ୍ୟ ଆକର୍ଷଣରେ ନାରାୟଣଙ୍କର ଐଶ୍ୱର୍ଯ୍ୟ ଶକ୍ତି ସଂପୂର୍ଣ୍ଣ ଆତ୍ମସାତ ହୋଇଗଲା । ଦୁଇ ଶିଶୁ କୃଷ୍ଣ ଓ ନାରାୟଣ ମିଶି ଗୋଟିଏ ହୋଇଗଲେ । ବସୁଦେବ ନବଜାତ କନ୍ୟା (ଦାରିକାଂ)ଙ୍କୁ ଧରି ଫେରି ଆସିଲେ । ଜୀବ ମାୟାଙ୍କୁ ଧରି ଆସନ୍ତେ ବନ୍ଦୀ ଘରର କବାଟ ପୂର୍ବବତ୍ ପଡ଼ିଗଲା । ତାଲା ବନ୍ଦ ହୋଇଗଲା । ଦେବକୀ ବସୁଦେବଙ୍କ ହସ୍ତପଦର ଶାଙ୍କୋଳି ପୂର୍ବଭଳି ପୁଣି ପଡ଼ିଗଲା । ରାତି ପାହି ଆସିଲା । ଯୋଗମାୟାଙ୍କ କୁଆଁ କୁଆଁ କାନ୍ଦ ଶୁଣି ପ୍ରହରୀମାନେ ସଜାଗ ସତର୍କ ହୋଇଗଲେ ।

ତେଣେ ଯଶୋଦା ଯୋଗ ନିଦ୍ରାରେ ରହିଥିବାରୁ ତାଙ୍କ ସନ୍ତାନ କେବଳ ପୁତ୍ର, କିମ୍ବା କନ୍ୟା ନା ଉଭୟ ଏ ରହସ୍ୟ ଆଦୌ ଜାଣି ପାରିନଥିଲେ । ଏଣେ ରାଜା କଂସଙ୍କ କାନରେ ପଡ଼ିଲା ଅଷ୍ଟମ ଗର୍ଭରେ କନ୍ୟା ଜନ୍ମ ହେବା ଖବର । ଯୋଗମାୟାଙ୍କ ଲୀଳା ଅନୁଯାୟୀ ନିଜେ ବସୁଦେବ ଓ ଦେବକୀ ରାତି ଅଧରେ ଘଟିଥିବା କଥାମାନ ପାଶୋରି ବସିଲେ । ଦୁହେଁ ନିଷ୍ଠୁର କଂସଙ୍କର ଆଗମନ ଅପେକ୍ଷାରେ ରହିଲେ ଆଶା ଓ ଆଶଙ୍କାକୁ ଧରି ।

# ଅଥ ଚତୁର୍ଥ ଅଧ୍ୟାୟଃ

## (କଂସ ହାତରୁ ଖସି ଯୋଗମାୟାଙ୍କ ଭବିଷ୍ୟବାଣୀ)

ପ୍ରଶ୍ନ-୪୧ : ସକାଳ ହୁଅନ୍ତେ କଂସ କାରାଗାରର ଦ୍ୱାରପାଳମାନେ ନିଦରୁ ଉଠି ନବଜାତ କନ୍ୟାର କୁଆଁ କୁଆଁ ଡ଼ାକ ଶୁଣି କି ପଦକ୍ଷେପ ନେଲେ ?

ଶ୍ରୀ ଶୁକ ଉବାଚ

**ତେ ତୁ ତୂର୍ଣ୍ଣଂ ଉପବ୍ରଜ୍ୟ ଦେବକ୍ୟା ଗର୍ଭଜନ୍ମ ତତ୍ ।**
**ଆଚଖ୍ୟୁଃ ଭୋଜରାଜାୟ ଯତ୍ ଉଦ୍‌ବିଗ୍ନଃ ପ୍ରତୀକ୍ଷତେ ॥୨॥**

ଉ. ଦ୍ୱାରୀମାନେ ତତ୍‌କ୍ଷଣାତ୍ (ତୂର୍ଣ୍ଣଂ) କଂସ ରାଜାଙ୍କୁ ଦେବକୀଙ୍କର ଅଷ୍ଟମ ସନ୍ତାନ ଭୂମିଷ୍ଠ ହେବା କଥା ଜଣାଇଦେଲେ । ଯେଉଁ ସନ୍ଦେଶ ପାଇବା ପାଇଁ ସେ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ ପ୍ରତୀକ୍ଷା କରିଥିଲେ ।

ପ୍ରଶ୍ନ-୪୨ : ଖବର ପାଇ କଂସରାଜା ଭୟ ଓ ହର୍ଷ ଉଭୟ ଅନୁଭବ କଲେ । ଭୟ ପାଇଲେ କାଳ (ମୃତ୍ୟୁ) ତାଙ୍କ ହାତ ପାଆନ୍ତାରେ ବୋଲି । ପୁଣି ଖୁସି ହେଲେ ସେ ଅବିଳମ୍ବେ ତାକୁ ସ୍ୱହସ୍ତରେ ହତ୍ୟା କରିବା ସୁଯୋଗ ପାଇଛନ୍ତି ବୋଲି । ରାଜା କ'ଣ ସେନାପତି କିମ୍ବା କୌଣସି ଘାତକକୁ ଶିଶୁ ହତ୍ୟା ଲାଗି ପଠାଇଥିଲେ କି ?

**ସ ତଳ୍ପାତ୍ ତୂର୍ଣ୍ଣ ଉତ୍‌ଥାୟ କାଲୋଽୟଂ ଇତି ବିହ୍ୱଳଃ ।**
**ସୂତୀ ଗୃହଂ ଅଗାତ୍ ତୂର୍ଣ୍ଣଂ ପ୍ରସ୍‌ଖଳନ୍ ମୁକ୍ତ ମୂର୍ଦ୍ଧଜଃ ॥୩॥**

ଉ. କଂସ ସେକଥା କରି କାହିଁକି ସ୍ୱହସ୍ତ ଶତ୍ରୁବଧ ସୁଯୋଗକୁ ହାତଛଡ଼ା କରନ୍ତେ । ତୁରନ୍ତ ଶେଯ (ତଳ୍ପାତ) ରୁ ଉଠି ଭାବିଲେ । ମୋ କାଳ ଆସିଗଲା । ସେ ସୂତିକା ଗୃହକୁ ତତ୍‌କ୍ଷଣାତ୍ ଦୌଡ଼ିଗଲେ । କାହାକୁ ଡ଼ାକି କିଛି ଆଦେଶ ଦେବାକୁ ବେଳ କାହିଁ ତାଙ୍କ ହାତରେ ! ସେ ଗଲାବେଳେ ପଡ଼ି ଉଠି (ପ୍ରସ୍‌ଖଳନ୍) ଧାଉଁଥାନ୍ତି । ଏତେ ବ୍ୟସ୍ତତା ମଧ୍ୟରେ ସେ ଜାଣିପାରୁନାହାନ୍ତି ଯେ ସେ ଜଣେ ରାଜା । ତାଙ୍କ ମସ୍ତକରେ ରାଜମୁକୁଟ ରହିବା କଥା । ଏଣେ ମସ୍ତକର ସଞ୍ଚିତ କେଶ ରାଶି ଖୋଲି ଆଲୁବାଲୁ ହେଲେଣି(ମୁକ୍ତ ମୂର୍ଦ୍ଧଜଃ) ।

ପ୍ରଶ୍ନ-୪୩: କଂସଙ୍କୁ ଦେଖି ମାତା ଦେବକୀ ନିଜର ଅସହାୟ ରୂପ ଦେଖାଇ ନିଜ ଭାଇଙ୍କୁ କରୁଣା ଭିକ୍ଷା କଲେ । ଲୋଭ ଦେଖାଇଲେ ଯେ ଏ ପୁତ୍ର ନୁହେଁ ଏକ ସୁନ୍ଦରୀ କନ୍ୟା । ବଡ଼ ହେଲେ ସେହି କନ୍ୟାକୁ ସେ ପୁତ୍ରବଧୂ କରିପାରିବେ । କନ୍ୟାର ଜୀବନ ଭିକ୍ଷା କଲେ ଅତ୍ୟନ୍ତ କାତର ବ୍ୟାକୁଳିତ ଚିତ୍ତରେ । ମନେ ପକାଇଦେଲେ ଯେ ସେ ପୂର୍ବରୁ ଛଅ ନିରୀହ ନିର୍ଦ୍ଦୋଷ ବାଳକ ହତ୍ୟା କରିଛନ୍ତି । ସୁତରାଂ ଅଯଥାରେ ଏ ବାଳିକାଟିର ହତ୍ୟା କରିବା ଅନୁଚିତ ହେବ । କଂସ ଖଳ ଅସାଧୁ ଲୋକର ଏକ ଜୀବନ୍ତ ପ୍ରତିମୂର୍ତ୍ତି । ଦୟା ମାୟା କାହୁଁ ଆସିବ ତାଙ୍କ ନିଷ୍ଠୁର ଚିତ୍ତରେ । ଜବରଦସ୍ତ ଶିଶୁ କନ୍ୟାଟିକୁ ଦେବକୀଙ୍କ ହସ୍ତରୁ ଛଡ଼ାଇ ନେଲେ । ଓଲଟି ଦେବକୀଙ୍କୁ ଗାଳିମନ୍ଦ କଲେ । ଭାଇର ପ୍ରାଣରକ୍ଷା କରିବାକୁ ସେ ପରାଙ୍‌ମୁଖ ବୋଲି । କନ୍ୟାର ଗୋଡ଼ ଦୁଇଟିକୁ ଧରି ବୁଲାଇ ବୁଲାଇ ଶିଳା ଉପରେ କଚାଡ଼ି ଦେଲେ ନିଜ କାଳର କାରଣକୁ କାଳମୁଖକୁ ଠେଲିଦେବା ପାଇଁ । କନ୍ୟାଟି ସାଧାରଣ ମରଣଶୀଳ ଶିଶୁ ନଥିଲା । ସେ ତ ଯୋଗାମୟାଙ୍କ ଶିଶୁ ରୂପ । ଶିଳାରେ ବାଜି ସେ କ'ଣ ମୃତ୍ୟୁବରଣ କଲେ କି ?

**ସା ତତ୍‌ହସ୍ତାତ୍ ସମୁତ୍ ପତ୍ୟ ସଦ୍ୟୋ ଦେବୀ-ଅମ୍ବରଂ ଗତା ।**
**ଅଦୃଶ୍ୟତ୍ ଅନୁଜା ବିଷ୍ଣୋଃ ସ-ଆୟୁଧା-ଅଷ୍ଟ ମହାଭୁଜା ॥୯॥**

ଉ. ସେ ସହଜେ କାଳଙ୍କର କାଳ ମହାକାଳଙ୍କର ଶକ୍ତି ସ୍ୱରୂପିଣୀ । ପୁଣି ଶ୍ରୀହରିଙ୍କର ସହୋଦରା ଭଗିନୀ (ଅନୁଜା ବିଷ୍ଣୋଃ) । କଂସଙ୍କ ହସ୍ତରୁ ଖସି ଶିଳାରେ ପିଟି ନ ହେଉଣୁ ଆକାଶକୁ ଉଠିଗଲେ । କଂସ, ଦେବକୀ ଓ ବସୁଦେବଙ୍କ ସମ୍ମୁଖରେ ଅଷ୍ଟଭୁଜା ରୂପରେ ଦର୍ଶନ ଦେଲେ । ତାଙ୍କ ଭୁଜରେ ପାଶ, ଅଙ୍କୁଶ, ଧନୁ, ଶୂଳ ଓ ଶଙ୍ଖ ଆଦି ଅଷ୍ଟ ଦିବ୍ୟ ଆୟୁଧ । ଚତୁଃପାର୍ଶ୍ୱରେ ଥାନ୍ତି ଦେବୀଙ୍କର ଜୟା ବିଜୟା ଆଦି ନିତ୍ୟ ପାର୍ଷଦଗଣ । ସେମାନେ ସ୍ତୁତି କରୁଥାନ୍ତି ମା ଭାଗବତୀଙ୍କର । ଦେବୀ ସଙ୍ଗେ ସଙ୍ଗେ କଂସଙ୍କୁ ସତର୍କବାଣୀ ଶୁଣାଇ କହି ଦେଲେ ଯେ ତାଙ୍କ ଶତ୍ରୁ ତାଙ୍କ ଅଜ୍ଞାଣତରେ ଜନ୍ମ ନେଇ ଅନ୍ୟତ୍ର ବଢୁଛନ୍ତି । କଂସଙ୍କ ଆୟୁଷ ପୁରିଗଲେ ସେ ଠିକଣା ବେଳରେ ଆସି ଉଦ୍ଧାର କରିବେ । ତାଙ୍କ ଭଳି ନିର୍ଦ୍ଦୋଷ ଶିଶୁ ହତ୍ୟା କରି ମୃତ୍ୟୁକୁ ଆହୁରି ପାଖକୁ ଆସିବାକୁ ନିମନ୍ତ୍ରଣ କରିବା ତାଙ୍କ ପକ୍ଷେ କେବଳ ମୂର୍ଖତା ।

ସେହି ଦିନରୁ ଦେବୀ ମର୍ତ୍ତ୍ୟଲୋକରେ ଦୁର୍ଗା, କାଳୀ, ଭଦ୍ରା, ଈଶାନୀ ଆଦି ଅନେକ ନାମରେ ପୂଜା ପାଇଲେ । ସହର ମଫସଲ ସବୁଠାରେ । ଦେବୀଙ୍କ ଦିବ୍ୟ ଗମ୍ଭୀର ବଚନ ଶ୍ରବଣ କରି କଂସ ଅତ୍ୟନ୍ତ ବିସ୍ମିତ ହେଲେ । ମାତା ଭଦ୍ରକାଳୀଙ୍କର

ଦର୍ଶନ ଓ ଦେବକୀ ବସୁଦେବ ଦୁଇ ହରିଭକ୍ତଙ୍କ ସାନ୍ନିଧ ହେତୁ ତାଙ୍କର କିଛି କ୍ଷଣ ପାଇଁ ଚୈତନ୍ୟ ଉଦୟ ହେଲା ।

ପ୍ରଶ୍ନ-୪୪: ସତ୍ତ୍ୱଗୁଣ ପ୍ରଭାବରେ ଆସି ରାଜା କଂସ କ'ଣ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇ ଦସ୍ୟୁ ରତ୍ନାକରରୁ ଆଦିକବି ବାଲ୍ମିକୀ ହୋଇଗଲେ କି ?

**ଦୈବଂ ଅପି-ଅନୃତଂ ବକ୍ତି ନ ମର୍ତ୍ତ୍ୟା ଏବ କେବଳମ୍ ।**
**ଯତ୍ ବିଶ୍ରମ୍ଭାତ୍ ଅହଂ ପାପଃ ସ୍ୱସୁଃ ନିହତବାନ୍ ଶିଶୂନ ।।୧୭।।**

ଉ. ସତ୍‌ସଙ୍ଗ ଓ ଦେବୀ ଦର୍ଶନ ହେତୁ କଂସ ସାମୟିକ ଭାବରେ ପଶ୍ଚାତ୍‌ତାପ କଲେ । ଭାବି ନେଲେ ଯେ କେବଳ ମନୁଷ୍ୟ ମିଥ୍ୟା କୁହେନା । ଶୂନ୍ୟବାଣୀ ମିଥ୍ୟା ହୋଇଗଲା ତାଙ୍କ ପାଇଁ । ଯୋଗାମାୟାଙ୍କ ମାୟା ରହସ୍ୟ ବାଣୀ ଆଦି ଭେଦ କରିବାକୁ ତାଙ୍କ ଖଳ ବୁଦ୍ଧି ଅସମର୍ଥ ହେଲା । ଭାବିଲେ ଯେ ଅଯଥାରେ ଛଅ ଭଣଜା ମାରି ନିଜେ ମଲାପରେ ନିଶ୍ଚୟ ନର୍କ ଗମନ କରିବେ ।

ଭଉଣୀ ଭିଣୋଇଙ୍କୁ ବୁଝାଇବାରେ ଲାଗିଲେ ବ୍ରହ୍ମଜ୍ଞାନ, ଶୁଷ୍କ ଶାସ୍ତ୍ର ଜ୍ଞାନ । କହିଲେ ଯେ ମନୁଷ୍ୟ ଜୀବନ ନଶ୍ୱର । ଶରୀର ସଂସାର ସବୁ ମାୟାମୟ । ସୁତରାଂ ସେମାନଙ୍କ ସନ୍ତାନମାନଙ୍କ ଅପମୃତ୍ୟୁ ସେମାନଙ୍କ ପୂର୍ବ କର୍ମର ଫଳ । ସେମାନେ ସେଥିଲାଗି ଆଦୌ ଶୋକ କରିବା ଅନୁଚିତ । ପୃଥିବୀରେ ମାଟିରୁ ହାଣ୍ଡି ମାଠିଆ ତିଆରି ହୋଇ ପୁଣି ବିଳୀନ ହୁଅନ୍ତି । ହାଣ୍ଡି ମାଠିଆ ସିନା ଲୁପ୍ତ ହୁଅନ୍ତି ସେମାନଙ୍କ କାରଣ ମାଟି ବିଲୁପ୍ତ ହୁଏନା । ଅତଏବ ସେମାନେ ବୁଝିବା ଉଚିତ ଦେହ ମରଣଶୀଳ । ବାରମ୍ବାର ଜନ୍ମେ ମରେ । ଆତ୍ମା କିନ୍ତୁ ଅମର ।

ପ୍ରଶ୍ନ-୪୫: ଦେବକୀ ବସୁଦେବ ଶ୍ରୋତା ଦୁଇଜଣ । କଂସ ତାଙ୍କର ବ୍ରହ୍ମଜ୍ଞାନ ପ୍ରବଚନ ଜାରି ରଖିଥାନ୍ତି । କଂସ ପୁଣି କହିଲେ ଯେ ଜଣେ ମରଣଶୀଳ ଜୀବ କାହାରି ମୃତ୍ୟୁରେ ଶୋକ କରିବା ଦେହାତ୍ମ୍ୟବୋଧର ପରିଚାୟକ । ବାସ୍ତବ ତତ୍ତ୍ୱଜ୍ଞାନ ନ ହେବା ଯାଏ ସେ ନିଜେ ମରିବାକୁ ଡ଼ରେ । ଅନ୍ୟ ମୃତ୍ୟୁରେ କିନ୍ତୁ ଶୋକ ପ୍ରକାଶ କରେ । ସୁତରାଂ ତାର ଜନ୍ମ ମରଣ ଚକ୍ର ଗଡ଼ିଚାଲେ ଜନ୍ମ-ଜନ୍ମାନ୍ତର । ଅଯଥା ସେ ଗର୍ବ କରେ ମୁଁ ତାକୁ ମାରିଦେଲି । ଅଯଥା ଶୋକଭୟ କରୁଥାଏ କିଏ କାଳେ ମୋତେ ମାରିପକାଇବ । ବିନା ଆତ୍ମଜ୍ଞାନରେ ଜୀବ ମାୟା ବନ୍ଧନରେ ପଡ଼ି ସୁଖ-ଦୁଃଖ ଭୋଗିବାକୁ ବାଧ୍ୟ ହୁଏ । ସତ୍‌ସଙ୍ଗର ଅଲୌକିକ ପ୍ରଭାବରେ ଖଳ କଂସ କେବଳ ପ୍ରବଚନ ଦେଇ ତାଙ୍କ କର୍ତ୍ତବ୍ୟ ଶେଷ କରିଦେଲେ ନା ଆହୁରି କିଛି ଜୀବନରେ କେବେ ନ କରିଥିବା କଥା କରିବସିଲେ ?

**କ୍ଷମଧ୍ୱଂ ମମ ଦୌରାତ୍ମ୍ୟଂ   ସାଧବୋ ଦୀନ ବତ୍ସଳାଃ ।**
**ଇତି ଉକ୍ତ୍ୱା-ଅଶ୍ରୁମୁଖଃ ପାଦୌ ଶ୍ୟାଳଃ ସ୍ୱସ୍ରୋଃ ଅଥ-ଅଗ୍ରହୀତ୍ ॥୨୩॥**

ଉ. ଶ୍ୟାଳକ ମହାଶୟ ଶରଣ ପଶିଲେ ଭଉଣୀ ଭିଣୋଇଙ୍କ ପାଦତଳେ । କହିଲେ ଯେ ସେ ନିଜକୁ ଦୁରାତ୍ମା ବୋଲି ସ୍ୱୀକାର କରୁଛନ୍ତି । ନିଜ ଅସାଧୁ କର୍ମ ପାଇଁ ଅଶ୍ରୁମୁଖ ହୋଇ ପଶ୍ଚାତ୍‌ତାପ କରୁଛନ୍ତି । ସେ ଦୁହେଁ ସନ୍ଥଲୋକ । ଦୀନଲୋକର ଦୌରାତ୍ମ୍ୟକୁ କ୍ଷମା କରିଦେବା ସାଧୁର ସ୍ୱଭାବ । ଅତଏବେ ନିଜ ସାଧୁଗୁଣରେ କଂସଙ୍କର ଅପରାଧକୁ କ୍ଷମା କରିଦେବା ସେମାନଙ୍କ ପକ୍ଷେ ଉଚିତ ।

ଦୁର୍ଗାଦେବୀଙ୍କ ଦର୍ଶନ ଓ ବାଣୀକୁ ବିଶ୍ୱାସ କଲେ ରାଜା କଂସ । ଦୁହିଁଙ୍କ ପ୍ରତି ଦୟାର୍ଦ୍ର ହୃଦୟ ହୋଇ ସେମାନଙ୍କୁ ବନ୍ଧନ ମୁକ୍ତ କରିଦେଲେ । ହସି ହସି ସେମାନେ କ୍ଷମା କରିଦେଲେ କଂସଙ୍କୁ । କହିଲେ ଯେ କଂସଙ୍କର ଏଥିରେ କିଛି ଅପରାଧ ନାହିଁ । ଏସବୁ ପରମେଶ୍ୱରଙ୍କର ଅଦୃଶ୍ୟ ହସ୍ତର ଖେଳ । ଲୀଳା । ଜୀବ ମାତ୍ରକେ ସଂସାରସୁଖ ଖୋଜେ । ହର୍ଷ, ଶୋକ, ଭୟ, ଦ୍ୱେଷ, ଲୋଭ ଓ ମୋହ ମନର ଶିକାର ହୋଇ କରୁଥିବା କର୍ମରେ କର୍ତ୍ତୃତ୍ୱ ସ୍ୱୀକାର କରେ । ବିଚରା ଭଗବାନଙ୍କ ଲୀଳାକୁ ବୁଝି ନ ପାରି ସୁଖୀ ଦୁଃଖୀ ହୁଏ ।

ପ୍ରଶ୍ନ-୪୬: ରାଜା କଂସ ରାଜମହଲକୁ ଫେରି ଆସି ରାତ୍ରିରେ ବିଶ୍ରାମ ନେଲେ । ସକାଳେ ଦୈତ୍ୟ, ଦାନବ, ଅସୁର, ରାକ୍ଷସମାନଙ୍କୁ ଡ଼କାଇ ତାଙ୍କ ଦରବାରରେ ଘଟିଥିବା ସବୁ କଥା ଆମୂଳ ଚୂଳ କହିଲେ । ସେମାନଙ୍କର ସମୁଚିତ ପରାମର୍ଶ ଲୋଡ଼ିଲେ । ସେମାନେ ତ ସମସ୍ତେ ତମୋଗୁଣୀ ଜୀବ । ସ୍ୱଭାବରେ କ୍ରୁର, ମୁର୍ଖ, ବିଷ୍ଣୁ ବୈଷ୍ଣବ ବିଦ୍ୱେଷୀ । ସେମାନେ ପରାମର୍ଶ ଦେଲେ ଯେ ଘଟଣା ମାତ୍ର ଦଶ ଦିନର ବାଳକକୁ ନେଇ । ଅତଏବ ମଥୁରା ରାଜଧାନୀ ଓ ମଥୁରା ଆଖପାଖ ସକଳ ରାଜ୍ୟର ବାଳକମାନଙ୍କୁ ହତ୍ୟା କରିଦେଲେ ପାଇଟି ଛିଡ଼ିଲା । ଅସୁରମାନେ ଏଭଳି ଅଧର୍ମ ନିଷ୍ଠୁର କାର୍ଯ୍ୟର ପରାମର୍ଶ ଦେଲା ବେଳେ ସୃଷ୍ଟିର ଦେବୀ, ଦେବତା, ଭଗବାନଙ୍କୁ ଡ଼ରିଲେନି କିପରି ?

**କିମ୍ ଉଦ୍ୟମୈ କରିଷ୍ୟନ୍ତି   ଦେବାଃ ସମର ଭୀରବଃ ।**
**ନିତ୍ୟଂ ଉଦ୍‌ବିଗ୍ନ ମନସୋ   ଜ୍ୟା ଘୋଷୈଃ ଧନୁଷଃ ତବ ॥୩୨॥**

ଉ. ସେନାପତିମାନେ ସୁନ୍ଦର ଭାବରେ ବୁଝାଇଦେଲେ କଂସଙ୍କୁ ଯେ ମହାବଳଶାଳୀ କଂସଙ୍କର ଧନୁର ଗୁଣ ଟଙ୍କାର ଧ୍ୱନି (ଘୋଷୈଃ) ଦେବତା ମାନେ ସେତେବେଳେ ଥର ହର ହେଉଥିଲେ ଭୟରେ । ସେମାନେ କଂସର ବଳ ପରାକ୍ରମର

ପରିଚୟ ପାଇସାରିଛନ୍ତି । ସୁତରାଂ ସେମାନେ ସମସ୍ତେ ସମର ଭୀରୁ । କଂସଙ୍କ ସହିତ ଶତ୍ରୁତା ଆଚରଣ କରିବାକୁ ସେମାନେ ଦୁଃସାହସ କରିବେ କେମିତି ?

ସେମାନେ କଂସଙ୍କ ଆଗରେ ଜଣେ ଜଣେ ଦେବତାଙ୍କ କାହାଣୀ ଶୁଣାଇ କହିଲେ ଯେ ଇନ୍ଦ୍ରାଦି ଦେବତାମାନେ ରଣଭୀରୁ । ଶଙ୍କରଜୀ ଆପଣ ଭୟରେ ବଣରେ ବୁଲି ବୁଲି ଏବେ କୈଳାସ ପର୍ବତରେ ଡ଼େରା ପକାଇଲେଣି । ବ୍ରହ୍ମାଜୀ ସଦା ସର୍ବଦା ତପସ୍ୟାମଗ୍ନ । ସ୍ୱୟଂ ଶ୍ରୀହରି ଏବେ ଗୋରୁ, ତୁଳସୀ ବୃକ୍ଷ, ବ୍ରାହ୍ମଣ ବୈଷ୍ଣବ ଋଷିମାନଙ୍କ ହୃଦୟ କୋଟରରେ ଲୁଚିଗଲେଣି । ସୁତରାଂ କଂସଙ୍କ ରାଜତ୍ୱକାଳରେ ସେମାନେ ଆଉ କାହାକୁ ଭୟ କରିବାର କାରଣ ନାହିଁ । ତଥାପି ଶତ୍ରୁପ୍ରତି ସେମାନେ ଜାଗ୍ରତ ରହିବେ । କାରଣ ଟିକିଏ ଅସାବଧାନ ହେଲେ ହୁଏତ ସେମାନେ କିଛି ବିପଦ ସୃଷ୍ଟି କରିବାକୁ ଉଦ୍ୟମ କରିପାରନ୍ତି ।

ପ୍ରଶ୍ନ-୪୭: ସେନାପତିମାନେ କଂସଙ୍କୁ ବୁଝାଇନେଲେ ଯେ ସବୁଦେବତାଙ୍କ ମୂଳ ହେଉଛନ୍ତି ବିଷ୍ଣୁ । ବିଷ୍ଣୁଙ୍କ ବାସସ୍ଥାନ ହେଲା ଧର୍ମ, ସଂସ୍କୃତି, ଦେବ, ଗାଈ, ବ୍ରାହ୍ମଣ, ବୈଷ୍ଣବ, ତପସ୍ୟା ଓ ଯଜ୍ଞ । ସୁତରାଂ ସେନାପତିମାନେ କଂସ ରାଜାଙ୍କୁ ବିଷ୍ଣୁଙ୍କ ଠାରୁ ସମ୍ପୂର୍ଣ୍ଣ ନିର୍ଭୟ ହେବାକୁ କି ଉପାୟ ବତାଇଦେଲେ ?

**ତସ୍ମାତ୍ ସର୍ବ-ଆତ୍ମନା ରାଜନ୍ ବ୍ରାହ୍ମଣାନ୍ ବ୍ରହ୍ମବାଦିନଃ ।**
**ତପସ୍ୱିନୋ ଯଜ୍ଞଶୀଳାନ୍ ଗାଃ ଚ ହନ୍ମୋ ହବିଃ ଦୁଘାଃ ॥୪୦॥**

ଉ. ବଢ଼ିଆ ପରାମର୍ଶ ଦେଲେ କଂସକୁ । କହିଲେ ଯେ ବ୍ରାହ୍ମଣ, ବେଦ ପାଠୀ, ତପସ୍ୱୀ, ଯଜ୍ଞକର୍ତ୍ତା, ଦୁଧ ଦେଉଥିବା ଗାଈ ସମସ୍ତଙ୍କୁ ହତ୍ୟା କରିଦିଆଗଲେ ଆଉ ଯଜ୍ଞ କେହି କରିପାରିବେ ନାହିଁ । ଗାଈ ରହିଲେ ସିନା ଦୁଗ୍ଧ ମିଳିବ । ଦୁଗ୍ଧରୁ ଲୋକ ଘୃତ ପ୍ରସ୍ତୁତ କରି ଯଜ୍ଞରେ ଆହୁତି ଦେବେ । ଆହୂତି ପାଇ ଦେବତାମାନେ ବଳବାନ ହୋଇଯିବେ । ବାଉଁଶ ଗଛ କାଟି ପକାଇଲେ ବଂଶୀ ଆସିବ କୁଆଡୁ ଯେ ବଂଶୀ ଧ୍ୱନି ଶୁଣାଯିବ ରାଜ୍ୟରେ ! !

ପ୍ରଶ୍ନ-୪୮: ତମୋଗୁଣୀ ସେନାପତିମାନଙ୍କ କୁସଙ୍ଗ ହେତୁ କଂସ ରାଜା ପୂର୍ବ ସଞ୍ଚିତ ସତ୍ତ୍ୱଗୁଣୀ ସଂସ୍କାର ତକ ହରାଇ ବସିଲେ । ତମୋଗୁଣୀ ବୁଦ୍ଧି ତାଙ୍କ ଧର୍ମ ପ୍ରବୃତ୍ତିକୁ ଭ୍ରଷ୍ଟ କରିଦେଲା । ସେ ହେଉ ତେବେ ସେଇଆ କରାଯାଉ ବୋଲି ସେମାନଙ୍କୁ ଆଜ୍ଞା ଦେଇ ରାଜସଭା ତ୍ୟାଗ କରି ଶୟନ କକ୍ଷକୁ ଚାଲିଗଲେ । ସେନାପତି ଗଲେ ରାଜକର୍ମଚାରୀମାନଙ୍କୁ ଧରି । କଂସଙ୍କ ଏ ନିଷ୍ଠୁର ଆଦେଶ କ'ଣ ସତରେ ପାଳନ କରିପାରିଲେ ?

ଆୟୁଃ ଶ୍ରିୟଂ ଯଶୋ ଧର୍ମଂ ଲୋକାନାଂ ଆଶିଷ-ଏବ ଚ ।
ହନ୍ତି ଶ୍ରେୟାଂସି ସର୍ବାଣି ପୁଂସୋ ମହତ୍ ଅତିକ୍ରମଃ ।।୪୬।।

ଉ. ସେମାନେ ଭାବିଲେ ଡ଼େରି ହେଲେ କାଳେ ରାଜା ତାଙ୍କର ନିଷ୍ପତ୍ତି ହୁଏତ ବଦଳାଇ ଦେଇ ପାରନ୍ତି । ସୁତରାଂ ସଙ୍ଗେ ସଙ୍ଗେ ସେମାନେ ନିଷ୍ଠୁର ଦମନ ଲୀଳାର ଉତ୍ପାତ ଚାଲୁ କରିଦେଲେ । ସମଗ୍ର ରାଜ୍ୟ ତ୍ରାହି ତ୍ରାହି ଡ଼ାକିବାରେ ଲାଗିଲା । ସାଧୁ ସନ୍ଥ ମହାପୁରୁଷ ଅପରାଧ ହେତୁ କଂସଙ୍କ ସହିତ ସକଳ ଅସୁରଙ୍କର ଆୟୁ, ଶ୍ରୀ, ଯଶ, ଧର୍ମ ଇତ୍ୟାଦି ସବୁ କ୍ଷୟ ହେବାରେ ଲାଗିଲା । ସେମାନଙ୍କ ପାପ ଘଡ଼ା ପୁରିଯିବାରେ ଲାଗିଲା । ସେମାନେ ସମସ୍ତେ ଅକାଳ ମୃତ୍ୟୁକୁ ନିମନ୍ତ୍ରଣ କଲେ । ତମୋଗୁଣ ଜୀବକୁ କେବଳ ନାଶ କରେନା । ବିନାଶ କରେ ନା । ମହାବିନାଶ ଆଡ଼କୁ ଠେଲିଦିଏ । ଜନ୍ମ-ଜନ୍ମାନ୍ତରର ଲାଗି ବିଚରା ନରକରୁ ନରକାନ୍ତରରେ ସଢ଼ିବା ଲାଗି ଅଗ୍ରୀମ ଟିକେଟ କାଟେ । ସେ କାହା କଥା କାହା ସତ୍ ପରାମର୍ଶ ଶୁଣେ ନା । କେହି ତା ପିଠିରେ ପଡ଼ିବେ ବା କାହିଁକି ? ମନୁଷ୍ୟ ଜନ୍ମ ବିଚାରାର ବ୍ୟର୍ଥ ହୋଇଯାଏ ।

## ଅଥ ପଞ୍ଚମ ଅଧ୍ୟାୟଃ

### (ଗୋକୁଳରେ ନନ୍ଦ ମହୋତ୍ସବ)

ପ୍ରଶ୍ନ-୪୯: ପୂର୍ବବର୍ତ୍ତୀ ଚାରି ଅଧ୍ୟାୟରେ ଶୁକଦେବଜୀ ମଥୁରା ନଗରୀ ଘଟିତ କୃଷ୍ଣ କଥାର ବିଶେଷ ବର୍ଣ୍ଣନା କଲେ । ଏବେ କହୁଛନ୍ତି ଗୋକୁଳଧାମ କଥା । ଭାଗବତ ପରିବେଷିତ ୧୮,୦୦୦ମନ୍ତ୍ରର ସାର ଏଇ ୧୮ଶ୍ଳୋକ (୫ମ ଅଧ୍ୟାୟର ୧ରୁ ୧୮) ସାର ଶ୍ଳୋକ ବୋଲି କୃଷ୍ଣ ଲୀଳାର ବାତ୍ସଲ୍ୟ ରସ ରସିକମାନେ ମତ ଦିଅନ୍ତି । ଦେବକୀ ବସୁଦେବଜୀ କୃଷ୍ଣଙ୍କୁ ନାରାୟଣ ସ୍ୱରୂପରେ ଦର୍ଶନ କଲେ ମଧ୍ୟ ମର୍ଯ୍ୟାଦା ଭକ୍ତିରେ ବାନ୍ଧି ହୋଇଗଲେ । ସେ କଂସକୁ ଭୟ କଲେ । ସେ ଆଜି ସବୁ ଦିଗରୁ ନିରାଶ ହତାଶ । ପୁଅକୁ ଭଗବାନ ଭାବିଲେ ପୁଅଠାରେ ପ୍ରେମ ହେବ କିପରି ? ସୁତରାଂ ସେ ଭଗବାନ ରୂପୀ ପୁଅକୁ ମଧ୍ୟ ସମ୍ଭାଳି ପାରିଲେନି । ମନ ଦୁଃଖରେ ଗୋକୁଳକୁ ନେଇ ନନ୍ଦ ଆଳୟରେ ଛାଡ଼ି ଆସିଲେ । ମସ୍ତକରେ ବୋହି ଆଣିଲେ

ଯୋଗମାୟାଙ୍କୁ । ବସୁଦେବ ଜ୍ଞାନୀ ଭକ୍ତ ହୋଇ ପୁଅ ପାଇଁ ବାସସ୍ଥାନର ବ୍ୟବସ୍ଥା ଟିକକ କରିପାରିଲେନି ।

ଅନ୍ୟ ପକ୍ଷରେ ନନ୍ଦ ରାଜା ନିଜ ନାମକୁ ସାର୍ଥକ କଲେ ନନ୍ଦୟତି(ଆନନ୍ଦଦାନ କରୋତି) ଇତି ନନ୍ଦ । ଭଗବାନ ଓ ଭଗବାନଙ୍କ ଭକ୍ତଗଣଙ୍କୁ ଯେ ଆନନ୍ଦ ଦେଇପାରେ ସେଇତ ନନ୍ଦ । ଯଶୋଦା ଦଦାତି ଇତି ଯଶୋଦା । ଭକ୍ତ ଭଗବାନଙ୍କୁ ଯଶ ବୃଦ୍ଧି କରିବା ହେତୁ ତାଙ୍କୁ ଯଶୋଦା କୁହାଗଲା । ଅନେକ ବ୍ରତ ଉପବାସ ସାଧୁ ସେବା, ଶାଳଗ୍ରାମ ସେବା କରି ଅଶୀବର୍ଷ ବୟସରେ ନନ୍ଦ ପାଇଛନ୍ତି ପୁଅ ଖଣ୍ଡେ । ସକାଳେ ପୁତ୍ର ହେବା ସମ୍ବାଦ ପାଇ ସେ କିଭଳି ଭାବରେ ନିଜର ଆନନ୍ଦକୁ ପ୍ରକଟ କଲେ ?

**ଶ୍ରୀ ଶୁକ ଉବାଚ**

**ନନ୍ଦଃ ତୁ ଆତ୍ମଜ ଉତ୍ପନ୍ନେ ଜାତ-ଆହ୍ଲାଦୋ ମହାମନାଃ ।**
**ଆହୂୟ ବିପ୍ରାନ୍ ବେଦଜ୍ଞାନ ସ୍ନାତଃ ଶୁଚିଃ ଅଲଙ୍କୃତଃ ॥୧॥**

ଉ. ତୁ ଶବ୍ଦ ଏଠାରେ ପୂର୍ବ ଅଧ୍ୟାୟ ବର୍ଣ୍ଣିତ ମନ ଦୁଃଖର ସଂକେତ ଦେଉଛି । ପୁଣି ଏ ଶ୍ଳୋକରେ ନନ୍ଦଙ୍କୁ ମହାମନା କହି ଆନନ୍ଦର ଅଫୁରନ୍ତ ଉତ୍ସ ବୋଲି ପ୍ରକଟ କରୁଛନ୍ତି ଶୁକଦେବଜୀ । ନନ୍ଦ ରାଜା କାଳ ବିଳମ୍ବ ନକରି ଯମୁନା ସ୍ନାନ କରିଛନ୍ତି । ମନ ବାଣୀକୁ ପବିତ୍ର (ଶୁଚିଃ) କରିଛନ୍ତି ହରିବୋଲ, ହରିନାମ ଜପ ସଂକୀର୍ତ୍ତନ କରି । ନନ୍ଦଜୀ ବୃଦ୍ଧ ବୟସରେ ସୁବର୍ଣ୍ଣ ହାର, କୁଣ୍ଡଳ ଆଦି ଧାରଣ କରିବା ବାସ୍ତବରେ ଅନ୍ତଃକରଣର ସର୍ବୋଚ୍ଚ ଆହ୍ଲାଦର ସୂଚନା ଦିଏ । ସେ ପୁତ୍ର ଜନ୍ମ ମହୋତ୍ସବ ଆୟୋଜନ ଲାଗି ବେଦଜ୍ଞ ବ୍ରାହ୍ମଣମାନଙ୍କୁ ଡ଼କାଇ ପଠାଇଛନ୍ତି ।

ପ୍ରଶ୍ନ-୫୦: ଖୁସିରେ ରାଜା ପିତୃପୂଜନ, ଦେବତା ପୂଜନ, ସ୍ୱସ୍ତୟନ ଆଦି ବିଧିପୂର୍ବକ ଅନୁଷ୍ଠାନ କରିଛନ୍ତି । କୁହାଯାଏ ଅନ୍ୟକୁ ଆନନ୍ଦ ଦେଲେ ନିଜର ଆନନ୍ଦ ବୃଦ୍ଧି ଘଟିଥାଏ । ତେଣୁ ଏ ଦିଗରେ ନନ୍ଦ ମହାରାଜ କି ପଦକ୍ଷେପ ନେଲେ ଅନ୍ୟକୁ ଖୁସି କରିବାକୁ ?

**ଧେନୂନା ନିୟୁତେ ପ୍ରାଦାଦ୍ ବିପ୍ରେଭ୍ୟଃ ସମଲଂକୃତେ ।**
**ତିଳ ଅଦ୍ରୀନ୍ ସପ୍ତ ରତ୍ନ-ଓଘ ଶାତକୌମ୍ଭ-ଅମ୍ବର-ଆବୃତ୍ତାନ୍ ॥୩॥**

ଉ. ଭଗବାନଙ୍କ ପ୍ରାକଟ୍ୟର ଟୁର୍ ପ୍ରୋଗ୍ରାମ୍ ପାଇ ମହାଲକ୍ଷ୍ମୀ ବୈକୁଣ୍ଠରୁ ଆସି ଗୋକୁଳରେ ଆଗୁଆ ପଦକ୍ଷେପ ସବୁ ନେଇ ସାରିଥାନ୍ତି । ଫଳରେ ଧନ-ଜନ-ଗୋପ-ଲକ୍ଷ୍ମୀ ଆଦି ସକଳ ସଂପଦରେ ସାରା ଗୋକୁଳ ଭରି ଉଠିଛି । ସକଳ ଗୋପୀ

ଗୋପାଳ ମାଲାମାଲ । ନନ୍ଦ ରାଜାଙ୍କ ସଂପତ୍ତି କଥା କ'ଣ କହିବା ? ରାଜା ୧୦ଲକ୍ଷ ସବତ୍ସା ଧେନୁକୁ ବସ୍ତ୍ର, ଅଳଙ୍କାରରେ ସଜାଇଦେଲେ । ସମସ୍ତଙ୍କ ଶିଙ୍ଘରେ ସୁବର୍ଣ୍ଣ କ୍ୟାପ୍ । ପିଠିରେ ପାଟ ବସ୍ତ୍ର । କଣ୍ଠରେ ସୁବର୍ଣ୍ଣ ହାର । ସଦାଚାରୀ ବ୍ରାହ୍ମଣମାନଙ୍କୁ ଡ଼କାଇ ସେମାନଙ୍କ ହସ୍ତରେ ଅନେକ ଗୋ ଦାନ କଲେ ସେମାନଙ୍କୁ । ରତ୍ନ ଓ ସୁନା ଜରି ଲାଗିଥିବା (ସାତକୌମ୍ଭ) ଅନେକ ରେଶମୀ ବସ୍ତ୍ର ଆଣିଲେ । ପର୍ବତ ପ୍ରମାଣେ ସାତଟି ତିଳ ଶସ୍ୟ ଗଦା ପ୍ରସ୍ତୁତ କରି ସେହି ମହାର୍ଘ ବସ୍ତ୍ରଦ୍ୱାରା ଆବୃତ କରି ଗୋକୁଳର ପ୍ରଜାମାନଙ୍କୁ ଦାନ କରି ଦେଲେ । ଉପଯୁକ୍ତ ଦକ୍ଷିଣା ସହିତ ପୁତ୍ର ଜନ୍ମ ମହୋତ୍ସବରେ ଦାନ ପର୍ବକୁ ମହିମା ମଣ୍ଡିତ କଲେ ।

ପ୍ରଶ୍ନ-୫୧ : ଶାସ୍ତ୍ର କହନ୍ତି କିଛି ଦ୍ରବ୍ୟ କାଳାନ୍ତରେ ସ୍ଥାନାନ୍ତରେ ଶୁଦ୍ଧ ହୁଅନ୍ତି । ସ୍ନାନ କଲେ ଦେହ ଶୁଦ୍ଧ ହୁଏ । ଜଳରେ ଧୋଇଲେ କିଛି ଦ୍ରବ୍ୟ ପାତ୍ରାଦି ଶୁଦ୍ଧ ହୁଅନ୍ତି । ସଂସ୍କାର ଦ୍ୱାରା ମନୁଷ୍ୟର ଜନ୍ମ ଶୁଦ୍ଧ ହୁଏ । କୃଷ୍ଣ ଚିନ୍ତନରେ ଆତ୍ମା ଶୁଦ୍ଧ ହୁଅନ୍ତି । ଦାନଦ୍ୱାରା ଧନ ଶୁଦ୍ଧ ହୁଏ । ଭଗବାନଙ୍କ ଜନ୍ମ ମହୋତ୍ସବରେ ସକଳ ଶୁଦ୍ଧି କରଣର ଆୟୋଜନ ହୋଇଛି । ବୈଦିକ ବ୍ରାହ୍ମଣମାନେ ବେଦମନ୍ତ୍ର ଗାନ କରି ବାୟୁମଣ୍ଡଳ ଶୁଦ୍ଧ କରୁଛନ୍ତି । ସୁତ-ମାଗଧ-ବନ୍ଦୀମାନେ ଭକ୍ତ ଭଗବାନଙ୍କ ଗୁଣ ଗାନ କରି ସମବେତ ଜନତାର ଅନ୍ତଃକରଣ ଶୁଦ୍ଧ କରୁଥାନ୍ତି । ଗାଉଣା, ବାଜଣା, ବିବିଧ ବାଦ୍ୟ ନାଦରେ ଗଗନ ପବନ ସକଳ ଶୁଦ୍ଧ ହେଉଥାନ୍ତି । ରଙ୍ଗ ବେରଙ୍ଗ ପତାକା, ପୂର୍ଣ୍ଣ କୁମ୍ଭ, ନବ ପଲ୍ଲବ, ତୋରଣ, ଚିତା ଝୋଟି ମଣ୍ଡଳ ଅଗଣା ଆଦି ଗୋକୁଳର ସକଳ ଗୃହ ଅଭ୍ୟନ୍ତର-ବାହ୍ୟାନ୍ତର ସାଜସଜାରେ ସମସ୍ତେ ଆଜି ଆନନ୍ଦିତ ।

ଗାଈ, ବଳଦ, ବାଛୁରୀ ଆଦି ସମସ୍ତେ ତ ଦେବୀଦେବତା କୃଷ୍ଣ ଭକ୍ତ । ସେମାନଙ୍କୁ ହଳଦୀ, ଅବୀର, ଗେରୁ, ଫୁଲମାଳ ବିଭିନ୍ନ ଲେପ ଆଦିରେ ସଜେଇ ଦିଆଗଲା । ବୃକ୍ଷ ଲତାଗଣ ଫୁଲ ଫଳ ସୁଗନ୍ଧରେ ସାରା ରାଜ୍ୟ ଅପୂର୍ବ ସୌନ୍ଦର୍ଯ୍ୟ ଓ ବାସନାର ମହକରେ ଭରି ଦେଲେ । ଗୋପାଳମାନେ ସ୍ନାନ ଶୌଚ ହୋଇ ପାଟବସ୍ତ୍ର ପିନ୍ଧିଲେ । ମୁଣ୍ଡରେ ପଗଡ଼ି ଧାରଣ କଲେ । ଦୌଡ଼ିଲେ ରାଜାଙ୍କ ରାଜ ପ୍ରାସାଦକୁ । ଗୋକୁଳର ସମସ୍ତେ ତ ଭକ୍ତ । ଏପରିକି ବୃକ୍ଷଲତା ପଶୁ ପକ୍ଷୀ ନଦୀ ପର୍ବତ ଝରଣା ଆଦି । ଗୋପୀମାନେ କିନ୍ତୁ ଭଗବାନଙ୍କ ଖାସ୍ ଭକ୍ତ । ଗୋପୀମାନେ ଠାକୁରଜୀଙ୍କୁ ସ୍ୱାଗତ କରିବାକୁ କେତେ ଉତ୍ସୁକତାର ସହିତ ନିଜ ନିଜର ଗୃହକର୍ମାଦି ତ୍ୟାଗ କରି ନନ୍ଦାଳୟକୁ ଧାଇଁଲେ ?

**ଗୋପ୍ୟଃ ଚ-ଆକର୍ଣ୍ୟ ମୁଦିତା ଯଶୋଦାୟାଃ ସୁତ-ଉଦ୍ଭବମ୍ ।**
**ଆତ୍ମାନଂ ଭୂଷୟାନ୍ ଚକ୍ରୁଃ ବସ୍ତ୍ର-ଆକଳ୍ପ-ଅଞ୍ଜନ-ଆଦିଭିଃ ।।୯।।**

ଉ. ଗୋପୀମାନଙ୍କ ଆନନ୍ଦ ବର୍ଣ୍ଣନା କରିବାକୁ ସରସ୍ୱତୀ ଈଶାନୀ ବ୍ରହ୍ମାଣୀ ମଧ୍ୟ କୁଣ୍ଠିତ ହୋଇଯାନ୍ତି । ଦଣ୍ଡକାରଣ୍ୟର ମୁନିଗଣ କେତେ ତପସ୍ୟା କରିନାହାନ୍ତି କୃଷ୍ଣ ଦର୍ଶନ ଲାଗି ! ତ୍ରେତାଯୁଗର ଜନକପୁରୀ ଅଯୋଧ୍ୟାପୁରୀ ନାରୀଗଣ ଏବେ ଏହି ଗୋପୀଗଣରେ ସାମିଲ ହୋଇଛନ୍ତି । ବେଦମନ୍ତ୍ର, ଗୋଲୋକଧାମର ନିତ୍ୟ ପାର୍ଷଦ ଲଳିତ, ବିଶାଖା ଆଦି ଗୋପୀରୂପ ଧାରଣ କରିଛନ୍ତି । ସେମାନେ ଶୁଣିଲେ ତାଙ୍କ ବ୍ରତ ଉପବାସ ସଫଳ ହୋଇଛି । ନନ୍ଦ-ଯଶୋଦାଙ୍କ କୋଳକୁ ତାଙ୍କ ପ୍ରିୟତମ କୃଷ୍ଣ ଆସିଛନ୍ତି । ସେମାନଙ୍କ କୃଷ୍ଣ ଦର୍ଶନ ବ୍ୟାକୁଳତାର ସୀମା ସରହଦ ରହୁନି । ବାଛି ବାଛି ମହାମୂଲ୍ୟବାନ ରେଶମୀ ବସ୍ତ୍ର, ଅଳଙ୍କାର, ଲାକ୍ଷା, ଅଞ୍ଜନ ଆଦି ସଯତ୍ନେ ଧାରଣ କଲେ । ତାଙ୍କ ଦିବ୍ୟ ଦେହରେ କୁଙ୍କୁମ କେଶରର ଶୋଭା ଅବର୍ଣ୍ଣନୀୟ । କେଶ ବାସ ଗଳା ଆଦି ସବୁ ପୁଷ୍ପ ମାଲ୍ୟ ଶୋଭିତ । ଗଳାର ହାରସବୁ ମଣି ଖଚିତ ଲକେଟ୍‌ଯୁକ୍ତ । ବ୍ୟାକୁଳ ଚିତ୍ତରେ ସେମାନେ ଧାବମାନ ହେଲାବେଳେ କେଶରୁ କିଛି କିଛି ମଲ୍ଲୀଫୁଲ ଖସି ପଡୁଥାନ୍ତି । ଖସି ପଡୁଥିବା ଫୁଲମାଳ ମାନେ ଦୁଃଖୀ ହେଉଥାନ୍ତି ଓ ସୁଖୀ ମଧ୍ୟ ହେଉଥାନ୍ତି । ଦୁଃଖୀ ହେବା କାରଣ କୃଷ୍ଣ ଦର୍ଶନର ସୁଯୋଗରୁ ବଞ୍ଚିତ ବୋଲି । ସୁଖୀ କାରଣ ସେମାନେ ପରେ ପରେ ଆସୁଥିବା ଗୋପୀମାନଙ୍କ ପାଦଧୂଳି ପାଇ ନିଜ ପୁଷ୍ପ ଜନ୍ମ ସାର୍ଥକ କରିବେ । ଧନ୍ୟ ସେ କୃଷ୍ଣ ଭକ୍ତ ! ଧନ୍ୟ ତାଙ୍କ ଗୋପୀ ! ! ଧନ୍ୟ ସେଇ ମଲ୍ଲୀଫୁଲ ମାନଙ୍କର ଦିବ୍ୟ ଭାବନା । ! ! !

ପ୍ରଶ୍ନ-୫୨ : ହଜାର ହଜାର ସଂଖ୍ୟାରେ ଗୋପାଳ ଓ ଗୋପୀମାନେ ନନ୍ଦଙ୍କ ଅଗଣାରେ ଏକତ୍ର ହେଲେ । ମହୋତ୍ସବ ଆରମ୍ଭ ହେଲା । ଗୀତ ବାଦ୍ୟ ନୃତ୍ୟରେ ବିଶେଶ୍ୱର ଶ୍ରୀକୃଷ୍ଣଙ୍କର ସ୍ୱାଗତିକା ପର୍ବ ଆଗେଇ ଚାଲିଲା । ତେବେ ଗୋପାଳମାନଙ୍କର ଆନନ୍ଦ ଆଦାନ ପ୍ରଦାନ କିଭଳି ଘଟଣାରେ ସର୍ବୋଚ୍ଚ ଶୀର୍ଷକୁ ଛୁଇଁଲା ?

**ଗୋପାଃ ପରସ୍ପରଂ ହୃଷ୍ଟା ଦଧିକ୍ଷୀର ଘୃତ-ଅମ୍ବୁଭିଃ ।**
**ଆସିଞ୍ଚନ୍ତୋ ବିଲମ୍ପନ୍ତୋ ନବନୀତୈଃ ଚ ଚିକ୍ଷିପୁଃ ।।୧୪।।**

ଉ. ଗୋପାଳମାନେ ପରସ୍ପର ମଧ୍ୟରେ ଦୁଧ ଦହି ଘୃତ ଜଳ ଆଦି ସିଞ୍ଚିଲେ । ନବନୀତ ଅବୀର ଆଦି ବୋଳାବୋଳି ହେଲେ ।

ଅତ୍ୟନ୍ତ ଉଦାର ହୃଦୟରେ ଖୋଲା ହାତରେ ରାଜା ନନ୍ଦ ବସ୍ତ୍ର, ଅଳଙ୍କାର, ଧେନୁ ଆଦି ପ୍ରଜାମାନଙ୍କୁ ଦାନ କରୁଥାନ୍ତି । ସେ ସବୁ ନିଜ ଖୁସି ପାଇଁ ସେ କରୁ ନଥିଲେ । କରୁଥିଲେ ଶ୍ରୀହରିଙ୍କୁ ପ୍ରସନ୍ନ କରିବାକୁ । ନନ୍ଦରାଣୀ ଯଶୋଦା ଓ ବସୁଦେବଙ୍କ ଅନ୍ୟତମା ପତ୍ନୀ ରୋହିଣୀ ଅତିଥି ଅଭ୍ୟାଗତଙ୍କୁ ସ୍ୱାଗତ ସତ୍କାରରେ ବ୍ୟସ୍ତ ଥାଆନ୍ତି । ଇତି ମଧ୍ୟରେ ଯୋଗମାୟାଙ୍କ ଅବତାର ପୌର୍ଣ୍ଣମାସୀ ଦେବୀ ପହଞ୍ଚି ଉତ୍ସବକୁ ଆହୁରି ରଙ୍ଗୀନ କରିଦେଲେ । ଅଗଣା ମଝିରେ ଚୌକି ପକାଇ ରାଜା ନନ୍ଦଙ୍କୁ ସେ ବସାଇଲେ । ଗୋପୀମାନଙ୍କ ସହିତ ମିଶି ନନ୍ଦଙ୍କ ଦେହରେ ଦୁଧ, ଦହି, ମାଖନ, ହଳଦୀ ବୋଳି ପକାଇଲେ । ସମସ୍ତଙ୍କ ସହ ମିଶି ନାଚିବାକୁ ଆଦେଶ ଦେଲେ । ସମସ୍ତଙ୍କ ନାଚ ଗୀତରେ ଜନ୍ମ ଉତ୍ସବର ପରିବେଶ ବେଶ୍ ଜମି ଉଠିଲା ।

ପ୍ରଶ୍ନ-୫୩: ନନ୍ଦ ରାଜା ଏତେ ମହାର୍ଘ ସମ୍ପତ୍ତି ଦାନ କଲେ । ତାଙ୍କ ଭଳି ଜଣେ କରଦ ରାଜାଙ୍କର ସଂପତ୍ତିର ଅଭାବ ହେଲାନି କିପରି ?

**ତତ ଆରଭ୍ୟ ନନ୍ଦସ୍ୟ ବ୍ରଜଃ ସର୍ବ ସମୃଦ୍ଧିମାନ୍ ।**
**ହରେଃ ନିବାସ-ଆତ୍ମଗୁଣୈଃ ରମା-ଆକ୍ରୀଡ଼ମ୍ ଅଭୂତ୍ ନୃପ ॥୧୮॥**

ଉ. ଶ୍ରୀହରିଙ୍କ ଶକ୍ତି ହିଁ ମହାଲକ୍ଷ୍ମୀ । ଶ୍ରୀହରିଙ୍କ ପ୍ରାକଟ୍ୟ ସ୍ଥଳରେ ସେ ଲୀଳା ସହଚର ହେବାରେ ଆନନ୍ଦ ପାଆନ୍ତି । ସୁତରାଂ ନନ୍ଦରାଜାଙ୍କ ରାଜ ଭବନ ଓ ସାରା ରାଜ୍ୟ ଧନ-ଜନ-ଗୋପ-ଲକ୍ଷ୍ମୀଙ୍କର ଅଭାବ ହୁଅନ୍ତା କିପରି ? ଯେତେ ସଂପତ୍ତି ଦାନ କଲେ ମଧ୍ୟ ରାଜାଙ୍କ ଭଣ୍ଡାର ସେତେ ଭରି ଯାଉଥାଏ ମହାଲକ୍ଷ୍ମୀଙ୍କ କୃପାରୁ ।

ପ୍ରଶ୍ନ-୫୪: ଜନ୍ମ ମହୋତ୍ସବ ଶେଷରେ ରାଜା ନନ୍ଦ ମନେ ପକାଇଲେ କଂସ ରାଜାଙ୍କୁ ବାର୍ଷିକ କରଦେବାକୁ ସେ ଭୁଲି ଯାଇଛନ୍ତି । ସୁତରାଂ କର୍ତ୍ତବ୍ୟର ଆହ୍ୱାନରେ ସେ ଦୁଧ ଦହି ଲହୁଣୀ ଶସ୍ୟ ଆଦି ଶଗଡ଼ରେ ଧରି ମଥୁରା ପହଞ୍ଚିଲେ । କର ପଇଠ କଲେ । ବସୁଦେବ ପାଇଲେ ନନ୍ଦଙ୍କ ଆସିବା ଖବର । ପହଞ୍ଚିଲେ ନନ୍ଦଙ୍କ ଡ଼େରାରେ । ରାଜ୍ୟର ପ୍ରଜାମାନଙ୍କର, ନିଜ ପତ୍ନୀ ରୋହିଣୀ ପରିଣତ ବୟସରେ ନନ୍ଦଙ୍କ ନବଜାତ ପୁତ୍ର ଇତ୍ୟାଦିଙ୍କ କୁଶଳ ମଙ୍ଗଳ ପଚାରି ବୁଝିଲେ । ଅପର ପକ୍ଷରେ ସେ ନିଜର ଦୁଃଖଦ ପୁତ୍ର ହତ୍ୟା, କାରାବାସ ଆଦି କଥା ପ୍ରସଙ୍ଗ ଉଠାଇ ନଥିଲେ । ନନ୍ଦ ରାଜା କିନ୍ତୁ ସେ କଥା ଜାଣିଥିଲେ । ସେ ବିଷୟ ନନ୍ଦଜୀ ନିଜେ ଉଠାଇଲେ । ବସୁଦେବଜୀଙ୍କୁ ଆଶ୍ୱାସନା ବାଣୀ ଶୁଣାଇଥିଲେ । ଧୈର୍ଯ୍ୟ ଧରି ଅଦୃଷ୍ଟ ଭାଗ୍ୟକୁ ସହର୍ଷ ଆଦରି ନେବାକୁ ନନ୍ଦଙ୍କୁ ପରାମର୍ଶ ଦେଇଥିଲେ । ପୁତ୍ର ହେବା, ନହେବା, ପୁତ୍ର ହୋଇ ଅସମୟରେ

ବାହୁଡ଼ିବା ସବୁ ପ୍ରାରବ୍‌ଧର ଅଧୀନ । ପ୍ରାର୍‌ବଧକୁ ଠୋସ୍ ବିଶ୍ୱାସ କରିଗଲେ ବିବେକୀ ଜୀବକୁ ପୁତ୍ରମୋହ ଆସିବ କୁଆଡୁ ? ଆଉ ଅଧିକ ସମୟ ବାକ୍ୟ ବ୍ୟୟରେ ନ କଟାଇ ମୁଣ୍ଡ ଉପରେ ଥିବା କଂସର ଯୋଜନାବଦ୍ଧ ବିପଦର ସୂଚନା କିପରି ଦୈବଯୋଗରେ ବସୁଦେବଙ୍କ ତୁଣ୍ଡରୁ ହଠାତ୍ ବାହାରିଗଲା ?

ବସୁଦେବ ଉବାଚ

**କରୋ ବୈ ବାର୍ଷିକୋ ଦତ୍ତୋ ରାଜ୍ଞେ ଦୃଷ୍ଟା ବୟଂ ଚ ବଃ ।**
**ନ-ଇହ ସ୍ଥେୟଂ ବହୁତିଥଂ ସନ୍ତି-ଉତ୍ପାତଃ ଚ ଗୋକୁଳେ ।।୩୧।।**

ଉ. ବସୁଦେବଜୀ କହିଲେ ଯେ ନନ୍ଦ ତ ରାଜା କଂସକୁ ଦେଖା କରିସାରିଲେଣି । କର ପଇଠ ପର୍ବ ମଧ୍ୟ ଶେଷ ହେଲାଣି । ଗୋକୁଳରେ ହୁଏତ କିଛି ଦୁର୍ଘଟଣା ଉତ୍‌ପାତ ଦେଖା ଦେଇପାରେ । ସୁତରାଂ ସେ ଆଉ ମଥୁରାରେ ବେଶୀ ସମୟ ରହିବା ଅନୁଚିତ (ନ ଇହ ସ୍ଥେୟଂ ବହୁତିଥଂ) । ଶୀଘ୍ରାତିଶୀଘ୍ର ଗୋକୁଳକୁ ଫେରିଯାଇ ଅବସ୍ଥା ସମ୍ଭାଳିବା ଉଚିତ । ସାଧୁ ସନ୍ଥଙ୍କ ତୁଣ୍ଡରୁ ବେଳ ବେଳେ ଏହିଭଳି ସତର୍କବାଣୀ ସ୍ୱୟଂ ଭଗବାନ ହୃଦୟରେ ଥାଇ ତାଙ୍କ ଭକ୍ତମାନଙ୍କୁ ଆସନ୍ନ ବିପନ୍ନ ସମ୍ବନ୍ଧରେ ସୂଚନା ଦେଇଥାନ୍ତି । ଗିରିରାଜ ଗୋବର୍ଦ୍ଧନ ନିକଟରେ ଗୋମତ ଋଷିଙ୍କ ଆଶ୍ରମ । ମଥୁରା ରାଜା କଂସ ଉତ୍ପାତ କରି ରାଜା, ଋଷି ମସ୍ତକ କାଟି ଫିଙ୍ଗିବାରୁ ସେହି ନର ରକ୍ତରେ ଋଷିଙ୍କ ଆଶ୍ରମ ଅପବିତ୍ର ହେଲା । ସେ ଶାପ ଦେଲେ କଂସ ମଥୁରା ଛାଡ଼ି ଗୋପ ବୃନ୍ଦାବନ ଆସିଲେ ଛାତି ଫାଟି ମରିବ । ସୁତରାଂ କଂସ ନିଜେ ଗୋକୁଳ ନ ଆସି ଏବେ ଅସୁରମାନଙ୍କୁ ପଠାଇବ ଠାକୁରଜୀଙ୍କୁ ମାରିବାକୁ । ପରବର୍ତ୍ତୀ ଅଧ୍ୟାୟର ଏହାହିଁ କଥାବସ୍ତୁ ।

ଅଧ୍ୟାତ୍ମ୍ୟପକ୍ଷେ- ପ୍ରତ୍ୟେକ ଜୀବହିଁ ନନ୍ଦ । ତାର ଦେହ ମଥୁରା । ତାର ହୃଦୟ ଗୋକୁଳ । ଶୁଦ୍ଧମନ ନିଷ୍କପଟ ମନ ନନ୍ଦ । ଈଶ୍ୱର ଅଭିମୁଖୀ ବୁଦ୍ଧି ଯଶୋଦା । ଆନନ୍ଦ ହିଁ ପୁତ୍ର ରୂପରେ କୃଷ୍ଣ ।

**ଇତି ଶ୍ରୀମଦ୍ଭାଗବତେ ମହାମୁନି କୃତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଦଶମ ସ୍କନ୍ଧେ ପଞ୍ଚମୋଽଧ୍ୟାୟଃ ।**

। ।ହରିଃ ଓଁ ତତ୍‌ସତ୍ । ।

ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ

## ୧୯ଶ ନକ୍ଷତ୍ର-ମୂଳା
## ଅଥ ଷଷ୍ଠ ଅଧ୍ୟାୟଃ
### (ଛଅ ଦିନ ବୟସରେ ପୂତନା(ଅବିଦ୍ୟାରୁ ମୁକ୍ତି) ଉଦ୍ଧାର ଲୀଳା)
### ଶ୍ରୀ ଶୁକ ଉବାଚ

ପ୍ରଶ୍ନ-୧: ରାଜା ନନ୍ଦ ମଥୁରାରୁ ଗୋକୁଳ ଫେରୁଥାନ୍ତି । ବସୁଦେବଙ୍କ ସତର୍କବାଣୀ ତାଙ୍କର ମନେ ପଡ଼ିଲା । ଛାନିଆରେ ସେ କୁଳଦେବତା ଶାଳଗ୍ରାମ ନାରାୟଣଙ୍କୁ ସ୍ମରଣ କଲେ । କଂସ ଉପଦ୍ରବର ଠିକ୍ ଠିକଣା ନଥାଏ କିଛି । ସାରା କଂସ ରାଜ୍ୟରେ ଋଷିମାରଣ, ବୈଷ୍ଣବ ପୀଡ଼ା, ହୋମ ଯଜ୍ଞ ନିଷିଦ୍ଧ ହେବା ହେତୁ ରାଜ୍ୟ ସାରା ହାହାକାର ହୁଲସ୍ଥୁଲ ପଡ଼ିଥାଏ । ଗୋକୁଳରେ ଶିଶୁମାରଣ ଯଜ୍ଞରେ ରାଜା କଂସ କାହାକୁ ନିଯୁକ୍ତ(ଗ୍ରହିତା) କରିଥିଲେ ?

**କଂସେନ ପ୍ରହିତା ଘୋରା ପୂତନା ବାଳ ଘାତିନୀ ।**
**ଶିଶୂନ୍ ଚଚାର ନିଘ୍ନନ୍ତୀ ପୁର ଗ୍ରାମ ବ୍ରଜ-ଆଦିଷୁ ॥୨॥**

ଉ. ରାଜାଙ୍କର ଅତି ବିଶ୍ୱସ୍ତ ରାକ୍ଷସ କର୍ମଚାରୀ ଅଘାସୁର ବକାସୁରଙ୍କ ଭଗିନୀ ମହାଭୟଙ୍କରୀ (ଘୋରା) ପୂତନାଙ୍କୁ । ପୁତ୍ର ଯାହାର ନଥାଏ, ପୁତ୍ର ଯେ ଚାହୁଁ ନଥାଏ ବା ଯେ ସ୍ୱୟଂ ପୂତ (ପବିତ୍ର) ନୁହେଁ ଦୂଷିତା ତାକୁ ଲୋକେ ପୂତନା କହନ୍ତି । ସେ ଏବେ ଗୋକୁଳରେ ବୁଲି ବୁଲି ନଗର, ଗ୍ରାମ ବା ଗୋ ଗୋଷ୍ଠ ମାନଙ୍କରେ ଖୋଜି ଖୋଜି ନବଜାତ ଶିଶୁମାନଙ୍କୁ କପଟ ବ୍ୟବହାର କରି କୌଶଳରେ ମାରୁଥାଏ ।

ପ୍ରଶ୍ନ-୨: ନନ୍ଦ ଗୋକୁଳରେ ଲୋକମାନେ ଘରେ ବାହାରେ ସର୍ବତ୍ର ହରି କୀର୍ତ୍ତନରେ ଦିନ କଟାଇ ହରିଶରଣାଗତ ହୋଇଥାନ୍ତି । ବିପଦ ଉପଦ୍ରବକୁ ପରବାୟ ନଥାଏ ତାଙ୍କର । କପଟତାର ଚରମ ସୀମାକୁ ସ୍ପର୍ଶ କରି ସେଠାରେ ପହଞ୍ଚିଗଲା ପୂତନା । ମାୟାରେ ସୁନ୍ଦରୀ ରମଣୀଟିଏ ହୋଇଛି । କେଶରେ ସୁନ୍ଦର ଜୁଡ଼ା ବାନ୍ଧିଛି । ସେଥିରେ ପୁଣି ମନଲୋଭା ମଲ୍ଲୀମାଳ ଖଞ୍ଜିଛି । ନିତମ୍ବ କୁଚ ଉଭୟ ଗରୁ । କଟୀ ଭାଗ କିନ୍ତୁ ଡ଼ମ୍ବୁରୁ ମଝା ପରି କୃଶ । ସତେ କି ଦେଖୁ ଦେଖୁ ଭାଙ୍ଗି ପଡ଼ିବ । ଦେହରେ

ମୂଲ୍ୟବାନ୍ ରେଶମୀ ପାଟ । ହସ୍ତରେ ସଦ୍ୟ ପ୍ରସ୍ଫୁଟିତ କମଳ ପୁଷ୍ପ । ଯାହାକୁ ସେ ହାତରେ ନଚାଇ ନଚାଇ ଘରକୁ ଘର ବିନା ବାଧାରେ ପଶିଯାଉଛି । ଗୋପାଳୁଣୀମାନେ ଭ୍ରମରେ ପଡ଼ି ଡ଼ାକୁଥାନ୍ତି ତାକୁ ବୈକୁଣ୍ଠଲୋକ ବାସିନୀ ମହାଲକ୍ଷ୍ମୀ ଭାବନା କରି । ଅସୁର ଉଦ୍ଧାର କରିବା ଲକ୍ଷ୍ୟରେ ଜନ୍ମ ହୋଇଛି ଠାକୁରଜୀଙ୍କର । ଏବୁ ଜାଣି ସେ ଅଜଣା ବନିଗଲେ । ପାଉଁଶରେ ଘୋଡ଼େଇ ହୋଇଥିବା ଅଗ୍ନି ଭଳି ସେ ପଡ଼ି ରହିଲେ । ସୁଯୋଗ ପାଇ ପୂତନା ଏବେ ନନ୍ଦ ଘରେ ପଶି ଭଗବାନ(ଅନନ୍ତ)କୁ କୋଳକୁ ଉଠାଇ ନେଲା । ସରଳା ନାରୀ ଯଶୋଦା ରୋହିଣୀ ଆଦି କାହିଁକି ବା ସନ୍ଦେହ ଦୃଷ୍ଟିରେ ଦେଖନ୍ତେ । ପୂତନା କୃତ୍ରିମ ହସ ହସି ସ୍ତନ୍ୟପାନ କରାଇବାରେ ଲାଗିଲା । କୋଳରେ ଧରି (ଅରୋପ୍ୟତ୍ ଅଙ୍କ) । ସତେ ଯେପରି ବୁଦ୍ଧିହୀନ ମନୁଷ୍ୟ ସୁପ୍ତ ସର୍ପକୁ ନିର୍ଜୀବ ଦଉଡ଼ି ଭାବି କୋଳକୁ ଟାଣି ନିଏ । ହତ-ଅରି-ଗତିଦାୟକ ଦୟା ସାଗର ଠାକୁରଜୀ ସତରେ କ'ଣ ତାକୁ ଅସୁର ଯୋନିରୁ ଉଦ୍ଧାର କଲେ ?

**ବିବୁଧ୍ୟ ତାଂ ବାଳକଂ ମାରିକାଗ୍ରହଂ**

**ଚର-ଅଚର-ଅତ୍ମା ସ ନିମୀଳିତ-ଇକ୍ଷଣଃ ।**

**ଅନନ୍ତଂ ଆରୋପୟତ୍ ଅଙ୍କଂ ଅନ୍ତକଂ**

**ଯଥା-ଉରଗଂ ସୁପ୍ତଂ ଅବୁଦ୍ଧି ରଜ୍ଜୁଧୀଃ ।।୮।।**

ଉ. ସ୍ଥାବର-ଜଙ୍ଗମ ସମସ୍ତ ଜୀବଙ୍କ ଆତ୍ମାଙ୍କର ଆତ୍ମା ପରମାତ୍ମା ଠାକୁରଜୀ ବୁଝିଗଲେ (ବିବୁଧ) ପୂତନ ମାଉସୀ ଆସିଛି । ମାଆ ବେଶରେ ଶିଶୁ ମାରଣ ଲାଗି । ଭଗବାନ ସେତେବେଳେ ଚକ୍ଷୁ ମୁଦ୍ରିତ କରିବା କାରଣ ସମ୍ବନ୍ଧରେ ମହାତ୍ମାମାନେ ମତ ପ୍ରକାଶ କରି କହିଛନ୍ତି ଯେ-

୧. ରାମ ଅବତାର କାଳରେ ସର୍ବପ୍ରଥମେ ସେ ତାଡ଼କା ନାରୀଟିଏ ବଧ କରିଥିଲେ । ଏବେ କୃଷ୍ଣ ଅବତାର କାଳରେ ପୁଣି ନାରୀ ହାବୁଡ଼ରେ ପଡ଼ିଲେ । ଏଥର ବଧ ନକରି କାଳ କାଳ ଲାଗି ଉଦ୍ଧାର କରିବା କଥା ଭାବିବାକୁ ଚକ୍ଷୁ ବନ୍ଦ କରିଦେଲେ ।

୨. ଭାବିଲେ ମୁଁ ଆସିଛି ମାଖନ ମିଶ୍ରି ଖାଇବାକୁ । ବିଷ ଖାଇବି କାହିଁକି ? ସୁତରାଂ ଧ୍ୟାନ କଲେ ବିଷପାନ ବିଶେଷଜ୍ଞ ଶଙ୍କରଜୀଙ୍କୁ ଏ ଦାୟିତ୍ୱ ଅର୍ପଣ କରିବାକୁ ।

୩. ବିଷ କିଛି ସାମାନ୍ୟ ସଂସାରୀ ବିଷ ନଥିଲା । ହଳାହଳ କଟୁ ବିଷର ଉତ୍କଟତା

ପ୍ରକାଶ କରିବାକୁ । ରୋଗୀ କଟୁ ଔଷଧ ପାନ କଲା ବେଳେ ଚକ୍ଷୁ ବନ୍ଦ କଲା ଭଳି ।

୪. ସୂର୍ଯ୍ୟ ଓ ଚନ୍ଦ୍ର ଭଗବାନଙ୍କର ଦୁଇ ଚକ୍ଷୁ ସ୍ୱରୂପ । ଚନ୍ଦ୍ରଲୋକ ଅଧିକାରୀ ଚନ୍ଦ୍ର । ସୂର୍ଯ୍ୟ ଲୋକର ଅଧିକାରୀ ସୂର୍ଯ୍ୟ ପୁତନାକୁ ଦେବଯାନ ମାର୍ଗ ଚନ୍ଦ୍ରଯାନ ମାର୍ଗ ନ ଦେଇ ସିଧା ସଳଖ ବୈକୁଣ୍ଠ ପଠାଇବା ବ୍ୟବସ୍ଥା କରିବାକୁ ।

୫. ବୈକୁଣ୍ଠ ଯିବାକୁ ପୁତନାର ଏ ଜନ୍ମର କିଛି ପୁଣ୍ୟ ତ ନଥିଲା । ତେଣୁ ଅନ୍ୟ ପୂର୍ବ ପୂର୍ବ ଜନ୍ମର ପୁଣ୍ୟ-ପାପର ଖାତା ପତ୍ର ଓଲଟାଇ ଦେଖିବାକୁ ।

୬. ଭଗବାନ ବିଶ୍ୱାତ୍ମା । ତାଙ୍କ ଅନ୍ତର ମଧ୍ୟସ୍ଥ ଜୀବମାନେ ଡ଼ରିଗଲେ ଯଦି ପୁତନା ବିଷ ପିଆଇବ ସେମାନଙ୍କ ଅବସ୍ଥା ଅସମ୍ଭାଳ ହେବ । ସୁତରାଂ ଭଗବାନ ଚକ୍ଷୁ ବନ୍ଦ କରି ସେମାନଙ୍କୁ ଆଶ୍ୱାସନା ବାଣୀ ଶୁଣାଉଥିଲେ ।

୭. ଯଦି ଭଗବାନ ପ୍ରେମରେ ଦେଖିବେ ସେ ଶୁଦ୍ଧ ହୋଇଯିବ । ଯଦି କ୍ରୋଧରେ ଦେଖିବେ ସେ ଜଳିଯିବ । ଉଭୟ ପରିସ୍ଥିତିରେ ବିଚାରୀର ମୋତେ ଦୁଧ ପିଆଇବା ଇଚ୍ଛା ଅପୂରଣୀୟ ରହିଯିବ । ତେଣୁ ଚକ୍ଷୁ ବନ୍ଦ କରିଦେଲେ ପାଇଟି ଛିଡ଼ିବ ।

୮. ଭଗବାନ ବାମନ ଅବତାର ବେଳେ କଥା ଦେଇଥିଲେ ବଳିରାଜାଙ୍କ କନ୍ୟା ରତ୍ନାବଳୀକୁ ତାଙ୍କୁ ମା ରୂପେ ଦୁଧ ପେଇବା ଓ ତାଙ୍କ ପିତାଙ୍କୁ ଅଯଥା ଦଣ୍ଡିତ କରିବା ଅପରାଧରେ ବିଷ ଦେଇ ମାରିବା ଲାଗି । ଧ୍ୟାନରେ ଦେଖୁଥିଲେ ଯେ ଏ ପୁତନା ମାଉସୀ ହୋଇ ରତ୍ନାବଳୀ ନା ଆଉ ଅନ୍ୟ କେହି ବୋଲି ।

୯. ବିଷୟୀ ଜୀବର ଦେହାତ୍ମ୍ୟବୋଧ ଅବିଦ୍ୟା ହିଁ ପୂତନା । ଭଗବାନଙ୍କ ଦୃଷ୍ଟି ସମ୍ମୁଖରେ ଅବିଦ୍ୟା ରହିପାରେନା । ଅତଏବ ଲୀଳା ହେବ କେମିତି ଚକ୍ଷୁ ବନ୍ଦ ନକଲେ ।

୧୦. ପୁତନା ବାଳଘାତିନୀ । ଅତି ଅପବିତ୍ରା । ତା ମୁଖ ଦର୍ଶନ କରିବା ଅନୁଚିତ ।

୧୧. ଠାକୁରଜୀଙ୍କ ନେତ୍ରରେ ରାଜା ନିମି ନିମେଷ ରୂପରେ କରିଥିଲେ । ସେ ମହାନ ଧର୍ମାତ୍ମା । ସେ ଉଚିତ ମନେ କଲେନି ଏଭଳି ପାପୀର ମୁଖ ଦର୍ଶନ କରିବାକୁ ।

୧୨. ଭଗବାନଙ୍କ ନେତ୍ର ରାଜହଂସ ସ୍ୱରୂପ । ବାଳ ଅପରାଧୀ ପୁତନାଙ୍କ ଦର୍ଶନ ଲାଗି ସେ ଦିବ୍ୟ ହଂସ ଆଦୌ ଉକ୍ରଣ୍ଠିତ ନହେବା ସ୍ୱାଭାବିକ ।

୧୩. ଭାବିଲେ ଏ ଧାତ୍ରୀ ବେଶରେ ଆସିଛି । ମାରିବା ଠିକ୍ ହେବନି କିନ୍ତୁ ନ ମାରିଲେ ଏ ଆହୁରି ଅଧିକ ଗୋପାଳ(ବୈଷ୍ଣବ)ଙ୍କୁ ମାରି ପାପଭାଗୀ ହୋଇଯିବ । ସୁତରାଂ ଯାର ରୂପ ଦେଖିବା ପୂର୍ବରୁ କାମ ବଢ଼େଇଦେବା ଉଚିତ ।

୧୪. ବାଳ ଲୀଳା ଆରମ୍ଭ ହେଉ ନ ହେଉଣୁ ନାରୀ ହତ୍ୟା ଦରକାର ପଡ଼ିଲାଣି । ବିରକ୍ତରେ ଚକ୍ଷୁ ବନ୍ଦ କରିଦେଲେ ।

୧୫. ଭଗବାନଙ୍କୁ ଛନ୍ଦ କପଟ ଆଦୌ ପ୍ରିୟ ନୁହେଁ । ପୂତନା କିନ୍ତୁ ରୂପରେ ଭାରି ସୁନ୍ଦର ଓ ସ୍ୱଭାବରେ ଅତ୍ୟନ୍ତ କ୍ରୁର । ସୁତରାଂ ବିନା ବିଚାରରେ ଆଖି ବୁଜି ଦଣ୍ଡ ଦେଇଦେବା ଉଚିତ ।

୧୬. ପୁତନା କାଳେ ଭାବିବ ଏ ଛୁଆ ମତେ ଦେଖି ଡ଼ରିଗଲାଣି । ଆଖି ବୁଜି ପକାଇଲାଣି । ଯାକୁ ମାରି କି ଲାଭ ? ହୁଏତ ଦୟା କରି ଲେଉଟି ଯାଇପାରେ ।

୧୭. ପୂତନା ମାୟାରେ ସୁନ୍ଦରୀ ରୂପ ଧରିଛି । ଭଗବାନଙ୍କ ଦୃଷ୍ଟି ପଡ଼ିଗଲେ ଅସୁରୁଣୀ ରୂପ ଧରାପଡ଼ିଯିବ । ବିଚାରୀ ଭାଣ୍ଡିଆ ହୋଇଯିବ ।

୧୮. ପୂତନା ଚିହ୍ନେନା କିଏ କଂସଙ୍କ ଶତ୍ରୁ, କିଏ ମିତ୍ର । ଭଗବାନ ଦେଖିଲେ ମୋର ଶତ୍ରୁ ମିତ୍ର କେହି ନୁହନ୍ତି । ମୁଁ ଭକ୍ତ ବତ୍ସଳ । ମୋ ଭକ୍ତ ଗୋପାଳ ବାଳକଙ୍କୁ ସେ ମାରିବା ଚିନ୍ତା କରୁଛି ତା ମୁଖଦର୍ଶନ ଅନୁଚିତ ।

୧୯. ଧ୍ୟାନ ଦ୍ୱାରା ସିଦ୍ଧ ଯୋଗୀମାନେ ବଡ଼ ବଡ଼ ଅନିଷ୍ଟକୁ ଦୂର କରି ଦେଇପାରନ୍ତି । ସକଳ ସିଦ୍ଧିର ଅଧିଷ୍ଠାନ ଭଗବାନ ଭାବିଲେ ଧ୍ୟାନ କରି ହୁଏତ ଏ ଅନିଷ୍ଟ ଦୂର କରାଯାଇପାରେ ।

୨୦. କୌଣସି ଜିନିଷ ପସନ୍ଦ ନହେଲେ ଆଖି ଆମର ସ୍ୱତଃ ବନ୍ଦ ହୋଇଯାଏ । ପୂତନାର ଭାବ ସ୍ୱଭାବ ପସନ୍ଦ ହେଲାନି ଭଗବାନଙ୍କର ।

୨୧. ପିଲାମାନେ ମା କୋଳରେ ଖେଳନ୍ତି । ଅପରିଚିତ ସୁନ୍ଦରୀ ମାଉସୀ ଦେଖିଲେ ଡ଼ରି ଆଖି ବନ୍ଦ କରିଥାନ୍ତି । ଲୀଳା ବିହାରୀ ଶ୍ରୀକୃଷ୍ଣ ମାଧୁର୍ଯ୍ୟ ନରଲୀଳା ଆରମ୍ଭ କରି ଦେଲେ ନିଜର ଡ଼ରୁଆ ପଣ ପ୍ରକଟ କରି ।

୨୨. ଭଗବାନ ଭକ୍ତ ବତ୍ସଳ । ପୂତନା ଅସୁର ନାରୀ ହେଲେ ମଧ୍ୟ ଭଗବାନଙ୍କର ଶତ୍ରୁ ନୁହେଁ । ଅତଏବ ତାକୁ ମାରିବା ଏକ ଅପରାଧ ହେବ । ଘୋର ଲଜ୍ଜାରେ ଠାକୁରଜୀଙ୍କ ଚକ୍ଷୁ ଆପେ ଆପେ ମୁଦ୍ରିତ ହୋଇଗଲା ।

୨୩. ପିତା ମାତା ସନ୍ତାନକୁ ଅପରାଧ ଦେଖି ଦଣ୍ଡ ଦିଅନ୍ତି, କିନ୍ତୁ ପିଲାର କାନ୍ଦଣା,

ଦୁଃଖ କଷ୍ଟ ସହିବାକୁ ବିମୁଖ ହୁଅନ୍ତି । ସେହି ନ୍ୟାୟରେ ଭଗବାନ ମଧ୍ୟ ପୂତନାର ପ୍ରାଣ ହରଣ କଷ୍ଟ ସ୍ୱଚକ୍ଷୁରେ ଦେଖିବାକୁ ନାରାଜ ହେଲେ ।

୨୪. ପୂତନା ସ୍ତନ୍ୟ ଦେବା ଲୋକ । ଭଗବାନ ନେବା ଲୋକ । ପ୍ରଥମେ ନାହିଁ ନାହିଁ କରି ପରେ ଗ୍ରହଣ କଲେ ଦେବା ଲୋକର ଉତ୍କଣ୍ଠା ବଢ଼େ । ତେଣୁ ଗୋବିନ୍ଦ ଉପେକ୍ଷା କଲେ ମାଉସୀର ବାତ୍ସଲ୍ୟ ରସର ମାତ୍ରା ବଢ଼ାଇବାକୁ ।

୨୫. ପୂତନାର ସ୍ତନ୍ୟପାନ କଲାବେଳେ ଭଗବାନଙ୍କ ମନରେ ରୋଷ ଉପୁଜିଲା । ସୁତରାଂ ଭଗବାନ ଲୀଳାରେ କେବଳ ସ୍ତନ୍ୟପାନ କଲେ ସ୍ୱମୁଖ କମଳରେ । ତାଙ୍କର ହସ୍ତରେ ଅଧିଷ୍ଠିତ ଇନ୍ଦ୍ର ଦେବତା ରୋଷକୁ ଗ୍ରହଣ କରୁଥିଲେ । ଜଗତ ଦେଖିବାକୁ ସେ କେବଳ କର କମଳ ସ୍ଥାପନ କରିଥାନ୍ତି ପୂତନା ମାଉସୀଙ୍କ ବିଷ ବୋଳା ସ୍ତନରେ ।

୨୬. ଭାବିଲେ ଛଅ ଦିନରେ ନାରୀ ହତ୍ୟା ଅଶୋଭନୀୟ । ସୁତରାଂ ଯୋଗ ନିଦ୍ରାରେ ଶୋଇପଡ଼ିଲେ କାଳେ ରକ୍ଷା ମିଳିଯିବ ଏ ଭୟଙ୍କର କର୍ମରୁ ।

ପ୍ରଶ୍ନ-୩: ଭଗବାନ ଚକ୍ଷୁବନ୍ଦ କରି ପୂତନାଙ୍କ ମୋକ୍ଷଣ ଲାଗି ପ୍ରଯତ୍ନ ଆରମ୍ଭ କରିଦେଲେ । ବିଷବୋଳା ଦୁଧ ସହିତ ପୂତନାର ପ୍ରାଣ ମଧ୍ୟ ପାନ କଲେ । ସେ ପ୍ରାଣ ଛାଡୁ ଛାଡୁ ମରି ଗଲି ମରି ଗଲି ଡ଼ାକ ଛାଡୁଥାଏ । ଭୂଇଁରେ ପଡ଼ି ଛାଡ଼ି ଦିଅ, ଛାଡ଼ି ଦିଅ ରଡ଼ି ଛାଡୁଥାଏ । ଝାଳ ନାଳ ହୋଇ ଭୂଇଁରେ ପାଦ ପିଟି କାନ୍ଦୁଥାଏ, ତାର ଭୟଙ୍କର ବିଶାଳ ଅସୁର ରୂପ ପ୍ରକଟ ହେଲା । ତା ଗର୍ଜନ ତର୍ଜନରେ ଗାଁ ଗଣ୍ଡା କମ୍ପି ଉଠିଲା । ସତେ କି ଇନ୍ଦ୍ରଙ୍କ ବଜ୍ରାଘାତରେ ବୃତ୍ରାସୁର ପଡ଼ିଗଲା କି !!!

ପୂତନାଙ୍କ ବିଶାଳ ଶରୀର ପତନରେ ଗୋକୁଳର ଛଅ କୋଶ(ବାର ମାଇଲ) ଦୂରସ୍ଥିତ ବୃକ୍ଷ ଲତାଗଣ ଧରାଶାୟୀ ହୋଇଗଲେ । ତାର ଦାନ୍ତ ହଳ ଲଙ୍ଗଳ ଭଳି, ନାସିକା ପର୍ବତ ଗୁମ୍ଫା ଭଳି, ସ୍ତନ ପର୍ବତ ଭଳି, ଚକ୍ଷୁ କୂପ ଭଳି, ଜଙ୍ଘ ନଦୀତଟ ଭଳି, ପେଟ ଶୁଖିଲା ହ୍ରଦ ଭଳି ଦିଶୁଥାଏ । ପୂତନାଙ୍କ ମାୟା ଶରୀର ରୂପାନ୍ତରିତ ହୁଅନ୍ତେ ଠାକୁରଜୀଙ୍କ କି ଦଶା ହେଲା ?

**ବାଳଂ ଚ ତସ୍ୟ ଉରସି କ୍ରୀଡ଼ନ୍ତଂ ଅକୁତୋଭୟମ୍ ।**
**ଗୋପ୍ୟଃ ତୂର୍ଣ୍ଣଂ ସମଭ୍ୟେତ୍ୟ ଜଗୃହୁଃ ଜାତ ସମ୍ଭ୍ରମାଃ ॥୧୮॥**

ଉ. ବାଳ ଗୋପାଳ ପୂତନାଙ୍କ ଚଉଡ଼ା ବକ୍ଷ ଉପରେ ଆନନ୍ଦରେ କ୍ରୀଡ଼ା କରୁଥାନ୍ତି । ନା ଡ଼ର ନା ଭୟ । ସଙ୍ଗେ ସଙ୍ଗେ (ତୂର୍ଣ୍ଣଂ) ପାଖକୁ ଯାଇ (ସମଭ୍ୟେତ୍ୟ)

ସସ୍ନେହ (ସମ୍ଭ୍ରମାଃ) ତାଙ୍କୁ ହାତରେ ଉଠେଇନେଲେ (ଜଗୃହୁଃ) । ଧାଇଁ ଧାଇଁ ପାଖରେ ପହଞ୍ଚିଲେ ମାତା ଯଶୋଦା ଓ ରୋହିଣୀ ଦୁହେଁ । ତାଙ୍କୁ ଧରି ଦୌଡ଼ିଲେ ଗାଈ ଗୁହାଳକୁ । ଗାଈ ଲାଞ୍ଜକୁ ଚଅଁର କରି ବୁଲାଇ ବୁଲାଇ ଝଡ଼ା ଫୁଙ୍କା କଲେ ।

ପ୍ରଶ୍ନ-୪: ଗୋପୀମାନେ କୃଷ୍ଣଙ୍କୁ ଅଭୟ ଦେବାକୁ କେଉଁ ତୁଟୁକା ମୁଟୁକା ଚିକିତ୍ସା କରି କ'ଣ ଡ଼େଉଁରିଆ ବାନ୍ଧିଦେଲେ ତାଙ୍କ ବାହୁରେ ?

**ଗୋମୂତ୍ରେଣ ସ୍ନାପୟିତ୍ୱା ପୁନଃ ଗୋ ରଜସା-ଅର୍ଭକମ୍ ।**
**ରକ୍ଷାଂ ଚକ୍ରୁଃ ଚ ଶକୃତା ଦ୍ୱାଦଶାଙ୍ଗେଷୁ ନାମଭିଃ ॥୨୦॥**

ଉ. ଜାତିରେ ଗୋପାଳ ସେମାନେ । ସେମାନଙ୍କର ସବୁ ଚିକିତ୍ସା ସେଇ ଗୋରୁ କେନ୍ଦ୍ରିକ । ସେମାନେ ଗୋବିନ୍ଦଙ୍କୁ ଗୋମୂତ୍ରରେ ସ୍ନାନ କରାଇଲେ । ସାରା ଦେହରେ ଗୋଧୂଳି ଲେପ ପ୍ରୟୋଗ କଲେ । ଗୋମୟରେ ଦ୍ୱାଦଶ ତିଳକ କରାଇଲେ ନାରାୟଣଙ୍କ ଦ୍ୱାଦଶ ନାମ ଉଚ୍ଚାରଣ କରି କରି । ଏ ଘଟଣା ଦେଖି ବ୍ରହ୍ମା ଶଙ୍କର ଆଦି ଦେବତା ମନେ କଲେ ଧନ୍ୟ ଭଗବାନଙ୍କ ଭକ୍ତ । ଧନ୍ୟ ତାଙ୍କ ଲୀଳା । ଭଗବାନଙ୍କଠାରୁ ଭଗବାନଙ୍କ ନାମରେ ନିଶ୍ଚୟ ଶକ୍ତି ଅଧିକ । ସେ ସ୍ୱୟଂ ନିଜ ନାମର ଐଶ୍ୱର୍ଯ୍ୟ ଶକ୍ତିଦ୍ୱାରା ତ୍ରିଲୋକ ସୃଷ୍ଟି-ପାଳନ-ସଂହାର ଆଦି କରନ୍ତି । ହେଲେ ତାଙ୍କୁ ବିପଦ ପଡ଼ିଲେ ତାଙ୍କ ନାମ ତାଙ୍କୁ ରକ୍ଷା କରନ୍ତି ।

ଗୋପୀମାନେ ପ୍ରଥମେ ଯମୁନା ଜଳ ଆଚମନ କରି ନିଜେ ନିଜକୁ ଶୁଦ୍ଧ କଲେ । ପରେ ଗୋବିନ୍ଦଙ୍କର କରନ୍ୟାସ ଅଙ୍ଗନ୍ୟାସ ଆଦି ସମ୍ପନ୍ନ କଲେ ।

ପ୍ରଶ୍ନ-୫: କୃଷ୍ଣ ଭକ୍ତମାନେ ଏହି ଅଧ୍ୟାୟର ଆଠ ଶ୍ଳୋକ (୨୨-୨୯) କୁ ପୂତନାଷ୍ଟକ ବୋଲି ଗାଇ ନିଜ ନିଜ ଶିଶୁଙ୍କ ଡ଼ର ଭୟ ଦୂର କରିଥାନ୍ତି । ଗୋପୀମାନେ ବିଷ୍ଣୁଙ୍କର କେଉଁ କେଉଁ ନାମ ଉଚ୍ଚାରଣ କରି ଶ୍ରୀକୃଷ୍ଣଙ୍କର କେଉଁ କେଉଁ ଅଙ୍ଗ ରକ୍ଷା କରନ୍ତୁ ବୋଲି ଜଣାଣ କଲେ ?

**ଇନ୍ଦ୍ରିୟାଣୀ ହୃଷୀକେଶଃ ପ୍ରାଣାନ୍ ନାରାୟଣୋଽବତୁ ।**
**ଶ୍ୱେତଦ୍ୱୀପପତିଃ ଚିତ୍ତଂ ମନୋ ଯୋଗେଶ୍ୱରୋଽବତୁ ॥୨୪॥**

ଉ. ଗୋପୀମାନେ ନିବେଦନ କଲେ ଯେ ଏ ବାଳକର ପ୍ରାଣକୁ ନାରାୟଣ ଓ ଇନ୍ଦ୍ରିୟମାନଙ୍କୁ ହୃଷୀକେଶ ରକ୍ଷା କରନ୍ତୁ (ଅବତୁ) । ଚିତ୍ତ (ହୃଦୟ)କୁ ଶ୍ୱେତଦ୍ୱୀପ ପତି ଓ ମନକୁ ଯୋଗେଶ୍ୱର ଶ୍ରୀମନ୍ ନାରାୟଣ ରକ୍ଷା କରନ୍ତୁ । ପାଦକୁ ଅଜ, ଆଣ୍ଠୁକୁ

ମଣିମାନ, କଟୀକୁ ଅଚ୍ୟୁତ, ଉଦରକୁ ହୟଗ୍ରୀବ ହସ୍ତକୁ ବିଷ୍ଣୁ, ମୁଖକୁ ଉରୁକ୍ରମ ରକ୍ଷା କରନ୍ତୁ । ସମ୍ମୁଖରୁ ଚକ୍ରୀ, ଉପରୁ ଉପେନ୍ଦ୍ର, ନିମ୍ନରୁ ଗରୁଡ଼, ଚାରିପଟୁ ହଳଧାରୀ ଓ ଚାରିକୋଣରୁ ଶଙ୍ଖଧାରୀ ରକ୍ଷା କରନ୍ତୁ । ଖେଳବେଳେ ଗୋବିନ୍ଦ, ଶୟନରେ ମାଧବ, ଗମନେ ବୈକୁଣ୍ଠ, ବସିବାବେଳେ ନାରାୟଣ ଓ ସକଳ ସମୟରେ ଯଜ୍ଞ ଭଗବାନ ରକ୍ଷା କରନ୍ତୁ ।

ପ୍ରଶ୍ନ-୬: ଯଶୋଦା ପୁତ୍ରକୁ ନେଇ ସ୍ତନ୍ୟପାନ କରାଇଲେ । ଦୋଳିରେ ଶୟନ କରାଇଲେ । ଏ ଘଟଣା ପରେ ପରେ ଗୋକୁଳ ପହଞ୍ଚିଲେ ରାଜା ନନ୍ଦ । ବାଟରେ ପୂତନାଙ୍କ ବିଶାଳ କଳେବର ଦେଖି ଅତି ବିସ୍ମିତ ହେଲେ । ତାଙ୍କର ମନେ ପଡ଼ିଗଲା ଭାଇ ବସୁଦେବ (ଆନକ ଦୁନ୍ଦୁଭି) ଙ୍କର ସତର୍କବାଣୀ । ରାଜା ନନ୍ଦଙ୍କର କି ଧାରଣା ହେଲା ବସୁଦେବଜୀଙ୍କ ବିଷୟରେ ?

**ନୂନଂ ବତ-ଋଷିଃ ସଂଜାତୋ ଯୋଗ-ଈଶୋ ବା ସମାସ ହ ।**
**ସ ଏବ ଦୃଷ୍ଟୋ ହି-ଉତ୍ପାତୋ ଯଦା-ଆହ-ଆନକ ଦୁନ୍ଦୁଭିଃ ॥୩୨॥**

ଉ. ନନ୍ଦଜୀ ଭାବିଲେ ଯେ ତାଙ୍କ ଭାଇ ବସୁଦେବଜୀ ନିଶ୍ଚୟ(ନୂନଂ) ମନୁଷ୍ୟ ରୂପରେ ଜଣେ ମହାନ ଋଷି, ଯୋଗେଶ୍ୱର ଓ ଭବିଷ୍ୟତ ବକ୍ତା ମଧ୍ୟ । ଏ ଉତ୍ପାତ ବିଷୟରେ ତାଙ୍କର ଭବିଷ୍ୟତବାଣୀ ଏହାର ପ୍ରମାଣ ।

ପ୍ରଶ୍ନ-୭: ବ୍ରଜବାସୀମାନେ (ବ୍ରଜୌକସଃ) ମିଳିମିଶି ପୂତନାର କଳେବରକୁ କିପରି ଦାହ ସଂସ୍କାର କଲେ ?

**କଳେବରଂ ପରଶୁଭିଃ ଛିତ୍ତ୍ୱା ତତ୍‌ତେ ବ୍ରଜୌକସଃ ।**
**ଦୂରେ କ୍ଷିପ୍ତ୍ୱା-ଅବୟବଶଃ ନ୍ୟଦହନ୍ କାଷ୍ଠ ବେଷ୍ଟିତମ୍ ॥୩୩॥**

ଉ. ସେମାନେ ସେ ଆସୁରୀ ଦେହକୁ ପରଶୁ ଦ୍ୱାରା ଖଣ୍ଡ ଖଣ୍ଡ କରି ଏକ ଦୂର ଯାଗାରେ ଏକାଠି ଗଦା କଲେ । ଶୁଷ୍କ କାଠ ଶବ ତଳେ, ଉପରେ, ଚତୁର୍ଦ୍ଦିଗରେ ରଖି ଅଗ୍ନି ସଂଯୋଗ କରି ଦେଲେ ।

ପୂତନା ସିନା ସ୍ୱୟଂ ରକ୍ତମୁଖା ରାକ୍ଷସୀ ଥିଲା । ଏବେ କୃଷ୍ଣ ସଂସ୍ପର୍ଶରେ ଆସି ପବିତ୍ର ହୋଇସାରିଥିଲା । ସୁତରାଂ ଦାହ ସଂସ୍କାର ବେଳେ ପୂତନା ଦେହରୁ ଦୁର୍ଗନ୍ଧ ନ ବାହାରି ଅତ୍ୟନ୍ତ ସୁଗନ୍ଧ ବାହାରିଲା । ତାର ଆତ୍ମାର ମଧ୍ୟ ସଦ୍‌ଗତି ହେଲା ।

# ଅଥ ସପ୍ତମ ଅଧ୍ୟାୟଃ

## (୧୦୮ ଦିନରେ ଶକଟାସୁର (ଅବିବେକ) ଓ ବର୍ଷକରେ ତୃଣାବର୍ତ୍ତ ଅସୁର(ଲୋଭ) ଉଦ୍ଧାର)

ପ୍ରଶ୍ନ-୮ : ଠାକୁରଜୀଙ୍କ ପ୍ରାକଟ୍ୟ ତିନିମାସ ହେଲାଣି । ତାଙ୍କ କଡ଼ ଲେଉଟା (ଔତ୍‌ଥାନିକ) ପର୍ବ ଅନୁଷ୍ଠିତ ହେବା କଥା । ନନ୍ଦ ଯଶୋଦା ଉଭୟେ ଲାଗି ପଡ଼ିଲେ ଉତ୍ସବରେ । ଭାଗ୍ୟକୁ ସେଦିନ ତାଙ୍କର ଜନ୍ମ ନକ୍ଷତ୍ର (ରୋହିଣୀ) ବେଳା ଉପସ୍ଥିତ ହୋଇଥାଏ । ଗୋପୀମାନଙ୍କର ମେଳା ଲାଗିଗଲା ନନ୍ଦଙ୍କ ଗୋଶାଳା ଅଗଣାରେ । ବେଦଜ୍ଞ ବ୍ରାହ୍ମଣମାନଙ୍କୁ ଡ଼କାଗଲା । ସେମାନଙ୍କୁ ବରଣ କରି ଅନ୍ନ, ବସ୍ତ୍ର, ମାଳା, ଗୋ ଆଦି ଦାନ କରାଗଲା । କୃଷ୍ଣଙ୍କର ସ୍ୱସ୍ତିବାଚନ ପର୍ବ ହେଲା ।

ଘଟଣାଟି ଘଟିଥିବା ସ୍ଥାନ ଏବେ ବୃନ୍ଦାବନ ଇସ୍‌କନ୍ ମନ୍ଦିର ନିକଟସ୍ଥ ଛଟିକରାଠାରେ ଦର୍ଶନୀୟ । ଯଶୋଦା ରୋହିଣୀ ଉଭୟେ ଲାଗିଥାନ୍ତି ଗୋପୀ ଗୋପାଳମାନଙ୍କ ସ୍ୱାଗତ ସତ୍କାର କର୍ମରେ । କାହା ହାତରେ ଫୁରୁସତ ନଥାଏ । ଶୁଭସ୍ଥାନଟି ଗୋକୁଳଠାରୁ କିଛି ଦୂରରେ ହୋଇଥିବାରୁ ସମସ୍ତେ ଉତ୍ସବ ସାମାନ ସବୁ ଶଗଡ଼ରେ ବୋହି ନେଇଥିଲେ । ଭଗବାନଙ୍କୁ ମା'ଯଶୋଦା ସ୍ତନ୍ୟପାନ କରାଇ ଏକ ଶଗଡ଼ ତଳେ ଶୁଆଇ ଦେଇଥାନ୍ତି । ଭଗବାନ ହାତ ଗୋଡ଼ ହଲାଇ ଶଗଡ଼ ତଳେ ଶୋଇ ରହି ଖେଳୁଥାନ୍ତି । କଂସ ପ୍ରେରିତ ଅସୁର ଶକଟ ଅସୁର ଏହି ସୁଯୋଗ ଅପେକ୍ଷାରେ ଥିଲା । ପୂର୍ବ ଜନ୍ମର ହିରଣ୍ୟାକ୍ଷଙ୍କ ପୁତ୍ର ଉତ୍କଚ ସେ । ଲୋମଶ ଋଷିଙ୍କ ଶାପରେ ଅସୁର ହୋଇଛି । କୃଷ୍ଣଙ୍କ ହାତରେ ମଲେ ଅସୁର ଜନ୍ମରୁ ଉଦ୍ଧାର ହେବ ବୋଲି ଋଷି ତାକୁ ବଚନ ଦେଇଛନ୍ତି । ସୂକ୍ଷ୍ମ ଶରୀର ଧରି ସେ ଶକଟ ଦେହରେ ପ୍ରବେଶ କରିଗଲା । ପୂର୍ବଜନ୍ମରେ ହିରଣ୍ୟାକ୍ଷ ଦୈତ୍ୟର ପୁତ୍ର ଉତ୍କଚ ଲୋମଶ ଋଷିଙ୍କ ଶାପରେ ଦେହ ରହିତ ହୋଇଥିଲା । ଋଷିଙ୍କ କୃପାରୁ ଶ୍ରୀକୃଷ୍ଣ ଲୀଳାରେ ଭଗବାନଙ୍କ ଅଙ୍ଗ ସ୍ପର୍ଶରେ ସେ ମୁକ୍ତ ହେବା କଥା ।

ଶକଟ ଉପରେ ଦୁଧ ଦହି ରସ ରଖି ରସେଶ୍ୱରଙ୍କୁ ଶକଟ ତଳେ ରଖିବା ଅର୍ଥ ଭୋଗ୍ୟବସ୍ତୁକୁ ପ୍ରାଧାନ୍ୟ ଦେବା । ଭଗବାନଙ୍କୁ ଗୌଣସ୍ଥାନ ଦେବା । ଶକଟ

ହେଉଛି ମନୁଷ୍ୟର ସଂସାର । ପତି-ପତ୍ନୀ ଏ ଶକଟର ଦୁଇ ଚକ୍ର । ସଂସାର ଧର୍ମ-ପରମାର୍ଥ ଧର୍ମ ଏ ଶକଟର ଦୁଇ ବଳଦ । ବଳଦ ନଥିବା ଶକଟ ଅର୍ଥ ଦୁଇ ଧର୍ମକୁ ଭୁଲି ଜୀବ ଭୋଗବିଳାସରେ ମାତିବା । ଏପରି ସଂସାର ଶକଟକୁ ଈଶ୍ୱର ଲାତ ମାରି ଓଲଟାଇ ଦିଅନ୍ତି । ପିତାମାତାଙ୍କ ଏଭଳି ବ୍ୟବହାର ଦେଖି ଭଗବାନ ଜୀବକୁ ଶିକ୍ଷା ଦେବାକୁ ଓ ଅସୁରକୁ ଉଦ୍ଧାର କରିବାକୁ ଶଗଡ଼କୁ ଲାତ ମାରିଦେଲେ । ଦେଖୁ ଦେଖୁ ଏତେ ବଡ଼ ଶଗଡ଼ଟା ଓଲଟି ପଡ଼ି ଛଅ ଟୁକୁଡ଼ା ହୋଇଗଲା । ସ୍ଥାନର ନାମ ଛଟିକରା ରହିଗଲା । ସମସ୍ତେ ଦୌଡ଼ିଲେ ଭଗ୍ନ ଶକଟ ପାଖକୁ । ଘଟଣା ସଂପର୍କରେ କ'ଣ ସବୁ ଶୁଣିଲେ ସେମାନେ ?

**ଶ୍ରୀ ଶୁକ ଉବାଚ**

**ଉଚୁଃ ଅବ୍ୟବସିତ ମତୀନ୍     ଗୋପାନ୍ ଗୋପୀଃ ଚ ବାଳକାଃ ।**
**ରୁଦତ-ଅନେନ ପାଦେନ     କ୍ଷିପ୍ତଂ ଏତତ୍ ନ ସଂଶୟଃ ।।୯।।**

ଉ. ଘଟଣାସ୍ଥଳରେ ଉପସ୍ଥିତ ଥିଲେ ଅନେକେ ବୟସ୍କ ଗୋପୀ ଗୋପାଳଙ୍କ ସହିତ ବାଳକଗଣ । ସମସ୍ତେ ଏ ବିଚିତ୍ର କାଣ୍ଡ ଦେଖି ଅବାକ୍ ହୋଇଗଲେ । କାହାରି ମୁଣ୍ଡ କାମ କରୁନଥାଏ । ତଥାପି ସେ ସନ୍ଦେହମୁକ୍ତ ହୋଇ ଘୋଷଣା କଲେ ଯେ ଏହି ଶଗଡ଼ ତଳେ ଶିଶୁଟି ଶୋଇବା ଅବସ୍ଥାରେ ଖେଳୁଥିଲା । ହଠାତ୍ କାନ୍ଦି ଉଠିଲା ସେ । ରୋଷରେ ଗୋଟିଏ ପାଦ ପ୍ରହାର କରନ୍ତେ ଏତେ ବଡ଼ ଶକଟଟା ଭାଙ୍ଗି ପଡ଼ିଲା ! !

ଯେଉଁମାନେ ଏ କଥା ଶୁଣିଲେ ସେମାନେ ଆଦୌ ଏକଥା ବିଶ୍ୱାସ କଲେ ନାହିଁ । ସେମାନେ ଭଗବାନଙ୍କ ଅଚିନ୍ତ୍ୟ ଲୀଳା ବୁଝିବେ କିପରି ? ଭଗବାନଙ୍କୁ ପ୍ରେମରେ ସେମାନେ ସାମାନ୍ୟ ବାଳକ ବୋଲି ମାନୁଛନ୍ତି । ଯଶୋଦା କୋଳକୁ ନେଲେ ପୁଅକୁ । ଗ୍ରହଦୋଷ କାଟିବାକୁ ପୁରୋହିତ ଡ଼ାକି ଅଗ୍ନିହୋତ୍ରାଦି କଲେ । ଅନେକ ବ୍ରାହ୍ମଣ ଡ଼ାକି ଆଶୀର୍ବାଦ ସ୍ୱସ୍ତିବାଚକ ଆଦି କରାଇଲେ । ଅନେକ ଦାନ ପୁଣ୍ୟ ମଧ୍ୟ କଲେ । ଭାବିଲେ ପିଲାର ରିଷ୍ଟ ଖଣ୍ଡନ ହୋଇଗଲା ନିଶ୍ଚୟ ।

ପ୍ରଶ୍ନ-୯: କ୍ରମେ ଠାକୁରଜୀଙ୍କୁ ବର୍ଷେ ପୁରିଲା । କୋଳରେ ଧରି ଗେଲ କରୁଥାନ୍ତି ନନ୍ଦରାଣୀ ଯଶୋଦା (ସତୀ) । ଠାକୁରଙ୍କ ଲୀଳା ଜୀବ ବୁଝିବ କାହୁଁ ? ସେ ବିଚିତ୍ର କର୍ମା କି ବିଚିତ୍ର ଲୀଳା ଘଟାଇ ବସିଲେ ସେତେବେଳେ ?

**ଏକଦା-ଆରୋହଂ ଆରୂଢ଼ଂ     ଲାଳୟନ୍ତୀ ସୁତଂ ସତୀ ।**
**ଗରିମାଣଂ ଶିଶୋଃ ବୋଢ଼ୁଂ     ନ ସେହେ ଗିରି କୂଟ ବତ୍ ।।୧୮।।**

ଉ. ହଠାତ୍ ଅଚିନ୍ତ୍ୟ ଯୋଗଶକ୍ତି ବଳରେ ଭଗବାନ ପର୍ବତ ଶୃଙ୍ଗ ଭାରା ଭଳି ଓଜନିଆ ହୋଇଗଲେ । ମା’ ଯଶୋଦା କିଛି ବୁଝି ନ ପାରି ବାଳକ ପୁତ୍ରର ଓଜନ ସହି ପାରିଲେନି । କୋଳରୁ ଓହ୍ଲେଇ ଦେଲେ । ତଳେ ରଖିଦେଇ ନିଜ ଗୃହକର୍ମରେ ବ୍ୟସ୍ତତା ଭିତରେ ହଜିଗଲେ ।

ପ୍ରଶ୍ନ-୧୦: କଂସ ପ୍ରେରିତ ଦୈତ୍ୟ ତୃଣାବର୍ତ୍ତ ଆସି ପହଞ୍ଚିଗଲା । ସେ ପୂର୍ବଜନ୍ମରେ ପାଣ୍ଡୁଦେଶର ରାଜା ସହସ୍ରାକ୍ଷ ଥିଲେ । ଏକଦା ନର୍ମଦା କୂଳରେ ସେ ରାଣୀମାନଙ୍କ ସହିତ ବିହାର କରୁଥିଲେ । ଦୈବାତ୍ ସେଠାରେ ଦୁର୍ବାସା ମୁନି ପହଞ୍ଚିଗଲେ । କାମ ଭୋଳରେ ରାଜା ମୁନିଙ୍କୁ ପ୍ରଣାମ, ସ୍ୱାଗତ ସତ୍କାର କରିବାରେ ଅବହେଳା କଲେ । ଦୁର୍ବାସାଙ୍କ ଶାପରେ ତୃଣାବର୍ତ୍ତ ଅସୁର ହୋଇ ସୂକ୍ଷ୍ମ ଶରୀରରେ ବୁଲୁଥାନ୍ତି । ତୃଣାବର୍ତ୍ତ ଜୀବର ଲୋଭ ବୃତ୍ତିକୁ ବୁଝାଏ । ଲୋଭ ହିଁ ମନୁଷ୍ୟକୁ ତୃଣ ସଦୃଶ ଆବର୍ତ୍ତ ବା ଭଉଁରି ଭଳି ଘୁରାଏ । ଏହି ନୀତି ଶିକ୍ଷା ଜୀବକୁ ଉପଦେଶ ଦେବାକୁ ଯୋଗମାୟା କିଭଳି ଲୀଳାର ଆୟୋଜନ କଲେ ।

**ଦୈତ୍ୟ ନାମ୍ନୋ ତୃଣାବର୍ତ୍ତଃ କଂସ ଭୃତ୍ୟଃ ପ୍ରଣୋଦିତଃ ।**
**ଚକ୍ରବାତ ସ୍ୱରୂପେଣ ଜହାର-ଆସୀନଂ ଅର୍ଭକମ୍ ॥୨୦॥**

ଉ. ଭଗବାନ ବାଳକଟିଏ (ଅର୍ଭକ) ହୋଇ ଅଗଣାରେ ବସିଥାନ୍ତି । ତୃଣାବର୍ତ୍ତ ହଠାତ୍ ଚକ୍ରବାତ ରୂପରେ ଆସି ତାଙ୍କୁ ଆକାଶକୁ ଟେକି ନେଲା (ଜହାର) । ହଠାତ୍ ସାରା ଗୋକୁଳ ବାସୀଙ୍କ ଚକ୍ଷୁରେ ଧୂଳି ଭର୍ତ୍ତି ହୋଇଗଲା । ତୃଣାବର୍ତ୍ତ ଏକ ପ୍ରଚଣ୍ଡ ଗର୍ଜନ କରି ଜଗତ କମ୍ପାଇ ଦେଲା । କ୍ଷଣକ ମଧ୍ୟରେ ଧୂଳି ମଳିରେ ସମଗ୍ର ଆକାଶ ଅନ୍ଧକାର ଆଛନ୍ନ ହେଲା । ନନ୍ଦରାଣୀ ଆଉ ପୁଅକୁ ଦେଖି ପାରୁନଥାନ୍ତି । ଅତି କରୁଣ ଭାବରେ ପୁତ୍ର ହରା ଜନନୀ ଭୂମିରେ ଲୋଟି ପଡ଼ିଲେ । ସତେ ଯେପରି ନବ ଜାତ ବାଛୁରୀଟି ହରାଇ ଗାଈଟି ଅସହାୟା ହୋଇପଡ଼ିଛି । ତାଙ୍କ ଦେଖାଦେଖି ଅନ୍ୟ ଗୋପୀମାନେ ମଧ୍ୟ ବିଳାପ କରିବାରେ ଲାଗିଲେ ।

ଏବେ ଗୋବିନ୍ଦ ତାଙ୍କ ଲୀଳା ଆରମ୍ଭ କରିଦେଲେ । ସେ ହଠାତ୍ ଏତେ ଓଜନ ହୋଇଗଲେ ଯେ ତୃଣାବର୍ତ୍ତ ତାକୁ ଧରି ରଖିବା ଅସମ୍ଭବ ମନେ କଲା । ଏଣେ କୃଷ୍ଣ ତାର ଗଳାକୁ ଚିପି ଧରିବାରୁ ସେ କୃଷ୍ଣଙ୍କୁ ତଳେ ମଧ୍ୟ ଫିଙ୍ଗି ପାରୁନଥାଏ । ଭଗବାନ ତାର ପ୍ରାଣ ଆକର୍ଷଣ କରିନେଲେ । ତାର ହସ୍ତ ପାଦ ନିସ୍ତେଜ ହେଲା । ସେ ଅତି କଷ୍ଟରେ ଚିତ୍କାର ମଧ୍ୟ କରିପାରୁନଥାଏ । ଶେଷରେ ପ୍ରାଣ ହରାଇ ବିଚରା

ଭୂମିରେ ମରି ପଡ଼ିଲା । ପାଣ୍ଡ୍ୟଦେଶର ରାଜା ଥିଲେ ସହସ୍ରାକ୍ଷ । ରାଣୀମେଳରେ ଜଳକ୍ରୀଡ଼ା କରି ଦୁର୍ବାସା ଋଷିଙ୍କୁ ପ୍ରଣାମ ନକରି ଅଭିଶପ୍ତ ହେଲେ । ଦେହ ରହିତ ଅସୁର ହେଲେ । କଂସ ଦରବାରରେ ସେନାପତି ସ୍ଥାନ ପାଇଥିବା ଅସୁର ଏହି ତୃଣାବର୍ତ୍ତ ।

ଗୋପୀମାନେ ଚଞ୍ଚଳ ଭଗବାନଙ୍କୁ ଉଠାଇ ନେଲେ । ନନ୍ଦରାଣୀଙ୍କ କୋଳରେ ଦେଲେ । ଯଶୋଦା ଭାବିଲେ ସତେ ଯେପରି ଯମ ମୁହଁରୁ ତାଙ୍କ ପୁଅକୁ ସେ ଛଡ଼ାଇ ଆଣିଛନ୍ତି । ଗୋପାଳମାନେ ଆଶ୍ଚର୍ଯ୍ୟ ହେଲେ ଯେ ଏତେ ବଡ଼ ଭୟଙ୍କର ଦୈତ୍ୟ ବାଳକକୁ ନେଇଥିଲା ମାରିବାକୁ । ହେଲେ ଫଳ ହେଲା ବିପରୀତ । ରାକ୍ଷସ ହରାଇଲା ତାର ପୈତୃକ ପ୍ରାଣ ଟିକକ । ନାରାୟଣ ରକ୍ଷା କଲେ ନିରୀହ ନିର୍ଦ୍ଦୋଷ ବାଳକଟିକୁ । ନନ୍ଦ ଆଦି ବୟସ୍କମାନେ ଶତମୁଖ ହେଲେ ନିଜ ଭାଗ୍ୟର ପ୍ରଶଂସାରେ । କେତେ ଜନ୍ମର ଶାଳଗ୍ରାମ ସେବାର ଫଳ ତାଙ୍କୁ ହାତେ ହାତେ ମିଳିଛି । ସେ କାଳ ମୁଖରୁ ବାଳକକୁ ରକ୍ଷା କରିଛନ୍ତି ନାରାୟଣଙ୍କ କୃପାରୁ । ପୁଣି ତାଙ୍କର ମନେ ପଡ଼ିଗଲା ସନ୍ଥ ବସୁଦେବଙ୍କ ବାଣୀ । କଂସ ପ୍ରରୋଚନାରେ ଅସୁର ଉତ୍ପାତ କଥା ।

ପ୍ରଶ୍ନ-୧୧: ଦିନକର କଥା । ସକାଳୁ ସକାଳୁ ନନ୍ଦରାଣୀ ସ୍ତନ୍ୟପାନ କରାଉଥାନ୍ତି ଗୋବିନ୍ଦଙ୍କୁ । କୋଳରେ ବସି ହଠାତ୍ ହାଇ ମାରିଲେ ଗୋବିନ୍ଦ । ମା'ଯଶୋଦା ଦର୍ଶନ କଲେ ପୁଅର ମୁଖ ଗହ୍ବର । ଦିଶୁଛି ଅନନ୍ତ ଆକାଶ, ଭୂଗୋଲୋକ, ସ୍ବର୍ଗ ରାଇଜ, ସୂର୍ଯ୍ୟ, ଚନ୍ଦ୍ର, ଅନନ୍ତ ଗ୍ରହ ଗଣଙ୍କ ସହିତ ଜ୍ୟୋତିଷ୍କ ପୁଞ୍ଜ, ସପ୍ତଦ୍ୱୀପ, ସପ୍ତ କୁଳାଚଳ, ସପ୍ତନଦୀ ସପ୍ତ ସମୁଦ୍ର ଆଦି କେତେ କ'ଣ ? ଏକ ବାକ୍ୟରେ ସଂପୂର୍ଣ୍ଣ ବିଶ୍ୱବ୍ରହ୍ମାଣ୍ଡ । ଏ ଘଟଣା ଦେଖି ଯଶୋଦା ଡ଼ରି ଯାଇଥିଲେ କି ?

**ସା ବୀକ୍ଷ ବିଶ୍ୱଂ ସହସା ରାଜନ୍ ସଞ୍ଜାତ ବେପଥୁଃ ।**
**ସମ୍ମୀଲ୍ୟ ମୃଗ ଶାବ-ଅକ୍ଷୀ ନେତ୍ରେ ଆସୀତ୍ ସୁବିସ୍ମିତା ॥୩୭॥**

ଉ. ଡ଼ରିଯିବା ସ୍ୱାଭାବିକ କଥା । ସେ ଅବଶ୍ୟ ଆଶ୍ଚର୍ଯ୍ୟ ହେଲେ । ଯଶୋଦା ନିଜର ସୁନ୍ଦର ଚଞ୍ଚଳ ଚକ୍ଷୁକୁ ସ୍ଥିର କରିଦେଲେ । ଡ଼ିମା ଡ଼ିମା ଖୋଲା ନେତ୍ରରେ ଏ ବିଶ୍ୱରୂପ ଦର୍ଶନ କଲେ । ତାଙ୍କର ଗୋଟାସୁଦ୍ଧା ଦେହ ଥର ଥର ହୋଇ ଝାଳେଇ ଗଲା । ପରମୁହୂର୍ତ୍ତରେ ଭଗବାନଙ୍କ ନିର୍ଦ୍ଦେଶରେ ଯୋଗମାୟା ନିଜ ମାୟାପଟଳ ହଟାଇ ନେଲେ । କାରଣ ବ୍ରଜଭୂମି ପ୍ରେମ ଭୂମି ଅଟେ । ଐଶ୍ୱର୍ଯ୍ୟ ଶକ୍ତି ଏଠି ଡ଼ରି ମରି ଚଳନ୍ତି । ଏଠାରେ ଲୀଳା ଶକ୍ତି ସମ୍ପୂର୍ଣ୍ଣ ସ୍ୱାଧୀନା ସ୍ୱତନ୍ତ୍ରା । ସକଳ ଭକ୍ତ ଭଗବାନଙ୍କ ଲୀଳାକୁ ଚାହିଁ ବସିଥାନ୍ତି । ନାରାୟଣଙ୍କ ଐଶ୍ୱର୍ଯ୍ୟ ଦର୍ଶନ କରି ଡ଼ରି ମରି ବାଃ ବାଃ କହି

ତାଳି ମାରିବାକୁ ନୁହେଁ । ଐଶ୍ୱର୍ଯ୍ୟର ପ୍ରାକଟ୍ୟରେ ଲୀଳା ଆନନ୍ଦ କିର କିରା ହୋଇଯାଏ । ଏକଥା କି ଭଗବାନ କି ଭକ୍ତ ଉଭୟେ ଚାହାନ୍ତି ନାହିଁ । ମାୟା ହଟିଯାଆନ୍ତେ ଯଶୋଦା ଦେଖିଥିବା ଘଟଣାକୁ ସ୍ୱପ୍ନ ଭାବିନେଲେ । କାହାକୁ କହିବାକୁ ଅନୁଚିତ ମନେ କଲେ । ଗୋବିନ୍ଦଙ୍କୁ ଅଦ୍ଭୁତ ପୁରସ୍କାର ମଧ୍ୟ ଦେଲେ । କାଳେ କୌଣସି ଅଶୁଭ ଦୁଷ୍ଟ ଆତ୍ମା ପୁଅ ଭିତରେ ପଶିଯାଇଥିବ ମନେ କରି ପୁଅ ଛାତିରେ ଥୁ ଥୁ କରି ଛେପ ପକାଇବାକୁ ଭୁଲି ନଥିଲେ । ଧନ୍ୟ ଭକ୍ତ ବତ୍ସଳ ଭଗବାନ ।  ଧନ୍ୟ ସେଇ ରାଗାନୁଗା ଭକ୍ତ । ଧନ୍ୟ ସେ ବ୍ରଜଭୂମି । ଗୋବିନ୍ଦଙ୍କ ନିତ୍ୟ ଲୀଳା ସ୍ଥଳୀ ।

ଭଗବାନ ଏ ଲୀଳା ଦ୍ୱାରା ସ୍ନେହମୟୀ ଜନନୀଙ୍କୁ ଜଣେଇଦେବାକୁ ଚାହୁଁଥିଲେ ଯେ ତାଙ୍କ ଦୁଧ କେବଳ ସେ ଖାଉ ନାହାନ୍ତି । ସାରା ଜଗତର ଭକ୍ତଗଣ ଖାଉଛନ୍ତି । ଯେ ଭଗବାନଙ୍କ ବା ତାଙ୍କ ଭକ୍ତକୁ ଖୁଆଇପାରେ ସେ ସାରା ବିଶ୍ୱବାସୀ ଜୀବଙ୍କୁ ପ୍ରସନ୍ନ କଲା ବୋଲି ଜାଣ ।

# ଅଥ ଅଷ୍ଟମ ଅଧ୍ୟାୟଃ

## (ନାମକରଣ ସଂସ୍କାର, ବାଳକ୍ରୀଡ଼ା ଓ ମୃଦ୍ ଭକ୍ଷଣ ଲୀଳା)

ପ୍ରଶ୍ନ-୧୨ : ବସୁଦେବଜୀଙ୍କ ବଂଶ ଯଦୁବଂଶ । ତାଙ୍କର କୁଳ ପୁରୋହିତ ଗର୍ଗମୁନି । ଦୁଇ ପୁତ୍ର ବଳରାମ ଓ କୃଷ୍ଣଙ୍କର ନାମ କରଣ ସଂସ୍କାର ଲାଗି ବସୁଦେବ ତାଙ୍କୁ ପଠାଇଲେ ଗୋକୁଳକୁ । ଦେଖୁ ଦେଖୁ ରାଜା ନନ୍ଦ ସ୍ୱାଗତ ସତ୍କାର କଲେ ଗର୍ଗମୁନିଙ୍କର । ଗର୍ଗ ମୁନି ଖୁବ୍ ସନ୍ତର୍ପଣରେ ଦୁଇ ପୁଅଙ୍କର ନାମକରଣ ସଂସ୍କାର କରିବାକୁ ଆସିଛନ୍ତି ବୋଲି କହିଲେ । ଉଭୟେ ସ୍ଥିର କଲେ କଂସ କିମ୍ବା କାହାକୁ ନ ଜଣାଇବା ଭଳି ଗୋପନରେ ଏ ଶୁଭ କର୍ମ କରିନେବା ବୁଦ୍ଧିମାନର କାମ ହେବ । ଏହି ଅନାଗତ ଭୟ ଲାଗି ଗର୍ଗମୁନି କି କାରଣ ଦର୍ଶାଇଥିଲେ ?

**ଗର୍ଗ ଉବାଚ**

**ଯଦୂନାଂ ଅହଂ ଆଚାର୍ଯ୍ୟଃ ଖ୍ୟାତଃ ଚ ଭୂବି ସର୍ବଦା ।**
**ସୁତଂ ମୟା ସଂସ୍କୃତଂ ତେ ମନ୍ୟତେ ଦେବକୀ ସୁତମ ॥୭॥**

ଉ. ଗର୍ଗ ମୁନି କହିଲେ ଯେ ସଂସାର ଜାଣେ ମୁଁ ଜନ୍ମେ ଜନ୍ମେ ଯଦୁବଂଶର ପୁରୋହିତ । ଏବେ ମୋ ଦ୍ୱାରା ତୁମ ଦୁଇ ପୁତ୍ରଙ୍କର ନାମକରଣ ସଂସ୍କାର କରାଗଲେ ଏକଥା ଜାଣି କଂସ ଭାବିନେବ ଯେ ତୁମର ଏ ଦୁଇ ପୁଅ ବାସ୍ତବରେ ଦେବକୀ ବସୁଦେବଙ୍କ ପୁତ୍ର । କଂସର ଶତ୍ରୁ । ଅତଏବ ମହା ଅନର୍ଥ ହୋଇପାରେ ।

ଏବେ କଂସ ଅନ୍ଧାରରେ ବାଡ଼ି ବୁଲାଉଛି । ରାଜ୍ୟରେ ବାଳବଧ ଅଭିଯାନ ଚାଲୁ ରଖିଛି । ଗୋକୁଳକୁ ଗୋଟାକ ପରେ ଗୋଟାଏ ଅସୁର ପଠାଉଛି । କିଏ ଜାଣେ ସେ କେତେବେଳେ କେଉଁ କାଣ୍ଡ ଘଟାଇ ବସିବ ! !

ପ୍ରଶ୍ନ-୧୩: ଦୁହିଁଙ୍କର ବିସ୍ତୃତ ବିଚାର ବିମର୍ଷ ପରେ ଗର୍ଗ ମୁନି ଶେଷରେ କି ପଦକ୍ଷେପ ନେଲେ ?

**ଏବଂ ସଂପ୍ରାର୍ଥିତୋ ବିପ୍ରଃ ସ୍ୱ ଚିକୀର୍ଷିତଂ ଏବ ତତ୍ ।**
**ଚକାର ନାମ କରଣଂ ଗୂଢ଼ୋ ରହସି ବାଳୟୋଃ ॥୧୧॥**

ଉ. ନନ୍ଦ ରାଜା ବିନୀତ ହୋଇ ପ୍ରାର୍ଥନା କଲେ ଯେ ପୁରୋହିତଜୀଙ୍କ ଇଛା ଅନୁସାରେ ବାଳକ ଦୁହିଁଙ୍କର ନାମକରଣ କର୍ମଟି ବଢ଼ିଯାଉ । ଗର୍ଗ ମୁନି ତ ସେଇଆ ଚାହୁଁଥିଲେ । ସେହିଦିନ ସେ ନିଜ ପବିତ୍ର କର୍ତ୍ତବ୍ୟ କର୍ମଟି ସଂପାଦନ କରିଦେଲେ । ଏଥିପାଇଁ ନିଜକୁ ମହାଭାଗ୍ୟବାନ ମଧ ମନେ କଲେ । ଭଗବାନଙ୍କ ନାମକରଣ ସଂସ୍କାର କରିବା ଜଣେ ଜୀବ ପକ୍ଷେ କଅଣ କମ ଗୌରବର କଥା ! !

ପ୍ରଶ୍ନ-୧୪: ଗର୍ଗ ମୁନି ଜଣେ ସାଧାରଣ ପୁରୋହିତ ନଥିଲେ । ସେ ଜଣେ ଅସାଧାରଣ ହରି ଭକ୍ତ ମଧ । ସକଳ ଯୋଗ ସିଦ୍ଧି ତାଙ୍କୁ ଦାସୀ ପଣରେ ସେବା କରିବାକୁ ପ୍ରସ୍ତୁତ ଥିଲେ । ସେ ନିଜ ଯୋଗଶକ୍ତି ବଳରେ ପ୍ରଥମେ ବଡ଼ ବାଳକର କର କପାଳ କୋଷ୍ଠୀ ଗଣନା କଲେ । ଭବିଷ୍ୟତବାଣୀ କଲେ ଯେ ଏ ରୋହିଣୀପୁତ୍ର ସକଳ ସଦ୍‌ଗୁଣ ସଂପନ୍ନ ହରିଭକ୍ତଟିଏ ହେବ । ତାର ଜନ୍ମ-କର୍ମ-ଜୀବନ ସୁନ୍ଦରବ ରାମ ମୟ ହେବ । ଅତଏବ ତାର ନାମ ରାମ ରଖାଯାଉ । ତାର ଅକଳନୀୟ ଶାରୀରିକ, ମାନସିକ ଓ ଆଧାତ୍ମିକ ବଳ ଦେଖି ପୁଣି ଆଉ ଗୋଟିଏ ନାମ ଦେଲେ ବଳରାମ ବୋଲି । ବାଳକ ତାର ଦିବ୍ୟଶକ୍ତି ବଳରେ ବସୁଦେବ ପରିବାର ଓ ନନ୍ଦ ପରିବାରକୁ ଗର୍ଭ(ଦେବକୀଙ୍କ ଠାରୁ ରୋହିଣୀ)ପରିବର୍ତ୍ତନ ମାଧମରେ ସମ୍ୟକ୍ ଆକର୍ଷଣ କରାଇଥିବାରୁ ତାର ନାମ ସଂକର୍ଷଣ ମଧ ରହୁ । ତ୍ରିକାଳଦର୍ଶୀ ମୁନୀଶ୍ୱର ଗର୍ଗ ସାନ ବାଳକ ବିଷୟରେ କ'ଣ ସବୁ କହି କି କି ନାମ ଦେଲେ ତାଙ୍କର ?

**ଆସନ୍ ବର୍ଣ୍ଣାଃ ତ୍ରୟୋ ହି-ଅସ୍ୟ ଗୃହ୍‌ଣତୋଽନୁଯୁଗଂ ତନୂଃ ।**
**ଶୁକ୍ଳୋ ରକ୍ତଃ ତଥା ପୀତ ଇଦାନୀଂ କୃଷ୍ଣତାଂ ଗତଃ ॥୧୩॥**

ଉ. ପ୍ରଥମେ କହିଲେ, ''ହେ ନନ୍ଦ, ଏ ପିଲା ସତ୍ୟ, ତ୍ରେତା, ଦ୍ୱାପର, କଳି ଚାରି ଯୁଗରେ ଚାରି ବର୍ଣ୍ଣ ଧରି ପ୍ରକଟ ହୋଇଥାଏ । ସତ୍ୟଯୁଗରେ ଶୁକ୍ଳ, ତ୍ରେତାରେ ରକ୍ତ, କଳିରେ ପୀତ ବର୍ଣ୍ଣ ଧାରଣ କରି ପ୍ରକଟ ହୋଇଥାଏ । ଏବେ ତ ଦ୍ୱାପର ଯୁଗ । ସବୁ ଦ୍ୱାପର ଯୁଗ ଭଳି ଏ ଦ୍ୱାପର ଯୁଗରେ ସେ କୃଷ୍ଣ ବର୍ଣ୍ଣ ଧାରଣ କରିଛି । ତେଣୁ ତାର ନାମଟି ସବୁ ଦ୍ୱାପର ଯୁଗର ନାମ ଭଳି କୃଷ୍ଣ ରଖାଯାଉ ।''

ପ୍ରଶ୍ନ-୧୫: ଗର୍ଗ ମୁନି ପୁଣି କହିଲେ, ''ନନ୍ଦଜୀ ତୁମର ଏ ପୁଅ କୃଷ୍ଣ ପୂର୍ବେ ବସୁଦେବଙ୍କ କୋଳରେ ପ୍ରକଟ ହୋଇଥିବା କଥା ଜ୍ଞାନୀ ଲୋକମାନେ କହି ବୁଲିବେ । କାରଣ ଯାହା ହେଉ ନା କାହିଁକି । ତାର ଅନ୍ୟ ଏକ ନାମ ବାସୁଦେବ ରଖାଯାଉ । ସକଳ କୃଷ୍ଣ ଭକ୍ତ ଏହାକୁ ନନ୍ଦ ବଳା ବୋଲି ତୁଣ୍ଡରେ କହି, ମନରେ ଜପି ଜପି ପରମ ପ୍ରେମ ସାଗରରେ ଉବୁଟୁବୁ ହେବେ । ଏହାକୁ ତୁମେ କେବେବି ସାମାନ୍ୟ ବାଳକ ଭାବିବ ନାହିଁ । ଏ ତୁମ କୁଳ ଉଜ୍ଜ୍ୱଳ କରିବ କାଳ କାଳକୁ । କେବଳ ତୁମକୁ ନୁହେଁ ଏ ବାଳକ ସକଳ ଗୋକୁଳବାସୀଙ୍କୁ ଅନେକ ଦୈବ ଦୁର୍ବିପାକ ରାକ୍ଷସ ଉତ୍ପାତରୁ ରକ୍ଷା ବି କରିପାରିବ । ସତ୍ୟଯୁଗରେ ସ୍ୱର୍ଗସମ୍ରାଟ ଇନ୍ଦ୍ର ଥରେ ବିପଦରେ ପଡ଼ିଥିଲେ । ସେତେବେଳେ ଅସୁର ରାଜା ବଳି ସ୍ୱର୍ଗ ଅଧିକାର କରି ଇନ୍ଦ୍ରଙ୍କର ବିପଦର କାରଣ ହୋଇଥିଲେ । ସେତେବେଳେ ଏହି ବାଳକ ବାମନ ଭଗବାନ ରୂପରେ ପ୍ରକଟ ହୋଇଥିବା କଥା ମୁଁ ମୋର ଦିବ୍ୟ ଚକ୍ଷୁରେ ଜାଣି ପାରୁଛି ।'' ଭଗବାନଙ୍କର ଏତେ ଅଲୌକିକ ଶକ୍ତି କଥା ଶୁଣାଇ ଗର୍ଗ ମୁନି ପୁତ୍ର ପାଳନ ଲାଗି ନନ୍ଦଙ୍କୁ କି କି ଉପଦେଶ ପ୍ରଦାନ କଲେ ?

**ତସ୍ମାତ୍ ନନ୍ଦ-ଆତ୍ମଜୋଽୟଂ ତେ ନାରାୟଣ ସମୋ ଗୁଣୈଃ ।**
**ଶ୍ରିୟା କୀର୍ତ୍ତ୍ୟା-ଅନୁଭାବେନ ଗୋପାୟସ୍ୱ ସମାହିତଃ ॥୧୯॥**

ଉ. ଗର୍ଗ ମୁନି କହିଲେ, ''ହେ ରାଜନ୍, ତୁମର ଏହି ପୁତ୍ର ଶକ୍ତି, ସମ୍ପତ୍ତି, କୀର୍ତ୍ତି ଗୁଣରେ ନାରାୟଣଙ୍କ ଭଳି ଲୀଳା କରିବ । ଅତଏବ ତୁମେ ସ୍ଥିର ମନ, ବୁଦ୍ଧିରେ (ସମାହିତଃ) ଆନନ୍ଦରେ ଏହାର ଲାଳନ ପାଳନ (ଗୋପାୟସ୍ୱ) କର । ବାସ୍ତବରେ ଲୋକେ ପୂର୍ବ ଭାଗ୍ୟ ବଳରେ ଏଭଳି ସତ୍‌ପୁତ୍ର ଲାଭ କରନ୍ତି । ହେଲେ ତୁମ ପୁତ୍ର ଭଳି ନାହିଁ-ନଥିଲା-ନୋହିବ ପୁତ୍ରଟିଏ ମହାଭାଗ୍ୟବାନଙ୍କୁ କେବଳ ମିଳିପାରେ ।'' ପ୍ରେମପୂର୍ଣ୍ଣ ଅଥଚ ନିରାଡ଼ମ୍ବର ନାମକରଣ ଉତ୍ସବ ସମାପନ କରି ଗର୍ଗମୁନି ନିଜ ଆଶ୍ରମକୁ ଫେରିଗଲେ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

### ଶ୍ରୀ ଶୁକ ଉବାଚ

ଦିନ ପରେ ଦିନ ଗଡ଼ି ଚାଲିଲା । ରାମ-କେଶବ ଦୁଇ ଭାଇ ନନ୍ଦଙ୍କ ଅଗଣାରେ ଏଥର ଆଣ୍ଠେଇଲେ । ଗୁରୁଣ୍ଡିଲେ । ଉଠି ଠିଆ ହେବାକୁ କେତେବେଳେ ପିତାମାତାଙ୍କ ହାତ ଧରୁଥାନ୍ତି । କେତେବେଳେ ଅଗଣାରେ ବନ୍ଧା ହୋଇଥିବା ବାଛୁରୀ ଲାଞ୍ଜକୁ ଆଶ୍ରୟ କରୁଥାନ୍ତି । ନାରାୟଣ ଆଜି ବ୍ରଜଧାମରେ ନରଲୀଳା କରୁଛନ୍ତି । ସେ ଆଜି ଜୀବର ସଂପୂର୍ଣ୍ଣ ନିୟନ୍ତ୍ରଣାଧୀନ । ଭକ୍ତ-ଭଗବାନ ସମସ୍ତେ ଏଥିରେ ଦିବ୍ୟାନନ୍ଦ ପ୍ରାପ୍ତ ।

ଗୋମୂତ୍ର, ଗୋ ରଜରେ ନନ୍ଦ ଅଗଣା କର୍ଦ୍ଦମାକ୍ତ । ଦୁଇ ଭାଇ ସେଥିରେ ବେଳେ ବେଳେ ଆଣ୍ଠେଇ ପଡୁଛନ୍ତି । ଗଡ଼ା ଗଡ଼ି ହେଉଛନ୍ତି । ରୋହିଣୀ ଯଶୋଦାଙ୍କ ଠାରୁ ସେଥିପାଇଁ ଗାଳି ମନ୍ଦ ମଧ ଶୁଣୁଛନ୍ତି । ଅନେକ ଗୋପୀ ଗୋପାଳ ଏ ଦୃଶ୍ୟ ଦର୍ଶନ କରି ଅଭିଭୂତ । ଖୁସିରେ ତାଳି ମାରି ସେମାନେ ଦଳ ଦଳ ହୋଇ ନାଚନ୍ତି । ସେମାନେ କୃଷ୍ଣନାମ ଜପ କରି ଆତୁଆଳ କରନ୍ତି କେତେବେଳେ ଶୃଙ୍ଗୀ, ଅଗ୍ନି, ଦଂଷ୍ଟ୍ରୀ, ଖଡ଼ଗ, ପକ୍ଷୀ, କଣ୍ଟକ, ଦୈତ୍ୟ ଦାନବଙ୍କ ବିପଦ ଏ ଦୁଇଜଣଙ୍କୁ ନ ପଡୁ ।

ପ୍ରଶ୍ନ-୧୬: ରାମ ଗୋବିନ୍ଦ ଏଥର ବଡ଼ ହେଲେଣି । ବୟସ ଗଡ଼ି ଚାଲିଛି । ଦୁଇ ଭାଇଙ୍କ ପିଲାଦିନ ଖେଳକାଳ ସରି ଆସିଲା । ବାତ୍ସଲ୍ୟ ରସ ସହିତ ସଖ୍ୟ ରସର ମିଶ୍ରଣ ଦରକାର ପଡ଼ିଲା । କ୍ରମେ ସେମାନେ ଦାଣ୍ଡରେ, ଘାଟରେ ଚଲାବୁଲା କଲେ । ଅନ୍ୟ ଗୋପାଳ ବାଳକମାନେ ସେଠାରେ ଆସି ପହଞ୍ଚନ୍ତି । ପ୍ରଥମେ ନନ୍ଦ ଅଗଣାରେ ପରେ ଦାଣ୍ଡରେ, ଗୋ-ଗୋଷ୍ଠରେ ସଖାମାନଙ୍କ ସହ ଦୁଇ ଭାଇଙ୍କର ଖେଳ ଚାଲିଲା । ଗୋପୀମାନେ ଏ ଖେଳ ଦର୍ଶନରେ ପରମ ଆନନ୍ଦ ପ୍ରାପ୍ତ ହୁଅନ୍ତି । ନିଜ ପିଲାଙ୍କୁ ଧରି କୃଷ୍ଣଙ୍କ ନାଁରେ ଯଶୋଦାଙ୍କ ଆଗରେ ମୋକଦ୍ଦମା, ନାଲିସ କରନ୍ତି । ଉଦ୍ଦେଶ୍ୟ କୃଷ୍ଣଙ୍କୁ ଦଣ୍ଡଦେବା ନୁହେଁ । ବରଂ ଆଉରି ସୁନ୍ଦର କୃଷ୍ଣ ଲୀଳା ଦର୍ଶନ କରିବା, କୃଷ୍ଣ କଥା ଅନ୍ୟ ଆଗରେ କହି ବୋଲି ଆନନ୍ଦ ପାଇବା ।

ତ୍ରେତାଯୁଗରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ ଧର୍ମ ଦଉଡ଼ିରେ ହାତଗୋଡ଼ ବନ୍ଧା ହୋଇଥିଲେ । ଏବେ ସେ କୃଷ୍ଣରୂପରେ ଲୀଳା ପୁରୁଷୋତ୍ତମ । ସେ ଯୁଗର ସ୍ଥିର ବ୍ରହ୍ମ ଆଜି ଚଞ୍ଚଳ ଭଗବାନ ରୂପ ହୋଇଛନ୍ତି । ବାଲ୍ୟ ଚପଳତା କ୍ରମେ ସୀମା ସରହଦ ଟପିଲା । ଗୋପୀମାନେ ନାଲିସ କରନ୍ତିଯେ କାଳିଆ କାହ୍ନୁ ଗାଈ ଦୁହାଁ ହେବା ପୂର୍ବରୁ ବାଛୁରୀ ଫିଟେଇ ଦେଉଛି । ଶେଜରେ ଶୋଇଥିବା ପିଲାଙ୍କୁ ଚୁମୁଟି ଉଠେଇ ଦେଉଛି । ସେ ଆମ ପିଲାଙ୍କୁ ଚୋରି କରିବା ଶିଖାଇଲାଣି । ଯା ତା ଘରେ ପଶି ଦୁଧ, ଦହି, ଲହୁଣୀ ଖାଉଛି । ସାଙ୍ଗ ପିଲାଙ୍କୁ ମଧ ବାଣ୍ଟୁଛି । ମାଙ୍କଡ଼ ମାନଙ୍କୁ ଦେଇ ପକଉଛି ।

ହାତ ନ ପାଇଲେ ପିଢ଼ା ଉପରେ ପିଢ଼ା ଥୋଇ ଦହି ହାଣ୍ଡି ତଳକୁ ଓହ୍ଲାଇ ଆଣୁଛି । ହାତ ନ ପାଇଲେ ଠେଙ୍ଗାରେ ପିଟି ଠେକି ଭାଙ୍ଗି ଦେଉଛି ।

ଦିନେ ନନ୍ଦରାଣୀ ଗୋପୀମାନଙ୍କୁ ଓଲଟି ମୁହଁ ସମ୍ଭାଳି କଥା କହିବାକୁ ତାଗିଦ କଲେ । ଉପଦେଶ ଛଳରେ କହିଲେ, ''ତୁମେ ଘରେ ତାଲା ଚାବି ପକାଇ କାହିଁକି ଜଗା ରଖା କରୁନାହଁ ।'' ଗୋପୀମାନେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ । ସେ କଥା ମଧ୍ୟ ସେମାନେ କରିଛନ୍ତି । ସେ ପରା ଖୋଲାଖୋଲି ଅନ୍ୟ ପିଲାମାନଙ୍କ ସହିତ ଅଫଳଂ କଫଳମ୍ ଚୋର ବିଦ୍ୟାମଣ୍ଡଳୀ ଗଠନ କରିଛି । ଖାଇବାକୁ ଦୁଧ, ଦହି କିଛି ନ ମିଳିଲେ ସବୁ ପିଲାମାନେ ଅଗଣାରେ କେତେବେଳେ ପରିସ୍ରା ବି କରିଦେଉଛନ୍ତି । ଅଙ୍ଗାର ଧରି କାନ୍ଥରେ ଲେଖି ଦେଉଛନ୍ତି ଯେ ଯେଉଁ ଘରେ କୃଷ୍ଣ ଓ କୃଷ୍ଣ ସଖାଙ୍କୁ ଖୋଇବାରେ କୃପଣତା କରାଯାଏ ସେ ଘର ଘରରେ ଲେଖା ନୁହେଁ । ସେ ପିଲାମାନଙ୍କର ଟଏଲଟକୁ ଯୋଗ୍ୟ । ପୁଣି କହିଲେ, ''ନନ୍ଦରାଣୀ, ତୁମ ପିଲା ଖଣ୍ଡକ ସିନା ତୁମ ପାଖେ ସୁଧାର । ହେଲେ ଆମେ ତାକୁ ଡ଼ରାଇବୁ କ'ଣ ? ସେ ଆମକୁ ଓଲଟି ଡ଼ରାଇ ଥରାଇ ବାଟ ଓଗାଳି ଯେ ହିନସ୍ତା କଲାଣି । ପିଲା ବୋଲି ବକଟେ । ଏଡ଼େ ବହପ ତାର । ଆମେ ଯମୁନାକୁ ଜଳ ଆଣି ଗଲାବେଳେ ପଛରୁ କାନି ଟାଣୁଛି । ଓଲଟି ଆମେ ତାକୁ ଚାହିଁଲେ ସେ ମୁରକି ହସି ଦେଉଛି । ଆଖି ବି ମାରୁଛି । ଆଖି ଦେଖେଇଲେ ସେ ଦୌଡ଼ି ପଳାଉଛି । ସତେ ଯେମିତି କଅଁଳା ବାଛୁରୀଟାଏ । ଆମେ ନାକେ ଦମ ହେଲୁଣି । ତୁମେ ଆକଟ ନଥିଲେ ଆମେ ଭାସିଯିବୁ ।''

ଦିନକର କଥା । ଠାକୁରଜୀ ନିଜ ଘରେ ଏକଲା ଲହୁଣୀ ଚୋରି କରି ଖାଉଥାନ୍ତି । ମାଆକୁ ଭାରି ଡ଼ର ତାଙ୍କର । ତାଙ୍କୁ ଲୁଚେଇ ଲହୁଣୀ ଖାଉ ଖାଉ ତାଙ୍କର ନଜର ପଡ଼ିଲା ନନ୍ଦ ଉଆସର ଏକ ମଣିମୟ ଖମ୍ବରେ । ଦେଖିଲେ ଠିକ୍ ତାଙ୍କ ଭଳି ଆଉ ଗୋଟିଏ ପିଲା ମଧ୍ୟ ଲହୁଣୀ ଖାଉଛି । ହଠାତ୍ ଡ଼ରିଗଲେ ସେ । ତଥାପି ସାହସ ବାନ୍ଧିଲେ । ତାକୁ ଡ଼ରାଇ ଚୁପ୍ କରିଦେବେ । ହାତ ଟେକି ଚାପୁଡ଼ା ମାରିବାକୁ ଧମକ ଦେଲେ । ମୁହଁ ମୋଡ଼ି ଦାନ୍ତ ଦେଖାଇ ଭୟ ଦେଖାଇଲେ । ସେ ପିଲା ବି ସେପରି ଚାପୁଡ଼ା ଦେଖାଇ ଦାନ୍ତ ଦେଖାଇ ଡ଼ରାଇଲା । ଏବେ ସେ କରନ୍ତି କ'ଣ ? ସାଲିସ୍ କଲେ ତା ସାଙ୍ଗରେ । କହିଲେ ଏ କଥା ମା'ଙ୍କୁ ନ କହିଲେ ତାଙ୍କୁ ମଧ୍ୟ, ଲହୁଣୀ ଦେବେ । ଲାଞ୍ଚ ଯାଚିଲେ । ପଛରୁ ଆସି ମା' ପହଞ୍ଚିଗଲେ । ଆନନ୍ଦରେ କୋଳକୁ ଉଠାଇନେଲେ । କହିଲେ, ''ଡ଼ରିବା ଦରକାର ନାହିଁ । ଯେତେ ପାରୁଛୁ ଖାଆ । ଏ ସବୁ ତୋର ଦରବ । ନିଜ ଜିନିଷ ଖାଇବାକୁ ଚୋରି ବୋଲି ଭାବିବା ଠିକ୍ ନୁହେଁ ।''

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

ଶ୍ୟାମସୁନ୍ଦର ବୁଝିଗଲେ ମା'ଏଥରକ ବାଟକୁ ଆସିଲାଣି । ଆଉ ଗୋପୀଙ୍କ ମକଦ୍ଦମା ଏଫ୍‌ଆଇଆର ଜମା ଗ୍ରହଣ କରିବ ନାହିଁ ।

ଏଠାରେ ପ୍ରଶ୍ନ ଉଠେ, ଗୋପୀମାନେ କୃଷ୍ଣଙ୍କ ନାମରେ ଲଗାଇ ଯଚାଇ ମିଛ କଥା ସବୁ କହନ୍ତି କାହିଁକି ? ମହାତ୍ମାମାନେ କହନ୍ତି, ଗୋପୀମାନଙ୍କର ଅସଲି ଉଦ୍ଦେଶ୍ୟ, ଭଗବାନଙ୍କ ନୂଆ ନୂଆ ଫନ୍ଦି ଫିକର ଭରା ଲୀଳା ଦର୍ଶନ କରିବା । ସତ୍ୟ ଯୁଗର ଉଗ୍ରତପା ଋଷି, ସତ୍ୟତପା ଋଷି, ହରିଧାମା ନାମକ ମହାଋଷି, ଜାବାଳି ସିଦ୍ଧଙ୍କ ଭଳି ମହାଯୋଗୀ ମଧ୍ୟ କଳ୍ପ କଳ୍ପାନ୍ତର ତପସ୍ୟା କରି ଗୋପୀ ହୋଇଛନ୍ତି । ସେମାନଙ୍କୁ ସାଧାରଣ ଜୀବ ଭାବିବା ଅନୁଚିତ । ଭଗବାନ ମଧ୍ୟ ମଧୁରଲୀଳାର ସୁଯୋଗ କାହିଁ ଛାଡ଼ନ୍ତେ !! ପୂର୍ବ କଳ୍ପରେ ସେ ଗୋପୀମାନଙ୍କ ପାଖରେ ଋଣୀ ରହିଯାଇଥିଲେ । ଏବେ ଭାବୁଛନ୍ତି ତାଙ୍କୁ ଅଯାଚିତ ପ୍ରେମ ଦାନ କରି ପୂର୍ବ ଋଣରୁ ମୁକ୍ତି ପାଇବାକୁ ।

ଆଉ ଦିନକର କଥା । ପ୍ରଭାବତୀ ବୋଲି ଗୋପୀଟିଏ ତା ଘରୁ ଗୋବିନ୍ଦ ଲହୁଣୀ ଚୋରି କଲାବେଳେ ଧରି ପକାଇଲା । କେତେବେଳୁ ସେ ଛକି ବସିଥାଏ । ସଖାମାନେ ବାହାରେ ଥାଆନ୍ତି । ଗୋବିନ୍ଦ ଏକାକୀ ଘରେ ପଶିଲେ । ହାତ ପୁରାଇ ଥରେ କି ଦିଥର ଖାଉ ଖାଉ ପ୍ରଭାବତୀ ତାଙ୍କର ଦୁଇ ହାତକୁ ଜାବୁଡ଼ି ଧରିଲେ । ଟାଣିଲେ ଯଶୋଦାଙ୍କ ପାଖକୁ । ଗାଁ ଦାଣ୍ଡରେ ଓଢ଼ଣାଟାଣି ସେ ଟାଣି ନେଉଛନ୍ତି କହ୍ନେୟା ଲାଲଙ୍କୁ । ପଛରେ ଦଳ ଦଳ ଗୋପାଳ । ବାଟରେ ଗୋବିନ୍ଦ କହିଲେ, 'ହାତ କାଟୁଛି ।' ପ୍ରଭାବତୀ ଗୋଟିଏ ହାତ ଛାଡ଼ି ଦେଲେ । କିଛି ସମୟ ପରେ ଦରାଣ୍ଡି ପୁଣି ହାତକୁ ବଦଳାଇ ଧରିଲେ । ସେ ଜାଣିପାରି ନାହାନ୍ତି ଏ ହାତ ବଦଳା ବଦଳି ବ୍ୟାପାରରେ ଗୋବିନ୍ଦ କୌଶଳ କରି ଖସି ଯାଇଛନ୍ତି । ଧରାଇ ଦେଇଛନ୍ତି ଭାଲୁ ହାତ । ଆଉ ଜଣେ ଗୋପାଳର ବାଳକ ହାତ । କାହ୍ନୁ ଆଗେ ଆଗେ ଦଉଡ଼ି ନିଜ ଘରେ ପହଞ୍ଚି ଗଲେଣି । ପ୍ରଭାବତୀ ଯଶୋଦା ଘରେ ପହଞ୍ଚି, ଚୋର ଆଣିଛି । ଦଣ୍ଡ ତୁମେ ନିଜହାତରେ ଦିଅ' ବୋଲି କହିଲେ । ଯଶୋଦା କହିଲେ କାହାକୁ ଆଣିଛୁ ? କି ଦଣ୍ଡ ଦେବି ? କାହିଁକି ଦେବି । କହିଲେ, ମୋ ପୁଅ ଅଗଣାରେ ଖେଳୁଛି ।' ଡ଼ାକ ଦେଲେ ଗୋବିନ୍ଦଙ୍କୁ । ହସି ହସି ହାଜର ଠାକୁରଜୀ । ପ୍ରଭାବତୀ ଆଶ୍ଚର୍ଯ୍ୟ । ଓଢ଼ଣୀ କାଢ଼ିଲେ ମୁଣ୍ଡରୁ । ପଛକୁ ଚାହିଁ ଦେଖିଲେ ହାତରେ ତାଙ୍କ ନିଜ ପୁଅକୁ ଧରିଛନ୍ତି । ସମସ୍ତେ ହସି ହସି ଗଡ଼ିଗଲେ ।

ଦିନକୁ ଦିନ ନାନା ମକଦ୍ଦମା ନାଲିସ୍‌ରେ ନନ୍ଦରାଣୀ ଧୈର୍ଯ୍ୟହରା ହେଲେଣି ।

ବେଳେ ବେଳେ କ୍ରୋଧ, ରୋଷ ତାଙ୍କ ମୁଣ୍ଡକୁ ଉଠେ । କଅଁଳା ପୁଅକୁ ଚାହିଁଦେଲେ ସେ ପୁଣି ଭୁଲିଯାନ୍ତି ସବୁ କଥା । କୋକଳ୍ ଚେକି ନେଇ ବୋକ ଦିଅନ୍ତି । ଏପରି କେଉଁ ବିଚିତ୍ର ଅଭିଯୋଗ ପାଇଁ ତାଙ୍କ ଭଳି ପୁତ୍ରବତ୍ସଳା ଜନନୀ ଦିନେ ଧୈର୍ଯ୍ୟ ହରା ହେଲେ ?

**ଏକଦା କ୍ରୀଡ଼ମାନାଃ ତେ ରାମ-ଆଦ୍ୟା ଗୋପ ଦାରକାଃ ।**
**କୃଷ୍ଣୋ ମୃଦ୍ ଭକ୍ଷିତବାନ୍ ଇତି ମାତ୍ରେ ନ୍ୟବେଦୟନ୍ ।।୩୨।।**

ଉ. ଜନନୀ ଯଶୋଦା ଜଣେ ଅସାମାନ୍ୟା ହରି ଭକ୍ତ । ସେହିଭଳି ପୁତ୍ର ବିରୁଦ୍ଧରେ ଅଭିଯୋଗ ମଧ୍ୟ ଅସମାନ୍ୟ । କଥାଟି ହେଲା ବଳରାମ ଓ ଅନ୍ୟ ଗୋପାଳବାଳକ ମିଶି ଖେଳରେ ମାତିଥାନ୍ତି । କେହି ଜଣେ ଦେଖି ପାଟିକଲା ଯେ କାଳିଆ (କୃଷ୍ଣ)ମାଟି ଖାଉଛି । ବଳରାମ ହେଲେ ନେତା । ତ୍ରେତା ଯୁଗରେ ସେ ସାନଭାଇ ଲକ୍ଷ୍ମଣ ଭୂମିକାରେ ଅଭିନୟ କରୁଥିଲେ । କ'ଣ ଟିକିଏ ଭୁଲ ହୋଇଗଲେ ଶ୍ରୀରାମ ରୂପରେ ଏହି କୃଷ୍ଣ ତାଙ୍କୁ ଆଖି ଦେଖାନ୍ତି । ସେଇ ରାମ ତାଙ୍କୁ ସୂର୍ପଣଖାକୁ ବାହାହେବାକୁ ଶବରୀ ଅଇଁଠା ଖାଇବାକୁ କହିଛନ୍ତି । ଶାସନ କରିଛନ୍ତି । ଆଜି ତାଙ୍କ ପାଳି ପଡ଼ିଛି । ଦୌଡ଼ିଲେ ଯଶୋଦାଙ୍କ ପାଖକୁ । ଆଜି ମା'ଙ୍କୁ କହିବେ କହ୍ନେୟାର ମାଟିଖିଆ ଗୁମର କଥା । ଗୋବିନ୍ଦଙ୍କୁ ମାଡ଼ ଖୁଆଇବେ । ନିଜ ଭାଇ କୃଷ୍ଣଙ୍କ କାନ୍ଦ ନିଜେ ଦେଖିବେ । ଅନ୍ୟଙ୍କୁ ମଧ୍ୟ ଦେଖାଇବେ । ମନ ବୁଝିଯିବ ତାଙ୍କର ।

ବଳରାମ ପହଞ୍ଚିଲେ ଯଶୋଦା ମା'ଙ୍କ ପାଖରେ । କହିଲେ ଯେ ମା କାହ୍ନୁ ମାଟି ଖାଉଛି । ମାଆ ତ ତାଙ୍କର ହିତୈଷିଣୀ । ମାଟି ଖାଇଲେ ପିଲାର ଦେହ ବିଗିଡ଼ି ଯିବ । ଭୟ ପାଇଲେ ସେ । କୋଳେଇ ଧରିଲେ ଠାକୁରଜୀଙ୍କୁ । ପଚାରିଲେ ବଡ଼ ଭାଇ ବଳରାମଜୀଙ୍କ କଥାର ସତ୍ୟତା ।

ପ୍ରଶ୍ନ-୧୭: ଭଗବାନ ସତ୍ୟବ୍ରତ ଓ ସତ୍ୟ ସଂକଳ୍ପ । ସେ କ'ଣ ମାଟିଖିଆ ଅପରାଧ ସ୍ୱୀକାର କରିଗଲେ ?

**ଶ୍ରୀକୃଷ୍ଣ ଉବାଚ**

**ନ-ଅହଂ ଭକ୍ଷିତବାନ୍ ଅମ୍ବ ସର୍ବେ ମିଥ୍ୟା-ଅଭିଶଂସିନଃ ।**
**ଯଦି ସତ୍ୟ ଗିରଃ ତର୍ହି ସମକ୍ଷଂ ପଶ୍ୟ ମେ ମୁଖମ୍ ।।୩୫।।**

ଉ. ବୁଲେଇ ବଙ୍କେଇ ନୁହେଁ । ସିଧା ସଳଖ ମନା କରିଦେଲେ । ମାଟି ଖାଇବା କଥା ବିଲକୁଲ ମିଛ ବୋଲି କହିଲେ । ଖାଲି ଗୋପାଳ ବାଳକ ନୁହନ୍ତି

ବଡ଼ଭାଇ ବଳରାମଙ୍କୁ ମଧ୍ଯ ମିଥ୍ୟା ଅଭିଯୋଗକାରୀ ବୋଲି କହିଦେଲେ । ପୁଣି ବାହାସ୍ଫୋଟ ମାରି କହିଲେ-ଯଦି ମା'ଚାହାନ୍ତି କଥାର ସତ୍ୟତାର ପ୍ରମାଣ ଦେବାକୁ ମୁଖ ଦେଖାଇଦେବାକୁ ପ୍ରସ୍ତୁତ ବୋଲି ଦମ୍ଭର ସହିତ କହିଲେ ।

ମା'ବଡ଼ ଅଡୁଆ ପରିସ୍ଥିତିରେ ପଡ଼ିଗଲେ । ତଥାପି ମା କହିଲେ,-ସମସ୍ତେ ଯଦି ମିଥ୍ୟାବାଦୀ ସେ କ'ଣ ଏକା ସତ୍ୟବାଦୀ ହରିଶ୍ଚନ୍ଦ୍ର !!' କଥାଟିର ରହସ୍ୟ ହେଲା ସତ୍ୟର ସଂଜ୍ଞା ହେଲା, ଭଗବାନ ଯାହା କହନ୍ତି ତାହା ହିଁ ସତ୍ୟ । ବେଦ ସତ୍ୟ । କାରଣ ତାହା ଭଗବାନଙ୍କ ନିଃଶ୍ୱାସରୁ ନିର୍ଗତ । ଏଠାରେ ଭଗବାନଙ୍କ ମୁଖ ନିସୃତ ବାଣୀ ମିଥ୍ୟା ହେବ କିପରି ? ମହାତ୍ମାମାନେ ଏ ରହସ୍ୟ ବିଷୟରେ ମତପ୍ରକାଶ କରି କହନ୍ତି ଯେ ଭଗବାନଙ୍କ ମୃଦ୍ ଭକ୍ଷଣ ଲୀଳା ଯେତିକି ସତ୍ୟ ତାଙ୍କ କହିବା କଥା ମଧ୍ଯ ସେତିକି ସତ୍ୟ । ଭଗବାନ ଲୀଳାମୟ । ଭକ୍ତଙ୍କୁ ଆନନ୍ଦ ଦେବାକୁ ତାଙ୍କର ଏ ବିରଳ ଅବତାର । ତାଙ୍କର ମୃଦ ଭକ୍ଷଣର କାରଣ ହେଲା-

୧. ଭଗବାନ ଭାବିଲେ ଯେ ସେ ସ୍ୱୟଂନିର୍ଗୁଣ । ଆଗକୁ ରାକ୍ଷସ ମାରଣ ଆଦି କେତେ ଲୀଳା କରିବାର ଅଛି । ଅତଏବ ସେ ବ୍ରଜରଜ ଭକ୍ଷଣ କରି କିଛି ରଜ (ଦଣ୍ଡଦେବା ଗୁଣ) ସଂଗ୍ରହ କରିନେଲେ ।

୨. ସଂସ୍କୃତ ସାହିତ୍ୟରେ ପୃଥିବୀର ଏକ ନାମ କ୍ଷମା । ଠାକୁରଜୀଙ୍କ ସହିତ ଆଗକୁ ଗୋପାଳବାଳକମାନଙ୍କ ସହିତ ଖେଳ କୌତୁକ କରିବାର ଅଛି । ସେମାନେ ନିଶ୍ଚୟ କିଛି ନା କିଛି ଅପରାଧ କରିବସିବେ । ସୁତରାଂ କ୍ଷମା ଅଂଶ କିଛି ଧାରଣ କରିନେବା ବୁଦ୍ଧିମାନର କାମ ହେବ ।

୩. ପୃଥିବୀର ଅନ୍ୟ ଏକ ନାମ ରସା । ଅନେକ ରସରେ ରସାଳ ରସମୟ ସେ । ଭଗବାନ ସ୍ୱୟଂ ରସ ରାଜ । ରସିକ ଶେଖର ରସିକ ଶିରୋମଣି । ଅତଏବ ରସା ରସର ଆକର୍ଷଣକୁ ଏଡ଼ାଇ ଯାଆନ୍ତେ କିପରି !!! ତେଣୁ ମାଟି ଖାଇଲେ ।

୪. ଛୋଟ ବାଳକ ବାଳିକା ସ୍ୱଭାବତଃ ମାଟି ଖାଇବାକୁ ଭଲ ପାଆନ୍ତି । ସ୍ୱରୂପରେ ନାରାୟଣ ହେଲେ ମଧ୍ଯ ସ୍ୱଭାବରେ ନର ଲୀଳା କରୁଛନ୍ତି । ସୁତରାଂ ମାଟି ଖାଇବାର କାରଣ ଖୋଜିବା ଜ୍ଞାନୀମାନଙ୍କର ମୁଣ୍ଡବ୍ୟଥା ଅକାରଣ ।

୫. ବ୍ରଜ ରଜରେ ଅନେକ ଜୀବ ତାଙ୍କ ପ୍ରେମ ପ୍ରାପ୍ତି ପାଇଁ କଳ୍ପ କଳ୍ପ ଧରି ଅପେକ୍ଷା କରିଥାନ୍ତି । ସେଥିମଧ୍ୟରୁ କେତେକଙ୍କୁ ଭଗବାନ ଆତ୍ମସାତ୍ କରି କୃତାର୍ଥ କରିଛନ୍ତି ।

୬. ପୂତନା ଉଦ୍ଧାର ଲୀଳାରେ ଭଗବାନ ଆଗରୁ ବିଷ ପାନ କରିଛନ୍ତି । ତାର ଔଷଧ ରୂପେ ଏବେ ବ୍ରଜରଜ ଗ୍ରହଣ କରିଛନ୍ତି ।

୭. ସଂସ୍କୃତରେ ଦାନ୍ତକୁ ଦ୍ୱିଜ ବୋଲି କହନ୍ତି । କାରଣ ସେ ଦୁଇଥର ଜନ୍ମ ହୁଏ ।

ଦ୍ୱିଜ ଶବ୍ଦର ଅନ୍ୟ ଏକ ଅର୍ଥ ବ୍ରାହ୍ମଣ । ସେ ସୁଯୋଗ ଖୋଜୁଥିଲେ ଉପଯୁକ୍ତ କିଛି ସତ୍ ଦ୍ରବ୍ୟ ସତ୍‌ପାତ୍ରରେ ଅର୍ପଣ କରିବାକୁ । ସୁତରାଂ କିଛି ବ୍ରଜ ରଜକୁ ସେ ଦାନ୍ତ ଦ୍ୱାରା ସ୍ପର୍ଶ କରି ସେ ଇଚ୍ଛା ପୂରଣ କରିଛନ୍ତି ।

୮. ଭଗବାନଙ୍କ ଉଦରରେ କୋଟି କୋଟି ଜୀବ ଚାହୁଁଥିଲେ ବ୍ରଜ ଦାଣ୍ଡରେ ପଡ଼ିଥିବା ଗୋପୀମାନଙ୍କ ପଦ ରଜ ପ୍ରାପ୍ତି । ସେମାନଙ୍କୁ ଭଗବାନ ନିରାଶ କରନ୍ତେ କିପରି ? ତେଣୁ ମାଟି ଖାଇଲେ ।

୯. ପ୍ରଥମେ ମାଖନ ଖାଇ ଚୋରି ମାଲ ଖାଇବା ଅପବାଦ ପାଇଥିଲେ । ଏବେ ପରୀକ୍ଷା କରି ଦେଖାଯାଉ ତାଙ୍କ କହିବା ବାଣୀ ସତ୍ୟ କିପରି ? ଜ୍ଞାନୀମାନଙ୍କ ପାଇଁ ଏ କଥା ତର୍କ ପରିସରକୁ ଆସିପାରେ । କିନ୍ତୁ ଭକ୍ତ ପାଇଁ ଏ ଭଗବାନଙ୍କ ଲୀଳା, ତର୍କର ବସ୍ତୁ ନୁହେଁ । ତର୍କରୁ ଊର୍ଦ୍ଧ୍ୱରେ ଥିବା ଅତର୍କ୍ୟ ବସ୍ତୁ । ଭକ୍ତମାନେ ତୁଳସୀକୁ ବୃକ୍ଷ, ଶାଳଗ୍ରାମକୁ ପଥର, ଜଗନ୍ନାଥଙ୍କୁ ଦାରୁ, ଗଙ୍ଗାଜଳକୁ ପାଣି, ଗାଈକୁ ପଶୁ, ଭକ୍ତ, ଗୁରୁଙ୍କୁ ମନୁଷ୍ୟ, ଭଗବାନଙ୍କ ଲୀଳାସ୍ଥଳୀକୁ କିଛି ସ୍ଥାନର ନାମ ବୋଲି ବୋଲି କହିବାକୁ ନାରାଜ । ଅପ୍ରସ୍ତୁତ । ସେପରି ସ୍ଥଳେ ସେମାନେ ବ୍ରଜରଜକୁ ମାଟି ବୋଲି ସ୍ୱୀକାର କରିବେ କେଉଁ ସାହସରେ ! ! ! ଅତଏବ ଭକ୍ତ ପାଇଁ ଭଗବାନଙ୍କ ମାଟି ଖାଇବା ଅଭିଯୋଗ ମିଥ୍ୟା ।

ପ୍ରଶ୍ନ–୧୮ : କୃଷ୍ଣଙ୍କର କଥାକୁ ମା'ଯଶୋଦା କ୍ୱଅଣ ଏତେ ସହଜରେ ବିଶ୍ୱାସ କରିଗଲେ ?

**ଯଦି ଏବଂ ତର୍ହି ବ୍ୟାଦେହି–ଇତି ଉକ୍ତଃ ସ ଭଗବାନ୍ ହରିଃ ।**
**ବ୍ୟାଦତ୍ତ–ଅବ୍ୟାହତ–ଐଶ୍ୱର୍ଯ୍ୟଃ କ୍ରୀଡ଼ା ମନୁଜ ବାଳକଃ ॥୩୬॥**

ଉ. ଆଦୌ ମାନି ନେଲେ ନାହିଁ ସେ । ସେ ତ ପୁଅକୁ ଭଗବାନ ମାନୁ ନାହାନ୍ତି । ବରଂ ଭଗବାନଙ୍କୁ ପୁଅ ମାନୁଛନ୍ତି । ସୁତରାଂ ଗେଲରେ କହିଲେ, "ପୁଅ ଯଦି ସତ କହୁଛୁ ତେବେ ବଡ଼ ଆଁ କର । ପ୍ରମାଣ ଦେ । ପାଟିରେ ମାଟି ନଥିଲେ ମୁଁ ବିଶ୍ୱାସ କରିବି ତୁ ଗୋଟାକ ଯାକ ସତିଆ ।"

ଭଗବାନ ଭକ୍ତକୁ ବିଶ୍ୱାସ କରାଇବାକୁ ଆଦୌ ହେଳା କରନ୍ତି ନାହିଁ । ସେ ପରା ନାରାୟଣ ହୋଇ ମନୁଷ୍ୟ ଲୀଳା କରୁଛନ୍ତି । ବ୍ରଜଭୂମିରେ ଲୀଳା ଶକ୍ତି ଐଶ୍ୱର୍ଯ୍ୟ ଶକ୍ତିକୁ ଘୋଡ଼େଇ, ଲୁଚେଇ ଆଡୁଆଳ କରି ରଖିଥାନ୍ତି । ଏବେ ଲୀଳା ଶକ୍ତି ସ୍ୱୟଂ ଆଡ଼େଇ ହୋଇଗଲେ । ବାଟ ଛାଡ଼ିଦେଲେ ଐଶ୍ୱର୍ଯ୍ୟ ଶକ୍ତିଙ୍କୁ । ସେ ତାଙ୍କ କାମ ଦେଖାଇବାର ସୁଯୋଗ ପାଇଲେ ।

ପ୍ରଶ୍ନ-୧୯ : ପୁଅର କଥା ବିଲ୍‌କୁଲ ସତ୍ୟ ବୋଲି ଜଣାଇବାକୁ ଐଶ୍ୱର୍ଯ୍ୟ ଶକ୍ତି ମାଆ ଯଶୋଦାଙ୍କ ସମ୍ମୁଖରେ କି ଅକାଟ୍ୟ ପ୍ରମାଣ ଉପସ୍ଥାପିତ କଲେ ?

**ସା ତତ୍ର ତଦୃଶେ ବିଶ୍ୱଂ ଜଗତ୍ ସ୍ଥାସ୍ନୁ ଚ ଖଂ ଦିଶଃ ।**
**ସ-ଅଦ୍ରି ଦ୍ୱୀପ-ଅବ୍‌ଧି ଭୂଗୋଳଂ ସ ବାୟୁ-ଅଗ୍ନି-ଇନ୍ଦୁ ତାରକମ୍ ।।୩୭।।**

ଉ. ସତକୁ ସତ ମାଆ ଦେଖିଲେ, ତାଙ୍କ ପିଲା ପାଟିରେ ମାଟି ଦିଶୁନି । ପିଲାର ସାନ ମୁଖ ମଧ୍ୟରେ ଦିଶୁଛି ସାରା ସ୍ଥାବର-ଜଙ୍ଗମାତ୍ମକ ବିଶାଳ ସୃଷ୍ଟି । ଦଶ ଦିଗ, ଆକାଶ, ଦ୍ୱୀପ,ସାଗର, ପର୍ବତ, ଚନ୍ଦ୍ର, ତାରା, ଅଗ୍ନି ଆଦି ଦେବୀ ଦେବତା ଆଦି କେତେ କ'ଣ ଦେଖା ଅଦେଖା, ଶୁଣା ଅଶୁଣା ଲୌକିକ ଅଲୌକିକ ଦ୍ରବ୍ୟ ଓ ଘଟଣା ସମୂହ ।

ହଠାତ୍ ମା'ଙ୍କର ସେ ଆନନ୍ଦ ଉଭେଇଗଲା । ଭୟ ପାଇଲେ ଯଶୋଦା । କି ଅଦ୍ଭୁତ ! ! ! ସେଇ ମୁଖ ଭିତରେ ସେ ଦର୍ଶନ କଲେ ଯେ ବୃନ୍ଦାବନରେ ସେ ସ୍ୱୟଂ ନିଜ ପୁତ୍ର କୃଷ୍ଣ ପାଖରେ ଅଛନ୍ତି । ଭାବିଲେ ଏ କି ମାୟା । ଏ ସତ୍ୟ ନା ସ୍ୱପ୍ନ ! ହୋଇପାରେ ତାହା ତାଙ୍କ ପୁଅର ଅଲୌକିକ ଯୋଗଶକ୍ତି । ନଚେତ ତାଙ୍କର ବୁଦ୍ଧିର ଭ୍ରମ । ପାଗଳାମୀ । କ'ଣ କରିବେ ଏବେ ? ଇତସ୍ତତଃ ହେଲେ । ଅଦୃଷ୍ଟ ପୂର୍ବ ଅ[illegible] ପୂର୍ବ ଅଚିନ୍ତ୍ୟ ଦୃଶ୍ୟ ଦେଖି ଯଶୋଦା ତାଙ୍କ ଇଷ୍ଟ ଶାଳଗ୍ରାମ ନାରାୟଣଙ୍କୁ ସ୍ମରଣ କଲେ । ଶରଣ ପଶିଲେ । ତାଙ୍କର ଏବେ ଚୈତନ୍ୟ ଉଦୟ ହେଲା । ସେ ମନେ ମନେ କହିଲେ, ''ମୁଁ, ମୋର, ମୋ ପାଇଁ, ମୋ ପୁତ୍ର, ମୋ ପତି ଏ ସବୁ କଅଣ ତେବେ ମିଥ୍ୟା । ପୁତ୍ର-ପିତା-ପତି, ଗୋ, ଧନ, ସଂପତ୍ତି ସକଳ ହୁଏତ ଭଗବାନଙ୍କର କିମ୍ବା ସ୍ୱୟଂ ଭଗବାନ । ମୁଁ ତାଙ୍କରି ମାୟା ଖେଳରେ ବନ୍ଦିନୀ ! ! !'' କୃଷ୍ଣ କୃପା ହେଲେ ଜୀବର ଏହିଭଳି ତତ୍ତ୍ୱଜ୍ଞାନ ହୁଏ ।

ହଠାତ୍ ଚଳଚ୍ଚିତ୍ର ପରଦା ବଦଳି ଗଲା । ବୈଷ୍ଣବୀ ମାୟାରୂପୀ ଯୋଗମାୟା ଅପସରି ଗଲେ । ଲୀଳା ଶକ୍ତି ପୁନଃ ପ୍ରକଟ ହେଲେ । ନନ୍ଦରାଣୀ ପୁରାପୁରି ଭୁଲିଗଲେ ନିଜ ପୁତ୍ରର ଐଶ୍ୱର୍ଯ୍ୟ । ପୂର୍ବବତ୍ ପୁତ୍ର ସ୍ନେହରେ ବୁଡି ଗଲେ । ଚାରିବେଦରେ, ୧୧୨୦ଉପନିଷଦରେ, ଛଅ ଦର୍ଶନରେ, ଅଠର ପୁରାଣ, ରାମାୟଣ, ମହାଭାରତାଦିରେ ଯେଉଁ କୃଷ୍ଣ ରୂପକୁ ସର୍ବୋଚ୍ଚ ସ୍ଥାନ ଦିଆଯାଇଛି ଯଶୋଦା ତାଙ୍କୁ ପୁଅ ମାନିନେଲେ । ବୈଦିକ ଜ୍ଞାନ ହାର ମାନିଲେ ରାଗାନୁଗା ଭକ୍ତି ପାଖରେ ।

ପ୍ରଶ୍ନ-୨୦ : ପ୍ରକୃତିସ୍ଥ ହୁଅନ୍ତେ ଅସମ୍ଭାଳ ଯଶୋଦା ଟିକିଏ ସମ୍ଭାଳ ପଡ଼ିଲେ । ଏଣେ ଶ୍ରୋତା ପରୀକ୍ଷିତ ଦେଖିଲେ ତାଙ୍କ ମୁଣ୍ଡ କାମ କରୁନି । ତାଙ୍କ ବୁଦ୍ଧି ହଜିଗଲାଣି । ବ୍ରହ୍ମା-ବିଷ୍ଣୁ-ଶଙ୍କର ଯାହାଙ୍କ ଐଶ୍ୱର୍ଯ୍ୟରେ ମୋହିତ । କଳ୍ପ କଳ୍ପାନ୍ତର ଧରି ବେଦମନ୍ତ୍ର ରୂପୀ ଧର୍ମ ରଶିରେ ବନ୍ଧା ହୋଇ ସେ ତିନି ଦେବତା ତେବେ ଅହରହ ନାଚୁଛନ୍ତି ମହାବିଷ୍ଣୁମାୟାରେ!!! ପରୀକ୍ଷିତଙ୍କ ପ୍ରଶ୍ନ ହେଲା, ଯଶୋଦା ଜଣେ ଜୀବ । ସେ କେଉଁ ଜନ୍ମରେ ଏପରି କି ସାଧନା କରିଥିଲେ ଯେ ନିଷ୍କାମ ଭଗବାନ ତାଙ୍କ ପାଖରେ ସ୍ତନ୍ୟକାମ ହୋଇଗଲେ ?

ରାଜା ଉବାଚ

**ନନ୍ଦଃ କିଂ ଅକରୋତ୍ ବ୍ରହ୍ମନ୍ ଶ୍ରେୟ ଏବଂ ମହା-ଉଦୟମ୍ ।**
**ଯଶୋଦା ଚ ମହାଭାଗା ପପୌ ଯସ୍ୟାଃ ସ୍ତନଂ ହରିଃ ॥୪୬॥**

ଉ. ଜୀବ ମାତ୍ରେ ଲୋଭୀ । ସେ ପ୍ରେୟ(ଲାଭ) ଚାହେଁ । ନନ୍ଦଙ୍କର କେଉଁ ପୂର୍ବ ଜନ୍ମର ଶୁଭ କର୍ମର ଫଳ ନିଶ୍ଚୟ ଏବେ ସୌଭାଗ୍ୟ ରୂପେ ଉଦୟ ହେଲା । ସେ ଶ୍ରେୟକାମୀ ହେଲେ । ଆହୁରି ଅଧିକ ସୌଭାଗ୍ୟବତୀ ଯଶୋଦା । ସ୍ୱହସ୍ତରେ ସ୍ୱକୋଳରେ ଧରି ଅଜନ୍ମା ଭଗବାନଙ୍କୁ ଜନ୍ମ ଦେଇ ସ୍ତନ୍ୟପାନ କରାଇ ପାରିଲେ ।

ନନ୍ଦ ଯଶୋଦା ଉଭୟେ ପୂର୍ବ ଜନ୍ମରେ ଯଥାକ୍ରମ ବସୁ ଦ୍ରୋଣ ଓ ଦ୍ରୋଣ ପତ୍ନୀ ଧରା ଥିଲେ । କୃଷ୍ଣଲୀଳା ସମୟ ପାଖେଇ ଆସିଥାଏ । ସୃଷ୍ଟିକର୍ତ୍ତା ବ୍ରହ୍ମ ଦେବ ଭଗବାନଙ୍କ ପିତା-ମାତା ଅଭିନେତା ଅଭିନେତ୍ରୀ ପାଇଁ ପାତ୍ର ଖୋଜୁଥିଲେ । ନାରଦଜୀଙ୍କ ଠାରୁ ଖବର ପାଇ ବ୍ରହ୍ମାଜୀ ପହଞ୍ଚିଲେ ଭିକ୍ଷାର୍ଥୀ ବ୍ରାହ୍ମଣ ଋଷି ଦ୍ରୋଣଙ୍କ ପର୍ଣ୍ଣ କୁଟୀରରେ । ଦ୍ରୋଣ ଭିକ୍ଷା ଜୀବୀ । ଭିକ୍ଷା ସଂଗ୍ରହ ପାଇଁ ବାହାରକୁ ଯାଇଥିଲେ । ଲୀଳାମୟ ଭଗବାନଙ୍କ ମାୟାଶକ୍ତି ପ୍ରଭାବରେ ବ୍ରହ୍ମାଜୀ ଭିକ୍ଷୁକ ବେଶରେ ଜଣେ ଯୁବକ ଓ ତାଙ୍କ ବୃଦ୍ଧ ପିତା ମାତାଙ୍କ ସହିତ ପ୍ରକଟ ହେଲେ । ଋଷି ପତ୍ନୀ ଧରାଦେବୀ କୁଟୀର ବାହାରକୁ ଆସି ସ୍ୱାଗତ କଲେ ତିନି ଅତିଥିଙ୍କୁ । ସେମାନଙ୍କ ଚରଣ ଧୌତ କରି ବସିବାକୁ ଆସନ ଅର୍ଘ୍ୟ ଆଦି ପ୍ରଦାନ କଲେ । ପତିଦେବଙ୍କ ଆସିବା ସମୟ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ବିନୀତ ପ୍ରାର୍ଥନା କଲେ ।

ଯୁବକ ଜଣକ ଆକୁଳ କଣ୍ଠରେ ପିତାମାତାଙ୍କ ପ୍ରବଳ କ୍ଷୁଧା ବିଷୟ ଜଣାଇଲେ । ଅନ୍ୟତ୍ର ଯିବାକୁ ଉଦ୍ୟତ ହେଲେ । ବଡ଼ ଅଡୁଆରେ ପଡ଼ିଲେ ଧରାଦେବୀ । ଶାସ୍ତ୍ରରେ ଅତିଥି ସ୍ୱୟଂ ଭଗବାନ । ଫେରିଗଲେ ମହା ଅନର୍ଥ ହୋଇଯିବ । ସେମାନଙ୍କୁ

ଆଶ୍ୱାସନା ବାଣୀ ଶୁଣାଇ ଧାଇଁଲେ ପାଖ ଗାଁକୁ କିଛି ଅନ୍ନ ଶାକ ସବଜି ଆଦି ପାକ ଦ୍ରବ୍ୟ ଯୋଗାଡ଼ କରିବାକୁ । ଜଣେ ଦୋକାନୀକୁ ନିଜ ଅଭିପ୍ରାୟ ବ୍ୟକ୍ତ କଲେ । ଦୋକାନୀ ଋଷି ପତ୍ନୀଙ୍କ ଅପୂର୍ବ ରୂପ ଯୌବନରେ ମୋହିତ ହୋଇଗଲା । ଅନ୍ୟାନ୍ୟ ଗ୍ରାହକଙ୍କୁ ତୁରନ୍ତ ବିଦାୟ କରିଦେଲା । ଯଥେଷ୍ଟ ପାକଦ୍ରବ୍ୟ ବନ୍ଧାବନ୍ଧି କରି ଥୋଇ ଦେଲା ଏବଂ ସେହି ମୂର୍ଖ ବିଷୟୀ ଦୋକାନୀ ତାଙ୍କ ବକ୍ଷ ଆଡ଼କୁ ଅଙ୍ଗୁଳି ଦେଖାଇ ପଇସା ବଦଳରେ ତାଙ୍କ ସ୍ତନ ପ୍ରତି ଭୋଗ ଲାଳସା ବ୍ୟକ୍ତ କଲା । ଧରାଦେବୀ ଅତ୍ୟନ୍ତ ନିଷ୍କପଟୀ, ସରଳା, ଅବଳା । ଅତିଥି ଚର୍ଚ୍ଚା ତାଙ୍କର ମହତ୍ ଉଦ୍ଦେଶ୍ୟ । ସେ ଦେଖିଲେ ପାଖରେ ପଡ଼ିଛି ତୀକ୍ଷ୍ଣ ଦାଆ ଖଣ୍ଡେ । ଡ଼େରି କଲେ ନି ସେ । ହାତରେ ଦାଆ ଉଠାଇ କାଟି ଫିଙ୍ଗିଦେଲେ ଦୁଇ ମୃଣ୍ମୟ ମାୟା ନିର୍ମିତ ତାଙ୍କର ଦୁଇ ସ୍ତନକୁ । ସଉଦା ହାତରେ ଧରି ଧାଇଁଲେ ରନ୍ଧନଶାଳାକୁ । ବକ୍ଷରୁ ବହି ଯାଉଥାଏ ଧାର ଧାର ଉଷ୍ମ ରକ୍ତ । ଅତିଥିମାନେ ଦେଖି ଆଚମ୍ଭିତ । ତୁରନ୍ତ ଭୋଜନ ପରଶିଦେଲେ ଋଷିପତ୍ନୀ । ଋଷି ମଧ ଆଶ୍ରମକୁ ଫେରି ଆସିଲେ ।

ବ୍ରହ୍ମାଜୀ ଏ ଘଟଣା ଦେଖି ଅତି ପ୍ରସନ୍ନ ହେଲେ । ନିଜର କମଣ୍ଡଳୁ ଜଳ ସିଞ୍ଚନ କରି ଧରାଙ୍କ ପୂର୍ବ ରୂପଶ୍ରୀ ଫେରାଇ ଦେଲେ । ବ୍ରହ୍ମାଙ୍କ ସଙ୍କେତରେ ଯୁବକ ଜଣକ ଚତୁର୍ଭୁଜୀ ଶ୍ରୀବିଷ୍ଣୁ । ତାଙ୍କ ପିତା ଶ୍ରୀ ଶଙ୍କର ଓ ମାତା ଶ୍ରୀଯୋଗମାୟା ରୂପେ ଦର୍ଶନ ଦେଲେ । ବ୍ରହ୍ମାଜୀ ଆଶୀର୍ବାଦ କଲେ ପରବର୍ତ୍ତୀ ଜନ୍ମରେ ସେ ଦୁହେଁ ନନ୍ଦ ଯଶୋଦା ହୋଇ କୃଷ୍ଣଲୀଳାରେ ଭାଗନେବେ । ଲୀଳା ସହକାରିଣୀ ଯୋଗମାୟାଙ୍କୁ କନ୍ୟା ଓ ଲୀଳାବିହାରୀ କୃଷ୍ଣଙ୍କୁ ପୁତ୍ର ରୂପେ ପାଇ ତାଙ୍କୁ ସ୍ତନ୍ୟପାନ କରାଇବା ସୌଭାଗ୍ୟ ପ୍ରାପ୍ତ ହେବେ ।

ପ୍ରଶ୍ନ-୨୧ : ଦ୍ରୋଣ ଓ ଧରାଦେବୀ ପତିପତ୍ନୀ ଦୁହେଁ କୃଷ୍ଣ ଲୀଳାରେ ଅଭିନୟ କରିବେ ଜାଣି ଅବଶିଷ୍ଟ ଜୀବନକୁ କିପରି ଅତିବାହିତ କଲେ ?

ଶ୍ରୀ ଶୁକ ଉବାଚ

**କୃଷ୍ଣୋ ବ୍ରହ୍ମଣ ଆଦେଶଂ     ସତ୍ୟଂ କର୍ତ୍ତୁଂ ବ୍ରଜେ ବିଭୁଃ ।**
**ସହରାମୋ ବସନ୍ ଚକ୍ରେ     ତେଷାଂ ପ୍ରୀତିଂ ସ୍ୱଲୀଳୟା ।।୫୨।।**

ଉ. ଲୀଳା କ୍ଷେତ୍ରରେ କୃଷ୍ଣ ସେବ୍ୟ । ବ୍ରହ୍ମାଜୀ ଜୀବ ରୂପେ ପରମ କୃଷ୍ଣ ଭକ୍ତ । ଭଗବାନ ଭକ୍ତବାଞ୍ଛା କଳ୍ପତରୁ । ଭକ୍ତର ସେହି ବଚନ ବଦ୍ଧତାକୁ (ଆଦେଶଂ ସତ୍ୟଂ କର୍ତ୍ତୁଂ)କୃଷ୍ଣ ଲୀଳାରେ ରୂପ ଦେବାକୁ ସେ ବାଧ ହେଲେ । ଖେଳ ବଢ଼ିଆ

ଜମିଲା । ସେ (ବିଭୁଃ) ସାଙ୍ଗରେ ଶେଷ ଦେବଙ୍କୁ ବଡ଼ଭାଇ ବଳରାମ ରୂପରେ ଧରି ତାଙ୍କର ନିତ୍ୟ ଲୀଳାଧାମ ବ୍ରଜରେ କୃଷ୍ଣ ଲୀଳାରେ ଆନନ୍ଦ ସାଗରରେ ନିଜେ ବୁଡ଼ିଲେ । ଅନ୍ୟମାନଙ୍କୁ ମଧ ତଦ୍ରୂପ ବୁଡ଼ାଇଦେଲେ । କେତେ କେତେ ଯୁଗର କେତେ ଜୀବଙ୍କର ଅପୂର୍ଣ୍ଣ ଆଶା ଆକାଙ୍କ୍ଷା, ବର, ଅଭିଶାପ ସେଇ ଦିବ୍ୟ ଲୀଳାରେ ସ୍ଥାନ ପାଇଲା । ସାକାର ରୂପ ପରିଗ୍ରହ କଲା । ଯାହା ଆଜିର ଭାଗବତ କଥା ରୂପୀ ଭଗବାନଙ୍କର ଗ୍ରନ୍ଥ ଅବତାର । ଭକ୍ତ କଣ୍ଠହାର । ତା ଗଳାର ମାଳି ।

## ଅଥ ନବମ ଅଧ୍ୟାୟଃ

## (ଦାମ ବନ୍ଧନ, ଉଖଳବନ୍ଧନ ବା ଦାମୋଦର ଲୀଳା)

ପ୍ରଶ୍ନ-୨୨: ଗୋବିନ୍ଦଙ୍କ ବୟସ ବଢ଼ିଲାଣି । ଏବେ ତିନି ଚାରି ବର୍ଷର ବାଳକ ସେ । ଆପେ ହୁସିଆର ହେବା କଥା । ହେଲେ ସେ ଦିନକୁ ଦିନ ଗମ୍ଭୀର ନ ହୋଇ ବେଶି ଚଞ୍ଚଳ ହେଉଛନ୍ତି । ମା ଯଶୋଦା ଭାବିଲେ ଦାସ ଦାସୀ ହାତରେ ଦୁଧ ଲହୁଣୀ କରି କରାଇ ପୁଅକୁ ଦେଲାରୁ ତାକୁ ରୁଚୁନି । ସେ ପରଘରେ ପଶି ଚୋରି କରି ଖାଉଛି । ଛୁଆକୁ ଦୁଷ୍କର୍ମରୁ ନିବୃତ୍ତ କରିବାକୁ ସେ ଏଥର କି ଉପାୟ କଲେ ?

**ଶ୍ରୀ ଶୁକ ଉବାଚ**

**ଏକଦା ଗୃହ ଦାସୀଷୁ ଯଶୋଦା ନନ୍ଦ ଗେହିନୀ ।**
**କର୍ମାନ୍ତର ନିଯୁକ୍ତାସୁ ନିର୍ମମନ୍ଥ ସ୍ୱୟଂ ଦଧି ।।୧।।**

ଉ. ଦିନକର କଥା (ଏକଦା) । ନନ୍ଦ ପତ୍ନୀ ଯଶୋଦା ଦାସଦାସୀଙ୍କୁ ଅନ୍ୟକର୍ମରେ ନିଯୁକ୍ତ କରିନେଲେ । ନିଜର ରାଜରାଣୀ ପଦବୀ କଥା ପାଶୋରିଗଲେ । ନିଜେ ରାତି ନ ପାହୁଣୁ ଦଧିମନ୍ଥନ କର୍ମରେ ଲାଗିଗଲେ । କାୟରେ ଦଧିମନ୍ଥନ ରୂପକ କର୍ମ, ମନରେ କୃଷ୍ଣଙ୍କ ନାମ, ରୂପ, ଗୁଣ ଆଦି ସ୍ମରଣ ପୁଣି ବଚନ ଏବଂ ତୁଣ୍ଡରେ କୃଷ୍ଣ ଲୀଳା ଗାନ ଏକ ସଙ୍ଗରେ ଚାଲିଥାଏ । ସେଇ ତ କୃଷ୍ଣ ଭକ୍ତିର ସ୍ୱରୂପ ।

ପ୍ରଶ୍ନ-୨୩: ରାଜରାଣୀ ହୋଇ ସ୍ୱୟଂ ହାତରେ ମନ୍ଥନ ଖୁଆ ଦଣ୍ଡ ଧରି କୃଷ୍ଣ ତନ୍ମୟ ହୋଇ ସତ୍‌କର୍ମ କରିବା ଦୃଶ୍ୟଟି ବ୍ୟାସ କବିଙ୍କ ଭାଷାରେ କିଭଳି ରସାପ୍ଳୁତ ହୋଇ ପ୍ରକାଶିତ ହେଲା ?

**କ୍ଷୌମଂ ବାସଃ ପୃଥୁ କଟିତଟେ ବିଭ୍ରତୀ ସୂତ୍ରନଦ୍ଧଂ**
**ପୁତ୍ର ସ୍ନେହ ସ୍ନୁତ କୁଚଯୁଗଂ ଜାତ କମ୍ପଂ ଚ ସୁଭ୍ରୂଃ ।**
**ରଜ୍ଜୁ-ଆକର୍ଷ ଶ୍ରମ ଭୁଜ ଚଳତ୍ କଙ୍କଣୌ କୁଣ୍ଡଳେ ଚ**
**ସ୍ୱିନ୍ନଂ ବକ୍ତ୍ରଂ କବର ବିଗଳତ୍ ମାଳତୀ ନିର୍ମମନ୍ଥ ॥୩॥**

ଉ. ଯଶୋଦା ଏବେ ଯୁବତୀ ନୁହନ୍ତି । ସିଂହକଟୀ ନୁହନ୍ତି । ତାଙ୍କର କଟିତଟ ପୃଥୁଳ । ଚାରିପଟେ ଘେରି ରହିଛି ମହାର୍ଘ୍ୟ ରେଶମି ବସ୍ତ୍ର । (କ୍ଷୌମଂ ବାସଃ) । ପ୍ରଚୁର ଦୁଗ୍ଧ ଭାରରେ ପୃଥୁଳ ଉରଜ ଦ୍ୱୟ ବଦ୍ଧ ହୋଇ କୃଷ୍ଣ କର୍ମରେ ସହଯୋଗ କରିବାକୁ ତିଆର । ମନ୍ଥାନି ଦଣ୍ଡ ସହିତ ସମତାଳରେ ସେ ଦୁହେଁ ମହା ଆନନ୍ଦରେ ଆନ୍ଦୋଳିତ (ବିଭ୍ରତୀ) ହେଉଛନ୍ତି । ଶୁଭ୍ରୂ (ସୁନ୍ଦର ଭ୍ରୂଲତା ଯୁକ୍ତ) ଯଶୋଦା ତୀବ୍ର ପୁତ୍ରସ୍ନେହକୁ ପ୍ରକଟ କରୁଛନ୍ତି କୃଷ୍ଣଙ୍କ ମୁଖ କମଳରେ ନ ଥିବା ବେଳେ ଉଷ୍ଣ ଦୁଗ୍ଧ ଧାରା ସ୍ରବିତ କରାଇ । ଯଶୋଦାଙ୍କ ମନ୍ଥନ କ୍ରିୟାରେ ଉଭୟ ଭୁଜ ଅକାତର ଶ୍ରମଦାନ କରୁଛନ୍ତି । ତାଙ୍କ ଭୁଜର କଙ୍କଣ ଦ୍ୱୟ ଓ କର୍ଣ୍ଣର ସ୍ୱର୍ଣ୍ଣ କୁଣ୍ଡଳ ଦ୍ୱୟ ଦୋଳାୟମାନ ହୋଇ ଘୋଷଣା କରୁଛନ୍ତି ଯେ କୃଷ୍ଣ ଭକ୍ତଙ୍କ ସାନ୍ନିଧ୍ୟରେ ସେମାନେ ଆନନ୍ଦିତା ଓ ଗୌରବାନ୍ୱିତା ।

ଇତିମଧ୍ୟରେ ଯଶୋଦାଙ୍କ କଳା ବାଳରୂପୀ ବାଦଲରୁ କିଛି ଜଳ କଣା ବର୍ଷଣ ହେଲା । ବ୍ୟାସଦେବ ବର୍ଣ୍ଣନା କଲେ ଯଶୋଦାଙ୍କର ମୁଖ ମଧ୍ୟ ଦେଇ ଝରି ପଡୁଛି ବିନ୍ଦୁ ବିନ୍ଦୁ ସ୍ୱେଦ କଣ (ସ୍ୱିନ୍ନଂ ବକ୍ତ୍ରଂ) । ସେଇ ଝାଳ ବିନ୍ଦୁମାନେ କିଛି ବିଲକ୍ଷଣ ସୂଚନା ଦେଉଛନ୍ତି । କହୁଛନ୍ତି ଆମେ ଯଶୋଦାଙ୍କ ମୁହଁ ଦେହ ମଧ୍ୟରେ ରହି ନିଶ୍ଚୟ ଆନନ୍ଦିତ ହେଉଥିଲୁ । ଏବେ ଭଗବାନ ଆସି ସ୍ତନ୍ୟପାନ କରିବେ । ସେଇ ଦର୍ଶନ ଜନିତ ଲୀଳା ଆନନ୍ଦ ଅନୁଭବ କରିବା ଲାଗି ଆମେ ବାହାରକୁ ଆସୁଛୁ ।

ଯଶୋଦାଙ୍କ କେଶ ଜୁଡ଼ାରୁ ମଲ୍ଲୀଫୁଲ ଫିଟି ପଡୁଛନ୍ତି । ମହାତ୍ମାମାନେ କାରଣ ଦର୍ଶାନ୍ତି ଯେ

୧. ଫୁଲମାନେ ଏକତ୍ର ଗୁନ୍ଥା ହୋଇ ହାତ ଧରାଧରି ହେଇ ଦଧି ମନ୍ଥନ ବେଳେ ନୃତ୍ୟ କରି କରି ଆନନ୍ଦିତ ହେଉଥିଲେ । ଭାବିଲେ ଏଭଳି କୃଷ୍ଣ ଭକ୍ତଙ୍କ ମସ୍ତକରେ ଆମେ ରହିବା ଯୋଗ୍ୟ ନୋହୁ । ସୁତରାଂ ଲାଜରେ ସେମାନେ ଭୂଇଁରେ ଲୋଟି ପଡୁଥିଲେ ।

୨. ଫୁଲମାନେ ଭାବିଲେ ଏବେ କୃଷ୍ଣ ଚାଲି ଚାଲି ଆସିବେ । ତାଙ୍କ ଚରଣ କମଳ ଅତ୍ୟନ୍ତ କୋମଳ । ସୁତରାଂ ଫୁଲମାନେ ତାଙ୍କ ପାଦର କଷ୍ଟ ଲାଘବ କରିବାକୁ ଆତ୍ମ ସମର୍ପଣ କରୁଥାନ୍ତି ।

୩. ସେମାନେ ବିଚାର କଲେ କୃଷ୍ଣଙ୍କ ଚରଣ କମଳ ପାଇବାକୁ ହେଲେ ସତ୍ସଙ୍ଗ ନିହାତି ଦରକାର । ତେଣୁ ତଳେ ପଡ଼ିଯାଇ ବ୍ରଜ ରଜ କଣସବୁରେ ଲୋଟପୋଟ ହେବାକୁ ଶ୍ରେୟ ମଣିଲେ ।

୪. ଫୁଲମାନେ ଭାବିଲେ, ଦର୍ଶନ ଅପେକ୍ଷା ସ୍ପର୍ଶ ଅଧିକ ଆନନ୍ଦପ୍ରଦ । ଗଛରେ ରହିଲେ କେବଳ କୃଷ୍ଣ ଦର୍ଶନ ହେବ । ତଳେ ପଡ଼ିଗଲେ ଦର୍ଶନ ସହିତ କୃଷ୍ଣଚରଣ କମଳର ସ୍ପର୍ଶ ପାଇ ଫୁଲ ଜନ୍ମକୁ ଧନ୍ୟ କରିନେବା ।

ପ୍ରଶ୍ନ-୨୪: ରାତ୍ରି ବିଗତପ୍ରାୟ । ଶୁଭ ସକାଳର ଆଗମନରେ ପ୍ରଭୁ ବାଳକୃଷ୍ଣ ନିଦ୍ରା ତ୍ୟାଗ କଲେ । ଦେଖିଲେ ପାଖରେ ମାଆ ନାହାନ୍ତି । ସେ ସ୍ୱୟଂ ଭଗବାନ ନାରାୟଣ । ଅତଏବ ପରମ ନିଷ୍କାମ । ଏବେ କରୁଛନ୍ତି ନର ଲୀଳା । କ୍ଷୁଧାର୍ତ୍ତ ହୋଇ ହେଲେ ସ୍ତନ୍ୟକାମ । ତରବର ହୋଇ ଧାଇଁଲେ ମା'ଙ୍କ ପାଖକୁ । ମା'ସେତେବେଳେ ତନ-ମନ-ଧନ ଲଗାଇ ଭକ୍ତି ସାଧନା କରୁଥାନ୍ତି । ସେଇ କୃଷ୍ଣ ଭଗବାନ ହୋଇ ମଧ ଭକ୍ତର ସାଧନାରେ କିଭଳି ସହଯୋଗ କରିଥିଲେ ?

**ତାଂ ସ୍ତନ୍ୟକାମ ଆସାଦ୍ୟ ମଥ୍ନନ୍ତୀଂ ଜନନୀଂ ହରିଃ ।**
**ଗୃହୀତ୍ୱା ଦଧି ମନ୍ଥାନଂ ନ୍ୟଷେଧତ୍ ପ୍ରୀତିଂ ଆବହନ୍ ॥୪॥**

ଉ. ଭଗବାନ ଦେଖିଲେ ମୋ ଭକ୍ତ ବୈଧିଭକ୍ତ ନୁହେଁ । ତା ଅନ୍ତର ରାଗାନୁଭକ୍ତିରେ ପ୍ରେମାପ୍ଲୁତ । ସେ ଏଣିକି ଯାହା କରିବ ସବୁ ଦିବ୍ୟ ପ୍ରେମ । ସେଇ କଥାର ସୂଚନା ଦେଲେ ସେ ମନ୍ଥାନ ଦଣ୍ଡକୁ ନିଜେ ଧରି ନେଇ ମନ୍ଥନ କ୍ରିୟା ବନ୍ଦ କରିଦେଲେ । ମା'ଯଶୋଦା କୋଳକୁ ନେଲେ ପୁଅକୁ । ସ୍ତନ୍ୟପାନ କରାଇଲେ । ମା ପୁଅ ଦୁହେଁ ବର୍ତ୍ତମାନ ଦୁର୍ଲ୍ଲଭ କୃଷ୍ଣ ପ୍ରେମରେ ସଂପୂର୍ଣ୍ଣ ମଗ୍ନ ।

ଏହି ଅବସରରେ ଯଶୋଦା ଦେଖିଲେ, ଚୁଲିରେ ବସିଥିବା ଦୁଧ ଉତୁରି ପଡୁଛି । ସେ ଦୁଧ ସାଧାରଣ ଦୁଧ ନୁହେ । ଗଙ୍ଗୀ ଗାଈର ବହୁ କଷ୍ଟ ଲବ୍ଧ ବିଶିଷ୍ଟ ବାତ୍ସଲ୍ୟ ଗୁଣଯୁକ୍ତ ଦୁଧ । ସେଇ ଗଙ୍ଗୀ ଗାଇକୁ ଗୁଡ଼ ପାଣି, ମହୁ ସହିତ ଅନ୍ୟ ଗାଈମାନଙ୍କ ଦୁଧ ଖାଇବାକୁ ଦିଆଯାଏ । କାରଣ ସେ ଦୁଧ କେବଳ କହ୍ନେଇ ସେବନ

କରିବ । ଯଶୋଦା ବ୍ୟସ୍ତ ହୋଇ ପୁଅକୁ ତଳେ ରଖି ଉଠି ପଡ଼ିଲେ ଦୁଧ ଉତୁରିବା ଦେଖି । ଦୁଧ ଉତୁରିବା କାରଣ ବିଷୟରେ ମହାତ୍ମାମାନେ କହନ୍ତି-ଚୁଲିରେ ବସିଥିବା ଦୁଗ୍ଧ ସାଧାରଣ ଦୁଧ ନଥିଲା । ଚିନ୍ମୟ ଦୁଗ୍ଧ ଥିଲା । ସେ ଭାବିଲା କେତେ ଜପ ତପ କରି ଯାଙ୍କ ଘରକୁ ଆସିଥିଲି । ମୋ ସାମନାରେ ଭଗବାନ କେବଳ ଯଶୋଦାଙ୍କ ଦୁଗ୍ଧ ପାନ କରୁଛନ୍ତି । ଯଦି ଗୋବିନ୍ଦଙ୍କ ଦିବ୍ୟ ଓଠର ସ୍ପର୍ଶରୁ ବଞ୍ଚିତ ହେଲି ତେବେ ବଞ୍ଚି ଲାଭ କ'ଣ । ବରଂ ତାଙ୍କରି ଆଗରେ ଅଗ୍ନିକୁ ଡ଼େଇଁପଡ଼ିବା ଶ୍ରେୟସ୍କର । ତେଣୁ ଉତୁରି ପଡ଼ିଲା ।

ଯଶୋଦା ଦୁଧ ହାଣ୍ଡି ପାଖରେ ପହଞ୍ଚିଲେ; ଦେଖିଲେ, ଏକ ଅଦ୍ଭୁତ ଦୃଶ୍ୟ । ସେ ଦୁଧ ଉତୁରିବା ଆପେ ଆପେ ବନ୍ଦ ହୋଇଗଲାଣି । ମହାତ୍ମାମାନଙ୍କ ମତରେ ଦୁଗ୍ଧ ଭାବିଲା, ଭକ୍ତ ଭଗବାନଙ୍କ ପରମ ଲୀଳା ଆନନ୍ଦରେ ବିଘ୍ନ କରିବା ଅନୁଚିତ କର୍ମ । ମୋ ଜୀବନକୁ ଧିକ୍‌କାର । ସୁତରାଂ ସ୍ୱାଭାବିକ ଲଜ୍ଜା ସରମ ହେତୁ ଆପେ ଆପେ ଉତୁରିବା ବନ୍ଦ କରିଦେଲା ।

ଏଣେ ଆରମ୍ଭ ହେଲା ଭଗବାନଙ୍କ ନୂତନ ଲୀଳା । ଗୁଣାତୀତ ହୋଇ ମଧ୍ୟ ସେ ତମୋଗୁଣୀ କ୍ରୋଧାବିଷ୍ଟ ହେଲେ । ଭାବିଲେ ସଂସାର କର୍ତ୍ତାଙ୍କର ସେବାରେ ଅବହେଳା କରି ସଂସାର (ଦୁଧ ହାଣ୍ଡି) ସାଇତିବା କେଉଁ ବିବେକ ବା ପ୍ରେମର କାମ ? ହାତରେ ପଡ଼ିଲା ପଥରଟାଏ । ତାକୁ ଧରି ପିଟିଲେ ଦଧି ହାଣ୍ଡିରେ । ହାଣ୍ଡି ହେଲା ଖଣ୍ଡ ବିଖଣ୍ଡ । ଦହି ଲହୁଣୀ ସବୁ ନାରଖାର । ବିରକ୍ତିରେ ପ୍ରଭୁ ଚାଲିଲେ ଭଣ୍ଡାର ଘରକୁ । ତାଙ୍କ ପାଦ ଚିହ୍ନ ଘର ଚଟାଣରେ ଘୋଷଣା କରୁଥିଲା ପ୍ରଭୁଙ୍କ ଗମନ ଦିଗକୁ । ମା ଯଶୋଦା ସେ ଭଙ୍ଗା ହାଣ୍ଡି ଓ ପଦ ଚିହ୍ନ ଦେଖି ସବୁ ବୁଝିଗଲେ । ଗୋବିନ୍ଦଙ୍କ ପଦ ଚିହ୍ନ ଅନୁସରଣ କଲେ । ଯାଇ ଦେଖନ୍ତି ଅଦ୍ଭୁତ କାଣ୍ଡ । ଆଡୁଆଳରେ ଠିଆ ହୋଇ ଲକ୍ଷ୍ୟ କଲେ ଗୋବିନ୍ଦ ଆଜି ମହାଦାନୀ । ପୂର୍ବଜନ୍ମରେ ରାମ ଅବତାର କାଳରେ ସୀତା ଉଦ୍ଧାର ଲୀଳାରେ ମର୍କଟ, ଭଲ୍ଲୁକଙ୍କ ପାଖରେ ସେ ଋଣୀଥିଲେ । ଏବେ ଦହି, ଲବଣୀ ଖୁଆଇ ଋଣମୁକ୍ତ ହେଉଛନ୍ତି । ନିଶ୍ଚୟ କଲେ ଗୋପୀମାନଙ୍କ ଉଲାହନା ସବୁ ସତ ତେବେ । ପୁଅ ଉଦଣ୍ଡ ହେଲାଣି । ଖାଲି ଆଖି ଦେଖେଇଲେ କାମ ଚଳିବନି । ହାତରେ ଧରିଲେ ଛାଟିଆ ଖଣ୍ଡେ । ଯାହା ବୋଲେ ତା ହେଉ । ଆଜି ତାର ଦିନେକୁ ମୋର ଦିନେ । ଭଗବାନ ବୁଝିଗଲେ, ଦଣ୍ଡା ପଡ଼ିବ ଏଥର । ଆଉ ରକ୍ଷା ନାହିଁ । ମାଙ୍କଡ଼ କି ଗୋପାଳ ସଖା କେହି ପିଠିରେ ପଡ଼ିବେନି ।

ଭଗବାନଙ୍କୁ ଭୟ (ଯମ ଦେବତା) ମଧ୍ୟ ଭୟ କରନ୍ତି । ତାଙ୍କ ଭୟ ଦେଖି ତାଙ୍କ ଚକ୍ଷୁ ଦ୍ୱୟ (ସୂର୍ଯ୍ୟ ଓ ଚନ୍ଦ୍ର) ସଜଳ ହେଲେ । ମା'ଙ୍କ ଭୟରେ ବୋହିଗଲା ଧାର ଧାର ଅଶ୍ରୁ । ଆଖିର କଳା କଜଳ ରେଖା ସମବେଦନା ପ୍ରକାଶ କଲେ । ସେମାନେ ମଧ୍ୟ ପ୍ରଭୁଙ୍କ କପୋଳ, ଗଳା ଦେଶ ଦେଇ ବକ୍ଷ ପର୍ଯ୍ୟନ୍ତ ବହିଗଲେ । କି ଅପୂର୍ବ ଲୀଳା ପ୍ରଭୁଙ୍କର । ଯେ କରୁଣାର ସାଗର ସେ ଆଜି ଅବିରତ ଅଶ୍ରୁମୋଚନ କରି କୃପା/ କରୁଣା ଭିକ୍ଷା କରୁଛନ୍ତି ଭକ୍ତଠାରୁ । କାରଣ ଜୀବ ଦୃଷ୍ଟିରେ ସେ ଆଜି ଅପରାଧୀ । ବିନା କାଠଗଡ଼ା, ବିନା ପୋଲିସ ଚାର୍ଜସିଟ୍‌ରେ ନିଜ ଅପରାଧ ସ୍ୱୀକାର କରୁଛନ୍ତି । ଏ ଲୀଳା ବାସ୍ତବରେ ଜଣେ କୃଷ୍ଣ ଭକ୍ତର ଅବଶ୍ୟ ଦର୍ଶନୀୟ । ଚିନ୍ତନୀୟ ମଧ୍ୟ । ବୈକୁଣ୍ଠ ଧାମ, ଗୋଲୋକ ଧାମରେ ମଧ୍ୟ ଏ ଲୀଳା ଦେଖିବାକୁ ମିଳେନା ।

ପ୍ରଶ୍ନ-୨୫: ନନ୍ଦ ଅଗଣା ଆଜି ଏକ ବିଚାରାଳୟ । ବିନା ଓକିଲ, ବିନା ସାକ୍ଷୀରେ ଭଗବାନ ଭକ୍ତ ପାଖରେ ଆତ୍ମସମର୍ପଣ କଲେ । ଠିଆ ହୋଇଗଲେ ଦଣ୍ଡ ଗ୍ରହଣ କରିବାକୁ । ଜୀବ ଯଶୋଦା ନିଜ କ୍ଷମାଗୁଣ ଛାଡ଼ନ୍ତେ କାହିଁକି । ଦୋଷ ଅଧା ଅଧି କ୍ଷମା କରିଦେଲେ ବୋଲି କିପରି ଜଣାଇଲେ ଭଗବାନଙ୍କୁ ?

**ତ୍ୟକ୍ତ୍ୱା ଯଷ୍ଟିଂ ସୁତଂ ଭୀତଂ ବିଜ୍ଞାୟ-ଅର୍ଭକ ବତ୍ସଳା ।**
**ଇୟେଷ କିଲ ତଂ ବଦ୍‌ଧୁଂ ଦାମ୍ନା-ଅତତ୍ ବୀର୍ଯ୍ୟ କୋବିଦା ॥୧୨॥**

ଉ. ସହଜେ ସେ ସନ୍ତାନ ବତ୍ସଳା । ସ୍ନେହମୟୀ ଜନନୀ । ଜାଣିଗଲେ ପୁଅ ଡ଼ରିଗଲାଣି । ଛାଟିଆ ମାଡ଼ ଅଦରକାରୀ । ଫିଙ୍ଗିଦେଲେ ଛାଟଖଣ୍ଡକ । ଭାବିଲେ ଆଜି ଦଉଡ଼ିରେ ବାନ୍ଧି ଦେଇ ସାବାଡ଼ କରିଦେବି ।

ସାମନାରେ ଦେଖିଲେ ଉଖଳ ବା ଉଦୁଖଳ । ଏକେ ତ ତା ନାମରେ ଖଳ ଶବ୍ଦ ଅଛି । ସେଥିରେ ପୁଣି ଚୋରକୁ ଚୋରୀ କରିବାରେ ସେ ସାହାଯ୍ୟ କରିଛି । ତା ଉପରେ ଠିଆ ହୋଇ ଗୋବିନ୍ଦ ଲହୁଣୀ ଚୋରି କରୁଥିବା ସେ ସ୍ୱୟଂ ଦେଖିଛନ୍ତି । ବିନା ସାକ୍ଷୀ ପ୍ରମାଣରେ ସେ ଭାବିଲେ ଦୁହିଁଙ୍କୁ ଏକତ୍ର ବାନ୍ଧି ଦଣ୍ଡ ଦେବେ ।

ପ୍ରଶ୍ନ-୨୬: ଲୀଳାଶକ୍ତି ବିଚାର କଲେ ଭଗବାନଙ୍କୁ ଭକ୍ତ ଦଣ୍ଡ ଦେଉ । ଭଗବାନ ହେଲେ ମଧ୍ୟ ନରଲୀଳା କରୁଛନ୍ତି । ନରମାନଙ୍କ ପାଇଁ ଉଦ୍ଦିଷ୍ଟ ଆଇନ କାନୁନ୍ ସେ ମାନିବାକୁ ବାଧ୍ୟ । ଏକଥାକୁ ଐଶ୍ୱର୍ଯ୍ୟ ଶକ୍ତି କ'ଣ ଏତେ ସହଜରେ ମାନିନେଲେ ?

**ନ ଚ-ଅନ୍ତଃ ନ ବହିଃ ଯସ୍ୟ ନ ପୂର୍ବଂ ନ-ଅପି ଚ-ଅପରମ୍ ।**
**ପୂର୍ବ-ଅପରଂ ବହିଃ ଚ-ଅନ୍ତଃ ଜଗତୋ ଯୋ ଜଗତ୍ ଚ ଯଃ ॥୧୩॥**

ଉ. ଯୋଗମାୟା ଘୋଷଣା କଲେ ଯେ କୃଷ୍ଣ ନରରୂପୀ ନାରାୟଣ । କେବଳ ବ୍ରହ୍ମ ନୁହନ୍ତି ପରମ ବ୍ରହ୍ମ । ତାଙ୍କର ଭିତର-ବାହାର ବୋଲି କିଛି ନଥାଏ । ସେ ସର୍ବବ୍ୟାପକ । ସେ ଆଦି ଓ ଅନାଦି ଉଭୟ । ସେ ଏବେ ସଂସାରରେ ଅଛନ୍ତି । ସଂସାର ନଥିଲାବେଳେ ସେ ଥିଲେ । ସଂସାର ନଷ୍ଟ ହୋଇଗଲେ ମଧ୍ୟ ନିଜ ଚିନ୍ମୟ ସ୍ୱରୂପରେ ଅବସ୍ଥାନ କରିବେ । ସେ ଜଗତ ସ୍ରଷ୍ଟା, ନିୟନ୍ତା ଓ ସଂହାରକର୍ତ୍ତା । ପୁଣି ସେ ସ୍ୱୟଂ ଜଗତ ମଧ୍ୟ । ଅନ୍ୟ ଶବ୍ଦରେ ସେ ସର୍ବାଧିଷ୍ଠାନ, ସର୍ବସାକ୍ଷୀ, ସର୍ବାତୀତ, ସର୍ବାନ୍ତର୍ଯ୍ୟାମୀ, ସର୍ବଉପାଦାନ ଏବଂ ସର୍ବରୂପ । ସେ ଆଜି ପ୍ରମାଣ କରିଦେବେ ବେଦ ବର୍ଣ୍ଣିତ ବ୍ରହ୍ମଙ୍କ ଲକ୍ଷଣ ଅନାମ, ଅରୂପ, ଅଗୁଣ, ଅଚିନ୍ତ୍ୟ, ଅଲଖ ଆଦିକୁ ମିଥ୍ୟା ବୋଲି । ଏ ଶ୍ଳୋକଟି ଭଗବାନଙ୍କ ଇତିହାସ ଓ ଭୂଗୋଳ ବ୍ୟାପକତାକୁ ସୂଚୀତ କରେ ।

ଯଶୋଦା ଏବେ ତାଙ୍କ ବାନ୍ଧିବା ଅହଙ୍କାର ଛାଡ଼ିବାକୁ ନାରାଜ । ସେ ଖଣ୍ଡେ ଦଉଡ଼ି ନେଇ କୃଷ୍ଣଙ୍କୁ ବାନ୍ଧିବାକୁ ଚେଷ୍ଟାକଲେ । ଚାରିପାଖ ଯାକ ଜମି ଗଲେଣି ଅନେକ ଗୋପୀ ଓ ଗୋପାଳ ବାଳକ । ଦିବ୍ୟ ଲୀଳା ଦେଖିବାରେ କେତେ ଆଗ୍ରହୀ ସେମାନେ । ଦଉଡ଼ିଟା ଦୁଇ ଆଙ୍ଗୁଳ ଛୋଟ ହେଲା । ନନ୍ଦରାଣୀ ଆଉ ଖଣ୍ଡେ ଯୋଡ଼ିଲେ । ପୁଣି ବାନ୍ଧିବାର ଚେଷ୍ଟା କଲେ ସେ । କି ଆଶ୍ଚର୍ଯ୍ୟ ! ! ପୁଣି ମଧ୍ୟ ଦୁଇ ଆଙ୍ଗୁଳ ଛୋଟ ହେଲା ଦଉଡ଼ି । ଯୋଗମାୟା ଲୀଳା ମାଧ୍ୟମରେ ପ୍ରକଟ କରୁଛନ୍ତି- ଏ ଦଉଡ଼ି ସାମାନ୍ୟ ଦଉଡ଼ି ନୁହେଁ । ଏ ବି ଭଗବାନଙ୍କ ଭକ୍ତ । ଭଗବାନ ତା ମଧ୍ୟରେ ପ୍ରକଟ ହୋଇ ସାବ୍ୟସ୍ତ କରୁଛନ୍ତି ତାଙ୍କର ଦଉଡ଼ି (ଦାମ) ଅବତାର ସତ୍ୟ ବୋଲି । ପାଖ ପଡ଼ୋଶୀ ଗୋପୀମାନେ ମୁହଁରେ କାନି ଗୁଞ୍ଜି ହସୁଥାନ୍ତି ।

ବାସ୍ତବରେ ଭଗବାନଙ୍କର ଐଶ୍ୱର୍ଯ୍ୟ ଶକ୍ତି ଓ ଲୀଳା ଶକ୍ତିର ଝଗଡ଼ା ଏଠାରେ ବଡ଼ ଉପଭୋଗ୍ୟ । ଦଉଡ଼ି ଦୁଇ ଆଙ୍ଗୁଳ କମ ହେବା ରହସ୍ୟ ।

୧. ଦଉଡ଼ି ଦୁଇ ଆଙ୍ଗୁଳି ଛୋଟ ହେବା ରହସ୍ୟ ହେଲା ଯେ ଜୀବ ତା ଅହଂଙ୍କାର ଛାଡ଼େ ନା । ପୁଣି ଭଗବାନ ଏଡ଼େ ସହଜରେ ଜୀବକୁ କୃପା କରିବାକୁ ଅମଙ୍ଗ । ଏହି ଦୁଇ କଥା ହିଁ ଜୀବର ବ୍ରହ୍ମପ୍ରାପ୍ତିରେ ଦୁଇ ଆଙ୍ଗୁଳ କମ୍ ହେବା ରହସ୍ୟ ।

୨. ଭଗବାନ ଆସିଛନ୍ତି ଶୁଦ୍ଧ ଭକ୍ତମାନଙ୍କୁ ପ୍ରେମ ଦାନ କରିବାକୁ । ରଜଗୁଣୀଙ୍କୁ ସ୍ୱର୍ଗ ସୁଖ ଓ ତମୋଗୁଣୀଙ୍କୁ ଆହାର, ନିଦ୍ରା, ଆଳସ୍ୟ ସୁଖ ଦେବାକୁ ନୁହେଁ । ଏହି ଦୁଇକଥା ଜଣାଇଦେଲେ ଦଉଡ଼ି ।

୩. ଜ୍ଞାନ ମାର୍ଗୀମାନଙ୍କ ପାଇଁ ସଙ୍କେତ କଲେ ନାମ-ରୂପ ଅସତ୍ୟ । ସଂସାର ସୁଖ ଆସକ୍ତି ବନ୍ଧନର କାରଣ । ସଂସାର ସମ୍ବନ୍ଧିତ ନାମ-ରୂପ ସର୍ବଥା ମିଥ୍ୟା । ଭକ୍ତ ପାଇଁ ପରମାତ୍ମା ସଙ୍କେତ କଲେ ଯେ କୃଷ୍ଣ ସମ୍ବନ୍ଧିତ ନାମ-ରୂପ ଉଭୟ ସତ୍ୟ ।

୪. ଏ ବନ୍ଧନ ସୂଚନା ଦେଲେ ଯେ ଆଗକୁ ଦୁଇ ଅର୍ଜୁନ ବୃକ୍ଷରୂପୀ ଦୁଇ କୁବେର ପୁତ୍ର ନଳ-କୁବରଙ୍କର ଉଦ୍ଧାର ହେବା ଲୀଳା ଦର୍ଶନ ଲାଗି ପ୍ରସ୍ତୁତ ହେବାକୁ ।

୫. ଜୀବର ପୁରୁଷାର୍ଥ ଦ୍ୱାରା ନୁହେଁ ବରଂ ଭଗବତ କୃପାରୁ ଜୀବ ଅଦ୍ୱୈତ ଅନୁରାଗରେ ସଂସାର ବନ୍ଧନରୁ ମୁକ୍ତ ହୁଏ । ପୁଣି ଦ୍ୱୈତ ଅନୁରାଗରେ ଚିନ୍ମୟ ମନ ବୁଦ୍ଧି ଦାସୋଽହଂ ଅହଂକାର ଦ୍ୱାରା ଚିନ୍ମୟ ଭଗବାନଙ୍କ ପ୍ରେମ ଦଉଡ଼ିରେ ବାନ୍ଧି ନିଜେ ଜନ୍ମ-ଜନ୍ମାନ୍ତର ଲାଗି ବନ୍ଧା ହେବାକୁ ସୁଯୋଗ ପାଏ । ସ୍ୱର୍ଗର ଭୁକ୍ତି ଓ ମହ-ଜନ-ତପ-ସତ୍ୟ ଲୋକର ମୁକ୍ତି ତା ପାଇଁ ପାଣିଚିଆ, ଖାରିଆ ଏବଂ ତୁଚ୍ଛାତିତୁଚ୍ଛ ହୋଇଯାଏ ।

୬. ମାତା ଯଶୋଦା ଧରିଥିବା ରସିମାନେ କୌଣସି ସାଧାରଣ ରସି ନଥିଲେ । ସେ ପ୍ରଥମେ ସାନ ରସି ପରେ ବଡ଼ ରସିରେ ବାନ୍ଧିବାକୁ ଚେଷ୍ଟା କଲେ । ରସିମାନେ ଜଣାଇଲେ ଭଗବାନଙ୍କ ଐଶ୍ୱର୍ଯ୍ୟ ପାଖରେ ଆମେ କି ସାନ କି ବଡ଼ ? ସମୁଦ୍ରରେ ସାନ-ବଡ଼ ସବୁ ନଦୀ ମିଶନ୍ତି । ନିଜ ନିଜ ନାମ ରୂପ ହଜାଇ ପ୍ରେମ ଆନନ୍ଦରେ ମଜି ଯାଆନ୍ତି । ଆଜି ରସିମାନେ ସେଇ ଦୁଇ କଥାର ସଂକେତ କରୁଛନ୍ତି ଭଗବାନଙ୍କ ଅଚିନ୍ତ୍ୟ ଲୀଳା ମାଧ୍ୟମରେ ।

୭. ଯଶୋଦା କୌଣସି ସାଧାରଣ ଗୋପାଳ ରମଣି ନୁହନ୍ତି । ବ୍ରହ୍ମାଙ୍କ ଦ୍ୱାରା ନିଯୁକ୍ତି ପାଇଛନ୍ତି ଭଗବାନଙ୍କ ମା'ହେବା ଲାଗି । ଭଗବାନଙ୍କ ଐଶ୍ୱର୍ଯ୍ୟ ଶକ୍ତିକୁ ଅପ୍ରକଟ ଶକ୍ତିହୀନ କରାଇ ପ୍ରେମ ଶକ୍ତିରେ ଧ୍ୱଜା ଉଡ଼ାଇବା ରୂପ ଦୁଇ ଶକ୍ତିର ସେ ଅଧିକାରିଣୀ । ରସି ସେଥିଲାଗି ଦୁଇ ଅଙ୍ଗୁଳ ନ୍ୟୂନ ହୋଇଗଲା ।

ପ୍ରଶ୍ନ-୨୭: ଭକ୍ତ ଭଗବାନଙ୍କ ଜ୍ଞାନ ଓ ପ୍ରେମ ଲଢ଼େଇ ଖୁବ୍ ଜମିଲା । ଭୀଷ୍ମଙ୍କ ପ୍ରତିଜ୍ଞା ଭଗବାନଙ୍କ ପ୍ରତିଜ୍ଞା ଲଢ଼େଇ ଭଳି ଏ କଥା । ସେତେବେଳେ ଭଗବାନ ନିଜେ ହାରିଥିଲେ । ଏଠାରେ କ'ଣ ଭଗବାନ ଯୁଦ୍ଧରେ ଜିଣିଗଲେ ?

**ସ୍ୱ ମାତୁଃ ସ୍ୱିନ୍ନ ଗାତ୍ରାୟା ବିସ୍ରସ୍ତ କବର ସ୍ରଜଃ ।**
**ଦୃଷ୍ଟ୍ୱା ପରିଶ୍ରମଂ କୃଷ୍ଣଃ କୃପୟାଽଽସୀତ୍ ସ୍ୱବନ୍ଧନେ ॥୧୮॥**

ଉ. ଭଗବାନ କୃପାମୟ । ଜୀବକୁ କୃପା କରିବାରେ ତାଙ୍କର ଆନନ୍ଦ । ସେ ଆନନ୍ଦମୟ । ସେ ଜିଣିବାରେ ଯେତିକି ଆନନ୍ଦ ପାଆନ୍ତି ଭକ୍ତକୁ ଜିଣେଇ ନିଜେ ହାରି ତାଠାରୁ ଅଧିକ ଆନନ୍ଦ ପାଆନ୍ତି । ଶ୍ରୀକୃଷ୍ଣ ସାର୍ଥକ କଲେ ସେହି ବେଦୋକ୍ତିକୁ ବ୍ରହ୍ମ ସର୍ବଦା ଆନନ୍ଦମୟ ବୋଲି ଏଠାରେ ନିଜେ ହାରିଯାଇ ।

ଭଗବାନ ଦେଖିଲେ ମା' କେତେ ଶ୍ରମ କଲେଣି । ଦେହସାରା ଝାଳ ନାଳ । କେଶ ବନ୍ଧନ (କବର) ଫିଟି ଗଲାଣି । ବନ୍ଧା ହୋଇଥିବା ଫୁଲମାଳ ଖଣ୍ଡ ବିଖଣ୍ଡିତ ହୋଇ ଭୂଇଁରେ ଲୋଟିଲେଣି । କୃପାମୟ କୃପାକରି ଐଶ୍ୱର୍ଯ୍ୟ ଶକ୍ତିଙ୍କୁ ବହିଷ୍କାର କରିନେଲେ । ବନ୍ଧନ ସ୍ୱୀକାର କରିନେଲେ । ମିଳିଲା ତାଙ୍କୁ ଆଉ ଏକ ଲୀଳାବାଚକ ନାମ । ଦାମୋଦର । ସେ ସମୟ(ମାସ)କୁ ଭକ୍ତମାନେ ଦାମୋଦର ମାସ ବୋଲି ନାମିତ କଲେ ଘଟଣାଟିକୁ ସ୍ମରଣୀୟ କରିବାକୁ ।

ଭଗବାନ କୃଷ୍ଣଙ୍କର ଏହା ଏକ ଅତି ପବିତ୍ର ଲୀଳା । ଏଥିରେ ଭକ୍ତି ମହାରାଣୀ ଭକ୍ତ ବତ୍ସଳ ଭଗବାନଙ୍କର ଜୟପତାକା ଉଡ଼ାଇ ଘୋଷଣା କଲେ ଯେ ତାଙ୍କର

୧. ନିଷ୍କାମ, ଆତ୍ମାରାମ ହୋଇ ସ୍ତନ୍ୟକାମ ହେବା ।
୨. ପୂର୍ଣ୍ଣକାମ ହୋଇ ଭକ୍ତ ପାଖରେ ଅତୃପ୍ତ ରହିଯିବା ।
୩. ସ୍ୱୟଂ ଲକ୍ଷ୍ମୀ ପତି ହୋଇ ଚୋରୀ କରିବା, ଦଣ୍ଡ ମୁଲେଇବା ।
୪. ଯମ ଆଦି ଦେବତାଙ୍କୁ ଭୟ ଦ୍ୱାରା ଶାସନ କରି ମଧ ଭକ୍ତକୁ ଭୟ କରିବା ।
୫. ନିତ୍ୟାନନ୍ଦ ସ୍ୱରୂପ ହୋଇ ମଧ ଲୀଳାରେ ଦୁଃଖୀ ହୋଇ ଅଶ୍ରୁମୋଚନ କରିବା ।
୬. ନିତ୍ୟମୁକ୍ତ ହୋଇ ବନ୍ଧନ ସ୍ୱୀକାର କରିବା ।
୭. ଅଚଳ ପରମାତ୍ମା ହୋଇ ଦଉଡ଼ି ପଳାଇବା ।
୮. ସର୍ବବ୍ୟାପକ ହୋଇ ଖଣ୍ଡେ ଦଉଡ଼ିରେ ବାନ୍ଧିହେବା ।
୯. ମନଠାରୁ ଅଧିକ ବେଗଗାମୀ ହୋଇ ଜୀବ ହାତରେ ଧରାଯିବା ।
୧୦. ଶୁଦ୍ଧ ସତ୍ୱଗୁଣୀ ବା ଗୁଣାଧ୍ୟକ୍ଷ ହୋଇ କ୍ରୋଧ କରିବା, ହାଣ୍ଡି ଭାଙ୍ଗିବା ।

ଜ୍ଞାନୀ ମାର୍ଗୀ ସାଧକ ମାନଙ୍କ ପାଇଁ ଏହା ଅବୋଧ ହୋଇପାରେ କିନ୍ତୁ କୃଷ୍ଣ ଭକ୍ତଙ୍କ ପାଇଁ ଏହି ଲୀଳାସ୍ମରଣ ହିଁ ଗଣ୍ଠିଧନ । ଭକ୍ତ ଗଳାର ମାଳା ସଦୃଶ ପ୍ରିୟ । ଏ ଲୀଳା କହୁଛନ୍ତି, ''ହେ କୃଷ୍ଣ ଭକ୍ତ ଗଣ, ଏକାନ୍ତରେ ମୋତେ ସ୍ମରଣ କର । ବୈଷ୍ଣବ ମୁଖରୁ ଗଦ୍ ଗଦ୍ କଣ୍ଠରେ ଶ୍ରବଣ କରି ରୋମାଞ୍ଚିତ ହୁଅ । ପ୍ରେମ ଅଶ୍ରୁପାତ କର ।''

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଭଗବାନ ତ କେବଳ ସେତିକି ଚାହାନ୍ତି ଜୀବଠାରୁ । ସେ ପ୍ରେମ ଅଶ୍ରୁ ଭକ୍ତ ପାଇଁ ଯେତିକି ଉଷ୍ମ ଭଗବାନଙ୍କ ପାଇଁ ତତୋଧିକ ମୂଲ୍ୟବାନ ଓ ଆପଣାର ।

ପ୍ରଶ୍ନ-୨୮: ଏ ଉଦୂଖଳ ବନ୍ଧନ ଦିବ୍ୟ ଲୀଳା ଶୂନ୍ୟରେ ଥାଇ ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, ବ୍ରହ୍ମା, ଶଙ୍କର ଆଦି ଦେବତାମାନେ ଦର୍ଶନ କରୁଥିଲେ । ଭାବୁଥିଲେ ସତେ ଯେମିତି ଭଗବାନ ଆମମାନଙ୍କୁ ତାଙ୍କ ଐଶ୍ୱର୍ଯ୍ୟ ଶକ୍ତି ଦ୍ୱାରା ଶାସନ କରାଉଛନ୍ତି । ପୁଣି ତାଙ୍କ ଲୀଳାଶକ୍ତି ବଳରେ ଭକ୍ତର ବନ୍ଧନରେ ପଡ଼ି କେତେ ଆନନ୍ଦ ପାଉଛନ୍ତି । ବ୍ରହ୍ମା, ବିଷ୍ଣୁ, ଶଙ୍କର ଆଦି ଦେବତାମାନେ ଜୀବର ତପସ୍ୟାରେ ପ୍ରସନ୍ନ ହୋଇ ତାକୁ ଦୁଃଖ ମୁକ୍ତି ଓ ସ୍ୱର୍ଗପ୍ରାପ୍ତି କରାଇ ପାରନ୍ତି । ଅସଲି ମୁକ୍ତିଦାତା ମୁକୁନ୍ଦ ଭଗବାନଙ୍କ ଦିବ୍ୟ ପ୍ରେମ ଭକ୍ତମାନଙ୍କ ପାଇଁ ମଧ କ'ଣ ଅପ୍ରାପ୍ୟ ରହିଯାଇଛନ୍ତି ଏଯାବତ୍ ?

**ନ-ଇମଂ ବିରିଞ୍ଚୋ ନ ଭବୋ ନ ଶ୍ରୀଃ ଅପି-ଅଙ୍ଗ ସଂଶ୍ରୟା ।**
**ପ୍ରସାଦଂ ଲେଭିରେ ଗୋପୀ ଯତ୍ ତତ୍ ପ୍ରାପ ବିମୁକ୍ତିଦାତ୍ ॥୨୦॥**

ଉ. ବ୍ରହ୍ମା ଭଗବାନ ନାରାୟଣଙ୍କ ପୁତ୍ର ହୋଇ, ଶଙ୍କରଜୀ ତାଙ୍କର ଆତ୍ମା ହୋଇ ଓ ମହାଲକ୍ଷ୍ମୀ ତାଙ୍କ ବକ୍ଷ ବିହାରିଣୀ ହୋଇ ସେହି ରାଗାନୁଗା ପ୍ରେମରୁ ବଞ୍ଚିତ ହୋଇରହିଛନ୍ତି ଯାହା ଆଜି ଯଶୋଦା (ଗୋପୀ) ହାସଲ କରିଛନ୍ତି (ପ୍ରସାଦଂ ଲେଭିରେ) ବୋଲି ସଗର୍ବ ସାବ୍ୟସ୍ତ କଲେ । ତାହା ପୁଣି ଲୁଚା ଛପା ନୁହେଁ ଦିନ ଦ୍ୱିପ୍ରହରରେ ସକଳ ଗୋପୀ ଗୋପାଳଙ୍କ ସାମନାରେ । ଭକ୍ତର ଯୋଗ୍ୟତା ବିଚାର କରି ଭଗବାନଙ୍କ ଗୁଣାବତାର ରୂପେ ବ୍ରହ୍ମା-ବିଷ୍ଣୁ-ଶଙ୍କର କେବଳ ମୁକ୍ତି ଦେଇପାରନ୍ତି । ବିମୁକ୍ତି ବା ବିଶେଷ ମୁକ୍ତିକୁ କିନ୍ତୁ ଭଗବତ ପ୍ରେମ ବା ପୁଷ୍ଟି ଭକ୍ତି କେବଳ ଶ୍ରୀକୃଷ୍ଣ ଦେଇପାରନ୍ତି । ତାଙ୍କ ପାଇଁ କୌଣସି ଲଗାମ, ନିୟମ କାନୁନ୍ କିଛି ଲାଗୁ ହୁଏନା ।

ପ୍ରଶ୍ନ-୨୯: ଶୁଦ୍ଧ ଭକ୍ତ ପ୍ରେମର ଆକର୍ଷଣରେ ସେ ଜଣେ ଗୋପାଳୁଣୀର ସନ୍ତାନ (ଗୋପିକା ସୁତ) ହୋଇପାରନ୍ତି । ତାର ମାଡ଼, ଗାଳି, ଗର୍ଜନ, ତର୍ଜନ, ବନ୍ଧନ ସ୍ୱୀକାର କରନ୍ତି । ସେଥିପାଇଁ କୁହାଯାଏ-ସୁଲଭଂ ଆତ୍ମଭକ୍ତୌ । ଶ୍ରୀକୃଷ୍ଣପ୍ରେମ ବ୍ରହ୍ମାଦି ଦେବତାମାନଙ୍କ ପାଇଁ କାହିଁକି ଦୁର୍ଲ୍ଲଭ ?

**ନ-ଅୟଂ ସୁଖାପୋ ଭଗବାନ୍ ଦେହିନାଂ ଗୋପିକା ସୁତଃ ।**
**ଜ୍ଞାନିନାଂ ଚ-ଆତ୍ମଭୂତାନାଂ ଯଥା ଭକ୍ତିମତାଂ ଇହ ॥୨୧॥**

ଉ. ଦେହାତ୍ମ୍ୟବାଦୀ ମହାତପସ୍ୱୀ ଅସୁର ଦୈତ୍ୟମାନଙ୍କୁ, ବେଦଜ୍ଞ ଶାସ୍ତ୍ରଜ୍ଞ ପଣ୍ଡିତ କର୍ମକାଣ୍ଡୀ (ଜ୍ଞାନିନାଂ) ମାନଙ୍କୁ ଓ ଶୁଷ୍କ ଜ୍ଞାନୀ ନିର୍ବିଶେଷ ଶୂନ୍ୟ

ବାଦୀମାନଙ୍କୁ(ଆତ୍ମଭୂତାନାଂ) ସେ ସହଜରେ ଧରା ଦିଅନ୍ତି ନାହିଁ (ସୁଖାପୋ) କାରଣ ତପସ୍ୱୀ ଭକ୍ତିକୁ ଖର୍ଚ୍ଚ କରେ ସିଦ୍ଧି ପ୍ରାପ୍ତି ପାଇଁ । କର୍ମକାଣ୍ଡୀ ଖର୍ଚ୍ଚ କରେ ସ୍ୱର୍ଗ ସୁଖ ପ୍ରାପ୍ତି ପାଇଁ ଓ ଜ୍ଞାନୀ ଖର୍ଚ୍ଚ କରେ ଭକ୍ତିକୁ ନିଜେ ଫୁଲମାଳ ପ୍ରଶଂସା ପାଇବା ପାଇଁ । ଏହାହିଁ କପଟ ଧର୍ମ । ଧର୍ମ ଅବଶ୍ୟ କିନ୍ତୁ ପରମ ଧର୍ମ (ଧର୍ମ ମାନଙ୍କର ମଧ୍ୟ ଧର୍ମ) କେବଳ ଭାଗବତ ଧର୍ମ ବା ଭକ୍ତି ଧର୍ମ । ସେଥିରେ ଜୀବନର ଧାରା ଓଲଟି ରାଧା ଅଭିମୁଖୀ ହୁଏ । ଏଥିରେ ଯେଉଁ ଜୀବ ନିତ୍ୟ ସଂସାର ବନ୍ଧନ ଯୁକ୍ତ ସେ ହୁଏ ନିତ୍ୟମୁକ୍ତ । ଭଗବାନ ନିତ୍ୟ ମୁକ୍ତ । ସେ ହୁଅନ୍ତି ଜୀବହାତରେ ନିତ୍ୟ ବନ୍ଧନଯୁକ୍ତ ବନ୍ଦୀ । ଜୀବ ହାତରେ କାଠ କଣ୍ଢେଇ । ସେ ନାଚିବାରେ ସୁଖୀ । ଜୀବ ନଚାଇବାରେ ମଧ୍ୟ ସୁଖୀ ।

ଏହା ହିଁ ଭକ୍ତିମାର୍ଗର ବିଲକ୍ଷଣ ବାହାଦୂରୀ । କର୍ମ-ଜ୍ଞାନ-ଯୋଗ ସମସ୍ତେ କପଟୀ ମାର୍ଗ ଦର୍ଶାନ୍ତି । ଭକ୍ତିମାର୍ଗ କେବଳ **ପ୍ରୋଜ୍‌ଝିତ କୈତବ ବା ଅଲୌକିକ ନିଷ୍କପଟ ମାର୍ଗ ।**

## ୨୭. କରୁଣ ରସ ପ୍ରକରଣ ସାର
## (ଅଧ୍ୟାୟ ୧ମ-୯ମ)

ଜଣେ ସମର୍ଥ ବ୍ୟକ୍ତି ପାଖରେ ଆଉ ଜଣେ ଅସମର୍ଥ ବ୍ୟକ୍ତିର ଅସହାୟତା ଦୃଶ୍ୟ ହେଲେ ପ୍ରଥମ ବ୍ୟକ୍ତିଙ୍କ ହୃଦୟରେ ଯେଉଁ ରସର ସଂସାର ହୁଏ ତାହାର ନାମ କରୁଣ ରସ । ବାତ୍ସଲ୍ୟ ରସ ମଧ୍ୟ ଏହି କରୁଣ ରସର ପାଖାପାଖି ରସ । ପୃଥିବୀର ଆଦି କବି ବାଲ୍ମୀକିଙ୍କ ଲେଖନୀରୁ ଦିନେ ଝରିଥିଲା ଏହି କରୁଣ ରସର ଧାରା । କ୍ରୌଞ୍ଚ ଯୁଗଳଙ୍କ କ୍ରୀଡ଼ା ସମୟରେ ବ୍ୟାଧର ଶରବିଦ୍ଧ ହେବା ଦେଖି କରୁଣ ରସର ଦ୍ରବୀଭୂତ ହୋଇଯାଇଥିଲା ଆଦି କବି ସନ୍ଥ ବାଲ୍ମୀକିଙ୍କର କୋମଳ ହୃଦୟ ।

ସୃଷ୍ଟି ଆରମ୍ଭରେ ମଧ୍ୟ ଠିକ୍ ଏହି ରସର ଧାରା ଝରିଛି ଭଗବାନ ନାରାୟଣଙ୍କ ହୃଦୟରେ ନାରାୟଣଙ୍କ ମାୟା କବଳରେ ପଡ଼ିଥିବା ସୃଷ୍ଟି କର୍ତ୍ତା ବ୍ରହ୍ମାଙ୍କ ଅସହାୟତା ଦର୍ଶନ କରି ।

**ଇଦଂ ଭଗବତା ପ୍ରୋକ୍ତା ବ୍ରହ୍ମଣେ ନାଭି ପଙ୍କଜେ ।**
**ସ୍ଥିତାୟ ଭବ ଭୀତାୟ କାରୁଣ୍ୟାତ୍ ସଂପ୍ରକାଶିତମ୍ ॥(ଭାଗବତ)**

ଉ. ସୃଷ୍ଟିର ପ୍ରଥମ ଜୀବ ବ୍ରହ୍ମା ମଧ୍ୟ ନାରାୟଣଙ୍କ ମାୟାକୁ ଡ଼ରିଯାଇଛନ୍ତି (ଭବ ଭୀତାୟ) । ପୁଅ କାନ୍ଦ କାନ୍ଦ ହେବା ଦେଖି ପିତା (ନାରାୟଣ)ଙ୍କ ହୃଦୟରେ ଦିବ୍ୟ କରୁଣ ରସର ସଂଚାର ହୋଇଛି । ଔଷଧ ରୂପରେ (ଭଗବତ ପ୍ରୋକ୍ତା) ଚତୁଃଶ୍ଳୋକୀ ଭାଗବତର ତତ୍ତ୍ୱଜ୍ଞାନ (ଇଦଂ) ପ୍ରଦାନ କରିଛନ୍ତି । ଏବେ ଶ୍ରୀକୃଷ୍ଣଙ୍କ ଲୀଳା ଆରମ୍ଭରେ ଦୁରାତ୍ମା କଂସ ଆଦି ଅସୁରଙ୍କ ଉତ୍ପୀଡ଼ନରେ ଦେବତା, ଗନ୍ଧର୍ବ ମନୁଷ୍ୟ ସମସ୍ତେ ତ୍ରାହି ତ୍ରାହି ରଡ଼ି ଛାଡ଼ିଛନ୍ତି । ବ୍ରହ୍ମା, ଶଙ୍କର, ମିଳିତ ହୋଇ ଦେବତାଙ୍କୁ ସଙ୍ଗରେ ଧରି ଶ୍ୱେତଦ୍ୱୀପ ପହଞ୍ଚିଛନ୍ତି । ଧରିତ୍ରୀ ମାତାର ବ୍ୟାକୁଳ ନିବେଦନରେ ଭଗବାନଙ୍କ ହୃଦୟ ଏହି ବିଲକ୍ଷଣ କରୁଣ ରସରେ ଆର୍ଦ୍ର ହୋଇ ଯାଇଛି । ସେ ପ୍ରତିଶ୍ରୁତି ଦେଇଛନ୍ତି ଯଦୁକୁଳରେ ବସୁଦେବ ଦେବକୀଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କରିବେ ବୋଲି । ତଦନୁଯାୟୀ ବ୍ରହ୍ମାଜୀ ନାଟକର ଅନ୍ୟାନ୍ୟ ଅଭିନେତା ଅଭିନେତ୍ରୀଙ୍କୁ ନିଜ ନିଜ ଭୂମିକା ସ୍ଥାନ, କାଳ ଯୋଗାମାୟାଙ୍କ ଦ୍ୱାରା ବାଣ୍ଟି ଦେଇଛନ୍ତି । ସମସ୍ତେ ଭାରତବର୍ଷର ଭିନ୍ନ ଭିନ୍ନ ସ୍ଥାନରେ ଜନ୍ମ ନେଇ ଅପେକ୍ଷା କରିଛନ୍ତି, ନିଜ ନିଜର ଅଭିନୟ ଲାଗି ।

ଯଥା ସମୟରେ ଦେବକୀଙ୍କ ଗର୍ଭାଧାନ ଖବର ପାଇଁ ବ୍ରହ୍ମା ଇତ୍ୟାଦି ଦେବତାମାନେ ସୂକ୍ଷ୍ମ ଶରୀରରେ ଦେବକୀଙ୍କ ଗୃହରେ ପ୍ରକଟ ହୋଇ ଗର୍ଭସ୍ତୁତି କରିଛନ୍ତି । ଭଗବାନଙ୍କ ପ୍ରାକଟ୍ୟ ବେଳେ ପିତାମାତା ଉଭୟଙ୍କ ସ୍ଥିତି ମଧ୍ୟ ଅତ୍ୟଧିକ କରୁଣ ବା ଦୟନୀୟ । ବନ୍ଦୀଘରେ ଲୌହ ଶୃଙ୍ଖଳରେ ବନ୍ଧା ପଡ଼ିଛନ୍ତି ଦୁହେଁ । ଏହି କରୁଣ ରସର ଧାର ମଥୁରାରେ ଠାକୁରଜୀଙ୍କର ଜନ୍ମ ପୂର୍ବରୁ ବହି ଚାଲିଛି । ଜନ୍ମ ପରେ ପରେ ପିତାମାତା ଦୁହେଁ ଦୁଷ୍ଟ କଂସ ହସ୍ତରୁ ପୁତ୍ରକୁ ରକ୍ଷା କରିବାରେ ନିଜର ଅସାମର୍ଥ୍ୟ ପ୍ରକଟ କରିଛନ୍ତି । ଭଗବାନ ଲୀଳାମୟ । ଯୋଗମାୟାଙ୍କ ନିର୍ଦ୍ଦେଶରେ ତାଙ୍କର ସୁରକ୍ଷା ବନ୍ଦୋବସ୍ତ ହୋଇଛି । ବସୁଦେବଙ୍କ ମସ୍ତକରେ ବୁହାହୋଇ ଯମୁନା ପାର ହୋଇ ସେ ପହଞ୍ଚିଛନ୍ତି ଗୋକୁଳ ଧାମରେ । ସେଠାରେ ସକାଳେ ସମସ୍ତେ ଜାଣିଲେ ନନ୍ଦ ରାଜାଙ୍କର ପୁଅ ହୋଇଛି ।

ଗୋକୁଳରେ ଧୁମଧାମରେ ତାଙ୍କ ଜନ୍ମ ମହୋତ୍ସବ ପାଳିତ ହୋଇଅଛି । ଉତ୍ସବ ଶେଷରେ ନନ୍ଦ ରାଜା କଂସ ଦରବାରକୁ ଆସିଛନ୍ତି ବାର୍ଷିକ କର ପଇଠ କରିବାକୁ । ବସୁଦେବଙ୍କ ଠାରୁ ବିପଦର ସଙ୍କେତ ପାଇ ଧାଇଁଛନ୍ତି ନିଜ ରାଜ୍ୟ

ଗୋକୁଳକୁ । ନନ୍ଦ ରାଜା ଗୋକୁଳ ପହଞ୍ଚି ପୂତନା ଉଦ୍ଧାର ଲୀଳା ସ୍ୱଚକ୍ଷୁରେ ଦର୍ଶନ କରିଛନ୍ତି । ତାଙ୍କର ପିତୃ ହୃଦୟ ଅସରନ୍ତି କରୁଣ ରସରେ ଭରି ଯାଇଛି । ଭଗବାନଙ୍କ ବୟସ ମାତ୍ର ଛଅଦିନ । ତଥାପି ସେ ବିଷ ପେଇବାକୁ ଆସିଥିବା ରାକ୍ଷସୀକୁ ଗୋଲୋକ ପଠାଇଛନ୍ତି । କାରଣ ସେଇ ଗୋଟିଏ ଯେ ସେ କରୁଣା ସାଗର ।

ଶକଟାସୁର ଉଦ୍ଧାର ଶହେ ଆଠ ଦିନରେ ଓ ତୃଣାବର୍ତ୍ତ ଉଦ୍ଧାର ଏକ ବର୍ଷରେ ସଂପୂର୍ଣ୍ଣ ହୋଇଛି । ଉଭୟେ କଂସ ପ୍ରେରିତ ରାକ୍ଷସ । ତଥାପି ଭଗବାନଙ୍କ କରୁଣ ରସର ଭଣ୍ଡାର ଶୁଖି ଯାଇନି ସେମାନଙ୍କ ଲାଗି । ନାମ କରଣ ସଂସ୍କାର, ବାଳ କ୍ରୀଡ଼ା ଓ ମୃଦ୍ ଭକ୍ଷଣ ଲୀଳା ସବୁ ଅଭିନୟ ତାଙ୍କର କେବଳ ସେଇ ଅଲୌକିକ କରୁଣ ରସର ପୁଷ୍ଟି ଲାଗି । ମାତାଙ୍କୁ ମୁଖ ମଧ୍ୟରେ ବିଶ୍ୱ ବ୍ରହ୍ମାଣ୍ଡ ଦର୍ଶନ ଜଣେ ସାମାନ୍ୟ ଜୀବ ଯଶୋଦାଙ୍କ ପ୍ରତି ଅପାର କରୁଣା ବୋଲି କୁହାଯାଇପାରେ । ଅନନ୍ତ ଅନନ୍ତ ଜନ୍ମମାନଙ୍କର ପୁଣ୍ୟକର୍ମର ଫଳ ଆଜି ନନ୍ଦ ଯଶୋଦା ଆଦି ଗୋପୀ ଗୋପାଳମାନେ ପ୍ରାପ୍ତ ହୋଇଛନ୍ତି । କରୁଣ ରସରେ ସମସ୍ତଙ୍କ ତନ, ମନ, ହୃଦୟ ଆର୍ଦ୍ର ହୋଇଯାଇଛି ।

କରୁଣ ରସରେ ସର୍ବୋଚ୍ଚ ପରିପାକ ହୋଇଛି ଉଖଳ ବନ୍ଧନ ଲୀଳା ବା ଦାମୋଦର ଲୀଳାରେ । ନିତ୍ୟ ବନ୍ଧନ କଷ୍ଟ ଭୋଗୁଥିବା ଜୀବ ଆଜି ନିତ୍ୟ ମୁକ୍ତ ଭଗବାନଙ୍କୁ ଗୋରୁ ବନ୍ଧା ପଘାରେ ବାନ୍ଧି ପାରିଛି । ବାଳ ଗୋପାଳଙ୍କ ଦୋଷ ହେଲା ସେ ଦହି ହାଣ୍ଡିଟିଏ ଭାଙ୍ଗି ଦେଇଛନ୍ତି । କିଛି ସର ଲବଣୀ ନିଜେ ଖାଇଛନ୍ତି । ଆଉ କିଛି ସାଙ୍ଗ ଗୋପାଳ ବାଳକ ଓ ମର୍କଟଙ୍କୁ ଖାଇବାକୁ ଦେଇଛନ୍ତି । ଏ ଲୀଳାରେ କେବଳ ଯଶୋଦାଙ୍କ ନାମ ଶୁଦ୍ଧ ଭକ୍ତ ତାଲିକାରେ ସ୍ଥାନ ପାଇନାହିଁ ବରଂ ଭଗବାନଙ୍କୁ ଆଉ ଗୋଟିଏ ବିରଳ ପଦବୀ **ଦାମୋଦର** ନାମ ମିଳିଛି । ସେ ଭକ୍ତ ବତ୍ସଳ ବାନା ଉଡ଼େଇଛନ୍ତି ଏହି କୃଷ୍ଣଲୀଳା ଅଭିନୟ ବେଳେ । ଏହା ବି ତ ତାଙ୍କର କୃପା, କରୁଣାର ଏକ ନିଛକ ପ୍ରଦର୍ଶନ ।

ବୃନ୍ଦାବନରେ କି ରାକ୍ଷସ, ଦାନବ, ମାନବ ଓ ଦେବତା ଯେ ବି ପହଞ୍ଚିପାରିଛି ଠାକୁରଜୀଙ୍କ ଲୀଳାରେ ସମସ୍ତେ ଏହି ଦିବ୍ୟ କରୁଣରସର କୃପା ଅନୁଭବ କରିପାରିଛନ୍ତି, ଯାହା **ସ୍ୱର୍ଗେ ସତ୍ୟେ ଚ କୈଳାସେ ନାସ୍ତି ଅୟଂ ରସଃ** । ଦଶରସର ମୂଳଦୂଆ ପଡ଼ିଛି ଏହି ରସରେ । ଭଗବାନ ଯେ କେବଳ ମାଧୁର୍ଯ୍ୟ ରସର ପ୍ରକଟ କରିଛନ୍ତି ଗୋକୁଳ ବୃନ୍ଦାବନରେ ତା ନୁହେଁ । ପରବର୍ତ୍ତୀ ରସ ଅଦ୍ଭୁତ ରସ, ହାସ୍ୟ ରସ ଆଦିର ପ୍ରାକଟ୍ୟ ଲାଗି ଓ ମହାବିଷ୍ଣୁଙ୍କର ଐଶ୍ୱର୍ଯ୍ୟ ପ୍ରଦର୍ଶନ ଲାଗି ମଧ୍ୟ ପରିସ୍ଥିତି ସଜାଡ଼ି ନେଇଛନ୍ତି ଏହି ଦିବ୍ୟ କରୁଣ ରସ ।

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

# ପ୍ରକରଣ-୨୮ ଅଦ୍ଭୁତ ରସ (ଅଧ୍ୟାୟ ୧୦-୧୮)

## ଅଥ ୧୦ମ ଅଧ୍ୟାୟଃ

## (ଯାମଳାର୍ଜୁନ (ନଳକୁବର ମଣିଗ୍ରୀବ) ଶାପୋଦ୍ଧାର)

ପ୍ରଶ୍ନ-୩୦: ପ୍ରଭୁଙ୍କୁ ଉଦୂଖଳରେ ବାନ୍ଧିଦେଇ ମା'ଯଶୋଦା ନିଜ ଗୃହ କାର୍ଯ୍ୟରେ ବ୍ୟସ୍ତ ଥାଆନ୍ତି । ଭଗବାନ ଦେଖିଲେ ସେ ନିଜେ ବନ୍ଧନଗ୍ରସ୍ତ । ମନେ ପଡ଼ିଲା ନିଜ ବାଡ଼ିପଟେ ଦୁଇଜଣ କୁବେର ପୁତ୍ର ନଳକୁବର ଓ ମଣିଗ୍ରୀବ ଶହେ ବର୍ଷ ହେଲାଣି ବନ୍ଧନରେ ପଡ଼ିଛନ୍ତି । ଭାବିଲେ ମୁଁ ଏମାନଙ୍କୁ ବନ୍ଧନ ମୁକ୍ତ ନକଲେ ମୋ ମାଆଠୁ କିପରି ବନ୍ଧନମୁକ୍ତି ଆଶା କରିବି ? ଏଠି ମଣିଷଙ୍କ ଆଇନ କାନୁନ୍ ଚଳେ । ଏ ହାତରେ ଦିଅ ସେ ହାତରେ ନିଅ ।

ଭଗବାନ ଏବେ ଉଦୂଖଳକୁ ଟାଣି ଟାଣି ଚାଲିଲେ ଦୁଇ ଅର୍ଜୁନ ବୃକ୍ଷ ପାଖକୁ । ନିଜେ ସିନା ଦୁଇ ବୃକ୍ଷ ଫାଙ୍କରେ ଗଳିଗଲେ । ହେଲେ ଅଟକିଗଲା ଉଦୂଖଳ । ବୃକ୍ଷ ଦୁହେଁ ଭଗବାନଙ୍କ ପ୍ରିୟ ଭକ୍ତ ନାରଦଙ୍କ ଦ୍ୱାରା ଶାପଗ୍ରସ୍ତ ଥିଲେ । ଏମାନେ ଦୁହେଁ କୁବେର ପୁତ୍ର । କୁବେର ସ୍ୱର୍ଗର ଧନ ଅଧିପତି । ବିଖ୍ୟାତ ଦେବତା । ମହାଲକ୍ଷ୍ମୀଙ୍କର ଡ଼ାହାଣ ହାତ । ସବୁ ଦେବତାଙ୍କୁ ଧନ ଯୋଗାଇ ସେ ବହୁ ମାନ ସମ୍ମାନ ଭୂଷିତ । ପିଲା ଦୁହେଁ ଧନ ମଦ(ଗର୍ବ)ରେ ବାଟବଣା ହେବା ସ୍ୱାଭାବିକ । ଯୌବନ, ଧନ ସଂପତ୍ତି, ପ୍ରଭୁତ୍ୱ, ଅବିବେକିତା ଚାରିକଥାର ଅହଂକାର ଜମା ହୋଇଛି କୁବେର ପୁତ୍ରଙ୍କ ଠାରେ ।

ଦିନକର କଥା । ଦୁହେଁ ଅପ୍‌ସରା ଦୁଇଜଣଙ୍କୁ ଧରି ମନ୍ଦାକିନୀ ନଦୀ ଜଳରେ ଜଳକ୍ରୀଡ଼ାରେ ମଗ୍ନ ଥାଆନ୍ତି । ମଦିରା ପାନ କରି ଭଲମନ୍ଦ ସଂସାର ବିସ୍ମୃତ । ପୁରାପୁରି ବେପରବାୟ । ଯୁବତୀ ଦୁହେଁ ଉଲଗ୍ନ । ଏମାନେ ମଧ୍ୟ ସଂପୂର୍ଣ୍ଣ ବିବସ୍ତ୍ର । ବୟସ କିଛି କମ ନୁହେଁ । ହୋସିଆର ହେବା ବୟସ । ଯୁବା ବୟସ । ଅତର୍କିତ ଭାବରେ ଦେବର୍ଷି ନାରଦ ସେଠାରେ ପ୍ରକଟ ହୋଇଗଲେ । ଭଗବାନଙ୍କ କୃଷ୍ଣ ଲୀଳାରେ ଏମାନଙ୍କର ବୋଧେ ଅଭିନୟ କରିବା ଯୋଗାମାୟାଙ୍କ ଦ୍ୱାରା ସ୍ଥିର ହୋଇ ସାରିଥିଲା । ଦେବର୍ଷିଙ୍କୁ ଦେଖି ଅପସରା ଦୁହେଁ ସମ୍ମାନ ଜଣାଇ ବସ୍ତ୍ର ଧାରଣ କରିନେଲେ । ଏ ଦୁହେଁ କିନ୍ତୁ କାମକ୍ରୀଡ଼ାରେ ପୁରା ବେହୋସ୍ । ଦେବର୍ଷିଙ୍କୁ ନମସ୍କାର କରିବା ତ ଦୂରର କଥା ।

ସେଇମିତି ଉଲଗ୍ନ ହୋଇ ଦୁଇଟି ବୃକ୍ଷ ଭଳି ଠିଆ ହୋଇ ରହିଲେ । ଏଭଳି ଦୁଃଖଦାୟକ ପରିସ୍ଥିତିରେ ପଡ଼ି ନାରଦଜୀ ଦୁହିଁଙ୍କୁ ହସି ହସି କ'ଣ କହିଲେ ?

ନାରଦ ଉବାଚ

**ନ ହି-ଅନ୍ୟୋ ଜୁଷତୋ ଜୋଷ୍ୟାନ୍ ବୁଦ୍ଧି ଭ୍ରଂଶୋ ରଜୋଗୁଣଃ ।**
**ଶ୍ରୀମଦାତ୍ ଆଭିଜାତ୍ୟ-ଆଦିଃ ଯତ୍ର ସ୍ତ୍ରୀ ଦ୍ୟୁତଂ-ଆସବଃ ||୮||**

ଉ. ବିଷୟ ଭୋଗୀଲୋକଙ୍କୁ ସେମାନଙ୍କର ରଜୋଗୁଣ ପ୍ରବୃତ୍ତି ବୁଦ୍ଧିଭ୍ରଂଶ କରିଥାଏ । ସେଇ ପ୍ରବୃତ୍ତି ଜାତ କୁଳ ଅଭିମାନ, ଜାତି ଅଭିମାନ, ବିଦ୍ୟା ଅଭିମାନ ରୂପ, ବଳ, କ୍ଷମତା ଅଭିମାନ ଆଦି (ଅନ୍ୟୋ ଜୁଷତୋ) ଏତେ ଭୟଙ୍କର ନୁହନ୍ତି ଯେତେ ଅଭିମାନ ଏହି ଧନ, ଐଶ୍ୱର୍ଯ୍ୟର ଅହଂକାର । କାରଣ ଧନ ସହିତ ପରନାରୀ ସମ୍ଭୋଗ, ଜୁଆଖେଳ, ମଦ୍ୟପାନ, ଜୀବ ବଧ, ମାଂସ ଭକ୍ଷଣ ଆଦି ଦୁର୍ଗୁଣ ଗୁଡ଼ିକ ଆପେ ଆପେ ଯୋଡ଼ି ହୋଇଯାଆନ୍ତି ।

ଦେଖାଯାଏ ସଂସାରରେ ଧନ ଆଦୌ ଦୋଷଯୁକ୍ତ ନୁହେଁ । କାରଣ ସେ ଭଗବାନ ନାରାୟଣଙ୍କ ଅର୍ଦ୍ଧାଙ୍ଗିନୀ ଶକ୍ତି ସ୍ୱରୂପା କିନ୍ତୁ ଜୀବ ସେ କଥା ନ ବୁଝି ନିଜେ ଧନରେ ଭୋଗ ଆସକ୍ତି ରଖିବାରୁ ହିନସ୍ତା ହୁଏ । ଧନ ଆସକ୍ତି, ଧନ ଅହଂକାର ଓ ଧନ ତୃଷ୍ଣାରେ ଯାଙ୍କରି ଭଳି ପଥଭ୍ରଷ୍ଟ ହୁଏ । ଭଗବାନ ଲୀଳା ମଧ୍ୟରେ ଏଠାରେ ଦେଖାଇବାକୁ ଚାହିଁଲେ ନାରଦଙ୍କ ଭଳି ସଦ୍‌ଗୁରୁ, ସାଧୁ କୃପାରୁ ଏଥିରୁ ମୁକ୍ତି ମିଳିଥାଏ ।

ପ୍ରଶ୍ନ-୩୧ : ଦେହ ସ୍ଥୁଳ ପଶୁପକ୍ଷୀ, ବୃକ୍ଷଲତା, ଅସୁର, ମନୁଷ୍ୟ କି ସୂକ୍ଷ୍ମ ଦେବତାର ଯାହାର ବି ହେଉ । ତାହା ଆଦୌ ଅଜର ଅମର ନୁହେଁ । ମହାକଳ୍ପ ପ୍ରଳୟବେଳେ ବ୍ରହ୍ମାଶଙ୍କରଙ୍କୁ ମଧ୍ୟ ଦେହ ଛାଡ଼ିବାକୁ ପଡ଼ିଥାଏ । ନାରଦଜୀ ଦୁଇ କୁବେରପୁତ୍ରଙ୍କୁ ଦେବତା ଶରୀର ଛାଡ଼ି ବୃକ୍ଷ ଶରୀରକୁ ଯିବାକୁ ଅଭିଶାପ ଦେବା ପୂର୍ବରୁ ଦେହର ନଶ୍ୱରତା ବିଷୟ କିପରି ବୁଝାଇଲେ ?

**ଦେବ ସଂଜ୍ଞିତଂ ଅପି ଅନ୍ତେ କୃମି ବିଡ୍ ଭସ୍ମ ସଂଜ୍ଞିତମ୍ ।**
**ଭୂତ ଧ୍ରୁକ୍ ତତ୍‌କୃତେ ସ୍ୱାର୍ଥଂ କିଂ ବେଦ ନିରୟୋ ଯତଃ ||୧୦||**

ଉ. ନାରଦଜୀ ସେମାନଙ୍କୁ କହିଲେ, "ଇନ୍ଦ୍ର, ଚନ୍ଦ୍ର, ଚକ୍ରବର୍ତ୍ତୀ ସମ୍ରାଟଙ୍କ ଭୌତିକ ଦେହସବୁ ମଧ୍ୟ ମୃତ୍ୟୁ ପରେ କୃମିଙ୍କ ଖାଦ୍ୟ, ମାଟି (ବିଡ୍) ବା ଭସ୍ମରେ ପରିଣତ ହୁଏ । ସେଇ ଦେହକୁ ପୁଷ୍ଟ କରିବାକୁ ସୁଖଦେବାକୁ ଜୀବହିଂସା, ମଦ୍ୟପାନ, ସ୍ତ୍ରୀ ସମ୍ଭୋଗରେ ଲଗାଇବା ନିଛକ ମୂର୍ଖତା ମାତ୍ର । ଶେଷରେ ନରକ ଯନ୍ତ୍ରଣା ଭୋଗିବା (ନିରୟୋ)ସାର ହୁଏ ।

ପ୍ରଶ୍ନ-୩୨ : ନାରଦଜୀ ଏ ପଞ୍ଚଭୌତିକ ଦେହର କିଏ କିଏ ସବୁ ଦାବୀଦାର ବୋଲି ସ୍ୱଅନୁଭୂବରୁ ଯୁକ୍ତିବାଢ଼ିଲେ ସେ ଦୁହିଁଙ୍କୁ ବୁଝାଇବାକୁ ଓ ସାରା ମଣିଷ ସମାଜକୁ ଚେତାବନି ଦେବା ଲକ୍ଷ୍ୟରେ ?

**ଦେହଃ କିଂ ଅନ୍ନଦାତୁଃ ସ୍ୱଂ ନିଷେକ୍ତୁଃ ମାତୁଃ ଏବ ଚ ।**
**ମାତୁଃ ପିତୁଃ ବା ବଳିନଃ କ୍ରେତୁଃ ଅଗ୍ନେଃ ଶୁନୋଽପି ।।୧୧।।**

ଉ. ନାରଦଜୀ ସୁନ୍ଦର ଯୁକ୍ତି ବାଢ଼ିଛନ୍ତି ଏଠାରେ । ସେମାନଙ୍କୁ ପଚାରୁଛନ୍ତି, ''ଏ ଦେହ ଦାବୀଦାର କ'ଣ ଅନ୍ନ ଦେଇ ପୁଷ୍ଟ କରିଥିବା ଲୋକର, ଜୀବାତ୍ମାଙ୍କର (ସ୍ୱଂ), ବୀର୍ଯ୍ୟଦାନ କରି ଦେହ ଦେଇଥିବା ପିତାଙ୍କର, ଜରାୟୁ ମଧ୍ୟରେ ନଅମାସ ଦଶଦିନ ଗର୍ଭରେ ଧାରଣ କରିଥିବା ମାତାଙ୍କର, ପିତା-ମାତାଙ୍କୁ ଜନ୍ମ ଦେଇଥିବା ଜେଜେ-ଜେଜିମା ବା ଅଜା-ଆଇଙ୍କର, କ୍ରୀତଦାସ ଭାବରେ ବଳପୂର୍ବକ ଖଟାଉଥିବା ମାଲିକଙ୍କର, ଧନ ଦେଇ ଗୋତିଶ୍ରମିକ ଭାବରେ ରଖିଥିବା ଜମିଦାରଙ୍କର, ଯେଉଁ ଅଗ୍ନିଦେବତା ଶେଷରେ ତାକୁ ଖାଇ ମୁଠାଏ ଭସ୍ମରେ ପରିଣତ କରିବେ ତାଙ୍କର ନା ଶବକୁ ଫିଙ୍ଗି ଦିଆଗଲେ ଯେଉଁ କୁଆ, ଶ୍ୱାନ, ଶୃଗାଳ ଆଦି ଭକ୍ଷଣ କରିବେ ତାଙ୍କର ? ଅନ୍ୟ ଶବ୍ଦରେ ଏହା କାହାର ବି ନୁହେଁ ।

ଏ ମାଟିର ଦେହ ମାଟିରୁ ସୃଷ୍ଟ, ମାଟିରେ ପୁଷ୍ଟ ଓ ମାଟିରେ ମିଶିବା ଏହାର ସ୍ୱଭାବ । ଏପରି ସ୍ଥଳେ କେଉଁ ବିଦ୍ୱାନ, ବିବେକୀ ଲୋକ ଏହି ତୁଚ୍ଛ ଦେହକୁ ସୁଖ ଦେବାକୁ ତୁମ ଭଳି ଆତ୍ମଜ୍ଞାନ ଲାଭ, ଭଗବତ ଦର୍ଶନ, ସନ୍ଥସେବା, ନାମ ଜପ ଆଦିରୁ ବିମୁଖ ହୋଇ ବୃକ୍ଷଭଳି ଅଚେତନ ହେବ ! !''

ପ୍ରଶ୍ନ-୩୩: ଐଶ୍ୱର୍ଯ୍ୟ, ଧନ ମଦ ଏକ ମହାବ୍ୟାଧି । ଏଥିରେ କି ମଣିଷ, ଅସୁର ଦେବତା ସମସ୍ତେ ଆକ୍ରାନ୍ତ ଓ ପୀଡ଼ିତ । ନାରଦ ଜଣେ ସତ୍ୟଦ୍ରଷ୍ଟା ତ୍ରୈଲୋକ୍ୟ ବନ୍ଦିତ ହରିଭକ୍ତ ହୋଇ ଏ ବ୍ୟାଧି ନିରାକରଣର କି ଔଷଧ ବ୍ୟବସ୍ଥା କଲେ ?

**ଅସତଃ ଶ୍ରୀମଦ-ଅନ୍ଧସ୍ୟ ଦାରିଦ୍ର୍ୟଂ ପରଂ ଅଞ୍ଜନମ୍ ।**
**ଆତ୍ମ-ଔପମ୍ୟେନ ଭୂତାନି ଦରିଦ୍ରଃ ପରଂ ଈକ୍ଷତେ ।।୧୩।।**

ଉ. ବେଳେବେଳେ ଚକ୍ଷୁ ଥାଇ ମଧ୍ୟ କିଛି ଦୃଶ୍ୟ ସ୍ପଷ୍ଟ ହୋଇ ଦିଶେନା । ଆମକୁ ଅଞ୍ଜନ ଲଗାଇ ଦୃଷ୍ଟିଶକ୍ତି ବଢ଼ାଇବାକୁ ପଡ଼େ । ଧନ ମଦରେ ଅନ୍ଧ ହୋଇ ବିଷୟୀ ମୂର୍ଖ (ଅସତଃ) ଅନ୍ୟ ପ୍ରତି ହେୟ, ଅବଜ୍ଞା କରୁଥିବା ଲୋକ ପାଇଁ ଦାରିଦ୍ର୍ୟ, ଦରିଦ୍ରତା ବା ଧନଶୂନ୍ୟତା ହିଁ ଅଞ୍ଜନ (ଔଷଧ/ଉପଚାର) ଭଳି କାମଦିଏ । ତାର ଦୃଷ୍ଟି ଉଦାର (ପରଂଈକ୍ଷତେ) ହୁଏ । ତେବେ ସେ ବୁଝିପାରେ ଦରିଦ୍ର ଲୋକର ପ୍ରକୃତ

ହୀନିମାନ ଅବସ୍ଥା । ଧନଥିବା ଲୋକ ଧନକୁ ନିଜର ଭାବି ଧନର ଅସଦ୍ ଉପଯୋଗ ନକରି ବରଂ ପରପୀଡ଼ା ଦୂରିକରଣ କରିବା ଲାଗି ଧନର ସଦୁପଯୋଗ କରିବା ଉଚିତ ।

ପ୍ରଶ୍ନ-୩୪ : ଦାରିଦ୍ର୍ୟର ଦୁଃଖକୁ କେବଳ ଜାଣିବା ପରିବର୍ତ୍ତେ ବରଂ ବୁଝିବା ଦରକାର, ଅନୁଭବ କରିବା ଦରକାର ବୋଲି ଦେବର୍ଷି ନାରଦ କେଉଁ ଦୃଷ୍ଟାନ୍ତ ସେଠାରେ ଉପସ୍ଥାପନ କଲେ ?

**ଯଥା କଣ୍ଟକବିଦ୍ଧ-ଅଙ୍ଗୋ ଜନ୍ତୋଃ ନ-ଇଚ୍ଛତି ତାଂ ବ୍ୟଥାମ୍ ।**
**ଜୀବ ସାମ୍ୟଂଗତୋ ଲିଙ୍ଗୈଃ ନ ତଥା-ଅବିଦ୍ଧ କଣ୍ଟକଃ ॥୧୪॥**

ଉ. ସନ୍ତାନ ଗର୍ଭରେ ଧାରଣ କରିବା କଷ୍ଟକର । ଏକଥା ଆମେ ଅବଶ୍ୟ ଶୁଣୁ କିନ୍ତୁ ବିନା ଅନୁଭବରେ ଏ କଷ୍ଟର ତୀବ୍ରତା ବୁଝିହୁଏନା । ବନ୍ଧ୍ୟା ନାରୀ ପ୍ରସବ ବେଦନା କଷ୍ଟ ଜାଣିଥାଏ କିନ୍ତୁ ବୁଝି ନଥାଏ । ସେହି ନ୍ୟାୟରେ ନାରଦଜୀ ବୁଝାଇ ଦେଲେ ନିଜ ପାଦରେ କଣ୍ଟା ଫୁଟିଲେ ମଣିଷ ବୁଝିପାରେ କଣ୍ଟା ବୁଡ଼ିବା ବେଦନା । କଣ୍ଟା ଫୁଟା କଷ୍ଟ ଭୋଗି ନଥିବା ଲୋକ (ଅବିଦ୍ଧ କଣ୍ଟକ) ଅନ୍ୟ ଜଣକର କଷ୍ଟ ଠିକ୍ ଠିକ୍ ଅନୁଭବ କରିବା ଅସମ୍ଭବ ବ୍ୟାପାର ।

ପ୍ରଶ୍ନ-୩୫ : ରାଜ ଉଆସରେ ରହି ରାଜା ଦାରିଦ୍ର୍ୟରେ ସଢୁଥିବା ଭିକାରୀର ଭୋକିଲା ଚିତ୍କାର ବେଦନା ଅନୁଭବରେ ଆଣିବା ନିହାତି ଅଯୌକ୍ତିକ । ସୃଷ୍ଟି ଈଶ୍ୱରଙ୍କ ହାତ କଥା । ସେ ସ୍ୱୟଂ ମଙ୍ଗଳମୟ । ଦାରିଦ୍ର୍ୟ ଭଳି ଏକ କଷ୍ଟକର ବ୍ୟବସ୍ଥା ଭଗବାନ କାହିଁକି ଉଠାଇ ଦେଉନାହାନ୍ତି ତେବେ ?

**ଦରିଦ୍ରୋ ନିଃ ଅହଂ ସ୍ତମ୍ଭୋ ମୁକ୍ତଃ ସର୍ବ ମଦୈଃ ଇହ ।**
**କୃଚ୍ଛ୍ରଂ ଯଦୃଚ୍ଛୟାଽଽପ୍ନୋତି ତତ୍ ହି ତସ୍ୟ ପରଂ ତପଃ ॥୧୫॥**

ଉ. ଧନ ଗର୍ବୀ ପଥଭ୍ରଷ୍ଟ ଲୋକକୁ ବାଟକୁ ଆଣିବା ପାଇଁ ଭଗବାନଙ୍କର ପରଜନ୍ମର ଦାରିଦ୍ର୍ୟ ଏକ ମହତ୍ ଦାନ । କୃପାଞ୍ଜନ । କହିବାକୁ ଗଲେ ଏହି ନାରାୟଣ ଅସ୍ତ୍ର ସୁଦର୍ଶନ ଚକ୍ରଠାରୁ ମଧ୍ୟ ଅଧିକ ଶକ୍ତିଶାଳୀ । ଧନ ଲୋଭରେ ଆଜି କି ମନୁଷ୍ୟ, ଅସୁର ଦେବତା ପୈତୃକ ପ୍ରାଣକୁ ବଳି ଦେବାକୁ ପଛଉ ନାହାନ୍ତି ।

ନିର୍ଦ୍ଧନ ହୋଇଗଲେ ପାଖରେ ଆଉ ଧନ ବଳ କି ଜନ ବଳ କିଛି ନଥାଏ । ପେଟ ପୁରିଲେ ସିନା ସ୍ତ୍ରୀ, ମଦ, ଜୁଆ ଆଡ଼କୁ ମନ ଯାଆନ୍ତା । ନିରାହାର ଲୋକର ଇନ୍ଦ୍ରିୟମାନେ ଅଶକ୍ତ ହୋଇଯାଆନ୍ତି (କୃଚ୍ଛ୍ରଂ ଆପ୍ନୋତି) । ଉତ୍ପାତ କରିପାରନ୍ତି ନାହିଁ । ଆପେ ଆପେ ମନ୍ଦ ଅଭ୍ୟାସରୁ ସେ ଦୂରେଇ ଗଲେ ଜୀବନ ସୁଧୁରିଯାଏ ବିଚରାର । ବିବେକୀ ଲୋକେ ସେଥିପାଇଁ କହନ୍ତି ଦାରିଦ୍ର୍ୟ ଏକ ମହାନ ତପସ୍ୟା । ଅମୂଲ୍ୟ

ଉପଦେଶ । ଶିକ୍ଷା, ଦୀକ୍ଷା, ଉପଦେଶ ସବୁ କିଛି । ଜଣେ ଭିକାରୀ ଭିକ୍ଷା ମାଗିବା ବେଳେ ଦାଣ୍ଡ ଦୁଆରେ ଯେମିତି ଜଣାଇ ଦେଉଥାଏ-ଭାଇ, ଧନର ସଦୁପଯୋଗ ନକରି ଆଜି ମୋର ଏହି ଦୁରବସ୍ଥା । ମୋତେ ମୁଠିଏ ଅନ୍ନ ଦେଇ ଏ ମହାନ୍ ଉପଦେଶ ମୋ ଠାରୁ ଶିଖିନିଅ । ଦାରିଦ୍ର୍ୟରେ ଖୁବ୍ ଶୀଘ୍ର ଅନ୍ତଃକରଣ ଶୁଦ୍ଧ ହୋଇପାରେ । କାମ, କ୍ରୋଧ, ଈର୍ଷା, ଦ୍ୱେଷ ଆଦି ଆପେ ହଟି ଯାଆନ୍ତି । ଜୀବର ଅଶେଷ କଲ୍ୟାଣ ସାଧିତ ହୋଇଥାଏ । ଯଥା-ଦରିଦ୍ର ହୋଇଗଲେ ଜୀବକୁ ଲାଭ ମିଳେ:-

୧. ଅନହଂକାରତା ।

୨. ଧନଗର୍ବ ଶୂନ୍ୟତା ।

୩. କ୍ଷୁଧା ତୃଷାରେ ଇନ୍ଦ୍ରିୟ ଦୁର୍ବଳ ନିଷ୍କ୍ରିୟ ହୋଇ ଉତ୍ପାତ ରହିତ ହେବେ ।

୪. ଅନ୍ୟକୁ ଦୁଃଖ କଷ୍ଟ ଦେଇ ପାରିବେ ନାହିଁ ।

୫. କଷ୍ଟ ସହିଷ୍ଣୁତା କ୍ରମେ ତପସ୍ୟାରେ ପରିଣତ ହେବ ।

୬. ସାଧୁ, ସନ୍ଥ, ପଛରେ ପଡ଼ିବେ । ଡ଼ାକିଲେ, ନ ଡ଼ାକିଲେ ମଧ ଘରକୁ ଆସିବେ ।

୭. ଅଧର୍ମ ଉପାୟରେ ଧନ ରୋଜଗାର ତୃଷ୍ଣା ଆପେ ଆପେ କ୍ଷୀଣ ହୋଇଯିବ ।

ଏହି କାରଣରୁ ସଂସାରରେ ଦେଖାଯାଏ ଯେ ଦରିଦ୍ର ଲୋକମାନଙ୍କ ଠାରୁ ଧନୀ ଲୋକମାନଙ୍କର ଅଭାବ ଅଧିକ । ହୁଏତ କେତେ ଶହ କେତେ ହଜାର ଟଙ୍କାରେ ଜଣେ ଦରିଦ୍ର ହୁଏତ ସନ୍ତୁଷ୍ଟ ହୋଇଯାଏ । ଅନ୍ୟପକ୍ଷରେ ଜଣେ ଧନୀ ଲୋକ ଲକ୍ଷ ଲକ୍ଷ କୋଟି କୋଟି ଟଙ୍କାରେ ମଧ ଅତୃପ୍ତ ଅସନ୍ତୁଷ୍ଟ ରହିଯାଏ । ନୂଆ ନୂଆ ଅଧର୍ମବାଟରେ ଫନ୍ଦି ଫିକର କରି ଅନ୍ୟାୟ ଅର୍ଜିତ ଧନ ସଂଗ୍ରହରୁ ବିରତ ହୋଇପାରେ ନାହିଁ ।

ସେଥିପାଇଁ ସିନା ଭାଗବତ ସତର୍କ କରାନ୍ତି ମଣିଷକୁ ଭାଇ, କୃଷ୍ଣ ଭକ୍ତ ହେବ ଯଦି ଦାରିଦ୍ର୍ୟକୁ ଆଦୌ ଡ଼ର ନାହିଁ । ସୁନ୍ଦର ଦୃଷ୍ଟାନ୍ତ -ସୁଦାମା ।

ପ୍ରଶ୍ନ-୩୬: ପରମ ଦୟାମୟ ଭଗବାନଙ୍କର ଏହି ବ୍ୟବସ୍ଥା ଅନୁସାରେ ସାଧୁ ସନ୍ଥମାନେ ପ୍ରାୟତଃ ଦରିଦ୍ରଲୋକର ସଙ୍ଗ କରନ୍ତି । ଦରିଦ୍ରମାନେ ମଧ ଅଳ୍ପ ପ୍ରୟାସରେ ସାଧୁସଙ୍ଗର ଲାଭ ଉଠାଇପାରନ୍ତି । ସାଧୁ ସଙ୍ଗରେ ଯଦି ଦରିଦ୍ର ଲୋକ ଏଭଳି ଲାଭବାନ ହୋଇ ପାରୁଛନ୍ତି ଧନୀଲୋକମାନେ କାହିଁକି ସତ୍‌ସଙ୍ଗ ପରାଙ୍‌ମୁଖ ହେଉଛନ୍ତି ?

**ସାଧୂନାଂ ସମଚିତ୍ତାନାଂ ମୁକୁନ୍ଦ ଚରଣ-ଐଷିଣାମ୍ ।**
**ଉପେକ୍ଷ୍ୟୈଃ କିଂ ଧନସ୍ତବ୍ଧୈଃ ଅସଦ୍‌ଭିଃ ଅସତ୍ ଆଶ୍ରୟୈଃ ॥୧୮॥**

ଉ. ସାଧୁ ସନ୍ଥମାନେ ସର୍ବଦା ସମଦର୍ଶୀ । ସେମାନେ ଧନୀ-ନିର୍ଦ୍ଧନ କିଛି ଦେଖନ୍ତି ନାହିଁ । ସଦା ସର୍ବଦା ମୁକୁନ୍ଦ ଚରଣ କମଳ ମକରନ୍ଦ ଅଭିଳାଷୀ । କୃପା କରିବା ତାଙ୍କର ସ୍ୱଭାବ । ଦେଖାଯାଏ ସୋମନେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଧନୀ ବା ଧନଗର୍ବୀ ଲୋକ ଅତିରିକ୍ତ ଧନ ଲୋଭ ହେତୁ ନିଜ ପିତା, ମାତା, ପୁତ୍ର, ଗୁରୁ ସ୍ୱଜନଙ୍କୁ ମଧ୍ୟ ତିରସ୍କାର କରିଥାନ୍ତି । ସେମାନଙ୍କଠାରୁ ଦୂରେଇ ରହନ୍ତି । ସାଧୁ ସନ୍ଥଙ୍କୁ ଭିକ୍‌ମଙ୍ଗେ କହି ଦୂର ଦୂର ମାର ମାର କରନ୍ତି । ସେମାନଙ୍କ ସଙ୍ଗ କରିବାକୁ ଅପମାନିତ ମନେ କରନ୍ତି । ଦୈବାତ୍ କୌଣସି ସତ୍‌ସଙ୍ଗରେ ଥିଲାବେଳେ ଯଦି ହରିନାମ, ଭଜନ କୀର୍ତ୍ତନ ଆଦି ହେଉଥାଏ ସେମାନେ ପଦ ପଦବୀ ମର୍ଯ୍ୟାଦା ଲାଗି ତାଳି ବଜାଇବାକୁ କୁଣ୍ଠାବୋଧ କରନ୍ତି । ସଙ୍କୋଚ କରନ୍ତି । ଏପରିସ୍ଥିତିରେ ସାଧୁ ସନ୍ଥ ତାଙ୍କ ପାଖକୁ ଆସି ଗୋଡ଼ ଭାଙ୍ଗି ଭିକ୍ଷା କରିବା ଭଗବାନଙ୍କ ପକ୍ଷେ ମଧ୍ୟ ଆଦୌ ଶୋଭନୀୟ ନୁହେଁ ।

ପ୍ରଶ୍ନ-୩୭: ଯୋଗାମାୟାଙ୍କ ଲୀଳା ଅନୁଯାୟୀ କୃଷ୍ଣ ଲୀଳାରେ ମଣିଗ୍ରୀବ, ନଳକୁବେରଙ୍କର କୃଷ୍ଣ ଦର୍ଶନ ଓ କୃଷ୍ଣ ଭକ୍ତି ପ୍ରାପ୍ତ ହେବା ବ୍ୟବସ୍ଥା ହୋଇଥାଏ । ସେଥିପାଇଁ ନାରଦଜୀ ହେଲେ ଏଥିରେ ନିମିତ୍ତ । ସେ ଭାବିଲେ ଏମାନଙ୍କ ଧନ ଗର୍ବ ହରଣ କରିବି । ଏମାନେ ତମୋ ଗୁଣ ଆଚ୍ଛନ୍ନ । ତେଣୁ ସେମାନଙ୍କୁ ବୃକ୍ଷ ଜନ୍ମ ନେବା ଅଭିଶାପ ଦେଲେ । ସେମାନଙ୍କର କିଞ୍ଚିତ ହୋସ୍ ଆସିଲା ଏବେ । ପାଦ ତଳେ ପଡ଼ି ଉଦ୍ଧାର ଉପାୟ ଜାଣିବାକୁ ନିବେଦନ କଲେ । ନାରଦଜୀ କଲ୍ୟାଣ କଲେ । କହିଲେ, "ହେ ପିଲେ, ଆଗକୁ କୃଷ୍ଣ ଲୀଳା ଆସୁଛି । ଗୋକୁଳ ଧାମରେ ନନ୍ଦରାଜାଙ୍କ ବାଡ଼ି ପଛେ ଦୁଇଟି ଅର୍ଜୁନ ବୃକ୍ଷ ହୁଅ । ଅପେକ୍ଷା କର । ଭଗବାନ ନନ୍ଦ ଯଶୋଦାଙ୍କ ପୁତ୍ର ହେବେ । ଲୀଳା କରିବେ । ସେ ସ୍ୱୟଂ ବନ୍ଧନରେ ପଡ଼ିଯିବେ । ଠିକଣା ସମୟରେ ତାଙ୍କର ମନେ ପଡ଼ିବ ତୁମ ବନ୍ଧନ କଥା । ଭଗବାନଙ୍କ ସ୍ପର୍ଶ ଓ ଭକ୍ତ ଉଦୂଖଳ ସ୍ପର୍ଶରେ ତୁମେ ଭଗବତ ଦର୍ଶନ ପ୍ରାପ୍ତ ହେବ ।" ବୃକ୍ଷ ଜନ୍ମରେ ସେମାନେ ପରୋପକାର କରିପାରିବେ । ଲୋକେ ପଥର ମାରିଲେ ଫଳ ଦେବେ । ମୂଳ କିମ୍ବା ଡ଼ାଳ କାଟିବାକୁ ଆସିଲେ ଛାୟା ଦେବେ । ପଶୁପକ୍ଷୀଙ୍କୁ ଆଶ୍ରୟ ଦେବେ । ଶେଷରେ ଉଦ୍ଧାର ହେବେ ।

ନାରଦଜୀଙ୍କ କଥାକୁ ସତ୍ୟ କରିବାକୁ ବାହାରିଲେ ଭଗବାନ । ସ୍ୱସ୍ପର୍ଶ ସହିତ ଉଲୂଖଳ ଟାଣିଦେଲେ । ଯାହା ଘଟିବାର ଥିଲା ଘଟିଲା । ପ୍ରଚଣ୍ଡ ଶବ୍ଦ କରି ମୂଳରୁ ଉପୁଡ଼ି ପଡ଼ିଲେ ବୃକ୍ଷ ଦୁଇଟି । ଗୋପୀ ଗୋପାଳମାନେ ଦେଖିଲେ ବିଚିତ୍ର ଦୃଶ୍ୟ । ଦୁଇ ଅର୍ଜୁନ ବୃକ୍ଷ ମଧ୍ୟରୁ ଦୁଇଜଣ ଦିବ୍ୟରୂପ ଧାରୀ ଯକ୍ଷ ପ୍ରକଟ ହେଲେ । ଭଗବାନଙ୍କୁ

ସ୍ତୁତି ମାଧ୍ୟମରେ ଜଣାଇଦେଲେ ଯେ ସେ ଦୁହେଁ ନାରଦଜୀଙ୍କ ଅଭିଶାପ ପ୍ରାପ୍ତ ମଣିଗ୍ରୀବ ଓ ନଳକୁବର । ସ୍ୱର୍ଗ ରାଜ୍ୟର ଧନାଧିପତି କୁବେର ଦେବତାଙ୍କ ଧନଗର୍ବୀ ପୁତ୍ର । ନଳକୁବର ମଣିଗ୍ରୀବ ଭଗବାନଙ୍କ ଠାରୁ କିଭଳି ଶବ୍ଦରେ କୃପା ପ୍ରାର୍ଥନା କଲେ ?

ଶ୍ରୀ ଶୁକ ଉବାଚ

**ବାଣୀ ଗୁଣ-ଅନୁକଥନେ ଶ୍ରବଣୌ କଥାୟାଂ**
**ହସ୍ତୌ ଚ କର୍ମସୁ ମନଃ ତବ ପାଦୟୋଃ ନଃ ।**
**ସ୍ମୃତ୍ୟାଂ ଶିରଃ ତବ ନିବାସ ଜଗତ୍ ପ୍ରଣାମେ**
**ଦୃଷ୍ଟିଃ ସତାଂ ଦର୍ଶନେଽସ୍ତୁ ଭବତ୍ତନୂନାମ୍ ॥୩୮॥**

ଉ. ଭଗବତ ଦର୍ଶନରେ ସେମାନଙ୍କର ସମୁଦାୟ ଅନ୍ତଃକରଣ (ମନ-ବୁଦ୍ଧି-ଚିତ୍ତ-ଅହଂକାର) ଶୁଦ୍ଧ ହୋଇସାରିଥାଏ । ସୁତରାଂ ସେମାନେ ଆଦୌ ଇତସ୍ତତଃ ହୋଇନାହାନ୍ତି । ପ୍ରାର୍ଥନା କଲେ ପ୍ରଭୁ, ଜନ୍ମଜନ୍ମାନ୍ତରରେ ଆମର ବାଣୀ ଆପଣଙ୍କ ଲୀଳା, ଗୁଣ ଗାନ କରୁଥାଉ । ଆମର କର୍ଣ୍ଣ ବୈଷ୍ଣବ ମୁଖରୁ ଆପଣଙ୍କ ନାମ, ଲୀଳା, ରୂପ, ଗୁଣ ଆଦି ଶ୍ରବଣ କରୁଥାଉ । ହସ୍ତ ଦ୍ୱୟ ଆପଣଙ୍କ ଭକ୍ତର ଓ ଆପଣଙ୍କର ସେବାରେ ଲାଗିରହୁ । ଅମର ମନ ଆପଣଙ୍କର ରୂପ, ଗୁଣ, ଧାମ, ଲୀଳା ଆଦି ଚିନ୍ତନରେ ସଦା ନିମଜ୍ଜିତ ହୋଇ ରହୁ । ମସ୍ତକ ଆମର ବିଷ୍ଣୁ ବୈଷ୍ଣବଙ୍କୁ ପ୍ରଣାମ କରୁଥାଉ । ଯୁଗେ ଯୁଗେ ଆମକୁ ସତ୍‌ସଙ୍ଗ ପ୍ରାପ୍ତ ହେଉଥାଉ । ସେମାନେ ଏତିକି କହି ତାଙ୍କ ବାଣୀକୁ ବିଶ୍ରାମ ଦେଲେ ।

ଭଗବାନ ଈଷତ୍ ହସିଲେ । ଜଣେଇ ଦେଲେ ପରୋକ୍ଷରେ ଏକଥା ମୋତେ ଆଗରୁ ଜଣା । ତୁମେମାନେ ଦେବର୍ଷିଙ୍କ ବର ପାଇଛ । ଅଭିଶାପ ପାଇନାହଁ । ତୁମର ଅଭିଳାଷ ପୂରଣ ହେଉ । ମୋ କୃପା ତୁମେ ମୋ ଭକ୍ତମାଧ୍ୟମରେ ପୂର୍ବରୁ ପ୍ରାପ୍ତ ହୋଇସାରିଛ । ଏବେ ନିଜ ପୁରକୁ ଯାଅ । ବିଷ୍ଣୁ ଭକ୍ତ ଭୂମିକାରେ ଅଭିନୟ କରି ବୈକୁଣ୍ଠ ଯିବା ପୂର୍ବରୁ ନିଜ ନିଜ ବାସକୁ, ବାସିନ୍ଦାଙ୍କୁ ବୈକୁଣ୍ଠ ସୁଖ ପ୍ରାପ୍ତ କରାଅ । ଭଗବାନଙ୍କର ହସର ଅନ୍ୟ ଏକ କାରଣ ମହାତ୍ମାମାନେ ଦର୍ଶାନ୍ତି । ଭଗବାନ ଭାବିଲେ ମୁଁ ନିତ୍ୟମୁକ୍ତ । ବଦ୍ଧଜୀବ ବ୍ରହ୍ମା-ଶଙ୍କର ଆଦି ମୋତେ ସ୍ତୁତି କରିଥାନ୍ତି । ଆଜି ଅବସ୍ଥାଚକ୍ରରେ ପଡ଼ି ମୁଁ ବନ୍ଧନଯୁକ୍ତ । ଏ ଜୀବ ଦୁହେଁ ମୋ ଭକ୍ତ ବରରେ ମୁକ୍ତହୋଇ ମୋତେ ସ୍ତୁତି କରୁଛନ୍ତି । ପୁଣି ଚାହୁଁଛନ୍ତି କାଳ କାଳ ଲାଗି ବନ୍ଧନରେ ପଡ଼ିବାକୁ । ସଂସାର ବନ୍ଧନରେ ନୁହେଁ ପ୍ରେମ ବନ୍ଧନରେ । ହାୟରେ କପାଳ ! ! ଭଗବାନଙ୍କ

ଆଦେଶ ପାଇ ସେମାନେ ଠାକୁରଜୀଙ୍କୁ ସଭକ୍ତିକ ପରିକ୍ରମା କଲେ । ବାରମ୍ବାର ନମସ୍କାର କରି ଉତ୍ତର ଦିଗକୁ ଯାତ୍ରାକଲେ କୁବେରପୁରୀ ଅଭିମୁଖେ ।

ଲୋକେ ଦେଖିଲେ ଭଗବାନଙ୍କୁ ତାଙ୍କ ମାତା ବନ୍ଧନ କଲେ । ପିତା ଖୋଲିଦେଲେ । ବାସ୍ତବରେ ଭଗବାନ ବନ୍ଧନ ହୋଇପାରନ୍ତି ନାହିଁ କିମ୍ବା ଖୋଲାଯାଇପାରନ୍ତି ନାହିଁ । ଠିକ୍ ଯେପରି ସୂର୍ଯ୍ୟ ସ୍ୱୟଂ ଆଲୋକ ଅନ୍ଧାର କିଛି ନୁହନ୍ତି । ଅନ୍ୟମାନଙ୍କ ପାଇଁ ସେ ଆଲୋକ କିମ୍ବା ଅନ୍ଧାର ସିନା । ନିଜ ପାଇଁ ଆଲୋକ ଅନ୍ଧାର ମିଥ୍ୟା । ତତ୍ତ୍ୱ ଦୃଷ୍ଟିରେ ମିଥ୍ୟା । ପ୍ରେମ ଦୃଷ୍ଟିରେ କିନ୍ତୁ ସତ୍ୟ ।

## ଅଥ ୧୧ଶ ଅଧ୍ୟାୟଃ

### (ଫଳ ବିକାଳୀ ସୁଖୀ ପ୍ରସଙ୍ଗ, ଗୋକୁଳ ତ୍ୟାଗ କରି ବୃନ୍ଦାବନ ଯାତ୍ରା, ବତ୍ସା ଅସୁର (ବିଷୟ ଆସକ୍ତି) ଓ ବକାସୁର (ଦମ୍ଭ) ଉଦ୍ଧାର ଲୀଳା)

ପ୍ରଶ୍ନ-୩୮: ନାରଦଙ୍କ କୃପାରୁ ଯକ୍ଷ ଦୁହେଁ ଭଗବତ ଦର୍ଶନ କରି ମୁକ୍ତ ହେଲେ । ସେମାନେ ଦେଖିଲେ ଭଗବାନ ସ୍ୱୟଂ ବନ୍ଧନରେ ପଡ଼ିଛନ୍ତି । ତଥାପି ସେମାନେ ବନ୍ଧନ ଖୋଲିବାକୁ ସାହସ କଲେନି । କାରଣ ସେମାନେ ଭାବିଲେ ଯେ ସେ ସଗୁଣ (ରସ ବା ଗୁଣରେ ବନ୍ଧା ହେତୁ) ହୋଇଛନ୍ତି ବୋଲି ସିନା ଆମେ ତାଙ୍କର ଦେବ ଦୁର୍ଲ୍ଲଭ ଦର୍ଶନ ପ୍ରାପ୍ତ ହେଲୁ । ନିର୍ଗୁଣ (ବନ୍ଧନ ମୁକ୍ତ) ହେଲେ ତାଙ୍କ ଟାଙ୍କ ଲାଞ୍ଜ ଛୁଇଁବା କଷ୍ଟକର ହେବ । ଅତଏବ ଲୀଳାକୁ ଚାଲୁ ରଖି ଉଭୟେ କୁବେର ପୁରକୁ ଚାଲିଗଲେ । ବୃକ୍ଷ ପତନର ପ୍ରଚଣ୍ଡ ଶବ୍ଦ ଶୁଣି ନନ୍ଦ, ଉପନନ୍ଦ ସୁନନ୍ଦ ଆଦି ଦୌଡ଼ି ଆସି କ'ଣ ସବୁ ଦେଖିଲେ ?

ଶ୍ରୀ ଶୁକ ଉବାଚ

**ଭୂମ୍ୟାଂ ନିପତିତୌ ତତ୍ର ଦଦୃଶଃ ଯାମଳ-ଅର୍ଜୁନୌ ।**
**ବଭ୍ରମୁଃ ତତ୍ ଅବିଜ୍ଞାୟ ଲକ୍ଷ୍ୟଂ ପତନ କାରଣମ୍ ।।୨।।**

ଉ. ଦେଖିଲେ, ନନ୍ଦରାଜାଙ୍କ ବାଡ଼ିପଟର ଅତି ପ୍ରାଚୀନ ବିଶାଳ ଅର୍ଜୁନ ବୃକ୍ଷ ଦ୍ୱୟ ଧରାଶାୟୀ ହୋଇଛନ୍ତି । ବୃକ୍ଷ ଉପୁଡ଼ିଯିବାର କାରଣ ସ୍ପଷ୍ଟ ଥିଲେ ମଧ

(ଲକ୍ଷ୍ୟଂ)ପ୍ରତ୍ୟକ୍ଷ ଦେଖିଥିବା ପିଲାମାନଙ୍କ କଥା ଶୁଣିଲେ ମଧ୍ୟ ବିଶ୍ୱାସ କରିପାରିଲେନି । ସେମାନଙ୍କ ବୁଦ୍ଧି ଭ୍ରମିତ (ବଭ୍ରମୁଃ) ହୋଇଗଲା । ସେତେବେଳକୁ ଗୋବିନ୍ଦଙ୍କର ଦୁଇ ହାତ ବନ୍ଧା ହୋଇ ଉଲୂଖଳ ସହିତ ସଂଯୁକ୍ତ ହୋଇଥାଏ । ସେମାନେ ଭଗବାନଙ୍କୁ ସାଧାରଣ ବାଳକ ମନେକଲେ । କର୍ତ୍ତୁଂ ଅକର୍ତ୍ତୁଂ ଅନ୍ୟଥା କର୍ତ୍ତୁଂ ସର୍ବ ସମର୍ଥବାନ ଭଗବାନଙ୍କର ଅଚିନ୍ତ୍ୟ ଲୀଳା ବୁଝି ହୁଅନ୍ତା କିପରି ସେମାନଙ୍କ ଦ୍ୱାରା ?

ପ୍ରଶ୍ନ-୩୯ : ବୃକ୍ଷ ଉପୁଡ଼ା କାରଣ ସଂପର୍କରେ ବୟସ୍କ ଗୋପାଳମାନେ ବଡ଼ ଚିନ୍ତିତ ହେଲେ । ନାନା କଳ୍ପନା ଜଳ୍ପନା ବାକ୍ ବିତଣ୍ଡା ଆଦି ଆରମ୍ଭ କରିଦେଲେ ।

ପ୍ରତ୍ୟକ୍ଷ ଦେଖିଥିବା ପିଲାମାନଙ୍କୁ ଖୋଳିତାଡ଼ି ପ୍ରକୃତ ରହସ୍ୟ ଜାଣିବା ଲାଗି ନାନା ପ୍ରଶ୍ନମାନ ପଚାରି ବ୍ୟତିବ୍ୟସ୍ତ କରିପକାଇଲେ । ଶେଷରେ ତାହା ହିଁ ସାବ୍ୟସ୍ତ କଲେ ଯେ ବୃକ୍ଷ ଦ୍ୱୟକୁ କାହ୍ନୁ ଭାଙ୍ଗିଛି । ପୁଣି ପିଲାମାନେ ଆହୁରି କହିଲେ,-ଦୁଇ ବୃକ୍ଷ ମଧ୍ୟରୁ ଦୁଇଜଣ ତେଜୀୟାନ ଦିବ୍ୟପୁରୁଷ, ବାହାରିଲେ । କାହ୍ନୁକୁ ହାତ ଯୋଡ଼ି କେତେ କ'ଣ କହି ଶୂନ୍ୟରେ ଉଡ଼ି ଚାଲିଗଲେ । କେହି କେହି ଆଦୌ ବିଶ୍ୱାସ କଲେ ନାହିଁ ଏ ବିଚତ୍ର କଥା । ଅନ୍ୟ କେହି କହିଲେ ଗର୍ଗ ମୁନିଙ୍କ ଭବିଷ୍ୟତବାଣୀ ସତ୍ୟ ମଧ୍ୟ ହୋଇପାରେ ।

ନନ୍ଦ ରାଜା ଯାଇ ତୁରନ୍ତ ବନ୍ଧନ ଖୋଲିଦେଲେ । ବନ୍ଧନ ଖୋଲା ଯାଆନ୍ତେ ଗୋପୀ ଗୋପାଳମାନେ କି ପ୍ରତିକ୍ରିୟା ପ୍ରକାଶ କଲେ ?

**ଗୋପୀଭିଃ ସ୍ତୋଭିତୋଽନୃତ୍ୟଦ୍ ଭଗବାନ୍ ବାଳବତ୍ କ୍ୱଚିତ ।**
**ଉଦ୍‌ଗାୟତି କ୍ୱଚିତ୍ ମୁଗ୍ଧଃ ତଦ୍‌ବଶୋ ଦାରୁଯନ୍ତ୍ରବତ୍ ॥୭॥**

ଉ. ଖେଳ ଭଲ ଜମିଲା । ଏଥର ବାଳକୃଷ୍ଣଙ୍କୁ ଗୋପୀମାନେ ତାଜା ଲହୁଣୀ, ମିଠେଇ ଲୋଭ ଦେଖାଇଲେ । ଗୋବିନ୍ଦ ସ୍ୱୟଂ ସର୍ବେଶ୍ୱର ଭଗବାନ ହୋଇ ମଧ୍ୟ ବାଳକ ମେଳରେ ମିଶି ହାତଟେକି ନାଚିଲେ । ମନକୁ ଯାହା ଆସିଲା ଉଚ୍ଚାରଣ କରି ଗୀତ ମଧ୍ୟ ଗାଇଲେ । ସେ ଆଜି ସଂପୂର୍ଣ୍ଣ ଭକ୍ତାଧୀନ । ନଟ ଯେପରି କାଠ କଣ୍ଢେଇକୁ ସୂତାଟାଣି ନଚାଇଥାଏ ତା ଇଚ୍ଛାରେ । ଆଜି ଗୋପୀମାନେ ପ୍ରେମ ଦଉଡ଼ିରେ ବାନ୍ଧି ତାଙ୍କୁ ନଚାଉଛନ୍ତି । ଭକ୍ତ-ଭଗବାନ ଉଭୟେ ଏଥିରେ ପରମ ଆନନ୍ଦରେ ମଗ୍ନ ।

ଦିନକୁ ଦିନ ଏହି ପ୍ରେମର ଗଭୀରତା ବଢ଼ି ଚାଲିଲା । ଗୋପୀମାନେ କେତେବେଳେ ଠାକୁରଜୀଙ୍କୁ ପିଢ଼ାଟେ, ଦୁଧ ମାପିବା ପାତ୍ରଟେ, ଘୋରଣା ଚକିଟେ, ଗୋବର ପାଚିଆଟେ ଓଠେଇ ଆଣିବାକୁ କହନ୍ତି । ଦୁଧସର ଲହୁଣୀ ଯାଚି ମନ ଇଚ୍ଛା ନଚାନ୍ତି । ତାଳି ମାରି ହସନ୍ତି । ତାଙ୍କ ନାଚ ଦେଖି ଯଶୋଦ ମା'ତାଙ୍କ ପାଦରେ

ଘୁଙ୍ଗୁର ବାଜେଣି ନୂପୁର ଆଦି ଖଞ୍ଜିଦେଲେ । ନାଚ ବେଳକୁ ବେଳ ସ୍ଥାନ, କାଳ ଓ ପାତ୍ରତା ଆଦିର ପାଚେରୀ ଡ଼େଇଁଲା । ମଝିରେ ମଝିରେ ଦେବତାମାନେ ଶୂନ୍ୟରେ ରହି ଏ ଲୀଳା ଦର୍ଶନ କରି ବିଭୋର ହେଉଥାନ୍ତି ।

ପ୍ରଶ୍ନ-୪୦: ଶ୍ୟାମ ସୁନ୍ଦର ନିଜେ ସୁନ୍ଦର । ତାଙ୍କ ଠାଣି, ମାଣି, ଗୁଣ, ଲୀଳା ଧାମ ସବୁ ସୁନ୍ଦର । ଗୋପୀମେଳରେ ସେ ମନ ଖୋଲି ଖୁବ୍ ନାଚନ୍ତି । ପୁରୁଷ ମେଳରେ ନାଚ ପାଇଁ ଫରମାସ୍ କଲେ ଲାଜରା ହୋଇଯାଆନ୍ତି ।

ଭକ୍ତବଶ ଭଗବାନ୍ । ବେଳେବେଳେ ନନ୍ଦ ରାଜା ତାଙ୍କ କଠଉ ଦୁଇଟା ଆଣିବାକୁ କହନ୍ତି । ସେ ତ ନଟବର ନାଗର । ଲାଜ ସଂକୋଚ ସବୁ ପୋଡ଼ି ଖାଇଥାନ୍ତି । ଭକ୍ତ ବସ କହିଲେ ସେ ଆଣ୍ଠେଇ ପଡ଼ନ୍ତି । ସତକୁ ସତ ସେ କଠଉ ହଳକ ମୁଣ୍ଡରେ ଥୋଇ ଥେଇ ଥେଇ ନାଚି ନୂପୁର ତାଳେ ତାଳେ ଗୀତ ଗାଇ ଗାଇ କଠଉ ଆଣିଦିଅନ୍ତି ତାଙ୍କୁ । ଏହି ତ ଭଗବାନଙ୍କର ଭକ୍ତ ବତ୍ସଳତା ଗୁଣର ଜୟ ପତାକା । ଭଗବାନଙ୍କର ବାଳ ଲୀଳା ମାଧୁର୍ଯ୍ୟ ପୁଷ୍ଟିର ପ୍ରମାଣ ଫଳ ବିକାଳି ସୁଖୀ ଚରିତ୍ରରୁ କିପରି ମିଳେ ?

**ଫଳ ବିକ୍ରୟିଣୀ ତସ୍ୟ ଚ୍ୟୁତ ଧାନ୍ୟଂ କରଦ୍ୱୟମ୍ ।**
**ଫଳୈଃ ଅପୂରୟତ୍ ରତ୍ନୈଃ ଫଳଭାଣ୍ଡଂ ଅପୂରି ଚ ।।୧୧।।**

ଉ. ସାରା ଗୋକୁଳ ଭୂମି ସେତେବେଳେ ଦିବ୍ୟ ବାତ୍ସଲ୍ୟ ରସରେ ପ୍ଲାବିତ ହେଉଥିଲା । ମଥୁରା ଧାମରେ ଥାଏ ଫଳ ବିକାଳୀ ସ୍ତ୍ରୀଟିଏ । ନାଁ ତାର ସୁଖୀ । ଫଳ ବିକି ବିକି ତାର କାଳକ ବିତିଲାଣି । କାହିଁ କେଉଁ ଜନ୍ମର ସୌଭାଗ୍ୟ ତାର ଉଦୟ ହେଲା । ଗର୍ଗ ମୁନି, ଶାଣ୍ଡିଲ୍ୟ ମୁନି ଆଦିଙ୍କୁ ସେ ହାବୁଡ଼େ ପଡ଼ିଲେ ଫଳ କିଛି ଦିଏ । ପଇସା ନିଏନା । ତା ଅଜାଣତରେ ସାଧୁ ସେବା ହେଲା । ସାଧୁ ସନ୍ଥମାନେ କେବେ କାହାରି ଋଣୀ ରହନ୍ତି ନାହିଁ । ସେମାନେ କୃଷ୍ଣଙ୍କ ରୂପ, ଗୁଣ, ଲୀଳା ଆଦି ଶୁଣାନ୍ତି ସୁଖୀକୁ । କ୍ରମେ ସୁଖୀର ମନ ବୁଦ୍ଧି ନିର୍ମଳ ହେବାର ଲାଗିଲା । କୃଷ୍ଣ ଦର୍ଶନ ଲାଳସା ତୀବ୍ରରୁ ତୀବ୍ରତର ହେଲା ।

ଥରେ ଋଷିଙ୍କ କଥା ମାନି ସୁଖୀ ଗଲା ଶ୍ରୀକୃଷ୍ଣଙ୍କୁ ଦେଖିବାକୁ । କାରଣ ତାକୁ କିଛି ନେତ୍ର ରୋଗ ହେଲା ଭଳି ଲାଗୁଥିଲା । କୃଷ୍ଣଙ୍କୁ ଦର୍ଶନ କରି ଅବଶ୍ୟ ଫେରିଲା କିନ୍ତୁ ଏ କ'ଣ ? ସାଧୁ ବୈଷ୍ଣବଙ୍କ କି କରାମତି । ଗଲା ନେତ୍ର ରୋଗ ଶାନ୍ତ କରିବାକୁ ଫେରିଲା ନୂଆ ପ୍ରେମରୋଗଟିଏ ଧରି । କୃଷ୍ଣଙ୍କ ରୂପ ଦର୍ଶନରେ ସେ ଯେ ପୁରାପୁରି ତାଙ୍କଠାରେ ବିକି ହୋଇସାରିଛି । ମନ ବୁଦ୍ଧି ସବୁ ତାର ଅଣ ଆୟତ୍ତ । ଭାବିଲା

ଗୋବିନ୍ଦଙ୍କୁ ଫଳ ଦେବି । ମନ-ବୁଦ୍ଧି ସବୁତ ନେଲେଣି । ହୁଏତ କୃପାକରି ମୋ ଅହଂକାର ଟିକକ ନେଇପାରନ୍ତି । ମୁଁ ଗୋଟା ସୁଦ୍ଧା ତାଙ୍କର ହୋଇ ଯାଆନ୍ତି ପରା ।

କେତେ କଷ୍ଟରେ ତାଙ୍କ ଦର୍ଶନ ପାଇଥିଲା । ନନ୍ଦ ଭବନ ପ୍ରତ୍ୟେକ ଦିନ ପରିକ୍ରମା କରେ । ବାହାନା ଫଳ ବିକିବା । ୧୦୮ ଥର ପରିକ୍ରମା ତାର ପୂର୍ଣ୍ଣ ହେଲାଣି । କେତେ ଆଶା ଭରସା ନେଇ ସେ ପହଞ୍ଚିଲା ସେଦିନ । ଭଗବାନ ସର୍ବାନ୍ତର୍ଯ୍ୟାମୀ । ବୁଝିଲେ ସୁଖୀର ମନୋଭାବ । ହାତରେ ଶସ୍ୟ ଆଞ୍ଜୁଳାଏ ଧରି ଧାଇଁଲେ, ହେ ଫଳବାଲୀ ବୋଲି ଡ଼ାକି ଡ଼ାକି । କୁନି କୁନି ହାତ ଦୁଇଟି । ଧରିଥାନ୍ତି ଚାଉଳ ଆଞ୍ଜୁଳାଏ । ତା ପାଖରେ ପହଞ୍ଚିଲା ବେଳକୁ ହାତରେ ଶସ୍ୟ କାହିଁ ? ଆଙ୍ଗୁଳି ସନ୍ଧିରେ କେବଳ ଚାରି ଛଅ ଦାନା ଥାଏ । ସେତକ ଦେଇ ଦେଲେ ସୁଖୀକୁ । କହିଲେ, 'ଦେ, ଦେ ଫଳ ଦେ ।'

ସବୁ ଓଲଟ ପାଲଟ ହୋଇଗଲା । ସଂସାରର ପ୍ରତ୍ୟେକ ଜୀବ ଗୋଟିଏ ଗୋଟିଏ ଫଳବାଲୀ । ସେ କିଛି ସଂସାରକୁ ଦିଏ । ପୁଣି କିଛି ସଂସାରରୁ ପାଏ । କୃତ କର୍ମର ଫଳକୁ ମନ, ବୁଦ୍ଧି ଅହଂକାର ସହିତ ଦେଇଦେଲେ ସେ ପ୍ରଭୁ ସମର୍ପିତ ହୋଇଯାଏ । ବଦଳରେ ପାଏ ହରି ପ୍ରେମ । ସାଇତି ରଖେ ଜନ୍ମ-ଜନ୍ମାନ୍ତର ଲାଗି । ଆଜି କିନ୍ତୁ ଭଗବାନ ପ୍ରଥମେ ଶସ୍ୟ ଛଳରେ କୃପା ବା ପ୍ରେମ ଦେଇଦେଲେ । ବଦଳରେ ମାଗୁଛନ୍ତି କର୍ମଫଳ ସହିତ ତାର ମନ-ବୁଦ୍ଧି-ଅହଙ୍କାର । ସେ ଯାହା ହେଉ ଭକ୍ତ ବତ୍ସଳ ଭଗବାନ ତାକୁ କୃତାର୍ଥ କଲେ । ସଂସାର ଦେଖିବାକୁ ସେ ସୁଖୀର ଫଳ ବୋଝରେ (ଫଳ ଭାଣ୍ଡଂ) ନାନା ରତ୍ନ ଭରିଦେଇଥିଲେ । ଏ ମଲା ଗଲା ସଂସାରରେ ସେଇ ତ ଭାଗ୍ୟବାନ ବା ଭାଗ୍ୟବତୀ ଯେ ସୁଖୀ ଭଳି କୃଷ୍ଣଙ୍କୁ ପ୍ରସନ୍ନ କରିପାରେ କର୍ମ ଫଳ ସମର୍ପଣ କରି ।

ପ୍ରଶ୍ନ-୪୧ : କୃଷ୍ଣ ବଳରାମଙ୍କର ବାଳ ଲୀଳାରେ ଗୋକୁଳ ଧାମରେ ସମସ୍ତେ ମହା ଖୁସି । ସବୁଠାରୁ ବେଶୀ ଖୁସି କୃଷ୍ଣଙ୍କର ପିତା ମାତା ନନ୍ଦ ଯଶୋଦା । ତା ମଧ୍ୟରେ ପୁଣି ସର୍ବାଧିକ ଖୁସି ଯଶୋଦା ବୋଲି ଶୁକଦେବ ପରମହଂସ କିପରି ବୁଝାଇଲେ ପରୀକ୍ଷିତ ମହାରାଜାଙ୍କୁ ?

**କ୍ରୀଡ଼ନ୍ତଂ ସା ସୁତଂ ବାଲୈଃ ଅତିବେଳଂ ସହ-ଅଗ୍ରଜମ୍ ।**
**ଯଶୋଦା ଜୋହବୀତ କୃଷ୍ଣଂ ପୁତ୍ରସ୍ନେହ ସ୍ନୁତ ସ୍ତନୀ ॥୧୪॥**

ଉ. ଦିନକର କଥା । କୃଷ୍ଣ ବଡ଼ଭାଇ(ସହ ଅଗ୍ରଜଂ)ଓ ଅନ୍ୟ ପିଲାମାନଙ୍କ ସହ ଖେଳୁଥାନ୍ତି । ସ୍ନେହମୟୀ ଜନନୀ ଯଶୋଦା ଦେଖିଲେ ଖାଇବା ବେଳ ଗଡ଼ିଗଲାଣି

(ଅତିବେଳଂ) । କୃଷ୍ଣ କୃଷ୍ଣ ଡ଼ାକି ଧାଇଁଲେ (ଜୋହବୀତ) ଖେଳ ସ୍ଥାନକୁ କିନ୍ତୁ ପୁତ୍ରକୁ ସ୍ତନ୍ୟଦାନର ଆବେଗ ସେ ସମ୍ଭାଳି ପାରୁନାହାନ୍ତି । ତାଙ୍କର ପୃଥୁଳ ଉରଜ(ସ୍ତନୀ) ଦ୍ୱାରା ଦୁଗ୍ଧ ଭାରରେ ସେ ତତୋଧିକ ପୀଡ଼ିତା । ସ୍ୱତଃ ଦୁଗ୍ଧ ଧାରା ସ୍ରବି ଚାଲିଛି ତାଙ୍କ ବକ୍ଷରେ ଅବିରତ । ଯଶୋଦାଙ୍କ ସନ୍ତାନ ବାତ୍ସଲ୍ୟର ଚରମ ପରାକାଷ୍ଠା ଏହି ସ୍ୱତଃ ଦୁଗ୍ଧ ସ୍ରାବ ।

## ବୃନ୍ଦାବନ ଲୀଳାର ଶୁଭାରମ୍ଭ

ପ୍ରଶ୍ନ-୪୨ : ବୃନ୍ଦାବନ, ମହାବନ, ବେହୁଳାବନ, କୋକିଳା ବନ ଓ କାମ୍ୟକ ବନ ଆଦି ୧୨ବନ ୧୨ ଉପବନକୁ ନେଇ ବ୍ରଜ ୮୪କୋଶ ବ୍ରଜମଣ୍ଡଳ ବିଖ୍ୟାତ । ଏହି ଚବିଶ ବନରେ ରାଧା କୃଷ୍ଣଙ୍କର କିଛି ନା କିଛି ଲୀଳା ସବୁବେଳେ ଚାଲିଥାଏ । ମହାବନ ବା ବୃହତ୍ ବନରେ ଗୋକୁଳ ଧାମ ଅବସ୍ଥିତ ।

ଦିନେ ନନ୍ଦ, ଉପନନ୍ଦ, ସୁନନ୍ଦ ବୃଷଭାନୁ ରାଜା ଆଜି ବସି ଗୋକୁଳ ଛାଡ଼ିବାକୁ କାହିଁକି ବିଚାର ବିମର୍ଷ କଲେ ?

**ଗୋପବୃଦ୍ଧା ମହା-ଉତ୍ପାତାନ୍     ଅନୁଭୂୟ ବୃହତ୍‌ବନେ ।**
**ନନ୍ଦ-ଆଦୟଃ ସମାଗମ୍ୟ     ବ୍ରଜକାର୍ଯ୍ୟଂ ଅମନ୍ତୟନ୍ ।।୨୧।।**

ଉ. ସେମାନେ ଦେଖିଲେ ପୂତନା, ଶକଟାସୁର, ତୃଣାବର୍ତ୍ତ, ଆଦିଙ୍କର ଉତ୍ପାତ । ଅକାରଣରେ ଦୁଇ ଅର୍ଜୁନ ବୃକ୍ଷର ଧରାଶାୟୀ ହେବା କଥା । ଅନୁଭବକୁ ଗୁରୁତ୍ୱ ଦିଅନ୍ତି ବୟସ୍କ (ଗୋପବୃଦ୍ଧା) ଗୋପାଳମାନେ । ସମସ୍ତେ ଡ଼କାଡ଼କି ହୋଇ ଏକାଠି ବସିଲେ । ପରସ୍ପର ମଧ୍ୟରେ ବିଚାର ଆଲୋଚନା (ଅମନ୍ତ୍ରୟନ୍) କଲେ । ସ୍ଥିର କଲେ ସେମାନେ ବୃତ୍ତିରେ ଗୋପାଳ । ଗୋରୁ ଗାଈ ସେମାନଙ୍କ ସମ୍ପତ୍ତି । ସେମାନଙ୍କର ଚାଷ ଜମି ବା ଚାଷ ବୃତ୍ତି ଆଦି ନାହିଁ । ଯେଉଁଠି ପ୍ରଚୁର ଗୋଚାରଣ ଭୂମି ପାନୀୟଜଳ ସୁବିଧା, ଦୈବୀ-ଆସୁର ଶକ୍ତିର ନିମ୍ନତମ ଆତଙ୍କ ଥିବ ସେଠାକୁ ସେମାନଙ୍କ ଗୋପାଳ ବସ୍ତି ଉଠାଇ ନେଲେ ଅଯଥା ମୃତ୍ୟୁ ବ୍ୟଥାରୁ ରକ୍ଷା ମିଳି ଯାଆନ୍ତା ।

ପ୍ରଶ୍ନ-୪୩: ଗୋପାଳମାନଙ୍କ ମଧ୍ୟରେ ସବୁଠୁ ବେଶୀ ବୟସ୍କ, ଅଭିଜ୍ଞ ଓ ଅନୁଭବୀ ଥିଲେ ଉପନନ୍ଦ । ସେ ସମସ୍ତଙ୍କ ମତ ଅମତ ଶୁଣିଲେ । ସେ କହିଲେ ଗୋକୁଳର ସୂର୍ଯ୍ୟ ଓ ଚନ୍ଦ୍ର ହେଉଛନ୍ତି କୃଷ୍ଣ-ବଳରାମ । ସେମାନଙ୍କ ନିରାପତ୍ତା ପ୍ରଥମେ ବିଚାର କରିବା କଥା । ରାଜା କଂସଙ୍କର ଯୋଜନାରୁ ଦୈବୀ କୃପାରୁ ସେ ଦୁହେଁ ଅଳ୍ପକେ ରକ୍ଷା ପାଇ ଯାଇଛନ୍ତି । ସେ ନାରାୟଣଙ୍କୁ ଶତ ଧନ୍ୟବାଦ ଅର୍ପଣ କଲେ ।

ପୁଣି ଗୋକୁଳ ତ୍ୟାଗ କରି ଅନ୍ୟ କେଉଁ ବନକୁ ଡ଼େରା ଉଠେଇ ନେବାକୁ ସେ ପ୍ରସ୍ତାବ ଦେଲେ ?

**ବନଂ ବୃନ୍ଦାବନ ନାମ ପଶବ୍ୟଂ ନବକାନନମ୍ ।**
**ଗୋପ ଗୋପୀ ଗବାଂ ସେବ୍ୟଂ ପୁଣ୍ୟ-ଅଦ୍ରି ତୃଣ ବିରୁଧମ୍ ।।୨୮।।**

ଉ. ବ୍ରଜ ୮୪କୋଶ ବ୍ରଜମଣ୍ଡଳ ବୋଲାଏ । ତଥାପି ଲୀଳା ପ୍ରାଚୁର୍ଯ୍ୟ ଦୃଷ୍ଟିରୁ ବୃନ୍ଦାବନକୁ ଶ୍ରେଷ୍ଟବନ ବୋଲି ମହାତ୍ମାମାନେ ସ୍ୱୀକାର କରନ୍ତି । ସମସ୍ତ ବନ ଉପବନ ମାନଙ୍କରେ ଜଣେ ଜଣେ ଅଧିଷ୍ଠାତ୍ରୀ ଦେବୀ ଥାଆନ୍ତି । ଅନେକ ଜନ୍ମ ତପସ୍ୟା କରି କରି ସେମାନେ ସେ ପଦବୀ ପ୍ରାପ୍ତ ତଥାପି ବୃନ୍ଦାବନର ଦେବୀ ଅଧିକ ସୌଭାଗ୍ୟବତୀ । ମହାଲକ୍ଷ୍ମୀ ସେଠାରେ (ବେଲ ବନରେ) ଆଗରୁ ଡ଼େରା ପକାଇ ସାରିଥାନ୍ତି । ପଶୁମାନଙ୍କ ପାଇଁ ପ୍ରଚୁର ଚାରା ପାନୀୟଜଳ ଅବସ୍ଥା କରିଛନ୍ତି ଗିରିରାଜ ଗୋବର୍ଦ୍ଧନ (ପୁଣ୍ୟ-ଅଦ୍ରି) ଓ ମହାରାଣୀ ଯମୁନା ଦେବୀଙ୍କ ଅକୁଣ୍ଠ ସହଯୋଗରେ । ନିତି ନୂଆ ନୂଆ ଫୁଲ-ଫଳ-ତୃଣ-ଗୁଳ୍ମ-ଲତା-ବିରୁଧ-(ଛଅ ଋତୁର ଏକତ୍ର ଅବସ୍ଥାନ ହେତୁ) ରେ ପରିପୂର୍ଣ୍ଣ ହୋଇଛି ବୃନ୍ଦାବନ । ଗୋପ-ଗୋପୀମାନଙ୍କର ସେବା ଲାଗି ଯଥେଷ୍ଟ କନ୍ଦମୂଳ, ଫଳ, ମୂଳ, କନ୍ଦରା, ଝରଣା, କ୍ରୀଡ଼ାଭୂମି ଯୋଗାଇ ଦେଇଛନ୍ତି ମା'ବସୁମାତା ମହାଲକ୍ଷ୍ମୀଙ୍କର ନିର୍ଦ୍ଦେଶରେ । ବ୍ରଜ ମଣ୍ଡଳରେ ୩ଟି ପର୍ବତ ଅତି ବିଖ୍ୟାତ । କୃଷ୍ଣଲୀଳା ଦର୍ଶନ ଲାଗି ଗୋବର୍ଦ୍ଧନ ପର୍ବତରେ ସ୍ୱୟଂ ବିଷ୍ଣୁ, ବର୍ଷାନା ପର୍ବତରେ ବ୍ରହ୍ମାଜୀ ଓ ନନ୍ଦଗାଓଁରେ ଶଙ୍କରଜୀ ବିରାଜମାନ କରିଥାନ୍ତି । ଶଙ୍କରଜୀଙ୍କ ପରିବାର ଭୂତ, ପ୍ରେତ, ଅସୁରକୁ ନେଇ । ସେଥିପାଇଁ ନନ୍ଦଗାଁରେ ଅବଶ୍ୟ ବେଶୀ ଦୈତ୍ୟ ଅସୁରମାନଙ୍କ ଉତ୍ପାତ ହେଉଥିଲା ।

ପ୍ରଶ୍ନ-୪୪: ଉପନନ୍ଦଜୀଙ୍କର ପ୍ରସ୍ତାବ ଦୁଇ ରାଜା ନନ୍ଦ ଓ ବୃଷଭାନୁଙ୍କ ସହିତ ସମସ୍ତଙ୍କ ମନକୁ ପାଇଲା । ଆନନ୍ଦରେ ସମସ୍ତେ ତାଙ୍କୁ ସାଧୁ ସାଧୁ କହି ସମ୍ବର୍ଦ୍ଧନା ଜଣାଇଲେ । ସେଇ ଦିନ ଶଗଡ଼ ବଳଦ ଜିନିଷପତ୍ର ସବୁ ଧରି ଗୋରୁ ଗାଈ ଗୋପୀଗୋପାଳମାନଙ୍କ ସହିତ ଚାଲିଲେ ଦିବ୍ୟ ବୃନ୍ଦାବନ । ହାତରେ ଧନୁ ତୀର । ମୁଖରେ ଗୋସିଙ୍ଗା, ତୁରୀ ଭେରୀ ଶଙ୍ଖ ନାଦ । ସାଙ୍ଗରେ ଥାଆନ୍ତି କୁଳ ପୁରୋହିତ ଏବଂ ବ୍ରାହ୍ମଣମାନେ । ଯଶୋଦା, ରୋହିଣୀ, କୀର୍ତ୍ତିଦା ଆଦି ନୂତନ ରେଶମୀ ପାଟଶାଢ଼ୀ ନାନା ଅଳଙ୍କାର ମଣ୍ଡିତ ହୋଇ ବଳଦଗାଡ଼ିରେ ବସିଥାନ୍ତି । କୋଳରେ ରାମ-ଗୋବିନ୍ଦ-ଶ୍ରୀରାଧା ଆଦି ସନ୍ତାନ ସନ୍ତତି ଶୋଭାପାଉଥାନ୍ତି ।

ଅଳ୍ପ ସମୟ ମଧ୍ୟରେ ଉପଯୁକ୍ତ ସ୍ଥାନ ଦେଖି ପ୍ରଥମେ ଅସ୍ଥାୟୀ ପରେ ପରେ ଉପଯୁକ୍ତ ବାସଭବନ, ଗୋଗୃହ, ଭଣ୍ଡାର ଗୃହ ଆଦି ନିର୍ମିତ ହୋଇ ବର୍ଷାଣା ଓ ନନ୍ଦଗାଓଁ ରାଜଧାନୀର ଶୋଭା ବଢ଼ାଇଲେ । କୃଷ୍ଣ-ବଳରାମ ଅନ୍ୟ ଗୋପାଳବାଳକମାନଙ୍କ ସଙ୍ଗରେ ଯମୁନା ପୁଳିନ, ଗୋବର୍ଦ୍ଧନ ପର୍ବତ, ଗୋଚାରଣ ଭୂମି, କ୍ରୀଡ଼ାଭୂମି ମାନଙ୍କର ଅପରୂପ ଶୋଭାଦର୍ଶନ କରି ପୁଲକିତ ହେଲେ । ଖେଳ କୁଦ, ଦ୍ୱନ୍ଦ ଯୁଦ୍ଧ ଖେଳ ଖୁବ୍ ଜମିଲା । ମଝିରେ ମଝିରେ ପିଲାମାନେ ବୃକ୍ଷମାନଙ୍କରୁ ପ୍ରଚୁର ଫଳ ଝୋଡ଼ି ଖାଇ ଘର ଖାଇବା ଚିଜରେ ଅରୁଚି ପ୍ରକାଶ କରୁଥାନ୍ତି ।

ଶ୍ରୀକୃଷ୍ଣ ପିତାମାତାଙ୍କ ପାଖରେ ଅଳିକଲେ ସେ ଗୋଚାରଣରେ ଯିବେ । ପ୍ରଥମେ ରାଜା ନନ୍ଦ ମନା କରୁଥିଲେ । ପରେ ପୁତ୍ରର ଅଝଟ ପଣିଆ ଯୋଗୁ ଅନୁମତି ଦେଲେ କୃଷ୍ଣ ବତ୍ସାମାନଙ୍କୁ ଚରାଇ ନେଉ । ମନ ବୁଝିଯିବ ତାର । କାରଣ ବାଛୁରୀମାନଙ୍କ ଶିଙ୍ଗ ନାହିଁ । ରାମ-ଗୋବିନ୍ଦ ଖୁସିରେ ଅଣ୍ଟାରେ ଶିଙ୍ଗା, ହାତରେ ଲଗୁଡ଼ (ବାଡ଼ି), କାନ୍ଧରେ ଛୋଟ କମ୍ବଳ ଖଣ୍ଡେ ଓ ମସ୍ତକରେ ମୟୂରଚୂଳ ଖୋସାଥିବା ଠେକା ମୁଣ୍ଡେଇ ଚାଲିଲେ । ଠାକୁରଜୀଙ୍କ ପାଦ କିନ୍ତୁ ଲଙ୍ଗଳା । ଚପଲ, କଠଉ କିଛି ନଥାଏ । ତାଙ୍କ ଯୁକ୍ତି ଅଦ୍ଭୁତ । ଗାଈ ଗୋରୁ ତାଙ୍କର ଉପାସ୍ୟ । ସେମାନେ ଖାଲି ପାଦରେ ଚାଲୁଛନ୍ତି । ସୁତରାଂ ସେମାନଙ୍କ ସେବକ ହୋଇ କଠଉ ପିନ୍ଧିବା ତାଙ୍କ ପକ୍ଷେ ଶୋଭନୀୟ ନୁହେଁ । ବୃନ୍ଦାବନର ଲୀଳା ଆନନ୍ଦରେ ଭଙ୍ଗା ପକାଇବା ପାଇଁ କଂସ ମାମୁଁ ପୁଣି କି ଉପଦ୍ରବର ବ୍ୟବସ୍ଥା କଲେ ?

**କଦାଚିଦ୍ ଯମୁନା ତୀରେ   ବତ୍ସାନ୍ ଚାରୟତୋ ସ୍ୱକୈଃ ।**
**ବୟସ୍ୟୈଃ କୃଷ୍ଣ ବଳୟୋଃ   ଜିଘାଂସୁଃ ଦୈତ୍ୟ ଆଗମତ୍ ॥୪୧॥**

ଉ. ସଖା ବାଳକମାନଙ୍କ ସହିତ କୃଷ୍ଣ ବଳରାମ ଦିନେ ଯମୁନା କୂଳରେ ବତ୍ସା ଚରାଉଥାନ୍ତି । କଂସ ପ୍ରେରିତ ଅସୁରଟିଏ ମାୟାରେ ବତ୍ସାରୂପ ଧାରଣ କରି ଆସିଲା । ଉଦ୍ଦେଶ୍ୟ ଲୁଚି ଲୁଚି କୌଶଳକ୍ରମେ କୃଷ୍ଣ-ବଳରାମଙ୍କୁ ହତ୍ୟା କରିବ (ଜିଘାଂସୁଃ) ।

ସ୍ୱୟଂ ମାୟାଧର ବୁଝିଗଲେ ଦୈତ୍ୟ ବତ୍ସାସୁରର ମାୟାରୂପ ଧାରଣର ଉଦ୍ଦେଶ୍ୟ । ବିଚରା ଜୀବ କେତେ ଆଶା ନେଇ ଆସିଛି ବ୍ରହ୍ମ ସାନ୍ନିଧ ପାଇଁ । ଉଦ୍ଦେଶ୍ୟ ଯାହା ହେଉ ନା କାହିଁକି ? ପୂତନା ଭଳି ତାକୁ ବି କୃପା କରିବାକୁ ସେ ବିଚାର କଲେ । ଛକି ଛକି ପଛରୁ ତା ପାଖକୁ ଗଲେ । ଅକ୍ଳେଶରେ ତାର ଦୁଇ ଗୋଡ଼କୁ ଧରି ଶୂନ୍ୟରେ

ବୁଲାଇ ବୁଲାଇ ଏକ କଇଥ ଗଛରେ ପିଟି ଦେଲେ । ଏକା ଥରକେ ବିଚରାକୁ ଦେଖିଲା କାମ କରିଦେଲେ । ଉଦ୍ଧାର ପାଇଲା ବତ୍ସାସୁର ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହୋଇ । ଏ କାଣ୍ଡ ସ୍ୱର୍ଗରେ ଦେବତାମାନେ ମଧ୍ୟ ଲକ୍ଷ୍ୟ କରୁଥିଲେ । ସେମାନେ ଆନନ୍ଦରେ ଦୁନ୍ଦୁଭି ବଜାଇଲେ । ଦିବ୍ୟ କୁସୁମ ବର୍ଷଣ କରି ସାଧୁ ସାଧୁ କହି ଭଗବାନଙ୍କୁ ଅଭିନନ୍ଦନ ଜଣାଇଲେ । ଆଧାତ୍ମ ଦୃଷ୍ଟିରେ ମନୁଷ୍ୟର ସଂସାର ଆସକ୍ତି ଗାଈ-ବାଛୁରୀଙ୍କ ଅତି ସ୍ନେହ ଭଳି ବିପଦ ଜନକ । ଭଗବାନଙ୍କ ଶରଣାଗତ ହେଲେ ଭଗବାନ ସେ ଆସକ୍ତିକୁ ସ୍ୱୟଂ ଦୂର କରନ୍ତି ।

ପ୍ରଶ୍ନ-୪୫: ଆଉ ଦିନକର ଘଟଣା । ବେଳ ଦ୍ୱିପ୍ରହର । କୃଷ୍ଣ-ବଳରାମ ବତ୍ସା ଗୋଠରେ ଥାଆନ୍ତି । ଦେଖିଲେ ଏକ ଜଳାଶୟ ପାଖରେ ପର୍ବତକାୟ ଜୀବଟିଏ । ଦେହ ଧୋବ ଫରଫର । ବିରାଟ ବଡ଼ ଥଣ୍ଟ । ଡ଼େଙ୍ଗା ଡ଼େଙ୍ଗା ସରୁ ସରୁ ଦୁଇଟା ଗୋଡ଼ । ହଲ ଚଲ କିଛି ହେଉ ନଥାଏ । ସତେ କି ଜଣେ ଋଷି ଧ୍ୟାନରେ ବସିଛନ୍ତି । କଥାବାର୍ତ୍ତା ହୋଇ ଗୋପାଳବାଳକମାନେ ଜାଣିଲେ ଏ ମଧ୍ୟ ଏକ କପଟୀ ଅସୁର । କଂସ ରାଜାଙ୍କ ଦୂତ । ପୂତନାର ଭାଇ । ନାମ ତାର ବକାସୁର । ଆସୁରୀ ମାୟାରେ ବଗରୂପ ଧରିଛି । ପିଲାମାନେ ବେଳହୁଁ ହୁସିଆର ହୋଇଗଲେ ପାଖକୁ ଗଲେ ନାହିଁ କିନ୍ତୁ କୃପା ସାଗର କୃଷ୍ଣ କିଭଳି ଭାବରେ ସମ୍ମୁଖୀନ ହେଲେ ବକାସୁରଙ୍କର ।

**ସବୈ ବକୋ ନାମ ମହାନ୍ ଅସୁରୋ ବକରୂପ ଧୃକ୍ ।**
**ଆଗତ୍ୟ ସହସା କୃଷ୍ଣଂ ତୀକ୍ଷ୍ଣ ତୁଣ୍ଡୋଽଗ୍ରସଦ୍ ବଳୀ ॥୪୮॥**

ଉ. ସମସ୍ତଙ୍କ ସାମନାରେ ସେ ମହାବଳବାନ ଅସୁର ହଠାତ୍ କୃଷ୍ଣଙ୍କ ପାଖରେ ପହଞ୍ଚିଗଲା । ଆକ୍ରମଣ କଲା । ଚଟାପଟ୍ ଗିଳି ପକାଇଲା । ଏ କଥା ଦେଖି ବଳରାମ ଆଦି ସମସ୍ତ ଗୋପାଳ ବାଳକ ଅତ୍ୟନ୍ତ ଭୟରେ ଅଚେତ ହୋଇଗଲେ ।

ଠାକୁରଜୀ ସର୍ବଶକ୍ତିମାନ ସର୍ବେଶ୍ୱର । ସଙ୍ଗେ ସଙ୍ଗେ ବକାସୁର ମସ୍ତକକୁ ଅଗ୍ନି ଶକ୍ତିଦ୍ୱାରା ଅସହ୍ୟ ପୀଡ଼ା ଦେଲେ । ଫଳରେ ଅସୁର ତାଙ୍କୁ ଅକ୍ଷତ ଅବସ୍ଥାରେ ବାନ୍ତି କରି ପକାଇଲା । ଭଗବାନ ସଙ୍ଗେ ସଙ୍ଗେ ଦୁଇ ହାତରେ ତାର ଦୁଇ ଥଣ୍ଟକୁ ଧରି ଦୁଇ ଫାଳ କରିଦେଲେ । ବିଚରାର ବିପୁଳ ଦେହ ନିଷ୍ପ୍ରାଣ ହୋଇ ପଡ଼ିଗଲା । ଦେହରୁ ଆତ୍ମା-ଜ୍ୟୋତି ବାହାରି ଭଗବାନଙ୍କ ଦେହରେ ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହେଲା ।

କେହି କେହି ପ୍ରଶ୍ନ କରନ୍ତି ଭଗବାନଙ୍କର ଦିବ୍ୟ ବୃନ୍ଦାବନ ଲୀଳା ଏତେ ପବିତ୍ର । ସେଥିରେ ପୁଣି ଏ ଅପବିତ୍ର ଅସୁରମାନଙ୍କ ଉପଦ୍ରବର ବ୍ୟବସ୍ଥା କରାଗଲା

କିପରି ? ମହାତ୍ମାମାନଙ୍କ ମତରେ ଅନ୍ଧାର ନଥିଲେ ଆଲୋକର ମାଧୁର୍ଯ୍ୟ ରହେ ନା । ଖଳ ନାୟକ ନଥିଲେ ନାଟକ ଜମେ ନା । ତିକ୍ତ ଆଇଟମ୍ ନଥିଲେ କ୍ଷୀରି ପିଠାର ମଧୁରତା ଜାଣି ହୁଏନା । ବିନା ଉପବାସରେ ଭୋଜନ ସ୍ୱାଦ ବୁଝି ହୁଏନା । କଂସ (ପୂର୍ବ ଜନ୍ମର କାଳନେମୀ) ଶିଶୁପାଳ, ଦନ୍ତାବକ୍ର ଆଦି ସମସ୍ତେ ଭଗବାନଙ୍କର ଭକ୍ତ । ଅନ୍ୟାନ୍ୟ ଦ୍ୱାରକାଲୀଳାର ଭକ୍ତ ଓ ସେମାନଙ୍କ ମଧ୍ୟରେ କେବଳ ଏତିକି ପାର୍ଥକ୍ୟ ଯେ ସେମାନେ ଦ୍ୱେଷ ଭାବରେ ବା କାମ-ଭୟ-କ୍ରୋଧ ଆଦିରେ ନିଜ ମନକୁ ଅହରହ ଭଜନ, ଚିନ୍ତନ,ସ୍ମରଣରେ ଲଗାଇଥାନ୍ତି ।

ଅଧ୍ୟାତ୍ମ୍ୟ ଅର୍ଥରେ ମନୁଷ୍ୟ ମଧ୍ୟରେ ଶତ୍ରୁ ଭାବରେ ଲୁଚି ରହିଥିବା କପଟ ବା ଦମ୍ଭ ହିଁ ବକାସୁର । ସେ ଆମ ସମସ୍ତଙ୍କ ମନରେ ଲୁଚି ରହିଛି । ସେ ବଗ ଧଳା ରଙ୍ଗର ହୋଇ ଅନ୍ୟକୁ ପବିତ୍ର ନିରାମିଶାଷୀ ବୋଲି ଦେଖାଇ ହୁଏ । ପାଣି ଥିବା ସ୍ଥାନରେ ଚୁପ ଚାପ ଦେଖୁଥାଏ । ମାଛ କି ବେଙ୍ଗଟିଏ ପାଇ ଗିଳିବାକୁ । କିନ୍ତୁ ଦେଖାଇହୁଏ ସେ ଜଣେ ଅତ୍ୟନ୍ତ ଅନାସକ୍ତ ସାଧକ । ବଗ (ଦମ୍ଭୀ ସାଧକ) ବ୍ରହ୍ମ କୃଷ୍ଣଙ୍କୁ ଗିଳିଦେଲେ (ବହିରୁ କୃଷ୍ଣଙ୍କୁ ପଢ଼ି ଜାଣିଗଲେ) ମଧ୍ୟ ହଜମ କରିପାରେନା । ତାର ଅପଚ ଦୋଷ ହୁଏ । ସେ ବାନ୍ତି କରି ପକାଏ । ତାର ଥଣ୍ଟକୁ ଚିରିଦେଲେ ବା କପଟତା ପ୍ରକାଶ ପାଇଗଲେ ତାରି ବିନାଶ ହୋଇଥାଏ । ହରି ଶରଣ ଗଲେ ବିଚରା ଆଶ୍ରୟ ପାଇଥାଏ । ବକାସୁର ସେଥିପାଇଁ ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହୋଇ ଆମକୁ ଚେତାବନୀ ଦେଇଗଲେ ସାଧୁ ସାବଧାନ ! !

# ଅଥ ୧୨ଶ ଅଧ୍ୟାୟଃ

## (ବାଳ ବିନୋଦ ଲୀଳା ଓ ଅଘାସୁର(ପାପ ପ୍ରବୃତ୍ତି) ଉଦ୍ଧାର)

ପ୍ରଶ୍ନ-୪୬: ଦିବ୍ୟ ବୃନ୍ଦାବନର ଶୋଭା, ଯମୁନା ପୁଳିନର ଆକର୍ଷଣରେ ସ୍ୱୟଂ ବିଶ୍ୱନିୟନ୍ତା ଭଗବାନ ମଧ୍ୟ ଆତ୍ମହରା ହୋଇଯାଇଛନ୍ତି । ସେତେବେଳେ ଐଶ୍ୱର୍ଯ୍ୟ ଶକ୍ତି ପୁରା ଆତ୍ମଗୋପନ କରିଥାନ୍ତି । ସୁତରାଂ ବୃନ୍ଦାବନ ବିହାରୀଙ୍କର ରସମୟୀ ଆନନ୍ଦମୟୀ ଲୀଳାସବୁ ଅଧିକରୁ ଅଧିକ ମଧୁର ଓ ରସାଳ ହୋଇ ଉଠିଛନ୍ତି । ଆଜି

ସେ ଶ୍ରୁତିର ନିରାକାର ନିର୍ଗୁଣ ବ୍ରହ୍ମ ନୁହନ୍ତି । ଭାଗବତର ସଗୁଣ ସାକାର ରସରାଜ ନଟବର ବତ୍ସପାଳ । ସେ ଲୀଳା ମାଧ୍ୟମରେ ଭକ୍ତମାନଙ୍କୁ ସୂଚନା ଦେଉଛନ୍ତି ଯେ ସଂସାରର ସବୁ କଥାକୁ ଖେଳ ବୋଲି ଭାବ । ଆନନ୍ଦ ପାଇବ । ଅର୍ଜୁନଙ୍କ ସାରଥୀ ହେବା, ରାଜା ମହାରାଜା ମାନଙ୍କୁ ଏକାଠି କରି ଲଢ଼େଇ କରାଇବା, ସହସ୍ର ଗୋପୀମାନଙ୍କୁ ଧରି ରାସ ଉତ୍ସବ କରିବା ଓ ନିଜ ବଂଶର ପୁଅ ନାତିଙ୍କୁ ଏରକା ବନରେ ପିଟି ପାଟି ସେମାନଙ୍କ ପ୍ରାଣ ନାଶ କରାଇବା ସବୁ ତାଙ୍କ ପାଇଁ କେବଳ ଖେଳ । ଆମେ ସଂସାରରେ ଆମ ସୁଖ ଦୁଃଖକୁ ଖେଳ ନ ଭାବି ରସକୁ ଅରସ ଭାବି ବିରସ ହେଉଛେ ।

ଭଗବାନ ସେଦିନ ବଡ଼ ଭାଇ ବଳରାମଙ୍କୁ ମଧ୍ୟ ସାଙ୍ଗରେ ନେଇ ନଥାନ୍ତି । କାଳେ ଖେଳରେ ସଙ୍କୋଚ ଆସିଯିବ । ଗୃହଠାରୁ ଅନେକ ଦୂରକୁ ସେ ଗୋପାଳବାଳକ ଓ ସହସ୍ରସଂଖ୍ୟକ ଗୋବତ୍ସାଙ୍କୁ ନେଇ ଚାଲିଛନ୍ତି । ବାଛୁରୀମାନେ ଆଗେ ଆଗେ । ପଛେ ପଛେ ଗୋବିନ୍ଦ । ତାଙ୍କ ଆଗରେ ପଛରେ ଦାମ, ସୁଦାମ, ତୋକକୃଷ୍ଣ, ମଧୁ ମଙ୍ଗଳ ଆଦି ଅନେକ ସଖା । ସମସ୍ତଙ୍କ ମୁଖରେ ଅପାର ଆନନ୍ଦ । ଗୋପାଳମାନଙ୍କ ଅପରୂପ ବେଶ, ପୋଷାକ ଓ ଶୃଙ୍ଗାର ବିଷୟରେ ଶୁକଦେବଜୀ କିପରି କିଛି ବର୍ଣ୍ଣନ କଲେ ନାହିଁ ?

ଶ୍ରୀ ଶୁକ ଉବାଚ

**ବାଳ ପ୍ରବାଳ ସ୍ତବକ ସୁମନଃ ପିଚ୍ଛ ଧାତୁଭିଃ ।**
**କାଚ ଗୁଞ୍ଜା ମଣି ସ୍ୱର୍ଣ୍ଣ ଭୂଷିତା ଅପି-ଅଭୂଷନ୍ ॥୪॥**

ଉ. ବକ୍ତା ମହାଶୟ ଆଦୌ ଭୁଲି ନାହାନ୍ତି ସେ କଥା । ସେ କହିଲେ- ଘରୁ ବାହାରିବା ବେଳେ ମା'ମାନେ ସେମାନଙ୍କୁ କାଚ, ଗୁଞ୍ଜା (କାଇଁଚ), ମୋତି ଓ ସୁନା ଆଦି ଅଳଙ୍କାରରେ ସଜେଇ ଦେଇଥିଲେ । ତଥାପି ସେମାନେ ବଣର ଫୁଲ, ଫଳ, ଡ଼ାଳ, ମୟୁର ପୁଚ୍ଛ, ଗେରୁ ଆଦିରେ ନିଜେ ନିଜେ ନିଜକୁ ସଜାଇଲେ ଓ ଅନ୍ୟ ଗୋପାଳଙ୍କୁ ମଧ୍ୟ ସଜାଇ ଦେଲେ ।

ପ୍ରଶ୍ନ-୪୭: ସମସ୍ତେ ସମତାଳରେ ସିଙ୍ଗା ବଜାଇ, ତାଳି ମାରି କୃଷ୍ଣ ନାମ ସଂକୀର୍ତ୍ତନ କରି ଚାଲିଥାନ୍ତି । ବାଟ ଚାଲୁ ଚାଲୁ କୃଷ୍ଣଙ୍କ ଠାରୁ ଦୂରେଇ ଗଲେ ବାଜି ଲଗାଇ ଦୌଡ଼ନ୍ତି । କିଏ ପ୍ରଥମେ କୃଷ୍ଣଙ୍କୁ ଛୁଇଁବ । ଏତେ ସଂଖ୍ୟକ ବାଛୁରୀ, ଗୋପାଳ

ବାଳକଙ୍କୁ ଏକତ୍ର ସାଙ୍ଗରେ ଧରି ବଣ ବୁଦା ଜଙ୍ଗଲ ମଧ୍ୟରେ ଦଳବଳ ହୋଇ ଚାଲିବା ସମ୍ଭବ ହେଲା କିପରି ?

**କେଚିତ୍ ବେଣୁନ୍ ବାଦୟନ୍ତୋ ଧ୍ମାନ୍ତଃ ଶୃଙ୍ଗାଣି କେଚନ ।**
**କେଚିତ୍ ଭୃଙ୍ଗୈ ପ୍ରଗାୟନ୍ତଃ କୂଜନ୍ତଃ କୋକିଳୈଃ ପରେ ।।୭।।**

ଉ. ଠାକୁରଜୀଙ୍କର ଜନ୍ମ-ଜନ୍ମାନ୍ତରର ସାଥୀ ଅତି ପ୍ରିୟ ଦିବ୍ୟ ମୁରଲୀ, ବଂଶୀ ବା ବେଣୁ ଏ କାର୍ଯ୍ୟଟି ସମ୍ଭାଳି ନେଲେ । ସେ ବଂଶୀ କୌଣସି ସାଧାରଣ ବାଉଁଶ ନିର୍ମିତ ପ୍ରାକୃତ ବଂଶୀ ନୁହନ୍ତି । ସେ ସଂପୂର୍ଣ୍ଣ ଚିନ୍ମୟ ବଂଶୀ । ବଂଶୀଧରଙ୍କ ହାତରେ କେତେବେଳେ ଦୃଶ୍ୟ ତ ପୁଣି କେତେବେଳେ ଅଦୃଶ୍ୟ ରହନ୍ତି । ସ୍ମରଣ ମାତ୍ରକେ ଠାକୁରଜୀଙ୍କ କରକମଳରେ ପ୍ରକାଶିତ ହୁଅନ୍ତି । କାଳ କାଳ ଧରି ତପସ୍ୟା କରି କେହି ଭକ୍ତ ତାଙ୍କ ପାଦର ନୂପୁର, ହସ୍ତର କଙ୍କଣ, ମୁଦ୍ରିକା, ଦିବ୍ୟ ଅଙ୍ଗର ପାଟ ପୀତାମ୍ବର, ମୁକୁଟ ହେବାର ସୌଭାଗ୍ୟ ପ୍ରାପ୍ତ ହୁଅନ୍ତି । ଏହି ବଂଶୀ କେତେ ତପସ୍ୟା କରି ନଥିବ ତାଙ୍କର ଅଧର ଅମୃତ ପାନ କରିବା ଲକ୍ଷ୍ୟରେ ! ତାର ତପସ୍ୟା ଆଜି ସଫଳ ହୋଇଛି । ଯୋଗମାୟାଙ୍କ ଯୋଜନା ମୁତାବକ ଠାକୁରଜୀ ଗହନ ବନ ମଧ୍ୟରୁ ବ୍ରହ୍ମାଙ୍କ ମାଧ୍ୟମରେ ଏଇ ବଂଶୀକୁ ଠାବ କରିଛନ୍ତି । ସେଇ ବଂଶୀକୁ ବାଦନ କରି ଅସଂଖ୍ୟ ବତ୍ସ ଗୋପାଳଙ୍କ ଚିତ୍ତକୁ ଭଗବାନ ଆକର୍ଷଣ କରୁଥାଆନ୍ତି ।

ସଖାମାନେ ସିଙ୍ଗା ବଜାଉଥାନ୍ତି । କେହି କେହି ଭ୍ରମର, କୋକିଳ, ପାରାବତ, ହଂସ ଆଦିଙ୍କ ସ୍ୱର ପ୍ରକଟିତ କରି ବଂଶୀ ସ୍ୱନର ଅନୁସରଣ ସହିତ ଅନୁଗମନ କରୁଥାନ୍ତି ।

ଠାକୁରଜୀ ଟିକିଏ ବିଶ୍ରାମ ନେଲେ ଗୋଟିଏ ସୁନ୍ଦର କ୍ରୀଡ଼ାସ୍ଥଳୀ ଦେଖି । ଗୋପାଳମାନେ ଲାଗିଗଲେ ତାଙ୍କ ମନୋରଞ୍ଜନ କରିବାରେ । କେହି ଜଣେ ହଂସ ପରି ଢ଼ଳି ଢ଼ଳି ଚାଲୁଛି । ପୁଣି କେହି ଜଣେ ମର୍କଟ ଭଳି ଏ ଡ଼ାଳରୁ ସେ ଡ଼ାଳକୁ ଡେ଼ଇଁ ଧରୁଛି । କିଚିରି ମିଚିରି ରାବ କରୁଛି । କିଏ ବୃକ୍ଷ ଉପରେ ବସି ମୟୂର ଭଳି ଶବ୍ଦ କରୁଛି । କେହି କେହି ଯମୁନା ନଦୀକୁ ପହଁରି ବେଙ୍ଗ ଭଳି ଡ଼ିଆଁ ଖେଳ କୁଦ ଦେଖାଇଲେ । ସରୋବରରେ ସ୍ନାନ କରିବା ବେଳେ କିଏ କୁମ୍ଭୀର ହୋଇ ଜଳରେ ବୁଡ଼ି କାହାର ଗୋଡ଼ ଭିଡୁଥାଏ । ସେମାନେ ସବୁ କେତେ ଜନ୍ମ ଭଜନ କୀର୍ତ୍ତନ ତ୍ୟାଗ ତପସ୍ୟା ଗୁରୁ ବୈଷ୍ଣବ ସେବାକରି ତାଙ୍କ କୃପାର ପାତ୍ର ହେବାର ସୌଭାଗ୍ୟ ଲାଭ

କରିଛନ୍ତି । ଅପୂର୍ବ ସୁଯୋଗ ପାଇ ସେମାନେ ନାରାୟଣଙ୍କୁ ନରାକାରରେ ଦର୍ଶନ ସ୍ପର୍ଶ କରି ନିଜ ନିଜର ମନୋରଞ୍ଜନ କରୁଥାନ୍ତି ।

ପ୍ରଶ୍ନ-୪୮ : ଦିବ୍ୟ ବୃନ୍ଦାବନରେ ଭକ୍ତ ଭଗବାନ ସମସ୍ତେ ପ୍ରେମ କ୍ରୀଡ଼ାରେ ଆତ୍ମ ବିସ୍ମୃତ । ଆସି ପହଞ୍ଚିଲା କଂସ ରାଜାଙ୍କ ପ୍ରେରିତ ପୂତନା ଓ ବକାସୁରଙ୍କ ଭାଇ ଅଘାସୁର । ସେତେବେଳେ ସ୍ୱର୍ଗର ଦେବତାମାନେ ମଧ୍ୟ ତା ଦୌରାତ୍ମ୍ୟରେ ତ୍ରାହି ତ୍ରାହି ଡ଼ାକୁଥିଲେ । ସେ ଏକ ମହା ମାୟାବୀ ବଳବାନ ଅସୁର । ବୃନ୍ଦାବନରେ ପହଞ୍ଚି ସେ ପ୍ରକଟ ହେଲା ମହାକାୟ ସର୍ପ ରୂପରେ । ଲମ୍ବ ତାର ଆଠ ମାଇଲ । ମୁଖକୁ ଖୋଲି କ୍ରୀଡ଼ାସ୍ଥଳୀ ନିକଟରେ ଅଟକିଗଲା । ପାଟିର ତଳ ପାଖ ଭୂମିରେ ଓ ଉପର ପାଟି ଆକାଶକୁ ବ୍ୟାପି ଥାଏ । ଦାନ୍ତମାନ ଗିରି ଶୃଙ୍ଗ ସଦୃଶ । ମୁଖ ବିଶାଳ ପର୍ବତାକାର ଗୁମ୍ଫା ଭଳି । ଅଘାସୁରର ଚକ୍ଷୁର ଚଳନ ଜ୍ୱଳନ୍ତ ଅଗ୍ନି ପିଣ୍ଡୁଳା ଭଳି ଦେଖି ଗୋପାଳବାଳକମାନେ କ'ଣ ମନେକଲେ ?

**ଦୃଷ୍ଟ୍ୱା ତଂ ତାଦୃଶଂ ସର୍ବେ ମତ୍ୱା ବୃନ୍ଦାବନ ଶ୍ରିୟମ୍ ।**
**ବ୍ୟାତ୍ତ-ଅଜଗର ତୁଣ୍ଡେନ ହି-ଉତ୍ପ୍ରେକ୍ଷନ୍ତେ ସ୍ମ ଲୀଳୟା ॥୧୮॥**

ଉ. ପିଲାଏ ଭାବିଲେ, ଏ ଗୁମ୍ଫାଂ ବୃନ୍ଦାବନର ଏକ ମନୋହର ଆଦର୍ଶ କ୍ରୀଡ଼ାସ୍ଥଳ । ଆମର ଖେଳିବାକୁ ସୁବିଧା କରିବା ପାଇଁ ଏହାକୁ କେହି ହୁଏତ ଯତ୍ନର ସହିତ ନିର୍ମାଣ କରିଛି । ଅନ୍ୟ କେହି କେହି ଭାବିଲେ ହୁଏତ ଏ କଂସ ରାଜା ପ୍ରେରିତ କୌଣସି ଦୁଷ୍ଟ ଅସୁର ହୋଇଥାଇପାରେ । ଆମକୁ ଗିଳିବା ଲକ୍ଷ୍ୟରେ ପାଟି ଖୋଲା କରି ସୁଯୋଗ ଖୋଜୁଛି । ତେବେ କୌଣସି ନିଶ୍ଚିତ ମତରେ ପହଞ୍ଚି ନପାରି କୌତୁହଳ ବଶତଃ ହସି ହସି ଜଣକ ପରେ ଜଣେ ସେ ଗୁମ୍ଫାରେ ପଶିବାରେ ଲାଗିଲେ । ସକଳ ଗୋପାଳ ବାଳକ ମୁଖରେ ପଶିବା ପରେ ମଧ୍ୟ ଅଘାସୁର ପାଟି ବନ୍ଦ କରୁ ନଥାଏ । କାରଣ ତାର ଲକ୍ଷ୍ୟ ତ ଗୋବିନ୍ଦଙ୍କୁ ଗିଳିବା । ଭଗବାନ ଦେଖିଲେ ଗୋଟିଏ ଉପାୟ କଲେ ଦୁଇ ଲାଭ ହେବ । ନିଜେ ପଶି ସେ ଅସୁର ଭକ୍ତକୁ ଉଦ୍ଧାର କରିବେ ପୁଣି ଗୋପାଳ ବାଳକ ସଖା ଭକ୍ତଙ୍କର ମଧ୍ୟ ସଂରକ୍ଷଣ କରିପାରିବେ ।

କାଳ ବିଳମ୍ବ କଲେ ନି ଠାକୁରଜୀ । ଆନନ୍ଦରେ ପଶିଗଲେ ଅଘାସୁର ଖୋଲା ପାଟିରେ । ଏ ଦୃଶ୍ୟକୁ ମେଘ ଉହାଡ଼ରେ ଦେଖୁଥିଲେ ଦେବୀ ଦେବତାଗଣ । ସୂକ୍ଷ୍ମ ଲୋକରେ କଂସଙ୍କର ଅନ୍ୟାନ୍ୟ ଦୈତ୍ୟ ଅସୁରଗଣ । ସେତେବେଳେ ଦେବଗଣଙ୍କର ହା-ହାକାର ଓ ଅସୁରଗଣଙ୍କ ହାସ୍ୟରେ ଗଗନ ପବନ ମୁଖରିତ ହେଲା ।

ପ୍ରଶ୍ନ-୪୯: ବିନା କୌଣସି ଅସ୍ତ୍ରଶସ୍ତ୍ରରେ ଭଗବାନ ଅଘାସୁର ପାଟିରେ ପଶିଯାଇ କି ଅଦ୍ଭୁତ ଲୀଳା କଲେ ?

**ତତ୍ ଶ୍ରୁତ୍ୱା ଭଗବାନ୍ କୃଷ୍ଣଃ ତ୍ୱ-ଅବ୍ୟୟଃ ସ-ଅର୍ଭକ ବସ୍ତକମ୍ ।**
**ଚୂର୍ଣ୍ଣି ଚିକୀର୍ଷୋଃ ଆତ୍ମାନଂ ତରସା ବବୃଧେ ଗଳେ ।।୩୦।।**

ଉ. ଭଗବାନଙ୍କ ସବୁ ଲୀଳା ଅଦ୍ଭୁତ ଅଚିନ୍ତ୍ୟ ଓ ରସାଳ ମଧ୍ୟ । ସେ ସ୍ୱୟଂ ଅଜେୟ । ତୁରନ୍ତ (ତରସା) ସେ ଅସୁରର ଗଳା ମଧ୍ୟରେ ନିଜ କାୟା ବିସ୍ତାର କରି ବିଶ୍ୱରୂପ ହେବାକୁ ଚାହିଁଲେ । ଫଳତଃ ଅଘାସୁରଙ୍କର ମସ୍ତକ ବିଦୀର୍ଣ୍ଣ ହୋଇଗଲା । ତାର ଆଖି କୋଟରରୁ ବାହାରି ପଡ଼ିଲା । ପ୍ରାଣ ପବନ ଅଟକି ଗଲା । ଶ୍ୱାସରୁଦ୍ଧ ହୋଇ ବିଚରା କଚାଡ଼ି ହୋଇ ପଡ଼ିଲା । ବ୍ରହ୍ମରନ୍ଧ୍ର ଦେଇ ତାର ପ୍ରାଣ ପବନ ନିର୍ଗତ ହୋଇ ଠାକୁରଜୀଙ୍କର ଶ୍ରୀଅଙ୍ଗରେ ସ୍ଥାନ ପ୍ରାପ୍ତ ହେଲା ।

ଏଣେ ଭଗବାନ ଅମୃତ ଦୃଷ୍ଟିରେ ଚାହିଁଦେଲେ ଗୋପାଳ ବାଳକ ମାନଙ୍କୁ । ସମସ୍ତେ ନିଦ୍ରାରୁ ଉଠିବା ଭଳି ଅଘାସୁର ଉଦର ମଧ୍ୟରେ ଚେତନ ହେଲେ । ଠାକୁରଜୀଙ୍କ ପଛେ ପଛେ ସେଇ ବ୍ରହ୍ମରନ୍ଧ୍ରବାଟ ଦେଇ ବାହାରକୁ ଆସିଲେ । ସମସ୍ତେ ଯମୁନା ସ୍ନାନ କରି ଶୁଦ୍ଧ ପୁତ ହେଲେ ।

ଅଘାସୁର ଭଳି ପ୍ରଚଣ୍ଡ ବଳବାନ ମାୟାବୀ ଅସୁର ମୃତ୍ୟୁରେ ଇନ୍ଦ୍ର-ଚନ୍ଦ୍ର-ସୂର୍ଯ୍ୟ କ'ଣ ସ୍ୱୟଂ ବ୍ରହ୍ମା ଶଙ୍କର ମଧ୍ୟ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହେଲେ । ସେମାନେ ନାନା ସ୍ୱର୍ଗ ବାଦ୍ୟ ବାଦନ କଲେ । ଦେବତାମାନେ ସ୍ତୁତି କଲେ । ଋଷିମାନେ ପୁରୁଷ ସୂକ୍ତ ଉଚ୍ଚାରଣ କଲେ । ଅପ୍‌ସରାମାନେ ନୃତ୍ୟ କଲେ । ବିଷ୍ଣୁ ପାର୍ଷଦମାନେ ଜୟଧ୍ୱନି କଲେ । ସ୍ୱଃ, ମହ, ଜନ, ତପ ଓ ସତ୍ୟ ଲୋକରେ ମହା ଉତ୍ସବ ପାଳିତ ହେଲା । ଖବର ପାଇ ବ୍ରହ୍ମଲୋକରୁ ଆସି ଘଟଣାସ୍ଥଳରେ ପହଞ୍ଚିଲେ ବ୍ରହ୍ମଦେବ ସେ ସ୍ୱୟଂ ବୁଝିବେ ଘଟଣାର ସତ୍ୟାସତ୍ୟ । ଆକଳନ କରିବେ ଗୋଲୋକ ବିହାରୀ ଗୋବିନ୍ଦଙ୍କର ଶକ୍ତି କେତେ ! !

ପ୍ରଶ୍ନ-୫୦: ଅଘାସୁର ଉଦ୍ଧାର ଲୀଳା ଘଟିଲା ଯେତେବେଳେ ଶ୍ରୀକୃଷ୍ଣଙ୍କ ବୟସ ପାଞ୍ଚ ବର୍ଷ (କୌମାର ସମୟ) କିନ୍ତୁ ଗୋପାଳ ମାନେ ଏ ଘଟଣା ବ୍ରଜରେ ବର୍ଣ୍ଣନ କଲେ ବର୍ଷକ ପରେ । ସେତେବେଳକୁ ଭଗବାନଙ୍କ ବୟସ ଛଅ ବର୍ଷ (ପୌଗଣ୍ଡ ସମୟ) ହେଲାଣି । ଏଭଳି ବିଚିତ୍ର ବର୍ଣ୍ଣନାରେ ଚମକି ପଡ଼ିଲେ ରାଜା ପରୀକ୍ଷିତ । ସେ ଖୁବ୍ ସନ୍ତର୍ପଣରେ କଥା ଶ୍ରବଣ କରୁଥିଲେ । ସେ କିଭଳି ତାଙ୍କ ଅନ୍ତରର ସଂଶୟ ପ୍ରକଟ କଲେ ଶୁକଦେବଜୀଙ୍କ ସମ୍ମୁଖରେ ?

ରାଜା ଉବାଚ

ବ୍ରହ୍ମନ୍ କାଳ-ଅନ୍ତର କୃତଂ ତତ୍‌କାଳୀନଂ କଥଂ ଭବେତ୍ ।
ଯତ୍ କୌମାରେ ହରି କୃତଂ ଜଗୁଃ ପୌଗଣ୍ଡକେଽର୍ଭକାଃ ॥୪୧॥

ଉ. ମୁଖ୍ୟ ଶ୍ରୋତା ପରୀକ୍ଷିତଜୀ ପ୍ରକାଶ କରିଛନ୍ତି ଯେ ଏହା ତ ନିଶ୍ଚୟ ଏକ ଅତ୍ୟନ୍ତ ରହସ୍ୟମୟ ଘଟଣା । ଛଅ ବର୍ଷ ବୟସରେ କହିଲେ (ଜଗୁଃ) ପାଞ୍ଚ ବର୍ଷ ବୟସ ବେଳେ ଘଟିଥିବା ଅଘାସୁର ଉଦ୍ଧାର କଥା!!! ଏହା ଅବଶ୍ୟ ମାୟାଧର ମହାବିଷ୍ଣୁଙ୍କର ମାୟାଜାଲ ଅଟେ । ଜଣେ ମହାନ କୃଷ୍ଣ କଥା ଶ୍ରବଣ ପ୍ରେମୀଙ୍କ ଠାରୁ ଏଭଳି ସଂଶୟ ନିବାରଣକାରୀ ଅନୁରୋଧ ହେତୁ ସ୍ୱୟଂ ଶୁକଦେବଜୀ ଅଧିକତର ଗଭୀର ଧ୍ୟାନ ମଗ୍ନ ହୋଇଗଲେ । ଧ୍ୟାନରୁ ଉଠି ଉତ୍ତର ଦେବାକୁ ଆରମ୍ଭ କଲେ ।

## ଅଥ ୧୩ଶ ଅଧ୍ୟାୟଃ

### (ସୃଷ୍ଟିକର୍ତ୍ତା ବ୍ରହ୍ମାଜୀଙ୍କ ବତ୍ସାହରଣ ମୋହ ଓ ମୋହଭଙ୍ଗ ଲୀଳା)

ପ୍ରଶ୍ନ-୫୧: ବକ୍ତା ଶିରୋମଣି ପ୍ରଶ୍ନ ଲାଗି ସାଧୁବାଦ ଜଣାଇଲେ ଶ୍ରୋତା ରତ୍ନ ପରୀକ୍ଷିତଙ୍କୁ । କହିଲେ,''ପରମହଂସ ସନ୍ଥମାନେ କେବଳ କୃଷ୍ଣକଥା ଶ୍ରବଣ କରନ୍ତି । ସେମାନଙ୍କର ଜୀବନର ଏକମାତ୍ର ଲକ୍ଷ୍ୟ କୃଷ୍ଣକଥା ଶ୍ରବଣ, କୀର୍ତ୍ତନ, ଆନନ୍ଦ ପ୍ରାପ୍ତି । ସେମାନଙ୍କୁ କୃଷ୍ଣକଥା ନିତ୍ୟ ନୂତନ ଲାଗୁଥାଏ, ଠିକ୍ ଯେମିତି କାମୁକ ପୁରୁଷଙ୍କୁ ନାରୀ ପ୍ରସଙ୍ଗ । ଅତି ଗୁହ୍ୟତମ ଜ୍ଞାନ ସଦ୍‌ଗୁରୁ କେବଳ ତାଙ୍କ ପ୍ରିୟ ଶିଷ୍ୟକୁ କହିଥାନ୍ତି । ସମସ୍ତଙ୍କୁ ନୁହେଁ । ତେବେ ଏ ରହସ୍ୟ ସୃଷ୍ଟିକର୍ତ୍ତା ବ୍ରହ୍ମାଜୀଙ୍କର ବୁଦ୍ଧିକୁ ବଶ କରିଥିଲା ବୋଲି ଜାଣି ରଖ, ପରୀକ୍ଷିତ ।''

ଅଘାସୁର ଉଦ୍ଧାର ପରେ ପରେ ଭଗବାନ ସଖାମାନଙ୍କୁ ଏକ ସୁନ୍ଦର ସ୍ଥାନକୁ ଡ଼ାକି ନେଲେ । ଭୋଜନ ଥାଳୀ ନାମରେ ବୃନ୍ଦାବନ ୮୪କ୍ରୋଶ ପରିକ୍ରମା କରିବା ବେଳେ ଏହା ଆଜି ବି ଦର୍ଶନୀୟ । ଭଗବାନଙ୍କ ପରମ ପ୍ରେମରେ ସେ ସ୍ଥାନର ପଥର ମଧ୍ୟ ତରଳି ଯାଇଛି । ପଥରରେ ଥାଳି, ଗିନାଙ୍କର ଚିହ୍ନ ଏବେ ବି ଦେଖିଲେ କୃଷ୍ଣଭକ୍ତମାନେ ପୁଲକିତ ହୁଅନ୍ତି । ଲୋତକ ବିସର୍ଜନ କରନ୍ତି । ପରମ ଆନନ୍ଦରେ ଭଗବାନ ଗୋପାଳବାଳକମାନଙ୍କୁ ସେଠାରେ କି ଆଦେଶ ଦେଲେ ?

ଶ୍ରୀ ଶୁକ ଉବାଚ

**ଅତ୍ର ଭୋକ୍ତବ୍ୟଂ ଅସ୍ମାଭିଃ ଦିବା-ଆରୂଢ଼ଂ କ୍ଷୁଧା-ଅର୍ଦ୍ଦିତାଃ ।**
**ବତ୍ସାଃ ସମୀପେଽପଃ ପୀତ୍ୱା ଚରନ୍ତୁ ଶନକୈଃ ତୃଣମ୍ ॥୬॥**

ଉ. କୋମଳ କଣ୍ଠରେ ଠାକୁରଜୀ କହିଲେ, ''ପିଲାଏ, ଏଠିକି ଆସ । ସମସ୍ତେ ଗୋଲ ଆକାରରେ ବସ । ଦିନ ଆସି ଅପରାହ୍ନ ହେଲାଣି । ସମସ୍ତଙ୍କୁ ଭୋକ ବି ଲାଗିଲାଣି । ବାଛୁରୀମାନେ ଏଇ ପାଖରେ କଅଁଳ ଘାସ ଚରୁଥାନ୍ତୁ । ନଦୀ କୂଳରେ ସେମାନେ ରହିବେ । ଆମେ ଏକାଠି ବସି ନିଜ ନିଜ ଘରୁ ଆଣିଥିବା ଭୋଜନ ଦ୍ରବ୍ୟ ଖାଇବା ।'' ସ୍ୱୟଂ ଠାକୁରଜୀ ସମସ୍ତଙ୍କ ମଝିରେ ବସିଗଲେ । ସ୍ୱର୍ଗରେ ବ୍ରହ୍ମାଦି ଦେବତା ମାନେ ଏ ଅପୂର୍ବ ଦୃଶ୍ୟ ଉପଭୋଗ କରୁଥାନ୍ତି । ସେତେବେଳେ ମନେ ହେଉଥିଲା ଭଗବାନ ସ୍ୱୟଂ ଏକ ପଦ୍ମକେଶର । ଗୋପାଳବାଳକ ମାନେ ସେହି ଦିବ୍ୟ ପଦ୍ମପୁଷ୍ପର ଗୋଟିଏ ଗୋଟିଏ ପାଖୁଡ଼ା । କୃଷ୍ଣ ସଖାମାନେ ନାନା ପତ୍ର ଆଣି ଦନା ତିଆରି କଲେ । ନିଜ ନିଜ ଘରୁ ଆଣିଥିବା ସୁସ୍ୱାଦୁ ଭୋଜନ ଦ୍ରବ୍ୟକୁ ନିଜେ ହସି ଅନ୍ୟକୁ ହସାଇ ପତ୍ରରେ ବାଢୁଥାନ୍ତି ଖାଇବେ ବୋଲି । ବଣଭୋଜି ଲୀଳାର ଶୁଭାରମ୍ଭ ହେଲା ।

ପ୍ରଶ୍ନ-୫୨ : ଏତେ ସୁନ୍ଦର ବଣଭୋଜିରେ ଠାକୁରଜୀଙ୍କ ଦିବ୍ୟ ଶୃଙ୍ଗାର ହାବ ଭାବକୁ ଶ୍ରୀଶୁକଦେବ ପରମହଂସ କିଭଳି ଶବ୍ଦରେ ବର୍ଣ୍ଣନ କଲେ ?

**ବିଭ୍ରତ୍ ବେଣୁଂ ଜଠର ପଟୟୋଃ ଶୃଙ୍ଗ ବେତ୍ର ଚ କକ୍ଷେ**
**ବାମେ ପାଣୌ ମସୃଣ କବଳଂ ତତ୍‌ଫଳାନି-ଅଙ୍ଗୁଳୀଷୁ ।**
**ତିଷ୍ଠନ୍ ମଧ୍ୟେ ସ୍ୱପରି ସୁହୃଦୋ ହାସୟନ୍ ନର୍ମଭିଃ ସ୍ୱୈଃ**
**ସ୍ୱର୍ଗେ ଲୋକେ ମିଷତି ବୁଭୁଜେ ଯଜ୍ଞଭୁକ୍ ବାଳକେଳିଃ ॥୧୧॥**

ଉ. ଶୂନ୍ୟରେ ଥାଇ ଦେଖୁଥାନ୍ତି ବ୍ରହ୍ମାଦି ଦେବଗଣ ଏ ଅଦ୍ଭୁତ ଦୃଶ୍ୟ । ଭଗବାନ ଅଣ୍ଟାରେ ଖୋସିଛନ୍ତି ବେଣୁ ଓ ଗୋସିଙ୍ଗା । ବାମ କାଖରେ ଜାକିଛନ୍ତି ବେତବାଡ଼ି । ହାତରେ ଦଧି ମିଶ୍ରିତ ଅନ୍ନ ଗ୍ରାସ । ଆଙ୍ଗୁଳି ମଝିରେ ଫଳ ଆଚାର କିଛି । ଚାରିପଟେ ବେଢ଼ି ବସିଥାନ୍ତି ଗୋପାଳ ସଖା ବୃନ୍ଦ । ଭଗବାନ ମଝିରେ ବସି ସେମାନଙ୍କ ସଙ୍ଗରେ ହସ କୌତୁକରେ ମଜି ଯାଇଛନ୍ତି । ତ୍ରିଲୋକରେ ସକଳ ଯଜ୍ଞର ଭୋକ୍ତା ଯେଉଁ ନାରାୟଣ ସେ ଆଜି ବାଳକ ମେଳରେ ବସି ବଣଭୋଜିରେ ବ୍ୟସ୍ତ । ନିଜେ ଖାଇ ଅନ୍ୟକୁ ନିଜ ଉଚ୍ଛିଷ୍ଟ ଖୁଆଇ ଆନନ୍ଦ ଲୁଟୁଛନ୍ତି । ଭକ୍ତ ଓ ଭଗବାନ ସମସ୍ତେ ତ

ପିଲା । ତଥାପି ବ୍ରହ୍ମାଜୀ ଭାବିଲେ, ଏହା ବେଦ ବିରୁଦ୍ଧ କର୍ମ । ପୂର୍ବରୁ ଅଘାସୁର(ପାପ)କୁ ମାରି ନିଜେ ତାର ଆତ୍ମାକୁ ସାଯୁଜ୍ୟ ମୁକ୍ତି ଦେବା କେଉଁ ନ୍ୟାୟ । ଭଗବାନ ସ୍ୱୟଂ ନ୍ୟାୟ ସ୍ୱରୂପ ଓ ନ୍ୟାୟବାନ୍ । ଅତଏବ ତାଙ୍କୁ ଭଗବାନ ବୋଲି ଗ୍ରହଣ କରିବା ପୂର୍ବରୁ ତାଙ୍କର କିଛି ପରୀକ୍ଷା ଆବଶ୍ୟକ । ତେଣେ ବାଛୁରୀମାନେ କୋମଳ ତୃଣ ଲୋଭରେ ଦୂରକୁ ଚାଲିଗଲେଣି । ବ୍ରହ୍ମାଜୀ ଦେଖିଲେ, ବଢ଼ିଆ ସୁଯୋଗ । ସେ ସଙ୍ଗେ ସଙ୍ଗେ ତଳକୁ ଅବତରଣ କଲେ । ଯୋଗ ବଳରେ ବାଛୁରୀମାନଙ୍କୁ ନିଜ କମଣ୍ଡଳୁରେ ଲୁଚେଇ ଦେଲେ । ପରେ ପରେ ଗୋପାଳବାଳକମାନେ ଆସନ୍ତେ ସେମାନଙ୍କୁ ମଧ୍ୟ କମଣ୍ଡଳୁରେ ରଖିନେଲେ । ସନ୍ଧ୍ୟା ସମୟ ଉପସ୍ଥିତ । ବ୍ରହ୍ମାଜୀ ଫେରିଗଲେ ବ୍ରହ୍ମଲୋକକୁ ସଂଧ୍ୟା ବନ୍ଦନା କରିବେ ଭଗବାନଙ୍କୁ । ଏଣେ ଠାକୁରଜୀ ବାଛୁରୀ ଓ ଗୋପାଳ ବାଳକ ଖୋଜି ବାହାରିଲେ । ଦେଖିଲେ ବାଛୁରୀ ଉଭାନ୍ । ଭୋଜନ ସ୍ଥଳୀକୁ ଆସି ଦେଖିଲେ,କ ପିଲାଙ୍କର ସେଇ ଦଶା । ଟିକିଏ ଧ୍ୟାନ କରି ସର୍ବଜ୍ଞ ଭଗବାନ ଦେଖିଲେ, ଏସବୁ ଦାଢ଼ିଆ ବାବା ବ୍ରହ୍ମାଜୀଙ୍କ କାଣ୍ଡ । ବତ୍ସ ବାଳକ ହରଣ ସବୁ ବ୍ରହ୍ମାକୃତ ନିଶ୍ଚୟ ।

ପ୍ରଶ୍ନ-୫୩: ସମଗ୍ର କୃଷ୍ଣ ଲୀଳାରେ ବ୍ରହ୍ମ ବିମୋହନ ଲୀଳା ଏକ ଚମତ୍କାର ପ୍ରସଙ୍ଗ । ସୃଷ୍ଟି ଆରମ୍ଭରେ ରଜଗୁଣୀ ବ୍ରହ୍ମା ସୃଷ୍ଟି କରିବାକୁ ଅମଙ୍ଗ ହେଉଥିଲେ । କାଳେ ସେ ସ୍ୱୟଂ ନାରାୟଣଙ୍କ ମାୟାର ଶିକାର ହୋଇଯିବେ । ଭଗବାନ ତାଙ୍କୁ ଚତୁଃଶ୍ଲୋକୀ ଭାଗବତ ତତ୍ତ୍ୱଜ୍ଞାନ ପ୍ରଦାନ କଲେ । କଥା ଦେଇଥିଲେ ଏହି ତତ୍ତ୍ୱଜ୍ଞାନ ଚିନ୍ତନ ଓ ସ୍ମରଣ ବଳରେ ସେ ମାୟାଜାଲରେ ପଡ଼ିବେ ନାହିଁ । ଏବେ ସେଇ ବହ୍ମା ନାରାୟଣଙ୍କ ମୂଳ ଉତ୍ସ କୃଷ୍ଣଙ୍କୁ ବୁଝିବାରେ ଅକ୍ଷମ । ତାଙ୍କ ଲୀଳାରେ ବିଘ୍ନ କଲେଣି । ବ୍ରହ୍ମାଙ୍କର(କସ୍ୟ) ମୋହଭଙ୍ଗ କରିବାକୁ ହେବ ।

ଅନ୍ୟ ପକ୍ଷରେ ଅନେକ ଦେବୀ ଦେବତା ଋଷି, ମହାଋଷି, ଗୋପାଳୁଣୀ, ଗାଈ ହୋଇ ମନଦୁଃଖ କରୁଛନ୍ତି ଯେ-ସେମାନେ ଭଗବାନଙ୍କୁ ସ୍ତନ୍ୟପାନ କରାଇବା ସୁଖରୁ ବଞ୍ଚିତ ହେଉଛନ୍ତି ବୋଲି । ଯଶୋଦା ମା'ଏକାକୀ ସେ ସୌଭାଗ୍ୟର ଅଧିକାରିଣୀ ହୋଇଛନ୍ତି । ସେହି ମାତା ମାନଙ୍କର ମଣୋହୀ ସନ୍ତ୍ୟପାନ କରିବାକୁ ହେବ । ସୁତରାଂ ଏହି ଦୁଇ କଥାର ସମାଧାନ ଲାଗି ଭଗବାନ କି ଲୀଳା ଅନୁଷ୍ଠାନ କଲେ ?

**ତତଃ କୃଷ୍ଣୋ ମୁଦଂ କର୍ତ୍ତୁଂ ତତ୍‌ମାତୃଣାଂ ଚ କସ୍ୟ ଚ ।**
**ଉଭୟ-ଆୟିତଂ ଆତ୍ମାନଂ ଚକ୍ରେ ବିଶ୍ୱକୃତ ଈଶ୍ୱରଃ ॥୧୮॥**

ଉ. ବ୍ରହ୍ମାଙ୍କୁ ଓ ଗୋମାତା-ଗୋପାଳମାତା ବୃନ୍ଦଙ୍କୁ ଲୀଳା ମାଧ୍ୟମରେ ଆନନ୍ଦ ଦେବାକୁ ନିଷ୍ପତ୍ତି କଲେ । ଠାକୁରଜୀ (ଈଶ୍ୱରଃ) ସ୍ୱୟଂ ହଜିଥିବା ସକଳ ବାଛୁରୀ ଓ ଗୋପାଳଙ୍କର ସେଇ ସେଇ ଅବିକଳ ରୂପ ଧାରଣ କଲେ । ଯୋଗାମାୟାଙ୍କର ଅଚିନ୍ତ୍ୟ ଲୀଳାଶକ୍ତି ତାଙ୍କ କାମ ଦେଖାଇଲେ ।

ଲୀଳାଶକ୍ତି ଜଣାଇଦେଲେ ଯେ ସର୍ବଂ କୃଷ୍ଣମୟଂ ଇଦଂ ଜଗତ୍ । ଯେତିକି ସଂଖ୍ୟକ ବାଛୁରୀ-ବାଳକ ଥିଲେ କୃଷ୍ଣଙ୍କର ହେଲା ସେତିକି ରୂପ । ସମାନ ରଙ୍ଗ, ଢ଼ଙ୍ଗ, ମାପର କର, ପଦ, ଚକ୍ଷୁ, କଳା ଜାଇ, ସମାନ ଶୀଳ, ଗୁଣ, କଥାବାର୍ତ୍ତାର ସ୍ୱର, ବେତ, ସିଙ୍ଗା, ବସନ, ଭୂଷଣ ଆଦି ସକଳ ବସ୍ତୁ ବ୍ୟକ୍ତି ଚିନ୍ମୟ ରୂପରେ ଭଗବାନ ସେଠାରେ ପ୍ରକଟ ହୋଇଗଲେ ।

ବର୍ଷେ କାଳ ସ୍ୱୟଂ କୃଷ୍ଣ ସଶରୀରେ ସମସ୍ତଙ୍କ ଗୃହକୁ ଯାଆନ୍ତି, ବାଛୁରୀ ଗୋଠ ସମ୍ଭାଳନ୍ତି । ବାଛୁରୀ ରୂପରେ ଗାଈମାନଙ୍କ ଠାରୁ ଦୁଧ ପାନ କରନ୍ତି । ବାଳକ ରୂପରେ ଗୋପାଳୁଣୀମାନଙ୍କୁ ଆନନ୍ଦ ପ୍ରଦାନ କରନ୍ତି । ମା'ମାନେ ଏବେ ପ୍ରାକୃତ ପୁତ୍ର ବଦଳରେ ଚିନ୍ମୟ କୃଷ୍ଣଙ୍କୁ ତେଲ ଲଗାନ୍ତି, ସ୍ନାନ, ଶୃଙ୍ଗାର, ଭୋଜନ କରାନ୍ତି । ସ୍ପର୍ଶ ଆଲିଙ୍ଗନ ସହିତ ସ୍ତନ୍ୟପାନ ମଧ୍ୟ କରାନ୍ତି ।

ଇତି ମଧ୍ୟରେ ଶାଣ୍ଡିଲ୍ୟ ମୁନି ଘୋଷଣା କଲେ ଆଗକୁ ଅନେକ ଦିନ ପର୍ଯ୍ୟନ୍ତ ବିବାହ ଲଗ୍ନ ନାହିଁ । ସେତେବେଳେ ପିଲା କନ୍ୟା ବିବାହ ପ୍ରଚଳିତ ଥାଏ । ସୁତରାଂ ବାଳକ ରୂପ ଧାରୀ କୃଷ୍ଣ ବୃନ୍ଦାବନର ସକଳ ଗୋପୀ ବାଳିକାମାନଙ୍କୁ ବିବାହ କରିଗଲେ । କେହି ଜାଣିପାରିଲେନି ଏ ଯୋଗମାୟାଙ୍କ ରହସ୍ୟ । ସମସ୍ତେ ଲକ୍ଷ୍ୟ କଲେ ଯେ ବର୍ଷକ ପୂର୍ବେ ଗାଈମାନେ ତାଙ୍କ ବାଛୁରୀକୁ ଓ ଗୋପାଳୁଣୀମାନେ ସେମାନଙ୍କ ସନ୍ତାନଙ୍କୁ ଯେତିକି ଭଲ ପାଉଥିଲେ ଆଦର କରୁଥିଲେ ଏବେ ତାଠୁ ବେଶୀ ଆଦର କରୁଛନ୍ତି । କେହି କିଛି ଏହାର କାରଣ ନିର୍ଦ୍ଦେଶ କରି ପାରନ୍ତି ନାହିଁ । ଲୀଳାକୁ ବର୍ଷେ ପୁରିବାକୁ ପାଞ୍ଚ ଛଅଦିନ ଥାଏ ।

ପ୍ରଶ୍ନ-୫୪: ବଳରାମଜୀ କିପରି ଜାଣିପାରିଲେ ଯେ ଏ ବାଛୁରୀମାନେ ଓ ଗୋପାଳବାଳକମାନେ ବ୍ରହ୍ମାଙ୍କ ସୃଷ୍ଟ ଜୀବ ନୁହନ୍ତି ?

**ସମେତ୍ୟ ଗାବୋଽଧୋ ବତ୍ସାନ୍ ବତ୍ସବତ୍ୟୋଽପି-ଅପ୍ୟପାୟୟନ୍ ।**
**ଗିଳନ୍ତ୍ୟ ଇବ ଚ-ଅଙ୍ଗାନି ଲିହନ୍ତ୍ୟଃ ସ୍ୱ-ଓଧସଂ ପୟଃ ॥୩୧॥**

ଉ. ଦିନେ ଏକ ଅତ୍ୟନ୍ତ କୌତୁକପୂର୍ଣ୍ଣ ଘଟଣା ଘଟିଲା । ଯମୁନା କୂଳରେ

ସବସ୍ଥା ଗାଈମାନେ ଚରୁଥାନ୍ତି । ସେମାନଙ୍କର ନୂତନ ବାଛୁରୀମାନେ ତାଙ୍କ ସାଙ୍ଗରେ ଥାଆନ୍ତି କାରଣ କୃଷ୍ଣ ହୋଇଥିବା ବାଛୁରୀମାନଙ୍କୁ ବର୍ଷେ ଲେଖାଏଁ ବୟସ ହୋଇଯାଇଥାଏ । ବାଛୁରୀ ଗୋଠକୁ ଧରି ଶ୍ରୀକୃଷ୍ଣ ଓ ଅନ୍ୟ ଗୋପାଳବାଳକମାନେ ଗାଈମାନଙ୍କ ପାଖରେ ପହଞ୍ଚିଗଲେ କିନ୍ତୁ କି ଆଶ୍ଚର୍ଯ୍ୟ କଥା ! ! ସେ ଗାଈମାନେ ନୂଆ ବାଛୁରୀଙ୍କୁ ଛାଡ଼ି ପୁରୁଣା ବାଛୁରୀମାନଙ୍କୁ ଦୁଗ୍ଧ ପାନ କରାଇବାରେ ଲାଗିଲେ । ସେମାନଙ୍କୁ ଏତେ ଆଦରରେ ଚାଟି ପକାଉଥିଲେ ଯେ ମନେ ହେଉଥିଲା ସତେ ଯେମିତିକି ସେମାନେ ସେହି ସେହି ବାଛୁରୀମାନଙ୍କୁ ଗୋଟାସୁଦ୍ଧା ଗିଳି ପକାଇବେ । ବାଛୁରୀମାନଙ୍କୁ ଦେଖୁ ଦେଖୁ ସେମାନଙ୍କ ଥନମାନଙ୍କରୁ ଝରଣା ଭଳି ସ୍ୱତଃ ଦୁଗ୍ଧ ସ୍ରବିବାରେ ଲାଗିଲା । ଏଭଳି ଅହେତୁକ ଆକର୍ଷଣ ଗାଈ-ବାଛୁରୀଙ୍କ ଠାରେ ଦେଖି ବଳରାମଜୀ ଚକିତ ହେଲେ । ଧ୍ୟାନ କରି ଜାଣିଗଲେ ଯେ ଏହି ପୁରୁଣା ବାଛୁରୀ ସକଳ କୃଷ୍ଣଙ୍କ ବିଶ୍ୱରୂପ ।

ପ୍ରଶ୍ନ-୫୫: ଏ ଲୀଳା ବର୍ଷେ କାଳ ଚାଲିଥିଲା । ବ୍ରହ୍ମାଜୀ ସଂଧ୍ୟା ବନ୍ଦନା କରିବାକୁ ଯାଇ ବ୍ରହ୍ମଲୋକରେ ମଧ୍ୟ ଅପଦସ୍ତ ହେଲେ । ତାଙ୍କ ଆସନ ତାଙ୍କୁ ଦିଆଯାଉ ନାହିଁ । କାରଣ ସେ ବ୍ରହ୍ମଲୋକ ପହଞ୍ଚିବା ପୂର୍ବରୁ ଭଗବାନ କୃଷ୍ଣ ବ୍ରହ୍ମା ରୂପରେ ସେଠାକୁ ଯାଇ ବ୍ରହ୍ମଲୋକର କର୍ମଚାରୀମାନଙ୍କୁ ସାବଧାନ କରାଇ ଦେଇଥିଲେ ଯେ ଜଣେ ନକଲି ବ୍ରହ୍ମା ବୁଲୁଛନ୍ତି । ସେ ଆସିଲେ ତାଙ୍କୁ ଭିତରକୁ ଛାଡ଼ିବ ନାହିଁ । ସେ ନିଜେ ବ୍ରହ୍ମା ଆସନରେ ବସିଗଲେ ।

ବ୍ରହ୍ମାଜୀ ନିରାଶ ହୋଇ ବଣଭୋଜି ସ୍ଥଳକୁ ଆସି ଦେଖିଲେ ଅବସ୍ଥା ଆହୁରି ଖରାପ । ତାଙ୍କ ମୁଣ୍ଡ କାମ କରୁନଥାଏ । ସେ ଦେଖିଲେ ଗୋପାଳ-ବାଛୁରୀଙ୍କ ଅଭାବ ନାହିଁ । ସେମାନେ ସମସ୍ତେ ଆନନ୍ଦରେ ଡ଼େଉଁଛନ୍ତି କୃଷ୍ଣଙ୍କ ସାଙ୍ଗରେ । ନିଜ କମଣ୍ଡଳୁ ଦେଖିଲେ-ସେମାନେ ପୂର୍ବଭଳି ସେଥିରେ ମଧ୍ୟ ଅଛନ୍ତି । ଧ୍ୟାନରେ ବସିଗଲେ ବ୍ରହ୍ମାଜୀ । ବୁଝିଲେ ଚିନ୍ମୟ କୃଷ୍ଣ ଏବେ ବିଶ୍ୱମୟ ହୋଇଯାଇଛନ୍ତି । ନିଶ୍ଚୟ କଲେ କୃଷ୍ଣ ଶରଣାଗତି ଦ୍ୱାରା ସେ କେବଳ ତାଙ୍କ ମନ ମସ୍ତିଷ୍କକୁ ବୁଝାଇପାରିବେ । ଅତଏବ ଅନ୍ୟ ଉପାୟ ନ ଦେଖି ଗୋପାଳ-ବାଛୁରୀମାନଙ୍କୁ କମଣ୍ଡଳରୁ ଛାଡ଼ି ଦେଲେ । କାରଣ ସେ ବୁଝିପାରୁନଥାନ୍ତି ସେ ସୃଷ୍ଟି-ଏ ସୃଷ୍ଟି ମଧ୍ୟରେ ଅସଲି ବାଳକ ବାଛୁରୀ କିଏ ଓ ନକଲି ବାଳକ-ବାଛୁରୀ କିଏ ବୋଲି । ଶେଷରେ ଏ ଦିବ୍ୟଲୀଳାରେ ସୃଷ୍ଟିକର୍ତ୍ତା ବ୍ରହ୍ମଦେବଙ୍କର କି ଦୁରବସ୍ଥା ହେଲା ?

॥ ଅପଣ୍ଡିତ ଦାମୋଦର ବହୀୟାରସିଂହ ॥

ଏବଂ ସମ୍ମୋହୟନ୍ ବିଷ୍ଣୁଂ ବିମୋହଂ ବିଶ୍ୱମୋହନମ୍ ।
ସ୍ୱୟା-ଏବ ମାୟୟା-ଅଜୋଽପି ସ୍ୱୟଂ ଏବ ବିମୋହିତଃ ॥୪୪॥

ଉ. ସାରା ସୃଷ୍ଟିର ଜୀବକୁ ବ୍ରହ୍ମାଙ୍କ ମାୟା ମୋହିତ କରିପାରନ୍ତି । ସେ ଅଣ୍ଟା ଭିଡ଼ିଥିଲେ ନିଜ ମାୟାରେ କୃଷ୍ଣ (ବିଷ୍ଣୁ) ଙ୍କୁ ମଧ୍ୟ ମୋହିତ କରି ଲୀଳାରେ ବିଘ୍ନ କରାଇ ତାଙ୍କୁ ପରୀକ୍ଷା କରିବେ । ହେଲେ ଫଳ ଫଳିଲା ସମ୍ପୂର୍ଣ୍ଣ ବିପରୀତ, ଓଲଟ । ଏବେ ନିଜ ବ୍ରହ୍ମା ପଦବୀ ହରାଇବାର ଭୟ ତାଙ୍କୁ ବ୍ୟଥିତ କଲାଣି । ସେ ଅଜନ୍ମା(ଅଜ) ନାରାୟଣଙ୍କ ଆତ୍ମଜ ହୋଇ ଶ୍ରୀକୃଷ୍ଣଙ୍କ ଲୀଳାଶକ୍ତ ଏବଂ ଐଶ୍ୱର୍ଯ୍ୟ ଶକ୍ତିଙ୍କ ମିଳିତ ଆକ୍ରମଣରେ ସ୍ୱୟଂ ମୋହିତ ହୋଇ ପରାଜୟ ସ୍ୱୀକାର କଲେ ।

ବ୍ରହ୍ମାଜୀଙ୍କ ବୁଦ୍ଧିର ଶୋଚନୀୟ ବିପର୍ଯ୍ୟୟ ଦେଖି ଭଗବାନ କୃପାକଲେ । ଯୋଗମାୟାଙ୍କ ପରଦା ହଟାଇ ନେଲେ । ବ୍ରହ୍ମାଜୀଙ୍କ ଚୈତନ୍ୟ ଫେରିଲା । ମଲାଲୋକ ବଞ୍ଚିବା ଭଳି ସେ ମୋହ ନିଦ୍ରାରୁ ଉଠିଲେ । ଏବେ ନିଜକୁ, କୃଷ୍ଣମୟ ବ୍ରହ୍ମାଣ୍ଡ ସହିତ ଦିବ୍ୟ ବୃନ୍ଦାବନର ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷଲତା, ବନ, ପର୍ବତ, ନଦୀ, ଝରଣାଦିଙ୍କର ଚିନ୍ମୟ ରୂପରେ ଦର୍ଶନ କଲେ ।

ସୁନା ଛଡ଼ିଟିଏ ଭୂମିରେ ପଡ଼ିବା ଭଳି ବ୍ରହ୍ମାଜୀ ଦଣ୍ଡବତ ପ୍ରଣାମ କଲେ ଛଅବର୍ଷର ବାଳକୃଷ୍ଣଙ୍କୁ । ଚାରି ଦିବ୍ୟ ମୁକୁଟଯୁକ୍ତ ଚାରି ମସ୍ତକ ସ୍ପର୍ଶ କରାଇଲେ ଠାକୁରଜୀଙ୍କର ଚରଣ କମଳରେ । ନିଜ ଆଠ ନେତ୍ରଙ୍କର ଅଶ୍ରୁଜଳରେ ଅଭିଷିକ୍ତ କଲେ ପ୍ରଭୁଙ୍କର ଚରଣ ଯୁଗଳ । ସେତେବେଳେ ସେ ୪୨ଶ୍ଳୋକରେ ଯେଉଁ ସ୍ତୁତି କରିଥିଲେ ତାହା ବର୍ଣ୍ଣିତ ହେବ ପରବର୍ତ୍ତୀ ୧୪ଶ ଅଧ୍ୟାୟରେ ବ୍ରହ୍ମାସ୍ତୁତି ରୂପରେ । ଚତୁର୍ମୁଖୀ ବ୍ରହ୍ମାଜୀଙ୍କ ବିମୋହନ ଲୀଳା ହୋଇଥିବା ସ୍ଥାନଟି ଏବେ ଚଉମୁହାଁ ନାମରେ ବ୍ରଜମଣ୍ଡଳରେ ବିଖ୍ୟାତ । ବୃନ୍ଦାବନ ୮୪କ୍ରୋଶ ପରିକ୍ରମା ବେଳେ କୃଷ୍ଣଭକ୍ତମାନଙ୍କ ପାଇଁ ଏ ସ୍ଥାନଟି ଅବଶ୍ୟ ଦର୍ଶନୀୟ ।

# ଅଥ ୧୪ଶ ଅଧ୍ୟାୟଃ

## (ସୃଷ୍ଟିକର୍ତ୍ତା ବ୍ରହ୍ମାଜୀଙ୍କ ଶ୍ରୀକୃଷ୍ଣ ସ୍ତୁତି)

ପ୍ରଶ୍ନ-୫୬: ସାମାନ୍ୟତମ ଅହଂକାର ଥିବା ପର୍ଯ୍ୟନ୍ତ ଜୀବ ଭଗବାନଙ୍କୁ ଜାଣିବା, ଦେଖିବା ଓ ବୁଝିବା ଅସମ୍ଭବ । ତାଙ୍କଠାରେ ବିନା ଆତ୍ମ ସମର୍ପଣରେ ତାଙ୍କୁ ଜାଣିବା, ବୁଝିବା ହୁଏନା କି ବିନା ସାଯୁଜ୍ୟ ମୁକ୍ତିରେ ତାଙ୍କର ଦର୍ଶନ ବି ହୁଏନା । ସେଥିପାଇଁ ଜ୍ଞାନୀମାନେ ନିଜ ଦେହ ତ୍ୟାଗ ପରେ ଭଗବାନଙ୍କ ଜ୍ୟୋତି ଦର୍ଶନ କରିପାରନ୍ତି । ଅନ୍ୟପକ୍ଷରେ ଭକ୍ତମାନେ ମରିବା ପୂର୍ବରୁ ଘର ସଂସାରରେ ଥାଇ ଜୀବନ୍ମୁକ୍ତ ହୋଇଯାଆନ୍ତି । ତାଙ୍କୁ ଜାଣିବା, ବୁଝିବା ଲକ୍ଷ୍ୟରେ ପହଞ୍ଚିଯାଆନ୍ତି । ଏହି ତତ୍ତ୍ୱଟି ବ୍ରହ୍ମ ବିମୋହନ ଲୀଳାରୁ ଅବଶ୍ୟ ଶିକ୍ଷଣୀୟ ପ୍ରସଙ୍ଗ ।

ଭଗବାନ କୃଷ୍ଣ ସର୍ବସମର୍ଥ ଅଟନ୍ତି । ବ୍ରହ୍ମାଜୀ ତାଙ୍କ ପ୍ରିୟ ଭକ୍ତ ଗୋବତ୍ସ ଓ ଗୋପାଳ ବାଳକମାନଙ୍କୁ ଚୋରେଇ ନେଇଥିବା ସେ ଜାଣିଲେ ନିଜ ଯୋଗମାୟାଙ୍କ ଶକ୍ତି ବଳରେ । ସେ ଚାହିଁଥିଲେ ତାଙ୍କୁ ପାଖକୁ ଡ଼କାଇ ଡ଼ରାଇ ଧମକାଇ ସେହି କ୍ଷଣି ସେମାନଙ୍କୁ ମୁକ୍ତ କରାଇ ପାରିଥାନ୍ତେ କିନ୍ତୁ ତାଦ୍ୱାରା ନା ବ୍ରହ୍ମାଜୀଙ୍କ ଅହଂକାର ବିନାଶ ହୋଇ ମୋହ ଭଙ୍ଗ ହୋଇଥାନ୍ତା ନା ବୃନ୍ଦାବନର ଗୋ ମାତା ଓ ଗୋପାଳୁଣୀ ଭକ୍ତମାନଙ୍କୁ କୃଷ୍ଣସ୍ତନ୍ୟ ପାନ ଜନିତ ପରମ ଆନନ୍ଦ ପ୍ରାପ୍ତି ହୋଇଥାନ୍ତା ।

ଆମ ଘରକୁ ବିଜୁଳି ଆସେ ବିଜୁଳି ଉତ୍ପାଦନ କେନ୍ଦ୍ର ପାୱାର ହାଉସ୍‌ରୁ । ଘରେ ଗୋଟିଏ ସ୍ୱିଚ୍ ଥାଏ । ଆଉ ଗୋଟିଏ ପାୱାର ହାଉସ୍‌ରେ ଥାଏ । ଜଣେ ଯଦି ଭାବେ ତା ଘର ସ୍ୱିଚ୍ ତା ପାଇଁ ଯଥେଷ୍ଟ ତାକୁ ତାର ମୂର୍ଖତା କହିବା ଠିକ୍ ହେବନି କି ? ବ୍ରହ୍ମଦେବଙ୍କ ସେଇ ଅବସ୍ଥା ହୋଇଛି ଏଠାରେ । ସେ ପରୀକ୍ଷା କରିବାକୁ ଗଲେ ଜଗଦ୍‌ଗୁରୁ କୃଷ୍ଣଙ୍କୁ । ଶେଷରେ ଦେଖିଲେ ସେ ନିଜେ ଜଣେ ପରୀକ୍ଷାର୍ଥୀ ପୁଣି ନିଜ ପରୀକ୍ଷା ଖାତା ସେ ନିଜେ ଦେଖିଲେ । ଫଳ ଘୋଷଣା କଲେ ସେ ନିଜେ । କହିଲେ ଯେ ସେ ବୁଢ଼ା ଫେଲ୍ ହୋଇଛନ୍ତି । ମେନ୍ ସ୍ୱିଚ୍ ବଲବ୍ ଅଚଳ କରିବାକୁ ଚେଷ୍ଟା କରି ଦେଖିଲେ ତାଙ୍କ ନିଜ ବଲବ ଫ୍ୟୁଜ୍ ହୋଇଗଲା । ଶରଣାଗତି ଭାବ ପ୍ରକଟ କରିବାକୁ ଯାଇ ବ୍ରହ୍ମାଜୀ ୧ମ ଶ୍ଳୋକରେ କିପରି ନିଜର ଅନ୍ତର୍ବେଦନା ବ୍ୟକ୍ତ କଲେ ?

ବ୍ରହ୍ମା ଉବାଚ

**ନୌମି-ଇଡ଼୍ୟ ତେଽଭ୍ରବପୁଷେ ତଡ଼ିତ୍‌ଅମ୍ବରାୟ**

**ଗୁଞ୍ଜା-ଅବତଂସ ପରିପିଛ ଲସତ୍ ମୁଖାୟ ।**

**ବନ୍ୟସ୍ରଜେ କବଳ ବେତ୍ର ବିଷାଣ ବେଣୁ**

**ଲକ୍ଷ୍ମଶ୍ରିୟେ ମୃଦୁ ପଦେ ପଶୁପାଙ୍ଗଜାୟ ॥୧॥**

ଉ. ବ୍ରହ୍ମାଜୀ ସ୍ତୁତି ଆରମ୍ଭରେ କହିଲେ, ''ହେ ପୂଜନୀୟ (ଈଡ୍ୟ) ମୁଁ ଆପଣଙ୍କୁ ଦଣ୍ଡବତ ନମସ୍କାର କରୁଛି (ନୌମି)। ଆପଣଙ୍କ ଦିବ୍ୟ ଦେହ ବର୍ଷଣ ମୁଖର ବାଦଲ ଭଳି କୃଷ୍ଣବର୍ଣ୍ଣ। ଦେହରେ ବିଜୁଳି ବର୍ଣ୍ଣର ପାଟ ପୀତାମ୍ବର। ମସ୍ତକରେ କାଇଁଚ ମାଳ ଓ ମୟୂର ଚୂଳ। ବଦନ ସଦା ହସହସ। ଗଳାରେ ପଞ୍ଚ ଦିବ୍ୟ ପୁଷ୍ପର ବନମାଳା। କାଖରେ ବେତବାଡ଼ି, ଅଣ୍ଟାରେ ଗୋସିଙ୍ଗା। କରକମଳରେ ମୋହନ ବେଣୁ। ଆପଣଙ୍କ ଚରଣ କମଳ ଦ୍ୱୟ ୩୨ ଲକ୍ଷଣ ଯୁକ୍ତ ଓ ଅତ୍ୟନ୍ତ କୋମଳ। ଆପଣ ଗୋଲୋକ ଅଧିପତି ହୋଇ ମଧ ପଶୁପାଳକ ନନ୍ଦ ରାଜାଙ୍କ ପୁତ୍ରତ୍ୱ ସ୍ୱୀକାର କରିଛନ୍ତି। ଗୋପୀ ଗୋପାଳ ଆଦି ଭକ୍ତଙ୍କୁ ଦିବ୍ୟ ଆନନ୍ଦ ଆସ୍ୱାଦନ କରାଇବାକୁ ଓ ମୋ ସଦୃଶ ବୁଦ୍ଧିଭ୍ରଷ୍ଟଙ୍କୁ ଦଣ୍ଡ ଦେଇ ବାଟକୁ ଆଣିବାକୁ।

ପ୍ରଶ୍ନ-୫୭: ଏ ଶ୍ଳୋକରେ ଶ୍ରୀବ୍ରହ୍ମ ଦେବ ଏକ ସୁନ୍ଦର କାରଣ ମଧ ବତାଇଲେ ତାଙ୍କ ବୁଦ୍ଧି ଭ୍ରଷ୍ଟ ହେବା ସଂପର୍କରେ। ସେ କହିଲେ, ''ପ୍ରଭୋ, ମୁଁ ଆପଣଙ୍କର ଐଶ୍ୱର୍ଯ୍ୟମୟ ନାରାୟଣ ରୂପକୁ ଅନେକ ଥର ଅବଶ୍ୟ ଦର୍ଶନ କରିଛି। ଚିହ୍ନିପାରିଛି। ତାଙ୍କର ଷାଠିଏ କଳା କିନ୍ତୁ ୬୪କଳାଯୁକ୍ତ ଲୀଳାମୟ ଅବତାର ଏ ନିକଟ ଅତୀତରେ (ବିଗତ ଛଅ ମନ୍ୱନ୍ତରରେ) ଦର୍ଶନ କରିପାରିନାହିଁ। ସେଥିପାଇଁ ବ୍ରହ୍ମା ହୋଇ ମଧ ମୁଁ ଭ୍ରମରେ ପଡ଼ିଗଲି। ମୁଁ ଏ କଥା ମଧ ଜାଣେ ଆପଣ ଭକ୍ତାଧୀନ। କେବଳ ଆପଣଙ୍କ ଶରଣାଗତ ହେଲେ ଆପଣଙ୍କ ପ୍ରେମ ପାଇବା ସମ୍ଭବ ହୁଏ। ତଥାପି ମୁଁ ବ୍ରହ୍ମା ବୋଲି ଅହଂକାର କରି ବସିଲି। ଏହା ମୋର ଚରମ ଦୁର୍ଭାଗ୍ୟ।'' ଜ୍ଞାନ ଦ୍ୱାରା ଭଗବାନ ଶ୍ରୀକୃଷ୍ଣଙ୍କୁ ବୁଝିବା ଅସମ୍ଭବ ବୋଲି ସେ କଅଣ ସ୍ୱୀକାର କଲେ ?

**ଶ୍ରେୟଃ ସ୍ତୁତିଂ ଭକ୍ତିମୁଦସ୍ୟ ତେ ବିଭୋ**

**କ୍ଲିଶ୍ୟନ୍ତି ଯେ କେବଳ ବୋଧ ଲବ୍ଧୟେ।**

**ତେଷାଂ ଅସୌ କ୍ଲେଶଳ ଏବ ଶିଷ୍ୟତେ**

**ନ-ଅନ୍ୟତ୍ ଯଥା ସ୍ଥୂଳ ତୁଷ-ଅବଘାତିନାମ୍ ॥୪॥**

ଉ. ହଁ, ସ୍ୱୀକାର କରି କହିଲେ, ''ଭକ୍ତି ବିନା ସର୍ବୋଚ୍ଚ ବେଦଜ୍ଞାନ ମଧ ବନ୍ଧ୍ୟା। ଭକ୍ତିକୁ ଅନାଦର କରି ଯେଉଁ ଜ୍ଞାନାଭିମାନୀ କେବଳ ଶୁଷ୍କ ତର୍କଯୁକ୍ତ ବାଦ-ବିବାଦ ବିତଣ୍ଡା ଜ୍ଞାନ ଚର୍ଚ୍ଚାରେ ମାତନ୍ତି ସେମାନଙ୍କ ହାତକୁ କିଛି ଶ୍ରେୟ ମିଳେନା।

ଯେପରି ଚକ୍ଷୁ କୁଟିବା ଲୋକକୁ ଦାନାଏ ଅନ୍ନ ପ୍ରାପ୍ତି ହୁଏ ନାହିଁ । ସେହିଭଳି ଜ୍ଞାନୀକୁ କ୍ଲେଶ ହିଁ କ୍ଲେଶ ମିଳେ । ନା ତତ୍ତ୍ୱ ଦର୍ଶନ, ନା ଭକ୍ତି ।''

ପ୍ରଶ୍ନ-୫୮: କର୍ମ, ଜ୍ଞାନ, ଧ୍ୟାନ ସକଳ ଯୋଗ କେବଳ ଭକ୍ତି ଉପରେ ଆଶ୍ରିତ । ଭକ୍ତି କିନ୍ତୁ ସ୍ୱତନ୍ତ୍ର । ଭକ୍ତମାନଙ୍କୁ ଗୃହତ୍ୟାଗ, ଆସନ ପ୍ରାଣାୟାମ ଆଦି କଠିନ ସାଧନା କରିବାକୁ ପଡ଼େ ନା । କେବଳ କୃଷ୍ଣ କଥା ଶ୍ରବଣ କୀର୍ତ୍ତନ କରି ଗୃହସ୍ଥାଶ୍ରମରେ ସେ ଜୀବନ୍ମୁକ୍ତ । ଅନ୍ୟମାନଙ୍କୁ ସଂସାରୀ କାମନା ତ୍ୟାଗ କରିବାକୁ କେତେ କଷ୍ଟ ବରଣ କରିବାକୁ ପଡ଼େ । ଭକ୍ତକୁ ସେମାନେ ସ୍ୱୟଂ ଛାଡ଼ି ପଳାନ୍ତି । ସେ ନିର୍ଭୟରେ ବେପରୁଆ ବୁଲୁଥାଏ । ମୋ ଭଳି ଶଙ୍କରଙ୍କୁ ମଧ ମାୟା ଡ଼ରାଏ କିନ୍ତୁ ମାୟା ସ୍ୱୟଂ ଭକ୍ତକୁ ଡ଼ରେ । ଜଣେ ଅଭକ୍ତ ଚେଷ୍ଟା କଲେ ହୁଏତ ପୃଥିବୀର ଧୂଳିକଣା, ସମୁଦ୍ରର ଜଳବିନ୍ଦୁ, ଆକାଶର ତାରା ଗଣିପାରେ ଜଣେ ଭକ୍ତ କିନ୍ତୁ ଭଗବାନଙ୍କ ନାମ, ରୂପ, ଲୀଳା, ଗୁଣ, ଧାମ, ସନ୍ଥକୁ ଏ ସବୁର ଆକଳନ କିପରି ଅକ୍ଲେଶରେ କରିପାରେ ?

**ତତ୍ତେଽନୁକମ୍ପାଂ ସୁ ସମୀକ୍ଷାଣୋ**

**ଭୁଞ୍ଜାନ-ଏବ ଆତ୍ମକୃତଂ ବିପାକମ୍ ।**

**ହୃଦ୍ ବାକ୍ ବପୁର୍ଭିଃ ବିଦଧନ୍ ନମସ୍ତେ**

**ଜୀବେତ ଯୋ ମୁକ୍ତିପଦେ ସ ଦାୟଭାକ୍ ॥୮॥**

ଉ. ଆଧି-ବ୍ୟାଧି ଦୁଃଖ ଶୋକକୁ ଭକ୍ତ ନିଜର କର୍ମ ଫଳ ଭାବିନିଏ । ସୁଖ ମିଳିଲେ ସେ ସବୁକୁ ଭଗବାନଙ୍କ କୃପାବୋଲି ମାନୁଥାଏ । କାୟ-ମନୋ-ବାକ୍ୟରେ ଭଗବାନଙ୍କ ସେବାକୁ ନିଜର କର୍ତ୍ତବ୍ୟ ବୋଲି ଭାବି ସାରା ଜୀବନ ସେ ବିତାଇଦିଏ (ଜୀବେତ) । ହରି ଶରଣାଗତି ତାର ମୂଳ ସାଧନା । ଅହଂକାର ତାର ପାଖ ମାଡ଼େ ନାହିଁ । ଏଭଳି ଭକ୍ତ, ବାସ୍ତବ ମୁକ୍ତି (ଜୀବନ୍ ମୁକ୍ତି) ର ଅଧିକାରୀ (ଦାୟଭାକ୍) ।

ପ୍ରଶ୍ନ-୫୯: ବ୍ରହ୍ମାଜୀ ସ୍ୱୀକାର କଲେ ଯେ-ସ୍ଫୁଲିଙ୍ଗ ହୋଇ ଅଗ୍ନିକୁ ସ୍ୱ ପ୍ରକାଶିକା ଶକ୍ତି ପ୍ରଦର୍ଶନ କରିବା ଭଳି ମୁଁ ଆପଣଙ୍କୁ ମୋ ମାୟାଶକ୍ତି ଦେଖାଇ ଅପଦସ୍ତ ହୋଇଛି ।

ଆପଣଙ୍କ ସୃଷ୍ଟିରେ ମୁଁ ରଜୋଗୁଣୀ ଜୀବଟିଏ । ଆପଣଙ୍କ ପ୍ରଦତ୍ତ ଶକ୍ତିଦ୍ୱାରା କ୍ଷିତି, ଅପ, ତେଜ ଆଦି ପଞ୍ଚ ମହାଭୂତ ଆଦିଙ୍କୁ ନେଇ ଜୀବ ଦେହ ସୃଷ୍ଟି କରେ । ନିଜ ଅଜ୍ଞତା ବଶତଃ ମୁଁ ଭାବି ନେଲି ମୁଁ ଜଣେ ସ୍ୱାଧୀନ ସୃଷ୍ଟି କର୍ତ୍ତା ବୋଲି । ଏବେ ଆପଣଙ୍କ କୃପାରୁ ବୁଝିଲି ଯେ ବାସ୍ତବରେ ଆପଣ ସ୍ୱାମୀ ମୁଁ ଆପଣଙ୍କ ଦାସ ବୋଲି ।

ଆପଣଙ୍କ ଚିନ୍ମୟ କାରଣ ଦେହରେ କୋଟି କୋଟି ବ୍ରହ୍ମାଣ୍ଡ ସୂକ୍ଷ୍ମ, କାରଣ ରୂପରେ ବିଦ୍ୟମାନ । ଅନ୍ୟପକ୍ଷରେ ମୋର ଏ ନିଜ କ୍ଷୁଦ୍ର ହସ୍ତ ମାପରେ ୩ହାତ ଏକ ଚାଖଣ୍ଡ ମୃଣ୍ମୟ ନଶ୍ୱର ନିଜ ଶରୀର!!! କେଉଁ ଉଦାହରଣ ଦେଇ ବ୍ରହ୍ମଦେବ ଭଗବାନଙ୍କର କୃପାର ପାତ୍ର ଓ କ୍ଷମାର ଯୋଗ୍ୟ ବୋଲି ନିବେଦନ କଲେ ?

**ଉତ୍କ୍ଷେପଣଂ ଗର୍ଭଗତସ୍ୟ ପାଦୟୋଃ**
**କିଂ କଳ୍ପତେ ମାତୁଃ ଅଧୋକ୍ଷଜ-ଆଗସେ ।**
**କିଂ ଅସ୍ତି ନ-ଅସ୍ତି ବ୍ୟପଦେଶ ଭୂଷିତଂ**
**ତବ-ଅସ୍ତି କୁକ୍ଷେଃ କିୟତ୍ ଅପି-ଅନନ୍ତଃ ||୧୨||**

ଉ. ଉଦାହରଣଟି ବାସ୍ତବରେ ଅତ୍ୟନ୍ତ ମାର୍ମିକ । କହିଲେ, ''ମା ଗର୍ଭରେ ଛୁଆ ଦଶମାସ କାଳ ରହେ । ହଲଚଲ ହୁଏ । କଡ଼ ଲେଉଟାଏ । ମା'କୁ ଗୋଇଠା ମଧ ମାରେ । ତଥାପି ମା' ତ ପୁଣି ଶିଶୁର ସେ ଅପରାଧ (ଆଗସେ)କୁ କ୍ଷମା କରିଥାଏ । ଆପଣଙ୍କ ଗର୍ଭରେ ଅନନ୍ତ ବ୍ରହ୍ମାଣ୍ଡ କାରଣ, ସୂକ୍ଷ୍ମ ଏବଂ ସ୍ଥୁଳ ରୂପରେ ବିଦ୍ୟମାନ । ସେଥିରୁ ଗୋଟିକରେ ମୁଁ ଏକ ନଗଣ୍ୟ ଜୀବ । ମୁଁ ମୋର ଦୋଷ ମାନୁଛି । କ୍ଷମା ବି ମାଗୁଛି । ବ୍ରହ୍ମାଣ୍ଡ ଗୁଡ଼ିକ ଯେମିତି ଆପଣଙ୍କ ଠାରୁ ଜାତ ବୋଲି ସନ୍ତାନ ବୋଲାନ୍ତି । ସେହି ନ୍ୟାୟରେ ମୁଁ ସୃଷ୍ଟି ଆରମ୍ଭରେ ଜାତ ଆପଣଙ୍କର ଏକ ସନ୍ତାନ ।''

ପ୍ରଶ୍ନ-୬୦: ବ୍ରହ୍ମା ପୁଣି ସ୍ତୁତି ମାଧମରେ ପ୍ରକାଶ କରୁଛନ୍ତି ଚତୁଃଶ୍ଲୋକୀ ଭାଗବତ ଜ୍ଞାନକୁ ଆଧାର କରି ନିଜର ସ୍ଥିତିକୁ । ଗୋଲୋକ ବିହାରୀ କୃଷ୍ଣଙ୍କର ପ୍ରଥମ ଅବତାର କାରଣାର୍ଣ୍ଣବଶାୟୀ ନାରାୟଣ, ୨ୟ ଅବତାର କ୍ଷୀରୋଦଶାୟୀ ମହାବିଷ୍ଣୁ ପ୍ରତ୍ୟେକ ବ୍ରହ୍ମାଣ୍ଡରେ ଓ ୩ୟ ଅବତାର ଗର୍ଭୋଦକଶାୟୀ ବିଷ୍ଣୁ ଭାବରେ ପ୍ରତ୍ୟେକ ଜୀବ ଅନ୍ତଃକରଣରେ । ବ୍ରହ୍ମାଜୀ କହିଲେ, ''ପ୍ରଭୋ, ଏ ଲୀଳା ମାଧମରେ ଆପଣ ଆମକୁ ଜଣାଇ ଦେଲେ ଯେ ଆପଣ ଜଗତର କଣ ଅନୁକଣରେ ଅଛନ୍ତି । ପୁଣି ଆପଣଙ୍କ ଏହି କ୍ଷୁଦ୍ର ଚିନ୍ମୟ ଦେହରେ ଅନନ୍ତ ବିଶ୍ୱବ୍ରହ୍ମାଣ୍ଡ ଲୁଚି ରହିଛନ୍ତି । ଏକଥା ଆପଣ ମୋ ଆଗରୁ ନିଜ ମା' ଯଶୋଦାଙ୍କୁ ପ୍ରଦର୍ଶନ କରାଇ ସାରିଛନ୍ତି । ଆପଣଙ୍କ ଯୋଗମାୟା ଶକ୍ତି ବଳରେ ଆମେ ସବୁ ଆପଣଙ୍କ ଦେହରେ ରହିପାରିଛୁ । ଆପଣ ହିଁ ସ୍ୱୟଂ ବ୍ରହ୍ମା-ବିଷ୍ଣୁ-ଶଙ୍କର-ଇନ୍ଦ୍ର-ଚନ୍ଦ୍ରାଦି ରୂପରେ ଲୀଳା କରୁଛନ୍ତି ।

ହେ ଭୂମନ୍, ଆପଣ ଜ୍ଞାନୀ ପାଇଁ ଅଜନ୍ମା । ହେଲେ ଭକ୍ତକୁ ଆନନ୍ଦ ଦେବାକୁ ମତ୍ସ୍ୟ, ବାମନ, ବରାହ, ନୃସିଂହ, ରାମ, କୃଷ୍ଣ ରୂପ ଧାରଣ କରନ୍ତି । ଆପଣ ସ୍ୱୟଂ ଅନନ୍ତ । ଆପଣଙ୍କର ନାମ, ରୂପ, ଲୀଳା, ଧାମ, ସବୁ ସମସ୍ତେ ଅନନ୍ତ । ଆପଣ ଅନାମ, ଅରୂପ, ଅଗୁଣ ହୋଇ ସର୍ବନାମ, ସର୍ବରୂପ ଓ ସର୍ବଦିବ୍ୟଗୁଣ ସଂପନ୍ନ ମଧ୍ୟ ।

ଆପଣଙ୍କୁ ପାଇବାର ଏକମାତ୍ର ଉପାୟ କେବଳ ସଦ୍‌ଗୁରୁ ଆଶ୍ରୟ ଓ ଭକ୍ତି ସାଧନା ସହିତ ଆତ୍ମସମର୍ପଣ । ଯାହାଦ୍ୱାରା ଜୀବ ଭୟଙ୍କର ଭବସାଗର ପାର ହୋଇପାରେ । କର୍ମକାଣ୍ଡ ଓ ଜ୍ଞାନ କାଣ୍ଡ କେବଳ ବିଷର ଭାଣ୍ଡ । ଯୋଗସିଦ୍ଧି କେବଳ ମାୟାଜାଲ । ଆପଣଙ୍କ ଶରଣ ବିନା ଜୀବ ଡ଼ରି ମରି ଚଳିବାକୁ ବାଧ୍ୟ । ହେଉ ପଛେ ସେ ହିରଣ୍ୟାକ୍ଷ, ହିରଣ୍ୟକଶିପୁ, କଂସ କି ରାବଣ, ଶିଶୁପାଳ ଭଳି ମହାଶକ୍ତିମାନ, ତପସ୍ୱୀ, ଦୀର୍ଘାୟୁ ପୁରୁଷ କିନ୍ତୁ ୪ବର୍ଷର ଭକ୍ତ ଧ୍ରୁବ, ପାଞ୍ଚ ବର୍ଷର ପ୍ରହ୍ଲାଦଙ୍କୁ ସ୍ୱୟଂ ଭୟ (ଯମରାଜା) ମଧ୍ୟ ଭୟ କରିଥାନ୍ତି । ଅଭକ୍ତ ଆପଣଙ୍କୁ ନିଜ ବାହାରେ ସଂସାରରେ ଖୋଜି ନିରାଶ ହୁଏ । ଭକ୍ତ କିନ୍ତୁ ନିଜ ଅନ୍ତରରେ ଆପଣଙ୍କ ନିତ୍ୟ ଦର୍ଶନ କରି ପ୍ରେମ ମଗ୍ନରହେ ।'' କର୍ମ-ଜ୍ଞାନ-ଧ୍ୟାନ ଆଦି ଦ୍ୱାରା ଭଗବାନକୁ ଜାଣିବା ବ୍ୟର୍ଥ ପ୍ରୟାସ୍ ବୋଲି ବ୍ରହ୍ମାଜୀ ଜାଣିପାରି ଶେଷରେ କ'ଣ ପ୍ରାର୍ଥନା କଲେ ଭଗବାନଙ୍କୁ ?

**ତତ୍ ଅସ୍ତୁ ମେ ନାଥ ସ ଭୂରିଭାଗୋ**
**ଭବେଽତ୍ର ବା-ଅନ୍ୟତ୍ର ବା ତିରଶ୍ଚାମ୍ ।**
**ଯେନ-ଅହଂ ଏକୋଽପି ଭବତ୍ ଜନାନାଂ**
**ଭୂତ୍ୱା ନିଷେବେ ତବ ପାଦପଲ୍ଲବମ୍ ।।୩୦।।**

ଉ. ବ୍ରହ୍ମାଜୀ ପ୍ରାର୍ଥନା କରି କହିଲେ, ''ହେ ସ୍ୱାମୀ(ନାଥ), ସେଇ ଜୀବ ତ ସଂସାରରେ ଭାଗ୍ୟବାନ (ଭୂରିଭାଗୋ) ଯେ ଏହି ବୃନ୍ଦାବନ ଧାମରେ ଏହି ଜନ୍ମ (ଭବେ) ବା ଅନ୍ୟ ଜନ୍ମରେ ମନୁଷ୍ୟ କ'ଣ ମନୁଷ୍ୟ ଇତର (ତିରଶ୍ଚାଂ) ପଶୁ-ପକ୍ଷୀ, ବୃକ୍ଷ ଲତା ରୂପେ ପ୍ରକଟ ହୁଏ । ପ୍ରଭୋ, ମୋତେ ସେଇ ଅନୁଗ୍ରହ କରନ୍ତୁ । ମୁଁ ଆପଣଙ୍କ ଦାସ ବୈଷ୍ଣବାନୁଦାସ ହେବି । ଜନ୍ମେ ଜନ୍ମାନ୍ତରେ ଆପଣଙ୍କ ଚରଣ କମଳ ସେବା କରୁଥିବି ।''

ପ୍ରଶ୍ନ-୬୧ : ସୃଷ୍ଟିକର୍ତ୍ତା ବ୍ରହ୍ମଦେବ କ'ଣ ଦେଖି ନନ୍ଦ ଆଦି ବୃନ୍ଦାବନ ବାସୀ ଗୋ, ଗୋପାଳ, ପଶୁ, ପକ୍ଷୀ, କୀଟ ପତଙ୍ଗ ବୃକ୍ଷ ଲତା ନଦୀ ପର୍ବତ ଆଦିଙ୍କର (ବ୍ରଜ ଓ କଂସା) ସୌଭାଗ୍ୟର ପ୍ରଶଂସା କଲେ ?

**ଅହୋଭାଗ୍ୟଂ ଅହୋଭାଗ୍ୟଂ ନନ୍ଦ ଗୋପ ବ୍ରଜ-ଓକସାମ୍ ।**
**ଯତ୍ ମିତ୍ରଂ ପରମ-ଆନନ୍ଦଂ ପୂର୍ଣ୍ଣଂ ବ୍ରହ୍ମ ସନାତନମ୍ ।।୩୨।।**

ଉ. ବୃନ୍ଦାବନର ଗାଈ, ଗୋପାଳୁଣୀମାନେ ମଧ୍ୟ ଧନ୍ୟ ଅତି ଧନ୍ୟ । ସ୍ୱୟଂ ଶ୍ରୀକୃଷ୍ଣ ବାଛୁରୀ ଓ ଗୋପାଳ ବାଳକ ହୋଇ ସେମାନଙ୍କର ଦୁଗ୍ଧ ପାନ କରିବା ପାଞ୍ଚ ବର୍ଷର ବାଳକ ଅବସ୍ଥାରେ ସମସ୍ତ ଗୋପ ବାଳିକା ମାନଙ୍କୁ ବିବାହ କରିବା ଅହୋଭାଗ୍ୟ ଅଟେ । ବୈଦିକ କର୍ମକାଣ୍ଡୀ କେତେ ଯତ୍ନରେ ମହାଯଜ୍ଞ କର୍ମାନୁଷ୍ଠାନ କଲେ ଯଜ୍ଞ ଭୋକ୍ତା ରୂପରେ ତାଙ୍କର ଦର୍ଶନ ମିଳିବା କେତେ କଷ୍ଟକର ହୋଇଥାଏ ।

ସେହି କଥା ବିଚାର କରି ସେ ବ୍ରହ୍ମା ପଦବୀ ଛାଡ଼ିବାକୁ ପ୍ରସ୍ତୁତ ହୋଇଛନ୍ତି । ପରଜନ୍ମରେ ବରଂ ବୃନ୍ଦାବନରେ ସାଧାରଣ ଲତା ଗୁଳ୍ମ ଟିଏ ହୋଇ ଗୋପୀଗୋପାଳଙ୍କ ପଦରଜ ପ୍ରାପ୍ତିକୁ ଅହୋଭାଗ୍ୟ ବୋଲି ମନେ କରିଛନ୍ତି । କାରଣ ଦ୍ୱେଷ କରୁଥିବା ପୂତନା, ବକ, ଅଘ ଆଦିଙ୍କୁ ସେ ସ୍ୱର୍ଗ, ବୈକୁଣ୍ଠ, ମୁକ୍ତି ସୁଖ ଦେଇଛନ୍ତି । ତନ୍, ମନ, ଧନ ଆଦି ସର୍ବସ୍ୱ ଅର୍ପଣ କରୁଥିବା ଗୋପୀଗୋପାଳଙ୍କୁ କ'ଣ ନଦେବେ ସେ ! ! !

ପ୍ରଶ୍ନ-୬୨ : ଜ୍ଞାନ ମାର୍ଗୀ ସାଧକମାନେ ଗୃହସ୍ଥାଶ୍ରମକୁ ସଂସାର ମାୟା ବନ୍ଧନର କାରଣ ବୋଲି ଚିତ୍କାର କରି ବଣ ଜଙ୍ଗଲକୁ ପଳାଉଥିବା ବେଳେ ଗୋପୀମାନେ ଗୃହରେ ଥାଇ କିପରି ଚରମ ସିଦ୍ଧିର ଅଧିକାରୀ ହେଲେ ?

**ତାବତ୍ ରାଗ-ଆଦୟଃ ସ୍ତେନାଃ ତାବତ୍ କାରାଗୃହଂ ଗୃହମ୍ ।**
**ତାବତ୍ ମୋହୋଽଙ୍ଘ୍ରି ନିଗଡ଼ୋ ଯାବତ କୃଷ୍ଣ ନ ତେ ଜନାଃ ।।୩୬।।**

ଉ. ବ୍ରହ୍ମାଜୀ ଘୋଷଣା କଲେ କୃଷ୍ଣ ଅଭକ୍ତ ଲାଗି ଧନ ଭୋଗ ସଂଗ୍ରହ ଆସକ୍ତି ସବୁ ଚୋରୀରେ ଗଣାଯାଏ । ତାର ନିଜର ଘର ତା ପାଇଁ ବନ୍ଦୀଘର ଅଟେ । ତାର ନିଜର ପିତା-ମାତା-ପୁତ୍ର-ପତ୍ନୀ ଆଦି ତା ପାଦର ଜଞ୍ଜିର (ଶିକୁଳି) ସଦୃଶ । ଅନ୍ୟ ପକ୍ଷରେ କୃଷ୍ଣ ଭକ୍ତ ପାଇଁ ଗୃହସ୍ଥ ଆଶ୍ରମ ଏକ ପୂଜାସ୍ଥଳୀ ବା ମନ୍ଦିର ସ୍ୱରୂପ । ଏପରିକି ସାଧକ ଭକ୍ତ ତାର ନିଜ ଦେହକୁ କୃଷ୍ଣଙ୍କ ମନ୍ଦିର ଭାବି ଜୀବନ କଟାଏ ।

ପ୍ରଶ୍ନ-୬୩: ଦ୍ୱାପର ଯୁଗ ଶେଷରେ କୃଷ୍ଣ ଲୀଳା କରି ସେ କଳିଯୁଗୀ ଲୋକଙ୍କ ଲାଗି ଭଗବାନ ଏକ ସୁନ୍ଦର ଆଦର୍ଶ ଗୃହସ୍ଥ ଆଶ୍ରମ ଜୀବନ ଯାପନ କରିବାକୁ ସ୍ୱୟଂ ନାରାୟଣ ହୋଇ ମଧ୍ୟ ନର ଲୀଳା କରିଛନ୍ତି । ଏକ ମାତ୍ର ଉଦ୍ଦେଶ୍ୟ ଜୀବକୁ ଆନନ୍ଦ ଦାନ କରିବା । ଗୃହସ୍ଥ ଆଶ୍ରମର ଜୟଗାନ କରିବା ।

ଅନେକ ଲୋକ ବାହାସ୍ଫୋଟ ମାରନ୍ତି ସେମାନେ କୃଷ୍ଣଙ୍କ ମାହାତ୍ମ୍ୟ ଜାଣି ସାରିଛନ୍ତି ବୋଲି । ଏ ବିଷୟରେ ବ୍ରହ୍ମାଜୀଙ୍କ ମତ କ'ଣ ?

**ଜାନନ୍ତ ଏବ ଜାନନ୍ତୁ କିଂ ବହୂଂଉକ୍ତ୍ୟା ନ ମେ ପ୍ରଭୋ ।**
**ମନସୋ ବପୁଷୋ ବାଚୋ ବୈଭବଂ ତବ ଗୋଚରଃ ।।୩୮।।**

ଉ. ସୃଷ୍ଟିକର୍ତ୍ତା ସ୍ପଷ୍ଟ ଉକ୍ତିରେ ଘୋଷଣା କରୁଛନ୍ତି ଯେ ସେମାନଙ୍କ କୃଷ୍ଣଙ୍କୁ ଜାଣିବା କଥା ସେମାନଙ୍କୁ କେବଳ ଜଣା । ମୁଁ କାହିଁକି ସେ ଭଳି ବଡ଼ବଡ଼ କଥା କହିବାକୁ ସାହସ କରିବି ? ଏବେ ମୁଁ ଅନୁଭବ କଲି ଯେ ମନ, କାୟ, ବାଣୀ ଦ୍ୱାରା ଶ୍ରୀକୃଷ୍ଣଙ୍କର ଐଶ୍ୱର୍ଯ୍ୟ/ମାହାତ୍ମ୍ୟ/ବିଭୂତି କୌଣସି ଜୀବ ଜାଣିବା ଅସମ୍ଭବ । ସେ ସବୁ କେବଳ ସେଇ ଶ୍ରୀକୃଷ୍ଣଙ୍କୁ ଜଣା । ଅନ୍ୟ କାହାରିକୁ ନୁହେଁ । କାରଣ ବେଦ ମତରେ ସେ ସବୁ ଜୀବର କାୟ, ମନ ବାଣୀର ଅପହୁଞ୍ଚ, ଅଗମ୍ୟ, ଅକଥନୀୟ ଚିନ୍ମୟ ଚିଜ ।

ପ୍ରଶ୍ନ-୬୪: ବ୍ରହ୍ମାଜୀ ଏବେ ବୁଝିଗଲେ ନାରାୟଣଙ୍କ ସୃଷ୍ଟ ଅନେକ ବ୍ରହ୍ମାଣ୍ଡ ମଧ୍ୟରୁ ସେ ଏହି ଗୋଟିଏ ବ୍ରହ୍ମାଣ୍ଡର ସୃଷ୍ଟି ଦାୟିତ୍ୱରେ ଅଛନ୍ତି । କୃଷ୍ଣଙ୍କ କୃପାରୁ ତାଙ୍କ ଭଳି ଅନେକ ବ୍ରହ୍ମା ଅନନ୍ତ ବ୍ରହ୍ମାଣ୍ଡର ସୃଷ୍ଟି କର୍ମରେ ନିଯୁକ୍ତି ପାଇଛନ୍ତି । ଏହିଭଳି ଏ ଅଧ୍ୟାୟରେ ୪୦ (୧-୪୦) ଶ୍ଳୋକରେ ସେ କ୍ଷମା ପ୍ରାର୍ଥନା ସହିତ ଶ୍ରୀକୃଷ୍ଣ ସ୍ତୁତି କଲେ । ତିନି ଥର ପରିକ୍ରମା କରି ନତମସ୍ତକ ହୋଇ ପ୍ରଣାମ ଜଣାଇଲେ । ଶେଷରେ ଠାକୁରଜୀଙ୍କ ଆଦେଶ ପ୍ରାପ୍ତ ହୋଇ ବ୍ରହ୍ମଲୋକ ଫେରିଗଲେ ।

ଯୋଗମାୟାଙ୍କ ଅଚିନ୍ତ୍ୟ ଶକ୍ତି ବଳରେ ବାଛୁରୀମାନେ ଓ ଗୋପାଳ ବାଳକ ମାନେ ଯୋଗ ନିଦ୍ରାରୁ ଉଠିଲେ । ଅସଲି ନକଲି ଉଭୟଙ୍କର ମିଳନ ହୋଇଗଲା । ବର୍ଷକର ବ୍ୟବଧାନକୁ ସେମାନେ ଦିନେ ବୋଲି ଭାବିଲେ । ଗୋଠରୁ ଫେରିଲାବେଳେ ଠାକୁରଜୀ ସଖାମାନଙ୍କୁ ମୃତ ଅଘାସୁରର ଶୁଖିଲା ଛାଲ ଦେଖାଇଲେ । ଘରେ ପହଞ୍ଚି ପିଲାମାନେ ପିତା ମାତାଙ୍କ ଆଗରେ କାହ୍ନୁଦ୍ୱାରା ଅଘାସୁର ବଧ କାହାଣୀ କହିଥିଲେ । ଏଣେ ଦେଖାଗଲା ଯେ ଗାଈ ଓ ଗୋପାଳୁଣୀମାନଙ୍କର ପୂର୍ବସନ୍ତାନମାନଙ୍କ ପ୍ରତି ଥିବା ଅପୂର୍ବ ଆକର୍ଷଣ ଏବେ ହ୍ରାସ ପାଇଲା । ବୃନ୍ଦାବନର ଗାଈ ଓ ଗୋପାଳୁଣୀମାନେ ନିଜ ଅସଲି ସନ୍ତାନମାନଙ୍କଠାରୁ ନକଲି ପର (ଶ୍ରୀକୃଷ୍ଣରୂପ) ସନ୍ତାନମାନଙ୍କୁ ଅଧିକ ଭଲ ପାଇବାର କାରଣ ବିଷୟରେ ଶୁକଦେବ ଗୋସ୍ୱାମୀ କି ଉତ୍ତର ଦେଲେ ?

ଶ୍ରୀ ଶୁକ ଉବାଚ

**ସର୍ବେଷାଂ ଅପି ଭୂତାନାଂ ନୃପ ସ୍ୱ-ଆତ୍ମା-ଏବ ବଲ୍ଲଭଃ ।**
**ଇତରେଽପତ୍ୟ ବିତ୍ତ-ଆଦି ତଦ୍ ବଲ୍ଲଭତୟା-ଏବ ହି ||୫୦||**

ଉ. ଶୁକଦେବଜୀ କହିଲେ-ସକଳ ପ୍ରାଣୀମାନଙ୍କର ଆତ୍ମା ହିଁ ସବୁଠାରୁ ଅଧିକତମ ପ୍ରିୟ ପଦାର୍ଥ । ଅନ୍ୟ ସବୁ ଧନ, ଦାରା ସୁତ ଆଦି ଆତ୍ମାଙ୍କ ପ୍ରିୟ ବୋଲି ସିନା ଜୀବକୁ ପ୍ରିୟଲାଗନ୍ତି । ଶ୍ରୀକୃଷ୍ଣ ସିନା ସେମାନଙ୍କର ଆତ୍ମାଙ୍କର ଆତ୍ମା ପରମାତ୍ମା ଥିଲେ ହେଲେ ଅନ୍ୟମାନେ କେବଳ ସଂସାରୀ ସନ୍ତାନ ଥିଲେ ! ! !

ପ୍ରଶ୍ନ-୬୫: ସଂସାରରେ ମନୁଷ୍ୟ ଦୁଇ ପ୍ରକାର । ଦେହକୁ ମୁଁ ମାନୁଥିବା ଲୋକ ଓ ଆତ୍ମାକୁ ମୁଁ ମାନୁଥିବା ଲୋକ । ଏ ଦୁଇ ପ୍ରକାର ଲୋକଙ୍କର ସବୁଠାରୁ ପ୍ରିୟତମ ବସ୍ତୁ ତେବେ କ'ଣ ?

**ତଦ୍ ରାଜେନ୍ଦ୍ର ଯଥା ସ୍ନେହଃ ସ୍ୱ-ସ୍ୱକ-ଆତ୍ମନି ଦେହିନାମ୍ ।**
**ନ ତଥା ମମତାଲମ୍ବି ପୁତ୍ର ବିତ୍ତ ଗୃହ-ଆଦିଷୁ ||୫୧||**

ଉ. ବିଷୟୀ ଜୀବ ପାଇଁ ଦେହ ଯେତେ ପ୍ରିୟ, ଭକ୍ତ ପାଇଁ ଆତ୍ମା ଯେତେ ପ୍ରିୟ ଉଭୟଙ୍କ ପାଇଁ ନିଜର ପୁତ୍ର, ଦାରା, ଧନ, ଗୃହ, ରାଜ୍ୟ, ପଦ ପଦବୀ ପ୍ରତି ଏତେ ପ୍ରିୟ ନୁହନ୍ତି । କାରଣ ବିଷୟୀ ଲୋକ ଧନ, ଦାରା, ପୁତ୍ର, ରାଜ୍ୟ ବଦଳରେ ନିଜ ଦେହ ରକ୍ଷା କରେ । କର୍ମୀ, ଜ୍ଞାନୀ, ଭକ୍ତ ସମସ୍ତେ ନିଜ ଆତ୍ମାକୁ ସୁଖ ଦେବାକୁ ସକଳ ସଂସାରୀ ପଦାର୍ଥ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ହୋଇଯାଆନ୍ତି ।

ପ୍ରଶ୍ନ-୬୬: ପ୍ରଶ୍ନ ଉଠେ ଯେ ବିଷୟୀ ଲୋକ ପ୍ରାଣ ବା ଜୀବନ ଆଶାରେ ଦେହ ମଧ୍ୟ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇଯାଏ । ଏଭଳି ଅଦ୍ଭୁତ ଆଗ୍ରହର କାରଣ କ'ଣ ହୋଇପାରେ ?

**ଦେହୋଽପି ମମତାଭାକ୍ ଚେତ୍ ତର୍ହି-ଅସୌ ନ-ଆତ୍ମବତ୍ ପ୍ରିୟଃ ।**
**ଯତ୍ ଜୀର୍ଯତି-ଅପି ଦେହେଽସ୍ମିନ୍ ଜୀବିତ-ଆଶା ବଳୀୟସୀ ||୫୩||**

ଉ. ଏଥିରେ ଭଗବାନଙ୍କର ସୃଷ୍ଟିର ଏକ ଅସଲି ରହସ୍ୟ ଛପି ରହିଛି । ବେଦଙ୍କ ବର୍ଣ୍ଣନା ଅନୁସାରେ ଅଜ୍ଞ, ବିଜ୍ଞ, ଅଳ୍ପଜ୍ଞ, ସର୍ବଜ୍ଞ ସମସ୍ତଙ୍କ ଆତ୍ମା ସତ୍-ଚିତ୍-ଆନନ୍ଦମୟ । ସତ୍ ଶବ୍ଦ ସଂକେତ କରେ ପ୍ରାଣ-ଜୀବନ-ସତ୍ତାକୁ । ଏହି ଚେତନା ଆତ୍ମାରେ ଥାଏ ବୋଲି ସେ ଚିତ୍ । ସେ ସର୍ବଦା କେବଳ ଆନନ୍ଦ ଅନ୍ୱେଷଣ କରେ ବୋଲି ଆତ୍ମାଙ୍କର ତିନି ବିଶିଷ୍ଟ ଲକ୍ଷଣ ସନାତନ ବେଦ ଶାସ୍ତ୍ର ବର୍ଣ୍ଣନା କରିଛନ୍ତି ।

ସୁତରାଂ ସ୍ୱତଃ ଜୀବ ପ୍ରାଣ/ଜୀବନ ରକ୍ଷା ଲାଗି ଅଜଣା ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼େ, ପ୍ରାର୍ଥନା କରେ ଦେହ ଜୀର୍ଣ୍ଣ ରୁଗ୍‌ଣ, ଜରାଗ୍ରସ୍ତ, ଅସମର୍ଥ ବା ବିପଦାପନ୍ନ ହେଲେ । ଦେହର ମମତା ଆଗ୍ରହ ସେଠାରେ ଛାଡ଼ିବାକୁ ପଡ଼େ ଯେଉଁଠାରେ ସେ ପରାମାତ୍ମାଙ୍କର ଶରଣାଗତି ସ୍ୱୀକାର କରିନିଏ ।

ପ୍ରଶ୍ନ-୬୭: ସ୍ଥାବର, ଜଙ୍ଗମ, ଦୈତ୍ୟ, ଦାନବ, ମାନବ, ଦେବତା ସମସ୍ତଙ୍କର ଆତ୍ମା ହିଁ ସବୁଠାରୁ ବେଶୀ ପ୍ରିୟ । ସେ ରହସ୍ୟ ସେ ଜାଣୁ କି ନ ଜାଣୁ । ସେଇ ଆତ୍ମାଙ୍କୁ ଚେତନ କରାଇ ଆନନ୍ଦ ଭୁଞ୍ଜାଇବା ପାଇଁ ସଂସାରର ସକଳ ସଚଳ ଅଚଳ ବିତ୍ତ ସଂପତ୍ତି ଭୋଗ୍ୟ ପଦାର୍ଥର ବ୍ୟବସ୍ଥା ପରମେଶ୍ୱର କୃପାକରି କରିଛନ୍ତି ।

ଗାଈମାନେ ଓ ଗୋପାଳୁଣୀମାନେ ନିଜର ଆତ୍ମାର ଅବତାର ସନ୍ତାନମାନଙ୍କୁ ପ୍ରିୟ ନ ଲାଗି କୃଷ୍ଣ କାହିଁକି ନକଲି ସନ୍ତାନ ରୂପୀ ହେଲେ ମଧ୍ୟ ଅଧିକ ପ୍ରିୟ ଲାଗିଲେ ?

**କୃଷ୍ଣଂ ଏନଂ ଅବେହି ତ୍ୱଂ ଆତ୍ମାନଂ ଅଖିଳ-ଆତ୍ମନାମ୍ ।**
**ଜଗତ୍ ହିତାୟ ସୋଽପି-ଅତ୍ର ଦେହୀ-ଇବ-ଆଭାତି ମାୟୟା ॥୫୫॥**

ଉ. ଅତ୍ୟନ୍ତ ଆଦର ସହକାରେ ଶୁକଦେବ ପରମହଂସ ମୁଖ୍ୟଶ୍ରୋତା ପରୀକ୍ଷିତଙ୍କୁ ବୁଝାଇ ଦେଲେ ଯେ ଏହି ଶ୍ରୀକୃଷ୍ଣରୂପୀ ଆତ୍ମା ଆମ ସମସ୍ତଙ୍କର ଆତ୍ମାଙ୍କର ଆତ୍ମା ପରମାତ୍ମା ନୁହନ୍ତି । ପରମାତ୍ମାଙ୍କର ଅଂଶ ସ୍ୱରୂପ । ପରମାତ୍ମା ସିନ୍ଧୁ ହେଲେ ସେମାନେ ବିନ୍ଦୁ ସ୍ୱରୂପ । ସୁତରାଂ ସିନ୍ଧୁ ପ୍ରାପ୍ତିର ଆନନ୍ଦ ବିନ୍ଦୁ ପ୍ରାପ୍ତିରେ କାହୁଁ ମିଳନ୍ତା । ଅଥବା ମିଳିବପାରିବ ? ଆମ ସମସ୍ତଙ୍କର ପ୍ରିୟତମ ସେଇ ପୂର୍ଣ୍ଣତମ ପୁରୁଷୋତ୍ତମ ଶ୍ରୀକୃଷ୍ଣ ଭକ୍ତକୁ ପ୍ରେମଦାନ କରିବାକୁ ଯୋଗ ମାୟାଙ୍କର ଆଢୁଆଳରେ ନାରାୟଣ ହୋଇ ମଧ୍ୟ ନର ଦେହ ଧରି ଲୀଳା କରୁଛନ୍ତି । ସେଇ ଶ୍ରୀକୃଷ୍ଣଙ୍କୁ ଏହିଭଳି ବୁଝିନିଅ (ଅବେହି) ଯେ ଦୃଶ୍ୟମାନ ଅଥବା ଅଦୃଶ୍ୟ ନିଖିଳ ସ୍ଥାବର ଜଙ୍ଗମାତ୍ମକ ସୃଷ୍ଟି ଶ୍ରୀକୃଷ୍ଣଙ୍କ ଦେହ ମାତ୍ର ଏବଂ ତାଙ୍କ ଜଡ଼ ଶକ୍ତି ମାୟା ନିର୍ମିତ ଅନ୍ୟ କିଛି ଅକୃଷ୍ଣ ବସ୍ତୁ ନୁହେଁ ।

ପ୍ରଶ୍ନ-୬୮: ସଂସାରର ସକଳ ଅଚେତନ ବସ୍ତୁର ମୂଳ ସ୍ରୋତ ଅବ୍ୟକ୍ତ ପ୍ରକୃତି ଅଟେ । ଅବ୍ୟକ୍ତ ପ୍ରକୃତିର ମୂଳ ସ୍ରୋତ ମଧ୍ୟ ଶ୍ରୀକୃଷ୍ଣ । ସୁତରାଂ କୃଷ୍ଣ ଭିନ୍ନ ଅନ୍ୟ ବସ୍ତୁ ବା ବ୍ୟକ୍ତି ଆସିବ କେଉଁଠୁ ? ଆସିବା ଅସମ୍ଭବ ମଧ୍ୟ । ସଂସାରରେ ଦୁଃଖ ସୁଖ ବିପଦ ବ୍ୟାଧି ମୃତ୍ୟୁ ଆଦି ଭରପୂର ହୋଇ ରହିବା କାରଣ ଶ୍ରୀକୃଷ୍ଣ ଭିନ୍ନ ଅନ୍ୟ କେହି ହୋଇପାରେ କି ?

**ସମାଶ୍ରିତା ଯେ ପଦପଲ୍ଲବ ପ୍ଳବଂ**
**ମହତ୍ ପଦଂ ପୁଣ୍ୟଯଶୋ ମୁରାରେଃ ।**
**ଭବ-ଅମ୍ବୁଧିଃ ବତ୍ସପଦଂ ପରଂ ପଦଂ**
**ପଦଂ ପଦଂ ଯତ୍ ବିପଦାଂ ନ ତେଷାମ୍ ॥୫୮॥**

ଉ. ଭଗବାନଙ୍କର ପଦ କମଳ ହିଁ ବୈକୁଣ୍ଠ (ମହତ୍ ପଦଂ) । ସୁର ଅସୁରଙ୍କର ଉଦ୍ଧାର କର୍ତ୍ତା ଶ୍ରୀକୃଷ୍ଣ ମୁରାରୀ ଅଟନ୍ତି । ବେଦ ଭଗବାନ ଯାହାଙ୍କ ପୁଣ୍ୟ ଯଶ କୀର୍ତ୍ତନ କରି ଗୌରବାନ୍ୱିତ ହୁଅନ୍ତି ତାଙ୍କ ଚରଣ କମଳ ହିଁ ଭବଭେଳା ବା ନୌକା ସଦୃଶ । ସେ ପଦକମଳରେ ଯେଉଁମାନେ କାୟ ମନୋବାକ୍ୟ ଶରଣାପନ୍ନ (ସମାଶ୍ରିତା) ସେମାନଙ୍କ ପାଇଁ ସଂସାର ସମୁଦ୍ର ଆଦୌ ସମୁଦ୍ର ଭଳି ନୁହେଁ । ଏକ ବାଛୁରୀ ଖୋଜ ଚିହ୍ନରେ ଥିବା ଚଳୁକାଏ ଜଳ ସଦୃଶ । ସଂସାରର ସକଳ ଦୁଃଖ, ଶୋକ, ବ୍ୟାଧି ମୃତ୍ୟୁ ଆଦି ବିପଦକୁ ସେ କୃଷ୍ଣ ଆଶ୍ରିତ ଭକ୍ତ ଅକ୍ଳେଶରେ ପାର ହୋଇଯାଇପାରେ ।

ଠାକୁରଜୀଙ୍କର ପାଞ୍ଚବର୍ଷ ବ୍ୟାପୀ କୌମାର ବୟସରେ ସେ ଗୋପାଳ ସଖାମାନଙ୍କ ସହିତ ଆଖି ବୁଜାବୁଜି, ଚୋର ପୋଲିସ ଖେଳ, ମର୍କଟ ଭଳି ଏ ଡ଼ାଳରୁ ସେ ଡ଼ାଳ ଡ଼େଇଁ ରାମାୟଣ ଲୀଳା ଆଦି ଅନେକ ଅଭିନୟ କରି କରାଇ ଲୀଳା ପ୍ରକଟ କରିଥିଲେ ।

## ଅଥ ୧୫ଶ ଅଧ୍ୟାୟଃ

### (ବୃନ୍ଦାବନର ଦିବ୍ୟ ଶୋଭାବର୍ଣ୍ଣନ ଗଧରୂପୀ ଧେନୁକ (ଫଳାସକ୍ତିରୁ ମୁକ୍ତି) ଅସୁର ଉଦ୍ଧାର)

ପ୍ରଶ୍ନ-୬୯ : ବ୍ରଜ ୮୪କୋଶ ପରିକ୍ରମାବେଳେ ତାଳବନରେ ଏ ଲୀଳାସ୍ଥଳ ଏବେ ମଧ୍ୟ ଦର୍ଶନୀୟ । ଠାକୁରଜୀଙ୍କ ବୟସ ପାଞ୍ଚ ବର୍ଷ ପୂର୍ଣ୍ଣ ହୋଇ ଛଅ ବର୍ଷ ଚାଲିଲା । ପୌଗଣ୍ଡ ଲୀଳାରେ ଭଗବାନଙ୍କ ପଦୋନ୍ନତି ହେଲା । ସେ ଥିଲେ ବତ୍ସପାଳ । ଏବେ ହେଲେ ଗୋପାଳ । ଏହି ପଦ ଅଭିଷେକ ଦିନକୁ (କାର୍ତ୍ତିକ ମାସ ଶୁକ୍ଳ ଅଷ୍ଟମୀ ତିଥି) ବୃନ୍ଦାବନ ବାସୀ ଆଜି ମଧ୍ୟ ଗୋପାଷ୍ଟମୀ ରୂପେ ଉତ୍ସବ ଭାବରେ ପାଳନ କରୁଛନ୍ତି । ଶ୍ରୀକୃଷ୍ଣଙ୍କୁ ମାଧବ କହିବାର କାରଣ ହେଲା

୧. ମଧୁବଂଶରେ ଜନ୍ମ ବୋଲି, ୨. ମହାଲକ୍ଷ୍ମୀ(ଯା)ଙ୍କର ଧବ(ସ୍ୱାମୀ) ବୋଲି, ୩. ଶ୍ରୀରାଧା(ମା)ଙ୍କର ଧବ ବୋଲି, ୪. ଯେ ବନ ବିହାରରେ ବୁଲିଗଲେ ଋତୁରାଜ ମାଧବ-ବସନ୍ତଋତୁ ତାଙ୍କୁ ସ୍ୱାଗତ କରୁଥିଲେ, ୫. ସର୍ବୋଚ୍ଚ ମଧୁର ରାସ ରସ ଜୀବକୁ ଆସ୍ୱାଦନ କରାନ୍ତି ବୋଲି ।

ଭଗବାନ ଦିନେ ବଳରାମଜୀଙ୍କୁ ନେଇ ଗୋପାଳ ବାଳକଙ୍କ ସହିତ ଚାଲିଲେ ବନବିହାର । ଅସଂଖ୍ୟ ସବୁଜ କୋମଳ ପତ୍ର, ପୁଷ୍ପ ଫଳ ଧାରଣ କରିଛନ୍ତି ବୃନ୍ଦାବତୀ ଦେବୀ । ତାଙ୍କର ଅଙ୍ଗେ ଅଙ୍ଗେ ଆଜି ପୁଲକ । ବସୁମାତା ତାଙ୍କ ପଦ କମଳ ପାଇ ଗର୍ବିତା । ନଗ୍ନ ପାଦରେ ଚାଲୁଛନ୍ତି ଭଗବାନ । ଖିଆଲ ରଖିଛନ୍ତି ଏକଥା ମା ଧରିତ୍ରୀ । ପ୍ରଭୁଙ୍କ ପାଦ କମଳ ଭୂଇଁରେ ପଡ଼ିବା ପୂର୍ବରୁ ବ୍ୟବସ୍ଥା କରୁଛନ୍ତି କେଉଁଠି ପୁଷ୍ପ ପାଖୁଡ଼ା ବିଛେଇ ଓ କେଉଁଠି ନବ ଦୂର୍ବାଦଳ ତୃଣ ଗାଲିଚା ବିଛାଇ ଦେଇ ।

ସ୍ୱୟଂ ଭଗବାନ ବିନୋଦରେ ଭାଇଙ୍କୁ କହୁଛନ୍ତି, ''ଦେଖ ଭାଇ ଆପଣଙ୍କୁ ଏ ନବ ବୃନ୍ଦାବନରେ ପଶୁପକ୍ଷୀ ବୃକ୍ଷଲତା କିଭଳି ଆନନ୍ଦରେ ସ୍ୱାଗତ କରୁଛନ୍ତି । ଫୁଲ ଫଳ ଅର୍ପଣ କରିବାକୁ ସେ ଭୂମିରେ ଲୋଟି ପଡୁଛନ୍ତି । ସେମାନଙ୍କର ଲକ୍ଷ୍ୟ ଆପଣଙ୍କର ଦର୍ଶନ, ସ୍ପର୍ଶ ଓ ସେବା । ଏମାନେ କୌଣସି ସାମାନ୍ୟ ଜୀବ ନୁହନ୍ତି । ସ୍ୱର୍ଗର ଦେବୀ ଦେବତା, ବୈକୁଣ୍ଠର ବିଷ୍ଣୁ ପାର୍ଷଦଙ୍କ ସହିତ ମୃତ୍ୟୁ ଲୋକର ମୁନି ଋଷି ସିଦ୍ଧ ତପସ୍ୱୀ ଏପରି ତୁଚ୍ଛାତିତୁଚ୍ଛ ଜନ୍ମ ସ୍ୱୀକାର କରିଛନ୍ତି । କେତେକ ଭ୍ରମର କୋକିଳ ହୋଇ ଆପଣଙ୍କ ଯଶୋଗାନ କରୁଛନ୍ତି । ଆପଣଙ୍କ ମନୋରଞ୍ଜନ ଲାଗି ହଂସ-ହଂସୀ, ହରିଣ-ହରିଣୀ, ମୟୂର-ମୟୁରୀ କିଭଳି ମଣ୍ଡଳ ଆକାରରେ ନୃତ୍ୟ କରୁଛନ୍ତି । ଧନ୍ୟ ଏ ବନ ବୃନ୍ଦାବନ । ଧନ୍ୟ ଏ ପର୍ବତ, ଗିରି, ନଦୀ, ବୃକ୍ଷଲତା ପଶୁ ପକ୍ଷୀ । ଧନ୍ୟା ଏ ଗୋପୀ ଗୋପାଳଗଣ ।''

ଶ୍ରୀକୃଷ୍ଣ ଗୋପାଳ ବାଳକ ଗଣଙ୍କ (ସାନୁଗଃ) ସହିତ ବୃନ୍ଦାବନରେ ଗୋଚାରଣ କରି କ'ଣ ପାଉଥିଲେ ?

ଶ୍ରୀ ଶୁକ ଉବାଚ

**ଏବଂ ବୃନ୍ଦାବନ ଶ୍ରୀମତ୍ କୃଷ୍ଣଃ ପ୍ରୀତମନାଃ ପଶୂନ୍ ।**
**ରେମେ ସଂଚାରୟନ୍ ଅଦ୍ରେଃ ସରିତ୍ ରୋଧଃସୁ ସାନୁଗଃ ॥୯॥**

ଉ. ଗୋବର୍ଦ୍ଧନ ପର୍ବତ ନିକଟରେ (ଅଦ୍ରେଃ) ଯମୁନା (ସରିତ୍) କୂଳରେ

(ରୋଧଃସୁ) ଗୋପାଳବାଳକମାନଙ୍କୁ ଏବଂ ଗାଈ ବାଛୁରୀମାନଙ୍କୁ ଦିବ୍ୟ ଆନନ୍ଦ ଦେବାକୁ ଓ ନିଜେ ସେଇ ଦିବ୍ୟ ଆନନ୍ଦ ପ୍ରାପ୍ତ ହେବା ଲାଗି ଏହା କରୁଥିଲେ । କାରଣ ସେମାନେ ସମସ୍ତେ ଜନ୍ମ ଜନ୍ମାନ୍ତରର କୃଷ୍ଣଭକ୍ତ ପରା ! !

ପ୍ରଶ୍ନ-୭୦: ପଶୁ, ପକ୍ଷୀ, ବୃକ୍ଷ, ଲତା ଭୂମି ଗୋବର୍ଦ୍ଧନ ପର୍ବତ, ଯମୁନା ନଦୀ ଆଦି ସମସ୍ତେ ଭଗବାନଙ୍କୁ ଚିହ୍ନିପାରି ତାଙ୍କ ସେବା ପାଇଁ ଲାଳାୟିତ ହେବାବେଳେ ଭଗବାନ ତାଙ୍କୁ କିଭଳି ଭାବରେ ଗ୍ରହଣ କରୁଥିଲେ ?

**କ୍ୱଚିତ୍ କ୍ରୀଡ଼ା ପରିଶ୍ରାନ୍ତଂ ଗୋପ-ଉତ୍ସଙ୍ଗ-ଉପବର୍ହଣମ୍ ।**
**ସ୍ୱୟଂବିଶ୍ରମୟତି-ଆର୍ଯ୍ୟଂ ପାଦ ସମ୍ବାହନ-ଆଦିଭିଃ ॥୧୪॥**

ଉ. ଜୀବ ସିନା ହୋସରେ ଆସି ବ୍ରହ୍ମଙ୍କ ସେବା କରୁଛି । ହେଲେ ଯୋଗାମାୟାଙ୍କ ଦ୍ୱାରା ବ୍ରହ୍ମ ତ ସ୍ୱୟଂ ବେହୋସ, ବେଖବର । ସେ ଭୁଲି ଯାଇଛନ୍ତି ଯେ ସେ ଜୀବର ସର୍ବୋଚ୍ଚ ଶାସନ କର୍ତ୍ତା । କେତେବେଳେ ନିଜ ପାଦ ଚଲା ପରିଶ୍ରମରେ କ୍ଳାନ୍ତ ହୋଇ କେଉଁ ଗୋପାଳ କୋଳରେ ମୁଣ୍ଡ ରଖି ଶୋଇଗଲେଣି । କେତେବେଳେ ବଳରାମଜୀଙ୍କୁ କ୍ଳାନ୍ତ ଦେଖି ତାଙ୍କ ପାଦ ସମ୍ବାହନ କରି, ପଙ୍ଖା ବୁଲାଇ, ଜଳପାନ ଆଦି କରାଇ ଜୀବ ସେବାରେ ମଜ୍ଜି ଯାଇଛନ୍ତି । ଖେଳର ସର୍ତ୍ତ ଅନୁସାରେ ଶ୍ରୀଦାମା ତାଙ୍କୁ ଘୋଡ଼ାକରି ତାଙ୍କ ଉପରେ ବସୁଛନ୍ତି । ଶୀଘ୍ର ଚାଲ ବୋଲି ହୁକୁମ ଦେଉଛନ୍ତି । ଧନ୍ୟ ଭଗବାନ । ଧନ୍ୟ ତାଙ୍କ ଭକ୍ତ ! ଧନ୍ୟ ଏ ଦିବ୍ୟ ବୃନ୍ଦାବନ ଧାମ ! ! !

ପ୍ରଶ୍ନ-୭୧ : ବୃନ୍ଦାବନ ଲୀଳାରେ ଶ୍ରୀକୃଷ୍ଣ ଶୁକ, ସାରୀ, ହଂସ ଆଦି ପକ୍ଷୀମାନଙ୍କ ସ୍ୱର ନକଲ କରନ୍ତି । ବାଘ ସିଂହ ଭଳି ଅଭିନୟ କରି ଗୋପାଳ ବାଳକ ସାଙ୍ଗମାନଙ୍କୁ ଡ଼ରାନ୍ତି । ବଳରାମ କେତେବେଳେ ଥକି ଗଲେ ତାଙ୍କୁ ଶୁଆଇ ଦେଇ ତାଙ୍କ ପାଦ ସେବା କରନ୍ତି । ପଙ୍ଖା କରନ୍ତି । ତାଙ୍କୁ ନିଜ ହସ୍ତରେ ଜଳପାନ କରାଇ ଆନନ୍ଦ ପ୍ରାପ୍ତ ହୁଅନ୍ତି । ହସ, ଖେଳ, ମିଥା ଯୁଦ୍ଧରେ କାଳ କଟାନ୍ତି । କେତେବେଳେ ଡ଼ାଳପତ୍ରରେ ଶଯ୍ୟା କରାଇ ଗୋପାଳ ବାଳକଙ୍କ କୋଳରେ ଶୁଅନ୍ତି । ଗୋପାଳମାନେ ରାମକୃଷ୍ଣଙ୍କୁ ଖେଳ କୌତୁକ କରୁଥିବା ବେଳେ ଅସୁର ନାଶ କରିବା କଥା କାହିଁକି ଚିନ୍ତା କଲେ ?

**ରାମ ରାମ ମହାବାହୋ କୃଷ୍ଣ ଦୁଷ୍ଟ ନିବର୍ହଣ ।**
**ଇତୋଽବିଦୂରେ ସୁମହତ୍ ବନଂ ତାଳ-ଅଳିକୁଳ ସଂକୁଳମ୍ ॥୨୧॥**

ଉ. ସେମାନେ ତାଳବନରେ ରହୁଥିବା ଧେନୁକ ଅସୁର କଥାଟି ରାମକୃଷ୍ଣଙ୍କୁ

କହି ବସିଲେ । ବୃକ୍ଷର ଫଳ ବା କର୍ମର ଫଳର ଭାଗ ଅନ୍ୟ କାହାକୁ ନ ଦେଇ ଯେ ସବୁ ଖାଏ ସେଇ ତ ଅସୁର । ତାଳବନକୁ ଧେନୁକ ଅସୁର କବ୍‌ଜା କରି ରଖିଥିଲା । କାଉ କୋଇଲିଙ୍କି ମଧ୍ୟ ବସେଇ ଦେଉ ନଥିଲା । ତାକୁ ମାରିବା ନିହାତି ଦରକାର ।

ପ୍ରଶ୍ନ-୭୨: ଖେଳିବା ବୟସ ଭଗବାନଙ୍କର । ବାଗୁଡ଼ି, ବୋହୂଚୋରୀ, ନଦୀ ପହଁରା, ମିଥ୍ୟା ଯୁଦ୍ଧ, ମଲ୍ଲ କୁସ୍ତିରେ ସେ ଦିନ କାଟୁଛନ୍ତି ବୃନ୍ଦାବନରେ । ୮୪କୋଶ ବ୍ରଜ ପରିକ୍ରମା ବେଳେ ଲୁକ୍ ଲୁକି କୁଣ୍ଡ, ଖିସଲାନି ଶିଳା, କାଳୀୟ ଦଳନ କୁଣ୍ଡ ଆଦି ଏବେ ମଧ୍ୟ ସେ କଥା ସ୍ମରଣ କରାନ୍ତି କୃଷ୍ଣ ଭକ୍ତଙ୍କୁ ।

ସେଦିନ ତାଳବନ ଲୀଳାରେ ଜୀବକୁ ଏକ ମହାନ୍ ଶିକ୍ଷାଦେବାକୁ ତାଙ୍କର ମନ ବଳିଲା । ସେ ସଦଳବଳ ଚାଲିଲେ ତାଳବନ । ତାଳବନରେ ପହଞ୍ଚି କୃଷ୍ଣ ବଳରାମ ପହଞ୍ଚି ସେଠାକାର କି ଅବସ୍ଥା ଲକ୍ଷ୍ୟ କଲେ ?

**ଫଳାନି ତତ୍ର ଭୂରୀଣି ପତନ୍ତି ପତିତାନି ଚ ।**
**ସନ୍ତି କିନ୍ତୁ-ଅବରୁଦ୍ଧାନି ଧେନୁକେନ ଦୁରାତ୍ମନା ॥୨୨॥**

ଉ. କଳିଯୁଗରେ ଲୋଭୀ ଧନ ଭଣ୍ଡାରର ମାଲିକକୁ ଧନୀ କୁହାଯାଏ । ତାଳବନରେ ଫଳଭଣ୍ଡାର ଅଧିପତି ସେହିଭଳି ଧେନୁକ ଅସୁର । ବଣରେ ଏତେ ସେତେ ଫଳ । ଭୂଇଁରେ ଅଜସ୍ର ଫଳ ପଡ଼ିଛି । ଅନେକ ଫଳ ଏବେ ବି ପାଚି ତଳେ ପଡୁଛି । ହେଲେ ଧେନୁକ ଦୁରାତ୍ମା ବୋଲି ଅନ୍ୟ କାହାକୁ ତାହା ସେବନ କରିବାକୁ ସୁଯୋଗ ଦେଉନାହିଁ । ଅବରୁଦ୍ଧ କରି ରଖିଛି । ସତେ ଯେପରି ସେ ଜଣେ କଳିଯୁଗୀ ଲୋଭୀ ଧନୀ ବ୍ୟକ୍ତି ।

ପ୍ରଶ୍ନ-୭୩: ଏ ଲୀଳାରେ ହଳଧର ଦାଉଜୀ (ବଳରାମ) ଆଗ ଅଣ୍ଟା ଭିଡ଼ିଲେ । ତାଳ ଗଛ ସବୁ ହଲାଇ ତାଳଫଳ ଝଡ଼ାଇବାରେ ଲାଗିଲେ । ଗଧ ରୂପ ଧାରୀ ଅସୁର ବୃକ୍ଷ ଗହଳରୁ ସପରିବାର ପ୍ରକଟ ହେଲା । ପ୍ରଥମେ ସେ ବଳରାମଙ୍କ ବକ୍ଷରେ ପଛ ଦୁଇ ଗୋଡ଼ ଏକତ୍ର କରି ଲାତ ମାରିଲା । କାଳ ବିଳମ୍ବ ନ କରି ବଳଦେବ ତାଙ୍କ ବଳ ପ୍ରଦର୍ଶନ କଲେ । ଅସୁରର ଦୁଇ ଗୋଡ଼କୁ ଏକାଠି ଧରି ବୁଲାଇ ବୁଲାଇ ତାଳ ଗଛରେ ପିଟିଦେଲେ । ପ୍ରାଣ ଛାଡ଼ିଲା ଧେନୁକ । ସେ ଶ୍ରୀକୃଷ୍ଣ ଦର୍ଶନ କରି ଦେହ ଛାଡ଼ିବାରୁ ସାଯୁଜ୍ୟ ମୁକ୍ତିର ଅଧିକାରୀ ହେଲା । ଏକଥା ଦେଖି ଅନ୍ୟ ଅସୁରମାନେ ମଧ୍ୟ କୃଷ୍ଣ ବଳରାମଙ୍କୁ ଆକ୍ରମଣ କରି ସମାନ ସୌଭାଗ୍ୟ ପ୍ରାପ୍ତ ହେଲେ । ଆକାଶରେ ଥାଇ ଦେବତାମାନେ ଏ ଦୃଶ୍ୟ ଉପଭୋଗ କରୁଥିଲେ । ଅସୁର ଆକ୍ରମଣ

ଭୟରୁ ମୁକ୍ତ ହୋଇ ସେମାନେ ନାଚ, ଗୀତ, ପୁଷ୍ପ ବର୍ଷଣ, କୃଷ୍ଣ ସ୍ତୁତି ଦ୍ୱାରା ଗୋପାଳମାନଙ୍କ ଆନନ୍ଦକୁ ଆହୁରି ବଢ଼ାଇଦେଲେ । ସୂର୍ଯ୍ୟଦେବ ଅସ୍ତାଚଳକୁ ଗମନ କଲେ । ଗୋଧୂଳି ଲଗ୍ନ । ଭଗବାନ ବେଣୁ ବାଦନ କରି ଧେନୁପଲ ଓ ଗୋପାଳମାନଙ୍କୁ ଧରି ନନ୍ଦ ଭବନକୁ ଫେରି ଆସିଲେ । ଏଥିରେ ତାଳବନର ଅବସ୍ଥା କଅଣ ବଦଳି ଗଲା କି ?

**ଅଥ ତାଳ ଫଳାନି-ଆଦନ୍ ମନୁଷ୍ୟା ଗତ ସାଧ୍ୱସାଃ ।**
**ତୃଣଂଚ ପଶବଃ ଚେରୁଃ ହତ ଧେନୁକ କାନନେ ॥୪୦॥**

ଉ. ହଁ ସଂପୂର୍ଣ୍ଣ ବଦଳିଗଲା । ବ୍ରଜବାସୀମାନେ ଭୟମୁକ୍ତ (ଗତ ସାଧ୍ୱସାଃ) ହୋଇ ଫଳମୂଳ ଖାଇପାରିଲେ । ଗୋ ମହିଷାଦି ପଶୁମାନେ ତୃଣ ଭୋଜନ କରିପାରିଲେ ।

ପ୍ରଶ୍ନ-୭୪: ଗୋଚାରଣ ଲୀଳାର ଏକ ବିଶିଷ୍ଟ ଅଙ୍ଗ ହେଉଛି ଗୋଷ୍ଠ ବାହୁଡ଼ା ଲୀଳା । ସେଦିନ ଧେନୁକ ଅସୁର ଉଦ୍ଧାର କରିସାରି ଭଗବାନ ଆନନ୍ଦରେ ଗୋପାଳମାନଙ୍କୁ ଧରି ମଧୁର ବଂଶୀ ଧ୍ୱନି କରି ନନ୍ଦଗ୍ରାମ ଫେରିଲେ ।

ଗୋଷ୍ଠ ବାହୁଡ଼ା ଦୃଶ୍ୟ ବର୍ଣ୍ଣନାରେ ଶ୍ରୀଶୁକଦେବ ଗୋସ୍ୱାମୀ ଅତ୍ୟନ୍ତ ଭାବ ବିହ୍ୱଳ ହୋଇ କିଭଳି ପ୍ରଶଂସାରେ ଶତମୁଖ ହୋଇପଡ଼ିଛନ୍ତି ?

**କୃଷ୍ଣଃ କମଳପତ୍ର-ଅକ୍ଷଃ ପୁଣ୍ୟ ଶ୍ରବଣ କୀର୍ତ୍ତନଃ ।**
**ସ୍ତୂୟମାନୋଽନୁଗୈଃଗୋପୈଃ ସାଗ୍ରଜୋ ବ୍ରଜଂ ଆବ୍ରଜତ୍ ॥୪୧॥**

ଉ. ଶ୍ରୀକୃଷ୍ଣଙ୍କର ହସ୍ତ, ଚରଣ, ବକ୍ଷ, ବଦନ ସବୁ କିଛି କମଳର ଶୋଭାସହିତ ତୁଳନୀୟ । ତଥାପି ସେ ସବୁକୁ ବଳି ପଡ଼ିଛି ସେଦିନର କୃଷ୍ଣଙ୍କର କମଳ ନୟନ । ଯାହାକୁ ନେତ୍ରରେ ଦର୍ଶନ କରି, ମନରେ ସ୍ମରଣ ବା ଧ୍ୟାନ କରି ବାଣୀରେ କୀର୍ତ୍ତନ କରି ଭକ୍ତ ହୁଏ ଆତ୍ମହରା । ଠାକୁରଜୀ ଗୋଠରୁ ବାହୁଡ଼ିବାବେଳେ ଗୋପାଳମାନେ ଗୋବିନ୍ଦଙ୍କର ପ୍ରଶଂସା ମୂଳକ ସ୍ତୁତି ଗାନ କରୁଥାନ୍ତି । ଅଗ୍ରଜ ବଳରାମ ପାଖେ ପାଖେ ଥାଆନ୍ତି । ନନ୍ଦ ଭବନ ପହଞ୍ଚିବା ବେଳକୁ ଗୋପୀମାନେ ସତୃଷ୍ଣ ନୟନରେ ପ୍ରତୀକ୍ଷା କରିଥାନ୍ତି ତାଙ୍କ ଦେବ ଦୁର୍ଲ୍ଲଭ ଦର୍ଶନ ଲାଗି । ସେମାନଙ୍କ ଯୁଗ ଯୁଗର କୃଷ୍ଣ ବିରହ ଜ୍ୱାଳା ଶାନ୍ତ ହେବ । ସର୍ବୋପରି ଯଶୋଦା, ରୋହିଣୀ ଆଦି ବାତ୍ସଲ୍ୟ ରସ ଆସ୍ୱାଦନ କରିବେ ସନ୍ତାନଦ୍ୱୟଙ୍କୁ କୋଳରେ ଧରି, ଭୋଜନ ପରିବେଷଣ କରି, ଶୟନ ବ୍ୟବସ୍ଥା ଆଦି କରି ।

ଧେନୁକ ଅସୁର ଶ୍ରୀକୃଷ୍ଣଙ୍କ ହାତରେ ଉଦ୍ଧାର ନ ହୋଇ ବଳରାମଜୀଙ୍କ ଦ୍ୱାରା ଉଦ୍ଧାର ହେବାର ଏକ ବିଶିଷ୍ଟ କାରଣ ବିଦ୍ୟମାନ । ତାହା ମହର୍ଷି ଦୁର୍ବାସାଙ୍କ ଅଭିଶାପ ।

ସତ୍ୟ ଯୁଗର କଥା । ଅସୁର ରାଜା ବଳିଙ୍କର ଏକ ପୁତ୍ରଙ୍କର ନାମ ସାହସିକ । ରାଜପୁତ୍ର ହେଲେ ମଧ୍ୟ ସଂସ୍କାର ଅଶୁଦ୍ଧ ହେତୁ ସେ ବିଳାସୀ ଓ କାମୁକ ହେଲେ । ଦିନେ ଗନ୍ଧମାର୍ଦ୍ଦନ ପର୍ବତରେ ସ୍ୱର୍ଗର ଅପସ୍ରା ତିଳୋତ୍ତମାଙ୍କ ରୂପ ମାଧୁର୍ଯ୍ୟରେ ମୋହିତ ହୋଇଗଲେ । ସ୍ଥାନ, କାଳ, ଜ୍ଞାନ ବିସ୍ମୃତ ହେଲେ । ସେହି ବନ ମଧ୍ୟରେ କାମକ୍ରୀଡ଼ାରେ ଦୁହେଁ ମାତିଲେ । ଦୁର୍ଭାଗ୍ୟକୁ ନିକଟରେ ଦୁର୍ବାସା ମୁନି ଧ୍ୟାନସ୍ଥ ଥିଲେ । ଅଶୁଭ ସଂସ୍କାର ସ୍ପନ୍ଦନରେ ତାଙ୍କ ଧ୍ୟାନ ଭଗ୍ନ ହେଲା । ସେ କ୍ରୋଧରେ ଗର୍ଜି ଉଠିଲେ ଦୁହିଁଙ୍କୁ ଅଭିଶାପ ଦେଲେ ଯେ ସାହାସିକ ମୃତ୍ୟୁପରେ ଦ୍ୱାପର ଯୁଗରେ କଂସ ଅନୁଚର ଧେନୁକ ଅସୁର ହେବ । ସ୍ୱର୍ଗ ଅପସରା ତିଳୋତ୍ତମା ମଧ୍ୟ ପରମ ଶିବଭକ୍ତ ବାଣାସୁରଙ୍କ କନ୍ୟା ଉଷା ରୂପେ ଜନ୍ମ ହେବେ । ଦୁହିଁଙ୍କର ପ୍ରେମ ନିଶା ଛାଡ଼ିଗଲା । ହୋସ ଆସିଗଲା ଅଭିଶାପ ବଚନ ଶୁଣି । ମୁନିଙ୍କ ପାଦତଳେ ପଡ଼ିଗଲେ ସେମାନେ । ଋଷିବର କ୍ଷଣକୋପୀ । ବୁଝାଇ କହିଲେ ଯେ ସାହାସିକ ଧେନୁକ ଅସୁର ଜନ୍ମରେ ମଧ୍ୟ ଭଗବାନ ସଙ୍କର୍ଷଣଙ୍କ ହାତରେ ଉଦ୍ଧାର ହେବେ ଶ୍ରୀକୃଷ୍ଣ ଦର୍ଶନ ମଧ୍ୟ କରିପାରିବେ । ତିଳୋତ୍ତମା ମଧ୍ୟ ଉଷା ରୂପରେ ତାଙ୍କର ଅସାମାନ୍ୟ ସୌନ୍ଦର୍ଯ୍ୟ ଦ୍ୱାରା କୃଷ୍ଣପୁତ୍ର ପ୍ରଦ୍ୟୁମ୍ନଙ୍କର ଅଲିଅଳ ପୁତ୍ର ଅନିରୁଦ୍ଧଙ୍କୁ ମୋହିତ କରି ବିବାହ କରିବେ । କୃଷ୍ଣଲୀଳାରେ ଅଂଶଗ୍ରହଣ କରି ଅଖଣ୍ଡ ସୌଭାଗ୍ୟବତୀ ହେବେ ।

ପ୍ରଶ୍ନ-୭୫: ଯୋଗମାୟାଙ୍କର ଯୋଜନା ଅନୁସାରେ ଶ୍ରୀକୃଷ୍ଣଙ୍କ ଦିବ୍ୟ ପ୍ରେମ ଲୀଳା ଆଗକୁ ବଢ଼ିଲା । ଏଥର ବୃନ୍ଦାବନ ଧାମରେ ଯମୁନା ନଦୀରେ ଲୀଳା ହେବ । ଲୀଳାରେ କଣ୍ଟା ରୂପରେ ବିଦ୍ୟମାନ କାଳିନ୍ଦୀ ହ୍ରଦରେ ବିଦ୍ୟମାନ କାଳୀୟନାଗ । ଏହି ହ୍ରଦ ଏବେ ବି ପବିତ୍ର ଯମୁନା ନଦୀ କୂଳସ୍ଥିତ ଶ୍ରୀକୃଷ୍ଣ ଦିବ୍ୟ ଲୀଳାସ୍ଥଳ ରୂପେ ଦର୍ଶନୀୟ ।

ପରେ ଲୀଳାବିହାରୀ ମନ କଲେ ବନ ବିହାର ସହିତ ଜଳବିହାର କରିବାକୁ । ସେଦିନ ବଡ଼ଭାଇ ବଳରାମଙ୍କୁ ସାଙ୍ଗରେ ନେଇ ନଥିଲେ । କାରଣ

୧. ବଳରାମଙ୍କ ସେଦିନ ଜନ୍ମ ନକ୍ଷତ୍ର ତିଥି । ନନ୍ଦ ଘରେ ଜନ୍ମ ମହାଉତ୍ସବ ।
୨. କଳା ରଙ୍ଗ ଯୋଗୁ ନାମ କଳାକାହ୍ନୁ । ଯମୁନାଙ୍କ ଜଳ କଳା ବୋଲି ତାଙ୍କ ନାମ କୃଷ୍ଣା ବା କାଳିନ୍ଦୀ । ସେ କୃଷ୍ଣଙ୍କ ପାଟରାଣୀ ହେବାକୁ କେତେ ଯୁଗ ଧରି

ତପସ୍ୟା କରୁଛନ୍ତି । ବିବାହ ସଂପର୍କ ସ୍ଥାପନ ହେବାର ଅଛି । ସୁତରାଂ ପ୍ରଥମ କନ୍ୟା ଦେଖା ଏକାନ୍ତରେ ହେଲେ ଭଲ । ବଳରାମ ଦେଢ଼ଶୁର ହେବେ ।

୩. ଭଗବାନ ଭାବିଲେ କାଳୀୟ ନାଗ ସର୍ପଟେ ହୋଇ ଏହି ହ୍ରଦରେ ରହି ପରିବେଶ ଦୂଷିତ କରୁଛି । ଶୁଦ୍ଧ କଲା ପରେ ଭାଇଙ୍କୁ ଜଣାଇବା ଉଚିତ୍ । ନଚେତ ଏ ବିବାହର ସେ ବିରୋଧ କରିପାରନ୍ତି ।

୪. କାଳୀୟ ନାଗ ସର୍ପ ଅଟେ । ଭାଇ ବଳରାମ ମଧ୍ୟ ଶେଷ ନାଗ ସର୍ପ ଜାତୀୟ । ଭାଇ ତାରା ସଂପର୍କ ଦର୍ଶାଇ ତାକୁ ସେଠାରୁ ଘଉଡ଼ା କାର୍ଯ୍ୟକୁ ସେ ହୁଏତ ନା ପସନ୍ଦ କରିପାରନ୍ତି ।

ସୁତରାଂ ବଳରାମଜୀଙ୍କୁ ସାଙ୍ଗରେ ନନେଇ ଭଗବାନ ଏକାକୀ ବାହାରିଲେ ଗୋପାଳବାଳକମାନଙ୍କୁ ସାଙ୍ଗରେ ଧରି । ପିଲାମାନେ ତ ଚପଳ ସ୍ୱଭାବର । କାଳୀୟ ନାଗର ବିଷ କଥା ସେମାନଙ୍କୁ ଜଣା ନଥାଏ । ସମସ୍ତେ ମିଶି କ୍ରୀଡ଼ାରେ ମାତିଲେ । ତୃଷାରେ ଆତୁର ହୋଇ ଗାଈମାନଙ୍କୁ କାଳିନ୍ଦୀ ହ୍ରଦର ଜଳପାନ କରାଇଲେ । ନିଜେ ମଧ୍ୟ ଜଳପାନ କଲେ । ସେ ଜଳ ଅତ୍ୟନ୍ତ ବିଷାକ୍ତ ଥିବାରୁ ସମସ୍ତେ ତତ୍‌କ୍ଷଣାତ ପ୍ରାଣ ହରାଇ ଭୂମିରେ ପଡ଼ିଗଲେ । ସେହି ପ୍ରିୟ ଗୋବିନ୍ଦ ଭକ୍ତମାନଙ୍କୁ ଠାକୁରଜୀ କିଭଳି କୃପା କଲେ ?

**ବୀକ୍ଷ ତାନ୍ ବୈ ତଥା ଭୂତାନ୍ କୃଷ୍ଣୋ ଯୋଗ-ଈଶ୍ୱର-ଈଶ୍ୱରଃ ।**
**ଈକ୍ଷୟା-ଅମୃତ ବର୍ଷିଣ୍ୟା ସ୍ୱନାଥାନ୍ ସମଜୀବୟତ୍ ॥୫୦॥**

ଉ. ସମଗ୍ର ସୃଷ୍ଟିରେ ଦେବ ଦେବ ମହାଦେବ ଯୋଗର ଈଶ୍ୱର ଯୋଗୀଶ୍ୱର ମାନ୍ୟତା ପାଇଛନ୍ତି । ତଥାପି ତାଙ୍କର ନିୟନ୍ତ୍ରଣ କର୍ତ୍ତା ଈଶ୍ୱର ବୋଲି ଶ୍ରୀକୃଷ୍ଣଙ୍କୁ ଯୋଗେଶ୍ୱେରେଶ୍ୱର କୁହାଯାଏ । ଗୋପାଳବାଳକମାନେ ଶ୍ରୀକୃଷ୍ଣଙ୍କୁ ଏକମାତ୍ର ନାଥ/ ସ୍ୱାମୀ ମାନୁଥିଲେ(ସ୍ୱନାଥାନ୍) ସେମାନଙ୍କୁ ପ୍ରାଣ ହରାଇବା ଅବସ୍ଥା(ତଥା ଭୂତାନ୍) ଦେଖି ଭଗବାନ ତାଙ୍କ ଅଚିନ୍ତ୍ୟ ଯୋଗଶକ୍ତିର ପ୍ରୟୋଗ କଲେ । ଅମୃତ ଦୃଷ୍ଟିରେ ଗୋରୁ-ଗୋପାଳମାନଙ୍କୁ ଚାହିଁ ଦିଅନ୍ତେ ସମସ୍ତେ ପୁନଃ ନିଜ ନିଜ ପ୍ରାଣ ଫେରି ପାଇଲେ(ସମଜୀବୟତ୍) ।

ଗୋପାଳ ବାଳକମାନେ ଗଭୀର ନିଦ୍ରାରୁ ଉଠିବା ଭଳି ଉଠି ବସିଲେ । ଗୋବିନ୍ଦଙ୍କ କୃପା ସ୍ମରଣ କରିବା ପାଇଁ ସମବେତ କଣ୍ଠରେ କୃଷ୍ଣଲୀଳା ଗାନରେ ମାତିଲେ ।

# ଅଥ ୧୬ଶ ଅଧ୍ୟାୟଃ

## (କାଳୀୟ ନାଗ (ଇନ୍ଦ୍ରିୟ ଅଧ୍ୟାସ) ଦମନ ଲୀଳା)

ପ୍ରଶ୍ନ-୭୬: ଦ୍ୱାରିକା ଲୀଳାରେ କାଳିନ୍ଦୀ (ଯମୁନା ମହାରାଣୀ) ଶ୍ରୀକୃଷ୍ଣଙ୍କର ପାଟରାଣୀ ହେବେ । ଏବେ କିନ୍ତୁ କୃଷ୍ଣ ଓ କୃଷ୍ଣ ଭକ୍ତଙ୍କ ଆନନ୍ଦ ଦେବାରେ କାଳିନ୍ଦୀ ହ୍ରଦରେ କାଳୀୟ ନାଗ (କୃଷ୍ଣ ଅହିନା) ବାସ କରି ଅଡୁଆ କରୁଥିବା ଭଗବାନ କ'ଣ ସଦଳବଳେ ଯାଇ କାଳୀୟକୁ ମାରି ପକାଇଲେ ?

ଶ୍ରୀ ଶୁକ ଉବାଚ

**ବିଲୋକ୍ୟ ଦୂଷିତାଂ କୃଷ୍ଣାଂ     କୃଷ୍ଣଃ କୃଷ୍ଣ-ଅହିନା ବିଭୁଃ ।**
**ତସ୍ୟା ବିଶୁଦ୍ଧିଂ ଅନ୍ୱିଚ୍ଛନ୍     ସର୍ପଂ ତଂ ଉଦ୍ ବାସୟନ୍ ॥୧॥**

ଉ. ନା ନା ଭଗବାନ ତାହା ଆଦୌ କରିନାହାନ୍ତି । ଅଧ୍ୟାତ୍ମ ଅର୍ଥରେ ଏହି ହ୍ରଦଟି ମନୁଷ୍ୟର ମନ ଅଟେ । ସହସ୍ର ଫଣା ବିଶିଷ୍ଟ ସର୍ପ ହେଉଛି ମନୁଷ୍ୟ ମନର ଦଶ ଇନ୍ଦ୍ରିୟ ମଧ୍ୟରେ ମୁଣ୍ଡ ଟେକୁଥିବା ସହସ୍ର (ଅସଂଖ୍ୟ) ବିଷୟ ଭୋଗ କାମନା । ବିଷୟ ଭୋଗର ପରିଣତି କେବଳ ଏହି ସର୍ପର ବିଷ ରୂପେ ବର୍ଣ୍ଣିତ । ଅବଶ୍ୟ ଜ୍ଞାନ ମାର୍ଗରେ ସାଧକକୁ ଏଇ ଇନ୍ଦ୍ରିୟମାନଙ୍କୁ ଆୟତ କରିବାକୁ ଅନେକ କଳବଳ କରି ଗୃହତ୍ୟାଗ କରି ପାହାଡ଼ କନ୍ଦରାରେ ଲୁଚିବାକୁ ପଡ଼େ କିନ୍ତୁ କୃଷ୍ଣ ଭକ୍ତ ସେ ଇନ୍ଦ୍ରିୟ ପୀଡ଼ାରୁ ମୁକ୍ତ । କାରଣ ସେ ସେହି ଇନ୍ଦ୍ରିୟମାନଙ୍କୁ ନିଜର ଭୋଗ କାମନା ପୂର୍ତ୍ତିରେ ନ ଲଗାଇ ଗୋପୀଙ୍କ ଭଳି କୃଷ୍ଣ ସେବାରେ ଲଗାଇ ଦିଏ । କୃଷ୍ଣ ଭକ୍ତ ଇନ୍ଦ୍ରିୟମାନଙ୍କୁ ନଷ୍ଟ କରିବା ଦରକାର ପଡ଼େନା । କେବଳ ସେମାନଙ୍କ ଦିଗ ବଦଳାଇ (ଭୋଗରୁ ସେବାକୁ) ଦିଆଯାଇଥାଏ । ସୁତରାଂ ଭଗବାନ ଭାଗବତ (ଭକ୍ତି) ଧର୍ମ ପ୍ରତିଷ୍ଠା କରିବା ଲକ୍ଷ୍ୟରେ କାଳୀୟ ରୂପୀ ବିଷଧର ସର୍ପକୁ ନ ମାରି ଘଉଡ଼େଇ ଦେଇଛନ୍ତି(ଉଦ୍‌ବାସୟନ୍) ଆଜିର ପ୍ରଶାନ୍ତ ମହାସାଗର ସ୍ଥିତ ଫିଜି ଦ୍ୱୀପକୁ ।

ପ୍ରଶ୍ନ-୭୭: ସଂସାରରେ କି ସ୍ଥଳଭାଗ କି ଜଳ ଭାଗ ସବୁଠାରେ ସର୍ପମାନେ ବାସ କରନ୍ତି । ଏପରିକି ବର୍ତ୍ତମାନ ବୃନ୍ଦାବନ ବନ କାନନ ମଧ୍ୟ ସର୍ପ, ବ୍ୟାଘ୍ର, ଭାଲୁ

ଆଦି ହିଂସ୍ର ପଶୁ ଶୂନ୍ୟ ନୁହନ୍ତି । ଭଗବାନ କାଳିନ୍ଦୀ ହ୍ରଦରେ ଗୋଟେ ସର୍ପ ଓ ତାର ପରିବାରକୁ କାହିଁକି ଲୀଳାର ବାଧକ ବୋଲି ଚିନ୍ତନ କଲେ ?

**କାଳିନ୍ଦ୍ୟାଂ କାଳିୟସ୍ୟ ଆସୀତ୍ ହ୍ରଦଃ କଶ୍ଚିତ୍ ବିଷ-ଅଗ୍ନିନା ।**
**ଶ୍ରପ୍ୟମାଣ ପୟା ଯସ୍ମିନ୍ ପତନ୍ତି-ଉପରିଗା ଖଗାଃ ॥୪॥**

ଉ. କାଳୀୟ ନାଗ କିଛି ସାଧାରଣ ସର୍ପ ନଥିଲା । ତାର ବିଷ ଜ୍ୱଳନ୍ତ ଅଗ୍ନି ସଦୃଶ (ଶ୍ରପ୍ୟମାଣ) ଥିଲା । ସେ ବିଷର ଉତ୍କଟତା ଏତେ ଅଧିକ ଥିଲା ଯେ ସେ ବିଷ ବାଷ୍ପ ଉପରକୁ ଉଠୁଥିବା ବେଳେ ଉପରେ ଉଡୁଥିବା ପକ୍ଷୀମାନେ ମଧ ମରିପଡ଼ନ୍ତି ତଳେ । ନଦୀ କୂଳସ୍ଥିତ ବୃକ୍ଷ, ଲତା ଜନ୍ମ ହେଉ ହେଉ ପ୍ରାଣ ହରାନ୍ତି ।

ଅଧ୍ୟାତ୍ମପକ୍ଷେ ଏହାର ଅର୍ଥ ହେଲା ଯେ- ସିଦ୍ଧ ସାଧକ ତପସ୍ୱୀ ଖ (ଆକାଶରେ) ଖଗ ରୂପରେ ଉଡ଼ିବା ସିଦ୍ଧି ହାସଲ କରି ମଧ ଏହି ଇନ୍ଦ୍ରିୟ ବାସନା ଅଗ୍ନିରେ ବିଷ ଜ୍ୱାଳାରେ ଛଟପଟ ହୁଅନ୍ତି ।

ପ୍ରଶ୍ନ-୭୮ : କାଳୀୟ ସର୍ପଙ୍କର ବିଷର ଜ୍ୱାଳାରେ ସେ ହ୍ରଦର କୂଳରେ ବୃକ୍ଷଲତା ମଧ ବଞ୍ଚି ପାରୁନଥିଲେ । କେବଳ ଗୋଟିଏ ମାତ୍ର କଦମ୍ବବୃକ୍ଷ (ଆଜି ମଧ ଯମୁନା କୂଳରେ ବିଦ୍ୟମାନ) ତିଷ୍ଠି ରହିଥିଲା । କାରଣ ଏହା କୌଣସି ସାଧାରଣ ବୃକ୍ଷ ନଥିଲା । ଥରେ ବିଷ୍ଣୁ ବାହନ ଗରୁଡ଼ଜୀ ମହାରାଜାଙ୍କ ମୁଖରୁ କିଛି ବୁନ୍ଦା ଅମୃତ ଏ ବୃକ୍ଷରେ ପଡ଼ିଥିବାରୁ ସେ ବିଷ ଜ୍ୱାଳାରୁ ରକ୍ଷା ପାଇ ଯାଇଥିଲେ । କୃଷ୍ଣ ଲୀଳାରେ ଅଂଶଗ୍ରହଣ କରିବାର ସୌଭାଗ୍ୟ ତାଙ୍କୁ ମିଳିଥିଲା । ଦିନେ ଖେଳୁ ଖେଳୁ ଗୋପାଳବାଳକମାନଙ୍କ ପେଣ୍ଡୁଟି ହ୍ରଦ ଜଳରେ ପଡ଼ିଗଲା ।

ନନ୍ଦନନ୍ଦନ କୃଷ୍ଣ ସମସ୍ତଙ୍କୁ ପଛରେ ପକାଇ ଚଢ଼ିଗଲେ ଏହି କଦମ୍ବ ବୃକ୍ଷରେ । ବାଳକୃଷ୍ଣ ହଠାତ୍ ପେଣ୍ଡୁ ଆଣିବାକୁ ଡ଼େଇଁ ପଡ଼ିଲେ ହ୍ରଦ ମଧକୁ । ହସ୍ତପଦ ଜଳରେ ପିଟି କ୍ରୀଡ଼ା ଆରମ୍ଭ କରିଦେଲେ । ସତେ ଯେଭଳି କ୍ଷୁଦ୍ର ବନ୍ୟ ହସ୍ତୀଟିଏ ମନ ଖୁସିରେ ମାନସରୋବରରେ ଜଳକ୍ରୀଡ଼ା କରୁଛି କି ? ସମଗ୍ର ହ୍ରଦର ଜଳ ଉଚ୍ଛୁଳି ପଡ଼ିଲା । ଧାଇଁ ଆସିଲା ମହା ଗର୍ଜନ କରି କାଳୀୟ । ଠାକୁରଜୀଙ୍କୁ ସତର୍କ ବାଣୀ ଶୁଣାଇଦେଲା । ଭଗବାନ କି ମାନିବା ଜନ୍ତୁ । କାଳୀୟ ଦଂଶନ କଲା ଭଗବାନକୁ ବକ୍ଷରେ । ପୁଣି ନିଜ ଲାଞ୍ଜରେ ତାଙ୍କୁ ଛନ୍ଦି ପକାଇଲା ।

ଭଗବାନ ଆଉ ଜଳ ଉପରି ଭାଗରେ ଦୃଶ୍ୟ ହେଉ ନଥାନ୍ତି । ହ୍ରଦ କୂଳରେ ଗୋପାଳବାଳକମାନେ ବ୍ୟସ୍ତ ହୋଇପଡ଼ିଲେ । ଆକୁଳ କ୍ରନ୍ଦନ କରି ଚିତ୍କାର କରି ସମଗ୍ର ବନଭୂମିକୁ କମ୍ପାଇ ଦେଲେ । ଚରୁଥବା ଗାଈ, ବାଛୁରୀ, ବୃକ୍ଷଲତା, କୀଟ

ପତଙ୍ଗ ଆଦି ମଧ୍ୟ ସ୍ୱରରେ ସ୍ୱର ମିଳାଇ ବ୍ୟାକୁଳତା ପ୍ରକାଶ କଲେ । ବ୍ରଜ ଭୂମିରେ ନନ୍ଦ ଆଳୟରେ ଏ ଖବର ପାଇବା ପରେ ଗୋପୀ, ଗୋପାଳ, ନନ୍ଦ, ଯଶୋଦା ଆଦିଙ୍କର କି ଶୋଚନୀୟ ଅବସ୍ଥା ହେଲା ?

**ଆବାଳ ବୃଦ୍ଧ ବନିତାଃ ସର୍ବେଽଙ୍ଗ ପଶୁବୃତ୍ତୟଃ ।**
**ନିର୍ଜଗ୍ମୁଃ ଗୋକୁଳାତ୍ ଦୀନାଃ କୃଷ୍ଣ ଦର୍ଶନ ଲାଳସାଃ ॥୧୫॥**

ଉ. ବାଳକ, ବୃଦ୍ଧ, ପୁରୁଷ, ସ୍ତ୍ରୀ ସମସ୍ତେ ଦୌଡ଼ି ଆସି ଘଟଣାସ୍ଥଳରେ ପହଞ୍ଚିଗଲେ । ଯତେ ଯେପରି ଗାଈଟିଏ ତା କଅଁଳା ବାଛୁରୀକୁ (ପଶୁ ବୃତ୍ତୟଃ) ଦର୍ଶନ କରିବାକୁ ଦୌଡୁଛି । ସମସ୍ତେ ବ୍ୟାକୁଳ ହୋଇ କ୍ରନ୍ଦନ କରିବାରେ ଲାଗିଲେ । ଭୀମଙ୍କ ବଳ କୁନ୍ତୀଙ୍କୁ ଜଣା । କୁମ୍ଭୀର ପାଇଁ କୁନ୍ତୀ ବ୍ୟସ୍ତ ନ ହେବା ସ୍ୱାଭାବିକ । ଏଠାରେ ଏକାକୀ ବଳରାମ ଆଦୌ ବ୍ୟସ୍ତ ହେଉ ନଥାନ୍ତି । କାରଣ ତାଙ୍କୁ କେବଳ ଜଣା କୃଷ୍ଣ ଭଗବାନ ଓ କାଳୀୟ ସର୍ପ ଏକ ସାମାନ୍ୟ ଜୀବ ।

ପ୍ରଶ୍ନ-୭୯ : ନନ୍ଦ ଉପନନ୍ଦ ଆଦି ଗୋପାଳମାନେ ବିଷାକ୍ତ କାଳିନ୍ଦୀ ହ୍ରଦରେ ପଶିବାକୁ ବାହାରିବାରୁ ବଳରାମ କଅଣ କଲେ ?

**କୃଷ୍ଣପ୍ରାଣାନ୍ ନିର୍ବିଶତଃ ନନ୍ଦ-ଆଦୀନ୍ ବୀକ୍ଷ ତଂ ହ୍ରଦମ୍ ।**
**ପ୍ରତ୍ୟଷେଧତ୍ ସ ଭଗବାନ ରାମଃ କୃଷ୍ଣ-ଅନୁଭାବ ବିତ୍ ॥୨୨॥**

ଉ. ବଳରାମଜୀଙ୍କୁ ଶ୍ରୀକୃଷ୍ଣଙ୍କ ସ୍ୱରୂପ ଶକ୍ତିର ବାସ୍ତବିକ ଜ୍ଞାନ ଥିଲା । ସୁତରାଂ ସେ ସେମାନଙ୍କୁ ବୁଝାଇ ସୁଝାଇ କୌଣସି ପ୍ରକାରେ ଅଟକେଇ ଦେଲେ ।

ପ୍ରଶ୍ନ-୮୦ : କ୍ରମେ ଦୃଶ୍ୟ ପଟଳ ହ୍ରଦ ମଧ୍ୟରେ ସ୍ୱଷ୍ଟ ହୋଇଗଲା । ସମସ୍ତେ ଦେଖିଲେ କାଳୀୟର ସହସ୍ର ଫଣା ଉପରେ ଠାକୁରଜୀ ତାଳେ ତାଳେ ନୃତ୍ୟରତ । ସେଥିପାଇଁ ତାଙ୍କୁ କେତକ ନୂତନ ପଦବୀ ମଧ୍ୟ ମିଳିଗଲା । ନଟବର, ନଟନାଗର, ନଟରାଜ ଓ ନଟେଶ୍ୱର ଇତ୍ୟାଦି । ସ୍ୱଭାବତଃ ସେ ବନମାଳୀ ବଂଶୀଧାରୀ ରୂପରେ ନୃତ୍ୟ ପ୍ରିୟ । ସୁଯୋଗ ପାଇଲେ ଭକ୍ତ ଆଗରେ ସେ ନାଚିବା, କୁଦିବା, ଖେଳିବା, ଗାଇବା କୌଶଳ ପ୍ରଦର୍ଶନ କରନ୍ତି । କୃଷ୍ଣ ପ୍ରେମରେ ମୋହିତ ହୁଏ ଜୀବ ।

ଏ ବିଚିତ୍ର ଦୃଶ୍ୟରେ ଗୋପୀମାନେ ବ୍ୟାକୁଳ କ୍ରନ୍ଦନ କରୁଥାନ୍ତି । କାରଣ ସେମାନେ ରାସଲୀଳା ଆନନ୍ଦରୁ ବଞ୍ଚିତ ହେବାକୁ ଯାଉଛନ୍ତି । କେତେକ ଗୋପୀ ଗୋପାଳ ଦୁଃଖରେ ଅଶ୍ରୁବର୍ଷଣ କରୁଥାନ୍ତି । ସାଥେ ସାଥେ କୃଷ୍ଣଙ୍କ ଲୀଳା ଗାନ କରୁଥାନ୍ତି ।

କାଳୀୟ ଫଣା ଉପରେ ଭଗବାନଙ୍କ ନୃତ୍ୟ ଦର୍ଶନ ଲାଗି ସ୍ୱର୍ଗଲୋକରୁ ଦେବତା, ମୁନି, ଋଷି ସିଦ୍ଧ ଗଣ୍ ଆଦି ଭିଡ଼ ଜମାଇଲେ । ଠାକୁରଜୀ ନାଚି ନାଚି ସର୍ପର ଗୋଟିଏ ପରେ ଗୋଟିଏ ମସ୍ତକକୁ ଶକ୍ତି-ହୀନ କରି ପକାଉଥାନ୍ତି । ଶେଷରେ କାଳୀୟର ସମଗ୍ର ଶରୀର ଶକ୍ତିହୀନ ହୋଇଗଲା । ସେ ଅନନ୍ୟୋପାୟ ହୋଇ ଶରଣ ପଶିଲା । ଏହା ଦେଖି ଦେବତା ଓ ଋଷିମାନେ ପୁଷ୍ପ ବର୍ଷଣ, ବେଦଗାନ, ନୃତ୍ୟ, ସଙ୍ଗୀତ ଗାନ, ବାଦ୍ୟ ବାଦନ ଆରମ୍ଭ କରିଦେଲେ ।

ଅନ୍ୟ ପକ୍ଷରେ କାଳୀୟ ପରିବାରର ସମସ୍ତେ ଦୁଃଖ ସମୁଦ୍ରରେ ବୁଡ଼ିଗଲେ । କାଳୀୟ ବହୁ ପତ୍ନୀକ ଥିଲେ । ତାଙ୍କର ପତ୍ନୀମାନେ ବସନ, ଭୂଷଣ, ଅଳଙ୍କାର ଅସ୍ତବ୍ୟସ୍ତ ଅବସ୍ଥାରେ ଠାକୁରଜୀଙ୍କ ପାଖରେ ପହଞ୍ଚିଲେ । ସାଷ୍ଟାଙ୍ଗ ପ୍ରଣାମ କଲେ । ଶରଣ ପଶିଲେ । ପତିଙ୍କୁ ଅପରାଧୀ ବୋଲି କହିଲେ । ସେମାନେ ସେତେବେଳକୁ ଚିହ୍ନି ସାରିଥାନ୍ତି ଯେ ଠାକୁରଜୀ ସ୍ୱୟଂ ବିଶ୍ୱନିୟନ୍ତା ଗୋଲାକ ବିହାରୀ ଶ୍ରୀକୃଷ୍ଣ । କହିଲେ "ପ୍ରଭୋ, ଆପଣଙ୍କର ଶତ୍ରୁ ମିତ୍ର କେହି ନଥାନ୍ତି । ତଥାପି ଦୁଷ୍ଟକୁ ଦଣ୍ଡଦେଇ ବାଟକୁ ଆଣିବା ଭକ୍ତକୁ ଆନନ୍ଦ ଦେବା କାମ ଆପଣଙ୍କର କର୍ତ୍ତବ୍ୟ । ଆପଣଙ୍କ ଦଣ୍ଡ ମଧ୍ୟ ଜୀବ ପ୍ରତି କୃପା । ଆମ୍ଭମାନଙ୍କ ପତିଙ୍କୁ ଦଣ୍ଡ ଦେଇ ଆମ ପ୍ରତି କୃପା କରିଛନ୍ତି ।" ଠାକୁରଜୀଙ୍କ କେଉଁ କର୍ମକୁ ନାଗପତ୍ନୀମାନେ କୃପା ବୋଲି ଚିହ୍ନଟ କଲେ ?

**ନାଗପତ୍ନ୍ୟ ଉଚୁଃ**

**କସ୍ୟ-ଅନୁଭାବୋଽସ୍ୟ ନ ଦେବ ବିଦ୍ମହେ**
**ତବ-ଅଙ୍‌ଘ୍ରି ରେଣୁ ସ୍ପର୍ଶ-ଅଧିକାରଃ ।**
**ଯଦ୍ ବାଞ୍ଛୟା ଶ୍ରୀଃ ଲଳନାଽଽଚରତ୍ ତପୋ**
**ବିହାୟ କାମାନ୍ ସୁଚିରଂ ଧୃତବ୍ରତା ॥୩୬॥**

ଉ. କାଳୀୟ ପତ୍ନୀମାନେ ଜିଜ୍ଞାସା କଲେ, "ହେ, ଭଗବନ, ସର୍ପ ଜନ୍ମରେ ଆମ ପତିଦେବ କୌଣସି ପୁଣ୍ୟ କରିବା ଆମେ ଦେଖିନାହୁଁ । ଅନ୍ୟ କେଉଁ ଜନ୍ମରେ ସେ କ'ଣ ଏପରି ପୁଣ୍ୟ କରିଥିଲେ ଯାହା ଫଳରେ ସେ ଆପଣଙ୍କ ଚରଣ ରଜ ପ୍ରାପ୍ତ ହେଲେ । ଯେଉଁ ଚରଣ ରଜପ୍ରାପ୍ତିରୁ ବଞ୍ଚିତ ମହାବୈକୁଣ୍ଠବାସିନୀ ମହାଲକ୍ଷ୍ମୀଜୀ ଯୁଗ ଯୁଗ ଧରି ବ୍ରଜମଣ୍ଡଳର ବିଲ୍ୱବନରେ ତପସ୍ୟା କରୁଛନ୍ତି । କୃଷ୍ଣ ଭକ୍ତଙ୍କର ସେବା ସୁଯୋଗ ଖୋଜୁଛନ୍ତି ।" ଅତଏବ ହରି ଚରଣ ରଜ ପ୍ରାପ୍ତି ହିଁ କୃପା ଅଟେ ।

ପ୍ରଶ୍ନ-୮୧ : ଥରେ ଗୁରୁ ଓ ଭଗବାନଙ୍କ ଅସୀମ ଅହେତୁକ କୃପାରୁ ଶ୍ରୀକୃଷ୍ଣଙ୍କର ଚରଣ କମଳରେ ଶରଣାପନ୍ନ (ପାଦରଜ ପ୍ରପନ୍ନାଃ) ହୋଇଗଲେ ସାଧକ ସ୍ୱର୍ଗଲୋକର ଇନ୍ଦ୍ରାଦି ପଦ ସୁଖ ଲାଳସା କ'ଣ ତ୍ୟାଗ କରିଦେଇପାରେ ?

**ନ ନାକପୃଷ୍ଠଂ ନ ଚ ସାର୍ବଭୌମଂ**
**ନ ପାରମେଷ୍ଠ୍ୟଂ ନ ରସା-ଆଧିପତ୍ୟମ୍ ।**
**ନ ଯୋଗ ସିଦ୍ଧିଃ ଅପୁନର୍ଭବଂ ବା**
**ବାଞ୍ଛନ୍ତି ଯତ୍‌ପାଦରଜଃ ପ୍ରପନ୍ନାଃ ॥୩୭॥**

ଉ. ସ୍ୱର୍ଗ ଲୋକର ସମ୍ରାଟ୍, ପଦବୀ, ବ୍ରହ୍ମଲୋକର ବ୍ରହ୍ମା ପଦବୀ, ସପ୍ତ ଦ୍ୱୀପା ମହୀମଣ୍ଡଳର ରାଜଚକ୍ରବର୍ତ୍ତୀ ପଦ, ସପ୍ତପାତାଳଲୋକର ସର୍ବୋଚ୍ଚ ଶାସନାକର୍ତ୍ତା, ଅଣିମାଦି ଅଷ୍ଟସିଦ୍ଧିର ଲୋଭ ସହିତ ମୋକ୍ଷ (ଅପୁନର୍ଭବ) ସୁଖ ମଧ୍ୟ ସ୍ୱତଃ ତ୍ୟକ୍ତ ହୋଇଯାଏ । ଏହି ସବୁ ସ୍ୱର୍ଗ, ପାତାଳ ଓ ମର୍ତ୍ତ୍ୟ ଆଦି ଲୋକରେ କେବଳ ବିଷୟ ଆନନ୍ଦ ମିଳେ । ସେ ଉଭୟ ଆନନ୍ଦଠାରୁ ଭକ୍ତିଜନିତ ପରମାନନ୍ଦ କୋଟି ଗୁଣରେ ଅଧିକ ଆକର୍ଷଣୀୟ । ସେଇଥି ପାଇଁ ସିନା ବୈକୁଣ୍ଠ ଛାଡ଼ି ମହାଲକ୍ଷ୍ମୀ ନାରାୟଣ ବକ୍ଷ ବିହାରିଣୀ ହେଲେ ମଧ୍ୟ କୃଷ୍ଣ ଲୀଳା ଆରମ୍ଭ ହେଉ ହେଉ ବୃନ୍ଦାବନରେ ବେଲ ବନରେ ଡ଼େରା ପକାଇ ବସନ୍ତି । ନାରଦଙ୍କୁ, ବ୍ରହ୍ମାଙ୍କୁ, ଅର୍ଜ୍ଜୁନଙ୍କୁ ନାରୀ ବେଶରେ ନାରଦୀ, ବ୍ରହ୍ମାଣୀ, ଅର୍ଜ୍ଜୁନୀ ହେବାକୁ ପଡ଼େ । ସମସ୍ତଙ୍କର ସେଇ ଏକମାତ୍ର ଉଦ୍ଦେଶ୍ୟ କୃଷ୍ଣ ଲୀଳାରେ ଭାଗନେଇ ସେବା ଆନନ୍ଦ ପ୍ରାପ୍ତି କରିବା ।

ପ୍ରଶ୍ନ-୮୨: କାଳୀୟ ପତ୍ନୀମାନେ ପତିଙ୍କ ଅପରାଧ ପାଇଁ ଭଗବାନଙ୍କୁ କ୍ଷମା ମାଗିବାକୁ ଯାଇ କଅଣ ସବୁ କହି ତାଙ୍କଠାରୁ କୃପା ଭିକ୍ଷା କରିଛନ୍ତି ?

**ଅନୁଗୃହ୍ଣୀଷ୍ୱ ଭଗବନ୍ ପ୍ରାଣାନ୍ ତ୍ୟଜତି ପନ୍ନଗଃ ।**
**ସ୍ତ୍ରୀଣାଂ ନଃ ସାଧୁ ଶୋଚ୍ୟାନାଂ ପତିଃ ପ୍ରାଣଃ ପ୍ରଦୀୟତାମ୍ ॥୫୨॥**

ଉ. ଅତ୍ୟନ୍ତ କାତର ସ୍ୱରରେ ସେମାନେ ନିବେଦନ କରି କହିଛନ୍ତି, "ହେ ଭଗବନ୍, ଆମର ପତି ଜାତିରେ ସର୍ପ । ତାଙ୍କ ପ୍ରତି କୃପା କରନ୍ତୁ । ସେ ଆମ୍ଭମାନଙ୍କର ପ୍ରାଣ ସ୍ୱରୂପ । ଆପଣ ସ୍ୱୟଂ ସୃଷ୍ଟି ପାଳକ (ସାଧୁ) ଆମକୁ ଉଦ୍ଧାର କରନ୍ତୁ ଆମ ପତିଦେବଙ୍କ ପ୍ରାଣ ଫେରେଇ ଦେଇ ।"

ପ୍ରଶ୍ନ-୮୩: ଠାକୁରଜୀ କୃପାର ମୂର୍ତ୍ତି । କାଳୀୟ ପ୍ରାଣ ନନେଇ ତାଙ୍କୁ ଛାଡ଼ି ଦେଇଛନ୍ତି । କାରଣ ହେଉଛି ଜୀବପାଇଁ ଅଜସ୍ର ସଂସାର ଆସକ୍ତିର ପ୍ରତୀକ କାଳୀୟର

ସହସ୍ର ଫଣା । ଜୀବର ଜନ୍ମ ଜନ୍ମର ଆସକ୍ତିକୁ ଅକସ୍ମାତ୍ ହଟାଇବା ଅନୁଚିତ । ଅସମୟରେ ସେ ମୁକ୍ତ ହୋଇ ଯିବ ଯେ । ସେଇ ସଂସାର ଆସକ୍ତିକୁ ଯଦି ଭଗବତ ଆସକ୍ତିରେ ରୂପାନ୍ତରଣ କରାଯାଇପାରେ କୌଣସି ଗୁରୁ ବା ବୈଷ୍ଣବଙ୍କ ସେବା କରି ସେ ହୁଏତ କେଉଁ ଭବିଷ୍ୟତ ଜନ୍ମରେ ଉଦ୍ଧାର ପାଇଯିବ ଏହା ଭଗବାନଙ୍କର ଉଦ୍ଦେଶ୍ୟ । ଏବେ କାଳୀୟ କ'ଣ ନୀରବଦ୍ରଷ୍ଟା ସାଜି ବସିଗଲେ ?

କାଳୀୟ ଉବାଚ

**ବୟଂ ଖଳାଃ ସହ-ଉତ୍ପତ୍ତ୍ୟା ତାମସା ଦୀର୍ଘ ମନ୍ୟବଃ ।**
**ସ୍ୱଭାବୋ ଦୁସ୍ତ୍ୟଜୋ ନାଥ ଲୋକାନାଂ ଯତ୍ ଅସତ୍‌ଗ୍ରହଃ ॥୫୬॥**

ଉ. ନା, ନା ସେ ବରଂ ନିଜର ଦୋଷ ସ୍ୱୀକାର କରିଛନ୍ତି । କହିଛନ୍ତି, ''ହେ ପ୍ରଭୋ, ମୁଁ ଜନ୍ମରେ ସର୍ପ, ସ୍ୱଭାବରେ ଖଳ, ତାମସିକ ଜନ୍ତୁ ଓ ଅତୀବ କ୍ରୋଧୀ । କାରଣ ହଳାହଳ ବିଷ ଧରି ମୁଁ ବୁଲୁଛି । ମନୁଷ୍ୟମାନେ ପରା ନିଜର ମନ୍ଦ ସ୍ୱଭାବ ଛାଡ଼ିବା କାଠିକର ପାଠ । ଜୀବ କୃପାର ଅଯୋଗ୍ୟ ହେଲେ ମଧ୍ୟ ଆପଣ କୃପା ନିଧାନ । ଅତଏବ ମୋର ଦୋଷ ନିଜ ଗୁଣେ କ୍ଷମା କରି ଦିଅନ୍ତୁ ।''

ପ୍ରଶ୍ନ-୮୪: ଏଭଳି ବିନୀତ ନିବେଦନ କରି କାଳୀୟ କ'ଣ କୃତ ଅପରାଧର ଦଣ୍ଡ ପାଇବାକୁ ଅନିଚ୍ଛୁକ ହେଲେ କି ?

**ଭବାନ୍ ହି କାରଣଂ ତତ୍ର ସର୍ବଜ୍ଞୋ ଜଗତ୍ ଈଶ୍ୱରଃ ।**
**ଅନୁଗ୍ରହ ନିଗ୍ରହଂ ବା ମନ୍ୟସେ ତତ୍ ବିଧେହି ନଃ ॥୫୯॥**

ଉ. ସେ ବିଲ୍‌କୁଲ୍ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ବରଂ ସୁନା ପିଲାଟି ପରି ନିଜକୁ ନିଜ ପରିବାରକୁ କୃପା କରିବା ବା ସମୁଚିତ ଦଣ୍ଡ ଦେବା(ନିଗ୍ରହଂ) ଅଧିକାର ଭଗବାନ୍‌ଙ୍କ ଉପରେ ନ୍ୟସ୍ତ କରିଛନ୍ତି । କାରଣ ସେ ସର୍ବଜ୍ଞ, ଜଗଦୀଶ୍ୱରଙ୍କ ହାବୁଡ଼ରେ ପଡ଼ିଛନ୍ତି । ଯମରାଜାଙ୍କ ହାବୁଡ଼ରେ ତ ନୁହେଁ । ଏହା ତାଙ୍କର ସୌଭାଗ୍ୟ ବୋଲି ସେ ମନେ କରିଛନ୍ତି ।

ପ୍ରଶ୍ନ-୮୫: କାଳୀୟଙ୍କର ପତ୍ନୀମାନେ ୨୭ଶ୍ଳୋକରେ (୩୨-୫୯) ଲମ୍ବା ଚଉଡ଼ା ସ୍ତୁତି କରିଛନ୍ତି ଭଗବାନଙ୍କର । ସେମାନେ କହିଛନ୍ତି, ''ହେ ଭଗବନ୍, ଆପଣ ବିଶ୍ୱସ୍ରଷ୍ଟା, ବିଶ୍ୱସ୍ୱରୂପ, ବିଶ୍ୱକାରଣ, ବିଶ୍ୱନିୟନ୍ତା ଓ ବିଶ୍ୱାତୀତ ମଧ୍ୟ । ଆଗମ (ତନ୍ତ୍ର), ନିଗମ (ବେଦ) ଆପଣଙ୍କୁ ପ୍ରବୃତ୍ତି ମାର୍ଗ ଓ ନିବୃତ୍ତି ମାର୍ଗରେ ପାଇବାର ଦିଗ୍ ଦର୍ଶନ କରିଛନ୍ତି । ଆମ୍ଭେମାନେ ସର୍ପ ବୋଲି ସ୍ୱଭାବତଃ ତମୋଗୁଣୀ । ବିଷ୍ଣୁ-ବୈଷ୍ଣବ

ଚିହ୍ନିପାରିବାରେ ଅସମର୍ଥ । ଆମେ କିଭଳି ସେବା କରିପାରିବୁ ମାର୍ଗ ଦର୍ଶନ କରନ୍ତୁ । କୃପା କରନ୍ତୁ ।'' କାଳୀୟ ନାଗ ମଧ୍ୟ ନିଜର ଅପରାଧ ସ୍ୱୀକାର କରିଛନ୍ତି । କରୁଣାବରୁଣ ଆଳୟ ଭଗବାନ ସେମାନଙ୍କୁ କିଭଳି କୃପାକଲେ ?

ଶ୍ରୀଶୁକ ଉବାଚ

**ଦ୍ୱୀପଂ ରମଣକଂ ହିତ୍ୱା ହ୍ରଦଂ ଏତଂ ଉପାଶ୍ରିତଃ ।**
**ଯତ୍‌ଭୟାତ୍ ସ ସୁପର୍ଣ୍ଣଃ ତ୍ୱାଂ ନ-ଅଦ୍ୟାତ୍ ମତ୍‌ପାଦ ଲାଞ୍ଛିତମ୍ ॥୬୩॥**

ଉ. ଭଗବାନ ସେମାନଙ୍କୁ ଆଦେଶ ଦେଇ କହିଲେ, ''ହେ କାଳୀୟ, ତୁମେ ସମୁଦ୍ର ମଧ୍ୟସ୍ଥ ରମଣକ ଦ୍ୱୀପ ବା ଆଜିର ଫିଜି ଦ୍ୱୀପ ତ୍ୟାଗ କରି ଗରୁଡ଼ଙ୍କ ଭୟରେ ଏ ହ୍ରଦକୁ ଆସିଥିଲ । ତୁମେ ଏବେ ସପରିବାର ସେଠାକୁ ଫେରିଯାଅ । ତୁମ ମସ୍ତକରେ ମୋ ଚରଣ ଚିହ୍ନ ଦେଖିଲେ ଗରୁଡ଼ ଆଉ ତୁମମାନଙ୍କୁ ଭୋଜନ କରିବେ ନାହିଁ । କାଳୀୟ ଭଗବାନଙ୍କ ପୂଜା ପରିକ୍ରମା କରି ସପରିବାର ରମଣକ ଦ୍ୱୀପକୁ ଗମନ କଲେ ।

ଅଧ୍ୟାତ୍ମ ଅର୍ଥରେ ଭଗବାନ କାଳୀୟକୁ ଛାଡ଼ିଲେ କାରଣ, ୧.ଭକ୍ତମାନଙ୍କୁ କାମନା ବାସନା ତ୍ୟାଗ କରିବା ଦରକାର ପଡ଼ିବନି । ସେଗୁଡ଼ିକୁ କୃଷ୍ଣାଭିମୁଖୀ କରିଦେଇ ସେମାନେ ନିର୍ଭୟରେ ସଂସାରରେ ରହିବେ ଏଣିକି । ୨. କାଳୀୟ ପତ୍ନୀମାନେ କୃଷ୍ଣଙ୍କୁ ନିଜର ଶଙ୍ଖାସିନ୍ଦୂର ମାଗିଥିଲେ । ୩. କାଳୀୟ ରହୁଥିଲା ଯମୁନା ନଦୀରେ । ଯମୁନା କୃଷ୍ଣଙ୍କ ଭବିଷ୍ୟତରେ ପାଟରାଣୀ । ସୁତରାଂ କାଳୀୟ କୃଷ୍ଣଙ୍କ ପୁତ୍ର ସମ୍ବନ୍ଧ ହେଲା । ଅପରାଧ କଲେ ପିତା ପୁତ୍ରକୁ ହତ୍ୟା ନକରି ସୁଧାରି ନିଅନ୍ତି ।

ମହାତ୍ମାମାନେ କହନ୍ତି ନାଗ ସର୍ପ ମସ୍ତକରେ ନିଜ ଚରଣ (କଠଉ) ଚିହ୍ନ ସ୍ଥାପନ କରି ଶ୍ରୀକୃଷ୍ଣ କଳିଯୁଗର ଦୁଷ୍ଟ ଲୋକମାନଙ୍କୁ ସତର୍କ କରାଇ ଦେଇଛନ୍ତି । ଗରୁଡ଼ଙ୍କର ଖାଦ୍ୟ ସର୍ପ । ତଥାପି ନାଗ ମସ୍ତକରେ ସେ କଉଠ ଚିହ୍ନ ଦେଖି ଭୟ କରନ୍ତି । ଖାଦ୍ୟ, ଖାଦକ ନିୟମରେ ସର୍ପକୁ ଭୋଜନ ନ କରି ବିଷ୍ଣୁ ବାହନ ଗରୁଡ଼ ବରଂ ଉପବାସ ରହିବାକୁ ପସନ୍ଦ କରନ୍ତି ।

କଳିଯୁଗରେ ଦୁଷ୍ଟ ଲୋକମାନେ ବୈଷ୍ଣବ ଅପରାଧରୁ ନିଜକୁ କିଭଳି ରକ୍ଷା କରିବେ ? କାହାରି ମସ୍ତକରେ ଶିଖା (ଚୈତନ୍ୟ ଚୁଟି), କପାଳରେ ତିଳକ ଓ କଣ୍ଠରେ ମାଳି ଦେଖି ସେମାନେ ଆଗ ସତର୍କ ହୋଇପାରିବେ ।

# ଅଥ ୧୭ଶ ଅଧ୍ୟାୟଃ

## (କାଳୀୟ ନାଗଙ୍କର ପୂର୍ବ ଇତିହାସ ଓ ଦାବାଗ୍ନିପାନ ଲୀଳା)

ପ୍ରଶ୍ନ-୮୬: କାଳୀୟ ନାଗକୁ ଶ୍ରୀକୃଷ୍ଣ ପ୍ରାଣରେ ନ ମାରି ତାଙ୍କ ନିଜ ରାଜ୍ୟ ରମଣକ ଦ୍ୱୀପକୁ (ଆଧୁନିକ ଫିଜି ଦ୍ୱୀପ) ଫେରାଇ ଦେଲେ । ଏକଥା ଶୁଣି ରାଜା ଶୁକଦେବଙ୍କୁ କାଳୀୟ ବିଷୟରେ କ'ଣ ପ୍ରଶ୍ନ କଲେ ?

ରାଜା ଉବାଚ

**ନାଗାଳୟଂ ରମଣକଂ କଥଂ ତତ୍‌ତ୍ୟାଜ କାଳୀୟଃ ।**
**କୃତଂ କିଂ ବା ସୁପର୍ଣ୍ଣସ୍ୟ ତେନ-ଏକେନ-ଅସମଞ୍ଜସମ୍ ॥୧॥**

ଉ. କାଳୀୟଙ୍କ ରାଜ୍ୟ ନାଗାଳୟ ବା ପ୍ରଶାନ୍ତ ମହାସାଗରରେ ଅବସ୍ଥିତ ଫିଜି ଦ୍ୱୀପ ଏହି ରମଣକ ଦ୍ୱୀପ । ଗରୁଡ଼ ଥିଲେ ବିଷ୍ଣୁ । କାଳୀୟ ତାଙ୍କ ସହିତ ଶତ୍ରୁତା କରିବାର କାରଣ କିସ ବୋଲି ପଚାରିଲେ ।

ପ୍ରଶ୍ନ-୮୭: ଅନେକ ଦିନ ତଳର କଥା । ଗରୁଡ଼ ବିଷ୍ଣୁ ବାହନ ହେଲେ ମଧ୍ୟ ସର୍ପ ତାଙ୍କର ଆହାର । ବିଧିର ବିଚିତ୍ର ବିଧାନ । ଗରୁଡ଼ଙ୍କୁ କ୍ଷୁଧା ହେଲେ ସେ ସେଇ ଦ୍ୱୀପକୁ ଯାଆନ୍ତି । ମନ ଇଛା ଯାହାକୁ ତାହାକୁ ଖାଆନ୍ତି । ଥରେ ସେ ରାଜ୍ୟବାସୀ ସମସ୍ତେ ଏକତ୍ର ବସି ବିଚାର କଲେ । ସ୍ଥିର କଲେ ଏଣିକି ସେମାନେ ପାଳି କରି ପ୍ରତ୍ୟେକ ପରିବାରରୁ ମାସକରେ ଗୋଟିଏ ଲେଖାଏଁ ସର୍ପ ଏକ ବୃକ୍ଷ ମୂଳକୁ ପଠାଇବେ । ଗରୁଡ଼ କେବଳ ତାଙ୍କୁ ଆହାର କରିବେ । ଯେଉଁଦିନ କାଳୀୟଙ୍କ ପାଳି ପଡ଼ିଲା ସେ କ'ଣ କଲେ ?

ଶ୍ରୀ ଶୁକ ଉବାଚ

**ବିଷ ବୀର୍ଯ୍ୟ ମଦ-ଆବିଷ୍ଟଃ କାଦ୍ରବେୟଃ ତୁ କାଳୀୟଃ ।**
**କଦର୍ଥୀ କୃତ୍ୟ ଗରୁଡ଼ଂ ସ୍ୱୟଂ ତଂ ବୁଭୁଜେ ବଳିମ୍ ॥୪॥**

ଉ.ଗରୁଡ଼ ବିନତା ପୁତ୍ର ହେଲେ କାଳୀୟ କଦ୍ରୁଙ୍କ ପୁତ୍ର (କାଦ୍ରବେୟଃ) । ଗରୁଡ଼ ଓ କାଳୀୟ ଉଭୟଙ୍କ ପିତା କଶ୍ୟପ ଋଷି । ସୁତରାଂ କାଳୀୟ ବେଖାତିର କରି

(କଦର୍ଥୀ କୃତ୍ୟ) ଗରୁଡ଼ଙ୍କ ଆହାରକୁ ସ୍ୱୟଂ ଖାଇଦେଲେ । ଦୁହିଁଙ୍କର ଘମାଘୋଟ ଝଗଡ଼ା ହେଲା । କାଳୀୟ କିନ୍ତୁ ଯୁଦ୍ଧରେ ହାରିଗଲେ । ଶେଷରେ ନିଜ ପରିବାର ସହ ରହିବାକୁ ଏକ ନିରାପଦ ସ୍ଥାନ ଖୋଜିଲେ । ସେ ସ୍ଥାନଟି ହେଉଛି ଭାରତବର୍ଷର ଯମୁନା ନଦୀ କୂଳସ୍ଥିତ କାଳୀୟ ହ୍ରଦ । ଯେଉଁଠିକି ଗରୁଡ଼ ଯିବା ଅସମ୍ଭବ । ସେଠାକୁ ଗଲେ ଗରୁଡ଼ଙ୍କ ମୃତ୍ୟୁ ହେବ ବୋଲି ଋଷି ଅଭିଶାପ ଅଛି ।

ପ୍ରଶ୍ନ-୮୮ : ଏକଦା ସୌଭରୀ ଋଷି କାଳୀୟ ହ୍ରଦରେ ଜଳରେ ବୁଡ଼ି କଠିନ ତପସ୍ୟା ମଗ୍ନ ଥିଲେ । ତାଙ୍କ ଚାରି ପାଖରେ ଜଳଜନ୍ତୁମାନେ ନିର୍ଭୟରେ କ୍ରୀଡ଼ା କରନ୍ତି ।  ଗରୁଡ଼ ଥରେ ବଡ଼ ମାଛ ଖାଇବା ଲୋଭରେ ସେଠାରେ ପହଞ୍ଚିଲେ । ଉତ୍ପାତ କରି ଋଷିଙ୍କ ବାରଣ ସତ୍ତ୍ୱେ ଋଷି ଆଶ୍ରମ ସ୍ଥିତ ମାଛ ଖାଇଗଲେ । ଋଷିଙ୍କର ଶକ୍ତି କିଛି କମ୍ ନଥିଲା । ସେ ଅଭିଶାପ ଦେଲେ ଗରୁଡ଼ ତୁମେ ଏଠାକୁ ଏଣିକି ଆସିଲେ ମୃତ୍ୟୁ ହେବ ତୁମର । ଏ କଥା କାଳୀୟ କୌଣସି ସୂତ୍ରରୁ ଜାଣି ପାରି ସେଠାରେ ଆସି ନିରାପଦରେ ରହୁଥିଲେ ।

କାଳୀୟ ଉଦ୍ଧାର ପରେ ଶ୍ରୀକୃଷ୍ଣ ଜଳ ମଧ୍ୟରୁ ଉପରକୁ ଉଠି ଆସିଲେ । ବିଷ ଜ୍ୱାଳାରେ ମୂର୍ଚ୍ଛିତ ଗୋରୁ, ବାଛୁରୀ ଓ ଗୋପାଳ ବାଳକମାନଙ୍କୁ ସେ ଦିବ୍ୟ ଦୃଷ୍ଟିରେ ଚାହାନ୍ତେ ସମସ୍ତେ ସଚେତନ ସଜୀବ ହେଲେ । ଶୁଷ୍କ ବୃକ୍ଷମାନେ ପଲ୍ଲବିତ ପୁଷ୍ପିତ ହେଲେ । ଏଣିକି କାଳିନ୍ଦୀ ଜଳ ମଧ୍ୟ ପବିତ୍ର ହୋଇଗଲା । ବୃନ୍ଦାବନ ବାସୀ ସମସ୍ତେ ମିଶି ନନ୍ଦ ରାଜାଙ୍କର ପ୍ରଶଂସା କରି କ'ଣ ସବୁ କହିଲେ ?

**ଦେହି ଦାନଂ ଦ୍ୱିଜାତୀନାଂ କୃଷ୍ଣ ନିର୍ମୁକ୍ତି ହେତବେ ।**
**ନନ୍ଦଃ ପ୍ରୀତମନା ରାଜନ୍ ଗାଃ ସୁବର୍ଣ୍ଣ ତଦା-ଆଦିଶତ୍ ।।୧୮।।**

ଉ. ସେମାନେ କହିଲେ, "ହେ ନନ୍ଦ ରାଜନ! ତୁମ ପୁଅ କାଳୀୟ ଦ୍ୱାରା ବନ୍ଦୀ ହୋଇଥିଲା । ଦୈବୀ କୃପାରୁ ଏବେ ମୁକ୍ତ ହେଲାଣି । ତୁମେ କିଛି ଦାନ ପୁଣ୍ୟ କର ।"

ପ୍ରଶ୍ନ-୮୯ : ପ୍ରଜାମାନଙ୍କ କଥା ରକ୍ଷା କରି ନନ୍ଦ ରାଜା ଅନେକ ଗାଈ ଓ ସୁନା ଦାନ କରନ୍ତେ ସମସ୍ତେ ମିଶି ଶ୍ରୀକୃଷ୍ଣଙ୍କର ଓ ନନ୍ଦ ଯଶୋଦାଙ୍କର ଜୟ ଜୟକାର କଲେ । କ୍ଷୁଧା, ତୃଷା ଓ ଶ୍ରମ ପୀଡ଼ିତ ଥିବାରୁ ଓ ରାତି ବେଶୀ ହୋଇ ଯାଇଥିବାରୁ ସେମାନେ ସମସ୍ତେ ସେହିଠାରେ ବିଶ୍ରାମ କଲେ । ରାତି ଅର୍ଦ୍ଧେକ ବିତିଗଲା । ସମସ୍ତେ ନିଦ୍ରାଗତ । ହଠାତ୍ ଜଣାଗଲା ଜଙ୍ଗଲ ଅଗ୍ନି ହୁ ହୁ ଜଳୁଛି । ଗୋପବାସୀ ନିଜେ ଚେଷ୍ଟାକରି ନିଆଁ ଲିଭାଇବା ବନ୍ଦୋବସ୍ତ କଲେ କି ?

**କୃଷ୍ଣ କୃଷ୍ଣ ମହାଭାଗ ହେ ରାମ-ଅମିତ ବିକ୍ରମ ।**
**ଏଷ ଘୋର ତମୋ ବହ୍ନିଃ ତାବକାନ୍ ଗ୍ରସତେ ହି ନଃ ||୨୩||**

ଉ. ସେମାନେ ସେତେବେଳକୁ କୃଷ୍ଣ ବଳରାମଙ୍କୁ ମହାଶକ୍ତିମାନ(ଅମିତ ବିକ୍ରମ) ବୋଲି ଜାଣିସାରିଥାନ୍ତି । ସୁତରାଂ କିଛି ପୁରୁଷାର୍ଥ ନ କରି ସିଧାସଳଖ ଶରଣ ପଶିଛନ୍ତି ଦୁହିଁଙ୍କ ପାଖରେ । ଭଗବାନଙ୍କର କର୍ତ୍ତବ୍ୟ ହେଲା ଭକ୍ତ(ତାବକାନ୍)କୁ ରକ୍ଷା କରିବା ।

ଦୃଶ୍ୟମାନ ସୃଷ୍ଟି କ୍ଷିତି, ଅପ୍, ତେଜ, ମରୁତ୍ ବ୍ୟୋମ ଆଦି ପଞ୍ଚ ତତ୍ତ୍ୱରେ ଗଠିତ । ଏମାନେ ସମସ୍ତେ କୃଷ୍ଣଙ୍କ ଦେହରୁ ଉତ୍ପନ୍ନ । ଛଅ ମନ୍ୱନ୍ତର ସହିତ ୨୭ଚତୁର୍ଯୁଗ ବିତିଗଲାଣି ଏ ପାଦ୍ମ କଳ୍ପର । ସେମାନଙ୍କୁ ଶୁଦ୍ଧ କରିବା ଦାୟିତ୍ୱ ମଧ୍ୟ କୃଷ୍ଣଙ୍କ ଉପରେ । ପ୍ରତୀକ ଭାବରେ ସେ ମୃଦ୍ ଭକ୍ଷଣ କରି କ୍ଷିତିକୁ, କାଳୀୟକୁ ହଟାଇ ଜଳ ତତ୍ତ୍ୱକୁ ଓ ତୃଣାବର୍ତ୍ତ ଉଦ୍ଧାର ଲୀଳାରେ ମରୁତ (ବାୟୁ) ତତ୍ତ୍ୱକୁ ଶୁଦ୍ଧ କରିସାରିଲେଣି । ପରେ ବ୍ୟୋମାସୁର ଉଦ୍ଧାର ଦ୍ୱାରା ଆକାଶ ତତ୍ତ୍ୱକୁ ଶୁଦ୍ଧ କରିବେ । ସୁତରାଂ ଅଗ୍ନିଦେବତା ଏବେ ଠାକୁରଜୀଙ୍କ ମୁଖରେ ପ୍ରବେଶ କରି ଶୁଦ୍ଧ ହେବାର ସୁଯୋଗ ଖୋଜିଛନ୍ତି । ଭଗବାନ୍ ତାଙ୍କୁ କୃପା କରି ଅଗ୍ନିତତ୍ତ୍ୱ ଶୁଦ୍ଧି ଓ ବୈଷ୍ଣବ ଉଦ୍ଧାର ଦୁଇ କଥାର ସମାଧାନ କରିଛନ୍ତି ।

## ଅଥ ୧୮ଶ ଅଧ୍ୟାୟଃ

### (ବଳରାମଜୀଙ୍କ ଦ୍ୱାରା ପ୍ରଳମ୍ବାସୁରଙ୍କର ଉଦ୍ଧାର)

ପ୍ରଶ୍ନ-୯୦: ସୃଷ୍ଟି ଚଳେ କାଳ ଚକ୍ରର ଆବର୍ତ୍ତନରେ । ସେହି ନିୟମରେ ଶୀତ, ବସନ୍ତ ଋତୁପରେ ଗ୍ରୀଷ୍ମ ଋତୁଙ୍କର ଆଗମନ ହେଲା । ପ୍ରଚଣ୍ଡ ସୂର୍ଯ୍ୟତାପରେ ବୃକ୍ଷଲତା ପଶୁ ପକ୍ଷୀ ମନୁଷ୍ୟ ସମସ୍ତଙ୍କ ଜୀବନ କଷ୍ଟରେ କଟେ ଏ ଋତୁରେ । ଦିନେ ଭଗବାନ କୃଷ୍ଣ ନିଜ ଭାଇ ବଳରାମଙ୍କ ସହିତ ଅନେକ ଗୋପାଳ ସଖା ଓ ଧେନୁପଲ ସହିତ ପହଞ୍ଚିଲେ ଭାଣ୍ଡୀର ବନର ଭାଣ୍ଡୀର ବୃକ୍ଷ ନିକଟରେ । ସମସ୍ତଙ୍କର ଇଛା ହେଲା ଖେଳିବାକୁ ।

ଆଜି ମଧ୍ୟ ୮୪କ୍ରୋଶ ବ୍ରଜ ପରିକ୍ରମା ବେଳେ କୃଷ୍ଣ ଭକ୍ତ ଏହି ଭାଣ୍ଡାରା ବନ ଓ ଭାଣ୍ଡୀର ବୃକ୍ଷ ଦର୍ଶନ କରି ପୁଲକିତ ହୁଏ । ଗଦ୍ ଗଦ୍ ହୋଇଯାଏ ସେଇ

ଲୀଳା ସ୍ମରଣରେ । ଭଗବାନଙ୍କ କୃଷ୍ଣ-ବଳରାମ ଅବତାର ଅବଶ୍ୟ ଭକ୍ତକୁ ପ୍ରେମଦାନ ଦେବାକୁ ହୋଇଛି । ସେ ଓ ତାଙ୍କ ସଖାମାନେ ଏହି ଦୁଃଖଦ ଗ୍ରୀଷ୍ମଦିନରେ ମଧ୍ୟ ଅସହ୍ୟ କଷ୍ଟ ସହି ଖେଳରେ କାହିଁକି ପ୍ରବୃତ୍ତ ହେଲେ ?

ଶ୍ରୀଶୁକ ଉବାଚ

**ସ ଚ ବୃନ୍ଦାବନ ଗୁଣୈଃ ବସନ୍ତ ଇବ ଲକ୍ଷିତଃ ।**
**ଯତ୍ର ଆସ୍ତେ ଭଗବାନ୍ ସାକ୍ଷାତ୍ ରାମେଣ ସହ କେଶବଃ ।।୩।।**

ଉ. ସେହି ଗ୍ରୀଷ୍ମଋତୁ (ସ) ସେତେବେଳେ ସାରା ସଂସାର ଲାଗି ସିନା ଗ୍ରୀଷ୍ମଋତୁ, ହେଲେ ଯୋଗମାୟାଙ୍କ ନିର୍ଦ୍ଦେଶରେ ସେ ବୃନ୍ଦାବନରେ ଠିକ୍ ବସନ୍ତ ଋତୁ ସଦୃଶ ପ୍ରୀତିଦାୟକ ହୋଇଥିଲା । କାରଣ ସେତେବେଳେ ଭଗବାନ ସ୍ୱୟଂ ରାମ ଗୋବିନ୍ଦ ନାମରେ ଦୁଇ ଗୋପାଳବାଳକ ରୂପରେ ବାଳକ୍ରୀଡ଼ା କରିବାକୁ ଇଛା କରୁଥିଲେ । ନାମ ସିନା ଗ୍ରୀଷ୍ମ, ବର୍ଷା ଓ ଶୀତ ଋତୁ । ହେଲେ ବ୍ରଜ ୮୪କ୍ରୋଶ ପରିଧି ମଧ୍ୟରେ ବସନ୍ତ ତାଙ୍କ ସଖା ମଳୟ ପବନ ସହିତ ସଦା ବିଦ୍ୟମାନ । ଉଦ୍ଦେଶ୍ୟ ଭଗବାନଙ୍କ ସେବାରେ ଲାଗି ଋତୁରାଜ ବସନ୍ତ ନିଜ ଜୀବନ ଧନ୍ୟ କରିବେ ।

ସେତେବେଳର ବୃନ୍ଦାବନର ଶୋଭା ବର୍ଣ୍ଣନ କରିବାକୁ ବାଣୀ, ବ୍ରହ୍ମାଣୀ ମଧ୍ୟ ଅସମର୍ଥ । ତେବେ ବ୍ୟାସଙ୍କ ବଚନ, ଗଣେଶଙ୍କ ଲେଖନୀ ଓ ଶୁକଦେବଜୀଙ୍କ ଭାବ ଆବେଗରେ ସେ ବର୍ଣ୍ଣନା ସୁନ୍ଦର ଶୈଳୀରେ ରୂପ ପାଇଛି । ଝରଣାର କଳ କଳ ନାଦରେ ଝିଙ୍କାରି ନାଦ ଶୁଭୁ ନାହିଁ । ବୃନ୍ଦାବନର କୋଣ ଅନୁକୋଣ ଆଜି ସବୁଜ ବନାନୀ, ଦୁର୍ବା, ଫଳ ଓ ପୁଷ୍ପଭରା ବୃକ୍ଷଲତାରେ ପରିପୂର୍ଣ୍ଣ । ଯମୁନା ନଦୀ, ପୁଷ୍କରିଣୀ ସରୋବର ସ୍ୱଚ୍ଛଜଳ ହଂସ, କାରଣ୍ଡବ ଆଦି ପକ୍ଷୀ ମାନଙ୍କର କଳ କୂଜନ ପୂରିତ । ସ୍ୱର୍ଗଲୋକର ଦେବୀ ଦେବତା ମାନେ ଭ୍ରମର, ମୟୂର, ଶୁକ, କୋକିଳ ଆଦି ରୂପରେ ବେଦ ମନ୍ତ୍ରଗାନ କରି ପ୍ରଭୁଙ୍କ ମନୋରଞ୍ଜନ ଲାଗି ପରସ୍ପର ପ୍ରତିଯୋଗିତାରେ ମଗ୍ନ । ଏକ ବାକ୍ୟରେ କହିଲେ ଗ୍ରୀଷ୍ମତାପ, ଅଗ୍ନିତାପ, ଅର୍କତାପ ସହିତ ମନୁଷ୍ୟର ତ୍ରିତାପ ମୁକ୍ତ ହୋଇଛନ୍ତି ବୃନ୍ଦାବନ ଧାମ ।

ପ୍ରଶ୍ନ-୯୧ : ଗ୍ରୀଷ୍ମ କାଳରେ ମଧ୍ୟ ଅପାର ଆନନ୍ଦ ମଗ୍ନ ହୋଇ ଠାକୁରଜୀ ମଧୁର ମୁରଲୀରେ ତାନ ଛାଡ଼ିଲେ । ସିଙ୍ଗା ଫୁଙ୍କିଲେ । ନିଜେ ଗାଇଲେ । ନାଚିଲେ । କେତେ କ'ଣ ବାଜା ବଜାଇଲେ । ତାଙ୍କ ଦେଖାଦେଖି ଗୋପାଳମାନେ ତାଙ୍କ ଚାରିପଟେ ଚକ୍କର କାଟିଲେ । ହାତ ଧରାଧରି ହୋଇ ଡ଼ିଆଁ ଡ଼େଇଁ କଲେ । ବାହାସ୍ଫୋଟ

ମାରିଲେ । ମିଥ୍ୟା ମଲ୍ଲ ଯୁଦ୍ଧ କଲେ । ପରସ୍ପରର ହାତ ଗୋଡ଼ କେଶ ଟଣା ଟଣି କରି ଆନନ୍ଦରେ ମାତିଲେ ।

ସେମାନେ ନାନା ଦଳରେ ବିଭକ୍ତ ହୋଇ ବେଲଫଳ, ଅଁଳାଫଳ, କୁମ୍ଭୀଫଳ ଆଦି ଫିଙ୍ଗି ବାଗୁଡ଼ି, ବୋହୂଚୋରୀ, ଅନ୍ଧପୁଟୁଳି, ରାଜାମନ୍ତ୍ରୀ, ଚୋର ପୋଲିସ୍, ବାହାଘର ଖେଳ ଆଦି ଖେଳିଲେ । ଏ ଦୃଶ୍ୟ ଏତେ ମନୋହର ଲୋଭନୀୟ ହେଲା ଯେ ଶୂନ୍ୟରୁ ଦେବତାମାନେ ଗୋପାଳ ରୂପ ଧରି ଖେଳରେ ଯୋଗଦେଲେ । ସେଦିନ ଜଣେ ଜଣାଶୁଣା ଗୋପାଳ ବାଳକ ଖେଳରେ ଅନୁପସ୍ଥିତ ଥିଲେ । ଅସୁରମାନେ ସ୍ୱଭାବରେ ତମୋଗୁଣୀ । ସେମାନେ ମଧ୍ୟ ଆନନ୍ଦ ଅଭିଳାଷୀ । କିନ୍ତୁ ଆନନ୍ଦପ୍ରାପ୍ତ ଭକ୍ତଙ୍କୁ ଦୁଃଖ କଷ୍ଟ ଦେବାରେ ସେମାନଙ୍କୁ ଆନନ୍ଦ ମିଳେ ? ଏଭଳି ଦୁଷ୍ଟ ଭୟଙ୍କର ପ୍ରବୃତ୍ତିରେ ଆନନ୍ଦ ପ୍ରାପ୍ତି ଅଭିଳାଷ କରିବାରେ କୌଣସି ଅସୁର ଚେଷ୍ଟା କରିବାର ଦୃଷ୍ଟାନ୍ତ ଅଛି କି ?

**ପଶୂନ୍ ଚାରୟତୋ ଗୋପୈଃ ତଦ୍‌ବନେ ରାମ କୃଷ୍ଣୟୋଃ ।**
**ଗୋପ ରୂପୀ ପ୍ରଲମ୍ବୋଽଗାତ୍ ଅସୁରଃ ତତ୍ ଜିର୍ହୀର୍ଷୟା ॥୧୭॥**

ଉ. ସେତେବେଳେ କୃଷ୍ଣ ଲୀଳାରେ ପ୍ରଲମ୍ବ ନାମକ ଅସୁର ବଳରାମଙ୍କୁ ହରଣ କରିବା ଇଚ୍ଛା (ଜିହୀର୍ଷୟା) ରେ ଅଭିନୟ କରିବା ଏକ ବଢ଼ିଆ ଉଦାହରଣ ।

ପ୍ରଲମ୍ବ କୁହାଯାଏ ମନୁଷ୍ୟର ଲୋଭକୁ । ଏହା ମନୁଷ୍ୟର ଛଅ ରିପୁ ମଧ୍ୟରୁ ଅନ୍ୟତମ । ସତ୍ୟଯୁଗରେ ଏହା ଦୁଇ ରୂପ ନେଇ ଥିଲା । ହିରଣ୍ୟାକ୍ଷ (ସୁନା ସଂଗ୍ରହ ଲୋଭ) ଓ ହରିଣ୍ୟକଶିପୁ (ଶୟନ ଲାଗି କାଞ୍ଚନ ଶେଜ ଭୋଗର ଲୋଭ) । ଦୁଇଟା ଯାକ ଅସୁର ପ୍ରବୃତ୍ତି । ଏମାନଙ୍କୁ ଉଦ୍ଧାର କରିବାକୁ ଭଗବାନଙ୍କୁ ଯଥାକ୍ରମେ ବରାହ ଓ ନୃସିଂହ ଦୁଇ ଅବତାର ନେବାକୁ ପଡ଼ିଥିଲା । ଅଥଚ ରାବଣ, କୁମ୍ଭକର୍ଣ୍ଣ(କାମକୁ) ଓ ଶିଶୁପାଳ, ଦନ୍ତବକ୍ର (କ୍ରୋଧକୁ) ଭଗବାନ ଗୋଟିଏ ଗୋଟିଏ ଅବତାରରେ ଉଦ୍ଧାର କରିଥିଲେ ।

ଆଜି କୃଷ୍ଣଲୀଳାରେ ମଣିଷର ଲୋଭ ହିଁ ଅନୁପସ୍ଥିତ ଗୋପାଳ ହେବା ପାଇଁ ପ୍ରଲମ୍ବ ରୂପ ଧରି ଆସିଛି । ସେ ଭଗବାନଙ୍କୁ ଅନୁରୋଧ କରୁଛି ଖେଳିବାକୁ । ଭଗବାନ ସର୍ବ ଅନ୍ତର୍ଯ୍ୟାମୀ ଓ ମାୟାଧର ମଧ୍ୟ । ସେ ବୁଝିଗଲେ ତାର ଉଦ୍ଦେଶ୍ୟ । ଭାଇ ବଳରାମଙ୍କୁ ଡ଼ାକି କହିଲେ ଆଜି ଘୋଡ଼ା ଚଢ଼ା ଖେଳ ହେଉ । ସମସ୍ତଙ୍କୁ ଦୁଇ ଦଳରେ ବାଣ୍ଟି ଦିଆଗଲା । ଗୋଟିଏ ଦଳର ମୁଖ୍ୟ ବଳରାମଜୀ ଓ ଅନ୍ୟଟିର ମୁଖ୍ୟ ଠାକୁରଜୀ ନିଜେ । ଶ୍ରୀଦାମା ସଖା ରହିଲେ ବଳରାମଙ୍କ ଦଳରେ ଓ ପ୍ରଲମ୍ବ କୃଷ୍ଣଙ୍କ ଦଳରେ ।

ପ୍ରଶ୍ନ-୯୨ : ଦୁଇ ଦୁଇ ଜଣଙ୍କୁ ନେଇ ଖେଳ ଆରମ୍ଭ ହେଲା । ପ୍ରଥମେ କୃଷ୍ଣ ଶ୍ରୀଦାମାଙ୍କ ସହ ଖେଳି ଜାଣି ଜାଣି ହାରିଗଲେ । ପୂର୍ବ ସର୍ତ୍ତ ଅନୁସାରେ ଠାକୁରଜୀଙ୍କୁ ଘୋଡ଼ା ହେବାକୁ ପଡ଼ିଲା । ସେ ଆଣ୍ଠେଇ ଆଣ୍ଠେଇ ଚାଲିବେ । ଶ୍ରୀଦାମା ତାଙ୍କ ଉପରେ ବସିବେ । ଖେଳରେ ହାରିଥିବା ବାଳକ ଜିଣିଥିବା ବାଳକକୁ କେଉଁ ପର୍ଯ୍ୟନ୍ତ ବୋହି ନେବେ ?

**ଉବାହ କୃଷ୍ଣୋ ଭଗବାନ୍ ଶ୍ରୀଦାମାନଂ ପରାଜିତଃ ।**
**ବୃଷଭଂ ଭଦ୍ରସେନଃ ତୁ ପ୍ରଲମ୍ବୋ ରୋହିଣୀ ସୁତମ୍ ॥୨୪॥**

ଉ. ପୂର୍ବ ସର୍ତ୍ତ ଅନୁସାରେ ଭଦ୍ରସେନ ବୃଷଭଙ୍କୁ ବୋହିବେ । ପ୍ରଲମ୍ବ ବୋହିବେ ଶ୍ରୀବଳରାମଜୀଙ୍କୁ ଭାଣ୍ଡୀର ବଟ ପର୍ଯ୍ୟନ୍ତ । କାରଣ ପ୍ରଲମ୍ବ ବଳରାମଙ୍କ ସହିତ ଖେଳି ଜାଣି ଜାଣି ନିଜେ ହାରି ଯାଇଛି । ବଳରାମଙ୍କୁ ପିଠିରେ ବସାଇ ସେ ଆଣ୍ଠେଇ ଆଣ୍ଠେଇ ଚାଲିଲା ସେହି ଭାଣ୍ଡୀର ବଟବୃକ୍ଷ ନିକଟକୁ । ତାର ଉଦ୍ଦେଶ୍ୟ ତ ଭିନ୍ନ । ବଳରାମଙ୍କୁ ହତ୍ୟା କରିବା । ସେ ଏଥର ଅସୁରରୂପ ଧରିଲା । ବଡ଼ ଠାକୁର ଦେଖିଲେ ଅବସ୍ଥା ସଙ୍ଗୀନ । ବୁଝିଗଲେ ସବୁକଥା । ଶ୍ରୀକୃଷ୍ଣଙ୍କଠାରୁ ଇସାରା ପାଇ ଏକ ବଜ୍ର ମୁଷ୍ଟି ପ୍ରହାର କଲେ ପ୍ରଲମ୍ବ ମସ୍ତକରେ । ପ୍ରଲମ୍ବ ଘଟଣାସ୍ଥଳରେ ରକ୍ତ ବାନ୍ତି କରି, ଆଖି ତରାଟି ଭୟଙ୍କର ଗର୍ଜନ କରି ପ୍ରାଣତ୍ୟାଗ କଲା । ଅସୁର ଜନ୍ମରୁ ଉଦ୍ଧାର ପାଇଗଲା ବିଚରା ।

ପ୍ରଶ୍ନ-୯୩: ମହାବଳଶାଳୀ ପ୍ରଲମ୍ବାସୁର ଉଦ୍ଧାର ହୁଅନ୍ତେ ଗୋପାଳ ବାଳକମାନେ କ'ଣ କଲେ ?

**ଦୃଷ୍ଟ୍ୱା ପ୍ରଲମ୍ବଂ ନିହତଂ ବଲେନ ବଲଶାଳିନା ।**
**ଗୋପାଃ ସୁବିସ୍ମିତା ଆସନ୍ ସାଧୁ ସାଧୁ-ଇତି ବାଦିନଃ ॥୩୦॥**

ଉ. ସେମାନେ ଆଦୌ ଭାବି ନଥିଲେ ଯେ ବଳରାମ ତାକୁ ଏତେ ସହଜରେ ମାରି ପକାଇବେ । ତେଣୁ ସେମାନେ ଅତି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ସାଧୁ ସାଧୁ କହି ଦାଉଜୀଙ୍କ ପ୍ରଶଂସା କଲେ ।

ପ୍ରଶ୍ନ-୯୪: ଏଭଳି ନିଜର ଅଯାଚିତ ପ୍ରଶଂସା ଦେଖି ବଳରାମଙ୍କ ଅବସ୍ଥା କିପରି ହେଲା ?

**ଆଶିଷୋଽଭିଗୃଣନ୍ତଃ ତଂ ପ୍ରଶଶଂସୁଃ ତତ୍ ଅର୍ହଣମ୍ ।**
**ପ୍ରେତ୍ୟ-ଆଗତଂ ଇବ-ଆଲିଙ୍ଗ୍ୟ ପ୍ରେମ ବିହ୍ୱଳ ଚେତସଃ ॥୩୧॥**

ଉ. ନିଜର ପ୍ରଶଂସା ଶୁଣି ବଳରାମ ଆଉ ନିଜକୁ ସମ୍ଭାଳି ପାରି ନାହାନ୍ତି । ଜଣ ଜଣ କରି ଗୋପାଳ ବାଳକମାନଙ୍କୁ ଏତେ ଦୃଢ଼ ଆଲିଙ୍ଗନ କରିଛନ୍ତି ଯେ ସତେ ଯେପରି ସେମାନେ ସବୁ ପ୍ରଳମ୍ବ ଭୟରେ ମରି ଯମ ଲୋକକୁ ଯାଇଥିଲେ । ଏବେ ବଳରାମଙ୍କ କୃପାରୁ ଫେରି ଆସିଛନ୍ତି (ପ୍ରେତ୍ୟ ଆଗତଂ ଇବ) । ଏଭଳି ଭାବନା କଲେ ଗୋପାଳବାଳକ ସମସ୍ତେ ।

ପ୍ରଶ୍ନ-୯୫: ସ୍ୱର୍ଗରେ ଦେବତାମାନେ ମଧ୍ୟ ଏ କାଣ୍ଡ ଦର୍ଶନ କରୁଥିଲେ । ସେମାନେ ସବୁ କ'ଣ ନୀରବ ଦର୍ଶକ ସାଜିଥିଲେ ?

**ପାପେ ପ୍ରଲମ୍ବେ ନିହତେ ଦେବାଃ ପରମ ନିର୍ବୃତ୍ତାଃ ।**
**ଅଭ୍ୟବର୍ଷନ୍ ବଳଂ ମାଲ୍ୟୈଃ ଶଶଂସୁଃ ସାଧୁ ସାଧୁ-ଇତି ॥୩୨॥**

ଉ. ନା, ନା ସେମାନେ ମଧ୍ୟ ଶୂନ୍ୟରେ ଥାଇ ସ୍ୱର୍ଗ ସୁମନ ବୃଷ୍ଟି କଲେ । ମାଲ୍ୟାର୍ପଣ କଲେ ବଳରାମଙ୍କୁ । ସାଧୁ ସାଧୁ ବୋଲି ଅଭିବାଦନ ମଧ୍ୟ କଲେ । ପ୍ରଶଂସା ଅଜାଡ଼ି ପକାଇଲେ ବଳରାମଜୀଙ୍କ ଉପରେ ।

# ୨୮. ଅଦ୍ଭୁତ ରସ ପ୍ରକରଣ ସାର

## (ଅଧ୍ୟାୟ ୧୦ମ-୧୮ଶ)

କୌଣସି ଅଦୃଷ୍ଟ ପୂର୍ବ ବା ଅଶ୍ରୁତପୂର୍ବ ବିରଳ ଦୃଶ୍ୟର ଦର୍ଶନ କଲେ ଦର୍ଶକ ହୃଦୟରେ ଏହି ରସର ସଞ୍ଚାର ହୋଇଥାଏ । ଭକ୍ତକୁ ଆନନ୍ଦ ଦେବା କେବଳ କୃଷ୍ଣଙ୍କ ଅବତାରର ମୂଳ ଲକ୍ଷ୍ୟ । ଦୁଷ୍ଟ ଦଳନ, ସନ୍ଥ ପାଳନ ଓ ଧର୍ମ ସଂସ୍ଥାପନ ଆଦି ଗୌଣ ଲକ୍ଷ୍ୟ ମାତ୍ର । ଶ୍ରୀକୃଷ୍ଣଙ୍କ ମାଧୁର୍ଯ୍ୟ ରସ ମଧ୍ୟରେ ବୀର, ଶୃଙ୍ଗାର, ଭୟାନକ ଆଦି ରସର ବନ୍ଦୋବସ୍ତ କରିଥାନ୍ତି ଯୋଗମାୟା ଦିବ୍ୟ ପ୍ରେମ ରସର ମଧୁର ପରିପାକ ନିମିତ୍ତ ଖାଦ୍ୟ ଭୋଜନକାରୀ ମଧୁର ରସର ଅସଲି ସ୍ୱାଦ ଜାଣିବା ପାଇଁ ତିକ୍ତ, କଟୁ, କଷାୟ ରସ ଆଦି ଗ୍ରହଣ କରିବା ଭଳି । ପୁଣି ମଝିରେ ମଝିରେ ବିନା ଭୋଜନରେ ଉପବାସ ରହି ଖାଦ୍ୟ ଠିକ୍ ଠିକ୍ ସ୍ୱାଦ ଅନୁଭବ କରିବା ଲକ୍ଷ୍ୟ ପୂର୍ତ୍ତି ଲାଗି ।

ଦଶମ ଅଧ୍ୟାୟରେ ଯାମଳାର୍ଜ୍ଜୁନ ଉଦ୍ଧାର ବେଳେ ଏ ରସର ଶୁଭାରମ୍ଭ ହୋଇଛି । ଅଭିଶପ୍ତ ନଳକୁବର ଦୁଇଜଣ ଯକ୍ଷ ଦେବର୍ଷି ନାରଦଙ୍କ ଅଭିଶାପରେ ଦୁଇଟି ଯାଆଁଳା ଅର୍ଜୁନ ବୃକ୍ଷରେ ଗୋକୁଳରେ ନନ୍ଦଙ୍କ ଅଗଣାରେ ରହିବା ପୁଣି ଶ୍ରୀକୃଷ୍ଣଙ୍କ ଚରଣ କମଳର ସ୍ପର୍ଶ ପ୍ରାପ୍ତିରେ ବୃକ୍ଷ ଜନ୍ମରୁ ମୁକ୍ତ ହେବା ଭାଗବତଙ୍କର ଏକ ସୁନ୍ଦର ଅଦ୍ଭୁତ ରସ ପରିବେଷଣର ବ୍ୟବସ୍ଥା । ସେ ଦୁହେଁ ନନ୍ଦ ଯଶୋଦା ଆଦି ଗୋପୀ ଗୋପାଳଙ୍କୁ ନିଜ କଥା ନିଜ ମୁଖରେ ଶୁଣାଇ ଚକିତ କରିଛନ୍ତି ସମସ୍ତଙ୍କୁ । ଦୁଇ ଧନଦ ପୁତ୍ରଙ୍କ ଧନ ଗର୍ବ ଓ ଅପ୍‌ସରାଙ୍କ ସହ ବିଳାସମୟ ଜୀବନ ଯାପନ ସହିତ ସନ୍ଥ ଅପମାନ ଓ ସନ୍ଥ କୃପା ପ୍ରାପ୍ତିର ଝଲକ ମନୁଷ୍ୟ ଦର୍ଶନ କରିଛି ଏହି ଅଦ୍ଭୁତ ଲୀଳାରେ ।

କଂସ ଆତଙ୍କରେ ରାଜା ବୃଷଭାନୁ ଓ ରାଜା ନନ୍ଦ ନିଜ ନିଜ ପ୍ରଜାମାନଙ୍କୁ ଧରି ରାଧା-କୃଷ୍ଣଙ୍କ ପାଇଁ ସୁରକ୍ଷିତ ଓ ନିରାପଦ ସ୍ଥାନ ଖୋଜିବା ନିଶ୍ଚୟ ଅଦ୍ଭୁତ ଘଟଣା । ସେମାନେ ଗୋକୁଳ ତ୍ୟାଗ କରି ପ୍ରଜାମାନଙ୍କୁ ସଙ୍ଗରେ ଧରି ଯଥାକ୍ରମେ ବରସାନା ପର୍ବତ ଓ ନନ୍ଦୀଶ୍ୱର ପର୍ବତକୁ ଉଠିଯାଇଛନ୍ତି । ସେମାନଙ୍କର ଏକମାତ୍ର ଭୟ କଂସ ଓ କଂସ ଅନୁଚରଙ୍କ ଉତ୍ପାତ ଓ ବିତ୍‌ପାତ । ବତ୍ସାସୁର ଓ ବକାସୁର ଉଭୟଙ୍କର ବିନାଶ କରିଛନ୍ତି ବାଳକ କୃଷ୍ଣ । ତାହା ପୁଣି ବିନା ଅସ୍ତ୍ର ପ୍ରୟୋଗରେ । କି ଅଦ୍ଭୁତ କାଣ୍ଡ ସତେ ! ! ! କୃଷ୍ଣଙ୍କୁ ଚିହ୍ନିପାରୁଥିବା ଶଙ୍କର ନାରଦ ଆଦି ଦେବତାମାନେ ମଧ୍ୟ ଆଶ୍ଚର୍ଯ୍ୟ

ସାଗରରେ ବୁଡି ଯାଇଛନ୍ତି ଯେତେବେଳେ ଠାକୁରଜୀ ନନ୍ଦ ଗୋପାଳଙ୍କ ପାଦର ଦୁଇ କଠଉକୁ ନିଜ ମସ୍ତକରେ ସ୍ଥାପନ କରି ଠୁକୁ ଠୁକୁ ଚାଲୁଥାଆନ୍ତି ।

ଅଘ କୁହାଯାଏ ପାପକୁ । ଏହା ମନୁଷ୍ୟ ପାଇଁ ଏକ ଅସୁର ପ୍ରବୃତ୍ତି । ମନୁଷ୍ୟ ମାତ୍ରେ ଭୟ କରେ ପାପକୁ । କୃଷ୍ଣ ଭକ୍ତ କିନ୍ତୁ ପାପକୁ ଆଦୌ ଭୟ କରେ ନାହିଁ । ହସି ହସି ପାପ (ଅଘ ଅସୁର ମୁଖରେ) ରେ ଭୁଲରେ ପଶିଗଲେ ମଧ ଠାକୁରଜୀ ସ୍ୱୟଂ ଭକ୍ତକୁ ଉଦ୍ଧାର କରନ୍ତି । କି ଅଦ୍ଭୁତ ଏହି ଅଘାସୁରେ ଉଦ୍ଧାର ଲୀଳା ଏହି ଲୀଳାମୟ ଶ୍ରୀକୃଷ୍ଣଙ୍କର ! ! !

ବଣଭୋଜୀ ଲୀଳା ଛଳରେ ଭଗବାନ ଭକ୍ତର ଉଚ୍ଛିଷ୍ଟ ଭୋଜନ କରିବା କ'ଣ କମ୍ ବିଚିତ୍ର କଥା । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ବୁଦ୍ଧି ଚକ୍‌କର ଖାଇଛି ଏ ଅଦ୍ଭୁତ ଦୃଶ୍ୟ ଦର୍ଶନରେ । ବ୍ରହ୍ମଦେବ ଭଗବାନଙ୍କୁ ପରୀକ୍ଷା କରିବାକୁ ଯାଇ ନିଜେ ପରୀକ୍ଷାର ସମ୍ମୁଖୀନ ହୋଇ ଅପଦସ୍ତ ହୋଇଛନ୍ତି । ଚାରି ମସ୍ତକକୁ ବାଳକ କୃଷ୍ଣଙ୍କ ପଦତଳେ ନୁଆଁଇ ଚାଳିଶ ଶ୍ଳୋକରେ ବ୍ରହ୍ମାଜୀ କ୍ଷମା ପ୍ରାର୍ଥନା ସ୍ତବ ଗାନ କରିଛନ୍ତି । ନୌମି ଇଡ୍ୟେ ଶବ୍ଦରେ ଆରମ୍ଭ ଓ ଭଗବନ୍ ନମସ୍ତେରେ ଶେଷ ଏହି ଦିବ୍ୟ ବ୍ରହ୍ମା ସ୍ତବର । ଆଜି ମଧ ଚଉମୁହାଁ ବୋଲି ବ୍ରଜମଣ୍ଡଳର ଏ ସ୍ଥାନଟି ସାକ୍ଷୀ ଦେଉଛି ଏ ଅଦ୍ଭୁତ ଲୀଳାର ।

ଦାମ, ସୁଦାମ, ସ୍ତୋକ କୃଷ୍ଣ ଆଦି ସଖା ମାନଙ୍କ ସହ ବାଳକ ଅବସ୍ଥାରେ ଖେଳ କୌତୁକ କରିଛନ୍ତି ଭଗବାନ । ଜାଣି ଜାଣି ଖେଳରେ ହାରିଛନ୍ତି । ଖେଳର ସର୍ତ୍ତ ଅନୁସାରେ ନିଜେ ଘୋଡ଼ା ବନିଛନ୍ତି । ଭକ୍ତକୁ ପିଠିରେ ବସାଇ ଗୋଟିଏ ବୃକ୍ଷ ମୂଳରୁ ଅନ୍ୟ ବୃକ୍ଷମୂଳ ଯାଏ ବହି ନେବା ମଧ ଏହି ଅଦ୍ଭୁତ ରସରେ ରସାଣିତ କରେ କୃଷ୍ଣ ଭକ୍ତର ହୃଦୟ କନ୍ଦରକୁ । ତାଳବନ ଲୀଳାରେ ଧେନୁକାସୁର ଉଦ୍ଧାର ମଧ ଏହି ଅଦ୍ଭୁତ ରସର ସଂକେତ ବହନ କରିଛି ।

ମନୁଷ୍ୟ ମାତ୍ରକେ ସମସ୍ତେ ଏକ ଏକ କାଳୀୟ । ମନୁଷ୍ୟର ଅନ୍ତର ଆତ୍ମାରେ ଛପି ଥିବା ଶତ ସହସ୍ର କାମନା ବାସନା ହିଁ କାଳୀୟର ଫଣାସବୁ । କୃଷ୍ଣ ଚରଣ କଳମ ସ୍ପର୍ଶରେ କେବଳ ସେ କାମନା ବାସନା ଜ୍ୱାଳାରୁ ମୁକ୍ତି ମିଳେ । ଏ ରହସ୍ୟକୁ ବିଷୟୀ ମନୁଷ୍ୟ ଜାଣେନା । ସାଧୁ ସନ୍ଥ ଓ ଭଗବାନଙ୍କୁ କେବଳ ଏହା ଜଣାଥାଏ । ସୁତରାଂ ଭଗବାନ ଜୀବକୁ କୃପା କରିବାକୁ ଏ ଅଦ୍ଭୁତ ଲୀଳା ରଚନା କରିଥାନ୍ତି । ନନ୍ଦ, ଯଶୋଦା, ଗୋପୀ, ଗୋପାଳ, ବ୍ରଜର ପଶୁ, ପକ୍ଷୀ, ବୃକ୍ଷଲତା ଏହି କାଳୀୟ ଦଳନ

ଲୀଳା ରୂପୀ ଅଦ୍ଭୁତ କାଣ୍ଡ ଦେଖି ଅଦ୍ଭୁତ ରସର ଚରମ ଅନୁଭୂତି ପ୍ରାପ୍ତ ହୋଇଛନ୍ତି ।

ଭଗବାନଙ୍କର ଦାବାଗ୍ନି ପାନ ଲୀଳା ମଧ୍ୟ କମ ଅଦ୍ଭୁତ ଲୀଳା ନୁହେଁ । ସୃଷ୍ଟି ଏକ ଦୃଶ୍ୟମାନ କାର୍ଯ୍ୟ । ସ୍ରଷ୍ଟା ଏହାର ଅଦୃଶ୍ୟ କାରଣ । ଅଗ୍ନି ଶକ୍ତି ସୃଷ୍ଟିର ଏକ ଉପାଦାନ । ଭଗବାନ ଏହାର କାରଣ । ଅତଏବ ଦାବ (ବନ) ଅଗ୍ନି ପାନ କରି ଭଗବାନ ଏ ଅବୁଝା କଥାକୁ ବୁଝାଇଗଲେ ନିଜ ଶରଣାଗତ ଭକ୍ତଗଣକୁ ଅଦ୍ଭୁତ ରସ ପରିବେଷଣ ମାଧ୍ୟମରେ । ଏହା ଆଦୌ ଯୋଗୀମାନଙ୍କ ଅଗ୍ନି ସ୍ତମ୍ଭନ ସିଦ୍ଧି ସହ ତୁଳନୀୟ ନୁହେଁ ।

ଏ ପ୍ରକରଣର ପରିସମାପ୍ତି ଘଟିଛି ପ୍ରଳମ୍ବାସୁର ଉଦ୍ଧାର ଲୀଳାରେ । ଦିନେ ଭାଣ୍ଡୀରବଟ ନିକଟରେ ଗୋପାଳବାଳକ ମାନେ ଖେଳ ଖେଳିଲେ । କୃଷ୍ଣ ଦଳ ଓ ଦାଉଜୀ ଦଳ । କଂସ (ଅହଂକାର) ପ୍ରେରିତ ଏ ପ୍ରଳମ୍ବ ଅସୁର ଲୋଭ ବା ଲାଳସାର ପ୍ରତୀକ । ମନୁଷ୍ୟ ମାତ୍ରେ ପ୍ରଳମ୍ବ ଅସୁର ଲୋଭରେ ଆକ୍ରାନ୍ତ । ସେହି ଅସୁର ପ୍ରଥମରୁ କୃଷ୍ଣଙ୍କ ଦଳରେ ମିଶି ଯାଇଛି ଗୋପାଳ ବାଳକ ବେଶ ଧାରଣ କରି । କୃଷ୍ଣଙ୍କ ଦଳର ସମସ୍ତେ ହାରି ଯାଇଛନ୍ତି ଠାକୁରଜୀଙ୍କ ଇଚ୍ଛାରେ । ସୁତରାଂ ପ୍ରଳମ୍ବ ନିଜ ପିଠିରେ ବୋହିଛନ୍ତି ବଳରାମଜୀଙ୍କୁ । କିଛି ବାଟଗଲା ପରେ ଅସୁର ତା ନିଜ ସ୍ୱରୂପରେ ଆସି ଆକ୍ରମଣ କରିଛି ଦାଉଜୀଙ୍କୁ । ଏକ ବଜ୍ରମୁଷ୍ଟି ପ୍ରହାର କରି ସେ ପ୍ରଳମ୍ବର ମସ୍ତକ ବିଦାରଣ କରିଛନ୍ତି । ଏହି ଅଦ୍ଭୁତ ଦୃଶ୍ୟ ଘଟିଛି ସେ ଅଚିନ୍ତ୍ୟ ଲୀଳାରେ । ଲୀଳାମୟ ଠାକୁର ତାକୁ ସାଯୁଜ୍ୟ ମୁକ୍ତି ପ୍ରଦାନ କରି ସବୁଦିନ ଲାଗି ଆପଣେଇ ନେଇଛନ୍ତି । କାରଣ ତାଙ୍କ ବିଚାରରେ ସେ ଖେଳରେ ଶ୍ରୀକୃଷ୍ଣଙ୍କ ପକ୍ଷ ନେଇ ଖେଳୁଥିଲା ପରା ! ! ! ଅଦ୍ଭୁତ, ବିଚିତ୍ର, ବିଚାର ତାଙ୍କର ଯାହାକୁ ବୁଝିବା ମନୁଷ୍ୟର ଉର୍ବର ମସ୍ତିଷ୍କର ବାହାରେ ।

# ପ୍ରକରଣ ୨୯ ହାସ୍ୟ ରସ

## ଅଧ୍ୟାୟ(୧୯ଶ-୨୭ଶ)

## ଅଥ ୧୯ଶ ଅଧ୍ୟାୟଃ

## (ମୁଞ୍ଜାରଣ୍ୟରେ ଦାବାନଳ ପାନ ଲୀଳା)

ପ୍ରଶ୍ନ-୯୬: ପୂର୍ବରୁ ଭଗବାନ ବନାଗ୍ନି ଆତ୍ମସାତ କରି ଅଗ୍ନିତତ୍ତ୍ୱକୁ ଶୁଦ୍ଧ କରିସାରିଛନ୍ତି । ଏବେ ମନୁଷ୍ୟ ମନ, ବୁଦ୍ଧି ଭିତରେ ଲୁଚିଥିବା କାମ ଅଗ୍ନି, କ୍ରୋଧ ଅଗ୍ନି, ଈର୍ଷ୍ୟା ଅଗ୍ନି, ଲୋଭ ଅଗ୍ନି ଆଦି ଅସଂଖ୍ୟ କ୍ଷତିକାରକ ଦାବାନଳରୁ ଜୀବକୁ ରକ୍ଷା କରିବାକୁ ସେ ଇଛା କଲେ । ମନୁଷ୍ୟ ତ ସାରା ସୃଷ୍ଟିରେ ଶ୍ରେଷ୍ଠ ଜୀବ । ନଶ୍ୱର ଶରୀରରେ ସେ ଅବିନଶ୍ୱର ଆତ୍ମାଙ୍କୁ ଲାଭ କରିପାରନ୍ତା । କାମନା ଆଦି ଅଗ୍ନିରେ ସେ ଜଳେ କାହିଁକି ?

**ଶ୍ରୀ ଶୁକ ଉବାଚ**

**କ୍ରୀଡ଼ା-ଆସକ୍ତେଷୁ ଗୋପେଷୁ ତତ୍‌ଗାବୋ ଦୂରଚାରିଣୀଃ ।**
**ସ୍ୱୈରଂ ଚରନ୍ତ୍ୟୋ ବିବିଶୁଃ ତୃଣ ଲୋଭେନ ଗହ୍ୱରମ୍ ॥୧॥**

ଉ. ସଂସାରରେ ଜନ୍ମ ହେଉ ହେଉ ଲୋଭନୀୟ ରୂପ, ରସ, ଗନ୍ଧ, ଶବ୍ଦ ଓ ସ୍ପର୍ଶ ଆଦିର ଆକର୍ଷଣ ଜୀବର ଇନ୍ଦ୍ରିୟମାନଙ୍କୁ ଅଥୟ କରନ୍ତି । ସେମାନେ ଏକାକୀ, ବେଳେବେଳେ ଏକାଧିକ ଇନ୍ଦ୍ରିୟ ମିଶି ବିଷୟ ଆଡ଼କୁ ମନକୁ ଟାଣନ୍ତି । ମନ ପୁଣି ବୁଦ୍ଧିକୁ ଘୋଷାରି ନିଏ । ଶେଷରେ ସମସ୍ତେ ଖାଲରେ ପଡ଼ନ୍ତି । ପାପ କରି ବସନ୍ତି ।

ପ୍ରଶ୍ନ-୯୭: ଏଠାରେ ଲୀଳା ମାଧ୍ୟମରେ ଭଗବାନ ଜୀବର ସେଇ ପାପ ପ୍ରବଣତାର କାରଣ କଥା ଦର୍ଶାଇଛନ୍ତି । ଲୋଭନୀୟ ଘାସ ଆଦି ଭୋଜନ ଦ୍ରବ୍ୟ ଅନୁସନ୍ଧାନରେ ଘନ ଜଙ୍ଗଲ (ଗହ୍ୱରକୁ) ଚରୁ ଚରୁ ଚାଲି ଯାଇଛନ୍ତି । ଭୁଲି ଯାଇଛନ୍ତି ଆତ୍ମାରୂପୀ ଗୋବିନ୍ଦଙ୍କୁ । ଦାବାନଳ(ଅସୁର ଅଗ୍ନି) ପ୍ରକଟ ହୁଅନ୍ତେ ସମସ୍ତେ ସେତେବେଳେ କ'ଣ କରିଛନ୍ତି ?

**ତେ ଅପଶ୍ୟନ୍ତଃ ପଶୂନ୍ ଗୋପାଃ କୃଷ୍ଣ ରାମ-ଆଦୟଃ ତଦା ।**
**ଜାତ-ଅନୁତାପା ନ ବିଦୁଃ ବିଚିନ୍ୱନ୍ତୋ ଗବାଂ ଗତିମ୍ ॥୩॥**

ଉ. ସେମାନେ ଗାଇ ବାଛୁରୀମାନଙ୍କୁ ନ ଦେଖି ରଡ଼ି ଛାଡ଼ିଛନ୍ତି । ବଣସାରା ଖୋଜି ପକାଇଛନ୍ତି କିନ୍ତୁ କିଛି ସନ୍ଧାନ ପାଇପାରି ନାହାନ୍ତି ।

ପ୍ରଶ୍ନ-୯୮: ଶ୍ରୀକୃଷ୍ଣ ସଖାମାନେ ଗୋରୁମାନଙ୍କ ଖୁରା ଚିହ୍ନ ଓ ଘାସ ଖାଇବା ଚିହ୍ନ ବାରି ସେମାନଙ୍କ ଯାଇଥିବା ମାର୍ଗ ପାଇଗଲେ । ଶେଷରେ ଗୋପାଳମାନେ କେଉଁଠି ଭେଟିଲେ ସେମାନଙ୍କୁ ?

**ମୁଞ୍ଜ-ଅଟବ୍ୟାଂ ଭ୍ରଷ୍ଟ ମାର୍ଗଂ କ୍ରନ୍ଦମାନଂ ସ୍ୱଗୋଧନମ୍ ।**
**ସଂପ୍ରାପ୍ୟ ତୃଷିତାଃ ଶ୍ରାନ୍ତାଃ ତତଃ ତେ ସଂନ୍ୟବର୍ତ୍ତୟନ୍ ॥୫॥**

ଉ. ମୁଞ୍ଜ ଅଟବୀ (ଜଙ୍ଗଲ) ରେ । ସେତେବେଳକୁ ସେମାନେ ହାଲିଆ ହୋଇଯାଇଥାନ୍ତି ଭୋକରେ ଆଉଟୁ ପାଉଟୁ ହେଉଥାନ୍ତି ସମସ୍ତେ । ତଥାପି ଖୁସିରେ ନାଚିଗଲେ ସମସ୍ତେ ଗାଇ ବାଛୁରୀମାନଙ୍କୁ ଦେଖି ।

ପ୍ରଶ୍ନ-୯୯: ଶ୍ରୀକୃଷ୍ଣ ସର୍ବ ଅନ୍ତର୍ଯ୍ୟାମୀ । ଜୀବ ଦୁଃଖରେ ପଡ଼ିବା କଥା ତାଙ୍କୁ ଜଣା । ଉଦ୍ଧାର କରିବା ଦାୟିତ୍ୱ ମଧ୍ୟ ତାଙ୍କର । ସେ ଗୋପାଳମାନଙ୍କର ଏବଂ ଗାଈ ବାଛୁରୀମାନଙ୍କ ନାମ ଧରି ଡ଼ାକ ପକାଇଲେ । ସମସ୍ତେ ଜବାବ ମଧ୍ୟ ଦେଲେ । ଏଇ ସମୟରେ ସମସ୍ତଙ୍କୁ ଘେରି ରହିଥିବା ଦାବାଗ୍ନି ପ୍ରକଟ ହୋଇଗଲା । ସେ ଅଗ୍ନିର ନାମ ଅସୁର ଅଗ୍ନି । ଶ୍ରୀକୃଷ୍ଣ କ'ଣ କହି ସଖାମାନଙ୍କୁ ଅଭୟ ଦେଲେ ?

**ଶ୍ରୀଶୁକ ଉବାଚ**

**ବଚୋ ନିଶମ୍ୟ କୃପଣଂ ବନ୍ଧୁନାଂ ଭଗବାନ୍ ହରିଃ ।**
**ନିମୀଳୟତ ମା ଭୈଷ୍ଟ ଲୋଚନାନି-ଇତି-ଅଭାଷତ ॥୧୧॥**

ଉ. ସମସ୍ତଙ୍କୁ ଚକ୍ଷୁ ବନ୍ଦ ରଖିବାକୁ ଓ ଭୟ ନ କରିବାକୁ କହିଲେ ।

ପ୍ରଶ୍ନ-୧୦୦: ବ୍ରଜ ୮୪କ୍ରୋଶ ପରିକ୍ରମା ବେଳେ ଆମେ ଦେଖୁ ଦୁଇଟି ଅଗ୍ନିକୁଣ୍ଡ ସ୍ଥଳ । ଗୋଟିଏ ବନାଗ୍ନି ସ୍ଥଳ ଅନ୍ୟଟି ଦାବାନଳ କୁଣ୍ଡ । ଗୋଟିଏ ବୃନ୍ଦାବନର ରମଣରେତି ନିକଟରେ ଅନ୍ୟଟି କିଛି ଦୂରରେ । ଭଗବାନ ଦାବାନଳ କୁଣ୍ଡରେ ପହଞ୍ଚି କି ଉପାୟ କଲେ ଭକ୍ତମାନଙ୍କୁ ରକ୍ଷା କରିବାକୁ ।

**ତଥା-ଇତି ମିଳିତ-ଅକ୍ଷେଷୁ ଭଗବାନ୍ ଅଗ୍ନିଂ ଉଲ୍ବଣମ୍ ।**
**ପୀତ୍ୱା ମୁଖେନ ତାନ୍ କୃଚ୍ଛ୍ରାତ୍ ଯୋଗ-ଅଧୀଶୋ ବ୍ୟମୋଚୟତ୍ ॥୧୨॥**

ଉ. ଭଗବାନ ସଖାମାନଙ୍କୁ ଚକ୍ଷୁ ବନ୍ଦ କରିବାକୁ ଆଦେଶ ଦେଲେ । ସେମାନେ ସମସ୍ତେ ସେ ଆଦେଶ ପାଳନ କରନ୍ତେ (ତଥା-ଇତି ମୀଳିତ-ଅକ୍ଷେଷୁ) ଭଗବାନ ସେହି ଭୟଙ୍କର (ଉଲ୍ବଣଂ) ଦାବାନଳକୁ ଆତ୍ମସାତ କରିଦେଇଛନ୍ତି । ସେମାନଙ୍କୁ ଆସନ୍ନ ବିପଦରୁ ରକ୍ଷା କରିଛନ୍ତି (ବ୍ୟମୋଚୟତ୍) । ଏହା ତାଙ୍କର ଅଚିନ୍ତ୍ୟ ଯୋଗ ଶକ୍ତିର ପ୍ରଭାବ । ସୁତରାଂ ଜ୍ଞାନମାର୍ଗୀ ସାଧକ ଯୋଗଦ୍ୱାରା ଓ ଭକ୍ତିମାର୍ଗୀ ସାଧକ ହରି ଶରଣାଗତି ଦ୍ୱାରା ଏହି ସଂସାର ଜ୍ୱାଳା (ତ୍ରିତାପ ଅଗ୍ନି) ରୁ ମୁକ୍ତ ହେବା ଉଚିତ ।

ସେତେବେଳକୁ ସନ୍ଧ୍ୟା ନଇଁ ଆସିଥାନ୍ତି ବୃନ୍ଦାବନରେ । ଗୋବିନ୍ଦ ବଂଶୀବାଦନ କରି ଗୋଗୋଠ ଧରି ଫେରି ଆସିଲେ । ଏଣେ ଗୋପୀମାନେ ଗୋବିନ୍ଦ ଅଦର୍ଶନ ବିରହ ପ୍ରପୀଡ଼ିତା । ମୁରଲୀଧାରୀ କୃଷ୍ଣ ମଧୁର ମୁରଲୀ ଧ୍ୱନି ଶୁଣାଇ ସେମାନଙ୍କୁ ମଧ୍ୟ ବିରହ ଅଗ୍ନିରୁ ଉଦ୍ଧାର କଲେ ।

## ଅଥ ୨୦ଶ ଅଧ୍ୟାୟଃ

## (ଦିବ୍ୟ ବୃନ୍ଦାବନରେ ଦିବ୍ୟ ବର୍ଷାଋତୁ ଓ ଦିବ୍ୟ ଶରତ ଋତୁ)

ପ୍ରଶ୍ନ-୧୦୧ : ଠାକୁରଜୀଙ୍କ ବୟସ ସାତ ଡ଼େଇଁ ଆଠ ଚାଲିଲାଣି । ଆଗକୁ ରାସଲୀଳା ହେବାର ଅଛି । ଯୋଗମାୟାଙ୍କ ସଂକେତ ପାଇ ସେ ଚାଲିଲେ ବୃନ୍ଦାବନର ବର୍ଷାକାଳୀନ ଓ ଶରତକାଳୀନ ଶୋଭା ଦର୍ଶନାର୍ଥେ । ସେ ସରଜମିନ୍ ତଦନ୍ତ କରିବେ । ଦିବ୍ୟ ଲୀଳାର ସୁବିଧା ଲାଗି ହୁଏତ କିଛି ଅଦଳ ବଦଳ ଦରକାର ପଡ଼ିପାରେ ।

ଭଗବାନ ଲକ୍ଷ୍ୟକଲେ ତାଙ୍କ ଦିବ୍ୟ ଦୃଷ୍ଟିରେ ବର୍ଷା ଋତୁ(ପ୍ରାବୃଟ)ଙ୍କ ଶୁଭ ଆଗମନ । ଜଳକୁ ଜୀବନ କୁହାଯାଏ । ବର୍ଷା ଋତୁ ପ୍ରଚୁର ଜଳ ବର୍ଷା କରି ପଶୁପକ୍ଷୀ ବୃକ୍ଷଲତା ଆଦି ସମସ୍ତଙ୍କୁ ଜୀବନ ଦାନ କରନ୍ତି । ଠିକ୍ ଯେମିତି ସାଧୁମାନେ ନିଜେ ଦୁଃଖ ସହି ଅନ୍ୟକୁ ଜୀବନ ଦାନ କରନ୍ତି (ହରିଶ୍ଚନ୍ଦ୍ର ରାଜ ସିଂହାସନ, ଶିବି ମାଂସ,

ଦଧୀଚୀ ଅସ୍ଥି ଦାନ କରି) । ଯମ କାଳ ହେଲେ ଯମଙ୍କ ପିତା ସୂର୍ଯ୍ୟ ମହାକାଳ ଅଟନ୍ତି । ତାଙ୍କର ଅନ୍ୟଏକ ନାମ ପର୍ଜନ୍ୟ । ସୂର୍ଯ୍ୟଦେବତା ୮ମାସ ଧରି ପୃଥିବୀରୁ, ସମୁଦ୍ରରୁ, ନଦୀ-ପୁଷ୍କରିଣୀ ନାଳ-ନର୍ଦ୍ଦମା ଆଦିରୁ ଯେଉଁ ଜଳ ସଂଗ୍ରହ କରିଥାନ୍ତି ତାକୁ ନିଜେ ବ୍ୟବହାର ନକରି ପରହିତ ଲାଗି ବର୍ଷା ଚାରିମାସ (ଚାତୁର୍ମାସ୍ୟ)ରେ ଦାନ କରନ୍ତି ।

ବର୍ଷା ପ୍ରଭାବିତ କରିଥାନ୍ତି ବହିଃପ୍ରକୃତିକୁ । ସେହିଭଳି ଭକ୍ତି ପ୍ରଭାବିତ କରନ୍ତି ମନୁଷ୍ୟର ଅନ୍ତଃପ୍ରକୃତିକୁ । ଏ ଦୁହିଁଙ୍କର ଏକ ମନୋଜ୍ଞ ତୁଳନା କରିଛନ୍ତି ଶୁକଦେବ ପରମହଂସ ୧ ୯ ଶ୍ଳୋକରେ (୫-୨୪) । ସମାନ୍ତରାଳ ଭାବରେ ଉଭୟ ପ୍ରକୃତିଙ୍କର ଭାବଗତ ସାମ୍ୟ ପ୍ରକଟ ହୋଇଛି । ଶ୍ରୀରାମ ଚରିତ ମାନସ ରଚନା କଲାବେଳେ ସନ୍ଥ ଶିରୋମଣି ତୁଳସୀ ଦାସ ମଧ ଏହାକୁ ଯଥାବତ୍ ନିଜ ମାନସ ଗ୍ରନ୍ଥରେ ସ୍ଥାନିତ କରିଛନ୍ତି । କାରଣ ଭାଗବତରେ ଏ ଋତୁ ବର୍ଣ୍ଣନା ଅତ୍ୟନ୍ତ ମାର୍ମିକ, ମର୍ମସ୍ପର୍ଶୀ, ଶିକ୍ଷଣୀୟ ତଥା ଲୋଭନୀୟ । ଏତେ ସବୁ କଥାକୁ କିଭଳି ଶବ୍ଦରେ ବ୍ୟାସଦେବ ପ୍ରକଟ କଲେ ?

ଶ୍ରୀଶୁକ ଉବାଚ

**ଅଷ୍ଟୌ ମାସାନ୍ ନିପୀତଂ ଯତ୍ ଭୂମ୍ୟାଃ ଚ ଉଦମୟଂ ବସୁ ।**
**ସ୍ୱ ଗୋଭିଃ ମୋକ୍ତୁଂ ଆରେଭେ ପର୍ଜନ୍ୟଃ କାଳ ଆଗତେ ॥୫॥**

ଉ. ସୂର୍ଯ୍ୟ ଦେବତା ଆଠ ମାସ କାଳ ନିଜ କିରଣ ଦ୍ୱାରା (ଗୋଭିଃ) ପୃଥିବୀରୁ ଜଳକୁ ଶୋଷଣ କରିଥିଲେ । ପୃଥିବୀର ସଂପତ୍ତିକୁ(ବସୁ) ନିଜ ସଂପତ୍ତି ବୋଲି କବ୍‌ଜା କରିଥିଲେ ମଧ ତାକୁ ନିଜେ ଉପଭୋଗ ନକରି ପୁଣି ଅକାତରରେ ପୃଥିବୀକୁ ବର୍ଷା ଚାରି ମାସରେ ଦାନ କଲେ । ମନୁଷ୍ୟକୁ କର୍ମଯୋଗୀ ସୂର୍ଯ୍ୟ ଏଇ ଶିକ୍ଷା ଦେଲେ ଯେ ମନୁଷ୍ୟ ତା ଦ୍ୱାରା ସଂଗୃହୀତ ଧନ ସଂପତ୍ତିକୁ ଜଗତ କଲ୍ୟାଣ କର୍ମରେ ଲଗାଉ ।

ବର୍ଷାଙ୍କ ଶୁଭାରମ୍ଭରେ ଅସରାକୁ ଅସରା ବର୍ଷା ଜଳ ସହିତ ମେଘ ଗର୍ଜନ ଓ ବିଜୁଳିର ପ୍ରକାଶ ମନୁଷ୍ୟ ମନରେ ଭୀମ (ଭୟଙ୍କର) ଓ କାନ୍ତ (ସୁନ୍ଦର) ଭାବର ଉଦ୍ରେକ କରୁଛି ଠିକ୍ ପିଲାମାନେ ସର୍କସରେ ବାଘ, ସିଂହ ଦେଖିବା ଭଳି । ଆକାଶରେ ଧଳା, କଳା, ଘନ କଳା ମେଘର ପଟୁଆର ଦେଖାଯାଉଛି । ସତେ କି ବ୍ରହ୍ମ ବା ଆତ୍ମାଙ୍କୁ ସତ୍ତ୍ୱଗୁଣୀ, ରଜୋଗୁଣୀ ଓ ତମୋଗୁଣୀ କାମନା ଆଛନ୍ନ କରୁଛନ୍ତି । ପ୍ରଚଣ୍ଡ

ଗ୍ରୀଷ୍ମ ତାପରେ ଧରିତ୍ରୀ ପ୍ରଥମେ ଶୁଷ୍କ ହୁଏ କିନ୍ତୁ ବର୍ଷାର ଆଗମନରେ ହରା ଭରା ସବୁଜ ବନାନୀ ଶସ୍ୟ କ୍ଷେତ୍ରରେ ଶୋଭାୟମାନ ହୁଏ । ଯେପରି ଶ୍ରେୟ କାମୀ ସାଧକ ତପସ୍ୟା ଆରମ୍ଭରେ ଶୁଖିଯାଏ କିନ୍ତୁ ତପସ୍ୟା ଫଳ ପ୍ରାପ୍ତ ହେଲେ ହସି ଉଠେ ।

ପ୍ରଶ୍ନ-୧୦୨ : ସନ୍ଧ୍ୟାବେଳେ ମେଘ ହେତୁ ଗ୍ରହ ନକ୍ଷତ୍ରମାନେ ପ୍ରଭାହୀନ ହୁଅନ୍ତି କିନ୍ତୁ ଜୁଳୁଜୁଳିଆ ପୋକ ବେଶ ଚକ୍‌ମକ୍ କରନ୍ତି । ଏହିପରି କଳିଯୁଗରେ ନାସ୍ତିକ (ଦେହାତ୍ମ୍ୟବାଦୀ ଭୌତିକ) ସିଦ୍ଧାନ୍ତମାନେ ବୈଦିକ ସିଦ୍ଧାନ୍ତକୁ ଘୋଡ଼େଇ ପକାଇ ହର୍ଷିତ ହୁଅନ୍ତି । ମେଘ ଗର୍ଜନ ସହିତ ତାଳ ଦେବା ପାଇଁ ବେଙ୍ଗମାନେ ଘୋର ରଡ଼ି କରିଥାନ୍ତି ମୃତ୍ୟୁକୁ (ସାପକୁ) ନିମନ୍ତ୍ରଣ କରି ତାହାର ଆହାର ହେବାକୁ । ସେହି ନ୍ୟାୟରେ ଭକ୍ତିଶୂନ୍ୟ କର୍ମକାଣ୍ଡୀ ବ୍ରାହ୍ମଣମାନେ ସକାଳୁ ଗଗନ ପବନ କମ୍ପାଇ ବେଦଧ୍ୱନି କରନ୍ତି । ଏତେ ମନ୍ତ୍ର ଉଚ୍ଚାରଣ କରି ମଧ୍ୟ ଭକ୍ତିଶୂନ୍ୟ ହେବା କାରଣରୁ ସେମାନେ ସବୁ ମୃତ୍ୟୁର ଶିକାର ହୁଅନ୍ତି ! !

ବର୍ଷାରେ କ୍ଷୁଦ୍ର ଶୁଷ୍କ ନଦୀଟିଏ ମଧ୍ୟ ପ୍ରଚୁର ଜଳ ପାଇ ଫୁଲି ଉଠେ । ବିଷୟୀ ମଣିଷଟିଏ ଯେମିତି ଧନ, ସଂପତ୍ତି, ଦେହ ଅଭିମାନରେ ଫୁଲିଯାଏ । ଗର୍ବ କରେ । ସବୁଜ ଘାସ, ନାନା ଜାତି ଫୁଲଫଳ, ନାଲି ଟୁକୁ ଟୁକୁ ସାଧବବୋହୂ ପୋକଙ୍କୁ ଧରି ଧରିତ୍ରୀ ରାଣୀ ନିଜ ଶାରୀରିକ ସୌନ୍ଦର୍ଯ୍ୟର ବଡ଼େଇ କରନ୍ତି । ସତେ କି ଜଣେ ରାଜା ତାଙ୍କ ସୈନ୍ୟ ସାମନ୍ତ ଧରି ପଟୁଆର କରୁଛନ୍ତି ।

ଧାନ କ୍ଷେତର ମାଲିକ ନିଜ ସବୁଜ କ୍ଷେତ ଦେଖି ଭାରି ଖୁସି । ଆପଣା ପୁରୁଷାର୍ଥରେ ଗର୍ବିତ କିନ୍ତୁ ଜାଣେନା ବିଚରା ଧାନ ଫଳିବା ଦୈବ ଅଧୀନ । ଆଗକୁ ଅତିବୃଷ୍ଟି, ଅନାବୃଷ୍ଟି, କୀଟପତଙ୍ଗ ଇତ୍ୟାଦିଙ୍କ ଆକ୍ରମଣ ଆଦିର ସମ୍ଭାବନା ଅଛି । ସୂର୍ଯ୍ୟଙ୍କ ଦ୍ୱାରା କରାଯାଉଥିବା ବର୍ଷାକୁ କିଭଳି ନାଟକୀୟ ଢ଼ଙ୍ଗରେ ବୈଷ୍ଣବମାନଙ୍କ ହରିଭଜନ ସହିତ ତୁଳନା କରାଯାଇଛି ?

**ଜଳସ୍ଥଳ-ଓକସଃ ସର୍ବେ ନବ ବାରି ନିଷେବୟା ।**
**ଅବିଭ୍ରନ୍ ରୁଚିରଂ ରୂପଂ ଯଥା ହରି ନିଷେବୟା ॥୧୩॥**

ଉ. ବର୍ଷା ଋତୁରେ କି ଜଳଚର, ସ୍ଥଳଚର, ଆକାଶଚର ସମସ୍ତେ ନବୀନ ଜଳ ପ୍ରାପ୍ତ ହୋଇ ଆନନ୍ଦିତ । ଠିକ୍ ଯେମିତି ଭକ୍ତ ନିରନ୍ତର ହରିଭଜନ କରି ମାଲାମାଲ ହୋଇଥାଏ । ନଦୀ ମୁହାଣରେ ସମୁଦ୍ର ବିକ୍ଷୁବ୍ଧ ହୁଏ । ବହୁ ଉଚ୍ଚ ଲହରୀମାନେ

ଉଠନ୍ତି । ଯେମିତି ଅପରିପକ୍ୱ ଯୋଗୀ ମନରେ ବାସନାର ତରଙ୍ଗ ଉଠନ୍ତି । ଅନ୍ୟପକ୍ଷରେ ପର୍ବତମାନେ ପ୍ରବଳ ବର୍ଷା ମାଡ଼ରେ ବିଚଳିତ/ହଲଚଲ ନହେବା ଭଳି ବିଷ୍ଣୁ ଭକ୍ତମାନେ ବ୍ୟସନ/ସଙ୍କଟ ସମୟରେ ଅବିଚଳିତ, ଶାନ୍ତ ରହିଥାନ୍ତି ।

ବର୍ଷାଦିନେ ପାଦଚଲା ରାସ୍ତା ପାର୍ଶ୍ୱରେ ସାନ ସାନ ଅନାବନା ବୃକ୍ଷ ଜନ୍ମନ୍ତେ ରାସ୍ତା ଚିହ୍ନିବା କଷ୍ଟକର ହୁଏ । କଳିଯୁଗରେ ଅନଧିକାରୀ ଇତର ଲୋକେ ଶାସ୍ତ୍ର ପଢ଼ିଲେ ବା ବ୍ୟାଖ୍ୟା କଲେ ପ୍ରକୃତ ଜ୍ଞାନ ଲୁଚିଯାଏ । ସ୍ୱଭାବରେ ବିଜୁଳି ଚଞ୍ଚଳ । ସେ ଏ ମେଘରୁ ସେ ମେଘକୁ କ୍ଷଣକେ ଦୌଡ଼ି ପଳାଏ । ଠିକ୍ ଯେମିତି ଚରିତ୍ରବାନ୍ ପୁରୁଷ ଗହଣରେ କାମୁକିନୀ ନାରୀ ସ୍ଥିର ହୋଇ ରହିପାରେନା । ଏପଟ ସେପଟ ହୁଏ ବିଚାରୀ ।

ଆକାଶରେ ଇନ୍ଦ୍ରଧନୁ ବେଳେ ବେଳେ ଦୃଶ୍ୟ ହୁଏ । ଏହା ଏକ ଗୁଣ ନଥିବା ଧନୁ । ଠିକ୍ ସେହି ନ୍ୟାୟରେ ପରମାତ୍ମା ପରମେଶ୍ୱର ଅବତାର ନିଅନ୍ତି । ଜ୍ଞାନୀମାନଙ୍କ ମତରେ ନିରାକାରରୁ ନରାକାର ରୂପରେ ଜନ୍ମ ନିଅନ୍ତି । ସେ ଦେଖାଯାନ୍ତି ସଗୁଣ ଭଳି କିନ୍ତୁ ବାସ୍ତବରେ ନିର୍ଗୁଣ ସେ । କଳାମେଘରେ ରାତିରେ ଚନ୍ଦ୍ର ଘୋଡ଼େଇ ହୋଇଯାଆନ୍ତି ଠିକ୍ ଯେମିତି ଜୀବର ଅହଂକାର ଦ୍ୱାରା ଆତ୍ମାଙ୍କ ଦିବ୍ୟତା ଆଚ୍ଛନ୍ନ ହୋଇ ରହିଯାଏ । ଆକାଶରେ କଳା ମେଘ ଦେଖି ମୟୂରୀ ସୁନ୍ଦର ପୁଚ୍ଛ ଟେକି ଆନନ୍ଦରେ ନାଚିଯାଏ । କଳିଯୁଗରେ ଗୃହସ୍ଥ  ସାଧକ ସାଧୁ ବୈଷ୍ଣବ ଦର୍ଶନ, ସ୍ପର୍ଶ, ସେବା ସୁଯୋଗ ପ୍ରାପ୍ତିରେ ମଧ ନାଚିଯାଏ । ତାର ଚିତ୍ତ ପ୍ରସନ୍ନ ହୋଇଯାଏ ।

ପ୍ରଶ୍ନ-୧ ୦୩: ପ୍ରବଳ ବୃଷ୍ଟିପାତରେ ଶସ୍ୟକ୍ଷେତ୍ରର ହିଡ଼ ବାଡ଼ ଭାଙ୍ଗି ଫସଲ ଛାରଖାର ହୋଇଯାଏ । କଳିଯୁଗରେ ନାସ୍ତିକ ଶୁଷ୍କ ପଣ୍ଡିତମାନେ ବୈଦିକ ଧର୍ମକୁ ନଷ୍ଟଭ୍ରଷ୍ଟ କରିଦିଅନ୍ତି । ମେଘମାନେ ବାୟୁପ୍ରେରିତ ହୋଇ ଭୁପୃଷ୍ଠରେ ଜଳଦାନ କରନ୍ତି । ବ୍ରାହ୍ମଣ, ବୈଷ୍ଣବ ପ୍ରେରିତ ହୋଇ ରାଜାମାନେ ଦୁଃଖୀ ରଙ୍କିଲୋକଙ୍କୁ ଅନ୍ନବସ୍ତ୍ର ଦାନ କରିଥାନ୍ତି । ବୃନ୍ଦାବନରୋ ବର୍ଷା ଋତୁର ଏଭଳି ଜନମନ ଲୋଭା ଶୋଭା ଦର୍ଶନ କରି ଶ୍ରୀକୃଷ୍ଣ କଣ ନିଷ୍ପତ୍ତି ନେଲେ ?

**ଏବଂ ବନଂ ତଦ୍ ବର୍ଷିଷ୍ଠଂ ପକ୍ୱ ଖର୍ଜୁର ଜମ୍ବୁମତ୍ ।**
**ଗୋ ଗୋପାଳୈଃ ବୃତ୍ତୋରନ୍ତୁଂ ସବଳଃ ପ୍ରାବିଶତ୍ ହରିଃ ॥୨୫॥**

ଉ. ବର୍ଷା ଋତୁ ସେବିତ (ବର୍ଷିଷ୍ଠ) ଏହି ଭଳି (ଏବଂ) ବୃନ୍ଦାବନ ପାଚିଲା

ଖଜୁରୀ, ଜାମୁକୋଳି ଆଦି ଫଳରେ ଶୋଭାୟମାନ ହେଉଥାଏ । ଠାକୁରଜୀ (ହରିଃ) ଭାଇ ବଳରାମ ଓ ଅନ୍ୟାନ୍ୟ ଗୋପାଳବାଳକଙ୍କୁ ଧରି ସାର୍ବଜନୀନ ରାସ କରିବା ଇଚ୍ଛାରେ (ରନ୍ତୁଂ) ସେ ବନରେ ପ୍ରବେଶ କଲେ (ପ୍ରାବିଶତ୍) ।

ଠାକୁରଜୀ ଯେଉଁ ଗାଈର ନାମ ଧରି ଡ଼ାକନ୍ତି କାଳୀ, ଧବଳି, କସରି ଆଦି ନାମରେ ସେହି ସେହି ଗାଈମାନେ ତାଙ୍କ ପାଖକୁ ଚାଲି ଆସନ୍ତି । ସସ୍ନେହ ଦୃଷ୍ଟିରେ ସେମାନେ ଅପେକ୍ଷା କରନ୍ତି କୋଟି ଜନ୍ମର ତପସ୍ୟାର ଫଳ କୃଷ୍ଣପ୍ରେମ ପାଇବାକୁ । ଠାକୁରଜୀଙ୍କ ଅମୃତ ଦୃଷ୍ଟି, ଗେଲ, ଆଦରଯୁକ୍ତ ସ୍ପର୍ଶନ ଦର୍ଶନ ଟିକକ ଲାଗି । ଏତକ ପାଇଲେ ସେମାନଙ୍କ ସ୍ତନରୁ ଧାରୋଷ୍ଣ ଦୁଗ୍ଧ ସ୍ରବି ଚାଲେ । ଏଭଳି ପ୍ରେମପୂର୍ଣ୍ଣ ବାତାବରଣ ମଧ୍ୟରେ ବର୍ଷାକାଳ ଯାକ ରାମ ଗୋବିନ୍ଦ କେବେ ବୃକ୍ଷ କୋଟରରେ କେବେ ଗିରିରାଜ ଗୋବର୍ଦ୍ଧନ ପର୍ବତଙ୍କର ଗୁମ୍ଫାରେ ସମୟ କଟାନ୍ତି । ବନ୍ୟଫଳ ମୂଳ ଖାଇ, ବନ୍ୟ ପତ୍ର ପୁଷ୍ପର ମାଳା ଧାରଣ କରି ଖେଳ କୌତୁକ କରନ୍ତି । ବର୍ଷାକାଳ ଭଗବାନଙ୍କର ଜଣେ ବୈଷ୍ଣବ ସେବକ ବା ଭକ୍ତ । ତଥାପି ତା ସେବାରେ ପରମ ସନ୍ତୁଷ୍ଟ ହୋଇ ଭଗବାନ ବର୍ଷାକାଳକୁ ତାଙ୍କ ଉଦାରଗୁଣରେ ପୂଜନ କରି ନମସ୍କାର ମଧ୍ୟ କରିଛନ୍ତି ।

ପ୍ରଶ୍ନ-୧୦୪: ବର୍ଷାଋତୁ ବିଦାୟ ନେଉ ନେଉ ସୁନ୍ଦର ଶରତ ଋତୁ ପ୍ରକାଶ କରିଛନ୍ତି ଭକ୍ତ ଭଗବାନଙ୍କ ସେବା ଲକ୍ଷ୍ୟରେ । ୧୭ଶ୍ଳୋକରେ (୩୩-୪୯) ଶୁକଦେବଜୀ ଏ ଋତୁର ବହିଃ ପ୍ରକୃତି ସହିତ ମନୁଷ୍ୟର ଅନ୍ତଃ ପ୍ରକୃତିର ମାର୍ମିକ ତୁଳନା କରିଛନ୍ତି । ବର୍ଷାଋତୁରେ ପୁଷ୍କରିଣୀ ଗୁଡ଼ିକ ପଦ୍ମଫୁଲ ଆଦି ଭଗବାନଙ୍କୁ ଅର୍ପଣ କରିପାରୁ ନଥିଲେ । ଶରତ ଋତୁରେ ସେମାନେ ସ୍ୱଚ୍ଛ ଜଳ ଧାରଣ କରି ନାନା ରଙ୍ଗର ଶତଦଳ ପଦ୍ମବନର ବିକାଶ କଲେ । ଠାକୁରଜୀଙ୍କ ସେବାରେ ଆସି ଆଜି ସେମାନେ ସମସ୍ତେ ଧନ୍ୟ । ଯୋଗଭ୍ରଷ୍ଟ ସାଧକ ସାଧୁ ବୈଷ୍ଣବ ସତ୍‌ସଙ୍ଗରେ ଆସି ଭକ୍ତି କରି କୃତାର୍ଥ ହେଲାଭଳି ଏ ଘଟଣା ଘଟିଲା ବୃନ୍ଦାବନରେ ।

ଶରତ ଋତୁ ବୃନ୍ଦାବନରେ ଆକାଶକୁ ମେଘ ମୁକ୍ତ କଲା, ପୃଥିବୀକୁ କାଦୁଅ ମୁକ୍ତ କଲା, ଜଳକୁ ଆବିଳତା ମୁକ୍ତ କଲା ଓ ବର୍ଷା ଋତୁର ବହଳ ପୋକ ଜୋକ ମାନଙ୍କ ସଂଖ୍ୟାକୁ କମ କରି ପକାଇଲା । ମାଛ, କଙ୍କଡ଼ା ଇତ୍ୟାଦି ଜୀବମାନଙ୍କ ସହିତ ହରିଭଜନ କରୁନଥିବା ଲୋକମାନଙ୍କ ମୂର୍ଖତା ଏକା କଥା ବୋଲି କାହିଁକି ତୁଳନା କରାଗଲା ?

**ନ-ଏବ-ଆବିଦନ୍ କ୍ଷୀୟମାଣଂ ଜଳଂ ଗାଧ ଜଳେ ଚରାଃ ।**
**ଯଥା-ଆୟୁଃ ଅନୁ-ଅହଂ କ୍ଷୟଂ ନରା ମୂଢ଼ାଃ କୁଟୁମ୍ବିନଃ ।।୩୭।।**

ଉ. ମୂର୍ଖ ମାଛ କଙ୍କଡ଼ା ଜାଣିପାରନ୍ତି ନାହିଁ ବର୍ଷା ଜଳ ଶୁଖିଗଲେ ସେମାନଙ୍କର ପ୍ରାଣନାଶର ସମ୍ଭାବନା ଅଛି । ଠିକ୍ ଯେମିତି ବହୁ କୁଟୁମ୍ବୀ ଲୋକେ ଜାଣିପାରନ୍ତି ନାହିଁ ଆୟୁ ସରି ଆସୁଛି । ହରିଭଜନ କରିବି କେବେ ? ଭୂମିରେ ମାଡୁଥିବା ଲତା (ବିରୁଧ) କଖାରୁ ଡ଼ଙ୍କ, ଚଲଣା ଡ଼ଙ୍କ ଅନ୍ୟ ଆଶ୍ରୟ ତ୍ୟାଗ କରି ନିଜେ ଭୂମିରେ ମାଡ଼ି ଫୁଲ ଫଳ ଦେବାରେ ଲାଗନ୍ତି । ଯେଉଁ ନ୍ୟାୟରେ ଆତ୍ମଜ୍ଞାନୀ ଲୋକ ଅହନ୍ତା, ମମତା ତ୍ୟାଗ କରି, ଦେହ ଗେହ ଆସକ୍ତି ତ୍ୟାଗ କରି ଶ୍ରୀହରିଙ୍କ ଅନନ୍ୟ ଆଶ୍ରୟରେ ରହେ ।

ଶରତ ଆଗମନରେ କୃଷକମାନେ ଶସ୍ୟ କ୍ଷେତ୍ରରେ ଜଳକୁ ବନ୍ଧ ବାନ୍ଧି ସାଇତି ରଖିଲେ । ଠିକ୍ ଯେଭଳି ସାଧକମାନେ ନିଜ ନିଜ ଇନ୍ଦ୍ରିୟମାନଙ୍କୁ ସଂଯମ ଦ୍ୱାରା ଆଗୁଳି ରଖନ୍ତି । ଶରତଚନ୍ଦ୍ର ଶୁଭ୍ର ଜ୍ୟୋତ୍ସ୍ନା ଦ୍ୱାରା ନିଜର ସୂର୍ଯ୍ୟତାପ ଜନିତ ପୀଡ଼ା ଦୂର କରନ୍ତି । ଅନ୍ୟ ପକ୍ଷରେ ଶ୍ରୀକୃଷ୍ଣଚନ୍ଦ୍ର ଗୋପୀ ଗୋପାଳଙ୍କ ଅଦର୍ଶନ ଜନିତ ବିରହ ପୀଡ଼ା ଦୂର କରନ୍ତି ମୋହନ ବଂଶୀ ବାଦନ ଓ ନିଜର ଦର୍ଶନ ମାଧ୍ୟମରେ ।

ତାରାଖଚିତ ମେଘମୁକ୍ତ ଶରତ ଆକାଶ ଏବେ ଚମକି ଉଠିଲା । ଭକ୍ତ ହୃଦୟ ସତ୍ୱଗୁଣରେ ବେଦ ଅର୍ଥର ତାତ୍ପର୍ଯ୍ୟ ବୁଝିପାରିବା ଭଳି । ତାରାଗଣଙ୍କ ମଧ୍ୟରେ ଶରତଚନ୍ଦ୍ର ଶୋଭପାଇବା ଭଳି ବୃଷ୍ଣିବଂଶରେ ଭଗବାନ କୃଷ୍ଣଚନ୍ଦ୍ର ଶୋଭା ପାଇଲେ । ବୃନ୍ଦାବନ ବନଭୂମିରେ ସୁଗନ୍ଧ, ଶୀତଳ, ମନ୍ଦବାୟୁ ପ୍ରବାହିତ ହେଲେ । ଅନ୍ୟ ପକ୍ଷରେ ଠାକୁରଜୀ ବୃନ୍ଦବାନବାସୀଙ୍କର ସାଂସାରିକ ଦୁଃଖ ଦୂରକରିଦେଲେ ଓ ସକଳ ଗୋପୀଗୋପାଳଙ୍କର କାମନା ବାସନା ସହିତ ଚିତ୍ତକୁ ହରଣ କରିନେଲେ ।

ଗାଈ, ମୃଗୁଣୀ, ପକ୍ଷିଣୀ ପୁଷ୍ପିତା ବା ଋତୁମତୀ ହେଲେ । ଫଳରେ ପୁରୁଷ ପଶୁ ପକ୍ଷୀମାନେ ସେମାନଙ୍କର ଅନୁଧାବନ କଲେ । ଠିକ୍ ଯେମିତି ଭଗବାନଙ୍କ ଉଦ୍ଦେଶ୍ୟରେ କରିଥିବା କର୍ମଫଳ ଭକ୍ତର ପିଛା କରିଥାଏ । ଶରତ ଋତୁରେ କଇଁଫୁଲ ବ୍ୟତୀତ ଅନ୍ୟ ସକଳ ପ୍ରକାର କମଳ ପୁଷ୍ପ ବିକଶିତ ହେଲେ । ଘଟଣାଟି ଘଟିଲା ରାଜାଙ୍କ ସୁଶାସନରେ ଦସ୍ୟୁ ବ୍ୟତୀତ ଅନ୍ୟ ସମସ୍ତେ ପ୍ରସନ୍ନ ହେବା ସଦୃଶ ।

ବର୍ଷା ଋତୁରେ ବାହାରକୁ ବାହାରି ପାରୁନଥିବା ବ୍ୟବସାୟୀ, ମୁନି, ଋଷି, ରାଜା, ବେଦ ପଠନକାରୀ ସ୍ନାତକଗଣ ଶରତ ଆଗମନରେ ନିଜ ନିଜର ଅଭିଳଷିତ ଦ୍ରବ୍ୟ ପ୍ରାପ୍ତ କରନ୍ତି । ଠିକ୍ ଯେମିତି ସିଦ୍ଧ ସାଧକ ଉପଯୁକ୍ତ ସମୟ ହେଲେ ଭୌତିକ ଶରୀର ଲୋଭ ତ୍ୟାଗ କରି ସ୍ୱରୂପ ଅବସ୍ଥାନ କରିଥାଏ ।

## ଅଥ ୨୧ଶ ଅଧ୍ୟାୟଃ

### (ମୁରଲୀ ମୋହନଙ୍କ ମୋହନ ବେଣୁ ବାଦନରେ ବୃନ୍ଦାବନର କୃଷ୍ଣତନ୍ମୟତା)

ପ୍ରଶ୍ନ-୧୦୫: ରାସ ସମୟ ପାଖେଇ ଆସିଲାଣି । ରାସେଶ୍ୱର କୃଷ୍ଣ ପରୀକ୍ଷାମୂଳକ ଭାବରେ ବଂଶୀ ବଜାଇ ପରୀକ୍ଷା କରିବାକୁ ଚାହିଁଲେ ବେଣୁ ସ୍ୱନରେ କିଏ କିପରି କୃଷ୍ଣ ତନ୍ମୟ ହୋଇପାରୁଛନ୍ତି । ବଂଶୀ ସ୍ୱରରେ ବନରାଜି କୁସୁମିତ, ଭ୍ରମର ଦଳ, ପଶୁ, ପକ୍ଷୀ ସମୂହ ମତ୍ତ (ପାଗଳ), ପାହାଡ଼, ପର୍ବତ, ସ୍ପନ୍ଦନ ଯୁକ୍ତ ହେବା ବୃକ୍ଷଲତାମାନଙ୍କ ପୁଷ୍ପିତ ପଲ୍ଲବିତ ହେବା, ପାଷାଣ ତରଳି ଯିବା, ଓ ନଦୀ ଝରଣା ଆଦି ସ୍ପନ୍ଦନ ରହିତ ହୋଇ ଉଜାଣି ବହିବା ଦେଖି ଗୋପୀମାନଙ୍କର କି ଅବସ୍ଥା ହେଲା ?

ଶ୍ରୀଶୁକ ଉବାଚ

**ତଦ୍ ବ୍ରଜସ୍ତ୍ରିୟ ଆଶ୍ରୁତ୍ୟ ବେଣୁଗୀତଂ ସ୍ମର-ଉଦୟମ୍ ।**
**କାଶ୍ଚିତ୍ ପରୋକ୍ଷଂ କୃଷ୍ଣସ୍ୟ ସ୍ୱସଖୀଭ୍ୟୋଽନ୍ୱବର୍ଣ୍ଣୟନ୍ ॥୩॥**

ଉ. କିଶୋରୀ ଗୋପୀମାନେ ସର୍ବଦା କାମ ଭାବରେ ଠାକୁରଜୀଙ୍କୁ ସ୍ମରଣ କରୁଥିଲେ । ଭଗବାନଙ୍କ ବୟସ ସେତେବେଳକୁ ମାତ୍ର ସାତ ବର୍ଷ । ତଥାପି ମୋହନ ବେଣୁ ସ୍ୱରରେ ସେମାନେ ସ୍ପଷ୍ଟତଃ କାମ ପୀଡ଼ିତ ହୋଇପଡ଼ିଲେ । ସେମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲେ ସେ ବିଷୟରେ । ଆଶ୍ଚର୍ଯ୍ୟର କଥା ସେମାନେ ଖୋଲା ଆଖିରେ ସ୍ତମ୍ଭୀତ ଓ ସମାଧିସ୍ଥ ହୋଇଗଲେ । ତାହା ପୁଣି ବିନା ଆସନ ପ୍ରାଣାୟମ ଭଳି କୌଣସି ଚେଷ୍ଟାରେ । କୃଷ୍ଣ ଯେଉଁ ପାହାଡ଼ ଉପରେ ଠିଆ ହୋଇ ପ୍ରଥମେ ବଂଶୀବାଦନ କରିଥିଲେ ତାଙ୍କ ପାଦତଳେ ଥିବା ପାଷାଣ ତରଳି ଯାଇଥିଲା । ସେଇ ଦିବ୍ୟ ଚରଣ ଚିହ୍ନ ଚରଣ ପାହାଡ଼ିରେ ବୃନ୍ଦାବନ ପରିକ୍ରମା ବେଳେ ଏବେ ବି ଦର୍ଶନୀୟ ।

ପ୍ରଶ୍ନ-୧୦୬: ଶୁକଦେବ ପରମହଂସ ଗୋପୀମାନଙ୍କ ସମାଧିସ୍ଥ ଅବସ୍ଥା ବର୍ଣ୍ଣନ କରୁ କରୁ ସ୍ୱୟଂ କିଭଳି ସମାଧିସ୍ଥ ହୋଇଗଲେ ?

ବର୍ହ-ଆପୀଡ଼ଂ ନଟବରବପୁଃ କର୍ଣ୍ଣୟୋଃ କର୍ଣ୍ଣିକାରଂ
ବିଭ୍ରଦ୍‌ବାସଃ କନକକପିଶଂ ବୈଜୟନ୍ତୀଂ ଚ ମାଲାମ୍ ।
ରନ୍ଧ୍ରାନ୍ ବେଣୋଃ ଅଧରସୁଧୟା-ଆପୂରୟନ୍ ଗୋପବୃନ୍ଦୈଃ
ବୃନ୍ଦାରଣ୍ୟଂ ସ୍ୱପଦରମଣଂ ପ୍ରାବିଶତ୍ ଗୀତ କୀର୍ତ୍ତିଃ ॥୫॥

ଉ. ବକ୍ତାମହାଶୟ ସେତେବେଳେ ସ୍ୱୟଂ ତଟସ୍ଥ ଥିଲେ । ସ୍ୱୟଂ ଶ୍ୟାମସୁନ୍ଦର ନିଜର ଦିବ୍ୟ ରୂପ, ଗୁଣ, ଲୀଳା ମହାତ୍ମ୍ୟ ଶୁକ ଦେବଙ୍କ ମୁଖରେ ବର୍ଣ୍ଣନ କରୁଥିଲେ । ଶୁକଦେବଜୀ ଦେଖିଲେ ମାନସ ପଟଳରେ ଭଗବାନଙ୍କ ମସ୍ତକରେ ମୟୂର ଚନ୍ଦ୍ରିକା, ଦିବ୍ୟ ଦେହରେ ତ୍ରିଭଙ୍ଗୀ ଠାଣି ଯୁକ୍ତ ନଟବର ବେଶ । ଉଭୟ କର୍ଣ୍ଣରେ କୁସୁମିତ କମନୀୟ କନକ କାନ୍ତିଯୁକ୍ତ କନିଅର ପୁଷ୍ପ । ବସନ ତାଙ୍କର ପ୍ରଭାବଯୁକ୍ତ ପୀତାମ୍ବର(କପିଶଂ) । ଗଳାରେ ବିଜୟ ବୈଜୟନ୍ତୀ ମାଳା । ପାରିଜାତ, ମନ୍ଦାର, ସନ୍ତାନକ, ହରିଚନ୍ଦନ ଓ କଳ୍ପତରୁ ପୁଷ୍ପରେ ଗୁନ୍ଥା ଯାଇଥାଏ ଏ ମାଳା । ସେ ତାଙ୍କ ଦୁଇ କର କମଳରେ ଧାରଣ କରିଛନ୍ତି ମୋହନ ମୁରଲୀ । ମଉକା ଦେଖି ଭିନ୍ନ ଭିନ୍ନ ବେଣୁ ରନ୍ଧ୍ର ଦେଇ ଭିନ୍ନ ଭିନ୍ନ ତାନ ଛାଡୁଛନ୍ତି । ତାଙ୍କ ଦିବ୍ୟ କୋମଳ ଚରଣ କମଳରେ ବ୍ରଜ, ଧ୍ୱଜ, ଅଙ୍କୁଶ ଆଦି ୩୨ଲକ୍ଷଣ ବିରାଜମାନ । ଚତୁଃପାର୍ଶ୍ୱରେ ଘେରାବନ୍ଦୀ କରି ଗୋପାଳବାଳକମାନେ ତାଙ୍କର ଲୀଳା ଚରିତ ଗାନ କରୁଛନ୍ତି । ଏ ସକଳ ବସ୍ତୁ, ବ୍ୟକ୍ତି, କାଳ, ପରିସ୍ଥିତି ଦିବ୍ୟ ହୋଇଥିବାରୁ ବକ୍ତା ମହାଶୟଙ୍କର ମନ-ବୁଦ୍ଧି-ଚିତ୍ତ-ଅହଂକାର ମଧ ଦିବ୍ୟସ୍ଥିତିରେ ଆପେ ଆପେ ପହଞ୍ଚିଯାଇଛି । ତାଙ୍କର ବାହ୍ୟ ସଂସାର ଜ୍ଞାନ ଲୋପ ପାଇଯାଇଛି । ସେ ସମାଧିସ୍ଥ ହୋଇଯାଇଛନ୍ତି । ଅନେକ ସମୟ ଧରି ପ୍ରବଚନ ପାରାୟଣ ବନ୍ଦ ହୋଇ ଖୋଳ କରତାଳ ମାଡ଼ରେ କୀର୍ତ୍ତନ କରାଯାଇଛି । ସେ ସମାଧିରୁ ଉଠିଲେ ପ୍ରବଚନ ପୁଣି ଆରମ୍ଭ ହେବ ବୋଲି ।

ପୂର୍ବ ଲୀଳାମାନଙ୍କରେ ଶ୍ୟାମସୁନ୍ଦର ରୂପ ମାଧୁରୀ ଓ ବାଳଲୀଳା ମାଧୁରୀ ସହିତ ବୟସ୍କା ଗୋପୀମାନଙ୍କ ସହିତ ରାସ କରିଛନ୍ତି ବାଳକ ରୂପରେ ସ୍ତନ୍ୟପାନ କରି । ଏବେ ସେ ସାର୍ବଜନୀନ ରାସ୍ କରିବେ ବେଣୁ ମାଧୁରୀ ପରିବେଷଣ କରି । ଦିବ୍ୟ ମୁରଲୀ ବଜାନ୍ତେ ସମଗ୍ର ବୃନ୍ଦାବନ ଧାମ କୃଷ୍ଣ ତନ୍ମୟ ହୋଇଉଠିଛି । ଜଡ଼ ହେଉଛନ୍ତି ଚେତନ । ଚେତନ ହେଉଛନ୍ତି ଜଡ଼ । ଶାନ୍ତ(ମୁନି ଋଷିଗଣ) ହେଉଛନ୍ତି ବିଚଳିତ । ଅଶାନ୍ତ (ଭୋଗ ମୁଖୀ, ସଂସାରାଭିମୁଖୀ ଜୀବ ହେଉଛନ୍ତି ଶାନ୍ତ (କୃଷ୍ଣ ପ୍ରେମ ଅଭିମୁଖୀ) ।

ଜଣେ ଗୋପୀ ଆଉ ଜଣେ ସଖୀକୁ ପ୍ରଶ୍ନ କରୁଛନ୍ତି, ''ହେ ସଖୀ, ଏ ବଂଶୀ ଜାତିରେ ବଣୁଆ ବାଉଁଶ । ସେ ପୂର୍ବ ଜନ୍ମରେ ଏଭଳି କି ତପସ୍ୟା କରିଥିଲା ? ଫଳରେ କେବଳ ଆମ (ଗୋପୀ) ମାନଙ୍କର ପ୍ରାପ୍ୟ କୃଷ୍ଣ ଅଧର ଅମୃତ ପାନର ସୁଯୋଗ ସେ ପ୍ରାପ୍ତ ହୋଇଛି !!'' ସେହି ବେଣୁର ବାପ-ଦାଦା ବାଉଁଶ ଗଛ ତାଙ୍କ କୁଳ ଧନ୍ୟ ହେଲା ବୋଲି ଭାବନା କରିଛନ୍ତି । କାରଣ ସେମାନଙ୍କ ବଂଶର ଜଣେ କୃଷ୍ଣଙ୍କ ହସ୍ତରେ ବଂଶୀ ହେବା ସୌଭାଗ୍ୟ ପାଇଛି । ସେମାନେ ସବୁ ଆନନ୍ଦ ଅଶ୍ରୁ ବର୍ଷଣ କରୁଛନ୍ତି । ଗୋପୀମାନଙ୍କ ଅଡୁଆ ପ୍ରଶ୍ନର ବଂଶୀ ମଧ୍ୟ ସୁନ୍ଦର ଉତ୍ତର ଦେଉଛି ।

ବଂଶୀ କହୁଛି, ''ବଂଶୀ ହେବା ପୂର୍ବରୁ ମୁଁ କେତେ ଖରା ବର୍ଷା ଶୀତ ସହି ବଣ ଜଙ୍ଗଲରେ ତପସ୍ୟା କରିଛି । ଖଣ୍ଡ ଖଣ୍ଡ ହୋଇ ଧାରୁଆ ଅସ୍ତ୍ରରେ କଟା ଯାଇଛି । ପୁଣି ଅଗ୍ନିରେ ସେକ ଖାଇ ସିଧା ହୋଇଛି । ତାତିଲା ଲୁହାରେ ମୋ ଦେହରେ ସାତ ସାତଟା ଛିଦ୍ର କରାଯାଇଛି । ସେ ସବୁ ମୁଁ ବିନା ପ୍ରତିବାଦରେ ସହିଛି । ମୋ ଭିତରର ସବୁ ଗଣ୍ଠି ଭେଦନ କରାଯାଇଛି । ମୋ ଭିତରଟା ପୁରାପୁରି ଫମ୍ପା । ମୁଁ କିଛି ସାଇତି ରଖିନି ସେଥିରେ । ମୁଁ ନିଜେ କିଛି ସ୍ୱର କରେ ନା । ଭଗବାନ ଯାହା ଚାହାନ୍ତି ମୋତେ କେବଳ ନିମିତ୍ତ କରି ସେ ସବୁ ଲୀଳା କରିଥାନ୍ତି ।'' ଅଧ୍ୟାତ୍ମ ଅର୍ଥରେ ମନୁଷ୍ୟର ଦେହ ଏହି ସାତ ଗଣ୍ଠି, ସାତ ରନ୍ଧ୍ର ଯୁକ୍ତ ବାଉଁଶ ଖଣ୍ଡେ । ସେ ବଂଶୀ ଭଳି ତପସ୍ୟା, ଶରଣାଗତି ମାଧ୍ୟମରେ କୃଷ୍ଣଙ୍କର ଆଦରର ପାତ୍ର ହୋଇଥାଏ ।

ଏହି ସାର୍ବଜନୀନ ରାସ ଲୀଳାରେ ସକଳ ସ୍ଥାବର ଜଙ୍ଗମ ବୃନ୍ଦାବନ ବାସୀ ଧନ୍ୟ ହୋଇଛନ୍ତି । ବଂଶୀ ସ୍ୱନରେ ମୟୂର-ମୟୂରୀ ନୃତ୍ୟ କରୁଛନ୍ତି ବୃନ୍ଦାବନ ବିହାରୀଙ୍କୁ ପ୍ରସନ୍ନ କରିବାକୁ । ବୃନ୍ଦାବନର ସକଳ ପଶୁ ପକ୍ଷୀ ଧନ୍ୟ । ସେମାନେ ଗିରିରାଜ ଗୋବର୍ଦ୍ଧନଙ୍କ ଉପରେ ଥାଇ କୃଷ୍ଣଲୀଳା ଦର୍ଶନର ସୁଯୋଗ ପାଇଛନ୍ତି ।

ପ୍ରଶ୍ନ-୧୦୭: ମହାବୈକୁଣ୍ଠରେ ଶ୍ରୀମନ୍ ନାରାୟଣ ସ୍ୱର୍ଣ୍ଣପାଦୁକା ପିନ୍ଧି ଚାଲନ୍ତି । ଆଜି ସେ ରାଧାକାନ୍ତ ରୂପଧରି ଖାଲି ପାଦରେ ବୃନ୍ଦାବନରେ ଚାଲୁଥିବାରୁ ବୃନ୍ଦାବନ ଧରିତ୍ରୀ ଧନ୍ୟ ହୋଇଛନ୍ତି । ପୁଲକିତ ହୋଇ କୃଷ୍ଣପାଦତଳେ କୋମଳ ଘାସ ଗାଲିଚା, ଫୁଲ ପାଖୁଡ଼ା, ଫୁଟିଲା ପଦ୍ମ ରଖି ଦେଉଛନ୍ତି କୃତଜ୍ଞତା ଜଣାଇବାକୁ । ଅଦୂରରେ କୃଷ୍ଣସାର ମୃଗମାନେ ରାଧା ଶ୍ୟାମଙ୍କୁ ଯୁଗଳ ମୂର୍ତ୍ତି ଦର୍ଶନ କରି ନିଜ ଜୀବନକୁ ଧନ୍ୟ କରୁଛନ୍ତି । ସେମାନଙ୍କର ହାତ ନାହିଁ । ଅନ୍ୟ ଉପାୟ ନ ଦେଖି ସେମାନେ ମାନସିକ ପ୍ରଣାମ ଜଣାଇ ଆନନ୍ଦ ଅଶ୍ରୁଜଳ ଅର୍ପଣ କରୁଛନ୍ତି ଠାକୁରଜୀଙ୍କୁ ।

ଦିବ୍ୟ ବଂଶୀର ସ୍ୱର ସ୍ୱର୍ଗଲୋକ ପହଞ୍ଚିଛି । ଦେବୀ ଦେବତା ଭକ୍ତମାନଙ୍କୁ ଆକର୍ଷଣ କରି ବୃନ୍ଦାବନ ଆଣିଛି । ସେମାନେ ମହାକାଶରେ ରହି ଏ ମନୋହର ଦୃଶ୍ୟ ଦର୍ଶନ କରି ପ୍ରେମ ଦୃଷ୍ଟି ପ୍ରାପ୍ତ ହୋଇଛନ୍ତି । ସ୍ୱଭାବରେ ସେହି ଦେବୀମାନେ କାମୁକିନୀ ଅପ୍‌ସରା ଗୋଷ୍ଠୀର । କାମପୀଡ଼ାରେ ସେମାନଙ୍କର ଅଳଙ୍କାର, ଭୂଷଣ ଅସ୍ତବ୍ୟସ୍ତ ହେଉଛନ୍ତି । ଅଙ୍ଗରୁ କଟୀବସ୍ତ୍ର ଫିଟି ପଡୁଛି । କେଶ ବନ୍ଧନ ଶିଥିଳ ହୋଇ ବେଣୀରେ ଖୋସାରେ ବନ୍ଧା ହୋଇଥିବା ଫୁଲମାଳମାନ ତଳକୁ ଖସି ପଡୁଛନ୍ତି । ଏଭଳି ଦୃଶ୍ୟରେ ଗୋପୀମାନେ ପରସ୍ପରକୁ ଆଶ୍ୱାସନା ଦେଉଛନ୍ତି-ସ୍ୱର୍ଗ ଲଳନାମାନେ ଯେତେବେଳେ କୃଷ୍ଣଙ୍କ ରୂପରେ ବଂଶୀ ସ୍ୱନରେ ମୋହିତ ହୋଇ ପଡୁଛନ୍ତି, ସେତେବେଳେ ଅପାଠୁଆ ବ୍ରଜଗୋପୀକାମାନଙ୍କର ବୁଦ୍ଧିବଣା ହେବା କିବା ଛାର କଥା ! !

ବୃନ୍ଦାବନର ଗାଈ ବାଛୁରୀ ଧନ୍ୟ । କାରଣ ସେମାନେ କର୍ଣ୍ଣରନ୍ଧ୍ରରେ ଦିବ୍ୟ ମୁରଲୀ ଧ୍ୱନି ଶ୍ରବଣ କରି ଖାଇବା ପିଇବା ତୁଚ୍ଛ କରି କୃଷ୍ଣ ଲୀଳା ଦର୍ଶନ କରୁଛନ୍ତି । ହଂସ-ଶୁକ-ବକ-କୋକିଳ ଆଦି ପକ୍ଷୀମାନେ ନିଜ ନିଜର ମଧୁର କାକଳି ବନ୍ଦ କରି ଦିବ୍ୟ ମଧୁର ବଂଶୀ ସ୍ୱନ ଶୁଣି ନିଜକୁ ଭୁଲି ଯାଇଛନ୍ତି । ଧନ୍ୟ ଏ ଯମୁନା ନଦୀ । ସେ ଏକ ଜଳସ୍ରୋତ । ତଳକୁ ବୋହିଯିବା ତାର ଧର୍ମ । ଦିବ୍ୟ ବଂଶୀ ସ୍ୱନରେ ସେ ମଧ କୃଷ୍ଣ ତନ୍ମୟ ହୋଇଯାଇଛି । ସେ ତଳୁ ଉପରକୁ ବୋହିବାକୁ ଚେଷ୍ଟା କରୁଛି । ବକ୍ଷରେ ପଦ୍ମଫୁଲଟିଏ ପାଇଲେ ତରଙ୍ଗ ରୂପକ ହସ୍ତରେ ଧରି ଧାଉଁଛି ଠାକୁରଜୀଙ୍କ ପଦକମଳରେ ଅର୍ପଣ କରିବାକୁ । ବୃନ୍ଦାବନର ହ୍ରଦ ପୁଷ୍କରିଣୀମାନେ ସ୍ଥିର ଜଳ ଧାରଣ କରିଥିଲେ । କିନ୍ତୁ ମାଦକ ଭରା ବଂଶୀ ସ୍ୱନରେ ସେମାନଙ୍କ ବକ୍ଷ ଆନ୍ଦୋଳିତ ହୋଇ ତରଙ୍ଗ ସୃଷ୍ଟି କରିବାରେ ବ୍ୟସ୍ତ ।

ବୃନ୍ଦାବନ ଆକାଶର ଶୁଭ୍ରମେଘମାଳା ଧନ୍ୟ । ସେମାନେ ପ୍ରବଳ ବର୍ଷା କରି ନପାରି ଆଦୌ ଦୁଃଖିତ ନୁହନ୍ତି । ଭଗବାନ ଓ ତାଙ୍କ ପ୍ରିୟ ଭକ୍ତମାନଙ୍କୁ ଛାୟା ଦାନ କରି ସେମାନେ ମଧ ପୁଲକିତ ହେଉଛନ୍ତି । ଶୁକଦେବଜୀ ବର୍ଣ୍ଣନ କରୁଛନ୍ତି ଯେ ବୃନ୍ଦାବନର ବନ୍ୟ ଶବରଣୀମାନେ ମଧ ଅତି ଧନ୍ୟ ବୋଲାଉଛନ୍ତି । ସେମାନଙ୍କର କାମପୀଡ଼ା ଲାଘବ ହେଉଛି । ବୃନ୍ଦାବନର ଘାସ ଫୁଲରେ ଲାଗିଥିବା କୃଷ୍ଣପାଦପଦ୍ମର ରେଣୁକୁ ସେମାନେ ସହର୍ଷ ସାଉଁଟି ନେଉଛନ୍ତି । ସ୍ୱ ସ୍ତନ ଓ ମୁଖ ମଣ୍ଡଳରେ ସେ ସବୁକୁ ପ୍ରେମ ପୂର୍ବକ ଘର୍ଷଣ କରି ଆନନ୍ଦିତ ହେଉଛନ୍ତି ।

ପୁରାଣମାନେ ଘୋଷଣା କରନ୍ତି ଭାରତ ଭୂମିର ଗିରି, ପର୍ବତଙ୍କର ମଧ

ଆତ୍ମା ବିଦ୍ୟମାନ । ବିନ୍ଧ୍ୟ ପର୍ବତ ଅନେକ ବର୍ଷ ତପସ୍ୟା କରି ପୁତ୍ରଟିଏ ପାଇଥିଲେ । ନାମ ତାଙ୍କର ଗିରିରାଜ ଗୋବର୍ଦ୍ଧନ । କାଶୀର ଜଣେ ତେଜସ୍ୱୀ ବ୍ରାହ୍ମଣ ତପସ୍ୟା କରିବା ଲକ୍ଷ୍ୟରେ ବିନ୍ଧ୍ୟାଚଳଙ୍କ ଠାରୁ ଏହାକୁ ମାଗି କରି ଆଣୁଥିଲେ କାଶୀ । ବାଟରେ ପଡ଼ିଲା ବୃନ୍ଦାବନ ଧାମ । ଗୋବର୍ଦ୍ଧନଙ୍କର କୃଷ୍ଣଲୀଳାରେ ଭାଗ ନେବାକୁ ଯୋଗମାୟା ସ୍ଥିର କରିଥିଲେ । ଗିରିରାଜ ସୁଯୋଗ ଖୋଜୁଥିଲେ । ସେ ନିଜ ତପ ଶକ୍ତି ପ୍ରୟୋଗ କରି ଅତ୍ୟନ୍ତ ଗରୁ ହୋଇଗଲେ । ବ୍ରାହ୍ମଣ ଅନ୍ୟ ଉପାୟ ନ ଦେଖି ସେହିଠାରେ ଗୋବର୍ଦ୍ଧନଙ୍କୁ ସ୍ଥାପନ କରିଦେଲେ । ବୃନ୍ଦାବନ ଲୀଳାରେ ଏ ଗିରିରାଜ କି ସେବା କଲେ କୃଷ୍ଣ ଓ କୃଷ୍ଣଭକ୍ତ ମାନଙ୍କର ?

**ହନ୍ତ-ଅୟଂ ଅଦ୍ରିଃ ଅବଲା ହିରଦାସ ବର୍ଯ୍ୟୋ**
**ଯତ୍ ରାମକୃଷ୍ଣ ଚରଣ ସ୍ପରଶ ପ୍ରମୋଦଃ ।**
**ମାନଂ ତନୋତି ସହ ଗୋଗଣୟୋଃ ତୟୋଃ ଯତ୍**
**ପାନୀୟ ସୂୟବସ କନ୍ଦର କନ୍ଦମୂଳୈଃ ॥୧୮॥**

ଉ. ଦେବର୍ଷି ନାରଦ ସନକାଦି ମୁନିଗଣ ସିନା ହରିଭକ୍ତ କିନ୍ତୁ ଗିରିରାଜ ଗୋବର୍ଦ୍ଧନ ଶ୍ରେଷ୍ଠ ହରିଭକ୍ତ (ହରିଦାସ ବର୍ଯ୍ୟୋ) ହୋଇପାରିଛି କୃଷ୍ଣଲୀଳାରେ । ସେ ଅନେକ ଦିନ ଧରି କୃଷ୍ଣ କେଶବଙ୍କ ସହିତ ଅସଂଖ୍ୟ ବୈଷ୍ଣବ ମାନଙ୍କ ଚରଣକମଳର ଧୂଳି ପ୍ରାପ୍ତ ହୋଇଛି । କେତେବଡ଼ ସମ୍ମାନର ଅଧିକାରୀ ହୋଇଛି (ମାନଂ ତେନୋତି) । ଗର୍ବରେ ତା ବକ୍ଷ କୁଣ୍ଢେମୋଟ ହୋଇଥିବ । ଗୋ ଗୋଷ୍ଠ, ଗୋପାଳଙ୍କ ଭଳି ଅସଂଖ୍ୟ ବୈଷ୍ଣବଙ୍କୁ ପିଇବାକୁ ଜଳ ଦାନ କରିଛି ନିଜ ଝରଣା ମାନଙ୍କରୁ । ରହିବାକୁ ସ୍ଥାନ ଦେଇଛି ନିଜର ଗିରି ଗୁହାରେ ଖରା ବର୍ଷା ବେଳେ । ଖାଇବାକୁ ଫଳମୂଳ ଯୋଗାଇ ଦେଇଛି ସେମାନଙ୍କୁ ଅକାତରରେ । ତା ଦେହରେ ଜନ୍ମିଥିବା ବୃକ୍ଷଲତା, ସେଥିରେ ରହୁଥିବା ପଶୁପକ୍ଷୀ ଆଦି ସହିତ ଗିରିରାଜଙ୍କ ପାଷାଣମାନେ ସମସ୍ତେ ହରିଭକ୍ତ ସମ୍ମାନ ସ୍ଥାନୀୟ ବୈଷ୍ଣବ । ସେମାନଙ୍କୁ ଧରି ଚିରକାଳ ଲାଗି ଗୋବର୍ଦ୍ଧନଜୀ ଧନ୍ୟ ଅତି ଧନ୍ୟ ହୋଇଯାଇଛନ୍ତି ।

ପ୍ରଶ୍ନ-୧୦୮: ଦିବ୍ୟ ବୃନ୍ଦାବନରେ ଦିବ୍ୟ ପୁରୁଷଙ୍କ ଦ୍ୱାରା ଦିବ୍ୟ ମୁରଲୀ ବାଜନ୍ତେ କୃଷ୍ଣପାଦ ତଳର ପାଷାଣ ତରଳି ଗଲା । ଲୀଳା ସ୍ଥଳରେ ଶୁଷ୍କ ବୃକ୍ଷ କଅଁଳି ଗଲା । ଯମୁନା ନଦୀ ଉଜାଣି କହିଲା । ଚନ୍ଦ୍ର ସୂର୍ଯ୍ୟଙ୍କ ଗତି ମଧ୍ୟ ପ୍ରଭାବିତ ହେଲା ।

ଏପରି ସ୍ଥଳେ ଏକାନ୍ତ କୃଷ୍ଣଭକ୍ତ ଗୋପୀ ଗୋପାଳମାନଙ୍କ ଅବସ୍ଥା କ'ଣ ହୋଇଥିବ ?

**ଏବଂବିଧା ଭଗବତୋ ଯା ବୃନ୍ଦାବନ ଚାରିଣଃ ।**
**ବର୍ଣ୍ଣୟନ୍ତ୍ୟୋ ମିଥୋ ଗୋପ୍ୟଃ କ୍ରୀଡ଼ାଃ ତନ୍ମୟତାଂ ଯଯୁଃ ॥୨୦॥**

ଉ. ବୃନ୍ଦାବନର କୃଷ୍ଣଭକ୍ତମାନେ ଥିଲେ ଅନେକ ପ୍ରକାରର । କିଛି ଜଳ, ବାୟୁ, ଧୂଳି, ପର୍ବତ ଆଦି ଜଡ଼ । କିଛି ବୃକ୍ଷ, ଲତା, ଗୁଳ୍ମ ଆଦି ଚେତନ କିନ୍ତୁ ଅଚର । ଅନ୍ୟମାନେ ପଶୁ, ପକ୍ଷୀ, ମନୁଷ୍ୟ, ଅସୁର, ଦେବତା ଆଦି ଜଙ୍ଗମ ସ୍ଥାନୀୟ । ଗୋପୀଗୋପାଳମାନଙ୍କ ଅବସ୍ଥା କିନ୍ତୁ ସ୍ୱତନ୍ତ୍ର । ସେମାନେ ମୁରଲୀ ଧ୍ୱନି ଶୁଣି ତାଙ୍କ ଲୀଳା, କୃପା କଥା ଆଲୋଚନା କରି କରି ସମସ୍ତେ କୃଷ୍ଣମୟ ହୋଇଗଲେ ।

ଏକ ବାକ୍ୟରେ କହିଲେ, ସାର୍ବଜନୀନ ରାସରେ ଅଂଶଗ୍ରହଣ କରିଥିବା ସେତେବେଳେର ସମସ୍ତ ଚର-ଅଚର, ଚେତନ-ଅଚେତନ ବୃନ୍ଦାବନବାସୀ ମହାସୌଭାଗ୍ୟବାନ । ଜନ୍ମ ଜନ୍ମାନ୍ତର ତପସ୍ୟା ସେମାନଙ୍କର ଦିବ୍ୟ ଫଳ ଫଳାଇଲା । ସେମାନଙ୍କର ସଂସାର ଭୋଗକାମନା ମୂଳକ ବହିଃମୁଖୀ ମନ ଅନ୍ତର୍ମୁଖୀ ହୋଇପାରିଲା । ଏହି ଅଲୌକିକ ମୋହନ ବଂଶୀ ସ୍ୱନ ଯୋଗୁ ।

ବୃନ୍ଦାବନ ବଂଶୀବଟ ନିକଟରେ ଗୋଟିଏ ଓ ଅନ୍ୟଟି କିଛି ଦୂରରେ ଗୋପୀଶ୍ୱର ମନ୍ଦିର ନିକଟରେ ଏହି ବଂଶୀ ବଟ ବୃକ୍ଷ ଦୁଇଟି ଏବେ ମଧ୍ୟ ବିଦ୍ୟମାନ ଯେଉଁଠାରେ ଭଗବାନ ପ୍ରଥମେ ବଂଶୀବାଦନ କରିଥିଲେ ସାର୍ବଜନୀନ ରାସ ବେଳେ ଓ ମହାରାସବେଳେ । ବୃନ୍ଦାବନବାସୀ ଓ ବୃନ୍ଦାବନ ଯାତ୍ରୀମାନେ ଆଜି ମଧ୍ୟ ସେମାନଙ୍କୁ ସ୍ୱଭକ୍ତିକ ପ୍ରଣାମ କରନ୍ତି ।

**ଇତି ଶ୍ରୀମଦ୍ଭାଗବତେ ମହାମୁନି କୃତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଦଶମ ସ୍କନ୍ଧେ ଏକବିଂଶୋଽଧ୍ୟାୟଃ ।**

**।।ହରିଃ ଓଁ ତତ୍‌ସତ୍ ।।**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ**

## ୨୦ଶ ନକ୍ଷତ୍ର-ପୂର୍ବ ଆଷାଢ଼ା

## ଅଥ ୨୨ଶ ଅଧ୍ୟାୟଃ

### (ଅବିବାହିତା ଗୋପୀମାନଙ୍କ ସହିତ ରାସ ବା ଚୀର ହରଣ)

ପ୍ରଶ୍ନ-୧ : ଗ୍ରୀଷ୍ମ ଓ ବର୍ଷା ଋତୁଙ୍କ ପରେ କୃଷ୍ଣ ଲୀଳାରେ ସେବା ପାଇଁ ଶୁଭ ଆଗମନ କରିଛନ୍ତି ହେମନ୍ତ ଋତୁ । ଭଗବାନଙ୍କ ମଧୁର ବେଣୁ ସ୍ୱନରେ ଅଚେତନ ଜଡ଼ ବସ୍ତୁମାନେ ଯେତେବେଳେ ଅଥୟ ହୋଇ ପଡୁଥିଲେ ସେତେବେଳେ ଜନ୍ମ-ଜନ୍ମାନ୍ତରର ଶ୍ରେଷ୍ଠ କୃଷ୍ଣଭକ୍ତ ଗୋପୀମାନଙ୍କର କିଭଳି ଅବସ୍ଥା ହୋଇଥିଲା ?

**ଶ୍ରୀ ଶୁକ ଉବାଚ**

**ହେମନ୍ତେ ପ୍ରଥମ ମାସି ନନ୍ଦବ୍ରଜ କୁମାରିକାଃ ।**
**ଚେରୁଃ ହବିଷ୍ୟଂ ଭୁଞ୍ଜାନାଃ କାତ୍ୟାୟନୀ-ଅର୍ଚ୍ଚନ ବ୍ରତମ୍ ॥୧॥**

ଉ. କି ବାଳିକା, କିଶୋରୀ, ଯୁବତୀ ଓ ବୃଦ୍ଧା ସକଳ ଗୋପୀଙ୍କ ମନ ଉତ୍ତାଳ ତରଙ୍ଗରେ ତନ୍ମୟ ହୋଇପଡ଼ିଥିଲା । ସବୁଠୁ ବେଶୀ ତନ୍ମୟ ହୋଇଥିଲେ ଅବିବାହିତା କିଶୋରୀ ଯୁବତୀ ବ୍ରଜଗୋପିକାମାନେ ।

ମାର୍ଗଶୀର ଓ ପୌଷ ଦୁଇମାସ ହେମନ୍ତ ଋତୁ ଅଟେ । ବୃନ୍ଦାବନରେ ମାର୍ଗଶୀର ପ୍ରବେଶ କରୁ କରୁ ସେମାନେ ସାଧାରଣ ଭୋଜନ ଛାଡ଼ିଦେଲେ । ହବିଷ୍ୟାନ୍ନ ଗ୍ରହଣ କଲେ । କାତ୍ୟାୟନୀ ପୂଜନ କଲେ ବିଧିବଦ୍ଧ ବ୍ରତ ସଂକଳ୍ପ କରି(ଚେରୁଃ) ।

ପ୍ରଶ୍ନ-୨: ସାରା ମାର୍ଗଶୀର ମାସ ୩୦ଦିନ ଯାକ ଏ ବ୍ରତ କରାଯାଏ । ସୂର୍ଯ୍ୟୋଦୟ ପୂର୍ବରୁ କାଳିନ୍ଦୀ ଜଳରେ ଗୋପବାଳିକାମାନେ ସ୍ନାନ କରନ୍ତି । ଯମୁନା ନଦୀ କୂଳରେ ବାଲିରେ ଦେବୀ ମୂର୍ତ୍ତି ଗଠନ କରନ୍ତି । ଗନ୍ଧ ପୁଷ୍ପମାଳ, ଧୂପ, ଦୀପ, ପୂଜାଦ୍ରବ୍ୟ (ବଳି) ଆଦି ଶ୍ରଦ୍ଧାର ସହିତ ସମର୍ପଣ କରନ୍ତି ମା'କାତ୍ୟାୟନୀଙ୍କୁ ।

ବୃନ୍ଦାବନରେ ସେତେବେଳେ ହାଡ଼ ଭଙ୍ଗା ଶୀତ । ଏତେ କଠିନ ବ୍ରତ କେଉଁ ଅଲଭ୍ୟ ଅପ୍ରାପ୍ୟ ବସ୍ତୁ ଲାଭ ବା ପ୍ରାପ୍ତି ଇଚ୍ଛାରେ ଗୋପୀମାନେ କରୁଥିଲେ ?

କାତ୍ୟାୟନି ମହାମାୟେ ମହାଯୋଗିନୀ-ଅଧୀଶ୍ୱରି ।
ନନ୍ଦଗୋପ ସୁତଂ ଦେବି ପତିଂ ମେ କୁରୁ ତେ ନମଃ ।
ଇତି ମନ୍ତ୍ରଂ ଜପନ୍ତ୍ୟଃ ତାଃ ପୂଜାଂ ଚକ୍ରୁଃ କୁମାରିକାଃ ।।୪।।

ଉ. ବ୍ରଜାଙ୍ଗନାମାନେ ପୂଜା କରୁଥିବା କାତ୍ୟାୟନୀ ଦେବୀ ଦୁର୍ଗା ରଜୋଗୁଣୀ ମହାମାୟା ନୁହନ୍ତି । ଶଙ୍କର ଭଗବାନଙ୍କ ପତ୍ନୀ ନୁହନ୍ତି । ସେ ଶୁଦ୍ଧ ସତ୍ତ୍ୱଗୁଣୀ ବା ନିର୍ଗୁଣୀ ମହାଯୋଗିନୀ ବା ଯୋଗମାୟା (ଲୀଳା ଦେବୀ) ବା ଭଦ୍ରକାଳୀ । ସେ ପରମ ଈଶ୍ୱର କୃଷ୍ଣଙ୍କର ମଧ୍ୟ ଈଶ୍ୱରୀ ବା ଅଧୀଶ୍ୱରୀ । ଶ୍ଳୋକର ଉପର ଦୁଇ ଧାଡ଼ିର ମନ୍ତ୍ରକୁ ସେମାନେ ଶୟନେ, ସ୍ୱପନେ, ଜାଗରଣେ ଜପ କରୁଥାନ୍ତି ଓ ଦେବୀଙ୍କୁ ପୂଜା କରୁଥାନ୍ତି ନନ୍ଦ ଗୋପ କୁମାର ଭଗବାନ କୃଷ୍ଣଙ୍କୁ ପତି ହିସାବରେ ଅନ୍ତଃକରଣରେ ତାଙ୍କର ଦର୍ଶନ ଲାଳସାରେ ।

ପ୍ରଶ୍ନ-୩: ଗୋପାଙ୍ଗନାମାନେ ବ୍ରାହ୍ମ ମୁହୂର୍ତ୍ତରେ ଉଠନ୍ତି । ପରସ୍ପର ନାମ ଗୋତ୍ରରେ ଡ଼କା ଡ଼କି ହୋଇ, ହାତ ଧରାଧରି ହୋଇ ପ୍ରତିଦିନ ଯମୁନା ସ୍ନାନକୁ ଯାଆନ୍ତି ।

ଦିନକର କଥା । ଭଗବାନ ଲକ୍ଷ୍ୟକଲେ ସେମାନେ ପିନ୍ଧା ବସ୍ତ୍ରକୁ ନଦୀକୂଳରେ ପିଙ୍ଗି ଦେଇ ନଗ୍ନ ସ୍ନାନ କରୁଛନ୍ତି । ମିଳିମିଶି ଆନନ୍ଦରେ ବ୍ରତ ପାଳନ ଅବସରରେ କୃଷ୍ଣଲୀଳା ଗାନ କରୁଛନ୍ତି । ସେ ତ ସର୍ବାନ୍ତର୍ଯ୍ୟାମୀ । ଜାଣି ପାରିଲେ ସେମାନଙ୍କର ଆନନ୍ଦ, ବ୍ରତ, ସ୍ନାନ ଆଦିର ଉଦ୍ଦେଶ୍ୟ । ଗୋପୀଗଣ ସମସ୍ତେ ଯୋଗିନୀ । ଶ୍ୟାମସୁନ୍ଦର ଯୋଗେଶ୍ୱରେଶ୍ୱର । ଯୋଗର ଫଳ ପ୍ରଦାନକାରୀ । ଫଳ ଦେବା ପୂର୍ବରୁ ଯୋଗ ସାଧନାର ଦୋଷ ତ୍ରୁଟି ସଜାଡ଼ିବା ମଧ୍ୟ ତାଙ୍କର ଦାୟିତ୍ୱ । ଦଳେ ଗୋପାଳବାଳକଙ୍କୁ ସାଙ୍ଗରେ ଧରି ସୂର୍ଯ୍ୟ ଉଦୟ ପୂର୍ବରୁ ସେ ଘଟଣାସ୍ଥଳରେ ପହଞ୍ଚିଗଲେ । ନିଜେ ବୃକ୍ଷ ଉପରେ ଏକ ଡ଼ାଳରେ ବସିଗଲେ । ପବନ ଦେବତାଙ୍କୁ ଆଦେଶ ଦେଇ ବସ୍ତ୍ରଯାକ ଉଡ଼ାଇ ଆଣି କଦମ୍ବ ଡ଼ାଳମାନଙ୍କରେ ସଜାଇ ରଖିନେଲେ ।

ଗୋପୀମାନେ ସ୍ନାନସାରି ଉପରକୁ ଆସିବେ କ'ଣ ଦେଖନ୍ତି ଯଥା ସ୍ଥାନରେ ବସ୍ତ୍ରଗୁଡ଼ିକ ନାହିଁ । ସବୁ ବସ୍ତ୍ର ଉଭାନ୍ । ଦେଖିଲେ ନିକଟସ୍ଥ କଦମ୍ବ ଶାଖାରେ ବସି ରାସେଶ୍ୱର କିଶୋର କୃଷ୍ଣ ମଧୁରସ୍ୱରରେ ବଂଶୀ ବାଦନ କରୁଛନ୍ତି । ବସ୍ତ୍ର ସବୁ କଦମ୍ବ ଶାଖାରେ ଝୁଲୁଛନ୍ତି । ଗୋପୀମାନେ ଅତ୍ୟନ୍ତ ଲାଜରା ହେଲେ । ବଂଶୀଧାରୀ ଶ୍ରୀକୃଷ୍ଣ ସେଭଳି ଅଡୁଆ ପରିସ୍ଥିତିରେ କ'ଣ ନୀରବ ଦ୍ରଷ୍ଟା ସାଜିବାକୁ ପସନ୍ଦ କଲେ ?

**ଅତ୍ର-ଆଗତ୍ୟ-ଅବଳାଃ କାମଂ ସ୍ୱଂ ସ୍ୱଂ ବାସଃ ପ୍ରଗୃହ୍ୟତାମ୍ ।**
**ସତ୍ୟଂ ବ୍ରୁବାଣି ନୋ ନର୍ମ ଯତ୍ ଯୂୟଂ ବ୍ରତ କର୍ଶିତାଃ ॥୧୦॥**

ଉ. ସେ ତ ବଡ଼ ନଟଖଟ ନାଗର । କେବେବେଳେ ମହା ମହା ଯୋଦ୍ଧାମାନଙ୍କୁ ପରସ୍ପର ମଧ୍ୟରେ ଲଢ଼ାଇ ମହାଭାରତର ମହାସମର କରାନ୍ତି । ପୁଣି କେତେବେଳେ ସନ୍ନ୍ୟାସିନୀ ଗୋପୀମାନଙ୍କ ସହିତ ନାଚି କୁଦି ଡ଼େଇଁ ହାସ୍ୟ ପରିହାସ୍ୟରେ ମହାରାସ କରନ୍ତି ।

ଭଗବାନ କହିଲେ, "ହେ, ଗୋପୀଗଣ, ମାସ ସାରା ଏ କଠିନ କାତ୍ୟାୟନୀ ବ୍ରତ କରି ତୁମେମାନେ ବହୁ କଷ୍ଟ ପାଇଲଣି । ତୁମ ମନସ୍କାମ ପୂରଣ ନିଶ୍ଚୟ ହେବ । ବ୍ରତ ଫଳ ପାଇବ ସମସ୍ତେ । ମୁଁ ସତ୍ୟବଚନ କହୁଛି । ପରିହାସ (ନର୍ମ) କରୁନାହିଁ । ତୁମମାନଙ୍କ ବସ୍ତ୍ରକୁ ପବନ ଉଡ଼ାଇ ନେଇ ଯାଇଥାନ୍ତା । ତୁମ ଭଲ ପାଇଁ ମୁଁ ସେ ସବୁକୁ ଏଠାକୁ ଆଣି ସଯତ୍ନରେ ସାଇତି ରଖିଛି । ନିଜେ ନିଜେ ଏକତ୍ର କିମ୍ବା ଜଣେ ଜଣେ ଆସି ସେ ସବୁ ନେଇ ଯାଅ । ଗୋବିନ୍ଦ ସେତେବେଳକୁ ସେମାନଙ୍କ ବସ୍ତ୍ର ହରଣ କରିବା ସହିତ ଚିତ୍ତ ହରଣ ମଧ୍ୟ କରିସାରିଛନ୍ତି ।

ଗୋପାଙ୍ଗନାମାନେ ବଡ଼ ଅଡୁଆରେ ପଡ଼ିଲେ । ଲାଜରେ ଗୋଟାସୁଦ୍ଧା ବୁଡ଼ିଗଲେ । ବିନା ବସ୍ତ୍ରରେ କିଭଳି ଆସିବେ ପ୍ରିୟତମଙ୍କ ପାଖକୁ । ହାତଯୋଡ଼ି କାକୁତି ମିନତି କଲେ ବସ୍ତ୍ରଟିମାନ ପାଇଁ । ସେମାନେ ଗୋବିନ୍ଦଙ୍କୁ ଧମକାଇଲେ ମଧ୍ୟ । ଏଭଳି ଅଧର୍ମ ଅନ୍ୟାୟ କର୍ମ ଲାଗି ରାଜା ନନ୍ଦକୁ କହିବାକୁ ବାଧ୍ୟ ହେବେ । ଏ କଥା ଶୁଣି ଭଗବାନ ସ୍ମିତ ହାସ୍ୟ କରି କହିଲେ, "ତୁମେମାନେ ମୋତେ ପାଇବା ପାଇଁ ବ୍ରତ କରୁଛ । ପୁଣି ପରଦା ବି କରୁଛ ।!।" ବ୍ରଜାଙ୍ଗନାମାନେ ମର୍ମ ବୁଝିଲେ କୃଷ୍ଣ କଥାର । ଏକ ହସ୍ତରେ ନିଜ ନିଜର ଗୋପନୀୟ ଅଙ୍ଗ ଢ଼ାଙ୍କି ଅନ୍ୟ ହସ୍ତରେ ପ୍ରଣାମ ଜଣାଇ ବସ୍ତ୍ର ପାଇବା ପାଇଁ ଧାଡ଼ିରେ ଠିଆ ହୋଇଗଲେ । ଶ୍ୟାମ ସୁନ୍ଦର କ୍ଷଣକେ ବୁଝିଗଲେ ସେମାନଙ୍କ ସମର୍ପଣ ଭାବ । ସଙ୍ଗେ ସଙ୍ଗେ ଫେରାଇଦେଲେ ସମସ୍ତଙ୍କର ବସ୍ତ୍ର । ସାଥେ ସାଥେ ସତର୍କ କରାଇଦେଲେ ଯେ ବରୁଣ ଦେବତାଙ୍କୁ ସ୍ମରଣ ନକରି ଜଳରେ ସ୍ନାନ କରିବା ଓ ପୂର୍ଣ୍ଣ ନଗ୍ନ ଅବସ୍ଥାରେ ସ୍ନାନ କରିବା ଉଭୟ କଥା ଅପରାଧ ଅଟେ । ଯାହାର ଏଭଳି ପ୍ରାୟଶ୍ଚିତ ଲୋଡ଼ା । ଗୋପରମଣୀମାନେ କାଳ ବିଳମ୍ବ ନକରି ବୃନ୍ଦାବନ ବିହାରୀଙ୍କୁ ଯୋଡ଼ ହସ୍ତରେ ବିନମ୍ର ନମସ୍କାର କଲେ । ସଂସାରକୁ ବୁଝାଇ ଦେଲେ ଯାହାର ମନରେ ବାସନା ନାହିଁ ତାର ଦେହରେ ବସନର କି ଦରକାର ।!।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଏ ବିଚିତ୍ର ଲୀଳାରେ ଗୋପାଙ୍ଗନାମାନେ ଠକିଗଲେ, ଲାଜରେ ସଢ଼ିଗଲେ, ଆଚରଣ ଯୋଗୁ ନିନ୍ଦିତ ହେଲେ, କାଠ କଣ୍ଢେଇ ଭଳି ନଚାଇଲେ, ଦର୍ଶକମାନଙ୍କ ଦ୍ୱାରା ହସରେ ଉଡ଼େଇ ଦିଆଯାଇଥିଲେ ମଧ୍ୟ ସେମାନେ ଆଦୌ କୃଷ୍ଣଙ୍କଠାରେ ଦୋଷ ଦେଖୁନଥିଲେ । ବରଂ ତାଙ୍କୁ ପ୍ରସନ୍ନ କରାଇପାରିଥିବାରୁ ହର୍ଷିତ ହେଲେ ।

ପ୍ରଶ୍ନ-୪: ବସ୍ତ୍ର ପିନ୍ଧିସାରି ଗୋପାଙ୍ଗନାମାନେ ଦୌଡ଼ି ପଳାଇ ନାହାନ୍ତି । ବରଂ ଶାନ୍ତଭାବରେ ନିକଟରେ ଦଣ୍ଡାୟମାନ ହୋଇ ଭଗବାନଙ୍କୁ କୃପାପ୍ରାପ୍ତି ପାଇଁ ଚାହିଁ ରହିଛନ୍ତି । ଅତଏବ ଭଗବାନ ସେମାନଙ୍କୁ ତତ୍‌କାଳ ପ୍ରତିଶ୍ରୁତି ଦେଇ କହିଛନ୍ତି, ''ତୁମେମାନେ ନିଶ୍ଚୟ ମୋତେ ପତି ରୂପେ ପ୍ରାପ୍ତ ହେବ ।'' ଜ୍ଞାନୀଏ ପ୍ରଶ୍ନ କରିବେ ଭଗବାନ ଜାଣିଥିଲେ ସେ ବୃନ୍ଦାବନ କିମ୍ବା ମଥୁରାରେ ଆଦୌ ଏହି ସବୁ ଗୋପୀଙ୍କୁ ବିବାହ କରିବେ ନାହିଁ । କରିବେ କେବଳ ଦ୍ୱାରକାରେ । ସଂଖ୍ୟା ଆଠ ହେଉ କି ୧୬,୧୦୮ ଯାହା ବା ହେଉ । ମହାତ୍ମାମାନେ ଉତ୍ତରରେ କହନ୍ତି-ପତି ଶବ୍ଦର ଅସଲି ଅର୍ଥ ପାତି (ରକ୍ଷା କରୋତି) ଇତି ପତି । ପାପ କରିବାରୁ, ପତନରୁ, ଦୁଃଖ-ଶୋକ-ମୋହ-ଅହଂକାର, ତ୍ରିତାପରୁ ଓ ମୃତ୍ୟୁରୁ ରକ୍ଷା କରିବା ଲୋକ ହିଁ ଜଣକର ପତି ହୋଇପାରେ । ପଗଡ଼ି ବାନ୍ଧି, ବେଦୀରେ ବସି ଜଣେ ନାରୀର ହାତକୁ ନିଜ ହାତରେ ବାନ୍ଧିବା ଲୋକ କେବେ କାହାର ପତି ହୋଇଯାଏନା । ଭକ୍ତିମାର୍ଗର ଏହି କଷଟି ପଥରରେ ମାପିଲେ ବୃକ୍ଷ, ଲତା, ପଶୁ, ପକ୍ଷୀ, ଦୈତ୍ୟ, ଦାନବ, ମନୁଷ୍ୟ ରୂପଧାରୀ ମୁନି-ଋଷି, ପୁରୁଷ-ସ୍ତ୍ରୀ, ଦେବତା ରୂପ ଧାରୀ ଦେବୀ-ଦେବତାଙ୍କ ସହିତ ବ୍ରହ୍ମା-ଶଙ୍କରଙ୍କର ମଧ୍ୟ ଶ୍ରୀକୃଷ୍ଣ ହିଁ ପତି ଅଟନ୍ତି । ସଂସାରରେ ଦେଖାଯାଉଥିବା ପତି-ପତ୍ନୀ ସମ୍ବନ୍ଧ କେବଳ ଏକ ଅସ୍ଥାୟୀ ଅଭିନୟ । ସେଇ ଅସଲ ପତିଙ୍କୁ ପ୍ରାପ୍ତ ହେବା ଲାଗି ସଂସାରରେ ଚାଲେ ଆମର ପ୍ରଜାପତି ସମ୍ବନ୍ଧୀୟ ବିବାହ ନାଟକ ।

ନାରୀ ମାତ୍ରେ ଜଣେ ପତି କାମନା କରେ । ସେ ଦୈତ୍ୟ, ଦାନବ, ମାନବ, ପଶୁ, ପକ୍ଷୀ ବୃକ୍ଷ ଯାହା ହେଉ ନା କାହିଁକି । ସେପରି ସ୍ଥଳେ ଗୋପୀମାନେ ବ୍ରଜ ଗୋପାଳମାନଙ୍କ ବଦଳରେ ଶ୍ରୀକୃଷ୍ଣଙ୍କୁ କାହିଁକି ପତି ରୂପେ ପ୍ରାପ୍ତିର ଲକ୍ଷ୍ୟ ରଖିଲେ ?

**ଶ୍ରୀ ଭଗବାନ ଉବାଚ**

**ନ ମୟି-ଆବେଶିତ ଧିୟାଂ କାମଃ କାମାୟ କଳ୍ପତେ ।**
**ଭର୍ଜିତା କ୍ୱଥିତା ଧାନାଃ ପ୍ରାୟୋ ବୀଜାୟ ନ-ଇଷ୍ୟତେ ॥୨୬॥**

ଉ. ସଂସାରୀ ପତି ବରଣ କଲେ ନାରୀର ସଂସାର କାମନା ତୃପ୍ତି ହୁଏନା ।

ବରଂ ଅଗ୍ନିରେ ଘୃତ ଆହୁତି ଦେବା ଭଳି ତାହା ଅଧିକରୁ ଅଧିକ ବଢ଼ିଚାଲେ । କିନ୍ତୁ କୃଷ୍ଣ ଈଶ୍ୱର ପରମେଶ୍ୱର । ପତିଙ୍କର ପତି ପରମ ପତି । ତାଙ୍କୁ ନିଜର ମନ, ବୁଦ୍ଧି, ଚିତ୍ତ(ଆବେଶିତ ଧିୟା) ଦେଇ ତାଙ୍କ ଶରଣ ପଶିଲେ ବ୍ରହ୍ମା ଶଙ୍କର, ଇନ୍ଦ୍ର, ଚନ୍ଦ୍ର ଆଦିଙ୍କର ମଧ କାମନା ସଂପୂର୍ଣ୍ଣ ପୂରଣ ହୋଇଯାଏ । ଆଉ ଭୌତିକ ସୁଖ ଆକର୍ଷଣରେ ମନ, ବୁଦ୍ଧି ଚିତ୍ତ ଲାଗେନା । ରାମାୟଣ, ମହାଭାରତ, ଭାଗବତ ଆଦି ସକଳ ପୁରାଣ ଶାସ୍ତ୍ର ଏ କଥାର ସାକ୍ଷୀ । କାରଣ ଧାନକୁ ତେଲ କଡ଼େଇରେ ଭାଜିଦେଲେ (ଭର୍ଜିତା), ତତଲା ପାଣିରେ ଶିଝେଇଦେଲେ (କ୍ୱଥିତା) ସେ ଧାନ ଆଉ ବୀଜ ହୋଇ ରହେନା । ଅଙ୍କୁର ଉଦ୍‌ଗମ ଶକ୍ତି ହରାଏ ସବୁଦିନ ଲାଗି । ସେଇ ତ କୃଷ୍ଣପ୍ରେମର ବାହାଦୂରୀ !!! ଜୀବ ଥରେ ନିଜକୁ କୃଷ୍ଣଙ୍କ ପତ୍ନୀ ବୋଲି ମାନିନେଲେ ପରେ ବିବାହ କରିଥିବା ପତିଙ୍କୁ ଦେହ ସିନା ଦିଏ ମନ କିନ୍ତୁ ଦେଇପାରେ ନାହିଁ ।

ଅକାମୋ-ସର୍ବକାମୋ-ମୋକ୍ଷକାମୋ ସମସ୍ତଙ୍କ ଲାଗି ଏହି କୃଷ୍ଣଭକ୍ତିର ରାଜ ରାସ୍ତା ଉନ୍ମୁକ୍ତ । କାରଣ ଜୀବର ଲକ୍ଷ୍ୟ ଧର୍ମ-ଅର୍ଥ-କାମ-ମୋକ୍ଷ ଅବଶ୍ୟ । ତେବେ ଚରମ ଲକ୍ଷ୍ୟ କେବଳ ଗୋଟିଏ କୃଷ୍ଣକାମ ହେବା । କୃଷ୍ଣ ପ୍ରେମିକା ହେବା ।

ପ୍ରଶ୍ନ-୫: ବାସ୍ତବରେ ଏମାନେ ଗୋଲୋକରୁ ଆନୀତ ନିତ୍ୟ ସିଦ୍ଧ କୃଷ୍ଣପାର୍ଷଦ ଗଣ, ସାମବେଦଙ୍କର ମୂର୍ତ୍ତିମାନ ମନ୍ତ୍ର ସମୂହ, ଜନକପୁର-ଅଯୋଧ୍ୟା ନଗରୀର ଶ୍ରୀରାମଙ୍କ ରୂପରେ ମୋହିତ ହୋଇଥିବା ନାରୀ ଭକ୍ତଗଣ ଓ ଦଣ୍ଡକାରଣ୍ୟବାସୀ ସିଦ୍ଧ ତପସ୍ୱୀଗଣଙ୍କ ବ୍ୟତୀତ ଅନ୍ୟ କେହି ସାମାନ୍ୟ ଜୀବ ନୁହନ୍ତି । ଆଗକୁ ମହାରାସ ଆସୁଛି । ସେଥିପାଇଁ ଅଧିକାରୀ ନିର୍ଣ୍ଣୟ କରିବାକୁ ଭଗବାନ ସେମାନଙ୍କୁ ଚିର ହରଣ ଲୀଳାରେ ଶେଷ ପରୀକ୍ଷା କରିଛନ୍ତି । ଦେହାତ୍ମ୍ୟ ଭାବରୁ ଅବିବାହିତ ଗୋପୀମାନେ ଉତ୍ତୀର୍ଣ୍ଣ ହେବା ପରେ ଠାକୁରଜୀ ସେମାନଙ୍କୁ କି ଆଦେଶ ଦେଲେ ?

**ଯାତ-ଅବଲା ବ୍ରଜଂ ସିଦ୍ଧା ମୟା-ଇମା ରଂସ୍ୟଥ କ୍ଷପାଃ ।**
**ଯତ୍ ଉଦ୍ଧିଶ୍ୟ ବ୍ରତଂ ଇଦଂ ଚେରୁଃ ଆର୍ଯ୍ୟା-ଅର୍ଚ୍ଚନଂ ସତୀଃ ॥୨୭॥**

ଉ. ଭଗବାନ କହିଲେ, ‘‘ହେ, ଶୁଦ୍ଧ ହୃଦୟ ଗୋପବାଳାଗଣ, (ସତୀ) ଯେଉଁ ଉଦ୍ଧେଶ୍ୟରେ ତୁମେମାନେ କାତ୍ୟାୟନୀ (ଆର୍ଯ୍ୟା) ପୂଜନ କରିଛ (ମୋତେ ପତିରୂପେ ପ୍ରାପ୍ତ ହେବାକୁ) ସେଥିରେ ତୁମେମାନେ ସିଦ୍ଧା ହେଲ ।’’ ଗୋପୀମାନେ ପୂଜନ କଲେ ଜଗତଜନନୀ କାତ୍ୟାୟନୀ ଯୋଗମାୟାଙ୍କୁ । ବରପାଇଲେ କିନ୍ତୁ ଗୋବିନ୍ଦଙ୍କଠାରୁ କାରଣ ଗୋବିନ୍ଦ ହିଁ ସର୍ବୋଚ୍ଚ ଶାସନ କର୍ତ୍ତା, ଫଳଦାତା, ମନୋଭୀଷ୍ଟ ପୂରଣକାରୀ ଭକ୍ତବାଞ୍ଛା କଳ୍ପତରୁ ୬୪କଳା ବିଶିଷ୍ଟ ସ୍ୱୟଂ ଭଗବାନ । କଥା ଦେଲେ

ସେମାନଙ୍କୁ ଯେ ଆସନ୍ତା ଆଶ୍ୱିନ ପୂର୍ଣ୍ଣିମା ରାତ୍ରିରେ ମହାରାସ ଅନୁଷ୍ଠିତ ହେବ। ବଂଶୀସ୍ୱରକୁ କାନ ଡ଼େରିଥାଅ। ତମମାନଙ୍କୁ ନିମନ୍ତ୍ରଣ ରହିଲା।

ଧର୍ମ ଦୃଷ୍ଟିରେ ଗୋପବାଳାମାନଙ୍କୁ ଅପରାଧ ଲାଗି ଦଣ୍ଡ ଦେଇ ଶ୍ରୀହରି ଲୋକଶିକ୍ଷା ପ୍ରଦାନ କଲେ। ଅଧ୍ୟାତ୍ମ ଦୃଷ୍ଟିରେ ଦେହର ପଞ୍ଚ କୋଷ (ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ) ବସ୍ତ୍ର ସ୍ୱରୂପ। ସେ ହିଁ ଆତ୍ମାଙ୍କୁ ଆବୃତ୍ତ କରି ରଖନ୍ତି। ଦେହାତ୍ମ୍ୟବୋଧକୁ ହଟାଇବା ହିଁ ବସ୍ତ୍ରହରଣ ବା ଚୀର ହରଣ। ଠାକୁରଜୀ ତାଙ୍କ ଲୀଳାରେ ସେଇ କଥା ଏଠାରେ ଶିକ୍ଷା ଦେଇଛନ୍ତି।

ଗୋପୀମାନେ ବାଳ ଲୀଳାରେ ଗୋବିନ୍ଦଙ୍କୁ ସିନା ମନ, ବୁଦ୍ଧି, ଚିତ୍ତ ସମର୍ପଣ କରିଥିଲେ ହେଲେ ସାମାନ୍ୟ ସୂକ୍ଷ୍ମ ଦେହ ଭାବ ଅହଂକାର ଏବେ ମଧ୍ୟ ସେମାନଙ୍କର ଥିଲା। ସ୍ୱସାଧନାରେ ତାହା ଯାଏ ନାହିଁ। ଭଗବତ କୃପାରେ ଯାଏ। ସେମାନେ ଏ ପର୍ଯ୍ୟନ୍ତ ସର୍ବ (ମନ-ବୁଦ୍ଧି-ଚିତ୍ତ) ଦେଇଥିଲେ। ଏବେ ଅହଂକାର ଦେଇ ସ୍ୱ କୁ ଦେଲେ। ଅତଏବ ସର୍ବସ୍ୱ ଦେଇ ପ୍ରେମ ସନ୍ନ୍ୟାସୀନୀ ହେଲେ। ମହାରାସ ଲୀଳା ପାଇଁ ସର୍ବଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ। ବୃନ୍ଦାବନ ଦର୍ଶନ ବେଳେ ଏବେ ମଧ୍ୟ ଯମୁନା କୂଳରେ ସେଇ ଚୀର କଦମ୍ବ ବୃକ୍ଷରେ ବସ୍ତ୍ର ଖଣ୍ଡିଏ ବାନ୍ଧି କୃଷ୍ଣଭକ୍ତମାନେ ପ୍ରଣାମ କରିଥାନ୍ତି।

ପ୍ରଶ୍ନ-୬: କୃଷ୍ଣ ମିଳନର ପ୍ରତିଶ୍ରୁତି ପାଇ ଗୋପୀମାନେ ଗୋବିନ୍ଦଙ୍କର ଚରଣ କମଳ ଧ୍ୟାନରେ ମନ ପ୍ରାଣ ଦେଇ ଲାଗି ପଡ଼ିଲେ। ଭଗବାନ ସର୍ବଦା ଲୀଳା ପ୍ରିୟ। ଲୀଳା ମାଧ୍ୟମରେ ସେ ଚାହିଁଲେ ଦେଖାଇଦେବାକୁ ମନୁଷ୍ୟ ବେଦ ପଢ଼ି ସିନା ପଣ୍ଡିତ ବୋଲାଏ। ନିଜେ କିନ୍ତୁ ପ୍ରଶଂସା, ଫୁଲମାଳ ଖୋଜେ। ସୁତରାଂ ବିଶ୍ୱ କିମ୍ବା ବିଶ୍ୱକର୍ତ୍ତାଙ୍କର କିଛି ଉପକାର କରିବାରେ ଜ୍ଞାନୀ ଅମଙ୍ଗ ହୁଏ। ଏହି ଲକ୍ଷ୍ୟରେ ଗୋପାଳ ବାଳକଙ୍କୁ ଭଗବାନ ଗୋଟିଏ ବୃକ୍ଷ ପାଖକୁ ଡ଼ାକିଲେ। ସେ ବୃକ୍ଷ ଜୀବନକୁ କାହିଁକି ଧନ୍ୟ ଧନ୍ୟ ବୋଲି କହିଲେ ?

ଶ୍ରୀଶୁକ ଉବାଚ

**ପତ୍ର ପୁଷ୍ପ ଫଳ ଛାୟା ମୂଳ ବଲ୍କଳ ଦାରୁଭିଃ।**
**ଗନ୍ଧ ନିର୍ଯ୍ୟାସ ଭସ୍ମ-ଅସ୍ଥି ତ୍ୱକ୍ମୈ କାମାନ୍ ବିତନ୍ୱତେ ॥୩୪॥**

ଉ. ଭଗବାନ ଯଥାର୍ଥରେ ବୃକ୍ଷର ଦୃଷ୍ଟାନ୍ତଟି ଦେଇ ମନୁଷ୍ୟକୁ ପରୋପକାର ସେବା ମହତ୍ୱ ବୁଝାଇଛନ୍ତି। ଗୋଟିଏ ବୃକ୍ଷର ଜନ୍ମ-ଜୀବନ ମରଣ ସବୁ କିଛି ପରୋପକାରରେ ଲାଗେ। ମନୁଷ୍ୟ, ଦେବତା, ଅସୁର, ପଶୁ, ପକ୍ଷୀ ସମସ୍ତଙ୍କ ସେବାରେ

ସେମାନେ ଉତ୍ସର୍ଗ କରନ୍ତି ଜୀବନକୁ । ପତ୍ର, ପୁଷ୍ପ, ଫଳ, ଛାୟା, ବକ୍‌କଳ, କାଠ, ଗନ୍ଧ, ଅଠା (ନିର୍ଯ୍ୟାସ), ଅଙ୍ଗାର ଛାଲି, ଚେର ଆଦି ଜୀବ ଜଗତର ଖାଦ୍ୟ, ଗୃହ ନିର୍ମାଣ, ଔଷଧ, ସୁଖ-ସ୍ୱାଚ୍ଛନ୍ଦ୍ୟ ଆବଶ୍ୟକତା ପୂରଣ କରନ୍ତି । ବୃକ୍ଷକୁ କାଟିବା ଲୋକକୁ ବୃକ୍ଷ ମଧ୍ୟ ଛାୟା ଦିଏ । ପିଲାଏ ତା ଉପରକୁ ଟେକା ପଥର, ଫିଙ୍ଗିଲେ ସେ ପ୍ରତି ବଦଳରେ ଫଳ ବି ଦିଏ । ସେବା ବିଷୟରେ ବୃକ୍ଷ ଜୀବନର ପଟାନ୍ତର ନାହିଁ ।

ମନୁଷ୍ୟ ଜାତି ଅନ୍ତତଃ ଏ ସେବାର ସଙ୍କେତ ବୃକ୍ଷଠାରୁ ବୁଝି ନିଜ ଜୀବନରେ ଗ୍ରହଣ କରିବା ଉଚିତ୍ । ପରବର୍ତ୍ତୀ ଲୀଳାରେ ଭଗବାନ ଗୋପାଳ ବାଳକମାନଙ୍କୁ ମଥୁରାବାସୀ ଯାଜ୍ଞିକ ଶୁଷ୍କ ପଣ୍ଡିତମାନଙ୍କ ପାଖକୁ ପଠାଇ ପରୀକ୍ଷା କରିବେ ଏକଥାର ସତ୍ୟତାକୁ ଯେ ମନୁଷ୍ୟ ଜନ୍ମ ପାଇ ବେଦପଢ଼ି ଯଜ୍ଞ କରିବା ଓ ସେବା ବିମୁଖ ହେବା କିଭଳି ହାନିକାରକ । ଭକ୍ତିପୂର୍ଣ୍ଣ ଦେବ ଦୁର୍ଲ୍ଲଭ ମନୁଷ୍ୟ ଜନ୍ମର ଓ ଭକ୍ତିହୀନା ବ୍ୟର୍ଥ ଜୀବନ ଯାପନର ଦୁଇ ଉତ୍କୃଷ୍ଟ ଉଦାହରଣ ଏହି ବେଦଜ୍ଞ ଜ୍ଞାନୀମାନଙ୍କ ପରୋପକାର ପରାଙ୍ମୁଖତା ।

## ଅଥ ୨୩ଶ ଅଧ୍ୟାୟଃ

### (ସ୍ୱର୍ଗକାମୀ ଯାଜ୍ଞିକ ବ୍ରାହ୍ମଣଙ୍କର ପତ୍ନୀମାନଙ୍କ ସହିତ ରାସ ଲୀଳା)

ପ୍ରଶ୍ନ-୭: ଠାକୁରଜୀଙ୍କ ରସାଳ ଲୀଳା ଅତୀବ ବିଚିତ୍ର ଓ ରସାପ୍ଲୁତ । ତାଙ୍କ ଲୀଳାରେ ସେ ନିଜେ କାଳସୀ ହୁଅନ୍ତି । ଭୂତ ହୋଇ ଲାଗନ୍ତି ଓ ନିଜେ ଗୁଣିଆ ହୋଇ ଭୂତ ଛଡ଼ାନ୍ତି ମଧ୍ୟ । ସବୁର ଲକ୍ଷ୍ୟ କେବଳ ଲୋକଶିକ୍ଷା ଓ ଭକ୍ତକୁ ଆନନ୍ଦ ପ୍ରଦାନ । ଏ ଲୀଳା ଆରମ୍ଭରେ ଗୋପାଳବାଳକ ରୂପରେ ସେ ରାମ କେଶବଙ୍କୁ କ'ଣ ପ୍ରାର୍ଥନା କରିଛନ୍ତି ?

**ଗୋପା ଉଚୁଃ**

**ରାମ ରାମ ମହାବୀର୍ଯ୍ୟ କୃଷ୍ଣ ଦୁଷ୍ଟ ନିବର୍ହଣ ।**
**ଏଷା ବୈ ବାଧତେ କ୍ଷୁତ୍ ନଃ ତତ୍ ଶାନ୍ତିଂ କର୍ତ୍ତୁଂ ଅର୍ହଥଃ ।।୧।।**

ଉ. ଗୋପାଳ ବାଳକମାନେ ତାଙ୍କ ପାଖରେ ଅଝଟ ହୋଇ କହିଛନ୍ତି, ''ହେ, ମହାବଳଶାଳୀ ବଳରାମ, ହେ ଦୁଷ୍ଟ ଅସୁର ଦଳନକାରୀ କୃଷ୍ଣ, ଆମ୍ଭେମାନେ

ଏବେ କ୍ଷୁଧାରେ ଅତୀବ ଆର୍ତ୍ତ । ତୁମେ ଦୁହେଁ ଆମ୍ଭମାନଙ୍କର କ୍ଷୁଧା ନିବାରଣ କରିବାରେ ସମର୍ଥ । ଅତଏବ ଆମ ପାଇଁ ଭୋଜନ ବ୍ୟବସ୍ଥା କର । ଆଗେ ପେଟ ପୂଜା ତାପରେ ଖେଳ ।''

ଲୀଳା ବିହାରୀ କୃଷ୍ଣ କହିଲେ, ''ଏଠାରୁ ଅଳ୍ପ ଦୂରରେ ମଥୁରାର ବ୍ରାହ୍ମଣମାନେ ବନ ମଧ୍ୟରେ ଆଙ୍ଗୀରସ ଯଜ୍ଞ କରୁଛନ୍ତି । ତାହା ପଶୁବଳି ଶୂନ୍ୟ ଯଜ୍ଞ । ଅତଏବ ସେ ଶୁଦ୍ଧ ଅନ୍ନ ଆମର ଗ୍ରହଣୀୟ । ତୁମେମାନେ ଶୀଘ୍ର ଯାଇ କୃଷ୍ଣ ବଳରାମ ଓ ଆମେମାନେ କ୍ଷୁଧାର୍ତ୍ତ ବୋଲି କହି ସେମାନଙ୍କୁ ଅନ୍ନ ଭୋଜନ ପ୍ରାର୍ଥନା କର ।''

ବ୍ୟାକୁଳ ହୋଇ ଗୋପାଳବାଳକମାନେ ଧାଇଁ ଗଲେ । ସେଠାରେ ପହଞ୍ଚି ପ୍ରଥମେ ବ୍ରାହ୍ମଣ ଦେବତାମାନଙ୍କୁ ସେମାନେ ଦଣ୍ଡବତ ପ୍ରଣାମ କଲେ । ଭଗବାନଙ୍କ କହିବା ପ୍ରକାରେ ସେମାନଙ୍କ ଯଜ୍ଞର ଶୁଭଫଳ କାମନା କରି ଅନ୍ନ ଭୋଜନ ପ୍ରାର୍ଥନା କଲେ ।

ପ୍ରଶ୍ନ-୮ : ଅଙ୍ଗୀରସ ଗୋତ୍ରୀୟ ବ୍ରାହ୍ମଣମାନେ କୃଷ୍ଣ ବଳରାମଜୀଙ୍କ କ୍ଷୁଧାର୍ତ୍ତ ଥିବା କଥା ଶ୍ରବଣ କରି କ'ଣ ତତ୍‌କ୍ଷଣାତ୍ ଅନ୍ନବ୍ୟଞ୍ଜନାଦିର ବ୍ୟବସ୍ଥା କରିଦେଲେ ?

**ଶ୍ରୀ ଶୁକ ଉବାଚ**

**ଇତି ତେ ଭଗବତ୍ ଯାଚଞାଂ ଶୃଣ୍ୱନ୍ତୋଽପି ନ ଶୁଶ୍ରୁବୁଃ ।**
**କ୍ଷୁଦ୍ର-ଆଶା ଭୂରି କର୍ମାଣୋ ବାଳିଶା ବୃଦ୍ଧମାନିନଃ ॥୯॥**

ଉ. ସେହି ଯାଜ୍ଞିକ ବ୍ରାହ୍ମଣମାନେ ବାସ୍ତବରେ ମୁକ୍ତି କିମ୍ବା ଭକ୍ତି ଲାଗି ଯଜ୍ଞ କରୁନଥିଲେ । ସେମାନେ ସ୍ୱର୍ଗ ସୁଖ ଭୁକ୍ତି ଆଶା (କ୍ଷୁଦ୍ରାଶା) କରୁଥିଲେ । ସେମାନେ ଅବଶ୍ୟ ବ୍ରହ୍ମ (ବେଦ) ପଢ଼ି ଯଜ୍ଞ କରୁଥିଲେ କିନ୍ତୁ ସେମାନଙ୍କର ବ୍ରହ୍ମ ଦୃଷ୍ଟି (ବୈଦିକ ତତ୍ତ୍ୱର ଅନୁଭବ) ନଥିଲା । ତେଣୁ ସେମାନେ ଭଗବାନଙ୍କ ଆଦେଶ ଶୁଣି ନ ଶୁଣିବା ଭଳି ରହିଲେ । ହଁ କହିଲେ ନାହିଁ କିମ୍ବା ନାହିଁ କହିଲେ ନାହିଁ । ଡ଼ାକି ହାକି ଉଚ୍ଚ ସ୍ୱରରେ ବେଦଙ୍କର କର୍ମକାଣ୍ଡ ମନ୍ତ୍ର ସବୁ ଆବୃତ୍ତି କରୁଥିଲେ । ଯଜ୍ଞରେ କର୍ମ କାଣ୍ଡର ଆଟୋପ, ଆଡ଼ମ୍ବର (ଭୂରିକର୍ମାଣୋ) ବହୁତ ହେଉଥିଲା । ବେଦ ରହସ୍ୟ ମୁକ୍ତି-ଭୁକ୍ତି ନ ଜାଣି ମୂର୍ଖ (ବାଳିଶା) ହେଲେ ମଧ୍ୟ ନିଜକୁ ଜ୍ଞାନବୃଦ୍ଧ (ବୃଦ୍ଧମାନିନଃ) ମାନି ବସିଥିଲେ । ପ୍ରକୃତରେ ସେମାନେ କେବଳ ଜ୍ଞାନାହଂକାରୀ ଥିଲେ । ବିଶ୍ୱ କିମ୍ବା ବିଶ୍ୱାତ୍ମାଙ୍କର କିଛି ଉପକାର ପରାଙ୍ମୁଖ ଥିଲେ । ଏ ଲୀଳାରେ ଗୋପାଳମାନଙ୍କୁ ଭଗବାନ ବୁଝାଇଦେଲେ ଯେ ତୁମକୁ ମୁଁ ଦେଖାଇଥିବା ବୃକ୍ଷଜନ୍ମଠାରୁ ଏଭଳି ଯାଜ୍ଞିକ ବ୍ରାହ୍ମଣଙ୍କ ଜୀବନ କେତେ ନୀଚ ହୀନ ସ୍ତରର । କାରଣ କୃଷ୍ଣ ସଖାମାନେ ଫେରି ଆସି ସେମାନେ ନିରାଶ ହୋଇଛନ୍ତି ବୋଲି ଭଗବାନଙ୍କୁ ଜଣାଇଥିଲେ ।

ପ୍ରଶ୍ନ-୯: ଭଗବାନ ଜ୍ଞାନର ଅହଂକାର ଦର୍ଶାଇ ଏବେ ଯୋଜନା କଲେ ଭକ୍ତିର ମାହାତ୍ମ୍ୟ ପ୍ରକଟନ ଲାଗି । ଗୋପାଳ ବାଳକମାନଙ୍କୁ ପୁଣି ସେଇ ସେଇ ବ୍ରାହ୍ମଣଙ୍କର ପତ୍ନୀମାନଙ୍କୁ ସେମାନଙ୍କ କ୍ଷୁଧା କଥା ନିବେଦନ କରି ଅନ୍ନ ଭୋଜନ ପ୍ରାର୍ଥନା କରିବାକୁ ଆଦେଶ ଦେଲେ । ଗୋପାଳ ବାଳକମାନେ ଅତ୍ୟନ୍ତ କ୍ଷୁଧାତୁର ଥିଲେ । ବ୍ରାହ୍ମଣ ପତ୍ନୀମାନଙ୍କ ପାଖରେ ପହଞ୍ଚି ଅନ୍ନ ପ୍ରାର୍ଥନା କରନ୍ତେ କ'ଣ ସେମାନଙ୍କ ଦୁଃଖ ଦୂର ହୋଇଗଲା ?

**ଶ୍ରୁତ୍ୱା-ଅଚ୍ୟୁତଂ ଉପାୟାତଂ ନିତ୍ୟଂ ତତ୍ ଦର୍ଶନ-ଉତ୍ସୁକାଃ ।**
**ତତ୍‌କଥା-ଆକ୍ଷିପ୍ତ ମନସୋ ବଭୂବୁଃ ଜାତ ସମ୍ଭ୍ରମାଃ ॥୧୮॥**

ଉ. ବ୍ରାହ୍ମଣ ପତ୍ନୀମାନେ ମଥୁରାରେ ଥିଲେ ଅବଶ୍ୟ । ପୂର୍ବରୁ କୃଷ୍ଣ ଲୀଳା ଚରିତ ଶ୍ରବଣ କରି ସେମାନେ ମନ ବୁଦ୍ଧିରେ କୃଷ୍ଣପ୍ରେମରେ ବୁଡ଼ିସାରିଥିଲେ । ଦର୍ଶନ ସୁଯୋଗ ଅପେକ୍ଷାରେ ଥିଲେ । ଯେମିତି ଶୁଣିଲେ ଭଗବାନ୍ (ଅଚ୍ୟୁତଂ) ସ୍ୱୟଂ ଆସିଛନ୍ତି ବନ ବିହାରରେ ଡ଼ାକହାକ ହୋଇ ସଜବାଜ ହେଲେ ହରିଦର୍ଶନ ଲାଳସାରେ । ମନରେ ଦୁର୍ଦ୍ଦମନୀୟ ଉତ୍ତାଳ ଆନନ୍ଦ ତରଙ୍ଗର ନୃତ୍ୟ । ନିଜ ନିଜର ବେଶ ଶୃଙ୍ଗାର ସାରି ହାତରେ ମୁଣ୍ଡରେ ଧରିଲେ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଆଦି ପ୍ରସାଦ ସାମଗ୍ରୀ । ସେମାନଙ୍କ ଉତ୍ସାହ ଦେଖି ମନେ ହେଲା ସତେ ଯେପରି ନଦୀମାନେ ବ୍ୟାକୁଳ ହୋଇ ଧାବମାନ ହେଉଛନ୍ତି ସମୁଦ୍ର ସଙ୍ଗେ ନିଜକୁ ମିଶାଇ ନିଜ ନିଜର ନାମ-ରୂପ ଭୁଲିଯିବାକୁ ! ! !

ପ୍ରଶ୍ନ-୧୦: ଏହି ମଥୁରା ନାରୀମାନେ କଂସ ଶାସନରେ ଥିବା ବ୍ରାହ୍ମଣଙ୍କ ପତ୍ନୀ ଥିଲେ । କଂସ ଭୟରେ ସେମାନଙ୍କ ପତି, ପୁତ୍ର, କନ୍ୟା, ଭାଇ, ବନ୍ଧୁମାନେ ସେମାନଙ୍କୁ କୃଷ୍ଣ ଦର୍ଶନରେ ଯିବାକୁ ବାରଣ କଲେ । କୃଷ୍ଣଲୀଳା ସ୍ମରଣ କରି ସେମାନେ ଆଜି ଚାରି ଦଉଡ଼ି କଟା । ସେମାନଙ୍କୁ କିଏ କେଉଁ ଦଉଡ଼ିରେ ବାନ୍ଧି ପାରନ୍ତା ! ! ! ଦଉଡ଼ିରେ ସିନା ଦେହକୁ ବାନ୍ଧିହେବ । ମନକୁ ବାନ୍ଧିବା ଅସମ୍ଭବ । ସେମାନଙ୍କ ଦୃଷ୍ଟିରେ ସେତେବେଳେ ପ୍ରେମ ଅଞ୍ଜନ ବୋଳି ସାରିଥାନ୍ତି ଗୋବିନ୍ଦ । ଅତଏବ ବ୍ରାହ୍ମଣ ପତ୍ନୀମାନେ ନିଜ ନିଜ ମନ ଗଗନରେ ଠାକୁରଜୀଙ୍କୁ କିଭଳି ଦିବ୍ୟବେଶ ଶୃଙ୍ଗାରରେ ଥିବା ଦର୍ଶନ କଲେ ।

ଶ୍ୟାମଂ ହରିଣ୍ୟ ପରିଧିଂ ବନମାଲ୍ୟ ବର୍ହ
ଧାତୁ ପ୍ରବାଳ ନଟବବେଶଂ ଅନୁବ୍ରତ-ଅଂସେ ।
ବିନ୍ୟସ୍ତ ହସ୍ତଂ ଇତରେଣ ଧୁନାନଂ ଅବ୍ଜଂ
କର୍ଣ୍ଣ-ଉତ୍ପଳ-ଅଳକ କପୋଳ ମୁଖ-ଅବଜ୍‌ହାସମ୍'' ।।୨୨।।

ଉ. ଏ ଶ୍ଳୋକଟି ଏକ ଅତି ପ୍ରସିଦ୍ଧ ଶ୍ଳୋକ । ଏହି ଶ୍ଳୋକ ଶ୍ରବଣ କରି ଗୌରାଙ୍ଗ ମହାପ୍ରଭୁ ସମାଧିସ୍ଥ ହୋଇ ଯାଉଥିଲେ । ଘଣ୍ଟା ଘଣ୍ଟା ଧରି ଚେତନା ଶୂନ୍ୟ ହୋଇ ପଡୁଥିଲେ । ଏଥିରେ ଭଗବାନଙ୍କ ଦିବ୍ୟ ଶୃଙ୍ଗାର ବର୍ଣ୍ଣିତ ହୋଇଛି ।

ଭଗବାନଙ୍କ ବର୍ଣ୍ଣ ଶ୍ୟାମ । କଟୀ ଚାରିପାଖେ ପୀତ ବସ୍ତ୍ର(ହିରଣ୍ୟ ପରିଧିଂ) । ଗଳାରେ ଲମ୍ବିଛି ବନମାଳା । ମସ୍ତକରେ ଶୋଭାପାଉଛି ମୟୂର ଚୂଳ (ବର୍ହ) । ସମଗ୍ର ଦେହରେ ଗେରୁର ଲେପ । ଠାଣିରେ ନର୍ତ୍ତକ ବେଶ । ଗୋଟିଏ କରକମଳ ରଖିଥାନ୍ତି ଏକ ସଖା କାନ୍ଧରେ । ଅନ୍ୟ କରକମଳରେ ଘୂରାଉଥାନ୍ତି ଦିବ୍ୟ ଲୀଳା କମଳଟିଏ । କର୍ଣ୍ଣ ଦୁଇଟିରେ ସାନ ସାନ ଦିବ୍ୟ କୁମୁଦିନୀ (କଇଁଫୁଲ) । କପୋଳ(ଗଣ୍ଡଦେଶ)ରେ ଚୂର୍ଣ୍ଣ କୁନ୍ତଳ (ଅଡୁଆ କେଶ) । ସର୍ବୋପରି ମୁଖ କମଳରେ ସ୍ମିତ ହାସ୍ୟ ଶୋଭାର ସୁଷମା ଇତ୍ୟାଦି ଲେଖକର କାଳି କଲମରେ ଅବର୍ଣ୍ଣନୀୟ ।

ବ୍ରାହ୍ମଣ ପତ୍ନୀମାନେ ଠାକୁରଜୀଙ୍କ ଦିବ୍ୟ ଶୃଙ୍ଗାର ଦର୍ଶନ କରନ୍ତେ ସେମାନଙ୍କ ଚକ୍ଷୁ ଦ୍ୱାର ଦେଇ ଭଗବାନ ପହଞ୍ଚିଗଲେ ହୃଦୟ ମନ୍ଦିରରେ । ସେମାନେ ସମସ୍ତେ କୋଟିନିଧି ପ୍ରାପ୍ତ ହେଲେ । ଜନ୍ମ-ଜନ୍ମାନ୍ତରର କୃଷ୍ଣ ବିରହ ତାପ ପ୍ରଶମିତ ହୋଇଗଲା । ଭଗବାନ ମଧ୍ୟ ତାଙ୍କ ତରଫରୁ କୃପଣତା କରି ନାହାନ୍ତି । ଅତ୍ୟନ୍ତ ମଧୁର ସ୍ୱରରେ ସେମାନଙ୍କୁ ସ୍ୱାଗତ କଲେ । ସେମାନଙ୍କଠାରୁ ପ୍ରସାଦ ସ୍ୱୀକାର କଲେ । କି ସେବା ସେ କରିପାରିବେ ବୋଲି ଚତୁରତାର ସହିତ ପଚାରିବସିଲେ । ମଧୁର କଥାରେ ତାଙ୍କୁ ତ ବ୍ରହ୍ମା୍‌ଶଙ୍କର-ନାରଦ ଆଦି ପାରିବେ ନି । ବ୍ରାହ୍ମଣ ପତ୍ନୀମାନେ ତାଙ୍କୁ କ'ଣ ବଳାଇ ଯାଆନ୍ତେ ! ! ଠାକୁରଜୀ କହିଲେ, ''ହେ, ମୋର ଭକ୍ତଗଣ ଆସିଲ, ଭଲ କଲ । ମୁଁ ସମସ୍ତଙ୍କର ଆତ୍ମା । ସେଥିଲାଗି ସମସ୍ତେ ମୋ ଦର୍ଶନ ଇଛା କରିଥାନ୍ତି । ତୁମ ଦର୍ଶନ ଅଭିଳାଷ ପୂରଣ ହେଲାଣି । ଏବେ ନିଜ ନିଜ ସ୍ୱାମୀମାନଙ୍କୁ ପାଖକୁ ଫେରିଯାଅ । ତୁମ ପତିମାନେ ସ୍ୱର୍ଗ ଯିବାକୁ ଯଜ୍ଞ କରୁଛନ୍ତି । ତୁମ୍ଭେମାନେ ଗୃହସ୍ଥାଶ୍ରମରେ ଅଛ । ଯଜ୍ଞ ପୂର୍ଣ୍ଣ କରିବାକୁ ତୁମ ଉପସ୍ଥିତି ସେଠାରେ ଦରକାର । ଅତଏବ ଆଉ ବିଳମ୍ବ ନ କରି ଫେରିଯାଅ । ସ୍ୱଧର୍ମ ପାଳନରେ ବିଘ୍ନ ଘଟିବ ନ ଗଲେ ।''

।। ଅପଣ୍ଡିତ ଦାମୋଦର ବଳୀୟାରସିଂହ ।।

ବ୍ରାହ୍ମଣ ପତ୍ନୀମାନେ ଅବଶ୍ୟ କୃଷ୍ଣ ଭକ୍ତ ଥିଲେ କିନ୍ତୁ ଅପରିପକ୍ୱ । ସେମାନେ ପ୍ରଥମେ ଯିବାକୁ ଅମଙ୍ଗ ହେଲେ । ପରେ ଯାଇ ଯଜ୍ଞରେ ଯୋଗଦେଲେ । ବ୍ରାହ୍ମଣମାନେ ଆନନ୍ଦରେ ଧୁମ୍‌ଧାମ ସହକାରେ ଯଜ୍ଞ ସମାପନ କଲେ । ଏ ଲୀଳାରେ ବ୍ରାହ୍ମଣ ପତ୍ନୀମାନଙ୍କୁ ଗୋବିନ୍ଦ ମହାରାସ ପାଇଁ ନିମନ୍ତ୍ରଣ ନ କରିବାର ରହସ୍ୟ ଲକ୍ଷ୍ୟ କରିବା କଥା । ଏମାନେ ଏବେ ବି ନିଜ ନିଜକୁ କୃଷ୍ଣ ଭକ୍ତ ବୋଲି ନ ଭାବି ବ୍ରାହ୍ମଣପତ୍ନୀ ବୋଲି ଭାବୁଛନ୍ତି । ଅତଏବ ଏମାନେ ସମସ୍ତେ ଅବିବାହିତ ଗୋପବାଳା (ସନ୍ୟାସିନୀ ଗୋପୀ)ଙ୍କ ଠାରୁ ପ୍ରେମୀ ଗୁଣରେ ନିକୃଷ୍ଟ । ଅତଏବ ମହାରାସର ଅନଧିକାରୀ । ସ୍ୱଧର୍ମ ତ୍ୟାଗ କରିବା ଅବସ୍ଥାକୁ ଆସି ନାହାନ୍ତି ଏମାନେ । ଆହୁରି କିଛି ଜନ୍ମ ଦରକାର ଏମାନଙ୍କ ଲାଗି ।

ପ୍ରଶ୍ନ-୧୧ : ବ୍ରାହ୍ମଣମାନେ ସେମାନଙ୍କ ପତ୍ନୀମାନଙ୍କଠାରୁ ଗୋବିନ୍ଦଙ୍କ ରୂପ, ଗୁଣ, ଲୀଳା ଆଦି ଶ୍ରବଣ କରି ବଡ଼ ଖୁସି । ଏବେ ହୋସ ଆସିଲା ସେମାନଙ୍କର । ସେମାନେ ନିଜର ଓ ପତ୍ନୀମାନଙ୍କର ସୌଭାଗ୍ୟର ପ୍ରଶଂସା କଲେ କି ?

**ଧିକ୍ ଜନ୍ମ ନଃ ତ୍ରିବୃତ୍ ବିଦ୍ୟାଂ ଧିକ୍ ବ୍ରତଂ ଧିକ୍ ବହୁଜ୍ଞତାମ୍ ।**
**ଧିକ୍‌କୁଳଂ ଧିକ୍ କ୍ରିୟା ଦାକ୍ଷଂ ବିମୁଖା ଯେ ତୁ-ଅଧୋକ୍ଷଜେ ॥୩୯॥**

ଉ. ପତ୍ନୀମାନେ ନିଜ ନିଜର ଭକ୍ତି ଦ୍ୱାରା କୃଷ୍ଣ ଉନ୍ମୁଖ ଥିବାରୁ ସେମାନଙ୍କର ପ୍ରଶଂସା ବ୍ରାହ୍ମଣମାନେ ଅବଶ୍ୟ କଲେ । ଅନ୍ୟ ପକ୍ଷରେ ନିଜର କୃଷ୍ଣ ବିମୁଖତା ଲାଗି ଲଜ୍ଜିତ ହୋଇ ଉଚ୍ଚ କୁଳରେ ଜନ୍ମ, ଯଜ୍ଞ ବ୍ରତ, ବେଦ ପଠନ ପଟୁତା, କର୍ମକାଣ୍ଡୀ ଦକ୍ଷତା ସବୁକୁ ଶତଧିକ୍‌କାର କଲେ ।

ସଂସାରରେ ପାପ ଅବା କିଏ ନ କରେ ? ସୁତରାଂ ପାପ କରିବା ଆଦୌ ବଡ଼ କଥା ନୁହେଁ । ଖରାପ ହେଲା ପାପ କରି ତାକୁ ଘୋଡ଼େଇ ରଖିବା ଚେଷ୍ଟା । ପଶ୍ଚାତ୍‌ତାପ ଦ୍ୱାରା ସାଧକର ଅନେକ ଲାଭ ହୁଏ । ପାପ ସଂସ୍କାର ଜଳିଯାଏ । ଆଉ ନୂଆ ପାପ କରିବାରେ ଭୟ ଜନ୍ମେ । ବ୍ରାହ୍ମଣମାନେ କଥା ହେଲେ-ଜାତି, କୁଳ, ବିଦ୍ୟା, ଧନ ଅଭିମାନରେ ଆମେ ଗୃହ ଆସକ୍ତି ଦଉଡ଼ିରେ ବାନ୍ଧି ହୋଇଯାଇଛେ । ଏ କଥାର ସୂଚନା ସେଇ ଶ୍ୟାମସୁନ୍ଦର ଆମ ପତ୍ନୀମାନଙ୍କୁ କୃପା କରିବା ମାଧ୍ୟମରେ ଆମମାନଙ୍କୁ ପ୍ରଦାନ କରିଛନ୍ତି । ଆମ ପାଖକୁ ପ୍ରଥମେ ଖାଦ୍ୟ ମଗାଇ ପଠାଇବା କେବଳ ତାଙ୍କର ଏକ ବାହାନା । ନଚେତ ପୂର୍ଣ୍ଣକାମ ଭଗବାନ କେବେବି ନିଜକୁ

କ୍ଷୁଧାର୍ତ୍ତ ବୋଲି କହିଥାଆନ୍ତେ କି ? ସେ ତ ବିଶ୍ୱପିତା । ଆମ ଦୋଷ ଦେଖିଲେ ଦଣ୍ଡଦେଇ ବାଟକୁ ଅଣାଇବା କଥା । ସ୍ୱୟଂ ମହାଲକ୍ଷ୍ମୀ ଅନ୍ନପୂର୍ଣ୍ଣା ଯାହାଙ୍କର ଦାସୀ ତାଙ୍କର କ୍ଷୁଧାର୍ତ୍ତ ହେବା ଭାଗ୍ୟର ବିଡ଼ମ୍ବନା ।

ଯଜ୍ଞର ସକଳ ଅଙ୍ଗ ଭଗବାନଙ୍କର ଐଶ୍ୱର୍ଯ୍ୟ ପ୍ରକାଶ ମାତ୍ର । ଗର୍ଗ ଆଚାର୍ଯ୍ୟ ଆଦି ଅଜନ୍ମା ଭଗବାନଙ୍କ ଯଦୁକୁଳରେ ଜନ୍ମ ହେବା କଥା ପୂର୍ବରୁ କହିଥିଲେ । ତଥାପି ଆମେ ଠାକୁରଜୀଙ୍କର ଉଦ୍ଦେଶ୍ୟ ବୁଝି ନ ପାରିବା ବାସ୍ତବରେ ପରିତାପର ବିଷୟ । କର୍ମକାଣ୍ଡରେ ମାତି ଅଙ୍ଗୀରସ ଯଜ୍ଞ କରି ସ୍ୱର୍ଗକୁ ଯିବାକୁ ଇଚ୍ଛା କରିବା କେଉଁ ବୁଦ୍ଧି ବିବେକର କାମ ? ଯଜ୍ଞପତି ବିଷ୍ଣୁ ମାୟାଧୀଶ । ତାଙ୍କରି ମାୟାରେ ଆମେ ମୋହିତ ହୋଇ ତାଙ୍କ ସେବା କରିବାରୁ ବଞ୍ଚିତ ହେଲେ । କଂସ ଭୟ ସେମାନଙ୍କୁ କୃଷ୍ଣ ସେବା ବିମୁଖ କରାଇଲା ବୋଲି ନିଶ୍ଚୟ କରି କଂସ ଉପରେ ଦୋଷ ଲଦି ନିଜକୁ ନିର୍ଦ୍ଦୋଷ ମନେ କଲେ । ପୁଣି କଂସ ଭୟରେ ହରିଦର୍ଶନ ଅଭିଳାଷୀ ହୋଇ ନଥିଲେ । ବ୍ରାହ୍ମଣ ପତ୍ନୀମାନଙ୍କ ଅଟଳ କୃଷ୍ଣଭକ୍ତି  ଲୀଳା ସ୍ମରଣ କରିବାକୁ ଏ ବନର ନାମ ଅଟଳବନ ରଖାଯାଇଛି । ଠାକୁରଙ୍କ ନାମ ଅଟଳ ବନବିହାରୀ ହୋଇଛି । ଏ ବ୍ରାହ୍ମଣ ପତ୍ନୀମାନେ ପୂର୍ବଜନ୍ମରେ ସପ୍ତ ଋଷିମାନଙ୍କ ପତ୍ନୀ ଥିଲେ । ଥରେ ଯଜ୍ଞବେଳେ ଅଗ୍ନିଦେବତାଙ୍କ ସ୍ପର୍ଶ ହୋଇଯିବାରୁ ଶାପ ପାଇଁ ଏ ଜନ୍ମ ପାଇଥିଲେ । ଏବେ ମୁକ୍ତ ହେଲେ ।

## ଅଥ ୨୪ଶ ଅଧ୍ୟାୟଃ

## (ଇନ୍ଦ୍ର ପୂଜନ ବଦଳରେ ଗିରିରାଜ ଗୋବର୍ଦ୍ଧନ ପୂଜନ)

ପ୍ରଶ୍ନ-୧ ୨ : ମଥୁରା ଯାଜ୍ଞିକ ବ୍ରାହ୍ମଣମାନଙ୍କୁ ସକାମ ଯଜ୍ଞର ଅସାରତା ଦର୍ଶାଇ ବେଶ୍ ଉତ୍ସାହିତ ହେଲେ ଗୋବିନ୍ଦ । ଏବେ ମନେ ମନେ ସ୍ଥିର କଲେ ବ୍ରଜବାସୀମାନଙ୍କୁ ମଧ୍ୟ ସେଇ ଶିକ୍ଷା ଦେବାକୁ । ଅକର୍ମା ଅଳସୁଆଙ୍କ ପାଇଁ ସକାମ ଦେବତା ପୂଜନ ଅବଶ୍ୟ ଠିକ୍ ଉପଦେଶ । ଧର୍ମ-ଅର୍ଥ-କାମ ସେମାନଙ୍କର ଲକ୍ଷ୍ୟ କିନ୍ତୁ କର୍ମଠ ଲୋକଙ୍କୁ ସକାମ କର୍ମ ଶୋଭାପାଏ ନାହିଁ । ସେମାନଙ୍କ ପାଇଁ ସ୍ୱଧର୍ମ ପାଳନ ରୂପକ ନିଷ୍କାମ କର୍ମଯୋଗ ବନ୍ଦନୀୟ । ମୋକ୍ଷ ସେମାନଙ୍କ ଲକ୍ଷ୍ୟ ହେବା ଉଚିତ । ଗୋବର୍ଦ୍ଧନର ପବିତ୍ର ଯଜ୍ଞସ୍ଥଳ ନିକଟକୁ ଯାଇ କୃଷ୍ଣ ବଳରାମ କ'ଣ ସବୁ ଦେଖିଲେ ?

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

ଶ୍ରୀ ଶୁକ ଉବାଚ

**ଭଗବାନ୍ ଅପି ତତ୍ର-ଏବ ବଳଦେବେନ ସଂଯୁତଃ ।**
**ଅପଶ୍ୟତ୍ ନିବସନ୍ ଗୋପାନ୍ ଇନ୍ଦ୍ରଯାଗ କୃତ-ଉଦ୍ୟମାନ ।।୧।।**

ଉ. ନନ୍ଦ-ସୁନନ୍ଦ ଉପନନ୍ଦ ଆଦି ବ୍ରଜବାସୀମାନେ ସେହି ସ୍ଥାନରେ ବର୍ଷାଋତୁର ଆଗମନ ଲାଗି ବର୍ଷାର ଦେବତା ମେଘବାହନ ଇନ୍ଦ୍ରଙ୍କୁ ସନ୍ତୁଷ୍ଟ କରିବା ନିମିତ୍ତ ଇନ୍ଦ୍ରଯାଗର ଆୟୋଜନ କରୁଛନ୍ତି ।

ପ୍ରଶ୍ନ-୧୩: ଭଗବାନ ପିତା ନନ୍ଦ ଉପନନ୍ଦ ଆଦି ବୟସ୍କ ଲୋକମାନଙ୍କ ପାଖକୁ ଯାଇ କର୍ମକାଣ୍ଡୀମାନଙ୍କର ଉପଦିଷ୍ଟ ଆଡ଼ମ୍ବର ପୂର୍ଣ୍ଣ ଯାଗର ଉଦ୍ଦେଶ୍ୟ କ'ଣ ବୋଲି ବିନମ୍ର ଭାବରେ ପଚାରିଲେ ଯେ ଏଭଳି ଯଜ୍ଞ କ'ଣ କୌଣସି ଶାସ୍ତ୍ର ନିର୍ଦ୍ଦିଷ୍ଟ ନା କେବଳ ପରମ୍ପରାଗତ ଏକ ପ୍ରଥା ମାତ୍ର । ଏବେ କିଭଳି ଉତ୍ତର ଦେଇ ନନ୍ଦ ମହାରାଜ ନିଜ ପୁତ୍ର କୃଷ୍ଣଙ୍କୁ ସନ୍ତୁଷ୍ଟ କରିବାକୁ ବ୍ୟର୍ଥ ଚେଷ୍ଟା କଲେ ?

ନନ୍ଦ ଉବାଚ

**ପର୍ଜନ୍ୟୋ ଭଗବାନ ଇନ୍ଦ୍ରୋ ମେଘାଃ ତସ୍ୟ-ଆତ୍ମମୂର୍ତ୍ତୟଃ ।**
**ତେଽଭିବର୍ଷନ୍ତି ଭୂତାନାଂ ପ୍ରୀଣନଂ ଜୀବନଂ ପୟଃ ।।୮।।**

ଉ. ନନ୍ଦଜୀ ବୁଝାଇଦେଲେ ଯେ ବର୍ଷା (ପର୍ଜନ୍ୟୋ)ର ନିୟନ୍ତ୍ରଣକାରୀ ଦେବତା ଇନ୍ଦ୍ର । ମେଘମାନେ ସେଇ ଇନ୍ଦ୍ରଦେବତାଙ୍କ ସାକ୍ଷାତ ପ୍ରତିମୂର୍ତ୍ତି ଓ ପ୍ରତିନିଧି । ବର୍ଷା ଦ୍ୱାରା ସକଳ ପ୍ରାଣୀ (ଭୂତାନାଂ)ରେ ତୁଷ୍ଟି-ପୁଷ୍ଟି (ପ୍ରୀଣନଂ) ଓ ଦୁଧ ଭଳି ଜୀବନଦାନ (ଜୀବନଂ) ମିଳିଥାଏ । ଯଜ୍ଞ କରି ଲୋକେ ଇନ୍ଦ୍ରଦେବତାଙ୍କୁ ସନ୍ତୁଷ୍ଟ କରନ୍ତି । ଯଜ୍ଞାବଶିଷ୍ଟ ଭୋଜନ କରି ଜୀବନ ନିର୍ବାହ କରନ୍ତି । ଜଳ ବର୍ଷଣ କରି ଇନ୍ଦ୍ର ଧର୍ମ-ଅର୍ଥ-କାମ ତ୍ରିବର୍ଗ ଫଳ ପ୍ରଦାନ କରି ପ୍ରଜାପୋଷଣ କରନ୍ତି । ଏହା ପରମ୍ପରାଗତ ପ୍ରଥା ଆକାରରେ ଧର୍ମ ଭାବରେ ସ୍ୱୀକୃତ । ମନୁଷ୍ୟ ଇନ୍ଦ୍ରଙ୍କ ଉପକାର ଶୁଝିବା ଲାଗି ଇନ୍ଦ୍ରଯାଗ ନ କଲେ ଦେବଋଣରୁ ମୁକ୍ତ ହୋଇପାରେନା । ତାର ଜୀବନ ଅପୂର୍ଣ୍ଣ ରହିଯାଏ ।

ପ୍ରଶ୍ନ-୧୪: ପିତା ନନ୍ଦଙ୍କ ମୁଖରୁ ସକାମ କର୍ମର ପ୍ରଶଂସା ଓ ମୋକ୍ଷ ବିଷୟ ଅଜ୍ଞତା ଦୁଇ କଥା ଲକ୍ଷ୍ୟ କଲେ । କ୍ରୋଧ କଲେ ଇନ୍ଦ୍ରଙ୍କ ଉପରେ । ଲୋକେ ପୂଜା କରନ୍ତୁ ବା ନ କରନ୍ତୁ ବର୍ଷା କରିବା ତାଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ମଧ୍ୟ । ନିଷ୍କାମ କର୍ମଯୋଗୀମାନଙ୍କର ଇନ୍ଦ୍ରଙ୍କ ପ୍ରତି ଅବଧାରଣାକୁ ଶୁଦ୍ଧ କରିବା ଉଦ୍ଦେଶ୍ୟରେ ଠାକୁରଜୀ ପିତା ନନ୍ଦଙ୍କୁ କ'ଣ ପ୍ରସ୍ତାବ ରଖିଲେ ?

ଶ୍ରୀ ଭଗବାନ ଉବାଚ

**କର୍ମଣା ଜାୟତେ ଜନ୍ତୁଃ କର୍ମଣା-ଏବ ପ୍ରଲୀୟତେ ।**
**ସୁଖଂ ଦୁଃଖଂ ଭୟଂ କ୍ଷେମଂ କର୍ମଣା-ଏବ-ଅଭିପଦ୍ୟତେ ॥୧୩॥**

ଉ. ଅତ୍ୟନ୍ତ ମଧୁର ସ୍ୱରରେ ଭଗବାନ ଗମ୍ଭୀର କର୍ମ ତତ୍ତ୍ୱକୁ ସରଳ ଭାବରେ ବୁଝାଇବାକୁ ଚେଷ୍ଟା କଲେ । କହିଲେ ପିତାଜୀ, ଜୀବ ତାର ପୂର୍ବକୃତ ଶୁଭ-ଅଶୁଭ କର୍ମ ସଂସ୍କାର ଆଧାରରେ ଜନ୍ମ ନିଏ । କର୍ମ କରେ । ମରେ ମଧ । ଜୀବନ କାଳରେ ସୁଖ-ଦୁଃଖ-ଭୟ-ସୁରକ୍ଷା ଯାହା ତାକୁ ମିଳେ ସେ ସବୁ ତା କୃତ ପାପ-ପୁଣ୍ୟ କର୍ମର ଫଳ ମାତ୍ର । ଅନ୍ୟ କିଛି ନୁହେଁ । କୌଣସି ଦେବୀ ଦେବତା ଅନୁଗ୍ରହ ନୁହେ ।

ପ୍ରଶ୍ନ-୧୫: ଭଗବାନ ପୁଣି କହିଲେ ପ୍ରାଣୀମାନଙ୍କର କର୍ମ ଅନୁସାରେ ଫଳ ଦେବାକୁ ଦେବତାମାନେ ବାଧ । ବିନା କର୍ମରେ ଦେବତାମାନେ ଫଳ ଦେବେ କୁଆଡୁ ? ଇନ୍ଦ୍ର ଯଦି କାହାରି ଭାଗ୍ୟ, କର୍ମଫଳ ବଦଳେଇ ନ ପାରିବେ ଜୀବର ସ୍ୱ ସ୍ୱ କର୍ମ ଅନୁସାରେ ଫଳ ଦେବେ, ତେବେ ମନୁଷ୍ୟ ତାଙ୍କୁ ପୂଜି କି ଲାଭ ପାଇବ ?

**କିଂ ଇନ୍ଦ୍ରେଣ-ଇହ ଭୂତାନାଂ ସ୍ୱ ସ୍ୱ କର୍ମ-ଅନୁବର୍ତ୍ତିନାମ୍ ।**
**ଅନୀଶେନ-ଅନ୍ୟଥା କର୍ତ୍ତୁଂ ସ୍ୱଭାବ ବିହିତଂ ନୃଣାମ୍ ॥୧୫॥**

ଉ. ଭଗବାନ କହିଲେ, ''ପିତାଜୀ, ସମଗ୍ର ସୃଷ୍ଟି କର୍ମ ଫଳରେ ବନ୍ଧା । କରିଥିବା ପାପ-ପୁଣ୍ୟକୁ ସୁଖ-ଦୁଃଖ ରୂପରେ ଭୋଗ କରିବାକୁ ଇନ୍ଦ୍ର-ଚନ୍ଦ୍ର କ'ଣ ବ୍ରହ୍ମା-ଶଙ୍କର ଆଦି ମଧ ଭୋଗ କରିବାକୁ ବାଧ ହୁଅନ୍ତି । ଇନ୍ଦ୍ର ଜଣେ ଦେବତା । ସେ ସ୍ୱତନ୍ତ୍ର ସର୍ବମୟ ଶାସକ ନୁହନ୍ତି । ସେ ମଧ ନିଜ କର୍ମଫଳ ଭୋଗନ୍ତି । ଇନ୍ଦ୍ର ବରୁଣ କୁବେର ଆଦି ସୂକ୍ଷ୍ମ ରାଜ୍ୟର ଦେବତା । ଗିରିରାଜ ଗୋବର୍ଦ୍ଧନ ଆଦି ସ୍ଥୁଳ ରାଜ୍ୟର ଦେବତା ।

ସକଳ ଦେବୀ ଦେବତା, ମନୁଷ୍ୟ, ଅସୁର, ପଶୁ, ପକ୍ଷୀ, ସ୍ଥାବର, ଜଙ୍ଗମ ନିଜ ନିଜ ପ୍ରକୃତି (ସ୍ୱଭାବ ବିହିତଂ) ଆଶ୍ରିତ । ତ୍ରିଗୁଣାତ୍ମିକା ପ୍ରକୃତି ବା ମାୟାଦେବୀଙ୍କର ସତ୍ତ୍ୱ, ରଜ, ତମୋ ଗୁଣଦ୍ୱାରା ଜୀବ ଭିନ୍ନ ଭିନ୍ନ ଦେହ ପ୍ରାପ୍ତ ହୁଏ । ପ୍ରାରବ୍ଧ ଶେଷରେ ଦେହ ଛାଡ଼େ ମଧ । ଅତଏବ ନିଜ କୃତ ଜୀବର କର୍ମ ଫଳ ହିଁ ତାର ଶତ୍ରୁ, ମିତ୍ର, ଉଦାସୀନ, ଗୁରୁ, ଈଶ୍ୱର ସବୁ କିଛି ଅଟେ । ଦେବତା ନୁହନ୍ତି ।''

ପ୍ରଶ୍ନ-୧୬: ଯେଉଁ ଗୁପ୍ତ କର୍ମଯୋଗରେ ଥିବା ରହସ୍ୟକୁ ବେଦ, ବେଦାନ୍ତ ଓ ଉପନିଷଦରେ ସନ୍ତର୍ପଣରେ ଲୁଚେଇ ରଖାଯାଇଛି, ଯାହାକୁ ପୁଣି ଆହୁରି ୫୮ ବର୍ଷ

ପରେ ମହାଭାରତ ରଣାଙ୍ଗନରେ ସଖା ଅର୍ଜୁନଙ୍କୁ କହିବେ ତାକୁ ପିତା ନନ୍ଦଙ୍କ ପାଖରେ ସଂକ୍ଷେପରେ କହିଲେ,"କର୍ମଫଳ ସୂତା ଖିଅରେ ଦେବରାଜ ଇନ୍ଦ୍ର ଓ ଇନ୍ଦ୍ର ଗୋପ କୀଟ (ସାଧବ ବୋହୂ) ସମାନ ଭାବରେ ବନ୍ଧା । ସକଳ ଜୀବଙ୍କର କର୍ମଫଳ ହିସାବ ରଖୁଥିବା ଓ କର୍ମଫଳ ସମୟ ଦେଖି ପ୍ରଦାନ କରୁଥିବା ଶାଳଗ୍ରାମରେ ଲୁଚି ଥିବା ପରମେଶ୍ୱର ନାରାୟଣ କିନ୍ତୁ ସ୍ୱତନ୍ତ୍ର । ସେ କର୍ମଫଳରେ ବନ୍ଧା ନୁହନ୍ତି । ସେଇ ନାରାୟଣଙ୍କର ପ୍ରତ୍ୟକ୍ଷ ପ୍ରତିନିଧି ମହାମାୟା ପ୍ରକୃତି । ତାଙ୍କୁ ଆପଣ ଯମୁନା ନଦୀ, ଗୋବର୍ଦ୍ଧନ ପର୍ବତ, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ସବୁଜ ଘାସ, ଯେଉଁ ନାମରେ ବୁଝନ୍ତୁ ।

ଅସତୀ ସ୍ତ୍ରୀ ପତି ଆଶ୍ରୟ ଛାଡ଼ି ପର ପୁରୁଷ ଆଶ୍ରୟ କଲେ ହୀନ ଅବସ୍ଥା ହୁଏ ଅସଲରେ ଆମ ଜୀବିକା ପାଳୁଥିବା ଶକ୍ତି/ବ୍ୟକ୍ତିକୁ ଅବହେଳା କରି ଅନ୍ୟକୁ ପୂଜିଲେ ଅପରାଧ ହୁଏ । ବେଦ ପ୍ରଦର୍ଶିତ ବର୍ଣ୍ଣ ଧର୍ମ, ଆଶ୍ରମ ଧର୍ମରେ ଆମେ ଚଳିବା ଉଚିତ । କୃଷି, ଗୋରକ୍ଷା, ବାଣିଜ୍ୟ, କୁସୀଦ (କରଜ ଦେଇ ସୁଧ ନେବା) ଆମର ବୃତ୍ତିଗତ ଧର୍ମ । ଆମମାନଙ୍କର ନିୟନ୍ତଣକାରିଣୀ ପ୍ରକୃତି ସତ୍ତ୍ୱ-ରଜ-ତମୋ ଗୁଣରେ ପାଳନ-ସୃଷ୍ଟି-ସଂହାର କରିବା ବିଲକୁଲ ସତ୍ୟ । ତାଙ୍କରି ନିର୍ଦ୍ଦେଶରେ ଇନ୍ଦ୍ର ରଜୋଗୁଣ ପ୍ରେରିତ ହୋଇ ବର୍ଷା କରୁଛନ୍ତି । ବର୍ଷା କରିବା ନ କରିବା ତାଙ୍କ ଇଚ୍ଛାଧୀନ କର୍ମ ବା ଦୟା ନୁହେଁ । ଆମ ଘର ଏବେ ନା ସହରରେ ନା କୌଣସି ବଡ଼ ବିତ୍ତଶାଳୀ ନଗର ମଧ୍ୟରେ । ବନ-ପର୍ବତ-ଚାରଣଭୂମି ଆମର ବାସସ୍ଥାନ ।" ଅତଏବ ଶ୍ରୀକୃଷ୍ଣ ଏସବୁ ପିତାଙ୍କୁ ବୁଝାଇ ନିଜ ଆଡୁ କ'ଣ କରିବାକୁ ପ୍ରସ୍ତାବ ଦେଲେ ?

**ତସ୍ମାତ୍ ଗବାଂ ବ୍ରାହ୍ମଣାନାଂ ଅଦ୍ରେଃ ଚ-ଆରଭ୍ୟତାମ୍ ମଖଃ ।**
**ଯେ ଇନ୍ଦ୍ରଯାଗ ସମ୍ଭାରାଃ ତୈଃ ଅୟଂ ସାଧ୍ୟତାଂ ମଖଃ ॥୨୫॥**

ଉ. ଭଗବାନ କହିଲେ, "ଇନ୍ଦ୍ରଯାଗ ନିମିତ୍ତ ଯେଉଁ ଯଜ୍ଞ ଦ୍ରବ୍ୟ ସଂଗୃହୀତ ହୋଇଛି, ସେ ସବୁର ସଦୁପଯୋଗ କରାଯାଉ । ଗୋ (ଗବାଂ), ବ୍ରାହ୍ମଣ, ଗିରିରାଜ ଗୋବର୍ଦ୍ଧନଙ୍କ ପୂଜନ କରି । ତାହା ହିଁ ଆମ ପାଇଁ ହେବ ଉଚିତ ସ୍ୱଧର୍ମପାଳନ ରୂପକ ଯଜ୍ଞ(ମଖ) ବା ନିଷ୍କାମ କର୍ମଯୋଗ ଅନୁଷ୍ଠାନ । ଯାହା ଫଳରେ ଆମର ସ୍ୱର୍ଗସୁଖ ଭୋଗ ଲାଳସା ଦୂରହେବ । ମୁକ୍ତି-ଭକ୍ତିର ବାଟ ଫିଟିଯିବ ଆମ ଲାଗି ।

ଆମେ ଅନ୍ନ, ପାୟସ, ସୁସ୍ୱାଦୁ ବ୍ୟଞ୍ଜନ ପ୍ରସ୍ତୁତ କରିବା । ବ୍ରାହ୍ମଣମାନଙ୍କୁ ଡ଼କାଇ ଯଜ୍ଞ କିମ୍ବା ହୋମଟିଏ କରି ଅଗ୍ନି ଦେବତାଙ୍କୁ ଆହୂତି ଦେବା ଆମ ସଂଗୃହୀତ ଗୋ ଘୃତ ଦ୍ୱାରା । ବ୍ରାହ୍ମଣମାନଙ୍କୁ ପେଟପୁରା ଭୋଜନ ଦେବା, ଦକ୍ଷିଣା ରୂପେ

ଗୋଦାନ କରିବା । କୁକୁର, ଚାଣ୍ଡାଳ, ପତିତ ମାନଙ୍କୁ ଅନ୍ନ ବ୍ୟଞ୍ଜନ ଆଦି ଦ୍ୱାରା ତୃପ୍ତ କରିବା । ଗାଈମାନଙ୍କୁ ସବୁଜ ଘାସ ଓ ସର୍ବୋପରି ଗୋବର୍ଦ୍ଧନ ପର୍ବତକୁ ଭେଟି ଉପହାର ଶୁଦ୍ଧ ଚିତ୍ତରେ ସମର୍ପଣ କରି ପୂଜନ କରିବା ।''

ପ୍ରଶ୍ନ-୧୭: ଭଗବାନଙ୍କର ଏ ସରଳ ଅଥଚ ତାତ୍ତ୍ୱିକ ପ୍ରବଚନକୁ ବୁଝିପାରି ସରଳ ହୃଦୟ ବ୍ରଜବାସୀମାନେ କ'ଣ ଖୋଲା ମନରେ ତାଙ୍କ କଥା ଗ୍ରହଣ କରିଗଲେ ?

**ସୁ-ଅଳଂକୃତା ଭୁକ୍ତବନ୍ତଃ ସୁ-ଅନୁଲିପ୍ତା ସୁବାସସଃ ।**
**ପ୍ରଦକ୍ଷିଣାଂ ଚ କୁରୁତ ଗୋ ବିପ୍ର-ଅନଳ ପର୍ବତାନ୍ ॥୨୯॥**

ଉ. ନନ୍ଦ ଆଦି ଗୋପାଳମାନଙ୍କ ଉତ୍ସାହ ଦେଖି ଭଗବାନ ପୁଣି କହିଲେ, ''ନାରୀ-ପୁରୁଷ-ବୃଦ୍ଧ-ଯୁବକ-ବାଳକ-ବାଳିକା ସମସ୍ତେ ସୁନ୍ଦର ପୋଷାକ ପିନ୍ଧି ଆସ । ଗହଣା ଗାଣ୍ଠିରେ ସଜ ହୁଅ । ଭରପେଟ ଭୋଜନ କର (ଭୁକ୍ତ ବନ୍ତଃ) । ଗୋଗୋଷ୍ଠ, ବ୍ରାହ୍ମଣ ସମାଜ, ଅଗ୍ନିକୁଣ୍ଡ ଓ ଗିରିରାଜ ଗୋବର୍ଦ୍ଧନଙ୍କର ପରିକ୍ରମା କର । ଗୋବର୍ଦ୍ଧନଙ୍କୁ ପ୍ରଥମେ ସ୍ନାନ କରାଇ ପରେ ପୂଜା କର ।

ସେତେବେଳେ ବ୍ରଜଧାମରେ ଜଳର ଘୋର ଅଭାବ ଥାଏ । ଗୋବିନ୍ଦ ତାଙ୍କ ଯୋଗ ଶକ୍ତି ଦ୍ୱାରା ମାନସୀଗଙ୍ଗା ପ୍ରକଟ କଲେ । ଗୋବର୍ଦ୍ଧନଙ୍କ ସ୍ନାନ କର୍ମ ହେଲା । ଗୋପାଳମାନେ ସାଧୁ ସାଧୁ କହି ଉଚ୍ଚସ୍ୱରରେ ଗୋବିନ୍ଦଙ୍କୁ ଅଭିନନ୍ଦନ କଲେ । ତାଙ୍କ ପ୍ରସ୍ତାବକୁ ଆଦେଶମାନି ଗୋପୀ ଗୋପାଳମାନେ ସବୁ କଥା ଅକ୍ଷରେ ଅକ୍ଷରେ ପାଳନ କଲେ । ବିନା ସଂକୋଚ ବିନା ଦ୍ୱିଧାରେ ।

ଗୋପାଳୁଣୀ ମାନେ ସାନ ସାନ ଛୁଆମାନଙ୍କୁ ଧରି କୃଷ୍ଣ ମହିମା, କୃଷ୍ଣ ଗୁଣ, କୃଷ୍ଣ ନାମ, ଲୀଳା ଗାନ କରି କରି ବଳଦଗାଡ଼ି ମାନଙ୍କରେ ବସି ଓ ଗୋପାଳମାନେ ଚାଲି ଚାଲି ଗିରରାଜ ପରିକ୍ରମା କଲେ । ସମସ୍ତଙ୍କ ମନ ଆନନ୍ଦ ସାଗରରେ ଉବୁଟୁବୁ କୃଷ୍ଣ ପ୍ରେମରେ ଗୋଟାସୁଦ୍ଧା ଜୁଡୁବୁଡୁ ହେଲା ।

ପ୍ରଶ୍ନ-୧୮: ଭଗବାନ୍ କଥା ଦେଇଥିଲେ ନନ୍ଦଙ୍କୁ ଯେ ଗୋବର୍ଦ୍ଧନ ପର୍ବତକୁ ଶ୍ରଦ୍ଧା ଭକ୍ତି ବିଶ୍ୱାସ ସହିତ ପୂଜନ କଲେ ସେ ସ୍ୱୟଂ ପ୍ରକଟ ହୋଇ ବଳି, ଉପହାର, ଭୋଜନ ଆଦି ନିଶ୍ଚୟ ଗ୍ରହଣ କରିବେ ବୋଲି । ଗୋପୀ ଗୋପାଳଙ୍କ ପୂଜାରେ ଗିରିରାଜ କ'ଣ ଅଡୁଆ ପରିସ୍ଥିତିରେ ପଡ଼ିଯାଇଥିଲେ କି ?

ଶ୍ରୀଶୁକ ଉବାଚ

**କୃଷ୍ଣ ତୁ-ଅନ୍ୟତମଂ ରୂପଂ ଗୋପ ବିଶ୍ରମ୍ଭଣଂ ଗତଃ ।**
**ଶୈଳୋଽସ୍ମି-ଇତି ବ୍ରୂବନ୍ ଭୂରି ବଳିଂ ଆଦତ୍ ବୃହତ୍ ବପୁଃ ॥୩୫॥**

ଉ. ଆଦୌ ନୁହେଁ । ସାତବର୍ଷର ବାଳକ କୃଷ୍ଣ ଏଠାରେ ତାଙ୍କର ଦେଖିଲା କାମ କଲେ । ଗୋଟିଏ ରୂପରେ ସେ ଗୋପାଳ ମେଳରେ ରହିଲେ । ଏକ ସମୟରେ ଅନ୍ୟ ନିଜେ ମଧ୍ୟ ରୂପରେ ସେ ବିରାଟ ରୂପ (ବୃହତ୍ ବପୁଃ) ଧାରଣ କରି ଗିରିରାଜଙ୍କ ଗୁମ୍ଫାରେ ଏକ ମୁଖ ଖୋଲି ଖାଇବାକୁ ମାଗିଲେ । ସେ ନିଜେ ଭୋଜନ ଦ୍ରବ୍ୟ । ନିଜେ ଖାଦକ । ନିଜେ ପୂଜାରୀ । କାରଣ ସେ ବିଶ୍ୱମୟ, ବିଶ୍ୱରୂପ ଓ ବିଶ୍ୱାତ୍ମା ।

ଆଜି ସେହି ସ୍ଥଳକୁ ଗୋବର୍ଦ୍ଧନ ପରିକ୍ରମାବେଳେ କୃଷ୍ଣଭକ୍ତମାନେ ମୁଖାରବିନ୍ଦ ବୋଲି ମନ୍ଦିରରେ ଦର୍ଶନ କରି ଦୁଧ-ମିଶ୍ରି-ପୁଷ୍ପ ଉପହାର ଭୋଗ ଲଗାଇ ବୃନ୍ଦାବନ ଦର୍ଶନ ପୂର୍ବକ ଜୀବନ ସାର୍ଥକ କରନ୍ତି । ବ୍ରଜବାସୀଙ୍କ ଶ୍ରଦ୍ଧା ବିଶ୍ୱାସର ପାତ୍ର ହେବା ପାଇଁ (ଗୋପ ବିଶ୍ରମ୍ଭଣଂ) ସେ ଲୁଚେଇ ଲୁଚେଇ ନିଜର ଐଶ୍ୱର୍ଯ୍ୟ ଶକ୍ତି ପ୍ରକଟନ କଲେ । ଅନ୍ନ, ବ୍ୟଞ୍ଜନ, ଛପନ ଭୋଗ, ଫୁଲ, ଫଳ, ବସ୍ତ୍ର, ଅଳଙ୍କାର ସବୁକୁ ଆତ୍ମସାତ କଲେ ଠାକୁରଜୀ । ସେଇ ଦିନକୁ ସ୍ମରଣ ରଖିବାକୁ ସେହିଦିନଠାରୁ ଆଜି ଯାଏଁ ଏହି ଦିବସକୁ ବ୍ରଜଧାମରେ ଅନ୍ନକୂଟ (ପର୍ବତ) ମହୋତ୍ସବ ବୋଲି ପାଳନ କରାଯାଇ ଆସୁଛି । କାର୍ତ୍ତିକ ମାସରେ ଏବେ ମଧ୍ୟ ଭାରତର ଗାଁ ଗଣ୍ଡା ମାନଙ୍କରେ ଏ ପର୍ବ ପାଳିତ ହୁଏ । ଭକ୍ତମାନଙ୍କୁ ଆନନ୍ଦ ଦେବାକୁ ସେ ଆଜି ପୂଜ୍ୟ ଓ ପୂଜାରୀ ମଧ୍ୟ ହୋଇଛନ୍ତି । ଗୋପୀ, ଗୋପାଳଙ୍କ ସାଙ୍ଗରେ ସେ ଆଜି ନିଜେ ମଧ୍ୟ ଗିରିରାଜଙ୍କୁ ସଭକ୍ତିକ ପ୍ରଣାମ କଲେ । ଆଶୀର୍ବାଦ ଭିକ୍ଷା କଲେ । କହିଲେ, ‘‘ହେ, ଗୋବର୍ଦ୍ଧନ ପର୍ବତ, ତୁମ ଆଶ୍ରିତ ସାପ, ବିଛା, ବାଘ ସିଂହ, ପଶୁ, ପକ୍ଷୀ, ବୃକ୍ଷଲତା, ଗୁଳ୍ମ ଆଦି ସହିତ ସକଳ ବ୍ରଜବାସୀଙ୍କୁ ଓ ତାଙ୍କ ଗୋଧନକୁ ଅମୃତ ଦୃଷ୍ଟିରେ ଚାହିଁଥାଅ । ଆମ୍ଭମାନଙ୍କୁ ଇନ୍ଦ୍ରପୂଜା କରାଇ ଭୋଗ ଅଭିମୁଖୀ ନ କରାଇ ଈଶ୍ୱରାଭିମୁଖୀ କରାଅ । ସର୍ବତୋଭାବେ ଆମ ଧନ, ଜୀବନ ରକ୍ଷା ହେଉ, ହରି ପ୍ରେମ ଆମ ଅନ୍ତଃକରଣରେ ଜାଗ୍ରତ ହେଉ ।’’

ମହାସମାରୋହରେ ଗିରିରାଜ ପୂଜନ ସହିତ ଅନ୍ନକୂଟ ମହୋତ୍ସବ ପାଳନ ପର୍ବର ଇତିହେଲା । ଗୋଗୋଷ୍ଠ ଓ ବ୍ରାହ୍ମଣମାନଙ୍କୁ ଧରି ନିଜ ବାସସ୍ଥାନମାନଙ୍କୁ ବ୍ରଜବାସୀମାନେ ଫେରି ଆସିଲେ ।

# ଅଥ ୨୫ଶ ଅଧ୍ୟାୟଃ

## (ଗିରିରାଜ ଗୋବର୍ଦ୍ଧନ ଧାରଣ ଲୀଳା)

ପ୍ରଶ୍ନ-୧୯ : ଶ୍ରୌତ, ସ୍ମାର୍ତ୍ତ ଯଜ୍ଞରେ ଯେଉଁ ଆହୂତି, ଭେଟ ଆଦି ଅଗ୍ନିଙ୍କୁ ସମର୍ପଣ କରାଯାଏ ବାସ୍ତବରେ ସେ ସବୁ ଯଜ୍ଞ ଭୋକ୍ତା ନାରାୟଣଙ୍କ ଲାଗି ଉଦ୍ଦିଷ୍ଟ । ଦୁର୍ଭାଗ୍ୟ ବଶତଃ ଦେବତାମାନେ ଏହାକୁ ନିଜର ପ୍ରାପ୍ୟ ବୋଲି ଭାବି ଅଯଥା ଅହଂକାରର ଶିକାର ହୁଅନ୍ତି । ଭଗବାନଙ୍କ ଠାରୁ ଦଣ୍ଡ ମୁଳାନ୍ତି । ଦେବରାଜ ଇନ୍ଦ୍ରଙ୍କର ସେଇ ଅବସ୍ଥା ହୋଇଥିଲା ସେତେବେଳେ । ନନ୍ଦ ରାଜାଙ୍କ ଦ୍ୱାରା ଇନ୍ଦ୍ରପୂଜା ବନ୍ଦ ହୁଅନ୍ତେ ଇନ୍ଦ୍ର କ୍ରୋଧର ଶିକାର ହୋଇ ଗୋପାଳଙ୍କ ସହିତ ଗୋବିନ୍ଦଙ୍କୁ କ'ଣ ମନେ କଲେ ?

ଶ୍ରୀଶୁକ ଉବାଚ

**ବାଚାଳଂ ବାଳିଶଂ ସ୍ତବ୍ଧଂ ଅଜ୍ଞଂ ପଣ୍ଡିତମାନିନମ୍ ।**
**କୃଷ୍ଣଂ ମର୍ତ୍ତ୍ୟଂ ଉପାଶ୍ରିତ୍ୟ ଗୋପା ମେ ଚକ୍ରୁଃ ଅପ୍ରିୟମ୍ ॥୫॥**

ଉ. ସ୍ୱର୍ଗରେ ଥାଇ ଦେବରାଜ ଇନ୍ଦ୍ର ଘୋଷଣା କଲେ ଯେ ବ୍ରଜବାସୀମାନେ ମୋ ପୂଜନ ବନ୍ଦ କରି ଅପରାଧ (ଚକ୍ରୁଃ ଅପ୍ରିୟଂ) କରିଛନ୍ତି । ମୁଁ ଦେବତା । ମୋ ପୂଜା କରି ନାହାନ୍ତି । କୃଷ୍ଣ ଛାର ମନୁଷ୍ୟ ଅଟେ । ତା ବୋଲରେ ପଡ଼ି ତା କଥା ମାନିଲେ । କୃଷ୍ଣ ପାଗଳ (ବାଚାଳଂ), ମୂର୍ଖ (ବାଳିଶଂ), ଉଦ୍ଧତ (ସ୍ତବ୍ଧଂ) ଅଜ୍ଞ ହୋଇ ମଧ୍ୟ ନିଜକୁ ବିଜ୍ଞ ମାନୁଥିବା ଜଣେ ସାଧାରଣ ମରଣଶୀଳ ମନୁଷ୍ୟ ।

ଇନ୍ଦ୍ର ତାଙ୍କର ସହକର୍ମୀ ଦେବତାମାନଙ୍କୁ ଡ଼ାକି ଆଦେଶ ଦେଲେ ଯେ ସେମାନେ ତୁରନ୍ତ ବ୍ରଜଧାମକୁ ଯାଇ ଐଶ୍ୱର୍ଯ୍ୟଗର୍ବୀ କୃଷ୍ଣ ସହିତ ସକଳ ଗୋପାଳଙ୍କୁ ବର୍ଷା, ବିଜୁଳି, ପବନ ଦ୍ୱାରା ଆକ୍ରମଣ କରି ସେମାନଙ୍କ ପଶୁଧନ, ଗୋଧନ, ଧନ ସଂପତ୍ତିର ଉଜାଡ଼ବସ୍ତ କରନ୍ତୁ । ସେ ମଧ୍ୟ ତୁରନ୍ତ ଐରାବତ ପିଠିରେ ବସି ଘଟଣାସ୍ଥଳକୁ ବିଜେ କଲେ । ଆଗେ ଆଗେ ଧାଇଁଲେ ଇନ୍ଦ୍ରଙ୍କ ଚାରି ସେନାପତି ଆବର୍ତ୍ତକ, ସମ୍ବର୍ତ୍ତକ, ଦ୍ରୋଣ ଓ ପୁଷ୍କର ଚାରିମେଘ ସାଙ୍ଗରେ ବିଜୁଳି, ପବନ, ବଜ୍ରପାତ ଆଦି ଧ୍ୱଂସକାରୀ ଶକ୍ତିମାନଙ୍କୁ ଧରି । ଭୟଙ୍କର ବର୍ଷା, ମେଘ ଘଡ଼ଘଡ଼ି, କୁଆପଥର ବର୍ଷାରେ ଅତିଷ୍ଠ ହେଲେ ଗୋପାଳମାନେ । ମୂଷଳ ଧାରାରେ ବର୍ଷା ହେଲା । ମେଘ ଅନ୍ଧାରରେ ଆକାଶ

ଦିଶୁ ନଥାଏ । ଜଳ ପ୍ରାବଲ୍ୟରେ ଭୂମି ଖାଲ, ଢ଼ିପ କିଛି ବାରିହେଉ ନଥାଏ ।

ପ୍ରଶ୍ନ-୨୦: ସଙ୍ଗେ ସଙ୍ଗେ ବ୍ରଜବାସୀମାନେ ଶରଣ ପଶିଲେ ଗୋକୁଳନାଥ ଶ୍ରୀକୃଷ୍ଣଙ୍କ ପାଖରେ । ଅତ୍ୟନ୍ତ କାତର ହୋଇ ତାଙ୍କ ପାଖରେ ନିଜ ନିଜର ଦୁଃଖ ନିବେଦନ କଲେ । ପ୍ରତିକାରର ଉପାୟ ଲୋଡ଼ିଲେ । ଭଗବାନ ସ୍ୱୟଂ ସକଳ କାରଣର କାରଣ ପରମକାରଣ । ସେ ବ୍ରଜବାସୀମାନଙ୍କର ଦୁଃଖ କାରଣ କଅଣ ବୋଲି କହିଲେ ?

**ଅପ-ଋତୁ-ଉଲ୍ବଣଂ ବର୍ଷଂ ଅତିବାତଂ ଶିଳାମୟମ୍ ।**
**ସ୍ୱ ଯାଗେ ବିହତେଽସ୍ମାଭିଃ ଇନ୍ଦ୍ରୋ ଯଶାୟ ବର୍ଷତି ॥୧୫॥**

ଉ. ଭଗବାନ ଧ୍ୟାନରେ ନିଜ ମଧ୍ୟରେ କାରଣ ଦେଖିନେଲେ । କହିଲେ, ‘‘ଏହା ବାସ୍ତବରେ ବର୍ଷା ଋତୁ ନୁହେଁ । ଏକ ଅପ-ଋତୁ । ତଥାପି ଅତି ବର୍ଷା(ଉଲ୍ବଣଂ ବର୍ଷଂ), ବାତ୍ୟା, କୁଆପଥର ବୃଷ୍ଟି ଇତ୍ୟାଦିର ଅନିଷ୍ଟ କର୍ମର କାରଣ ଇନ୍ଦ୍ରଯାଗ ବନ୍ଦ ହେତୁ ଇନ୍ଦ୍ରଙ୍କ କ୍ରୋଧର ପରିଣାମ ।

ପ୍ରଶ୍ନ-୨୧: ଭଗବାନ ଦେଖିଲେ ଇନ୍ଦ୍ର ଦେବତା ହୋଇ କ୍ରୋଧ, କାମ ଆଦିର ଶିକାର ହେଲେ ମଧ୍ୟ ସେଇ ଇନ୍ଦ୍ର ତାଙ୍କରି ସନ୍ତାନ । ତାଙ୍କର ଅଯଥା ଅଭିମାନ ଦୂର କରି ତାଙ୍କୁ ବାଟକୁ ଆଣିବା ମଧ୍ୟ ତାଙ୍କର କର୍ତ୍ତବ୍ୟ । ଅନ୍ୟପକ୍ଷରେ ବ୍ରଜବାସୀମାନେ ମଧ୍ୟ ତାଙ୍କର ପ୍ରିୟ ଭକ୍ତ । ସମସ୍ତଙ୍କ କଲ୍ୟାଣ ଲାଗି ଠାକୁରଜୀ ସେତେବେଳେ କେଉଁ ଦିବ୍ୟ ଐଶ୍ୱର୍ଯ୍ୟ ଲୀଳା ପ୍ରଦର୍ଶନ କରିଥିଲେ ?

**ଇତି-ଉକ୍ତ୍ୱା-ଏକେନ ହସ୍ତେନ କୃତ୍ୱା ଗୋବର୍ଦ୍ଧନ-ଅଚଳମ୍ ।**
**ଦଧାର ଲୀଳୟା କୃଷ୍ଣଃ ଛତ୍ରାକଂ ଇବ ବାଳକଃ ॥୧୯॥**

ଉ.କର୍ମକାଣ୍ଡୀ, ଜ୍ଞାନକାଣ୍ଡୀ ସମସ୍ତେ ଭଗବାନଙ୍କ ଶରଣାଗତିକୁ ଭାରି ଭୟ କରନ୍ତି । ପୁରୁଷାର୍ଥ ସର୍ବସ୍ୱ ସେମାନେ । ନିଜର ଅଯଥା ଅହଂକାରକୁ ଧରି ବସନ୍ତି । ଈଶ୍ୱର ଶରଣାଗତିକୁ ଭୀରୁତା କହି ହସନ୍ତି । ତଥାପି ସାମାନ୍ୟତମ ବିପଦ ପଡ଼ିଲେ ସେମାନେ ବ୍ୟସ୍ତ ହୋଇ ପଡ଼ନ୍ତି । ପୁରୁଷାର୍ଥ ବଦଳରେ ଭଗବତ ଶରଣାଗତିରେ ଜୀବ କିଭଳି ନିଶ୍ଚିନ୍ତ ହୁଏ ତାର ଏକ ମନୋଜ୍ଞ ଦୃଷ୍ଟାନ୍ତ ଏହି ଗୋବର୍ଦ୍ଧନ ଧାରଣ ଲୀଳା ।

ସାତବର୍ଷର ବାଳକ ଠାକୁରଜୀ । ସାତ କୋଶ ବିସ୍ତାର ଏ ପର୍ବତ । ସାତଦିନ ଧରି ଅକ୍ଲେଶରେ (ଲୀଳୟା) ଛତାଖଣ୍ଡେ କେଜି ସ୍କୁଲ ପିଲା ଧରିବା ଭଳି ତାଙ୍କ କୁନି କୁନି ହାତରେ ଟେକି ଧରିଲେ ଭଗବାନ । ଏବେ ସେ କାହ୍ନୁଆ କି ଗୋପାଳିଆ,

ନନ୍ଦନନ୍ଦନ ନୁହନ୍ତି । ସେ ଯେ ଏବେ ମାୟାଧୀଶ ସ୍ୱୟଂ ନାରାୟଣ ଭଗବାନ । ଡ଼ାକ ଛାଡ଼ିଲେ ଶରଣାଗତ ଭକ୍ତଗଣଙ୍କୁ । ଅଭୟ ପ୍ରଦାନ କରି କରି କହିଲେ, ‘‘ହେ, ବ୍ରଜବାସୀଗଣ, ଇନ୍ଦ୍ରଙ୍କୁ ଆଦୌ ଡ଼ର ନାହିଁ । ପର୍ବତ ତଳେ ନିର୍ଭୟରେ ରହିଯାଅ । ଇନ୍ଦ୍ରଙ୍କ ବଦହାଲ ବା ଦୁରାବସ୍ଥା ଏବେ ସ୍ୱଚକ୍ଷୁରେ ଦେଖ ସମସ୍ତେ ।’’

ସେମାନେ ତୁରନ୍ତ ଆସି ପର୍ବତ ତଳେ କ୍ଷୁଧା ତୃଷା ଭୁଲି ସାତ ଦିନ ସାତ ରାତି ରହିଗଲେ । ଗୋବିନ୍ଦଙ୍କ ଯୋଗଶକ୍ତିର ପ୍ରଭାବ ଦେଖି ଗୋପୀ ଗୋପାଳ ସଭିଏଁ ହେଲେ ଆଚମ୍ବିତ । ଏଥର ଇନ୍ଦ୍ର ପହଞ୍ଚିଲେ ଘଟଣାସ୍ଥଳରେ । ଦେଖିଲେ ସାତଦିନର ସକଳ ପ୍ରଳୟଙ୍କରୀ ବର୍ଷା ବିପର୍ଯ୍ୟୟ ସତ୍ତ୍ୱେ ବୃନ୍ଦାବନରେ ଧୂଳି ଉଡୁଛି । ଚକ୍ରଧାରୀ ଭଗବାନଙ୍କ ସୁଦର୍ଶନ ଚକ୍ର ସକଳ ବିପଦ ଆପଦକୁ ଆଢୁଆଳ କରି ସ୍ୱୟଂ ବର୍ଷା ଜଳକୁ ଶୁଷ୍କ କରିବାକୁ ବିଦ୍ୟମାନ । ଏବେ ବୁଝିଗଲେ ଇନ୍ଦ୍ର ନିଜର ଅଯଥା ଅହଂକାରର ପରିଣାମ । ନିଜପଟୁ ଏକ ତରଫା ଯୁଦ୍ଧ ବନ୍ଦ ଘୋଷଣା କଲେ । ବ୍ରଜବାସୀମାନେ ବାହାରକୁ ଆସି ଦର୍ଶନ କଲେ ସ୍ୱୟଂ ଇନ୍ଦ୍ରଦେବତା (ଅନ୍ୟାନ୍ୟ ଦେବଗଣଙ୍କ ସହିତ) ଆସି ଐରାବତ ପିଠିରେ ଉପସ୍ଥିତ । ଠାକୁରଜୀ ଗିରିରାଜଙ୍କୁ ନିଜ ସ୍ଥାନରେ ସ୍ଥାପନ କରି ସାମନା କଲେ ଦେବରାଜ ଇନ୍ଦ୍ରଙ୍କର । ଏଣେ ଗୋପୀ ଗୋପାଳମାନେ ହରିବୋଲ ହୁଳହୁଳି ସହିତ ଜୟ ଧ୍ୱନି କରି ଗଗନ ପବନ କମ୍ପମାନ କରୁଥାନ୍ତି ।

ନନ୍ଦ, ଯଶୋଦା, ରୋହିଣୀ ଧାଇଁ ଆସି ଆଉଁଷି ପକାଇଲେ ଗୋବିନ୍ଦଙ୍କ ହାତ ଗୋଡ଼ । କାଳେ ପୁଅକୁ ବାଧକା ଲାଗିଥିବ । ଉପସ୍ଥିତ ଅପ୍‌ସରାଙ୍କ ନୃତ୍ୟ, ଗନ୍ଧର୍ବ କିନ୍ନରଙ୍କ ଦୁନ୍ଦୁଭି ଆଦି ବାଜଣା ସହିତ ସାମବେଦର ସଙ୍ଗୀତ ଗାନ ପରିସ୍ଥିତିକୁ ଆହୁରି ମନୋରମ କରିଦେଲା । ଯୋଗାମୟା ଏବେ ଲୀଳା ଶକ୍ତିକୁ ପ୍ରକଟ କଲେ । ଐଶ୍ୱର୍ଯ୍ୟ ଶକ୍ତି ଲୁଚିଗଲେ । ଗୋପୀଗୋପାଳଙ୍କ ମୁଖରେ ସେଇ ଗୋଟିଏ କଥାର ଆଲୋଚନା । କହ୍ନେୟାକୁ କେଉଁ ଭୂତ ଆକ୍ରମଣ କରିଥିବ ନିଶ୍ଚୟ । ନଚେତ ପିଲା ବକଟେ ଏତେ ବଡ଼ ପର୍ବତଟାକୁ ଉଠାନ୍ତା କେମିତି !!!

## ଅଥ ୨୬ଶ ଅଧ୍ୟାୟଃ

### (ଶ୍ରୀକୃଷ୍ଣଙ୍କର ଅଲୌକିକ ଶକ୍ତିର ପ୍ରଶଂସା)

ପ୍ରଶ୍ନ-୨୨ : ସାତବର୍ଷ ବୟସରେ ସାତ କୋଶ ବ୍ୟାପୀ ଗୋବର୍ଦ୍ଧନ ପର୍ବତକୁ ସାତଦିନ ଧରି ଅଙ୍ଗୁଳି ଅଗ୍ରରେ (ହାତୀଟିଏ ଶୁଣ୍ଢରେ ପଦ୍ମଫୁଲକୁ ଧରିବା ଭଳି) ଧାରଣ କରିବା ନିଶ୍ଚିତ ଭାବେ ଲୌକିକ କାର୍ଯ୍ୟ ନୁହେଁ । ବ୍ରଜବାସୀମାନେ ନନ୍ଦଙ୍କ ପାଖକୁ ଯାଇ (ସମଭ୍ୟେତ୍ୟ) ଏ ଆଶ୍ଚର୍ଯ୍ୟ କଥାକୁ କିଭଳି ଉପସ୍ଥାପନ କଲେ ?

ଶ୍ରୀ ଶୁକ ଉବାଚ

**ଏବଂ ବିଧାନି କର୍ମାଣି ଗୋପାଃ କୃଷ୍ଣସ୍ୟ ବୀକ୍ଷ ତେ ।**
**ଅତଦ୍‌ବୀର୍ଯ୍ୟ ବିଦଃ ପ୍ରୋଚୁଃ ସମଭ୍ୟେତ୍ୟ ସୁବିସ୍ମିତାଃ ॥୧॥**

ଉ. ଗୋପବାସୀମାନେ ଶ୍ରୀକୃଷ୍ଣ ଯେ ସ୍ୱୟଂ ସର୍ବଶକ୍ତିମାନ ଭଗବାନ ଏ କଥା ଜାଣିନଥିଲେ (ଅତଦ୍‌ବୀର୍ଯ୍ୟ କୋବିଦଃ) । ସେମାନେ ସମସ୍ତେ ବାଳ କୃଷ୍ଣଙ୍କୁ ନନ୍ଦ ରାଜାଙ୍କ ପୁତ୍ର ମାନୁଥିଲେ ।

ଜନ୍ମର ଛଅ ଦିନରେ ପୁତନା ଉଦ୍ଧାର, ୩ମାସରେ ଶକଟାସୁର, ବର୍ଷେ ନ ପୁରୁଣୁ ତୃଣାବର୍ତ୍ତ ଉଦ୍ଧାର ସହିତ ଯାମଳାର୍ଜୁନ ଉଦ୍ଧାର, ବକାସୁର, ବତ୍ସାସୁର, ଧେନୁକାସୁର ଉଦ୍ଧାର କରିବା ମହା ଅହି କାଳୀୟକୁ ଯମୁନା ନଦୀରୁ ହଟେଇ ଦେବା ଅଲୌକିକ ଲୀଳାର ରହସ୍ୟ ବୁଝିବା ବ୍ରଜବାସୀମାନଙ୍କ ବୁଦ୍ଧି, ବିଚାରରେ ପଶୁ ନଥାଏ ।

ପ୍ରଶ୍ନ-୨୩: ନନ୍ଦ ଥିଲେ ଗୋପର ରାଜା (ବ୍ରଜନାଥ) । ରାଜାଙ୍କ ପୁଅର ଉପରୋକ୍ତ ଅଲୌକିକ ଶକ୍ତିର ରହସ୍ୟ ଜାଣିବାରେ ସେମାନେ କାହିଁକି ଶଙ୍କା କଲେ ?

**କ୍ୱ ସପ୍ତହାୟନୋ ବାଳଃ କ୍ୱ ମହା-ଅଦ୍ରି ବିଧାରଣମ୍ ।**
**ତତୋ ନୋ ଜାୟତେ ଶଙ୍କା ବ୍ରଜନାଥ ତବ-ଆତ୍ମଜେ ॥୧୪॥**

ଉ. ରାଜା ପୁଅ ଅନ୍ୟମାନଙ୍କ ଠାରୁ ବଳବାନ ନିଶ୍ଚୟ ହେବ । ସେ ସିଂହ କି ବାଘ ଭାଲୁଟେ ମାରିପାରିବ କିନ୍ତୁ ସାତ ବର୍ଷରେ (ସପ୍ତହାୟନୋ) ଏତେ ବଡ଼ ଗୋବର୍ଦ୍ଧନ ଗିରିକୁ ଟେକି ପକାଇବା ତା ପକ୍ଷେ ସମ୍ଭବ ହୁଅନ୍ତା କିପରି ! !

ରାଜା ନନ୍ଦ ଦେଖିଲେ ଯେ କୃଷ୍ଣଙ୍କ ଅଲୌକିକ ଶକ୍ତି ରହସ୍ୟକୁ ଆଉ ଲୁଚାଇ ରଖିବା ଅସମ୍ଭବ । କାରଣ ପ୍ରଜାମାନେ ଆଉ କୃଷ୍ଣକୁ ତାଙ୍କ ନିଜ ପୁତ୍ର ବୋଲି ମାନିବାକୁ ନାରାଜ । ସେ ଆଉ କାହାର ପୁତ୍ର ବୋଲି କହିବେ ଏଥର । କଥାଟା ଭାରି ବାଧିଲା ନନ୍ଦଙ୍କୁ । ସେତେବେଳେ ସେ କହିଲେ ଯେ କୃଷ୍ଣ-ବଳରାମଙ୍କ ନାମକରଣ ସଂସ୍କାର ବେଳେ ଏଭଳି ଅଲୌକିକ ଐଶ୍ୱରୀକ ଶକ୍ତିର ପ୍ରଦର୍ଶନ କରିବେ ବୋଲି ଯଦୁବଂଶର ପୁରୋହିତ ଗର୍ଗମୁନି ପ୍ରକାଶ କରିଥିଲେ । କଂସ ଭୟରେ ସେ ଏକଥା ଗୋପନ ରଖିଥିଲେ । ଚାରି ଯୁଗରେ ଏଇ କୃଷ୍ଣ ଚାରି ବର୍ଣ୍ଣରେ ଚାରି ନାମରେ ଜନ୍ମ ନିଏ ଓ ଲୀଳା କରେ । ଅନେକ ଅସୁର ମାରେ । ମନୁଷ୍ୟ, ଋଷି ଦେବତାଙ୍କୁ ବିପଦରୁ ରକ୍ଷା କରେ । ଏ ପୂର୍ବେ କେବେ ବସୁଦେବଙ୍କ ପୁତ୍ର ହୋଇଥିଲା । ତେଣୁ ଲୋକେ ବାସୁଦେବ ନାମରେ ଏହାକୁ ହୁଏତ ଡ଼ାକି ପାରନ୍ତି ।

ପ୍ରଶ୍ନ-୨୪: କର୍ମ, ଗୁଣ, ଶକ୍ତି ଆଦିରେ କୃଷ୍ଣ ନାରାୟଣଙ୍କ ସହିତ ଅବଶ୍ୟ ତୁଳନୀୟ ହେବେ । ବିଷ୍ଣୁଙ୍କ ଭଳି ଏ କୃଷ୍ଣ ଅସୁର ଓ ଅତ୍ୟାଚାରୀ ଦେବୀ ଦେବତାଙ୍କ କବଳରୁ ଯଦୁବଂଶୀ ଓ ମନୁଷ୍ୟ ସମାଜକୁ ସର୍ବୋତୋ ଭାବେ ସଂରକ୍ଷଣ କରି ଯଦୁ କୁଳ ଉଜ୍ଜ୍ୱଳ କରିବେ । ଏସବୁ ଗର୍ଗମୁନି ପିଲା ଦୁହିଁଙ୍କ ଜାତକ ଗଣନା କରି ଦେଖିଛନ୍ତି ଓ ଲେଖିଛନ୍ତି ମଧ୍ୟ । ଦରକାର ପଡ଼ିଲେ ବ୍ରଜବାସୀମାନଙ୍କୁ ତାଙ୍କ ଜାତକ ଦେଖାଇବାକୁ ରାଜା ପ୍ରସ୍ତୁତ ବୋଲି କହିଲେ । ବ୍ରଜବାସୀମାନେ କ'ଣ ସେତେବେଳେ କୃଷ୍ଣଙ୍କ ଜାତକ ଦେଖିବାକୁ ଚାହିଁଲେ ?

ଶ୍ରୀ ଶୁକ ଉବାଚ

**ଇତି ନନ୍ଦବଚଃ ଶ୍ରୁତ୍ୱା ଗର୍ଗଗୀତଂ ବ୍ରଜ-ଓକସଃ ।**
**ମୁଦିତା ନନ୍ଦଂ ଆନର୍ଚ୍ଚୁଃ କୃଷ୍ଣଂ ଚ ଗତ ବିସ୍ମୟାଃ ॥୨୪॥**

ଉ. ବ୍ରଜବାସୀମାନଙ୍କର (ବ୍ରଜ-ଓକସଃ) ରାଜା ନନ୍ଦଙ୍କ କଥା ଓ ଜାତକ ଗଣନାକାରୀ ସେତେବେଳର ସର୍ବଶ୍ରେଷ୍ଠ ଜ୍ୟୋତିଷ ଭବିଷ୍ୟତ ବକ୍ତା ଗର୍ଗ ଆଚାର୍ଯ୍ୟଙ୍କ ନିର୍ଭୁଲ ଗଣନା ଉପରେ ଅଖଣ୍ଡ ବିଶ୍ୱାସ ଓ ଭରଷା ଥିଲା । ସୁତରାଂ ନନ୍ଦ ଓ ନନ୍ଦନନ୍ଦନ ଉଭୟଙ୍କୁ ସେମାନେ ଖୁସିରେ କୁଣ୍ଢେଇ ପକାଇଲେ । ବାପ ପୁଅଙ୍କୁ ମୁକ୍ତ କଣ୍ଠରେ ସେମାନଙ୍କର ସୌଭାଗ୍ୟ ଲାଗି ଅଭିନନ୍ଦନ କଲେ । କୃଷ୍ଣଙ୍କ ଜାତକ ଦେଖିବା କି ଦରକାର ସେମାନଙ୍କର ! ! ସେମାନେ ଏବେ କୃଷ୍ଣଙ୍କ ଶରଣାଗତ ଭକ୍ତ ।

## ଅଥ ୨୭ଶ ଅଧ୍ୟାୟଃ

### (ଭଗବାନଙ୍କର ଗୋବିନ୍ଦ ପଦରେ ଅଭିଷେକ ଓ ଇନ୍ଦ୍ର ସ୍ତୁତି)

ପ୍ରଶ୍ନ-୨୫: ଗୋବର୍ଦ୍ଧନ ଧାରଣ ଲୀଳା ସହିତ ଇନ୍ଦ୍ରଙ୍କ ଅଭିମାନ ମର୍ଦ୍ଦନ କଥା ପହଞ୍ଚିଲା ସ୍ୱର୍ଗଲୋକରେ । ଗୋବର୍ଦ୍ଧନ ପର୍ବତ ଲୀଳାସ୍ଥଳରେ ପହଞ୍ଚିଲେ ଗୋମାତା ସୁରଭୀ, ଗଙ୍ଗାଦେବୀ, ମୁନି ଋଷି, ଦେବୀ ଦେବଗଣଙ୍କ ସହିତ ବ୍ରହ୍ମାଜୀ, ସୂର୍ଯ୍ୟ, ଚନ୍ଦ୍ର, ବରୁଣ, କୁବେର, ଅଗ୍ନି ଆଦି ଦେବୀ ଦେବତାଙ୍କ ସହ ସେମାନଙ୍କ ରାଜା ଇନ୍ଦ୍ର । ଇନ୍ଦ୍ର କ'ଣ ଏତେ ଲୋକଙ୍କ ଆଗରେ ଶ୍ରୀକୃଷ୍ଣଙ୍କ ପାଖରେ କରିଥିବା ଅପରାଧ (କୃତ ହେଳନଃ) ସ୍ୱୀକାର କରିବାକୁ ପସନ୍ଦ କଲେ ?

ଶ୍ରୀଶୁକ ଉବାଚ

**ବିବିକ୍ତ ଉପସଙ୍ଗମ୍ୟ ବ୍ରୀଡ଼ିତଃ କୃତ ହେଳନଃ ।**
**ପସ୍ପର୍ଶ ପାଦୟୋଃ ଏନଂ କିରୀଟେନ-ଅର୍କ ବଚସା ॥୨॥**

ଉ. ବଡ଼ିଆ ମଜା କଥାଟେ ଘଟିଲା ବୋଲି ଶୁକଦେବଜୀ ଏଠାରେ ବର୍ଣ୍ଣନ କରିଛନ୍ତି । ଇନ୍ଦ୍ରଙ୍କ ଦେଦୀପ୍ୟମାନ ମୁକୁଟ (କିରୀଟ) ସୂର୍ଯ୍ୟଙ୍କ ତେଜ (ଅର୍କବଚସା) ଭଳି ଝଲସୁଥାଏ । ଲାଜ (ବ୍ରୀଡ଼ିତଃ) ମାଡୁଥାଏ ଇନ୍ଦ୍ରଙ୍କୁ । ଇନ୍ଦ୍ରଙ୍କ ବୟସ କୋଟି କୋଟି ବର୍ଷ । ସାତବର୍ଷର ବାଳକ ଭଗବାନ କୃଷ୍ଣ । ସୁତରାଂ ଏକାନ୍ତ ସ୍ଥାନକୁ(ବିବିକ୍ତ ଉପସଂଗମ୍ୟ) ତାଙ୍କୁ ଇନ୍ଦ୍ରଦେବ ଡ଼ାକିନେଲେ । ସଭକ୍ତିକ ପ୍ରଣାମ କଲେ ଠାକୁରଜୀଙ୍କ ଚରଣ କମଳରେ । ତାଙ୍କ ମସ୍ତକର ମୁକୁଟ ସବୁଦିନ ଲାଗି ଧନ୍ୟ ହୋଇଗଲା । ସେ ସ୍ଥାନ ଆଜିର ଗୋବିନ୍ଦ କୁଣ୍ଡ, କୃଷ୍ଣ ଭକ୍ତମାନଙ୍କର ଅବଶ୍ୟ ଦର୍ଶନୀୟ ।

ପ୍ରଶ୍ନ-୨୬: ଇନ୍ଦ୍ର ନିଜ କୃତ ଅପରାଧ ସ୍ୱୀକାର କରି ଭଗବାନଙ୍କ ପାଖରେ କ୍ଷମା ପ୍ରାର୍ଥନା କଲେ । ପ୍ରଜାମାନେ ଯଜ୍ଞ କରନ୍ତି ଯଜ୍ଞଭୋକ୍ତା ଭଗବାନଙ୍କୁ ପ୍ରସନ୍ନ କରିବା ନିମିତ୍ତ । ଇନ୍ଦ୍ରାୟ ସ୍ୱାହା ବୋଲି କହନ୍ତି କେବଳ ଇନ୍ଦ୍ରଙ୍କ ମାଧ୍ୟମରେ ତାହା ତାଙ୍କ ପାଖରେ ପହୁଞ୍ଚାଇବା ପାଇଁ । ଇନ୍ଦ୍ର ଭୁଲରେ ବୁଝି ବସିଥିଲେ ଲୋକେ ତାଙ୍କୁ ପୂଜା କରୁଛନ୍ତି । ଇନ୍ଦ୍ର ପୂଜା ନକଲେ ତାକୁ କ୍ରୋଧରେ ଦଣ୍ଡଦେବାକୁ ନିଷ୍ପତ୍ତି ନେବା

ବାସ୍ତବରେ ଇନ୍ଦ୍ରଙ୍କର ଅବିବେକିତା ଥିଲା । ଇନ୍ଦ୍ର ନିଜ ପଦମର୍ଯ୍ୟାଦା ରକ୍ଷା କରିବାକୁ ଏକାନ୍ତରେ ନିଜ ଦୋଷ ସ୍ୱୀକାର କରିବା କ'ଣ ତାଙ୍କ ପକ୍ଷେ ଉଚିତ ହେଲା ?

ଇନ୍ଦ୍ର ଉବାଚ

**ତ୍ୱୟା-ଈଶ-ଅନୁଗୃହତୋଽସ୍ମି ଧ୍ୱସ୍ତ ସ୍ତମ୍ଭୋ ବୃଥା-ଉଦ୍ୟମଃ ।**
**ଈଶ୍ୱରଂ ଗୁରୁଂ ଆତ୍ମାନଂ ତ୍ୱାଂଅହଂ ଶରଣଂ ଗତଃ ॥୧୩॥**

ଉ. ବଡ଼ ନାଟକୀୟ ଢ଼ଙ୍ଗରେ ଘଟୁଥାଏ ଏ ପର୍ବ । ଦେବତାଶ୍ରେଷ୍ଠ ଇନ୍ଦ୍ର କହିଲେ, 'ହେ, ଭଗବାନ (ଈଶ), ମୁଁ ଗୋ, ଗୋପାଳଙ୍କୁ ଦଣ୍ଡିତ କରିବାକୁ ଅଯଥା ଚେଷ୍ଟା କରିଛି । ତାହା ମୋର ଧୃଷ୍ଟତା ମାତ୍ର । ଆପଣ ମୋର ଅହଂକାର ନଷ୍ଟ ଭ୍ରଷ୍ଟ କରି (ଧ୍ୱସ୍ତ ସ୍ତମ୍ଭୋ) ମୋତେ ମୋ ଦୋଷ ଲାଗି ଦଣ୍ଡିତ ନକରି ବରଂ କୃପା କରିଛନ୍ତି (ଅନୁଗୃହୀତୋଽସ୍ମି) । ଆପଣ ମୋର ଈଶ୍ୱର, ଗୁରୁ ଓ ଆତ୍ମା ମଧ୍ୟ । ମୁଁ ବିନା ସଂକୋଚରେ ଆପଣଙ୍କ ପାଦ କମଳରେ ଶରଣ ପଶୁଛି ।''

ପ୍ରଶ୍ନ-୨୭: ଇନ୍ଦ୍ରଙ୍କ ମାନସିକ ଦୁରବସ୍ଥା ଦେଖି ଭଗବାନ ତାକୁ ବୁଝାଇ କହିଲେ, ''ଦେବରାଜ, ଏଥିରେ ସବୁଯାକ ଦୋଷ ତୁମର ନୁହେଁ । ପ୍ରଜାମାନେ ମଧ୍ୟ ବେଦର ଅସଲି ଅର୍ଥ ମୁକ୍ତି ବୋଲି ନ ବୁଝି ଦେବତାଙ୍କୁ ପ୍ରସନ୍ନ କରି ଧର୍ମ-ଅର୍ଥ-କାମ ଲକ୍ଷ୍ୟ ପ୍ରାପ୍ତି ଲାଗି ଯଜ୍ଞରେ ମାତିଥିଲେ । ତୁମର ମଧ୍ୟ ଐଶ୍ୱର୍ଯ୍ୟମଦ ମର୍ଦ୍ଦନ ଦରକାର ପଡୁଥିଲା । ଅନ୍ୟଥା ତୁମେ ମଧ୍ୟ ଅଧିକରୁ ଅଧିକ ଅହଂକାରୀ ହୋଇ ପଡ଼ିଥାନ୍ତ ।' ସମସ୍ତଙ୍କ ସମ୍ମୁଖରେ ଇନ୍ଦ୍ରଙ୍କ ଗର୍ବ ଚୂର୍ଣ୍ଣ କରି ଇନ୍ଦ୍ରଙ୍କୁ କୃପା କଲେ କେମିତି ?

ଶ୍ରୀ ଭଗବାନ ଉବାଚ

**ମାଂ ଐଶ୍ୱର୍ଯ୍ୟ ଶ୍ରୀ ମଦ-ଅନ୍ଧୋ ଦଣ୍ଡପାଣିଂ ନ ପଶ୍ୟତି ।**
**ତଂ ଭ୍ରଂଶୟାମି ସଂପଦ୍‌ଭ୍ୟୋ ଯସ୍ୟ ଚ-ଇଚ୍ଛାମି-ଅନୁଗ୍ରହମ୍ ॥୧୬॥**

ଉ. ଭଗବାନଙ୍କ ପତ୍ନୀ ଶ୍ରୀ ବା ମହାଲକ୍ଷ୍ମୀ ଅବଶ୍ୟ ସଂସାରର ସକଳ ଧନ ସଂପତ୍ତିର ମାଲିକାଣୀ । ଅସଲି ମାଲିକ କିନ୍ତୁ ଭଗବାନ । ଶ୍ରୀଙ୍କର ପତି ବୋଲି ସେ ଶ୍ରୀପତି । ଭଗବାନ ସ୍ୱୟଂ ଇନ୍ଦ୍ରାଦି ସମସ୍ତଙ୍କୁ ସ୍ୱପୁଣ୍ୟ କର୍ମର ଫଳ ରୂପେ ଧନ ଦୌଲତ ପ୍ରଦାନ କରନ୍ତି । ଉଦ୍ଦେଶ୍ୟ ଜୀବ ସେ ସବୁର ସଦୁପଯୋଗ କରି ବିଳାସ ବିମୁଖ ହୋଇ ନିଜେ ମୁକ୍ତିର ଦ୍ୱାର ଖୋଜୁ । ଯେ ଧନର ଅସଦ୍ ଉପଯୋଗ କରେ ତାକୁ ପିଟି ଦଣ୍ଡ ଦେଇ ବାଟକୁ ଆଣିବା ପାଇଁ ସେ ଦଣ୍ଡ ମଧ୍ୟ ଧରିଥାନ୍ତି କିନ୍ତୁ ଧନଗର୍ବୀ

ଜୀବ ଏ କଥା ଜାଣିପାରେନା (ନ ପଶ୍ୟତି) । ସେତେବେଳେ ଭଗବାନ ତାଠାରୁ ଐଶ୍ୱର୍ଯ୍ୟ ଛଡ଼ାଇ ନେଇ ତାର ଅହଂକାରକୁ ନଷ୍ଟ କରିବାକୁ ଭଗବାନଙ୍କ ଦଣ୍ଡବୋଲି ଧରିବା ଅନୁଚିତ । କାରଣ ତାହା ଜୀବପ୍ରତି ତାଙ୍କର କୃପା(ଅନୁଗ୍ରହ)ର ନିଦର୍ଶନ । ତାକୁ ଉଦ୍ଦଣ୍ଡତାରୁ ରକ୍ଷା କରିବାକୁ କୃପାମୟ ଭଗବାନ ଆଉ ଅଧିକ କ'ଣ କରିପାରନ୍ତେ ! ! !

ପ୍ରଶ୍ନ-୨୮ : ଇନ୍ଦ୍ରଙ୍କ ଏଭଳି ଅପମାନ ଜନକ ଅସମୟରେ କିଏ ପରିସ୍ଥିତିର ଗମ୍ଭୀରତାକୁ ହାଲ୍‌କା କରିପାରିଲେ ?

**ଅଥ-ଆହ ସୁରଭିଃ କୃଷ୍ଣଂ ଅଭିବନ୍ଦ୍ୟ ମନସ୍ୱିନୀ ।**
**ସ୍ୱ ସନ୍ତାନୈଃ ଉପାମନ୍ତ୍ୟ ଗୋପ ରୂପିଣଂ ଈଶ୍ୱରମ୍ ॥୧୮॥**

ଉ. ସ୍ୱର୍ଗରୁ ଆସି ଗୋବିନ୍ଦ, ଗୋପାଳଙ୍କ ପାଖରେ ପହଞ୍ଚିଗଲେ ଗୋମାତା ସୁରଭି । ସେ ତାଙ୍କ ପିଲା (ସ୍ୱସନ୍ତାନୈଃ) ଧେନୁ ପଲଙ୍କୁ ଧରି ଗୋପାଳ ଅବତାରୀ ଶ୍ରୀକୃଷ୍ଣଙ୍କ ଧ୍ୟାନ ଆକର୍ଷଣ କରିନେଲେ (ଉପାମନ୍ତ୍ର୍ୟ) । ଶ୍ରୀକୃଷ୍ଣଙ୍କ ବିନୀତ ସ୍ତୁତି ମଧ୍ୟ ଆରମ୍ଭ କରିଦେଲେ ।

ପ୍ରଶ୍ନ-୨୯ : ଗୋମାତା ସୁରଭି ଆସି ଭଗବାନଙ୍କର ସ୍ତୁତି କରି କହିଛନ୍ତି, ''ହେ ପ୍ରଭୋ, ଗୋ-ଗୋପାଳଙ୍କ ସୁରକ୍ଷା ଲାଗି କୃତଜ୍ଞତା ଜଣାଇବାକୁ ଆପଣଙ୍କୁ ଗୋ-ଇନ୍ଦ୍ର ଗୋବିନ୍ଦ ପଦବୀରେ ଆମ୍ଭେମାନେ ସମ୍ମାନୀତ କରିବାକୁ ସବିନୀତ ପ୍ରାର୍ଥନା କରୁଛୁ । ଆମକୁ ଅନୁଗ୍ରହ କରନ୍ତୁ ।'' ସାମାନ୍ୟ ହସି ସ୍ୱୀକାର କରିଛନ୍ତି ବାଳକୃଷ୍ଣ ସୁରଭିଙ୍କର ଏହି ପଦବୀଟିକୁ । ଭଗବାନ କୃଷ୍ଣ ସ୍ୱୟଂ ସର୍ବୋଚ୍ଚ ଶାସନ କର୍ତ୍ତା । ମାୟାଧୀଶ । ଅନ୍ୟ ସମସ୍ତେ ଜୀବ । ଏପରି ସ୍ଥଳେ ଭଗବାନଙ୍କୁ ପୁଣି କିଏ କିପରି ଅଭିଷେକ କରିବ ?

**ସୁରଭି ଉବାଚ**

**ଇନ୍ଦ୍ରଂ ନଃ ତ୍ୱା-ଅଭିକ୍ଷାମୋ ବ୍ରହ୍ମଣା ଚୋଦିତା ବୟମ୍ ।**
**ଅବତୀର୍ଣ୍ଣୋଽସି ବିଶ୍ୱ ଆତ୍ମନ୍ ଭୂମେଃ ଭାର-ଅପନୁତ୍ତୟେ ॥୨୧॥**

ଉ. ସୁରଭୀ ମାତା କହିଲେ, ''ହେ, ବିଶ୍ୱ-ଆତ୍ମନ୍, ଭୂମି ରୂପୀ ପୃଥିବୀ ମାତାଙ୍କ ଦୁଃଖ ବଢ଼ିବାରୁ ଆପଣଙ୍କୁ ବ୍ରହ୍ମାଜୀ ପ୍ରାର୍ଥନା କରିଥିଲେ (ବ୍ରହ୍ମଣା ଚୋଦିତା) ସୃଷ୍ଟିରୁ ଆସୁରିକ ପ୍ରବୃତ୍ତି ଦୂର କରିବାକୁ । ଆପଣଙ୍କ ଅବତାର ଆମ ସମସ୍ତଙ୍କ ମିଳିତ

ପ୍ରାର୍ଥନାର ଫଳ । ସୁତରାଂ ଆମେ ସମସ୍ତେ ମିଳି (ନଃ) ଆପଣଙ୍କ ଅଭିଷେକ କରିବୁ ।''

ସଙ୍ଗେ ସଙ୍ଗେ ଯୋଗମାୟାଙ୍କ ଦ୍ୱାରା ଅଭିଷେକ ପର୍ବର ଶୁଭ ବନ୍ଦୋବସ୍ତ ହୋଇଗଲା । ଏ ସ୍ଥାନଟି ଏବେ ଗୋବର୍ଦ୍ଧନ ପାଦଦେଶରେ ଅବସ୍ଥିତ ସୁରଭି କୁଣ୍ଡ ନାମରେ ବୃନ୍ଦାବନରେ ଭକ୍ତମାନେ ଦର୍ଶନ କରି ପୁଲକିତ ହୁଅନ୍ତି । ନିମିଷେକ ପହଞ୍ଚିଗଲା ଦିବ୍ୟ ସିଂହାସନ ଗୋଲୋକରୁ ଆସି । ପବିତ୍ର ଗଙ୍ଗାଜଳ ସହିତ ଗଙ୍ଗାଦେବୀ ମଧ୍ୟ ଉପସ୍ଥିତ । ଏକ କୁଣ୍ଡରେ ଦିବ୍ୟ ଗୋରସ ସୁରଭି ଦୁଗ୍ଧ ଜମା କରାଗଲା । ଗୋପୀମାନେ ପ୍ରିୟ ଗୋବିନ୍ଦଙ୍କ ଲୀଳା ଗାନ କରୁଥାନ୍ତି । ଐରାବତ ହସ୍ତୀ ତାଙ୍କ ଶୁଣ୍ଢରେ ଠାକୁରଜୀଙ୍କୁ ଗଙ୍ଗାଜଳ ଓ ଗୋରସରେ ଅଭିଷେକ କଲେ ।

ଦେବର୍ଷି ନାରଦ, ତୁମ୍ବୁରୁ, ବିଦ୍ୟାଧର ସିଦ୍ଧମାନେ ଭଗବାନଙ୍କ ମହିମା ଗାନ କଲେ । ଦେବୀ ଦେବତାମାନେ ଖୁସିରେ ହାତ ଧରାଧରି ହୋଇ ମଣ୍ଡଳାକାରରେ ନୃତ୍ୟ କଲେ । ଦୁନ୍ଦୁଭି ବାଦନ, ସ୍ୱର୍ଗ ସୁମନ ବୃଷ୍ଟି ସହିତ ଝାଞ୍ଜ ଖୋଳ କରତାଳ ମାଡ଼ ଓ ହରିବୋଲ ହୁଳହୁଳି ଧ୍ୱନିରେ ଆକାଶ ମଣ୍ଡଳ କମ୍ପମାନ ହେଲା । ସତେ କି କୃଷ୍ଣ ପ୍ରେମଆନନ୍ଦର ସମୁଦ୍ର ତରଙ୍ଗାୟିତ ହେବାରେ ଲାଗିଛି । ଇନ୍ଦ୍ର ଏବେ ନୂଆ ନାମ ବା ପଦବୀଟିଏ କୃଷ୍ଣଙ୍କୁ ଦେଲେ, ଗୋବିନ୍ଦ ବୋଲି ।

ଗୋବିନ୍ଦ ଅଭିଷେକ ଉତ୍ସବର ଫଳ ସ୍ୱରୂପ ଭାରତର ନଦ ନଦୀମାନଙ୍କର ଜଳ ଅଧିକ ମଧୁର ହେଲେ । ବୃକ୍ଷମାନଙ୍କରେ ନବପଲ୍ଲବ, ପୁଷ୍ପ, ଫଳ ଲଦି ହୋଇପଡ଼ିଲେ । ବିନା ଚାଷରେ ଧରିତ୍ରୀମାତା ଶସ୍ୟ ଉତ୍ପାଦନ କରି ଗୋବିନ୍ଦ ଓ ଗୋବିନ୍ଦ ଭକ୍ତଙ୍କୁ ଯୋଗାଇଦେଲେ । ପାହାଡ଼ ପର୍ବତ ସବୁ ଅନେକ ମଣି, ମୂଲ୍ୟବାନ ପଥରରେ ଶୋଭାପାଇଲେ । କ୍ରୁର, ହିଂସ୍ର ପ୍ରାଣୀମାନେ ଅହିଂସ ହୋଇଗଲେ ।

ପ୍ରଶ୍ନ–୩୦ : ମହାସମାରୋହରେ ଭଗବାନଙ୍କର ଗୋକୁଳପତି ବା ଗୋବିନ୍ଦ ପଦବୀରେ ଅଭିଷେକ ପର୍ବ ସମାପ୍ତ କରି ଦେବରାଜ ପୁଣି କଅଣ କଲେ ?

ଶ୍ରୀଶୁକ ଉବାଚ

**ଇତି ଗୋ ଗୋକୁଳ ପତିଂ ଗୋବିନ୍ଦଂ ଅଭିଷିଚ୍ୟ ସଃ ।**
**ଅନୁଜ୍ଞାତୋ ଯଯୌ ଶକ୍ରୋ ବୃତୋ ଦେବ–ଆଦିଭିଃ ଦିବମ୍ ॥୨୮॥**

ଉ. ଅଭିଷେକ ପର୍ବ ପରିସମାପ୍ତି ଘୋଷଣା କରି ଦେବରାଜ ଇନ୍ଦ୍ର (ଶକ୍ରୋ) ଭଗବାନଙ୍କଠାରୁ ଆଜ୍ଞାମାଗ (ଅନୁଜ୍ଞାତୋ) ଅନ୍ୟାନ୍ୟ ଦେବୀ ଦେବତାମାନଙ୍କ ସହିତ ସ୍ୱର୍ଲୋକକୁ (ଦିବଂ) ଫେରିଗଲେ (ଯଯୌ) ।

ଗୋବର୍ଦ୍ଧନ ଧାରଣ ଲୀଳା ମାଧ୍ୟମରେ ଭଗବାନ ଜୀବ ଜଗତକୁ ଶିକ୍ଷା ଦେଲେ ଯେ–

୧. ଜୀବ ଗୋ ଜାତିର ସମ୍ବର୍ଦ୍ଧନ କରିବା ଉଚିତ । ବିଧର୍ମୀଙ୍କ ଭଳି ସେମାନଙ୍କୁ ମାରି ଖାଇବା ଅନୁଚିତ ।

୨. ଗୋ ଶବ୍ଦର ଅର୍ଥ ପୃଥିବୀ । ପୃଥିବୀର ଅନ୍ୟତମ ଅଂଶ ଗୋଖାଦ୍ୟ ଭରା ଗୋବର୍ଦ୍ଧନ ପର୍ବତ । ଗୋ ଚାରଣ ଭୂମିର ସଂରକ୍ଷଣ କରିବା ମନୁଷ୍ୟର ଏକ ପରମ କର୍ତ୍ତବ୍ୟ ।

୩. ଗୋ ଅର୍ଥ ବେଦ । ବୈଦିକ ସକାମ ପୂଜନ କରି ସ୍ୱର୍ଗ ଭୋଗ ଆଶା କରିବା ପରିବର୍ତ୍ତେ ଜୀବ ନିଷ୍କାମ କର୍ମ ଯୋଗର ତାଟି କବାଟ ବାଡ଼ଉ ।

୪. ଗୋ ଅର୍ଥ ଇନ୍ଦ୍ରିୟ । ଇନ୍ଦ୍ରିୟମାନଙ୍କୁ ସୁଖ ପ୍ରାପ୍ତି ଦିଗରେ ନ ଲଗାଇ ବରଂ ପରମାତ୍ମାଙ୍କ ପ୍ରତିନିଧି ଗୋ ବ୍ରାହ୍ମଣ-ସର୍ବଜନହିତ ଦିଗରେ ନିୟୋଜନ କରି ଆତ୍ମକଲ୍ୟାଣ କରୁ ।

୫. ଇନ୍ଦ୍ରଙ୍କ ସଦୃଶ ବଡ଼ ବଡ଼ ପଦ ପଦବୀଧାରୀ ମନୁଷ୍ୟ ବା ଅସୁରକୁ ଐଶ୍ୱର୍ଯ୍ୟ ଅହଂକାରୀ ନ ହେବାକୁ ଚେତାବନୀ ଦେବା ଭଗବାନଙ୍କର ମଧ୍ୟ ଦାୟିତ୍ୱ ବା କୃପା ।

# ୨୯. ହାସ୍ୟରସ ପ୍ରକରଣ ସାର
## (ଅଧ୍ୟାୟ ୧୯ଶ-୨୭ଶ)

ଅନେକ ମହାତ୍ମାମାନଙ୍କ ମତରେ ଭାଗବତରେ ହାସ୍ୟରସ ଏକ ଗୌଣ ରସ । କାରଣ ଏକ ଅତ୍ୟନ୍ତ ଗମ୍ଭୀର ପରିସ୍ଥିତିରେ ଶୁକ ପରୀକ୍ଷିତ ଭାଗବତ ପ୍ରବଚନ ଚାଲିଛି । ଏଠାରେ ମୁଖ୍ୟ ଶ୍ରୋତା ରାଜା ପରୀକ୍ଷିତ ନିଜେ ଆସନ୍ନ ମରଣର ସମ୍ମୁଖୀନ । ବକ୍ତା ଜଣକ ଆଜନ୍ମ ବ୍ରହ୍ମଜ୍ଞାନୀ ଓ ନିର୍ବିକଳ୍ପ ସମାଧିମଗ୍ନ ମହାପୁରୁଷ । ଜଞ୍ଜାଳ ଗ୍ରସ୍ତ ମନୁଷ୍ୟ ଜୀବନରେ କ୍ଷୀଣ ଆଲୋକ ଦେଖାଏ ଏହି ହାସ୍ୟ ରସ ଅସରନ୍ତି ସଂସାର ଦୁଃଖ ଭୁଲିବା ଲାଗି । ଏହି ହାସ୍ୟରସ ପ୍ରକଟକରେ ଅଭିନେତାଙ୍କର ଅନ୍ତର୍ମନର ବେଦନା, ଆନନ୍ଦ କିମ୍ବା ଅନ୍ୟାନ୍ୟ ଭାବ ସମୂହକୁ । ମୁଖର ରେଖା, ଦୁଇ ଓଷ୍ଠର କମ୍ପନ, ଦନ୍ତପଙ୍କ୍ତିର ଦର୍ଶନ, ହା ହା ଆଦି କିଛି ଶବ୍ଦ ଉତ୍ପନ୍ନ ସହିତ ବାୟୁର ବର୍ହିଗମନର ଅପେକ୍ଷା ରଖେ ଏହି ହାସ୍ୟରସ । ଏହା ପୁଣି ଦରହାସ (ସ୍ମିତ), ଉପହାସ, ହାସ୍ୟ, ପ୍ରହାସ, ପରିହାସ, ଅତିହସ, ବିହସ ଓ ଅଟ୍ଟହାସ ନାମରେ ଆଠ ପ୍ରକାରର ହୋଇଥାଏ ।

ରସରାଜ ଶ୍ରୀକୃଷ୍ଣଙ୍କ ଦିବ୍ୟ ଲୀଳାରେ ମଧ୍ୟ ହସର ଏକ ମୁଖ୍ୟ ଭୂମିକା ଥାଏ । ଏକ କଳ୍ପ ୪୩୨କୋଟି ବର୍ଷ ସମୟ ମଧ୍ୟରେ ମାତ୍ର ଗୋଟିଏ ଥର ସେ ଆସନ୍ତି ଜଡ଼ ବସ୍ତୁଠାରୁ ଆରମ୍ଭ କରି ଜୀବ ଶ୍ରେଷ୍ଠ ବ୍ରହ୍ମାଜୀଙ୍କୁ ହସେଇବା ଲାଗି । ଭଗବାନଙ୍କର ଦାବାଗ୍ନି ପାନ ଲୀଳାରେ ଏ ରସ ବିତରଣର ଶୁଭାରମ୍ଭ ହୋଇଛି । ପୂର୍ବଥର ଠାକୁରଜୀ ଦେବତା ଅଗ୍ନି ପାନ କରିଥିଲେ ସମସ୍ତଙ୍କ ସମ୍ମୁଖରେ କାଳୀୟ ହ୍ରଦ କୂଳରେ । ଏଥର ଅସୁର ଅଗ୍ନି ଗୋପାଳମାନଙ୍କୁ ଆକ୍ରମଣ କରିଛି ମୁଞ୍ଜ ନାମକ ଅଟବୀ ବା ବନ ମଧ୍ୟରେ । ଗୋବିନ୍ଦ ସଖାମାନଙ୍କୁ ପ୍ରଥମେ ଚକ୍ଷୁ ବନ୍ଦ କରାଇ ପରେ ଅଗ୍ନି ପାନ କରିଛନ୍ତି । ମାନସିକ ଶୋକ, ମୋହ, ତାପ ବେଳେ ବୈଷ୍ଣବ ନିଜ ମନକୁ ଅନ୍ତର୍ମୁଖୀ କରି କୃଷ୍ଣ ଧ୍ୟାନ କଲେ ସେ ଦୁଃଖ ଅଗ୍ନିର କଷ୍ଟରୁ ଅକ୍ଳେଶରେ ପାର ପାଇଯାଏ ବୋଲି ଜଣେ କୃଷ୍ଣଭକ୍ତ ପାଇଥାଏ ସଙ୍କେତ ।

ପରବର୍ତ୍ତୀ ଅଧ୍ୟାୟରେ ବୃନ୍ଦାବନରେ ବର୍ଷା ଋତୁ ଓ ପରେ ଶରତ ଋତୁଙ୍କର ବର୍ଣ୍ଣନା ହୋଇଛି । ପୂର୍ବରୁ ଗ୍ରୀଷ୍ମ ଋତୁର ପ୍ରକୋପରେ ବୃକ୍ଷଲତା ପଶୁପକ୍ଷୀ ଅସହ୍ୟ ସୂର୍ଯ୍ୟ ତାପରେ କ୍ଲେଶ ଭୋଗୁ ଥାଆନ୍ତି । ବର୍ଷାର ଆଗମନରେ ସେଇ ବୃକ୍ଷ, ଲତା, ପଶୁ, ପକ୍ଷୀ, ତରୁ, ତୃଣ, ଗୁଳ୍ମ, କୀଟ, ପତଙ୍ଗ ଆଦି ତାପମୁକ୍ତ ହୁଅନ୍ତି । ସମଗ୍ର

ବନରାଜି ଅପୂର୍ବ ହସ ପୁଲକରେ ଭରି ଉଠେ । ପରେ ପରେ ଆସେ ସୁନ୍ଦର ଶରତ ଋତୁ । ଅକାଶ ହୁଏ ମେଘମୁକ୍ତ । ଜଳ ହୁଏ ସ୍ୱଚ୍ଛ । ବାୟୁ ହୁଏ ଶାନ୍ତ । ପୃଥିବୀ ହୁଏ କର୍ଦ୍ଦମଶୂନ୍ୟ । ସମଗ୍ର ସୃଷ୍ଟି ହୁଏ ହସମୁଖ । ଏହି ହାସ୍ୟ ରସ ପୁଣି ବାଟ କଢ଼େଇଛି ଶ୍ରୀକୃଷ୍ଣଙ୍କର ପରବର୍ତ୍ତୀ ଦିବ୍ୟ ପ୍ରେମରସ ପରିବେଷଣ ଲାଗି । ଏହାକୁ ହାସ୍ୟ ରସ କହନ୍ତୁ ବା ପ୍ରେମରସ କହନ୍ତୁ ।

## ଚାରି ପ୍ରକାର ରାସ ବର୍ଣ୍ଣନା ହାସ୍ୟ ରସ ଆଧାରରେ

ଏବେ ସାତ ଅଧାୟରେ ବର୍ଣ୍ଣିତ ହୋଇଛି ରସରାଜ ଶ୍ରୀକୃଷ୍ଣଙ୍କର ଚାରି ପ୍ରକାରର ରାସ ଲୀଳା । ପ୍ରଥମ ରାସ ଲୀଳାରେ ବୃନ୍ଦାବନରେ ମୁରଲୀଧରଙ୍କ ମୁରଲୀ ସ୍ୱନ ନିନାଦିତ ହୋଇଛି । କେବଳ ଗୋପୀ ଗୋପାଳ କାହିଁକି ବୃନ୍ଦାବନର ସକଳ ପଶୁ, ପକ୍ଷୀ, ବୃକ୍ଷ, ଲତା, ଗୋବର୍ଦ୍ଧନ ପର୍ବତ ଓ ଯମୁନା ନଦୀ ସମସ୍ତେ ସେ ଦିବ୍ୟ ଧ୍ୱନି ତରଙ୍ଗର ମଜା ଲୁଟିଛନ୍ତି ହସି ହସି । ସତେ ଯେପରି ହସର ବନ୍ୟା ଆସିଯାଇଛି ସକଳ ଚର ଅଚର ଜଡ଼ ଚେତନ ସମସ୍ତଙ୍କ ହୃଦୟ କନ୍ଦରରେ । ବ୍ରଜରସ ରସିକମାନେ ଏହାକୁ ନାମ କରଣ କରନ୍ତି ଭଗବାନଙ୍କର ସାର୍ବଜନୀନ ରାସ ଭାବରେ । ସର୍ବୋପରି ଗିରିରାଜ ଗୋବର୍ଦ୍ଧନ ପର୍ବତଙ୍କୁ ହରିଦାସ ବର୍ଯ୍ୟ (ବୈଷ୍ଣବ ଶ୍ରେଷ୍ଠ) ପଦବୀ ମିଳିଯାଇଛି । କାରଣ ବ୍ରଜମଣ୍ଡଳର ସକଳ ବୈଷ୍ଣବଙ୍କୁ ହସ ମୁଖର କରାଇ ପାରିଛନ୍ତି ଝରଣାର ଜଳ, ଫଳ, ମୂଳ, କନ୍ଦମୂଳ, ତୃଣ, କନ୍ଦରା, ପଥର ଚାଞ୍ଚଡ଼ା ଆସନ ଇତ୍ୟାଦି ଯୋଗାଇ ଦେଇ ।

କୃଷ୍ଣ ଲୀଳାରେ ଅର୍ଜୁନ ଯୁଧିଷ୍ଠିର ଆଦି ହରି ଦାସ । ଉଦ୍ଧବଜୀ ମଧ୍ୟ ହରିଦାସ । ଗୋବର୍ଦ୍ଧନ କିନ୍ତୁ ହରିଦାସ ଶ୍ରେଷ୍ଠ । ଶ୍ରୀହରିଙ୍କର ସର୍ବାଧିକ ଚରଣ କମଳର ସ୍ପର୍ଶ ସେ କେବଳ ପ୍ରାପ୍ତ ହୋଇଛନ୍ତି । ସେଇଦିନୁ ଚରଣ ପାହାଡ଼ି ନାମରେ ବ୍ରଜମଣ୍ଡଳରେ ତାଙ୍କ କୃଷ୍ଣ ସେବାର ଝଣ୍ଡା ଉଡୁଛି । ବ୍ରଜ ଚଉରା ଅଶୀ କ୍ରୋଶ ପରିକ୍ରମା ବେଳେ କୃଷ୍ଣ ଭକ୍ତ ଆଜି ମଧ୍ୟ ଶ୍ରଦ୍ଧାରେ ହସି ହସି ଚରଣ ପାହାଡ଼ିରେ ତାଙ୍କ ପାଦ ଦର୍ଶନରେ ବିମୋହିତ ହୋଇଯାଏ ।

ଦ୍ୱିତୀୟ ରାସ ବର୍ଣ୍ଣନା ହୋଇଛି ଗୋପୀ ବସ୍ତ୍ର ହରଣ ଲୀଳାରେ । ବ୍ରଜର ବ୍ରହ୍ମଚାରିଣୀମାନଙ୍କ ସହିତ ହସ, ଗମାତ, ନୀତି ଶିକ୍ଷା, ପ୍ରେମ ଦାନ, ପରବର୍ତ୍ତୀ ପର୍ଯ୍ୟାୟରେ ମହାରାସ ଲାଗି ପ୍ରସ୍ତୁତି ଓ ନିମନ୍ତ୍ରଣ ଆଦି ପ୍ରକଟିତ ହୋଇଛି ସେଇ ହାସ୍ୟ ରସ ମାଧ୍ୟମରେ । ଗୋପୀମାନେ ମାସେ କାଳ ଯମୁନା କୂଳରେ ପୂଜନ କଲେ ଦେବୀ କାତ୍ୟାୟିନୀଙ୍କର । ବର କିନ୍ତୁ ଦେଲେ ଭଗବାନ ଶ୍ରୀକୃଷ୍ଣ ନନ୍ଦ ଗୋପସୁତ ତୁମର ବର

ହୁଅନ୍ତୁ । କୃଷ୍ଣ ଭକ୍ତିର ଜଣେ ସାଧକ ଏ ଲୀଳାରେ ନ ହସି ରହି ପାରନ୍ତା କି ? ଅର୍ଥାତ୍ ସେ ନିଶ୍ଚୟ ହସି ପକାଇବ ।

ତୃତୀୟ ପର୍ଯ୍ୟାୟ ରାସ ଅନୁଷ୍ଠାନ ହୋଇଛି ମଥୁରାର ଯାଜ୍ଞିକ ବ୍ରାହ୍ମଣମାନଙ୍କ ପତ୍ନୀଙ୍କ ଭୋଜନ ପରଷିବା ଲୀଳାକୁ କେନ୍ଦ୍ର କରି । କଂସ ରାଜାଙ୍କ ଭୟରେ ମଥୁରା ରାଜ୍ୟର ବ୍ରାହ୍ମଣମାନେ କୃଷ୍ଣ ସଖାମାନଙ୍କୁ ଭୋଜନ ଦେବାରେ ଅତ୍ୟନ୍ତ ଭୟଭୀତ । ଅନ୍ୟ ପକ୍ଷରେ ସେଇ ବ୍ରାହ୍ମଣମାନଙ୍କ ସେବା କାରିଣୀ ପତ୍ନୀମାନେ ବିଷ୍ଣୁ ବୈଷ୍ଣବଙ୍କ ସେବା କରି କୃଷ୍ଣ ଭକ୍ତିର ଜୟ ପତାକା ଉଡ଼ାଇଛନ୍ତି । ସେମାନେ ସମସ୍ତେ ଜାତିରେ ନାରୀ, ବେଦ, ଅନଭିଜ୍ଞା, ତପସ୍ୟା ରହିତା, ପାଣ୍ଡିତ୍ୟ ଅହଂକାର ଶୂନ୍ୟା । ତଥାପି କୃଷ୍ଣ କୃପାର ପାତ୍ରୀ । ଏହା ଲକ୍ଷ୍ୟ କରି ସେଇ ବ୍ରାହ୍ମଣମାନେ ହସି ହସି ନିଜ ନିଜର ପତ୍ନୀମାନଙ୍କ କୃଷ୍ଣ ପ୍ରେମର ପ୍ରଶଂସା କରିଛନ୍ତି ।

ଚତୁର୍ଥ ପର୍ଯ୍ୟାୟ ରାସଲୀଳା ହୋଇଛି ବ୍ରଜଧାମରେ ଗୃହସ୍ଥ ଆଶ୍ରମୀମାନଙ୍କ ସହିତ ରାସ ବିଳାସ ମାଧ୍ୟମରେ । ପ୍ରତିବର୍ଷ ହେଉଥିବା ଇନ୍ଦ୍ର ଦେବତା ପୂଜା ପରିବର୍ତ୍ତେ ଜଡ଼ ଗୋବର୍ଦ୍ଧନ ପୂଜା ଅତ୍ୟନ୍ତ ଆଡ଼ମ୍ବର ସହକାରେ ପାଳିତ ହୋଇଛି ଏକାନ୍ତ ଗୋବିନ୍ଦ ଭକ୍ତ ମାନଙ୍କ ଦ୍ୱାରା । ନିଜେ ହସି ଅନ୍ୟଙ୍କୁ ହସାଇ ହସାଇ ଭଗବାନ ଏ ଦିବ୍ୟ ଲୀଳାରେ ସ୍ୱଧର୍ମପାଳନ ଶିକ୍ଷା ଉପଦେଶଦେବା ସହିତ ଭାଗ୍ୟ ଅପେକ୍ଷା ପୁରୁଷାର୍ଥ ଅଧିକ ବଳବାନ ବୋଲି ପ୍ରମାଣିତ କରିଛନ୍ତି ନିଜ ଭକ୍ତମାନଙ୍କ ସମ୍ମୁଖରେ । ସେ ଘୋଷଣା କରିଛନ୍ତି ଯେ – କେବଳ ଘୃତ ଯଜ୍ଞ କରି ହୋମ ଅଗ୍ନିରେ ସ୍ୱାହା ସ୍ୱାହା କହି ଦେବୀ ଦେବତା ପୂଜନ କଲେ ଚଳିବନି । ବରଂ ପାହାଡ଼, ନଦୀ, ଗୋ, ବ୍ରାହ୍ମଣ, ଋଷି, ଅସହାୟଙ୍କର ସେବାରେ ତନ, ମନ, ଧନର ସଦୁପଯୋଗ କରିବା ବୁଦ୍ଧିମାନର କାମ । ନନ୍ଦ ରାଜା ଶାଳଗ୍ରାମ ପୂଜୁଥିଲେ ନାରାୟଣ ଭାବନାରେ । କୃଷ୍ଣ କୃପାରୁ ଏବେ କିନ୍ତୁ ବିଶ୍ୱାସ କଲେ ଜଡ଼ ଚେତନ ସବୁରେ ସେଇ ଏକ ପରମାତ୍ମା ବିଦ୍ୟମାନ ବୋଲି । ମୁଖାରବିନ୍ଦ ନାମକ ବ୍ରଜମଣ୍ଡଳ ସ୍ଥିତ ଏହି ସ୍ଥାନ ଓ ମନ୍ଦିର ଏବେ ଏହି ଲୀଳାର ମୂକ ସାକ୍ଷୀ । ହାସ୍ୟ ରସର ଚରମ ଉତ୍କର୍ଷ ପ୍ରମାଣିତ ହୋଇଛି ଗୋବର୍ଦ୍ଧନ ପର୍ବତ ସ୍ୱୟଂ ମୁହଁ ଖୋଲି ରନ୍ଧନ ଦ୍ରବ୍ୟ ସେବନ କରିବା ଲୀଳା ପ୍ରଦର୍ଶନରେ । ଧନ୍ୟ ଗୋବିନ୍ଦ, ଧନ୍ୟ ତୁମର ଭକ୍ତ ଗୋବର୍ଦ୍ଧନ ଓ ଧନ୍ୟାତିଧନ୍ୟ ତୁମର ଗୋପୀଗୋପାଳ ! ! !

ସର୍ବଶେଷରେ ହାସ୍ୟରସ ଲୀଳାଟି ଅଧିକ ରସାଣିତ ହୋଇଛି ଦେବରାଜ ଇନ୍ଦ୍ର ଯେତେବେଳେ ସାତ ବର୍ଷର ବାଳକୃଷ୍ଣଙ୍କ ପାଖରେ ଶରଣ ପଶିଛନ୍ତି । ସ୍ୱର୍ଗରୁ ମନ୍ଦାକିନୀ ଜଳ, ସୁରଭୀ ଗାଈ ଦୁଗ୍ଧ ଅଣାଇ ଗୋବିନ୍ଦ ପଦରେ ଅଭିଷିକ୍ତ କରାଇଛନ୍ତି ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

# ପ୍ରକରଣ ୩୦ ପ୍ରେମରଙ୍ଗ

## ଅଧ୍ୟାୟ ୨୮ଶ-୩୬ଶ

## ଅଥ ୨୮ଶ ଅଧ୍ୟାୟଃ

### (ବରୁଣପୁରରୁ ନନ୍ଦଙ୍କ ଉଦ୍ଧାର ଓ ବ୍ରଜବାସୀଙ୍କର ବୈକୁଣ୍ଠ ଦର୍ଶନ)

ପ୍ରଶ୍ନ-୩୧ : ପବନ, ଅଗ୍ନି, ଇନ୍ଦ୍ର, ଯାଜ୍ଞିକ ବ୍ରାହ୍ମଣ, ବେଦ, ବ୍ରହ୍ମାଦିଙ୍କୁ ଭଗବାନ ରାସ ଅନୁକୂଳ କଲେ । ନଚେତ ସେମାନେ ରାସଲୀଳାରେ ନିଶ୍ଚିତ ବିଘ୍ନ ଘଟାଇ ଥାଆନ୍ତେ । ଏବେ ପଡ଼ିଲା ବରୁଣ ଜଳ ଦେବତାଙ୍କ ପାଳି । ସେ ଜୀବର ଜିହ୍ଵା ଓ ଜନନ ଇନ୍ଦ୍ରିୟର ଅଧିପତି ।

ଏକାଦଶୀ ବ୍ରତ କରାଯାଏ ମନ ସହିତ ୧୦ ଇନ୍ଦ୍ରିୟଙ୍କୁ ବିଷୟ ଭୋଗ ରୂପ ବହିର୍ମୁଖତାରୁ ଓଟାରି ଆଣି ଅନ୍ତର୍ମୁଖୀ କରାଇବାକୁ । ବ୍ରତ ଉପାସରେ ୧୧ ଇନ୍ଦ୍ରିୟଙ୍କୁ ନିରାହାର, ଶୁଚି, ସ୍ନାନ, ନାମ ଜପ ଆଦି ଦ୍ଵାରା ଭଗବାନଙ୍କୁ ପ୍ରସନ୍ନ କରାଯିବା କଥା । ବ୍ରଜବାସୀମାନେ ସମସ୍ତେ ଭଗବାନଙ୍କ ଭକ୍ତ ହୋଇ କ'ଣ ଏସବୁ ଉପବାସ ବ୍ରତ ଆଦି କରୁଥିଲେ ?

**ଶ୍ରୀ ଶୁକ ଉବାଚ**

**ଏକାଦଶ୍ୟାଂ ନିରାହାରଃ ସମଭ୍ୟର୍ଚ୍ଚ୍ୟ ଜନାର୍ଦ୍ଦନମ୍ ।**
**ସ୍ନାତୁଂ ନନ୍ଦଃ ତୁ କାଳିନ୍ଦ୍ୟା ଦ୍ଵାଦଶ୍ୟାଂ ଜଳଂ ଆବିଶତ୍ ।।୧।।**

ଉ. କେବଳ ବ୍ରଜବାସୀ କାହିଁକି ସ୍ଵୟଂ ରାଜା ନନ୍ଦ ମଧ୍ୟ ନିରାହାର ଏକାଦଶୀ ବ୍ରତ କରୁଥିଲେ । ନନ୍ଦ ଯଶୋଦାଙ୍କ ସହିତ ସକଳ ବ୍ରଜବାସୀଙ୍କ ନିଷ୍ଠାପର ଏକାଦଶୀ ବ୍ରତ ପାଳନକୁ ଶ୍ରୀକୃଷ୍ଣଙ୍କ ପ୍ରାକଟର ଅନ୍ୟତମ କାରଣ ବୋଲି କୁହାଯାଏ । ଜୀବକୁ ନିଜ ନିଜ କର୍ମଫଳ ମୁତାବକ ସୁଖ-ଦୁଃଖ ଯେ ଭୁଞ୍ଜାନ୍ତି ସେ ହିଁ ଜନାର୍ଦ୍ଦନ ।

ନିୟମ ଅନୁସାରେ ରାଜା ପରଦିନ ଦ୍ଵାଦଶୀ ତିଥିରେ ସ୍ନାନ ପରେ କିଛି ଆହାର କରି ପାରଣା କରିବା କଥା । ସୁତରାଂ ସେ ସ୍ନାନ କରିବାକୁ କାଳିନ୍ଦୀ ଜଳରେ ପଶିଛନ୍ତି । କିନ୍ତୁ ଅନେକ ରାତି ଥାଉ ଥାଉ ସେ ଜଳରେ ପଶିଗଲେ । ତେଣୁ ବରୁଣ ଅବମାନନା ଅପରାଧ ହୋଇଗଲା । ତାହା ଅସୁର ବେଳା ଥିବାରୁ ବରୁଣଙ୍କ ଅନୁଚରମାନେ ତାଙ୍କୁ ଧରି ବରୁଣପୁରକୁ ନେଇ ଗଲେ । ପୂର୍ବେ ଗୋପୀମାନେ ଜଳରେ ପଶି ନଗ୍ନ ସ୍ନାନ କରୁଥିଲେ । ଅପରାଧ କରି କୃଷ୍ଣଙ୍କ ଦ୍ଵାରା ଦଣ୍ଡ ପାଇଥିଲେ । ଏବେ ନନ୍ଦ ଭଗବାନଙ୍କ ପିତା ହୋଇ ସେହି ଦେବତାଙ୍କ ପାଖରେ ଦୋଷୀ ।

ପ୍ରଶ୍ନ-୩୨: ଭଗବାନ ଯମୁନା ସ୍ନାନ କଲାବେଳେ ରାଜା ନନ୍ଦ ଅଦୃଶ୍ୟ ହେବା କଥା ଶୁଣିଲେ । ସଙ୍ଗେ ସଙ୍ଗେ ସେ ସ୍ୱୟଂ ଯାଇ ବରୁଣଙ୍କ ରାଜଧାନୀ ବିଭାବରୀପୁରରେ ହାଜର । ଦେଖିଲେ ବରୁଣ ଦେବତା ପିତାଙ୍କୁ ନିଜ ପାଖରେ ଏକ ମହାର୍ଘ ଆସନରେ ସସମ୍ମାନେ ବସାଇଛନ୍ତି । ତାଙ୍କ ପୂଜା ଆରତୀ କରୁଛନ୍ତି । ଠାକୁରଜୀଙ୍କୁ ଦର୍ଶନ କରି ବରୁଣ ଦେବତା ତାଙ୍କୁ ପାଛୋଟି ନେଇଛନ୍ତି । ସିଂହାସନରେ ବସାଇ ପାଦ୍ୟ, ଅର୍ଘ୍ୟ, ନୈବେଦ୍ୟ ଦେଇଛନ୍ତି । ବରୁଣ ରାଜା ବିନମ୍ର ସ୍ତୁତି କରି କ'ଣ ସବୁ କହିଲେ ଭଗବାନଙ୍କୁ ?

ବରୁଣ ଉବାଚ

**ଅଜାନତା ମାମକେନ ମୂଢ଼େନ-ଅକାର୍ଯ୍ୟ ବେଦିନା ।**
**ଆନୀତୋଽୟଂ ତବ ପିତା ତଦ୍ ଭବାନ୍ କ୍ଷନ୍ତୁଂ ଅର୍ହସି ॥୭॥**

ଉ. ବରୁଣ ଦେବତା କହିଲେ, ''ହେ, ପ୍ରଭୋ, ମୋର ଅନୁଚରମାନେ (ମାମକେନ) ମୂର୍ଖ, ଅଜ୍ଞାନ, ଦାୟିତ୍ୱବୋଧ ଶୂନ୍ୟ । ସେମାନେ ଠିକ୍-ଭୁଲ କ'ଣ ନ ବୁଝି (ଅଜାନତା)ଆପଣଙ୍କ ପିତାଙ୍କୁ ନେଇ ଆସିଛନ୍ତି । ଆପଣ ପ୍ରଭୁ । ମୁଁ ଆପଣଙ୍କର ଦାସ । ସୁତରାଂ ଆପଣ ପ୍ରଭୁ ପଣରେ କ୍ଷମା କରିଦେଲେ ଆମେ ସମସ୍ତେ କୃତଜ୍ଞ ରହିବୁ ଆପଣଙ୍କ ପାଖରେ । ଆପଣଙ୍କ ପିତୃ ବତ୍ସଳତା ମୋତେ ଅଜଣା ନାହିଁ ।

ପ୍ରଶ୍ନ-୩୩: ଭଗବାନ କୃଷ୍ଣ ଈଶ୍ୱର(ଇନ୍ଦ୍ର-ବ୍ରହ୍ମା-ଶଙ୍କର ଆଦି)ଙ୍କର ଈଶ୍ୱର ପରମେଶ୍ୱର ବୋଲି ରାଜା ନନ୍ଦ ଜାଣିଲେ କେମିତି ?

ଶ୍ରୀ ଶୁକ ଉବାଚ

**ଏବଂ ପ୍ରସାଦିତଃ କୃଷ୍ଣୋ ଭଗବାନ୍ ଈଶ୍ୱର-ଈଶ୍ୱରଃ ।**
**ଆଦାୟ-ଅଗାତ୍ ସ୍ୱପିତରଂ ବନ୍ଧୂନାଂ ଚ-ଆବହନ୍ ମୁଦମ୍ ॥୯॥**

ଉ. ନନ୍ଦଜୀ ଦେଖିଲେ ସ୍ୱଚକ୍ଷୁରେ ଯେ ମହାନ୍ ଐଶ୍ୱର୍ଯ୍ୟଭରା ବରୁଣପୁରର ରାଜା କୃଷ୍ଣଙ୍କୁ କେତେ ବିନମ୍ର ସ୍ୱରରେ ପ୍ରାର୍ଥନା କଲେ । ପାଦତଳେ ପଡ଼ି କ୍ଷମା ମାଗିଲେ । ଏତେ ବଡ଼ ବିପଦରୁ ଉଦ୍ଧାର କଲେ । ତାଙ୍କୁ ବୃନ୍ଦାବନ ଫେରାଇ ଆଣିଲେ । ଗୋପୀଗୋପାଳମାନେ ତାଙ୍କୁ ପାଇ ଅତ୍ୟନ୍ତ ଖୁସି ହେଲେ ।

ପ୍ରଶ୍ନ-୩୪: ଏବେ ରାଜା ନନ୍ଦ ନିଜର ସକଳ ପ୍ରଜାଙ୍କ ସମକ୍ଷରେ ନିଜ ପୁଅର ଅଲୌକିକତା, ସର୍ବସାମର୍ଥ୍ୟତା ବିଷୟରେ ଶତମୁଖରେ ପ୍ରଶଂସା କରିବାରେ ଲାଗିଲେ । ଗର୍ବ ଗୌରବରେ ରାଜା ପ୍ରଜା ସମସ୍ତେ ଅଭିଭୂତ ହେଲେ । ସମସ୍ତ

ବ୍ରଜବାସୀ ଶୁଣିଥିଲେ ବୈକୁଣ୍ଠ ରାଜ୍ୟର ଅଲୌକିକତା ବିଷୟରେ । ଏବେ ବୁଝିଲେ ଏହି ନନ୍ଦ ନନ୍ଦନ କାହ୍ନୁଆ ସେଇ ବୈକୁଣ୍ଠ ଲୋକର ଅଧିପତି । ସର୍ବେସର୍ବା । ଅତଏବ ବୈକୁଣ୍ଠ ଦେଖିବୁ ଦେଖିବୁ ବୋଲି ଅଝଟ କଲେ । ବ୍ରଜବାସୀମାନଙ୍କର ଜିଦକୁ କ'ଣ ଗୋବିନ୍ଦ ହଠାତ୍ ମାନିନେଲେ ?

**ଜନୋ ବୈ ଲୋକ ଏତସ୍ମିନ୍ ଅବିଦ୍ୟା କାମ କର୍ମଭିଃ ।**
**ଉଚ୍ଚ-ଅବଚାସୁ ଗତିଷୁ ନ ବେଦ ସ୍ୱାଂ ଗତିଂ ଭ୍ରମନ୍ ॥୧୩॥**

ଉ. ଠାକୁରଜୀ ସେମାନଙ୍କୁ ଅନେକ ବୁଝାଇଲେ ଯେ ମୁଁ ବୃନ୍ଦାବନ ବିହାରୀ କାହ୍ନୁଆ । ତାକୁ ବିଷ୍ଣୁ କି ନାରାୟଣ ଭାବିଲେ ରସ ଭଙ୍ଗ ହେବ । ପ୍ରେମ କିର୍‌କିରା ହୋଇଯିବ କିନ୍ତୁ ବ୍ରଜବାସୀମାନେ ତାଙ୍କୁ ଛାଡୁଛନ୍ତି କେତେବେ ? ଭଗବାନଙ୍କ ବିଭୂତି ଶୁଣିଲେ କ'ଣ ପେଟ ପୂରନ୍ତା । ଚମତ୍କାର ଦେଖିଲେସିନା ପେଟ ମନ ଉଭୟ ପୂରିବ । ଭଗବାନଙ୍କ ଭକ୍ତ ବତ୍ସଳ ନାମ ସାର୍ଥକ ହେବ ।

ଭଗବାନ ଚିନ୍ତା କଲେ ଜୀବ ମାତ୍ରକେ ଅବିଦ୍ୟାର ଶିକାର । ଐଶ୍ୱର୍ଯ୍ୟ ଲୋଭୀ । ଏଇ ଭ୍ରମରେ ପଡ଼ି ସକଳ ମାୟାଧୀନ ଜୀବ ଉଚ୍ଚ-ନୀଚ ୮୪ଲକ୍ଷ ଯୋନୀ ଭ୍ରମଣ କରି ଭୂଃ-ଭୂବଃ-ସ୍ୱଃ ଲୋକରେ ଚକ୍‌କର କାଟୁଛନ୍ତି । ସୁତରାଂ ଏ ରହସ୍ୟ ଖୋଲିଦେଲେ ହୁଏତ ଜୀବ କଲ୍ୟାଣ ସାଧିତ ହେବ । ଏବେ ତାଙ୍କୁ ବିଶ୍ୱରୂପ ଦର୍ଶନ କରାଇବାକୁ ପଡ଼ିବ ।

ପ୍ରଶ୍ନ-୩୫: ବ୍ରଜବାସୀମାନଙ୍କୁ ଗୋବିନ୍ଦ କ'ଣ କଥାରେ କଥାରେ ବୈକୁଣ୍ଠ ଦର୍ଶନ କରାଇଦେଲେ ?

**ଇତି ସଂଚିନ୍ତ୍ୟ ଭଗବାନ୍ ମହାକାରୁଣିକୋ ହରିଃ ।**
**ଦର୍ଶୟାମାସ ଲୋକଂ ସ୍ୱଂ ଗୋପାନାଂ ତମସଃ ପରମ୍ ॥୧୪॥**

ଉ. ବୈକୁଣ୍ଠ ଲୋକ ଏକ ସ୍ୱତନ୍ତ୍ର ଧାମ । ସେଠାରେ ମାୟାଙ୍କ ଆଧିପତ୍ୟ ନଥାଏ (ତମସଃ ପରଂ) । ଗୋପାଳମାନେ ଜାଣିବେ ଯେ ଗୋଲୋକରେ ଯେ କୃଷ୍ଣ, ମହାବୈକୁଣ୍ଠରେ ସେ ନାରାୟଣ, ବୈକୁଣ୍ଠରେ ସେ ବିଷ୍ଣୁ କିନ୍ତୁ ବୃନ୍ଦାବନରେ ସେ ଗୋପାଳିଆ ବା କାହ୍ନୁଆ । କାହାର ପୁଅ, କାହାର ସଖା, କାହାର ସେବ୍ୟ ପ୍ରଭୁ ପୁଣି କାହାର ପତିଙ୍କର ପତି ପରମପତି । ସେ ହିଁ ଶ୍ରୀହରି ଭକ୍ତ ବତ୍ସଳ, ପ୍ରେମମୟ କୃପାମୟ (ମହାକାରୁଣିକୋ) । ସୁତରାଂ ଶେଷରେ ସେ ବ୍ରଜବାସୀମାନଙ୍କୁ ସତସତିକା ବୈକୁଣ୍ଠ ଦର୍ଶନ କରାଇଦେଲେ ।

ପ୍ରଶ୍ନ-୩୬: ଭଗବାନ କୃଷ୍ଣ ତ ମାୟାଧୀଶ । ଯୋଗୀଶ୍ୱରେଶ୍ୱର । ସେ ତାଙ୍କ ଅଧ୍ୟାତ୍ମଜ୍ୟୋତି ପ୍ରକଟ କଲେ । ଆଜି ମଧ୍ୟ ବୃନ୍ଦାବନ ଧାମରେ ଯମୁନା ନଦୀ କୂଳରେ ବ୍ରହ୍ମ ହ୍ରଦ ବୋଲି ଏକ ତୀର୍ଥସ୍ଥାନ ଅଛି । ତାହା ଦୁଇଟି କାରଣରୁ ଏତେ ପ୍ରସିଦ୍ଧି ଲାଭ କରିଛି । ପ୍ରଥମତଃ ସେ ଯମୁନା ଘାଟରେ ସଂଧ୍ୟାବନ୍ଦନା କରିବାକୁ ଅକ୍ରୂରଜୀ ସ୍ନାନ କଲାବେଳେ ବୈକୁଣ୍ଠଲୋକ ଦର୍ଶନ କରିଥିଲେ । ଦ୍ୱିତୀୟତଃ ଗୋବିନ୍ଦ ବ୍ରଜବାସୀମାନଙ୍କୁ ଠିକ୍ ସେହି ସ୍ଥାନରେ ଯମୁନାରେ ବୁଡ଼ିବାକୁ ଦେବାକୁ କହିଥିଲେ । ସେ ସ୍ଥାନ କିଛି ସାମାନ୍ୟ ଲୌକିକ ସ୍ଥାନ ନୁହେଁ । ସେ ତୀର୍ଥ ସ୍ଥାନରେ ବ୍ରଜବାସୀମାନଙ୍କୁ ଠାକୁରଜୀ କ'ଣ ସବୁ ଦର୍ଶନ କରାଇଥିଲେ ?

**ନନ୍ଦ-ଆଦୟଃ ତୁ ତଂ ଦୃଷ୍ଟ୍ୱା ପରମ-ଆନନ୍ଦ ନିବୃତ୍ତାଃ ।**
**କୃଷ୍ଣଂ ଚ ତତ୍ର ଛନ୍ଦୋଭିଃ ସ୍ତୂୟମାନଂ ସୁବିସ୍ମିତାଃ ॥୧୭॥**

ଉ. ଭଗବାନଙ୍କ ଆଦର୍ଶରେ ଯୋଗମାୟା ତାଙ୍କ କାମ ଦେଖାଇଲେ । ବ୍ରଜବାସୀ ସମସ୍ତେ ଯମୁନା ଜଳରେ ବୁଡ଼ି ଚକ୍ଷୁ ବନ୍ଦ କରନ୍ତେ ସଙ୍ଗେ ସଙ୍ଗେ ବୈକୁଣ୍ଠରେ ପହଞ୍ଚିଗଲେ । ଆଖି ଖୋଲି ଦେଖିଲେ ସେଠାରେ ବିନା ସୂର୍ଯ୍ୟ, ଚନ୍ଦ୍ର ବିଜୁଳିରେ ସବୁ ବ୍ୟବସ୍ଥା ସ୍ୱୟଂ ଦୃଶ୍ୟମାନ । ସମସ୍ତେ ଚତୁର୍ବାହୁ । ମୁକୁଟ ସହିତ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ । ଶ୍ରେଷ୍ଠ ଆସନରେ ମହାର୍ଘ ସିଂହାସନରେ ବସିଛନ୍ତି କୃଷ୍ଣ, କିନ୍ତୁ ତାଙ୍କର ଗୋପାଳିଆ ଠେକା, ବନମାଳ, ବେତବାଡ଼ି, ସିଙ୍ଗା, ମୁରଲୀ ଇତ୍ୟାଦି କିଛି ବି ନାହିଁ । ଦୁଇଟା ହାତ ବଦଳରେ ଅଛି ଚାରିଟା ହାତ । ସେଥିରେ ଭୟଙ୍କର ଗଦା, ଯମ ଭଳି ଦିଶୁଥିବା କାଳ ଚକ୍ରଟେ । ମୁହଁରେ ହସ ନାହିଁ । ଗମ୍ଭୀର ମୁହଁଟେ । ସତେ କି ଆଠଣିଟେ କୋଉଠି ହଜେଇ ଦେଇଛନ୍ତି । କୁଆଡ଼େ ଯୁଦ୍ଧକୁ ଯିବାକୁ ପ୍ରସ୍ତୁତ ହେଉଛନ୍ତି । ମୁକୁଟରେ ଚକ୍ ଚକ୍ ପଥର ଅବଶ୍ୟ ଅଛି କିନ୍ତୁ ଗୁଞ୍ଜାମାଳ ନାହିଁ କି କାନ୍ଧରେ କାଳି କମରି (କମ୍ବଳ) ନାହିଁ । ନାହାନ୍ତି ସେଠାରେ ଧେନୁପଲ, ଗୋପାଳ, ଶୁକ, ପିକ, ମୟୂର, ଯମୁନା ଜଳ, କଦମ୍ବ ବୃକ୍ଷ । ସତେ କି ସେଇ ଦିବ୍ୟ ବୃନ୍ଦାବନ କୌଣସି ଆତଙ୍କବାଦର ଶିକାରରେ ବୋମା ମାଡ଼ରେ ଧ୍ୱସ୍ତ ହୋଇ ଯାଇଛି । ବୃନ୍ଦାବନର ରସିକ କାହ୍ନୁଆ ଏଠାରେ ନିପଟ କାଙ୍ଗାଳିଆ ହୋଇଯାଇଛି ! !

ଏଠାରେ ନା ଅଛି ମଧୁର ମୁରଲୀର ଧ୍ୱନି ନା କୃଷ୍ଣ ଲୀଳା ଗାନ । ଗୁଡ଼ାଏ ସୁନ୍ଦରୀ ସ୍ତ୍ରୀଲୋକ (ବେଦଙ୍କ ଋଚା) ବଡ଼ ପାଟିରେ କ'ଣ ସବୁ କହି ପକାଉଛନ୍ତି(ସ୍ତୁୟମାନା) । ସେସବୁ କିଛି ବୁଝାପଡୁ ନ ଥାଏ ନନ୍ଦ ମହାରାଜାଙ୍କୁ କି

ବ୍ରଜବାସୀମାନଙ୍କୁ । ସେମାନେ ଏବେ ଭାବିଲେ ଏଠାକୁ ଆସିବାକୁ କାହ୍ନୁଆ ବୋଧେ ଏଇଥିପାଇଁ ମନା କରୁଥିଲା । ବୃନ୍ଦାବନ ବିହାରୀ ଶ୍ରୀକୃଷ୍ଣଙ୍କ ମାଧୁର୍ଯ୍ୟ, ଲୀଳା ଶକ୍ତି ପାଖରେ ବୈକୁଣ୍ଠ ବିହାରୀ ନାରାୟଣଙ୍କ ଐଶ୍ୱର୍ଯ୍ୟ ସେମାନଙ୍କୁ ଫିକା ଲାଗିଲା । ସେମାନଙ୍କ ମୁହଁ ଶୁଖିଗଲା । ପାଟି ଅଠା ଅଠା ହୋଇଗଲା ।

ବ୍ରଜବାସୀମାନଙ୍କ ବ୍ୟାକୁଳତା ଦେଖି ଭଗବାନ କୃଷ୍ଣ ସବୁ ବୁଝିଗଲେ । ଯୋଗମାୟାଙ୍କୁ କହି ପରଦା ହଟାଇ ଦେଲେ । ସମସ୍ତେ ହସି ହସି ଫାଟି ପଡ଼ିଲେ । ନାଚି କୁଦି ଯମୁନା ଜଳରେ ଡ଼େଇଁ କୁଦି କୃଷ୍ଣଙ୍କୁ କାଖେଇ କୁଣ୍ଢେଇ ଓଦା ଜୁଡୁବୁଡୁ କରିଦେଲେ । ଝାଳ, ଲାଳ, ଆନନ୍ଦ ଅଶ୍ରୁରେ ଭକ୍ତ ଭଗବାନ ସମସ୍ତେ ଆଜି ଏକାକାର । କେହି କାହାକୁ ଛାଡ଼ିବାକୁ ନାରାଜ । ସେଇଥିପାଇଁ ଶୁକଦେବଜୀ ବର୍ଣ୍ଣନ କରୁଛନ୍ତି ଯେ ଏ ଅଲୌକିକ ଘଟଣା ଦେଖି ନନ୍ଦ ଆଜି ଖାଲି ବିସ୍ମିତ ହୋଇ ନାହାନ୍ତି ବରଂ ଅତି ବିସ୍ମିତ ହୋଇଯାଇଛନ୍ତି(ସୁବିସ୍ମିତାଃ) ।

## ଅଥ ୨୯ଶ ଅଧ୍ୟାୟଃ

## (ମହାରାସ ଲାଗି ଗୋପୀ ଗୋବିନ୍ଦଙ୍କ ମିଳନ ପର୍ବ)

ପ୍ରଶ୍ନ-୩୭: ନଶ୍ୱର ସଂସାରରେ ଅଳ୍ପ ଶକ୍ତିମାନ ଜୀବ ଅସରନ୍ତି ଦୁଃଖ ପାଏ ଆଧିବ୍ୟାଧି ଯୋଗୁ । ମାନସିକ ତାପ ଆଧି ଓ ଶାରୀରିକ ତାପ ବ୍ୟାଧି ଅଟେ । ପୂର୍ବ ପୂର୍ବ ଜନ୍ମ ମାନଙ୍କର କୃତ ପାପର ପରିଣାମ ବ୍ୟାଧିରୂପେ ଆସନ୍ତି । ଫଳରେ ବାତ-ପିତ୍ତ-କଫ ନ୍ୟୁନ-ଅଧିକ ହୁଏ । ଔଷଧ ସେବନ ଦ୍ୱାରା ଅସାବଧାନତା ଜନିତ ବ୍ୟାଧି ଦୂର ହୁଏ କିନ୍ତୁ ପ୍ରାରବ୍ଧଜନିତ ବ୍ୟାଧିକୁ ଜୀବ ଭୋଗିବାକୁ ବାଧ୍ୟ ହୁଏ । ଅନ୍ୟପକ୍ଷରେ ମାନସିକ ଦୁଃଖ ଆଦିର କାରଣ ମନ-ବୁଦ୍ଧି-ଚିତ୍ତ-ଅହଂକାର ଆଶ୍ରିତ । କାମ, କ୍ରୋଧ,ଲୋଭ, ମୋହ, ମଦ ଓ ଈର୍ଷା । ଏଇ ଛଅ ଦୋଷରେ ସେମାନେ ସମସ୍ତେ ଦୂଷିତ । ଏଣୁ ଏମାନଙ୍କୁ ମନୁଷ୍ୟର ଅଦୃଶ୍ୟ ଅନ୍ତଃଶତ୍ରୁ କୁହାଯାଏ । ଏମାନଙ୍କ ନେତା କାମ ବା କନ୍ଦର୍ପ ବାଧା । ଅନ୍ୟ ପାଞ୍ଚଜଣ ଏହି ସେନାପତିଙ୍କର ସୈନ୍ୟ । ଅତି କଠୋର ସାଧନ, ଭଜନ, ତପ, ତୀର୍ଥ, ବ୍ରତ, ତପସ୍ୟା ଉପବାସ ବେଦ ଅଧ୍ୟୟନ ଆଦି ଦ୍ୱାରା ପାଞ୍ଚ ସୈନ୍ୟଙ୍କୁ ଜିଣିହୁଏ । କାମ କିନ୍ତୁ ଜମା ହାରେନା । ଧୁମ୍ କଲବଲ

କରେ । ଏହି କାମ ବ୍ରହ୍ମାଙ୍କୁ ସରସ୍ୱତୀ, ଶଙ୍କରଙ୍କୁ ମୋହିନୀ, ଇନ୍ଦ୍ରଙ୍କୁ ଅହଲ୍ୟା, ଚନ୍ଦ୍ରଙ୍କୁ ଗୁରୁପତ୍ନୀ ତାରା, ପରାଶରଙ୍କୁ ମତ୍ସ୍ୟଗନ୍ଧା, ବିଶ୍ୱାମିତ୍ରଙ୍କୁ ମେନକା, ନାରଦଜୀଙ୍କୁ ବିଶ୍ୱମୋହିନୀ ରୂପରେ କେତେ ହଇରାଣ ହରକତ ନ କରିଛି ! ! ଦଣ୍ଡକାରଣ୍ୟର ହଜାର ହଜାର ମୁନୀନ୍ଦ୍ର ଯୋଗୀନ୍ଦ୍ର ଏ କାମ ପୀଡ଼ାର ଔଷଧ ପଚାରିଛନ୍ତି ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଙ୍କୁ । ସ୍ମିତ ହାସ୍ୟ ହସି ଶ୍ରୀରାମ ବତେଇଛନ୍ତି ଔଷଧ । ହରି ନାମ, ରୂପ, ଲୀଳା, ଗୁଣ, ଧାମ, ସନ୍ଥ ଚିନ୍ତନ କରି ଦେହଭାବ ଛାଡ଼ । ଗୋପୀ ହୁଅ । ମୋତେ ପାଇବାକୁ ବ୍ୟାକୁଳ ହୁଅ । ମୁଁ ମର୍ଯ୍ୟାଦାରେ ଏବେ ବନ୍ଧା । ଦ୍ୱାପର ଯୁଗ ଶେଷରେ ମୋର କୃଷ୍ଣ ଅବତାର ହେବ । ଆତ୍ମାରାମ ଆପ୍ତକାମ ହୋଇ ମଧ ମୁଁ ହେବି ଗୋପୀକାମ । ତୁମ କାମ ପୀଡ଼ା ଦୂର ହେବ ।

ରାମ ଅବତାର କାଳରେ ଅଯୋଧ୍ୟା ନାରୀ ଓ ମିଥିଳା ନାରୀଙ୍କ ସହିତ ନାରାୟଣଙ୍କ ନିତ୍ୟ ସ୍ତୁତି ଗାନ କରୁଥିବା ବୈକୁଣ୍ଠସ୍ଥିତ ଋଚା (ବେଦମନ୍ତ୍ର) ମାନେ ମଧ ସେମାନଙ୍କ କାମ ପୀଡ଼ା ନିବାରଣ ଲାଗି ଭଗବାନଙ୍କୁ ବିନୀତ ପ୍ରାର୍ଥନା କରିଥିଲେ । ସୁତରାଂ ସେମାନଙ୍କ କଥା ରକ୍ଷା କରିବାକୁ ଗୋଲୋକ ଧାମରୁ ଅଷ୍ଟସଖୀ ସମେତ ୪ହଜାର ନିତ୍ୟ ପାର୍ଷଦଙ୍କୁ ଧରି ବୃନ୍ଦାବନରେ ଶ୍ରୀରାଧା ପ୍ରକଟ ହୋଇଥିଲେ । ଶ୍ରୀରାମ ଲୀଳାରେ ଭଗବାନ ଭକ୍ତମାନଙ୍କୁ କେବଳ ମିଳନ ଆନନ୍ଦ ଆସ୍ୱାଦନ କରାଇଥିଲେ । କିନ୍ତୁ ସ୍ୱୟଂ ବିରହ ପୀଡ଼ା ସ୍ୱାଦ ଅନୁଭବ କରି ଜଗତ ଜନନୀ ସୀତାଙ୍କୁ ବିରହ ପୀଡ଼ାର ମାଧୁର୍ଯ୍ୟ ଆସ୍ୱାଦନ କରାଇଥିଲେ । ସୀତା-ରାମଙ୍କ ଭକ୍ତଗଣ କିନ୍ତୁ ହରି ବିରହ ଜନିତ ପୀଡ଼ା ଯେ ହରି ମିଳନ ଆନନ୍ଦଠାରୁ କୋଟି ଗୁଣରେ ଆନନ୍ଦପ୍ରଦ ଏକଥା ବୁଝିବାରେ ଅକ୍ଷମ ହେଲେ । ସନ୍ଥ ଶିରୋମଣି ତୁଳସୀଦାସ ତାଙ୍କ ମାନସ ମହାଗ୍ରନ୍ଥରେ ଏଥିପାଇଁ ସୀତା ବନବାସ କଥା ବର୍ଣ୍ଣନା କରି ପାରିନାହାନ୍ତି । ଶେଷ ଜୀବନରେ ବୃନ୍ଦାବନ ଧାମ ଧାଇଁଛନ୍ତି ।

ସୁତରାଂ ଶ୍ରୀରାମ ପୁଣି ଶ୍ରୀକୃଷ୍ଣ ଅବତାରରେ ପୂର୍ଣ୍ଣତମ ପୁରୁଷୋତ୍ତମ ଷୋଳ କଳା ଯୁକ୍ତ ହୋଇ ଚଉଷଠୀ କଳା ବିଦ୍ୟା ସହିତ ପ୍ରକଟ ହେଲେ ସେଇ ଅଭାବ ପୂରଣ କରିବେ ବୋଲି । ସେଇ ଲକ୍ଷ୍ୟରେ ସେ ୨୮ ଅଧ୍ୟାୟ ପର୍ଯ୍ୟନ୍ତ ଲୀଳାରେ ମନୁଷ୍ୟ ମନ ବୁଦ୍ଧିରେ ସ୍ଥିତ ଆସୁରିକ ଶକ୍ତିର ବିନାଶ କରାଇଛନ୍ତି । ଏବେ ସେ ଚନ୍ଦ୍ରବଂଶରେ ପ୍ରକଟ । ଆକାଶର ୨୭ନକ୍ଷତ୍ର ଚନ୍ଦ୍ରଙ୍କର ୨୭ ପତ୍ନୀ । ଅଭିଜିତ ସ୍ୱତନ୍ତ୍ର ନକ୍ଷତ୍ର ସହିତ ସେମାନଙ୍କ ସଂଖ୍ୟା ୨୮ । ସେଥିପାଇଁ ପୂର୍ବବର୍ତ୍ତୀ ୨୮ ଅଧ୍ୟାୟରେ ତାଙ୍କୁ ବ୍ରହ୍ମା ବିମୋହନ,

ଅଗ୍ନିସ୍ତମ୍ଭନ, ତୃଣାବର୍ତ୍ତ ଉଦ୍ଧାର ( ପବନ ଦେବତାଙ୍କୁ ଶିକ୍ଷାଦାନ), ଇନ୍ଦ୍ର ଗର୍ବ ଗଞ୍ଜନ, ବରୁଣପୁରରେ କୃଷ୍ଣ ପୂଜନ ଆଦି କରାଇ ଦୈବୀଗୁଣଙ୍କୁ ଅନୁକୂଳ କରାଇଛନ୍ତି । ନଅ ନନ୍ଦ ଉପନନ୍ଦ ଆଦି ବ୍ରଜବାସୀଗଣଙ୍କ ସହିତ ମଥୁରାର ବୈଦିକ ଯାଜ୍ଞିକ ବ୍ରାହ୍ମଣ, ବ୍ରାହ୍ମଣ ପତ୍ନୀମାନଙ୍କୁ ମଧ୍ୟ ନିଜ ମାହାତ୍ମ୍ୟ ଉପଲବ୍ଧି କରାଇ ମହାରାସ ଲୀଳା ପାଇଁ ଅନୁକୂଳ କରାଇ ନେଇଛନ୍ତି ।

ଚୀର ହରଣ ଲୀଳା ମାଧ୍ୟମରେ ଠାକୁରଜୀ ସ୍ପଷ୍ଟ କରିଦେଇଛନ୍ତି ଯେ ନିଜକୁ ସ୍ତ୍ରୀ-ପୁରୁଷ ମନେ କରୁଥିବା ଜୀବ ଚରମ କୃଷ୍ଣ ପ୍ରେମର ଅନଧିକାରୀ । ସୁତରାଂ ସେ କୃଷ୍ଣଲୀଳାର ଚରମ ଉତ୍କର୍ଷ ମହାରାସଲୀଳାର ଅଧିକାରୀ ପ୍ରେମସନ୍ନ୍ୟାସିନୀ ଗୋପାଙ୍ଗନାମାନଙ୍କୁ କେବଳ ଚିହ୍ନଟ କରି ନିମନ୍ତ୍ରଣ କରିଛନ୍ତି । ମହାରାସ ପୂର୍ଣ୍ଣିମା ରାତ୍ରିର ବଂଶୀ ସ୍ୱନକୁ ଅପେକ୍ଷା କରିବାକୁ ପୂର୍ବରୁ ଜଣାଇ ଦେଇଛନ୍ତି ବାଲ୍ୟ ଲୀଳା ମାଧ୍ୟମରେ ।

ଆଧୁନିକ ବୃନ୍ଦାବନ ବସଷ୍ଟାଣ୍ଡ ପାଖରେ ସେଇ ବଂଶୀ ବାଦନ ସ୍ଥାନ ବଂଶୀ ବଟ ଏବେ ବି ଦର୍ଶନୀୟ । ସେଇ ଭାଗ୍ୟଶାଳୀ ମହାବଟ ମୂଳରେ ଭଗବାନ ରାସପୂର୍ଣ୍ଣିମା ରାତ୍ରିରେ ବଂଶୀବାଦନ କରିବାରେ କେଉଁ ବିଶେଷତା ଥିଲା ?

ଶ୍ରୀବାଦରାୟଣିଃ ଉବାଚ

**ଭଗବାନ୍ ଅପି ତା ରାତ୍ରୀଃ ଶରଦ-ଉତ୍‌ଫୁଲ୍ଲୋ ମଲ୍ଲିକାଃ ।**
**ବୀକ୍ଷ ରନ୍ତୁଂ ମନଃ ଚକ୍ରେ ଯୋଗମାୟାଂ ଉପାଶ୍ରିତାଃ ॥୧॥**

ଉ. ଭଗବାନଙ୍କ ନାମ ମୁରଲୀପାଣି । ମହାଭାରତ ମହାସମରରେ ମଧ୍ୟ ସେ ଅଣ୍ଟାରେ ମୁରଲୀ ଖୋସିଥାନ୍ତି । କେତେ ବେଳେ କାହାକୁ ଡ଼ାକିବା ଦରକାର ପଡ଼ିଲେ କୌଣସି ଗୋଟିଏ ରନ୍ଧ୍ରରେ ପବନ ଛାଡ଼ିବାକୁ ଫୁଙ୍କି ଦିଅନ୍ତି ତାଙ୍କୁ ।

ଆଜିର ବଂଶୀବାଦନ କିନ୍ତୁ ସ୍ୱତନ୍ତ୍ର ଥିଲା । ସେ ବଣରେ ବାଜୁଥିଲା ଅବଶ୍ୟ । ସମସ୍ତଙ୍କୁ କିନ୍ତୁ ଶୁଭୁ ନଥିଲା । ପ୍ରେମ ସନ୍ନ୍ୟାସିନୀ ମାନଙ୍କୁ ଜଣ ଜଣକର ନାମ ଧରି ସେ ଡ଼ାକ ଛାଡୁଥିଲା । ଅନ୍ୟମାନଙ୍କୁ ତାହା ଆଦୌ ଶୁଭୁ ନଥିଲା । ଶ୍ରୀକୃଷ୍ଣ ଏଠାରେ କେବଳ ଈଶ୍ୱର ନୁହନ୍ତି । ଈଶ୍ୱର ମାନଙ୍କର ଈଶ୍ୱର ପରମେଶ୍ୱର ପରମାତ୍ମା ଭଗବାନ ବୋଲି ପ୍ରଥମ ପଦରେ ସେ ସମ୍ବୋଧିତ । ତାଙ୍କର ଇଚ୍ଛା ହୋଇଛି (ମନଃ ଚକ୍ରେ) ସନ୍ୟାସିନୀ ଭକ୍ତ ଜୀବମାନଙ୍କ କାମପୀଡ଼ା ସମୂଳେ ନାଶ କରିବାକୁ (ରନ୍ତୁଂ) । ସେମାନଙ୍କୁ ଆଜି ରମଣ ବିହାରୀ ଶ୍ରୀହରି ରମଣ ଜନିତ ପରମାନନ୍ଦ କେବଳ ଭାଗ୍ୟବାନ

ଅଧିକାରୀ ଭକ୍ତମାନଙ୍କୁ ପାନ କରାଇବେ । ଯାହା ବିଷୟ ଆନନ୍ଦ, ବ୍ରହ୍ମାନନ୍ଦ, ନିର୍ବିକଳ୍ପ ସମାଧି ଜନିତ ଆନନ୍ଦ ଠାରୁ କୋଟିଗୁଣେ ଅଧିକ ।

ଭଗବାନ ଦେଖିଲେ ଗୋଟିଏ ଯୋଡ଼ିଏ ରାତ୍ରି ନୁହନ୍ତି ଏକ ବ୍ରହ୍ମରାତ୍ରୀ (୪୩୨କୋଟି ମାନବବର୍ଷ ସହିତ ସମାନ) ସମୟ ତାଙ୍କ ସମ୍ମୁଖରେ । ତାଙ୍କର ଅଚିନ୍ତ୍ୟ ଯୋଗଶକ୍ତିଙ୍କର ନାମ ଯୋଗମାୟା ବା ଶ୍ରୀରାଧାରାଣୀ । କାହାରି କାହାରି ମତରେ ସେ ଯୋଗମାୟା ପୂର୍ଣ୍ଣମାସୀ କିମ୍ବା ମୋହନ ବଂଶୀ । ସେଇ ଯୋଗମାୟା ପୁଣି ଅକାରଣ କୃପାମୟୀ । ସେ ଭଗବାନଙ୍କ ଇଛାରେ ଇଛା ମିଳାଇ ମହାରାସ ଲାଗି ସଂପୂର୍ଣ୍ଣ ଅନୁକୂଳ ସ୍ଥାନ-କାଳ-ପାତ୍ର ଆଦିର ସୁବନ୍ଦୋବସ୍ତ କରିସାରିଲେଣି । ମଲ୍ଲୀଫୁଲ ଫୁଟେ ବସନ୍ତ ଋତୁରେ । ଚୈତ୍ରମାସରେ କିନ୍ତୁ ଯୋଗମାୟାଙ୍କ ଆଦେଶରେ ଶରତ ଋତୁରେ ମଧ ମଳୟ ପବନ, ବସନ୍ତ ଋତୁ ନର୍ତ୍ତକୀ, ସଂଗୀତ ଆଦିଙ୍କ ସହିତ ସ୍ୱୟଂ କାମଦେବ ମଧ ଉପସ୍ଥିତ । ହାତରେ ତାଙ୍କ ପଞ୍ଚଶର ବିଶିଷ୍ଟ ପୁଷ୍ପ ଧନୁ । ଅଶୋକ, ଅରବିନ୍ଦ, ଆମ୍ର, ନବମାଳିକା (ନିଆଳି) ଓ ନୀଳୋତ୍ପଳ (ନୀଳ କଇଁ) ପାଞ୍ଚ କାମ ଶର ତାଙ୍କ ତୂଣୀରରେ । ଦିବ୍ୟ ମଲ୍ଲୀଫୁଲର ମହ ମହ ବାସନାରେ ପ୍ରକୃତି ରାଣୀ ଜୀବର ମନକୁ ଆକର୍ଷଣ କରିବା ସ୍ୱାଭାବିକ । ଏହି ଅଦିନ ବଣ ମଲ୍ଲୀ ସୂଚନା ଦେଉଛି ଯୋଗମାୟା ଓ କନ୍ଦର୍ପଙ୍କର ଉପସ୍ଥିତି ।

କେହି କେହି ମହାତ୍ମା ଏ ଶ୍ଳୋକରେ ଥିବା ଅପି ଏବଂ ତା ଦୁଇ ଶବ୍ଦଙ୍କୁ ମିଶାଇ ଅପିତା ଅର୍ଥ କରନ୍ତି । ଯେ ବ୍ରହ୍ମା ଶଙ୍କର ଆଦିଙ୍କ ପିତା ହୋଇ କାଳେ କାଳେ ବିରାଜମାନ ଅର୍ଥାତ୍ ଯାହାଙ୍କର ପିତା ନଥାନ୍ତି ସେଇ ତ ଭଗବାନ ଦିବ୍ୟ ମୁରଲୀ ମୋହନଧାରୀ କିଶୋର କୃଷ୍ଣ ।

ପ୍ରାୟତଃ ଜୀବ ଚାହେଁ ଭଗବତ ମିଳନ କିନ୍ତୁ ଏଠାରେ ଭଗବାନ ଚାହିଁଛନ୍ତି ଜୀବ ମିଳନ । କୃପାମୟଙ୍କର କୃପାର ସିନ୍ଦୁକ ଆଜି ଖୋଲା ପଡ଼ିଛି । କାହିଁ କେତେ ଯୁଗର ଅଚଖା ଅପୂର୍ବ ରସରେ ସେ ଦିବ୍ୟ ପ୍ରେମ ସିନ୍ଦୁକ ଭରା । ଭଗବାନ ଚାହିଁଛନ୍ତି ଯେ ରସ ଲମ୍ପଟ ଅଧିକାରୀଗଣଙ୍କୁ ଯୁଗ ଯୁଗର ସାଇତା ରସକୁ ଲୁଟେଇବା ପାଇଁ ।

ପ୍ରଶ୍ନ-୩୮ : ଭାଗବତ ମହାଗ୍ରନ୍ଥ ରସତତ୍ତ୍ୱର ଏକ ବିଶ୍ୱ ଇତିହାସ । ବିଶେଷତଃ ଦଶମ ସ୍କନ୍ଧରେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ମଧୁର ରସ ସହିତ ନବ କାବ୍ୟ ରସ ଏଥିରେ ପରିବେଷିତ । ତଥାପି ଶୃଙ୍ଗାର ରସ ଏଠାରେ ପୂର୍ଣ୍ଣତା ପ୍ରାପ୍ତ ହୋଇଛି । ଏହି ରାସ ଲୀଳାରେ ରସିକ ବିହାରୀ ଶ୍ରୀକୃଷ୍ଣ ତାଙ୍କ ଦିବ୍ୟ ବୃନ୍ଦାବନ ରସ ପସରାରେ କି କି ଦ୍ରବ୍ୟର ଉଦ୍ଦୀପନ ବିଜ୍ଞାପନ ଦେଖି ମୋହନ ବଂଶୀବାଦନ କଲେ ?

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

**ତଦା-ଉଡୁରାଜଃ କକୁଭଃ କରୈଃ ମୁଖଂ**
**ପ୍ରାଚ୍ୟା ବିଲିମ୍ପନ୍ ଅରୁଣେନ ଶନ୍ତମୈଃ ।**
**ସ ଚର୍ଷଣୀନାଂ ଉଦ୍‌ଗାତ ଶୁଚୋ ମୃଜନ୍**
**ପ୍ରିୟଃ ପ୍ରିୟାୟା ଇବ ଦୀର୍ଘ ଦର୍ଶନମ୍ ।।୨।।**

ଉ. ଉଡୁ ଅର୍ଥ ନକ୍ଷତ୍ର । ଅଭିଜିତ୍‌ଙ୍କୁ ମିଶାଇ ୨୮ ନକ୍ଷତ୍ରଙ୍କ ରାଜା, ସ୍ୱାମୀ, ବୋଲି ଚନ୍ଦ୍ରଦେବତା ଉଡୁରାଜ । ଆମେ ନିତିଦିନ ଦେଖୁଥିବା ଭୌତିକ ଚନ୍ଦ୍ରଙ୍କୁ ଗୋପାଙ୍ଗନାମାନେ ଶତ୍ରୁ ମାନୁଥିଲେ । କାରଣ ଚନ୍ଦ୍ର ସେମାନଙ୍କ କୃଷ୍ଣ ମିଳନରେ ବାଧକ ହେଉଥିଲେ । ଦିନବେଳେ ସେମାନେ ଯମୁନା ଘାଟକୁ ସ୍ନାନ କିମ୍ବା ଜଳ ଆହରଣ ପାଇଁ ଗଲାବେଳେ, ଗୋଶାଳାକୁ ଗୋସେବା ଗୋଦୋହନ ପାଇ ଗଲାବେଳେ କିମ୍ବା ମଥୁରାକୁ ଦୁଧ, ଦହି, ଲହୁଣୀ ଛେନା ଆଦି ବିକ୍ରୀ ବାହାନାରେ ଯାଇ ସେମାନଙ୍କର ଆତ୍ମାଙ୍କର ପ୍ରିୟତମ କୃଷ୍ଣଙ୍କୁ ଦର୍ଶନ କରିପାରୁଥିଲେ । ରାତ୍ରି ଆଗମନରେ ଚନ୍ଦ୍ର ଆକାଶରେ ଉଠନ୍ତେ ଗୋପନ ମିଳନ ଆଉ ସମ୍ଭବ ହୁଏନା । କର ଅର୍ଥ ହସ୍ତ ଓ ଚନ୍ଦ୍ରକିରଣ ମଧ୍ୟ । ଗୋପୀମାନେ ବାହାରକୁ ବାହାରିଲେ ଭାବନ୍ତି ଚନ୍ଦ୍ର ଦେବତା ତାଙ୍କ କିରଣ ରୂପକ ହସ୍ତପ୍ରସାରଣ କରି ସେମାନଙ୍କୁ କୃଷ୍ଣ ମିଳନକୁ ନ ଯିବାକୁ କହୁଛନ୍ତି ; ସେମାନଙ୍କ ଗୋପନ ଅଭିସାର ଧରା ପକାଇ ଦେଉଛନ୍ତି ।

ଚନ୍ଦ୍ର-ବିଷ-ଅମୃତ ସମସ୍ତେ ସମୁଦ୍ର ମନ୍ଥନରୁ ଜାତ ବୋଲି ତିନି ଭାଇ । ଚନ୍ଦ୍ରଙ୍କର ବଡ଼ ଭାଇ ବିଷ କାରଣ ସେ ଚନ୍ଦ୍ରଙ୍କ ଆଗରୁ ଉତ୍ପନ୍ନ ହୋଇଥିଲେ । ସେହିଭଳି ଅମୃତ ମଧ୍ୟ ତାଙ୍କର ସାନ ଭାଇ । ଚନ୍ଦ୍ର ଗୋପୀମାନଙ୍କୁ ଚେତାଇ ଦେଉଥିଲେ କୃଷ୍ଣ ପ୍ରେମ ରୂପୀ ଅମୃତ ପଛେ ପାନ କରିବ । ପ୍ରଥମେ ସଂସାର ନିନ୍ଦା ରୂପକ ବିଷ ଖାଇ ହଜମ କରି ସେ ପ୍ରେମର ଅଧିକାରୀ ହେବା ଚାହି ।

ଯୋଗମାୟା ଅଘଟନ ଘଟନ ପଟିୟସୀ ଭଗବାନଙ୍କର ଅଚିନ୍ତ୍ୟ ମହାଶକ୍ତି । ସେ ଆକାଶରୁ ହଟେଇ ନେଇଛନ୍ତି ଭୌତିକ ଚନ୍ଦ୍ରକୁ ଏହି କାରଣରୁ । ପୂର୍ବ (ପ୍ରାଚ୍ୟା) ଦିଗରେ (କକୁଭଃ) ଦିବ୍ୟ ଆଧାତ୍ମିକ ଚନ୍ଦ୍ରଙ୍କର (ଉଡୁରାଜଃ) ଉଦୟ କରାଇଛନ୍ତି । ତାଙ୍କ ଦର୍ଶନରେ ମନେ ହେଉଥିଲା ସତେକି ବିଷ୍ଣୁପତ୍ନୀ ପ୍ରକୃତିରାଣୀ ପ୍ରାଚୀ ଦିଗ ସୁନ୍ଦରୀ ନାରୀଟିଏ ହୋଇଛନ୍ତି । ଚନ୍ଦ୍ରଦେବତା ଅରୁଣ ରଙ୍ଗକୁ କିରଣରୂପୀ ହସ୍ତରେ (କରୈଃ) ବୋଳି ଦେଇଛନ୍ତି (ବିଲିମ୍ପନ୍) ଦିଗସୁନ୍ଦରୀଙ୍କ ଲାଜ ଲାଜ ମୁଖରେ(ମୁଖୈଃ) ।

ଫଳତଃ ଦର୍ଶକମାନଙ୍କର (ଚର୍ଷଣୀନାଂ) ଯୁଗ ଯୁଗର କୃଷ୍ଣ ବିରହ ଦୁଃଖ ଜ୍ୱାଳା ପ୍ରଶମିତ (ଶନ୍ତମୈଃ) ହୋଇଯାଇଛି । ଅନ୍ୟ ପକ୍ଷରେ ସେମାନଙ୍କର ଗୃହ ଜଞ୍ଜାଳ ରୂପକ ଶୋକ, କଷ୍ଟ କୃଷ୍ଣ ମିଳନ ବାଧା ଦୂରେଇ ଯାଇଛି (ଶୁଚୋ ମୃଜନ୍) । ସତେ କି ଏହା ସଂସାରୀ ପ୍ରବାସୀ ପତି-ପତ୍ନୀଙ୍କର ଅନେକ ଦିନର ବିରହ ପରେ ମିଳନ ନୁହେଁ ବରଂ ଏହା ତ ଗୋପୀ ଗୋବିନ୍ଦଙ୍କର ଯୁଗ ଯୁଗାନ୍ତର ବିଚ୍ଛେଦ ପରେ ପୁନର୍ମିଳନର ପର୍ବ, ମହୋତ୍ସବ ।

ପ୍ରଶ୍ନ-୩୯: ଚନ୍ଦ୍ର ଦେବତା ବହୁ ପତ୍ନୀକ । ୨୮ ନକ୍ଷତ୍ର ତାଙ୍କ ସେବାରେ ନିରନ୍ତର ମଗ୍ନ । କୃଷ୍ଣଙ୍କର ଭାଗ୍ୟରେ ବହୁପତ୍ନୀକ ହେବା କଥା ଗର୍ଗମୁନି ଭବିଷ୍ୟତ ବାଣୀ କରିଛନ୍ତି । ଉଭୟ କୃଷ୍ଣ ଓ ଚନ୍ଦ୍ରଙ୍କ ବଦନ କମଳ ହସ ହସ ବୋଲି ମୁଖରେ ସାମ୍ୟତା ବିଦ୍ୟମାନ । କୃଷ୍ଣ ଚନ୍ଦ୍ରଙ୍କ ବଂଶରେ ଜାତ । ପୁଣି ନାମରେ କୃଷ୍ଣଚନ୍ଦ୍ର, ବ୍ରଜ ଚନ୍ଦ୍ର ଓ ବୃନ୍ଦାବନ ଚନ୍ଦ୍ର ଆଦିରେ ଚନ୍ଦ୍ର ଶବ୍ଦ ଯୋଡ଼ା ହେବାରୁ ନାମରେ ସାମ୍ୟ ଅଛି । ଚନ୍ଦ୍ର ନୀଳ ଆକାଶରେ ବିହାର କଲାବେଳେ କୃଷ୍ଣଙ୍କ ଚିନ୍ମୟ ଦେହ ମଧ୍ୟ ଘନ ନୀଳ ବର୍ଣ୍ଣ । ସୁତରାଂ ଉଭୟଙ୍କ ଦେହରେ ମଧ୍ୟ ସାମ୍ୟତା ବିଦ୍ୟମାନ । ସର୍ବୋପରି ଚନ୍ଦ୍ର କିରଣ ଓ କୃଷ୍ଣଙ୍କ ବସନ ଉଭୟେ ପୀତବର୍ଣ୍ଣର । ସମାନ ସ୍ୱଭାବ, ଗୁଣ, ଗାତ୍ର ଥିଲେ ଲୋକେ ସଙ୍ଗାତ ବସି ପରସ୍ପରକୁ ସାହାଯ୍ୟ କରନ୍ତି ।

ରାସପୂର୍ଣ୍ଣିମା ରାତ୍ରରେ ପୂର୍ଣ୍ଣ ଚନ୍ଦ୍ରଙ୍କୁ ଦର୍ଶନ କରି ଭଗବାନ କୃଷ୍ଣଚନ୍ଦ୍ର ହଜାର ହଜାର (ଅସଂଖ୍ୟ) ପ୍ରେମ ସନ୍ନ୍ୟାସିନୀ ଗୋପୀମାନଙ୍କୁ ନିମନ୍ତ୍ରଣ କଲେ ଦିବ୍ୟ ମୁରଲୀ ବାଦନକରି । ମହାତ୍ମାମାନଙ୍କ ମତରେ ଶ୍ରୀବୃନ୍ଦାବନ ଧାମ ରସଭୂମି, ନୀଳାଚଳ ଧାମ ମୁକ୍ତିଭୂମି, କାଶୀ ଜ୍ଞାନ ଭୂମି, ଅଯୋଧ୍ୟା ବୈରାଗ୍ୟ ଭୂମି, ବଦ୍ରିନାଥ ତପୋଭୂମି । ଅନ୍ୟ ସକଳ ତୀର୍ଥସ୍ଥାନ ବା ଧାମ ସାଧନ ଭୂମି ଅଟନ୍ତି ।

ରସିକ ମୁକୁଟମଣି ଭଗବାନ କୃଷ୍ଣଚନ୍ଦ୍ର ଦେଖିଲେ ସଂପୂର୍ଣ୍ଣ ଗୋଲାକାର (ଅଖଣ୍ଡ ମଣ୍ଡଳ) ଆଧ୍ୟାତ୍ମିକ ଚନ୍ଦ୍ରଦେବଙ୍କ ହଳଦୀ ଗୁରୁ ଗୁରୁ କିରଣ(ନବ କୁଙ୍କୁମ ଅରୁଣ) ପୁଷ୍କରିଣୀ ସ୍ଥିତ ଫୁଟିଥିବା କଇଁ ଫୁଲ, ବନ ଉପବନରେ ଖେଳୁଥିବା ପତ୍ର, ପୁଷ୍ପ, ଫଳ ଭରା ବନଶୋଭା କୁଞ୍ଜ, ନିକୁଞ୍ଜ ସବୁ ଦିବ୍ୟ ପ୍ରେମର ପୁଲକରେ ପୁଲକିତ ସ୍ପନ୍ଦିତ । ରମା କହିଲେ ବିଷ୍ଣୁ ପତ୍ନୀ ଲକ୍ଷ୍ମୀ ଓ କୃଷ୍ଣକାନ୍ତା ଶ୍ରୀରାଧା ରାଣୀ ଉଭୟଙ୍କୁ ବୁଝାଏ । ସୁତରାଂ ଭଗବାନଙ୍କ ମନ ଆକାଶରେ ଉଦୟ ହୋଇଛନ୍ତି ପ୍ରେମ ପସରାର ମହା ମାଲିକାଣୀ ଶ୍ରୀରାଧା ଓ ତାଙ୍କ ଅଷ୍ଟ ମହାସଖୀଙ୍କ ସହିତ ଅସଂଖ୍ୟ ବ୍ରଜ ବଲ୍ଲଭୀ ।

ସଂସାରରେ ମାୟା ନିର୍ମିତ ରୂପ-ରସ-ଗନ୍ଧ-ଶବ୍ଦ-ସ୍ପର୍ଶ ଆଦି ପଞ୍ଚ ତନ୍ମାତ୍ରା ଦ୍ୱାରା କାମଦେବ ଜୀବକୁ ଆକର୍ଷଣ କରନ୍ତି । ଭଗବତ୍ ଅମୃତ ରସର ଦୁଇରୂପ । ଶବ୍ଦ ବ୍ରହ୍ମ (ବେଦମନ୍ତ୍ର) ଓ ନାଦ ବ୍ରହ୍ମ (ନୃତ୍ୟ-ସଙ୍ଗୀତ-ଅଭିନୟ ଆଦି) । ଜୀବ ଅନ୍ତଃକରଣରେ ଥିବା ରସର ଲାଳସାକୁ ଭଗବାନ ଇଚ୍ଛାକଲେ ମୋହନ ବଂଶୀନାଦ ଦ୍ୱାରା ନିମନ୍ତ୍ରଣ କରିବାକୁ । ଯାହା ସନ୍ନ୍ୟାସିନୀ ଗୋପୀମାନଙ୍କ ମନକୁ ଆକର୍ଷଣ କରିବାରେ(ବାମଦୃଶଂ ମନୋହରଂ) ଧୁରନ୍ଧର । ଗୋପୀଜନ ବଲ୍ଲଭ ବଂଶୀ ବଜାଇବାରେ ବଡ଼ ପାରଦର୍ଶୀ । ସେ ମୁରଲୀ, ବଂଶୀ, ବେଣୁ ତିନୋଟି ଯନ୍ତ୍ର ରଖିଥାନ୍ତି । କେତେବେଳେ କାହାକୁ ଫୁଙ୍କି କେଉଁ ରନ୍ଧ୍ରର କେଉଁ ସ୍ୱନ ଦ୍ୱାରା କାହାକୁ ଆହ୍ୱାନ କରନ୍ତି ତାଙ୍କୁ କେବଳ ଜଣା । ବର୍ତ୍ତମାନ ତାଙ୍କ କରକମଳରେ ଅଛି ସପ୍ତସ୍ୱର, ସପ୍ତ ରନ୍ଧ୍ର ବିଶିଷ୍ଟ ମୋହନ ମୁରଲୀ । ୧ମ ରନ୍ଧ୍ରରୁ ନିର୍ଗତ ସ୍ୱନ ଯୋଗୀନ୍ଦ୍ର, ମୁନୀନ୍ଦ୍ରଙ୍କୁ ଶାନ୍ତ ରସରେ, ୨ୟଦ୍ୱାରା ଦାସ୍ୟ, ୩ୟ ଦ୍ୱାରା ସଖ୍ୟ, ୪ର୍ଥ ଦ୍ୱାରା ବାତ୍ସଲ୍ୟ, ୫ମ ଦ୍ୱାରା ମଧୁର ବା ଶୃଙ୍ଗାର ରସ, ୬ଷ୍ଠ ଦ୍ୱାରା ପଶୁପକ୍ଷୀ, କୀଟ ପତଙ୍ଗ, ବୃକ୍ଷଲତାଙ୍କୁ ଓ ୭ମ ଦ୍ୱାରା ଯମୁନାକୁ ଉଜାଣି (ଜଡ଼କୁ ଚେତନ କରାଇ) ବୁହାଇ ବ୍ରହ୍ମାନନ୍ଦ ରସାପ୍ଳୁତ କରନ୍ତି । ସୁତରାଂ ଗୋପୀମାନଙ୍କୁ ଠାକୁରଜୀ ନିମନ୍ତ୍ରଣ କରିଛନ୍ତି ୫ମ ସ୍ୱରରେ କ୍ଲୀଁ ବୀଜ ମନ୍ତ୍ରକୁ ନାଦରେ ରୂପାନ୍ତରିତ କରି (ଜଗୌ କଳଂ) ଏହି ଅଲୌକିକ ବ ଶଃ ଦ୍ୱାରା । ଅନ୍ୟ ଦେବୀ, ଦେବତା, ଗନ୍ଧର୍ବ କିନ୍ନର, ପଶୁ, ପକ୍ଷୀ, ମୁନି, ଋଷି, ବୃକ୍ଷ ଲତାକୁ ମଧ୍ୟ ନିମନ୍ତ୍ରଣ କରିଛନ୍ତି ଅନ୍ୟ ରନ୍ଧ୍ରମାନଙ୍କରେ ଦିବ୍ୟ ସ୍ୱନମାନ ସୃଷ୍ଟି କରି ।

ବୃନ୍ଦାବନର ଯମୁନା କୂଳରେ କେଶୀଘାଟ ନିକଟରେ ଏହି ରାସମଣ୍ଡଳ ଅଦ୍ୟାପି ଚିହ୍ନିତ ହୋଇ ରହିଛି । ଅଧିକାରୀ ଜୀବମାନେ ସମସ୍ତେ ଆଗପଛ ହୋଇ ଧାଇଁଛନ୍ତି ରାସଲୀଳା ଦିବ୍ୟ ଭୂମିକୁ । କିନ୍ତୁ ରାସ ମଣ୍ଡଳୀକୁ ସେମାନେ ପ୍ରବେଶ କରି ନପାରିଲେ ମଧ୍ୟ ବାହାରେ ବାହାରେ ରହି କେହି ଆକାଶରେ, କେହି ଜଳରେ, ସ୍ଥଳରେ, ଜମା ହୋଇ ଏ ରସର ଅନୁଭବ ପାଇ ନିଜକୁ ଧନ୍ୟ କରିଛନ୍ତି ।

କୋକିଳର ପଞ୍ଚମ ସ୍ୱର ନାଦ କାମୁକ କାମୁକିନୀ ଲୋକଙ୍କ ମନ, ବୁଦ୍ଧି ହୃଦୟକୁ ମନ୍ଥି ପକାଏ । ଭଗବାନଙ୍କର ଏ ଦିବ୍ୟ ମୁରଲୀ ସ୍ୱନ ଗୋପାଙ୍ଗନାମାନଙ୍କର ନିଷ୍କାମ ହୃଦୟକୁ କିଭଳି କାମ ପୀଡ଼ିତ କଲା ?

**ନିଶମ୍ୟ ଗୀତଂ ତତ୍ ଅନଙ୍ଗ ବର୍ଦ୍ଧନଂ**

**ବ୍ରଜସ୍ତ୍ରିୟଃ କୃଷ୍ଣଗୃହୀତ ମାନସାଃ ।**

**ଆଜଗ୍ମୁଃ ଅନ୍ୟୋନ୍ୟଂ ଅଲକ୍ଷିତ-ଉଦ୍ୟମାଃ**

**ସ ଯତ୍ର କାନ୍ତୋ ଜବ ଲୋଳ କୁଣ୍ଡଳାଃ ॥୪॥**

ଉ. ଜୀବ ମନରେ ରାଗ-ଦ୍ୱେଷ, ସୁଖ-ଦୁଃଖ, ଭଲମନ୍ଦ ଦ୍ୱନ୍ଦ୍ୱ ନ ରହିଲେ, କାମ, କ୍ରୋଧାଦି ଷଡ଼ ରିପୁ ନଥିଲେ ସଂସାର ବାସନା ରହିପାରେ ନାହିଁ । ମୁରଲୀର ଦିବ୍ୟ ସ୍ୱନରେ ଗୋପୀମାନଙ୍କ ଲଜ୍ଜା, ଭୟ, ବୁଦ୍ଧି, ବିବେକ, ଗମ୍ଭୀରତା, ପାତିବ୍ରତ୍ୟ ଧର୍ମ ସହିତ ଏ ସବୁ ଜିନିଷ ମନ ସହିତ ଚୋରୀ ହୋଇଗଲା (କୃଷ୍ଣଗୃହୀତମାନସାଃ) । ସୁତରାଂ ସେମାନେ ମୁରଲୀ ଧ୍ୱନି ପଛେ ପଛେ ଦୌଡ଼ିଲେ ମୁରଲୀଧାରୀଙ୍କଠାରୁ ମାଗି ଆଣିବାକୁ । ଏକ ବାକ୍ୟରେ ଗୋପାଙ୍ଗନାମାନେ ସମସ୍ତେ କୃଷ୍ଣକାମ ପୀଡ଼ିତା ।

ଏ ମଧୁର ସ୍ୱନର ଲକ୍ଷ୍ୟ ସ୍ଥଳ କେବଳ ମହାରାସର ଅଧିକାରିଣୀ ଗଣ । ଯଶୋଦା, ରୋହିଣୀ, ନନ୍ଦ, ଉପନନ୍ଦ, ଶ୍ରୀଦାମ, ମଧୁମଙ୍ଗଳ ଆଦି ନୁହନ୍ତି । ଗୋପୀଙ୍କ କୋମଳ ହୃଦୟକୁ ପୁଲକିତ କରିବାକୁ, ଅମାନିଆ ମନକୁ ମନେଇବାକୁ, କୃଷ୍ଣପ୍ରେମ ରସ ଲୋଭୀ ଚିତ୍ତକୁ ଚଞ୍ଚଳ କରିବାକୁ ମୁରଲୀ ତାନ ଛାଡୁଛି । ଯହାର ପ୍ରାଣ, ମନ, ବୁଦ୍ଧି ଆଦି କୃଷ୍ଣ ସର୍ବସ୍ୱ ସେଇମାନେ କେବଳ ଏଇ ପଞ୍ଚମ ତାନ ଶ୍ରବଣ କରି ପରମ ବ୍ୟାକୁଳିତା ହୋଇ ବଣକୁ ଧାଇଁଲେ । ସମୟ ରାତି ଅଧ । ସେ ସବୁ ବଣ ଜଙ୍ଗଲ ପୁଣି ସିଂହ ବ୍ୟାଘ୍ର ସଂକୁଳ । ସେଥିପ୍ରତି ଗୋପୀମାନଙ୍କର ନିଘା ନାହିଁ । ଆଜି ସେମାନେ କୃଷ୍ଣ ପ୍ରେମ ପାଗଳିନୀ ।

ବଂଶୀ ସ୍ୱନକୁ ଅନୁସରଣ କରି ସେମାନେ ଘର, ଦ୍ୱାର, ବନ୍ଧୁ ପରିଜନ, ଲୋକ ଲଜ୍ଜା, ସବୁକୁ ତିଳାଞ୍ଜଳି ଦେଇଦେଲେ । ଲକ୍ଷ୍ୟ ଅଜାଣତରେ ସେମାନେ ଜମା ହେଲେ ଯମୁନା ପୁଳିନ ରାସ ମଣ୍ଡଳରେ । ବ୍ରଜମଣ୍ଡଳକୁ ଦଳ ଦଳ ହୋଇ ସେମାନେ ଧାଇଁଛନ୍ତି । ଦୌଡ଼ିବାରେ ଅଦ୍ଭୁତ ପ୍ରତିଯୋଗିତା । ଜଣେ ଅନ୍ୟ ଜଣକୁ ନ ଜଣାଇ ନଡ଼ାକି ଦୌଡୁଛି । କୃଷ୍ଣପ୍ରେମ ଭାଗ ବେଶୀ ପାଇଯିବ ବୋଲି । ଯିବାବେଳର ବ୍ୟଗ୍ରତାରେ ସେମାନଙ୍କର କୁଣ୍ଡଳମାନେ ଅସ୍ତବ୍ୟସ୍ତ ହୋଇ ଦୋଳାୟମାନ । ମସ୍ତକର କବରୀ ମଲ୍ଲୀମାଳ ସବୁ ଭୁଲୁଣ୍ଠିତ । କେଶ-ବାସ-ଆଭରଣ ସମସ୍ତେ ବଂଶୀ ସ୍ୱନରେ ଆନ୍ଦୋଳିତ ହେଉଥାନ୍ତି (ଜବ ଲୋକ କୁଣ୍ଡଳାଃ) । ଶୁକଦେବଙ୍କୀ ରସିକତାର ସହିତ ବର୍ଣ୍ଣନ କରୁଛନ୍ତି ଯେ ଖସି ପଡୁଥିବା ଫୁଲ ଗୁଡ଼ିକ ଚୈତନ୍ୟମୟୀ ହୋଇ ସତେ ଯେପରି ଗୋପୀମାନଙ୍କୁ କହୁଛନ୍ତି, ତୁମେମାନେ ଯାଅ କୃଷ୍ଣ ମିଳନକୁ । ଆମେ ଫୁଲମାନେ ତୁମମାନଙ୍କ ଠାରୁ ଅଧିକ ଭାଗ୍ୟବତୀ କାରଣ ଆମେ ତୁମଭଳି କୃଷ୍ଣ ଭକ୍ତ(ଗୋପୀ) ମାନଙ୍କ ପାଦ ତଳେ ଦଳି ହୋଇ ଅଧିକ ଗର୍ବିତା । ଆମ ଜୀବନ ଧନ୍ୟ ହେଲା ।''

ପ୍ରଶ୍ନ-୪୦: ପରବର୍ତ୍ତୀ ୭ଶ୍ଳୋକରେ (୫ମ-୧୧ଶ) ଶୁକଦେବଜୀ ବର୍ଣ୍ଣନ କରୁଛନ୍ତି ଗୋପ ଲଳନାମାନଙ୍କର କୃଷ୍ଣ ମିଳନ ଆକାଙ୍କ୍ଷାର ଗଭୀରତା, ଉତ୍ସୁକତା, ବ୍ୟାକୁଳତା ମାପିବାକୁ । ବୃତ୍ତିରେ ଗୋପାଳୁଣୀ ଥିଲେ ସକଳ ଗୋପାଙ୍ଗନା । ସେମାନେ ଗୋସେବା ଲାଗି କି ବିକଳ୍ପ ବ୍ୟବସ୍ଥା କରି ଘର ଛାଡ଼ିଲେ ?

**ଦୁହ୍ୟନ୍ତ୍ୟୋଽଭିଯଯୁଃ କାଶ୍ଚିତ୍ ଦୋହଂ ହିତ୍ୱା ସମୁତ୍ସୁକାଃ ।**
**ପୟୋଽଧିଶ୍ରିତ୍ୟ ସଂଯାବଂ ଅନୁଦ୍‌ବାସ୍ୟ-ଅପରା ଯଯୁଃ ।।୫।।**

ଉ. ଦିବ୍ୟ ପ୍ରେମ ପ୍ରାପ୍ତି ଲୋଭରେ ସଂସାରୀ ବସ୍ତୁ ମୋହ ତ୍ୟାଗ କରିବା ଲୋକ ମହାତ୍ମା ପଦବାଚ୍ୟ । ସଂସାରୀ ବସ୍ତୁ ଲୋଭରେ ସତ୍ୟବାଦିତା, ନ୍ୟାୟ ପରାୟଣତା, ଧର୍ମଶୀଳତା, ପାତିବ୍ରତ୍ୟ ଆଦି ଦିବ୍ୟଗୁଣ ତ୍ୟାଗ କରିବା ଲୋକ ଦୁରାତ୍ମା ଅଟେ । ଗୋପୀମାନେ ଚୀରହରଣ ସମୟରୁ ସଂସାରର ସକଳ ବସ୍ତୁ (ଏପରି କି ଦେହ ପ୍ରାଣ ଆସକ୍ତି) ମୋହ ବାସନାର ମୁକ୍ତ ହୋଇ ସାରିଥିଲେ । ଲୋଭ ତାଙ୍କର କେବଳ କୃଷ୍ଣଙ୍କ ଦିବ୍ୟାତିଦିବ୍ୟ ଅଲୌକିକ ପ୍ରେମ । ଭୌତିକ ସୁଖ ଲାଳସା ଆଦି ନୁହେଁ ।

ସୁତରାଂ କୃଷ୍ଣ ବଂଶୀସ୍ୱନ ଶ୍ରବଣ କରି ଗୋପାଙ୍ଗନାମାନେ ସଂସାର - ବ୍ୟକ୍ତି, ପରିସ୍ଥିତି ସମ୍ଭାଳିବା ଉଚିତ ମନେ କରି ନଥିଲେ । ସେମାନେ କରୁଥିବା ଗୃହ କର୍ମ ଯଥାବତ୍ ଅଧା ପନ୍ତରିଆ ରହିଗଲା । କିଏ ଗୋଦୋହନ କରିବାକୁ ଯାଇ ବାଛୁରୀ ଫିଟେଇଛି । ବାଛୁରୀ ପିଉଛି । ଗାଈ ପହ୍ନେଇ ସାରିଲାଣି । ସେ ଗୋ ଦୋହନ ନକରି ଦୌଡ଼ିଲା (ଅଭିଯଯୁଃ) ବଂଶୀସ୍ୱନ ପଛରେ । କିଏ ବା ଅଧା ଗୋ ଦୋହନ କରିଥିବା ଅବସ୍ଥାରେ ଛାଡ଼ି ପଳାଇଲା । କେଉଁ ଗୋପୀ ଦୁଧ ଚୁଲିରେ ବସେଇ(ଅଧିଶ୍ରିତ୍ୟ) ଆଉଟୁଛି, ପୁଣି କିଏ ରୁଟି ପକାଇଛି ଗରମ ତାଉଆ ଉପରେ । ତାକୁ ଓହ୍ଲାଇ (ଅନୁଦ୍‌ବାସ୍ୟ) ସେମାନେ ବସିବା ସ୍ଥାନରୁ ଉଠି ପଳାଇଲେ ମୁରଲୀ ଧ୍ୱନିରେ ବ୍ୟାକୁଳିତା ହୋଇ । ଦୁଧ, ରୁଟି ତାଉଆ ହେଲା ଚୁଲି ପାଉଁଶ । କିଏ ପଚାରେ ସେ ସବୁକୁ ! ! ! କେତେ ଅଦ୍ଭୁତ ଅଲୌକିକ ସେଇ କୃଷ୍ଣପ୍ରେମର ଆକର୍ଷଣ ! !

ପ୍ରଶ୍ନ-୪୧: ଗୋପୀମାନେ ଗୋସେବା ଛାଡ଼ିଦେଲେ ହୁଏତ ବିକଳ୍ପ ଭାବେ ଗୋପାଳମାନେ ସେସବୁ କରିଦେବେ ବୋଲି । ଗୃହିଣୀ ହିସାବରେ ଶାଶୁ-ଶ୍ୱଶୁର-ପତିସେବା, ଶିଶୁପାଳନ ଲାଗି କି ବିକଳ୍ପ ବ୍ୟବସ୍ଥା କଲେ ସେମାନେ ?

**ପରିବେଷୟନ୍ତ୍ୟଃ ତତ୍‌ହିତ୍ୱା ପାୟୟନ୍ତ୍ୟଃ ଶିଶୂନ୍ ପୟ ।**
**ଶୁଶ୍ରୂଷନ୍ତ୍ୟଃ ପତୀନ୍ କାଶ୍ଚିତ୍ ଅଶ୍ନନ୍ତ୍ୟୋଽପାସ୍ୟ ଭୋଜନମ୍ ॥୬॥**

ଉ. ବଂଶୀ ବାଜିବା ବେଳକୁ କେଉଁ ଗୋପୀ କାହାକୁ ଭୋଜନ ପରିବେଷଣ କରୁଥିଲା (ଅନ୍ନ ଦେଇଛି, ବ୍ୟଞ୍ଜନ ଦେବା ବାକି ଅଛି) । କିଏ ଶିଶୁକୁ ଦୁଗ୍ଧ ପାନ କରାଉଥିଲା (ଅଧା ପିଆଇଛି), କିଏ ପତିଙ୍କର ଗୋଡ଼ ଘଷୁଥିଲା (ଗୋଟିଏ ଗୋଡ଼ ଘଷିଛି, ଅନ୍ୟଟି ଘଷିବା ବାକି ଅଛି) ପୁଣି କିଏ ନିଜେ ଖାଉଥିଲା ଅଧା ଖାଇଛି ଏଭଳି ଅବସ୍ଥାରେ ମଧ୍ୟ ସେମାନେ ଉଠି ପଳାଇଲେ । ଏପରି କି କିଏ ବସନ ପିନ୍ଧୁଥିଲା ତ ସେ ଅଧା ପିନ୍ଧା ବସନରେ ବାକି ବସନକୁ ହାତରେ ଗୋଟେଇ ପୋଟେଇ ଧରି ଧାଇଁ ପଳାଇଲା ! ! ଚୀର ହରଣ ଲୀଳାରେ ସେମାନେ ଶିଖିଛନ୍ତି ଗୋବିନ୍ଦ ମିଳନରେ ଗୋବିନ୍ଦ ଶରଣାଗତିରେ ବାହ୍ୟ ସାଜ ସଜା, ଦେହ ଗୃହ ସାଇତା, ପତି ପୁତ୍ର ମମତା ସାଧକ ନୁହନ୍ତି ବରଂ ବାଧକ । ସେମାନେ ସମସ୍ତେ ଗୋବିନ୍ଦଙ୍କ ପାଚିଲା ଚେଲା ।

ପ୍ରଶ୍ନ-୪୨ : ବଂଶୀ ବାଜିବା ବେଳକୁ ରାତି ସମୟ । ମହାରାସ ଆକାଶରେ ଆଧାତ୍ମିକ ଚନ୍ଦ୍ର ଉଦୟ ହୋଇ ସାରିଲେଣି । ନାରୀମାନେ ଘର କାମ ସାରି ଶୋଇବା ପୂର୍ବରୁ ସିନ୍ଦୂର, କଜ୍ଜଳ, ଗହଣା ଆଦିରେ ନିଜକୁ ସଜାଇବା କାମ କରିବାରେ ଲାଗିଥିବେ । ସେ ସବୁ କରୁ କରୁ ସେମାନଙ୍କର କୃଷ୍ଣ ମିଳନକୁ ଯିବାରେ ବିଳମ୍ବ ହେଲାକି ?

**ଲିମ୍ପନ୍ତ୍ୟଃ ପ୍ରମୃଜନ୍ତ୍ୟୋଽନ୍ୟା ଅଞ୍ଜନ୍ତ୍ୟଃ କାଶ୍ଚ ଲୋଚନେ ।**
**ବ୍ୟତ୍ୟସ୍ତ ବସ୍ତ୍ର-ଆଭରଣାଃ କାଶ୍ଚିତ୍ କୃଷ୍ଣ-ଅନ୍ତିକଂ ଯଯୁଃ ॥୭॥**

ଉ. ସେଭଳି କାମରେ ଲାଗି ଗୋପନାରୀମାନେ ଯିବାରେ ଆଦୌ ବିଳମ୍ବ କରି ନାହାନ୍ତି । ସେମାନେ ଗୋପାଳକମାନଙ୍କୁ ନିଜ ନିଜ ଦେହ ଅବଶ୍ୟ ଦେଇଥିଲେ, ନିଜ ଦେହର ପତି ମାନୁଥିଲେ । କିନ୍ତୁ ମନ ଦେଇଥିଲେ ମନ ମୋହନ କୃଷ୍ଣଙ୍କୁ । ସୁତରାଂ ତାଙ୍କ ମିଳନ ଲାଗି ଦେହ ସଜା, କେଶ ବେଶ ସଜା ଆଦିର କି ଲୋଡ଼ା ?

କେଉଁ କେଉଁ ଗୋପୀ ସ୍ନାନାନ୍ତେ ଅଙ୍ଗରେ ଅଙ୍ଗରାଗ ଲେପନ(ଲିମ୍ପନ୍ତ୍ୟଃ), ସୁଗନ୍ଧିତ ତୈଳ ଘର୍ଷଣ (ପ୍ରମୃଜନ୍ତ୍ୟୋ), ଚକ୍ଷୁରେ କଜ୍ଜଳ ଭୂଷଣ ଆଦି କରୁଥିଲେ ସମସ୍ତେ ସେ ସବୁକୁ ଅଧା ଅଧି ସାରି ଉଠି ଧାଇଁଲେ । ପୁଣି କେହି କେହି ବାଉଳା ହୋଇ ଗଳାର ହାରକୁ ପାଦରେ ବାନ୍ଧି, ପାଦ ନୂପୁରକୁ ହାତରେ ଗଳାଇ, ହାତର ମୁଦ୍ରିକାକୁ ପାଦରେ ପିନ୍ଧି, ବସ୍ତ୍ରସବୁ ଓଲଟ ପାଲଟ ପିନ୍ଧି (ବ୍ୟତ୍ୟସ୍ତ ବସ୍ତ୍ର-ଆଭରଣ) ବଂଶୀ ସ୍ୱନର ପିଛା କଲେ ।

ପ୍ରଶ୍ନ-୪୩: ଏଭଳି ବ୍ୟସ୍ତତା ଭିତରେ ଗୋପାଙ୍ଗନା ଦୌଡ଼ନ୍ତେ ସେମାନଙ୍କ ପିତା-ମାତା, ଶାଶୁ-ଶଶୁର, ପୁତ୍ର-କନ୍ୟା ଆଦି ସେମାନଙ୍କୁ କିପରି ଯିବାକୁ ବାରଣ କଲେ ନାହିଁ ?

**ତା ବାର୍ଯ୍ୟମାଣାଃ ପତିଭିଃ ପିତୃଭିଃ ଭ୍ରାତୃବନ୍ଧୁଭିଃ ।**
**ଗୋବିନ୍ଦ-ଅପହୃତ-ଆତ୍ମାନୋ ନ ନ୍ୟବର୍ତ୍ତନ୍ତ ମୋହିତାଃ ॥୮॥**

ଉ. ସେମାନେ ଗୋପଲଳନାମାନଙ୍କୁ ଯଥାସାଧ୍ୟ ବାରଣ କରିଛନ୍ତି ଅବଶ୍ୟ । ହେଲେ ସେମାନେ ସେତେବେଳକୁ ଗୋଟା ସୁଦ୍ଧା କୃଷ୍ଣ ପ୍ରେମ ପାଗଳିନୀ । ସେମାନଙ୍କର ଅନ୍ତଃମନର ସକଳ ସଦ୍‌ଗୁଣ ପାତିବ୍ରତ୍ୟ, ସଂଯମଶୀଳତା ଧୈର୍ଯ୍ୟ ଆଦି ମୋହନ ବଂଶୀ ଚୋରେଇ ନେଇ ସାରିଥିଲା (ଅପହୃତ-ଆତ୍ମାନୋ) । କୃଷ୍ଣ ମିଳନ ଆକାଙ୍‌କ୍ଷା ଅତ୍ୟନ୍ତ ବଳବତୀ ହୋଇଥିଲା (ମୋହିତାଃ) । ସୁତରାଂ ସେମାନେ ନିଜେ ନିଜକୁ ଅଟକାଇ ରଖିବା ସମ୍ଭବ ହୋଇନଥିଲା(ନ ନ୍ୟବର୍ତ୍ତନ୍ତ) ।

ପ୍ରଶ୍ନ-୪୪: ସଂସାରରେ ଅନେକ ପ୍ରକାରର ଲୋକ ଦେଖାଯାଆନ୍ତି । କେହି ନରମା କେହି ବା ଟାଣୁଆ । ଏହି ଟାଣୁଆ ଗୋପାଳମାନେ କେତେକ ଗୋପୀଙ୍କୁ ଜବରଦସ୍ତ ଅଟଦେଇଥିଲେ ମଧ୍ୟ । କେହି କେହି ସେମାନଙ୍କୁ ବନ୍ଦିନୀ କରି ଗୃହ ମଧ୍ୟରେ ପଲଙ୍କଗୋଡ଼ରେ ବାନ୍ଧି ପକାଇଲେ । ସେମାନଙ୍କ ମହାରାସ ମିଳନ ୧ ... ଗୋବିନ୍ଦ କିଛି ବ୍ୟବସ୍ଥା କରିପାରିଲେ କି ?

**ଅନ୍ତଃ ଗୃହଗତାଃ କାଶ୍ଚିତ୍ ଗୋପ୍ୟୋଽଲବ୍‌ଧ ବିନିର୍ଗମାଃ ।**
**କୃଷ୍ଣଂ ତଦ୍‌ଭାବନା ଯୁକ୍ତା ଦଧ୍ୟୁଃ ମୀଳିତ ଲୋଚନାଃ ॥୯॥**

ଉ. ସେମାନଙ୍କ ଭାଗ୍ୟର କି ପ୍ରଶଂସା କରିବା ! ! ! ଯୋଗମାୟା ସେମାନଙ୍କ ଲାଗି ବଢ଼ିଆ ବ୍ୟବସ୍ଥା କରିଦେଲେ । ଫଳରେ ଅନ୍ୟମାନଙ୍କ ଅପେକ୍ଷା ସେମାନେ ଆଗରୁ ରମଣରେତିରେ ପହଞ୍ଚିପାରିଲେ । ଗୋପୀମାନେ ସିନା ଦେହ ଅଧିକାର ଦେଇଥିଲେ ପିତା-ପତିଙ୍କୁ । ହେଲେ ମନ ପ୍ରାଣର ଅଧିକାର ଦେଇସାରିଥିଲେ ପରମ ପିତା-ପରମ ପତିଙ୍କୁ । ସେମାନେ ହାତ ଗୋଡ଼ ବନ୍ଧା ହୋଇ ମଧ୍ୟ ଶୁଦ୍ଧ ଅନ୍ତଃକରଣରେ କୃଷ୍ଣ ଧ୍ୟାନରେ ଲାଗିଗଲେ । ସେମାନେ କୌଣସି ସାଧାରଣ ନାରୀ ନଥିଲେ । ଦଣ୍ଡକାରଣ୍ୟ ମୁନି ଋଷି, ବେଦମନ୍ତ୍ର, ଗୋଲୋକର ନିତ୍ୟ ସିଦ୍ଧା, ଦିବ୍ୟ ନାରୀ ଥିଲେ ସମସ୍ତେ ।

କୃଷ୍ଣ ଜନ୍ମ ଦିନ କେବଳ ଦର୍ଶନରେ ଗୋପୀମାନେ ପରମ ଆନନ୍ଦ ପ୍ରାପ୍ତ ହୋଇଥିଲେ । ବାଲ୍ୟ ଲୀଳା ବେଳେ ଦର୍ଶନ ସହିତ ସ୍ପର୍ଶ ଆଲିଙ୍ଗନ ରସସୁଖ ଚାଖି

ସାରିଥିଲେ । ପୌଗଣ୍ଡ ଲୀଳାରେ ଦର୍ଶନ ସ୍ପର୍ଶ ସହିତ ହସ ଗମାତ ସୁଖ ପାଇଥିଲେ । ଗୋବିନ୍ଦଙ୍କ ସହ କଳହ କରି, ଯଶୋଦାଙ୍କ ଆଗରେ ତାଙ୍କ ନାମରେ ନାଲିସ କରି ଗୋପୀମାନେ ଅନେକ ଆନନ୍ଦ ଲୁଟି ଚାଲିଥିଲେ । ନିକୁଞ୍ଜ ଲୀଳାରେ ଥରେ ରାଧାରାଣୀ ମହାମାନ କରିଥିଲେ । କୃଷ୍ଣ ଆସିଲେ ଛଦ୍ମ ବେଶରେ କାଚରାଣୀ, ମାଲୁଣୀ, ନାପିତୁଣୀ, ପାନରାଣୀ, ରୂପରେ ମାନ ମର୍ଦ୍ଦନ କରିବାକୁ । ତଥାପି ହାର ମାନିନେଲେ ରାଧାଙ୍କଠାରୁ । ଶେଷରେ ସନ୍ନ୍ୟାସୀ ବେଶରେ ଆସି ଅହଂକାର-ମାନ ଉଭୟକୁ ଭିକ୍ଷାଥାଳ ପତାଇ ମାଗିନେଲେ ।

ବେଳେବେଳେ ଗୋପୀଙ୍କର ତୀବ୍ର ପ୍ରେମ ଇଚ୍ଛା ଜନିତ ବ୍ୟାଧି ପୀଡ଼ା ହୁଏ । ସେ ବୈଦ୍ୟ ବେଶରେ ମସ୍ତକରେ ଠେକା, ହାତରେ ଔଷଧ ବାକ୍ସ ଧରି ପହଞ୍ଚି ଯାଆନ୍ତି । ଦର୍ଶନ, ସ୍ପର୍ଶ, କାନ ଫୁଙ୍କା, ନେତ୍ର କଟାକ୍ଷରେ କେବଳ ଯୁବତୀ ଗୋପୀମାନଙ୍କର ମାନସିକ ରୋଗ ଭଲ କରନ୍ତି ସେ । ଏହି ସବୁ ଦିବ୍ୟ କୃଷ୍ଣ ଲୀଳା ଚିନ୍ତନରେ ବନ୍ଦିନୀ  ଗୋପୀମାନେ ନିଜ ଅନ୍ତଃକରଣକୁ ଲଗାଇଲେ ଚକ୍ଷୁ ବନ୍ଦ କରିଦେଇ ।

ପ୍ରଶ୍ନ-୪୫ : ସଂସାରରେ ଦେଖାଯାଏ ଅନେକ ଜ୍ଞାନୀ, ଧ୍ୟାନୀ, ତପସ୍ୱୀ ଚକ୍ଷୁ ବନ୍ଦ କରି ବର୍ଷ ବର୍ଷ ଧରି ନିଜ ନିଜ କଷ୍ଟ କର ଧ୍ୟାନ କରୁଥାନ୍ତି ଅବଶ୍ୟ । ଗୋପୀମାନେ ଧ୍ୟାନରେ ବସି ଯାଆନ୍ତେ କି ଫଳ ପ୍ରାପ୍ତ ହେଲେ ସେମାନେ ସେତେବେଳେ ?

**ଦୁଃସହ ପ୍ରେଷ୍ଠ ବିରହ          ତୀବ୍ର ତାପ ଧୁତ-ଅଶୁଭାଃ ।**
**ଧ୍ୟାନ ପ୍ରାପ୍ତ-ଅଚ୍ୟୁତ-ଆଶ୍ଳେଷ          ନିବୃତ୍ତ୍ୟା କ୍ଷୀଣମଙ୍ଗଳାଃ ॥୧୦॥**

ଉ. ସାଧାରଣ ସାଧକ ଯୋଗୀ ମୁନିଙ୍କ ଇଷ୍ଟ ଧ୍ୟାନ ଓ ଗୋପୀମାନଙ୍କ କୃଷ୍ଣ ଧ୍ୟାନ ଏକାନ୍ତରର ନୁହେଁ । ଜଣକର ପ୍ରାକୃତ ମନ ବୁଦ୍ଧି ତ ଅନ୍ୟର ଦିବ୍ୟ ଅଲୌକିକ ମନ ବୁଦ୍ଧି । ସୁତରାଂ ଯୋଗୀ ମୁନିଙ୍କ ଧ୍ୟାନର ଫଳ ପାଞ୍ଚ ପ୍ରକାର ମୁକ୍ତି ମିଳିବାରେ ଅନେକ ଡ଼େରି ହୋଇପାରେ । ଗୋପୀମାନେ ଧ୍ୟାନ ସିଦ୍ଧ ଆଗରୁ ହୋଇସାରିଥାନ୍ତି । ସୁତରାଂ ସେମାନଙ୍କୁ ଧ୍ୟାନର ଫଳ କୃଷ୍ଣ ପ୍ରେମ ସଙ୍ଗେ ସଙ୍ଗେ ମିଳିପାରିଲା ।

ତୀବ୍ର ଗୋବିନ୍ଦ ବିରହ ତାପରେ କୃଷ୍ଣରୂପଧ୍ୟାନ ହେତୁ ସେମାନଙ୍କର ଅନ୍ତଃକରଣର ଅବଶିଷ୍ଟ ପାପ ଜଳିପୋଡ଼ି ନଷ୍ଟ ହୋଇଗଲା । ପୁଣି ପୂର୍ଣ୍ଣ ପୁରୁଷୋତ୍ତମ ଗୋବିନ୍ଦଙ୍କ ଲୀଳା ଚିନ୍ତନରେ ତାଙ୍କ ସହିତ ସ୍ପର୍ଶ, ଆଲିଙ୍ଗନ ଜନିତ ପରମାନନ୍ଦ ପ୍ରଭାବରେ ପୁଣ୍ୟ ମଧ୍ୟ ନଷ୍ଟ ହୋଇଗଲା (କ୍ଷୀଣ ମଙ୍ଗଳାଃ) । ଦିବ୍ୟ ଦେହରେ ସେମାନଙ୍କୁ କୃଷ୍ଣ ସଙ୍ଗ ମିଳିଲା ରାସ ଲୀଳାରେ ।

ପ୍ରଶ୍ନ-୪୬: ମନୁଷ୍ୟର ଅନ୍ତଃକରଣର ପାପ ଭାର ତାକୁ ନର୍କକୁ ନିଏ । ପୂ୍ଣ୍ୟ ଫଳ ସ୍ୱର୍ଗ ପହୁଞ୍ଚାଏ । ପାପ-ପୁଣ୍ୟ ଉଭୟ ପାଖାପାଖି ସମାନ ଓଜନ ହେଲେ ମର୍ତ୍ତ୍ୟ ଲୋକରେ ମଣିଷ ଜନ୍ମ ଦିଏ । ପାପ-ପୁଣ୍ୟ କର୍ମଫଳ ଉଭୟ କର୍ମଫଳ ବନ୍ଧନର କାରଣ । କିନ୍ତୁ ଉଭୟରୁ ମୁକ୍ତ ହେଲେ ବୈକୁଣ୍ଠ, ଗୋଲୋକ ଆଦିରେ ଲୀଳା ପ୍ରବେଶ କରେ । ଗୋପୀଙ୍କ କ୍ଷେତ୍ରରେ ଏବେ କ'ଣ ସେଇଆ ହେବ ?

**ତଂ ଏବ ପରଂ ଆତ୍ମାନଂ ଜାରବୁଦ୍ଧ୍ୟା-ଅପି ସଙ୍ଗତାଃ ।**
**ଜହୁଃ ଗୁଣମୟଂ ଦେହଂ ସଦ୍ୟଃ ପ୍ରକ୍ଷୀଣ ବନ୍ଧନାଃ ॥୧୧॥**

ଉ. ଠିକ୍ ସେଇ ଫଳପ୍ରାପ୍ତ ହେଲେ ସେମାନେ । ଏକଥା ଅବଶ୍ୟ ସତ ଯେ ବ୍ରଜଗୋପିକାମାନେ ଠାକୁରଙ୍କୁ ପରମାତ୍ମା, ପରମବ୍ରହ୍ମ ବା ଭଗବାନ ବୋଲି ଭାବନା ନକରି କେବଳ ତାଙ୍କ ସୁନ୍ଦର ପଣରେ ମୋହିତ ହୋଇ ତାଙ୍କୁ ମନ ପ୍ରାଣ ସମର୍ପଣ କରି ଦେଇଥିଲେ । ଗୋପୀଙ୍କ ଦେହ ଅବଶ୍ୟ ତ୍ରିଗୁଣମୟୀ ମାୟା ନିର୍ମିତ ଥିଲା । ସେମାନେ କୃଷ୍ଣଙ୍କର ଦିବ୍ୟ ରୂପ, ଗୁଣ, ଲୀଳା ଧ୍ୟାନର ଫଳରୂପେ ମରଣଶୀଳ ସ୍ଥୁଳ ଦେହ ତ୍ୟାଗ କରିଦେଲେ । ବନ୍ଧନ-ମୁକ୍ତ (ପ୍ରକ୍ଷୀଣ ବନ୍ଧନାଃ) ହେଲେ । କାରଣ ଦେହ କେବେ ବି ଆତ୍ମାକୁ ବାନ୍ଧେନା । ବାନ୍ଧନ୍ତି ଅନ୍ତଃକରଣର ବା ମନ ବୁଦ୍ଧିର ପାପ-ପୁଣ୍ୟ ।

ପ୍ରଶ୍ନ-୪୭: ଗୋପୀଙ୍କ କୃଷ୍ଣ ପ୍ରେମ ଜାର ପ୍ରେମ ହୋଇ ମଧ୍ୟ ଦ୍ୱାରକାଲୀଳାର ରୁକ୍ମିଣୀ, ସତ୍ୟଭାମା, କାଳିନ୍ଦୀ, ଜାମ୍ବବତୀଙ୍କ କୃଷ୍ଣ ପ୍ରେମଠାରୁ ଅଧିକ ବନ୍ଦନୀୟ ବା ଶ୍ରେଷ୍ଠତର ଥିଲା । କାରଣ ତାହା କେବଳ କୃଷ୍ଣ ସୁଖ କେନ୍ଦ୍ରିତ ପ୍ରେମ ଥିଲା । ଏ କଥାର ଗୂଢ଼ ରହସ୍ୟ ଜାଣିବାକୁ ରାଜା ବକ୍ତା ମହାଶୟଙ୍କୁ କ'ଣ ବୋଲି ପ୍ରଶ୍ନ କଲେ ?

**ପରୀକ୍ଷିତ ଉବାଚ**

**କୃଷ୍ଣଂ ବିଦୁଃ ପରଂ କାନ୍ତଂ ନ ତୁ ବ୍ରହ୍ମତୟା ମୁନେ ।**
**ଗୁଣ ପ୍ରବାହ-ଉପରମଃ ତାସାଂ ଗୁଣଧିୟାଂ କଥମ୍ ॥୧୨॥**

ଉ. ରାଜା ଭାବିଲେ ତାଙ୍କ ମନ, ବୁଦ୍ଧି ଭଳି ଗୋପୀମାନଙ୍କ ମନ ବୁଦ୍ଧି ବୋଧହୁଏ ସତ୍ତ୍ୱ, ରଜ, ତମୋ ଗୁଣୀମାୟା ଦ୍ୱାରା ଆଚ୍ଛନ୍ନ ହୋଇଥିବ (ଗୁଣଧିୟା) । ସେମାନେ କୃଷ୍ଣଙ୍କୁ ପର ପୁରୁଷ (ପରଂକାନ୍ତଂ) ବା ଜାର ପୁରୁଷ ବୋଲି ଗାଳି ଗୁଲଜ କରୁଥିଲେ । ବ୍ରହ୍ମ ଭାବନା (ବ୍ରହ୍ମତୟା) କରୁନଥିଲେ । ସୁତରାଂ ଶ୍ରୋତା ଭୂମିକାରେ ରାଜା ବିନମ୍ର ଭାବରେ ଏଭଳି ଅଡୁଆ ପ୍ରଶ୍ନଟି ପଚାରି ବସିବା ସ୍ୱାଭାବିକ ।

ପ୍ରଶ୍ନ-୪୮: ରୁକ୍ମିଣୀ, ସତ୍ୟଭାମାଙ୍କ କୃଷ୍ଣ ପ୍ରେମରେ ନିଜ ନିଜର ସୁଖ

କାମନା ଲୁଚି ରହିଥିଲା । ସୁତରାଂ ତାହା ଗୋପୀପ୍ରେମଠାରୁ ନିକୃଷ୍ଟତର ବୋଲି ରାଜା ବୁଝି ପାରିନଥିଲେ । କୌଣସି ରାଜା ରାଣୀଙ୍କ ଗଳାର ସ୍ୱର୍ଣ୍ଣ ହାର ସୁନ୍ଦର ଶୋଭନୀୟ ହୋଇପାରନ୍ତି କିନ୍ତୁ କୃଷ୍ଣଙ୍କ ମସ୍ତକର ମୟୂର ଚୂଳ, କାଇଁଚମାଳ, ତୁଳସୀ ଦଳ ସେ ସବୁଠାରୁ ଅଧିକ ଦିବ୍ୟ । ଏହି ଗୂଢ଼ ରହସ୍ୟକୁ ବୁଝାଇବାକୁ ଯାଇ ଶୁକଦେବ ପରମହଂସ କେଉଁ ଦୃଷ୍ଟାନ୍ତଟି ଉଲ୍ଲେଖ କଲେ ?

ଶ୍ରୀଶୁକ ଉବାଚ

**ଉକ୍ତଂ ପୁରସ୍ତାତ୍ ଏତତ୍ ତେ ଚୈଦ୍ୟଃ ସିଦ୍ଧିଂ ଯଥା ଗତଃ ।**
**ଦ୍ୱିଷନ୍ ଅପି ହୃଷୀକେଶଂ କିଂ ଉତ-ଅଧୋକ୍ଷଜ ପ୍ରିୟାଃ ॥୧୩॥**

ଉ. ବକ୍ତା ମହାଶୟ ଏ ବିଷୟରେ ପୂର୍ବରୁ ୯ମ ସ୍କନ୍ଦରେ ପ୍ରହ୍ଲାଦ ପ୍ରସଙ୍ଗରେ ବର୍ଣ୍ଣନା କରି ସାରିଥିବା (ଉକ୍ତଂ ପୁରସ୍ତାତ୍) ଶିଶୁପାଳଙ୍କ ଦୃଷ୍ଟାନ୍ତଟି ଦେଲେ । କାରଣ ଚେଦି ରାଜା ଶିଶୁପାଳ କୃଷ୍ଣଙ୍କଠାରେ ଆଜୀବନ ବିଦ୍ୱେଷ (ଦ୍ୱିଷନ୍ ଅପି) କରୁଥିଲେ । ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ କୃଷ୍ଣଙ୍କୁ ଗାଳି ଦେଉଥିଲେ । ତଥାପି ଶିଶୁପାଳ କୃଷ୍ଣଙ୍କ ହାତରେ ମରି ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହେଲେ । କାରଣ ସେ ଦ୍ୱେଷ ମଧ୍ୟ କୃଷ୍ଣ କୈନ୍ଦ୍ରିକ ଥିଲା । ପୁଣି କଂସ ଅସୁର ଭୟ ଭାବନାରେ ତାଙ୍କ ହାତରେ ମରି ମଧ୍ୟ ଉଦ୍ଧାର ହୋଇଥିଲେ ।

ସୁତରାଂ କାମ ଭାବନାରେ ନିଜ ନିଜ ମନକୁ କୃଷ୍ଣ ଲୀଳା ଚିନ୍ତନରେ ଲଗାଇଲେ ସେମାନଙ୍କ ଆତ୍ମା ଉଦ୍ଧାର ହେବାରେ କି ବିଚିତ୍ରତା ଅଛି । ଅର୍ଥାତ୍ ଭଗବାନଙ୍କ ଭକ୍ତ (ଅଧୋକ୍ଷଜ ପ୍ରିୟା) ପକ୍ଷରେ ଏହା ଏକ ଅତ୍ୟନ୍ତ ସାମାନ୍ୟ କଥା ।

ପ୍ରଶ୍ନ-୪୯ : ବେଦ ମତରେ ବ୍ରହ୍ମ ନିର୍ଗୁଣ-ନିରାକାର । ଅବ୍ୟୟ, ଅପ୍ରମେୟ ମଧ୍ୟ । ଜଣେ ଶରଣାଗତ ଭକ୍ତ କିନ୍ତୁ ତାର ସୀମିତ ବୁଦ୍ଧି ଜ୍ଞାନରେ ଏ ସବୁର ଗୂଢ଼ ଅର୍ଥ, ରହସ୍ୟ, ତାତ୍ତ୍ୱିକ ବିଶ୍ଳେଷଣ ବୁଝିବ କିପରି ?

**ନୃଣାଂ ନିଃଶ୍ରେୟସ-ଅର୍ଥାୟ ବ୍ୟକ୍ତିଃ ଭଗବତୋ ନୃପ ।**
**ଅବ୍ୟୟସ୍ୟ-ଅପ୍ରମେୟସ୍ୟ ନିର୍ଗୁଣସ୍ୟ ଗୁଣ-ଆତ୍ମନଃ ॥୧୪॥**

ଉ. କେବଳ ସେଇଥିପାଇଁ ତ ତାଙ୍କୁ ସଗୁଣ-ସାକାର (ବ୍ୟକ୍ତିଃ ଗୁଣ-ଆତ୍ମନଃ) ରୂପରେ ବାରମ୍ବାର ପ୍ରକଟ ହେବାକୁ ପଡ଼େ ମତ୍ସ୍ୟ, କଚ୍ଛପ, ବରାହ, ବାମନ, ନୃସିଂହ, ରାମ, କୃଷ୍ଣାଦି ଅନେକ ରୂପରେ । ଉଦ୍ଦେଶ୍ୟ କେବଳ ଭକ୍ତର ମଙ୍ଗଳ ବା ଜନ କଲ୍ୟାଣ ସାଧନ(ନୃଣାଂ ନିଃଶ୍ରେୟସାର୍ଥୟ) । ସେ ସ୍ୱୀକାର କରନ୍ତି ଅନେକ ଅବତାର ।

ପ୍ରଶ୍ନ-୫୦ : କେବଳ କାମ, ଦ୍ୱେଷ ଭାବନାରେ କ'ଣ ଭଗବତ କୃପା ପ୍ରାପ୍ତି ସମ୍ଭବ ?

**କାମଂ କ୍ରୋଧଂ ଭୟଂ ସ୍ନେହଂ ଐକ୍ୟଂ ସୌହୃଦଂ ଏବ ଚ ।**
**ନିତ୍ୟଂ ହରୌ ବିଦଧତୋ ଯାନ୍ତି ତନ୍ମୟତାଂ ହି ତେ ॥୧୫॥**

ଉ. ନା, ନା କେବଳ ସେତିକି ନୁହେଁ । ବରଂ ଭୟରେ କଂସ ଭଳି, ସ୍ନେହରେ ନନ୍ଦ, ଯଶୋଦାଙ୍କ ଭଳି, ଐକ୍ୟରେ ବ୍ରହ୍ମା ଶଙ୍କରଙ୍କ ଭଳି, ସୌହାର୍ଦ୍ଦ୍ୟରେ ପାଣ୍ଡବମାନଙ୍କ ଭଳି ଯେନ ତେନ ପ୍ରକାରେ ମନକୁ କୃଷ୍ଣ ତନ୍ମୟ କଲେ ପାଇଚିଛିଡ଼ିବ । ମନରେ କୃଷ୍ଣ ଭାବନା ତୈଳଧାରା ଭଳି ଅବିଚ୍ଛିନ୍ନ ହେଲେ ଭଗବତ ପ୍ରାପ୍ତି ନିଶ୍ଚୟ ସମ୍ଭବ ।

ଭକ୍ତିରେ ନାରଦ, ପ୍ରହ୍ଲାଦ, କ୍ରୋଧରେ ହିରଣ୍ୟକଶିପୁ, ଦ୍ୱେଷରେ ଶିଶୁପାଳ, ଭୟରେ କଂସ, ମିଥ୍ୟା ବାତ୍ସଲ୍ୟ ଭାବନାରେ ପୁତନା ଯଦି କୃଷ୍ଣପ୍ରାପ୍ତ ହେଲେ ଗୋପୀମାନେ କାମ ଭାବନାରେ କାହିଁକି ନହେବେ ? ଅଜାଣତରେ ବିଷ ଖାଇଲେ ମୃତ୍ୟୁ ନିଶ୍ଚିତ । ଔଷଧ ନ ଚିହ୍ନି ତାର ଗୁଣ ନ ଜାଣି ସେବନ କଲେ ବ୍ୟାଧିରୁ ମୁକ୍ତି ମିଳେ । ଅଜାଣତରେ ଅମୃତ ପିଇଲେ ଜଣେ ଅମର ହେବନିକି ? ପିଲା ବୋଲି ଅଗ୍ନିରେ ହାତ ରଖିଲେ ହାତ ପୋଡ଼ି ଯିବନିକି ? ଯେ ଯେଉଁ ଭାବରେ ଆସୁ ଭଗବାନଙ୍କୁ ପାଇବା ଲାଗି ଶରୀର-ସଂସାର ଆସକ୍ତି ଭୁଲିଲେ ତାଙ୍କୁ ନିଶ୍ଚୟ ପାଇବ । କାରଣ ଭଗବାନ ଏକ ବ୍ୟକ୍ତି ନୁହନ୍ତି । ବରଂ ସେହି କୃଷ୍ଣ ଭକ୍ତ ବତ୍ସଳତା, କୃପାଳୁତା, ସର୍ବଜ୍ଞତା ଓ ସର୍ବସମର୍ଥତା ଆଦି ସକଳ ଦିବ୍ୟ ଗୁଣମାନଙ୍କର ଏକ ମହତ ଅନୁଷ୍ଠାନ ।

ସେହି ଲକ୍ଷ୍ୟରେ ଶ୍ରୀମନ୍ ନାରାୟଣଙ୍କୁ ଲକ୍ଷ୍ମୀ ପୂଜନ୍ତି ପତି ରୂପରେ, ବ୍ରହ୍ମାଜୀ ପୂଜନ୍ତି ପିତା ରୂପରେ, ମର୍ତ୍ତ୍ୟର ମଣିଷ ଓ ସ୍ୱର୍ଗର ଦେବତା ପୂଜନ୍ତି ପ୍ରପିତାମହ ରୂପରେ । ବ୍ରହ୍ମା-ଶଙ୍କର-ନାରଦ-ଚତୁଃସନ ଆଦି ସିନା ଗୁରୁ ହେଲେ ନାରାୟଣ ହେଉଛନ୍ତି ଗୁରୁମାନଙ୍କର ଗୁରୁ ପରମଗୁରୁ । ଗୋପୀମାନେ ସମସ୍ତେ ଥିଲେ ଜାତିସ୍ମର । ପୂର୍ବ ତପସ୍ୟା, ସଂସ୍କାର ବଳରେ ସେମାନେ ଜାଣିପାରିଥିଲେ ଏହି ଗୋଲାକ ବିହାରୀ ଶ୍ରୀକୃଷ୍ଣଙ୍କ କଳା ହିଁ ସେହି ବୈକୁଣ୍ଠ ବିହାରୀ ଶ୍ରୀମନ୍ ନାରାୟଣ । ସୁତରାଂ କୃଷ୍ଣଙ୍କ ମଧୁର ମୁରଲୀସ୍ୱନର ଡ଼ାକରାକୁ ସେମାନେ ଆଡ଼େଇ ଦେଇ ପାରିନାହାନ୍ତି । ସେମାନଙ୍କ ମନ ବ୍ୟାକୁଳ ଓ ଚିତ୍ତ ଚଞ୍ଚଳ ହୋଇ ଉଠିଛି । ମାୟା ସଂସାରର କଠିନ ବନ୍ଧନ ଛିନ୍ନ କରିଦେଇ ସେମାନେ ଦୌଡ଼ିଛନ୍ତି ମୁରଲୀ ମୋହନଙ୍କ ଶରଣ ପଶିବାକୁ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ପ୍ରଶ୍ନ-୫୧ : ବ୍ରହ୍ମା-ଶଙ୍କର-ଇନ୍ଦ୍ର-ଚନ୍ଦ୍ର-ସୂର୍ଯ୍ୟ-ପରାଶର-ବିଶ୍ୱାମିତ୍ର ଆଦି ସମସ୍ତେ କାମ ଦଉଡ଼ିରେ ବନ୍ଧା । ଜୀବର ସକଳ ଦମ୍ଭ, ତପସ୍ୟା ଲବ୍ଧ ଲୌକିକ ଏବଂ ଅଲୌକିକ ସବୁ ଶକ୍ତି କାମ ପାଖରେ ହାର ମାନେ । କାମ ଭାବରେ କୃଷ୍ଣ ଭଜନ କରି ଗୋପୀମାନେ କାମ ମୁକ୍ତ ହେବା କ'ଣ ଆଶ୍ଚର୍ଯ୍ୟର କଥା ନୁହେଁ କି ?

**ନ ଚ-ଏବ ବିସ୍ମୟଂ କାର୍ଯ୍ୟୋ ଭବତା ଭଗବତି-ଅଜେ ।**
**ଯୋଗେଶ୍ୱରେଶ୍ୱରେ କୃଷ୍ଣେ ଯତ ଏତତ୍ ବିମୁଚ୍ୟତେ ॥୧୬॥**

ଉ. ଶୁକଦେବଜୀ ଏଠାରେ ଭଗବାନଙ୍କର ସେଇ ଅଚିନ୍ତ୍ୟ ମାହାତ୍ମ୍ୟ ପ୍ରକଟ କରୁଛନ୍ତି । ସେ କର୍ତ୍ତୁଂ-ଅକର୍ତ୍ତୁଂ-ଅନ୍ୟଥା କର୍ତ୍ତୁଂ ସମର୍ଥବାନ ପରମ ପୁରୁଷ । କୃଷ୍ଣ ସ୍ୱୟଂ ଷଡ଼ ଐଶ୍ୱର୍ଯ୍ୟଯୁକ୍ତ ଭଗବାନ, ଅଜନ୍ମା, ଯୋଗେଶ୍ୱରମାନଙ୍କର ମଧ୍ୟ ଈଶ୍ୱର । ସେ ଯେତେବେଳେ ଚାହିଁବେ ଯାହାକୁ ତାହାକୁ ପାଞ୍ଚ ପ୍ରକାର ମୁକ୍ତିରୁ ଯେ କୌଣସିଟି ଅକ୍ଲେଶରେ ଦେଇପାରିବେ । ଚାହିଁଲେ ଦିବ୍ୟ ପ୍ରେମଦାନ କରି ଜୀବନ୍ମୁକ୍ତି ମଧ୍ୟ ପ୍ରଦାନ କରିପାରିବେ । କାରଣ ସେ ସର୍ବତନ୍ତ୍ର ସ୍ୱତନ୍ତ୍ର । ସର୍ବୋଚ୍ଚ ଶାସନ କର୍ତ୍ତା । ତାଙ୍କର କେହି ଶାସନ କର୍ତ୍ତା ନଥାନ୍ତି ଆକଟ କରିବାକୁ ।

ପ୍ରଶ୍ନ-୫୨ : ଗୋପୀ ଗୋବିନ୍ଦଙ୍କ ମିଳନ ସିନା ହେଲା ଯମୁନା ପୁଳିନର ସେଇ ଦିବ୍ୟ ରମଣ ରେତିରେ । ସେମାନଙ୍କ ମଧ୍ୟରେ କଥାବାର୍ତ୍ତାର ଶୁଭାରମ୍ଭ ହେଲା କିପରି ?

**ତା ଦୃଷ୍ଟ୍ୱା-ଅନ୍ତିକଂ ଆୟାତା ଭଗବାନ୍ ବ୍ରଜଯୋଷିତଃ ।**
**ଅବଦତ୍ ବଦତାଂ ଶ୍ରେଷ୍ଠୋ ବାଚଃ ପେଶୈଃ ବିମୋହନ ॥୧୭॥**

ଉ. ନାରାୟଣ ଭଗବାନଙ୍କ ନିଃଶ୍ୱାସରୁ ବେଦବାଣୀ ଉତ୍ପନ୍ନ । ତାଙ୍କ ରୂପ ଯେମିତି ମନମୋହନ କାରୀ ବାଣୀ ମଧ୍ୟ ତତୋଧିକ ମାଦକତା ଭରା(ବଦତାଂ ଶ୍ରେଷ୍ଠୋ) । କଥାରେ ତାଙ୍କୁ ନନ୍ଦ, ଯଶୋଦା, ବଳରାମ, ଗୋପୀ, ଗୋପାଳ କେହି ପାରନ୍ତି ନାହିଁ । କାରଣ କଣ୍ଠରେ ତାଙ୍କର ସରସ୍ୱତୀ ବିଦ୍ୟମାନ ।

ସୁତରାଂ ତାଙ୍କର ଦ୍ୱିଅର୍ଥ, ତ୍ରିଅର୍ଥ ବୋଧକ ଦିବ୍ୟ ବାଣୀ ଦ୍ୱାରା(ବାଚଃ ପେଶୈଃ) ସେ ପ୍ରଥମେ ଗୋପୀମାନଙ୍କୁ କହିବା ଆରମ୍ଭ କଲେ ।

ପ୍ରଶ୍ନ-୫୩: ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ । ସେ ସର୍ବାନ୍ତର୍ଯ୍ୟାମୀ ତାଙ୍କୁ ତ ସବୁକଥା ଜଣା । ସେ ଗୋପୀମାନଙ୍କୁ ଖାଲି ସ୍ୱାଗତ କଲେ ନା କିଛି କୁଶଳ ମଙ୍ଗଳ ପଚାରିବାକୁ ପସନ୍ଦ କଲେ ?

ଶ୍ରୀ ଭଗବାନ ଉବାଚ

**ସ୍ୱାଗତଂ ବୋ ମହାଭାଗାଃ ପ୍ରିୟଂ କିଂ କରବାଣି ବଃ ।**
**ବ୍ରଜସ୍ୟ-ଅନାମୟଂ କଚ୍ଚିଦ୍ ବ୍ରୂତ-ଆଗମନ କାରଣମ୍ ॥୧୮॥**

ଉ. ତ୍ରିଭଙ୍ଗୀ ଲାଲ କୃଷ୍ଣଙ୍କର ସବୁ କଥା ବଙ୍କା । ତାହାଙ୍କ ଚାହାଣୀ ବଙ୍କା । କାମ ବଙ୍କା । କଥା ବି ବଙ୍କା । ସେ ବଡ଼ ହଟିଆ । ବଡ଼ ନାଟକୀୟ ଢ଼ଙ୍ଗରେ ସେ ଗୋପୀମାନଙ୍କୁ ମହାସୌଭାଗ୍ୟ ବତୀ (ମହାଭାଗାଃ) ବୋଲି ସମ୍ବୋଧନ କରି ସୁସ୍ୱାଗତ କଲେ । କ'ଣ ସେବା କରିପାରିବି କି ବୋଲି ମଧୁର କଣ୍ଠରେ ପଚାରିଲେ । ବ୍ରଜଧାମରେ ସେମାନଙ୍କର ସଂସାର ବିଷୟକ କୁଶଳ ମଙ୍ଗଳ ପଚାରିଲେ । ପୁଣି ରାସମଣ୍ଡଳକୁ ଆସିବାର କାରଣ ମଧ୍ୟ ପୁଚ୍ଛାକଲେ ।

ପ୍ରଶ୍ନ-୫୪: ଗୋପୀ-ଗୋପୀନାଥଙ୍କର ମିଳନ ଓ ପରସ୍ପର ଦର୍ଶନ ପରେ ଗୋବିନ୍ଦ ସେମାନଙ୍କୁ ରହିବାକୁ କହିଲେ ନା ନିଜ ନିଜ ଘରକୁ ପଳାଇବାକୁ କହିଲେ ?

**ରଜନୀ-ଏଷା ଘୋରରୂପା ଘୋର ସତ୍ତ୍ୱ ନିଷେବିତା ।**
**ପ୍ରତିଯାତ ବ୍ରଜଂ ନ-ଇହ ସ୍ଥେୟଂ ସ୍ତ୍ରୀଭିଃ ସୁମଧ୍ୟମାଃ ॥୧୯॥**

ଉ.ଭଗବାନ ବଡ଼ କଥା କୁହା କପିଳା । ଏ ଶ୍ଳୋକର ବାହ୍ୟ ଅର୍ଥ ହେଲା- ''ହେ, ସୁନ୍ଦରୀ (ସୁମଧ୍ୟମେ) । ତୁମେମାନେ କୋମଳାଙ୍ଗୀ ନାରୀ । ଏବେ ରାତ୍ରୀ କାଳ । ଭୟଙ୍କର (ଘୋର ରୂପା) ବାଘ ସିଂହ ଆଦି ହିଂସ୍ରପ୍ରାଣୀ (ଘୋର ସତ୍ତ୍ୱା) ବୁଲୁଥିବା ସ୍ଥାନରେ ରହ ନାହିଁ (ନ ଇହ ସ୍ଥେୟଂ) । ରହିବା ଉଚିତ ନୁହେଁ । ଅତଏବ ଘରକୁ ଫେରିଯାଅ ।'' କୃଷ୍ଣଙ୍କୁ ବାହାରେ ବାହାରେ ଲୋକ ଦେଖାଣିଆ ଭଲ ପାଉଥିବା ସ୍ତ୍ରୀମାନେ ଏହା ବୁଝିଯିବେ ।

ପୁଣି ଏ ଶ୍ଳୋକର ତାତ୍ପର୍ଯ୍ୟ ଅର୍ଥ ହେଲା ତୁମେମାନେ ଏଠାରୁ ଯିବା ଅନୁଚିତ (ପ୍ରତିଯାତ ବ୍ରଜଂ ନ) । ଦେଖ ଏ ରାତ୍ରୀକାଳ କେଡ଼େ ସୁନ୍ଦର (ଅଘୋର ରୂପା) । କେତେ କେତେ ଅହିଂସ୍ର ସରଳ ମୃଗ ମୃଗୁଣୀ, ବରାହ, ସମ୍ବର, କାକ, ପିକ, ମୟୂର ଚାରିପଟେ ଆମକୁ ଘେରି ରହିଛନ୍ତି । ଅସଲି କୃଷ୍ଣ ଭକ୍ତମାନେ ବୁଝିବେ ଭଗବାନ ଆମକୁ କେତେ ସୁନ୍ଦର ପ୍ରସ୍ତାବ ଦେଉଛନ୍ତି ! ! !

ସୁତରାଂ ଭକ୍ତର ବୁଝିବା ଲାଗି ସେ ଗୋପୀମାନଙ୍କୁ ରହିବାକୁ ହଁ କହିଲେ ନାହିଁ । କି ନାହିଁ ବୋଲି ମଧ୍ୟ କହି ନାହାନ୍ତି ।

ପ୍ରଶ୍ନ-୫୫: ଗୋପୀମାନଙ୍କର ଘର ସଂସାର ଥିଲା । ସେମାନେ ତ ଆଉ ଅଘରି ନଥିଲେ । ଭଗବାନ ସମସ୍ତଙ୍କ ଅଭିଭାବକ ହୋଇ ସେମାନଙ୍କ ପିତା-ମାତା-ପତି-ପୁତ୍ର-ଭ୍ରାତାଙ୍କ ବିଷୟରେ କିଛି ଭାବିଲେନି କିପରି ?

**ମାତରଃ ପିତରଃ ପୁତ୍ରା ଭ୍ରାତରଃ ପତୟଃ ଚ ବଃ ।**
**ବିଚିନ୍ୱନ୍ତି ହି-ଅପଶ୍ୟନ୍ତୋ ମା କୃଢ୍ୱଂ ବନ୍ଧୁ ସାଧ୍ୱସମ୍ ॥୨୦॥**

ଉ. ସେ ପରା ସ୍ୱୟଂ ଭଗବାନ । ଜୀବ କଲ୍ୟାଣ କରିବା ପାଇଁ ତାଙ୍କ ଅବତାର । ସୁତରାଂ ପ୍ରଥମରୁ ସେମାନଙ୍କୁ ଚେତାବନୀ ଶୁଣାଇ ଦେଇଛନ୍ତି । କହିଛନ୍ତି, ''ହେ, ଗୋପ ଲଳନା ଗଣ, ତୁମକୁ ତୁମ ବନ୍ଧୁ ପରିଜନ ଘରେ ନ ଦେଖି(ଅପଶ୍ୟନ୍ତୋ) । ତୁମ ବିଷୟରେ ଚିନ୍ତାମଗ୍ନ ଥିବେ । ଭୟ କରୁଥିବେ ।''

ଅନ୍ୟ ପକ୍ଷରେ ଗୋବିନ୍ଦ ସତେ ଯେପରି କହୁଛନ୍ତି, ''ହେ, ସୁନ୍ଦରୀଗଣ, ସେମାନଙ୍କ ଲାଗି ତୁମେ ଆଦୌ ଚିନ୍ତା କରନାହିଁ । ଭୟ ମଧ୍ୟ କର ନାହିଁ । କାରଣ ତୁମେମାନେ ମୋର ଶରଣରେ ଆସିଛ । ମୁଁ ପରା ଅଶରଣ ଶରଣ !!!''

ପ୍ରଶ୍ନ-୫୬: ଭୟଙ୍କର ରାତ୍ରୀ କାଳ, ପୁଣି ଜଙ୍ଗଲ ମଧ୍ୟରେ ଏକ ନିର୍ଜନ ସ୍ଥାନ । ଭଗବାନ ଜଣେ ବୋଲି ପୁରୁଷ । ଅନ୍ୟ ସମସ୍ତେ ଯୁବତୀ ନାରୀ । ପୂର୍ବରୁ ସେ କୌଶଳ କରି ଜବରଦସ୍ତୀ ସେମାନଙ୍କଠାରୁ ଶରୀର ସଂସାର ଲୋଭ ଛଡ଼ାଇ ନେଇଛନ୍ତି । ପ୍ରତିବଦଳରେ ଗୋପୀମାନଙ୍କୁ ସେ କ'ଣ ଅଲୌକିକ ଚିଜର ଲୋଭ ଦେଖାଇଲେ କି?

**ଦୃଷ୍ଟଂ ବନଂ କୁସୁମିତଂ ରାକା-ଈଶକର ରଞ୍ଜିତମ୍ ।**
**ଯମୁନା-ଅନିଳ ଲୀଳା-ଏଜତ୍ ତରୁ ପଲ୍ଲବ ଶୋଭିତମ୍ ॥୨୧॥**

ଉ.ଭଗବାନଙ୍କ ମନରେ କବିପଣ ଉଦୟ ହୋଇଛି । ସେ ସେତେବେଳର ଦିବ୍ୟ ପରିବେଶର କାବ୍ୟିକ ସୁଷମା ବର୍ଣ୍ଣନା କରି କହିଛନ୍ତି, 'ଦେଖିଲ ତ କେତେ ସୁନ୍ଦର ଏଇ ବନ ଉପବନ । ବୃକ୍ଷ ଲତା ଗଣ ସମସ୍ତେ ପଲ୍ଲବିତ, ପୁଷ୍ପିତ ଓ ଫଳ ଭାରାରେ ଅବନତ । ଭ୍ରମର, ପ୍ରଜାପତି, କାକ, ପିକ, ଶୁକ, ହଂସ ମୟୂର, କାରଣ୍ଡବ ପକ୍ଷୀ ଶୋଭିତ । ପୂର୍ଣ୍ଣଚନ୍ଦ୍ରଙ୍କର (ରାକେଶ) ସୁନେଲୀ କିରଣରେ ସତେ ଯେପରି ସମସ୍ତେ ପ୍ରେମ ରସରେ ସଦ୍ୟ ସ୍ନାନ କରିଛନ୍ତି । ସୁଗନ୍ଧିତ, ମନ୍ଦ ମଳୟ ଚନ୍ଦନର ଭୁରୁଭୁରୁ ଗନ୍ଧ ବୋହି ଆଣୁଛି ଏ ସ୍ଥାନକୁ । ଯମୁନା ନଦୀ ପ୍ରେମ ରସରେ ତରଙ୍ଗାୟିତ ହେଉଛି । ଇତ୍ୟାଦି, ଇତ୍ୟାଦି ।''

ପ୍ରଶ୍ନ-୫୭: ବନ, ଉପବନ, ନଦୀ, ପୂର୍ଣ୍ଣଚନ୍ଦ୍ରଙ୍କର ସୁନେଲୀ କିରଣର ସୁଷମା

ବର୍ଣ୍ଣନା କରିବାର ତାତ୍ପର୍ଯ୍ୟାର୍ଥ କେବଳ ଗୋପୀମାନଙ୍କୁ ଫେରି ଯିବାକୁ ନ କହି ବରଂ ଅଟକେଇ ରଖିବା । ତଥାପି ବାଙ୍କବିହାରୀ ତାଙ୍କ ସୁମଧୁର, ରସାଳ, ରସିକତା ଭରା, ଚାତୁରୀପୂର୍ଣ୍ଣ କଥାରେ ଗୋପାଙ୍ଗନାମାନଙ୍କ ମନ ବିଢ଼ିବାକୁ କିଛି ଉପାୟ କଲେ କି ?

**ତତ୍ ଯାତ ମା ଚିରଂ ଗୋଷ୍ଠଂ ଶୁଶ୍ରୂଷଧ୍ୱଂ ପତୀନ୍ ସତୀଃ ।**
**କ୍ରନ୍ଦନ୍ତି ବତ୍ସା ବାଳାଃ ଚ ତାନ୍ ପାୟୟତ ଦୁହ୍ୟତ ॥୨୨॥**

ଉ. ଏଠାରେ ପୁଣି ଭଗବାନ ଏକ ଦ୍ୱିଅର୍ଥକ ବାକ୍ୟ ବାଣ ବିନ୍ଧିଲେ ଗୋପୀମାନଙ୍କ ଉଦ୍ଦେଶ୍ୟରେ । କହିଲେ, ''ହେ ଅବଳେ, ମୋତେ ଓ ହିଂସ୍ର ପଶୁ ସଂକୁଳ ବନ ଦେଖିଲ ତ । ଏବେ ତୁମେମାନେ ଆଉ ବିଳମ୍ବ ନକରି (ମା ଚିରଂ) ଗୃହକୁ ଫେରିଯାଅ (ତତ୍ ଯାତ) । ପତି, ପିତାଙ୍କ ସେବା ଶୁଶ୍ରୂଷା କର । ତୁମ ପିଲାମାନେ କାନ୍ଦୁଥିବେ । ସେମାନଙ୍କୁ ଦୁଧ ପିଆଇ ଶାନ୍ତ କର । ଗୋ ବତ୍ସାମାନେ ବ୍ୟାକୁଳ ହେଉଥିବେ । ଗୋ ଦୋହନ କରିବ ଯାଅ ।''

ଅନ୍ୟ ପକ୍ଷରେ ଭଗବାନ ଭକ୍ତ ଗୋପୀମାନଙ୍କୁ ତାତ୍ପର୍ଯ୍ୟାର୍ଥରେ କହିଲେ, ''ଏଭଳି ପରିବେଶ ପ୍ରାପ୍ତ ହୋଇ ଆଉ ଅନ୍ୟ କୁଆଡ଼େ ଯାଅ ନାହିଁ (ଯାତ ମା) । ଅନେକ ଜନ୍ମ (ଚିରଂ) ଜନ୍ମାନ୍ତର ପତି-ପିତା-ପୁତ୍ର, ଶିଶୁ-ଗୋ ସେବା କଲଣି । ଏଣିକି ମୋ ସେବା କରି କୃତ୍ୟ କୃତ୍ୟ ହୁଅ । ସର୍ବୋଚ୍ଚ ଲକ୍ଷ୍ୟ ପ୍ରାପ୍ତ ହୁଅ । ମୁଁ ତୁମର ଚିର ଅଭିଳଷିତ ସେଇ ପରମ ପତି । ପରମ ପିତା, ପରାମାତ୍ମା କୃଷ୍ଣ ।''

ପ୍ରଶ୍ନ-୫୮ : ଗୋପୀମାନେ ପୂର୍ବରୁ ସଂସାର ଆସକ୍ତି ତିଳାଞ୍ଜଳି କରି କୃଷ୍ଣଙ୍କ ମୁରଲୀ ସ୍ୱନ, ରୂପ-ଗୁଣ-ସ୍ୱଭାବର ଆକର୍ଷଣରେ ଆସିଥିଲେ । ବର୍ତ୍ତମାନ ସେମାନଙ୍କୁ ଫେରିଯିବା ପାଇଁ କହିବା ଭଗବାନଙ୍କ ପକ୍ଷେ କ'ଣ ଶୋଭନୀୟ କି ?

**ଅଥବା ମଦ୍ ଅଭିସ୍ନେହାତ୍ ଭବତ୍ୟୋ ଯନ୍ତ୍ରିତ-ଆଶୟାଃ ।**
**ଆଗତା ହି-ଉପପନ୍ନଂ ବଃ ପ୍ରୀୟନ୍ତେ ମୟି ଜନ୍ତବଃ ॥୨୩॥**

ଉ. ଅଡୁଆ ପରିସ୍ଥିତିକୁ ସୁଧାରିନେବା ଲକ୍ଷ୍ୟରେ ଭଗବାନ ପୁଣି କହିଲେ, ''ହେ, ଗୋପ ସୁନ୍ଦରୀଗଣ, ମୋ ରୂପ, ବଂଶୀ ସ୍ୱନ ଆଦିର ଆକର୍ଷଣରେ ଯଦି ତୁମେ ଆସିଥାଅ ତେବେ ତାହା ନିଶ୍ଚୟ ଏକ ଶ୍ଳାଘନୀୟ ବା ପ୍ରଶଂସନୀୟ କର୍ମ । କାରଣ ସ୍ୱଭାବତଃ ମୋର ଏହି ରୂପ, ବଂଶୀ ସ୍ୱନରେ କେବଳ ମଣିଷ କାହିଁକି, ପଶୁ-ପକ୍ଷୀ-ବୃକ୍ଷ-ଲତା-ନଦୀ-ପର୍ବତ ପର୍ଯ୍ୟନ୍ତ ସମସ୍ତେ ଆକର୍ଷିତ ହୋଇଥାନ୍ତି (ପ୍ରୀୟନ୍ତେ ମୟି ଜନ୍ତବଃ) । ସେଥିରେ କିଛି ବିଚିତ୍ରତା ନାହିଁ ।''

ପ୍ରଶ୍ନ-୫୯: ନାରୀ ମାନଙ୍କର ଲୌକିକ ଧର୍ମ ହେଲା ପତି-ପୁତ୍ର-ପିତା-ବନ୍ଧୁ-ପରିଜନଙ୍କୁ ସେବା (ପ୍ରଜାନାଂ ଅନୁପୋଷଣଂ) । ଭଗବାନ ଶ୍ରୀକୃଷ୍ଣ ଗୋପ ନାରୀମାନଙ୍କର କେଉଁ ପରୋଧର୍ମ ବିଷୟରେ ସଂକେତ କଲେ ?

**ଭର୍ତ୍ତୁଃ ଶୁଶ୍ରୂଷଣଂ ସ୍ତ୍ରୀଣାଂ ପରୋ ଧର୍ମୋ ହି-ଅମାୟୟା ।**
**ତଦ୍‌ବନ୍ଧୁନାଂ ଚ କଲ୍ୟାଣ୍ୟଃ ପ୍ରଜାନାଂ ଚ-ଅନୁପୋଷଣମ୍ ॥୨୪॥**

ଉ. ପରୋ ଧର୍ମ କହିଲେ ଶ୍ରେଷ୍ଠ ଧର୍ମ ଭଗବତ ସେବାକୁ ବୁଝାଏ । ସେ ପରମପତିଙ୍କ ସେବା ପୁଣି ନିଷ୍କପଟ (ଅମାୟୟା) ହେବା ଦରକାର । ସଂସାରି ପିତା-ପୁତ୍ର-ପତିଙ୍କ ସେବା ଓ କପଟ ସେବା ଧର୍ମ ଅଟେ । କାରଣ ନିଜ ସ୍ୱାର୍ଥପୂର୍ତ୍ତି (ଶାଢ଼ୀ, ଗହଣା, ଟଙ୍କା, ପଇସା, ଆଦର, ସମ୍ମାନ ଆଦି) ଲାଗି ସେ ପ୍ରକାର ସଂସାରୀ ଧର୍ମ କରାଯାଇଥାଏ । କିନ୍ତୁ ପରମାର୍ଥିକ ସେବାରେ ସ୍ୱାର୍ଥର ନାମ, ନିଶାନ, ଗନ୍ଧ ପର୍ଯ୍ୟନ୍ତ ରହେନା । ଯାହାର ଅନ୍ୟନାମ ଗୋପୀପ୍ରେମ । ଯେଉଁ ପ୍ରେମ ପାଖରେ ରୁକ୍ମିଣୀ-ସତ୍ୟଭାମାଙ୍କ ପତି-ପତ୍ନୀ ପ୍ରେମ ମଧ୍ୟ ଫିକା ପଡ଼ିଯାଏ ।

ପ୍ରଶ୍ନ-୬୦: ଜଣେ ନାରୀର ସ୍ୱାମୀ ଯଦି ଚରିତ୍ରହୀନ (ଦୁଃଶୀଳ), ହତଭାଗ୍ୟ, ଅତ୍ୟନ୍ତ ବୃଦ୍ଧ, ମୂର୍ଖ (ଜଡ଼), ରୋଗୀ, ଅତ୍ୟନ୍ତ ଗରୀବ ହୋଇଥାନ୍ତି ସେତେବେଳେ ନାରୀ କ'ଣ ପତିକୁ ପରମେଶ୍ୱର ଭାବି ସେବା କରିବା ଉଚିତ ?

**ଦୁଃଶୀଲୋ ଦୁର୍ଭଗୋ ବୃଦ୍ଧୋ ଜଡ଼ୋ ରୋଗୀ-ଅଧନୋଽପି ବା ।**
**ପତିଃ ସ୍ତ୍ରୀଭିଃ ନ ହାତବ୍ୟୋ ଲୋକ-ଇପ୍ସୁଭିଃ ଅପାତକୀ ॥୨୫॥**

ଉ. ଯେଉଁ ନାରୀମାନଙ୍କର ଲୋକୈଷଣା (ଲୋକ-ଇପ୍ସୁଭିଃ) ଅଛି ଅର୍ଥାତ୍ ସ୍ୱର୍ଗ ଆଦି ସୁଖ ଭୋଗ କାମନା ମନରେ ଅଛି ସେମାନେ ଅବଶ୍ୟ ସଂସାରୀ ପତିଙ୍କ ସେବା କରିବା ଉଚିତ । ସେଭଳି ପତି ପରିତ୍ୟାଗ କଲେ ପାପଭାଗୀ ହେବେ । କିନ୍ତୁ ସେ ଦେଖିନେବା ଉଚିତ ଯେ ପତି ଆଧ୍ୟାତ୍ମବାଦୀ ନ ହେଲେ ମଧ୍ୟ ସ୍ୱର୍ଗକାମୀ (ଧର୍ମ-ଅର୍ଥ-କାମୀ) ହୋଇଥିବା ଉଚିତ । ନର୍କକୁ ଟିକେଟ କାଟୁଥିବା ସଂସାର ସୁଖ ଆସକ୍ତ ଭଗବତ ବିମୁଖ ପତିଙ୍କ (ପାତକୀ) ସେବା କରିବାକୁ ଭଗବାନ ଏଠାରେ ଆଦୌ ସଂକେତ କରି ନାହାନ୍ତି ।

ପ୍ରଶ୍ନ-୬୧: ଗୋପୀନାଥ ଭଲ ଭାବରେ ଜାଣନ୍ତି ଗୋପୀମାନଙ୍କ ପାତିବ୍ରତ୍ୟ । ସୁତରାଂ ନିଃଶଙ୍କ ହୋଇ ସେମାନଙ୍କୁ ଜାର ପତି ବା ଉପପତି ଗ୍ରହଣ କରିବା ନ କରିବା ଉପରେ କି ସଂଦେଶ ଦେଲେ ?

**ଅସ୍ୱର୍ଗ୍ୟଂ ଅଯଶସ୍ୟଂ ଚ ଫଲ୍‌ଗୁ କୃଚ୍ଛ୍ରଂ ଭୟ-ଆବହମ୍ ।**
**ଜୁଗୁପ୍‌ସିତଂ ଚ ସର୍ବତ୍ର ହି-ଉପପତ୍ୟଂ କୁଳସ୍ତ୍ରୀୟଃ ॥୨୬॥**

ଉ. ଭଗବାନ ସେମାନଙ୍କୁ ବରଂ ସତର୍କବାଣୀ ଶୁଣାଇ କହିଛନ୍ତି-ସତୀ ସ୍ତ୍ରୀ (କୁଳସ୍ତ୍ରୀୟଃ) ପକ୍ଷରେ ଜାର ପତି ଗ୍ରହଣ କରିବା ନିନ୍ଦନୀୟ(ଜୁଗୁପ୍‌ସିତଂ), ଭୟାନକ(ନରକ ଯିବା ଭୟଥିବାରୁ), ସ୍ୱର୍ଗ ଗମନରେ ବାଧକ, ଜୀବନରେ ଅଯଶସ୍କର । କାରଣ ସେ ଭଳି ଜାର ପ୍ରେମ ଉପରକୁ ଦିଶୁଥିବା ବାଲି ମଧ୍ୟରେ ଜଳ ଲୁଚିଥିବା ଭଳି (ଫଲ୍‌ଗୁ) କପଟ ବିଚାର, ବୁଦ୍ଧି ଅଟେ । ସେଭଳି ପ୍ରେମରୁ ମିଳୁଥିବା ଫଳ ମଧ୍ୟ(ଦେହ ଖୁସି ହେତୁ) ତୁଚ୍ଛ ବା ଅତ୍ୟନ୍ତ ନଗଣ୍ୟ (କୃଚ୍ଛ୍ରଂ) ଅଟେ । ସେଥିରେ ସର୍ବଥା ଆତ୍ମାର ପତନ ହୋଇଥାଏ । ସେଭଳି ପତି ସେବା ସର୍ବଥା ତ୍ୟାଜ୍ୟ ଅଟେ ।

ପ୍ରଶ୍ନ-୬୨ : ଗୋପୀମାନେ ଥିଲେ ସ୍ୱଧର୍ମ ତ୍ୟାଗୀ ଭକ୍ତ । ସେମାନଙ୍କୁ ବେଶୀ ସ୍ୱଧର୍ମପାଳନ ଶିକ୍ଷା, ପ୍ରବଚନ କରିବାକୁ ଭଗବାନ ପସନ୍ଦ ନକରି ଉପଦେଶର ଉପସଂହାର ଶ୍ଳୋକରେ କ'ଣ କହିଲେ ?

**ଶ୍ରବଣାତ୍ ଦର୍ଶନାତ୍ ଧ୍ୟାନାତ୍ ମୟି ଭାବୋଽନୁକୀର୍ତ୍ତନାତ୍ ।**
**ନ ତଥା ସନ୍ନିକର୍ଷେଣ ପ୍ରତିଯାତ ତତୋ ଗୃହାନ୍ ॥୨୭॥**

ଉ.ଉପସଂହାର ଶ୍ଳୋକ ମଧ୍ୟ ଦ୍ୱିଅର୍ଥ ବୋଧକ । ଦେହକୁ ଆତ୍ମା ଭାବୁଥିବା ଲୋକେ ବୁଝିବେ କୃଷ୍ଣଙ୍କ ସ୍ଥୁଳ ଦେହ ସହ ପ୍ରତ୍ୟକ୍ଷ ମିଳନରେ ଦିବ୍ୟ ପ୍ରେମ ମିଳିବ କୁଆଡୁ ! ! ! ମିଳନରେ (ସନ୍ନିକର୍ଷେଣ) ଗୋପୀମାନେ ଖାଲି ତାଙ୍କ ଦୋଷ ଦର୍ଶନରେ ଲାଗିବେ । ସୁତରାଂ (ତତୋ) ସେମାନେ ବରଂ ଘରକୁ ଫେରି ଯାଆନ୍ତୁ । ଘରେ ବସି ତାଙ୍କ ଦିବ୍ୟ ଗୁଣ, ଲୀଳା, ରୂପ ଆଦିର ଶ୍ରବଣ, ଦର୍ଶନ, ଧ୍ୟାନ ଆଦି କରି ଦିବ୍ୟ ପ୍ରେମ ପ୍ରାପ୍ତ ହେବେ ।

ଅନ୍ୟ ପକ୍ଷେ ଭଗବାନ କୃଷ୍ଣ ପ୍ରେମ ଅଧିକାରୀ ମାନଙ୍କୁ କହୁଛନ୍ତି, ''ଘରକୁ ଯାଅ ନାହିଁ (ନ ପ୍ରତିଯାତ୍ ଗୃହାନ୍) । ଏହିଠାରେ ରହ । ମୋ ଦେହ ସାଧାରଣ ଜଡୀର ଦେହ ନୁହେଁ । ଏହା ବିଲ୍‌କୁଲ ଚିନ୍ମୟ ଦିବ୍ୟ ଅଟେ । ପାଖରେ ରହି ଏହାର ସ୍ପର୍ଶ ଆଲିଙ୍ଗନ ଆଦିରେ ଦିବ୍ୟ ପ୍ରେମ ମିଳିବ । ପରେ ପରେ ଘରକୁ ଯାଇ ଏହି ଅନୁଭବକୁ ସ୍ମରଣ କରି କୋଟି ଗୁଣେ ଦିବ୍ୟ ପ୍ରେମ ପ୍ରାପ୍ତ ହୋଇପାରିବ ନିରନ୍ତର ଶ୍ରବଣ, କୀର୍ତ୍ତନ, ଧ୍ୟାନ ଆଦି କରି ।''

ପ୍ରଶ୍ନ-୬୩: ଭଗବାନ ଯାଅ କହିଲେ ନାହିଁ କି ରହ କହିଲେ ନାହିଁ । ଏଭଳି ପରିସ୍ଥିତିରେ ଗୋପୀମାନଙ୍କର ମାନସିକ ସ୍ଥିତି କିଭଳି ହେଲା ?

ଶ୍ରୀ ଶୁକ ଉବାଚ

**ଇତି ବିପ୍ରିୟଂ ଆକର୍ଣ୍ୟ ଗୋପ୍ୟୋ ଗୋବିନ୍ଦ ଭାଷିତମ୍ ।**
**ବିଷଣ୍ଣା ଭଗ୍ନ ସଂକଳ୍ପା ଚିନ୍ତାଂ ଆପୁଃ ଦୂରତ୍ୟୟାମ୍ ॥୨୮॥**

ଉ. ଭଗବାନଙ୍କର ଏଭଳି ଗାମ୍ଭୀର୍ଯ୍ୟ ଭରା ଦ୍ୱିଅର୍ଥବୋଧକ ପ୍ରବଚନ ଅତ୍ୟନ୍ତ ଅରୁଚିକର (ବିପ୍ରିୟଂ) ବୋଧ ହେଲା ଗୋପଲଳନାମାନଙ୍କୁ । ସେମାନଙ୍କ ଅବଶିଷ୍ଟ ମନ ଖିନ୍ନ ହୋଇଗଲା । ତାଙ୍କ ସହ ମିଳନ ଏବେ ଅସମ୍ଭବ ମନେ ହେବାରୁ ସେମାନଙ୍କ ମନୋରଥ ଭାଙ୍ଗି ପଡ଼ିଲା (ଭଗ୍ନ ସଂକଳ୍ପା) । ସେମାନେ ଅଥଳ ଚିନ୍ତା ସାଗରରେ ବୁଡ଼ିଗଲେ । ହୁଏତ କୃଷ୍ଣ ମିଳନର କିଛି ଅନ୍ୟ ଯୁକ୍ତି, ଉପାୟ ଖୋଜି ପାଇବେ ସେମାନେ ଏହି ଆଶାରେ ।

ଗୋପୀମାନେ ପାଠ ସିନା ପଢ଼ି ନଥିଲେ । ବୁଦ୍ଧିମତୀ ଅବଶ୍ୟ ଥିଲେ । ସେ ଠିକ୍ ବୁଝିପାରିଲେ ଗୋବିନ୍ଦଙ୍କ କଥାର ଅଭିସନ୍ଧି । ସୁତରାଂ ସେମାନେ ଘରକୁ ପଳାଇଗଲେ ନାହିଁ କିମ୍ବା ସେଠାରେ ନୀରବଦ୍ରଷ୍ଟା ସାଜି ବସି ରହିଲେ ନାହିଁ ।

ଜଣେ ସାଧାରଣ ମନୁଷ୍ୟ ପକ୍ଷରେ ସଂସାର ଦୁଃଖ ଭୋଗ ହେଲେ ପ୍ରାରବ୍ଧର ପାପ ଅଂଶ କ୍ଷୟ ହୁଏ । ସଂସାର ସୁଖ ଭୋଗ ହେଲେ ପ୍ରାରବ୍ଧର ପୁଣ୍ୟ ଅଂଶ ସରି ସରି ଆସେ । ଗୋପୀମାନଙ୍କର କୃଷ୍ଣ ବିରହ ହିଁ ଏକମାତ୍ର ଦୁଃଖ । କୃଷ୍ଣ ମିଳନ ହିଁ ଏକମାତ୍ର ସୁଖ । ସଂସାର ସୁଖ-ଦୁଃଖ ସେମାନଙ୍କ ପାଇଁ ଏକ ଅବାନ୍ତର ପ୍ରସଙ୍ଗ । ସେମାନଙ୍କର ଅବଶ୍ୟ ଲୌକିକ ଦେହଧାରୀ ପତି ଥିଲେ । ହେଲେ ଗୋପୀମାନେ ସେମାନଙ୍କୁ ନିଜ ନିଜ ଦେହ ସିନା ଦେଇଥିଲେ ମନ ଦେଇ ନଥିଲେ କିନ୍ତୁ ଗୋପୀଗଣ ବୁଝିଥିଲେ କୃଷ୍ଣ ହେଉଛନ୍ତି ସେମାନଙ୍କର ପତିଙ୍କର ପତି ପରମପତି, ପୁତ୍ର, ସନ୍ତାନ, ବନ୍ଧୁ, ସଖା, ଧନ, ମନ, ପ୍ରାଣ ସବୁ କିଛି ।

ଭଗବାନଙ୍କ ଦୁଇ ଅର୍ଥ ବାଲା କଥା ଶୁଣି ସେମାନେ ବିଚଳିତ ହେଲେ । ମୁହଁଟିମାନ ତଳକୁ କଲେ । ଭାବିଲେ ଆମ ଶରଣାଗତି ଅସଂପୂର୍ଣ୍ଣ ହୋଇଛି ବୋଲି ସିନା ସେ ଆମକୁ ଠେଲି ଦେଉଛନ୍ତି । ଅନ୍ୟ ଉପାୟ ନ ଦେଖି ସେମାନେ ଅମୋଘ ବାଣ ବିନ୍ଧିଲେ । ହରିଶରଣ ପାଇଁ ଜୀବର ବ୍ୟାକୁଳ କ୍ରନ୍ଦନ ହିଁ ଶେଷ ଅସ୍ତ୍ର । ଗୋପୀମାନେ ଶୋକାକୁଳ ହୋଇ ଦୀର୍ଘ ଶ୍ୱାସ ଛାଡ଼ିଲେ । ସେମାନଙ୍କ ବିମ୍ବ ଅଧରଟିମାନ

ନିଶ୍ୱାସ ପବନରେ ଉଷ୍ଣତାରେ କଳା ପଡ଼ିଗଲା । ଅଶ୍ରୁର ଅଶ୍ରାନ୍ତ ପ୍ଳାବନରେ ନେତ୍ରର କଜ୍ଜ୍ୱଳ ସିନ୍ଦୂର ଧୋଇଗଲା । ପହଞ୍ଚିଲା ବକ୍ଷ ସ୍ଥଳରେ । ଶୋକର ସାଗରରେ ସେମାନେ ବୁଡ଼ିଗଲେ । ଦୁଃଖର ପାହାଡ଼ ତଳେ ଚାପି ହୋଇ ତ୍ରାହି ତ୍ରାହି ଡ଼ାକ ଛାଡ଼ିଲେ । ପାଦ ଅଙ୍ଗୁଷ୍ଠି ନଖରେ ଭୂଇଁରେ ଗାର କାଟିଲେ । କୃଷ୍ଣ ଜଣେ ପୁରୁଷ । ତାଙ୍କର କଠୋର ସ୍ୱଭାବ ଯାଆନ୍ତା କୁଆଡ଼େ ? ଧରିତ୍ରୀ କିନ୍ତୁ ବିଷ୍ଣୁପତ୍ନୀ ପ୍ରକୃତି କୃପାମୟୀ । ଜଣେ ନାରୀ । ନାରୀ ଦୁଃଖ ବୁଝି ସେ ହୁଏତ ସମବେଦନା ଜଣାଇପାରେ । ନିଶ୍ଚଳ ହୋଇ ଯେ ଯାହା ସ୍ଥାନରେ କାଷ୍ଠ ପିତୁଳି ଭଳି ନୀରବ ହୋଇ ଠିଆ ହୋଇ ରହିଲେ ।

ଗୋପୀମାନେ ଥିଲେ ଶ୍ୟାମସୁନ୍ଦରଙ୍କ ଅନନ୍ୟ ଭକ୍ତ । ସେତେବେଳକୁ ଶେଷରେ ସେମାନେ ଚାରି ଦଉଡ଼ି କଟା (ଧର୍ମ-ଅର୍ଥ-କାମ-ମୋକ୍ଷ ପରାଙ୍ମୁଖ) । ସେମାନେ ଦେଖିଲେ ସଳଖ ଆଙ୍ଗୁଠିରେ ଘିଅ ବାହାରିବନି । ଯେ ଯାହାର ପଣତକାନିମାନ ଅଣ୍ଟାରେ ଗୁଡ଼େଇ ଦେଲେ । କାନ୍ଦଣା ବନ୍ଦ କଲେ । ନିଜ ନିଜ ଆଖିରୁ ଲୁହ ପୋଛି ନେଲେ । କ୍ଷୋଭର ସହିତ ଗଦ୍ ଗଦ୍ କଣ୍ଠରେ କହିବାକୁ ଆରମ୍ଭ କଲେ । ସେମାନଙ୍କ ମଧ୍ୟରେ ଅନେକ ବେଦମନ୍ତ୍ରମାନଙ୍କର ପ୍ରକଟ ମୂର୍ତ୍ତିମାନ ବିଗ୍ରହ ଥିଲେ ଏହି ଗୋପୀମାନେ । କହିବା ସୁଯୋଗ ପାଇଲେ ସେମାନେ ଛାଡ଼ନ୍ତେ କାହିଁକି ?

କହିଲେ, "ହେ, ନାରାୟଣ (ଦେବୋ), ମହାବୈକୁଣ୍ଠରେ ଆମେ ନିତି ଦେଖୁ ଭଗବାନ (ଆଦି ପୁରୁଷୋ)ଙ୍କୁ ଯେ ଭକ୍ତି କରେ ସେ ତୁରନ୍ତ ମୁକ୍ତିର ଅଧିକାରୀ ହୁଏ (ମୁମୁକ୍ଷୁନ୍) । କୃପା ମିଳିବାରେ ଆଦୌ ଡ଼େରି ହୁଏନା । ଆପଣ ଏଭଳି ହଟିଆ(ଦୁରବଗ୍ରହ)ହେବା ଭକ୍ତିମାର୍ଗରେ ଶୋଭାପାଏନା । ହେ' ଭଗବନ୍(ବିଭୋ) ଆମେ ସକଳ ସଂସାରୀ ଜଞ୍ଜାଳ ଛାଡ଼ି ଆପଣଙ୍କ ଚରଣ କମଳ ଆଶ୍ରୟ କରିଛୁ । ଦୟାକରି ଅମକୁ ଦୂରକୁ ଠେଲିବା ଭଳି କଠୋର(ନୃଶଂସ) କଥା ଆଉ କହନ୍ତୁ ନାହିଁ ।"

ବେଦମନ୍ତ୍ର ରୂପୀ ଗୋପୀମାନେ କାହିଁକି ଅବା ଗୋବିନ୍ଦଙ୍କୁ ଡ଼ରନ୍ତେ । ରୋକଠୋକ୍ ଦି'ପଦ ଝାଡ଼ି ଦେଲେ । କହିଲେ, "ହେ, ଧର୍ମଜ୍ଞ (ଧର୍ମ ବିଦା), ଏ କଥା ଅବଶ୍ୟ ସତ ଯେ ଜୀବ ଋଣ ଶୁଝିବା ପାଇଁ ପିତା, ପତି, ପୁତ୍ର, ଶାଶୁ, ବନ୍ଧୁ ଆଦିଙ୍କର ସେବା କରିଥାଏ ଋଣ ମୁକ୍ତ ହେବାକୁ । ମୋକ୍ଷ ପ୍ରାପ୍ତ ହେବାକୁ ବା ସ୍ୱର୍ଗ ଯିବାକୁ । ଏ ଉଭୟ ଲକ୍ଷ୍ୟ ସ୍ୱର୍ଗ-ମୋକ୍ଷ ଆମେ ପ୍ରାପ୍ତ ହୋଇସାରିଛୁ । ସ୍ୱଧର୍ମ ପାଳନର ଅସଲି ଲକ୍ଷ୍ୟ ତ ସ୍ୱୟଂ ଆପଣଙ୍କ ଚରଣ କମଳ ସେବା ସୁଯୋଗ ପ୍ରାପ୍ତି । କାରଣ

ସକଳ ଦେହଧାରୀ ମାନଙ୍କର (ତନୁ ଭୃତାଂ) ଆପଣ ହିଁ ଅସଲି ପିତା, ପତି, ସନ୍ତାନ, ବନ୍ଧୁ, ସର୍ବସ୍ୱ ଆପଣ ପରା ସକଳ ଜୀବଙ୍କର ଆତ୍ମାର ଆତ୍ମା ପରମାତ୍ମା । ଯୁଗ ଯୁଗ ଧରି ଧର୍ମ, ଅର୍ଥ, କାମ, ମୋକ୍ଷ ପଛରେ ଦୌଡ଼ି ଦୌଡ଼ି ସେ ସବୁ ବିଷଦାନ୍ତର କଷ୍ଟ ସହି ସାରିଛୁ । ସ୍ୱଧର୍ମ ପାଳନ ଏବେ ମଧ୍ୟ ଅନେକ ଜୀବ କରୁଛନ୍ତି । ଆମେ କିନ୍ତୁ କେଉଁ ଯୁଗରୁ କେତେ ଆଶାବାନ୍ଧି ଆପଣଙ୍କ ପାଖକୁ ଆସିଛୁ । ଆପଣ ଏବେ ସେ ଆଶାର ଦଉଡ଼ି ଟିକକ କାଟି ଦିଅନ୍ତୁ ନାହିଁ । ଆମେ ସ୍ୱଧର୍ମ ତ୍ୟାଗୀ । କାୟମନୋବାକ୍ୟରେ ଆପଣଙ୍କର ସଂପୂର୍ଣ୍ଣ ଶରଣାଗତ । ଆମକୁ କୃପା କରନ୍ତୁ ।''

ପ୍ରଶ୍ନ-୬୪: ଗୋପୀମାନେ ନିଜର ଅକାଟ୍ୟ ଯୁକ୍ତି ବଳରେ ଘରକୁ ଫେରିବା ମାର୍ଗ ବନ୍ଦ କରିଦେଲେ । ସେମାନେ ସୁନ୍ଦର ଯୁକ୍ତିବାଢ଼ିଲେ । କହିଲେ, ''ହେ ହୃଷିକେଶ ! ମନୁଷ୍ୟର ଦଶ ଇନ୍ଦ୍ରିୟ ମନ ଅଧୀନରେ ରହି କାର୍ଯ୍ୟ କରିବାକୁ ବାଧ୍ୟ । ସେମାନେ ଆଦୌ ସ୍ୱାଧୀନ ନୁହନ୍ତି । ଆପଣ ମୋହନ ବଂଶୀ ବଜାଇ ଆମମାନଙ୍କର ମନକୁ ଚୋରାଇ ଆଣିଛନ୍ତି (ଭବତା-ଅପହୃତଂ ଚିତ୍ତଂ) । ଆମ୍ଭେମାନେ ଗୃହକୁ ଫେରିଥାନ୍ତୁ ପାଦ ଦ୍ୱାରା । ଗୃହ କର୍ମ କରିଥାନ୍ତୁ ହସ୍ତ ଦ୍ୱାରା । ମନ ରହିଲା ଆପଣଙ୍କ ପାଖରେ ବନ୍ଦୀ । ବିନା ମନରେ ଆମେ ଗୃହକୁ ଯିବୁ କିପରି ? ଯାଇ ଅବା କ'ଣ କରିବୁ ସେଠାରେ ? ସଂସାରରେ ଆପଣଙ୍କ ଚରଣ କମଳରେ ଶରଣଗଲା ପରେ କିଏ କେଉଁଠି ସଂସାରୀ ସେବା କରିବାର ଦୃଷ୍ଟାନ୍ତ ଅଛି କି ଅର୍ଥାତ୍ ଏଭଳି ଦୃଷ୍ଟାନ୍ତ ଆଦୌ ନାହିଁ ।'' ଗୋପାଙ୍ଗନାମାନେ ଦେଖିଲେ ଶ୍ୟାମସୁନ୍ଦର ନିର୍ବାକ ନିଷ୍ପନ୍ଦ । ଟସ୍ କି ମସ୍ ହେଉନାହାନ୍ତି । ସେମାନେ ଯେତେହେଲେ ବି ଜୀବ ତ । ସେମାନେ ଭଗବାନଙ୍କୁ ଧମକ ମଧ୍ୟ ଦେଲେ ।

କୃଷ୍ଣପ୍ରେୟସୀ ଗୋପୀମାନେ ତାଙ୍କଠୁ ଜବାବ୍ ତଲବ କରିଛନ୍ତି । କହିଲେ, ''ହେ ଭଗବାନ (ଅଙ୍ଗ), ଆପଣ କପଟିଆ ହସ, ବାଙ୍କ ନୟନର କଟାକ୍ଷବାଣ ଓ ମନମୋହନକାରୀ ମୁରଲୀ ସ୍ୱନ ଦ୍ୱାରା ଆମ ହୃଦୟର ଗୋପନ ମନ୍ଦିରର କାମ୍ୟକ ବନକୁ ଅଗ୍ନିରେ ପ୍ରଜ୍ୱଳିତ କଲେ କାହିଁକି ? ଯଦି ଏ କଥା କଲେ ତେବେ ତାର ଉପଚାର ବିଧାନ କରିବାକୁ ଆପଣ ବାଧ୍ୟ । ସେ ଔଷଧ ମଧ୍ୟ ଆପଣଙ୍କ ପାଖରେ ଅଛି । ଅତଏବ ତୁରନ୍ତ ଆପଣଙ୍କ ଅଧରାମୃତ ସିଞ୍ଚନ କରି ସେ ଜ୍ୱାଳା ଶାନ୍ତ କରନ୍ତୁ । ଏଠାରେ ଅଧରାମୃତର ଅର୍ଥ ଓଠକୁ ଓଠ ଲଗାଇବା ନୁହେ । ଅ-ଧରା-ଅମୃତ ଯାହା ଧରାପୃଷ୍ଠର ଅମୃତ (ମିଠି ଚିଜ) ନୁହେଁ ବରଂ ଦିବ୍ୟ ଅମୃତ (ସ୍ୱର୍ଗର ଦେବତା ଭୋଗ୍ୟ

ଅମୃତଠାରୁ କୋଟିଗୁଣେ ଶ୍ରେଷ୍ଠତର) । ଆମେ ଜୀବ । ଆମର ବ୍ରହ୍ମ-ବିରହ ଜ୍ୱାଳା ଶାନ୍ତ ହେଉ । ନଚେତ ଆମକୁ ଜଣା ନାରାୟଣଙ୍କ ଧ୍ୟାନ ପ୍ରଣାଳୀ । ଆମେ ତୁରନ୍ତ ଧ୍ୟାନ ଦ୍ୱାରା ଆପଣଙ୍କ ଚରଣ କମଳ ସ୍ମରଣ କରି ଏ ଦେହମାନଙ୍କୁ ଭସ୍ମ କରିଦେବୁ । ଆପଣ ଚରଣ କମଳ ପ୍ରାପ୍ତ (ଯାମପଦୟୋଃ) ହୋଇପାରିବୁ । ହେଲେ ଆପଣଙ୍କର ନିନ୍ଦା ହେବ । ଯୁଗେ ଯୁଗେ ଲୋକେ କହିବେ କୃଷ୍ଣ ଖାଲି ଚୋର, ଲମ୍ପଟ, ନୁହନ୍ତି ନିଷ୍ଠୁର, କଠୋର ମଧ୍ୟ । ଭକ୍ତି ଧର୍ମ ଓ ଭଗବାନଙ୍କ ବଦନାମ ଆମେ ସହିବୁ କେମିତି ?''

ଗୋପଲଳନାମାନେ ପୁଣି ଧମକାଇ କହିଲେ, ''ହେ, କମଳନୟନ, ଭଲରେ ଭଲରେ ଆମ କଥା ମାନି ନିଅ । ଆମ ଦାବୀ ତୁରନ୍ତ ପୂରଣ କର । ବୈକୁଣ୍ଠରେ ଆପଣଙ୍କ ପାଦ ସମ୍ବାହନ କରି ମହାଲକ୍ଷ୍ମୀ ଭାଗ୍ୟବତୀ । ମହାଲକ୍ଷ୍ମୀ ସିନା ବଡ଼ ଘର ଝିଅ । ସାଗର ଦୁଲଣୀ । ପୁଣି ବିଷ୍ଣୁ ପାଟରାଣୀ । ତେଣୁ ଭଗବାନଙ୍କ ଚରଣ ସେବା ସୌଭାଗ୍ୟ ପାଇପାରିଲେ ।'' ହୀନିମାନୀ ଗୋପାଲୁଣୀମାନେ ସେଭଳି ଅମୂଲ୍ୟ ଦରବ ଅଧର ଅମୃତ, ଚରଣକମଳ ସ୍ପର୍ଶ ଆଦି ଆଶା କରିବା ବାମନ ହୋଇ ଚାନ୍ଦକୁ ହାତ ବଢ଼ାଇବା ଭଳି କଥା ନୁହେଁ କି ?

ଗୋପ୍ୟ ଉଚୁଃ

**ଜର୍ହି-ଅମ୍ବୁଜ-ଅକ୍ଷ ତବପାଦତଳଂ ରମାୟା**
**ଦତ୍ତ କ୍ଷଣଂ କ୍ୱଚିତ୍ ଅରଣ୍ୟଜନ ପ୍ରିୟସ୍ୟ ।**
**ଅସ୍ପ୍ରାକ୍ଷ୍ମ ତତ୍ ପ୍ରଭୃତି ନ-ଅନ୍ୟ ସମକ୍ଷଂ ଅଙ୍ଗ**
**ସ୍ଥାତୁଂ ତ୍ୱୟା-ଅଭିରମିତାଃ ବତ ପାରୟାମଃ ।।୩୬।।**

ଉ. ସେଇଥିପାଇଁ ସେମାନେ ବଢ଼ିଆ ଦୃଷ୍ଟାନ୍ତମାନ ଥୋଇଛନ୍ତି ଗୋବିନ୍ଦଙ୍କ ସମ୍ମୁଖରେ । ରାମ-ଅବତାର କାଳରେ ଦଣ୍ଡକାରଣ୍ୟରେ, କୃଷ୍ଣ ଅବତାରକାଳରେ ବନ୍ୟ ଶବରୁଣୀମାନେ ଭଗବାନଙ୍କ ଚରଣ କମଳରଜ ଯୁକ୍ତ ଘାସ, ଫୁଲ, ଦୁବ ସବୁ ମସ୍ତକରେ ଧାରଣ କରି ଧନ୍ୟା ହୋଇଛନ୍ତି । କାରଣ ଭଗବାନ ସେତେବେଳେ ନିଜ ପାଦରେ କୌଣସି ପାଦୁକା ଧାରଣ କରୁନଥାନ୍ତି । ଉଦ୍ଦେଶ୍ୟ ତାଙ୍କ ଚରଣ ରଜ ପାଇ ଜୀବର କଲ୍ୟାଣ ହେଉ । ଲୁଟି ନେଉ ଜୀବ ସେଇ ଦେବଦୁର୍ଲ୍ଲଭ ଦରବକୁ ।

ଗୋପୀମାନେ ପ୍ରାର୍ଥନା କରୁଛନ୍ତି-ସେଇ ପଦ କମଳର ସ୍ପର୍ଶ ଟିକକ(ଅସ୍ପ୍ରାକ୍ଷ୍ମ) । ଯାହା ପ୍ରାପ୍ତ ହେଲେ ସେମାନଙ୍କର କାମ ବିରହ ଅଗ୍ନି ପ୍ରଶମିତ

ହେବ । ଲକ୍ଷ୍ମୀ-ନାରଦ-ପ୍ରହ୍ଲାଦ ଆଦି ଅନ୍ୟ ସମସ୍ତ ଜୀବର ସୌଭାଗ୍ୟ ଠାରୁ ସେମାନଙ୍କର ସୌଭାଗ୍ୟ ବଳିପଡ଼ିବ । ଗୋପାଙ୍ଗନାମାନେ ଠାକୁରଜୀ ଚରଣ କମଳର ମହାତ୍ମ୍ୟ ଜାଣିଥିବା ଯୋଗୁ ଚରଣ ରଜ ଲାଗି ବଡ଼ ବ୍ୟାକୁଳ ହୋଇପଡ଼ିଲେ ।

ଜୀବଗଣ ମଧ୍ୟରେ ଦେବତାମାନେ ନିଜକୁ ଅଧିକ ଭାଗ୍ୟବାନ ମନେ କରନ୍ତି । ସେମାନେ କିନ୍ତୁ ଐଶ୍ୱର୍ଯ୍ୟ ଲୋଭୀ । ତେଣୁ ମହାଲକ୍ଷ୍ମୀଙ୍କୁ ହାତ ପତାଉ ଥିବାରୁ ମହାଲକ୍ଷ୍ମୀ ଅଧିକ ଭାଗ୍ୟବତୀ ମନେ ହୁଅନ୍ତି କିନ୍ତୁ ଭାଗ୍ୟର ବିଡ଼ମ୍ବନା, କୃଷ୍ଣ ଅବତାର କାଳରେ ଲକ୍ଷ୍ମୀ ବୈକୁଣ୍ଠ ଐଶ୍ୱର୍ଯ୍ୟ ଲୋଭ ତ୍ୟାଗ କରି ବୃନ୍ଦାବନରେ ଡ଼େରା ପକାଇଛନ୍ତି ସେଇ ହରି ଚରଣ କମଳ ରଜ ଲୋଭରେ । ସେ ନିଜ ଭୁଲ ବୁଝିପାରିଛନ୍ତି ଏତେ ଦିନେ । ଐଶ୍ୱର୍ଯ୍ୟ ଚାହିଁବାରୁ ନାରାୟଣ ତାଙ୍କୁ ବକ୍ଷରେ ସ୍ଥାନ ଦେଲେ କିନ୍ତୁ ଐଶ୍ୱର୍ଯ୍ୟ ବିମୁଖ ହୋଇ ଅକିଞ୍ଚନ ହୋଇରହିବାକୁ ଚାହିଁଲେ ତୁଳସୀ ଦେବୀ ଓ ବୈଷ୍ଣବ ଗଣ । ସେମାନଙ୍କୁ ଭଗବାନ ନିଜ ଅଭୟ ଚରଣ କମଳରେ ସ୍ଥାନ ପ୍ରଦାନ କରିଛନ୍ତି ।

ସେଥିପାଇଁ ଗୋପୀମାନେ (ତଦ୍‌ବତ୍ ବୟଂ) ବାଙ୍କ ବିହାରୀଙ୍କ ଶରଣ ପଶିବାକୁ ଉଚିତ ମନେ କରିଛନ୍ତି । ସେମାନେ ଭୁକ୍ତି-ମୁକ୍ତି ସବୁର ପରାଙ୍‌ମୁଖୀ । ରସଶାସ୍ତ୍ରରେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ରସର ବିଧାନ ହୋଇଛି । ଗୋପନାରୀମାନେ ଅତ୍ୟନ୍ତ ଉଚ୍ଚାଧିକାରୀଣୀ ଭକ୍ତ ଥିଲେ । ସେମାନେ ମଧୁର ରସର ଅନୁରାଗିଣୀ ନହୋଇ ଦାସ୍ୟ ରସ ପ୍ରାର୍ଥନା କଲେ (ଦେହି ଦାସ୍ୟଂ) ।

ଗୋପୀମାନେ ବଡ଼ ଚତୁରୀ ଥିଲେ । ସେମାନେ ଜାଣନ୍ତି ଅଙ୍ଗୁଳି ପ୍ରବେଶାତ୍ ବାହୁ ପ୍ରବେଶ କାଇଦା । ଗୋବିନ୍ଦ ଯେତେବେଳେ ପାଖରେ ପୁରାଇବାକୁ ନାରାଜ ହେଉଛନ୍ତି ମଧୁର (କାନ୍ତା) ରସ ଦାନ କରିବାରେ ହୁଏତ ପ୍ରଥମରୁ କୁଣ୍ଠିତ ହୋଇଯିବେ । ସୁତରାଂ ଏହି ଭୟରେ ପ୍ରଥମେ ତାଙ୍କୁ ପାପ ନାଶକ(ବୃଜିନ ଅର୍ଦ୍ଦନ) କହି ପରେ ପରେ ପୁରୁଷମାନଙ୍କର ଅଳଙ୍କାର (ପୁରୁଷ ଭୂଷଣ)ବୋଲି ପରୋକ୍ଷରେ କାନ୍ତା ରସ ପ୍ରାର୍ଥନାର ସଂକେତ କରିଛନ୍ତି । ଗୋପୀମାନଙ୍କର କୃଷ୍ଣକାମ ବିରହ ଜ୍ୱାଳା ଯାହା କୃଷ୍ଣଙ୍କ ଦିବ୍ୟ ରୂପ, ସ୍ମିତ ହାସ୍ୟ, ତୀକ୍ଷ୍ଣ କଟାକ୍ଷ ବାଣରେ ଉତ୍ପନ୍ନ ହୋଇ ବ୍ୟାକୁଳ କରୁଛି ତାହା ଦାସ୍ୟ ରସରେ ଶାନ୍ତ ହେବା ଏକାନ୍ତ ଅସମ୍ଭବ । ସେମାନେ ସକଳ ଦେହ ଏବଂ ଗୃହ ଜଞ୍ଜାଳ ଆସକ୍ତି ତ୍ୟାଗ କରି ଠାକୁରଜୀଙ୍କୁ ମନ, ପ୍ରାଣ, ଆତ୍ମା ସବୁ ସମର୍ପଣ କରିଛନ୍ତି ବୋଲି ଏ ଶ୍ଳୋକରେ ନିବେଦନ କରିଛନ୍ତି । ପ୍ରଥମେ ଦାସୀ ସେବା ମିଳିଲେ ତେଣିକି ନନ୍ଦ ନନ୍ଦନ କ'ଣ ବଳେଇ ଯିବେ କି ଆଉ!!!

॥ ଅପଣ୍ଡିତ ଦାମୋଦର ବଢ଼ାୟାରସିଂହ ॥

ପ୍ରଶ୍ନ-୬୫: ଗୋପୀମାନେ ଗୋବିନ୍ଦଙ୍କର କେଉଁ କେଉଁ ଅଲୌକିକ ଗୁଣ ଦେଖି ଆକର୍ଷିତ ହୋଇଛନ୍ତି ବୋଲି ତାଙ୍କୁ ସ୍ପଷ୍ଟ ଜଣାଇଦେଲେ ?

**ବୀକ୍ଷ-ଅଳକ-ଆବୃତ୍ତ ମୁଖଂ ତବ କୁଣ୍ଡଳଶ୍ରୀ**

**ଗଣ୍ଡସ୍ଥଳ-ଅଧର ସୁଧଂ ହସିତ-ଅବଲୋକମ୍ ।**

**ଦତ୍ତ-ଅଭୟଂ ଚ ଭୁଜଦଣ୍ଡ ଯୁଗଂ ବିଲୋକ୍ୟ**

**ବକ୍ଷ ଶ୍ରୀ-ଏକ ରମଣଂ ଚ ଭବାମ ଦାସ୍ୟଃ ॥୩୯॥**

ଉ. ଠାକୁରଜୀ ସ୍ୱକଳ ମଧୁର ରସର ସ୍ରୋତ ବା ଉତ୍ସ । ସେ ମଧୁରାଧିପତି । ତାଙ୍କର ଦିବ୍ୟ ଚୂର୍ଣ୍ଣକୁଣ୍ଡଳ (ଅଳକ ଆବୃତ୍ତ) ମୁଖ ସୁନ୍ଦର । ଦୁଇ କାନର ମକର କୁଣ୍ଡଳର ଶୋଭା, ଦିବ୍ୟ କପୋଳ (ଗଣ୍ଡସ୍ଥଳ), ବନ୍ଧୁଲୀ ଅଧର, ସ୍ମିତ ହାସ୍ୟ, ତୀକ୍ଷ୍ଣ କଟାକ୍ଷ ଶୋଭା ଅତୀବ ରମଣୀୟ । ସର୍ବୋପରି କୃଷ୍ଣ ପ୍ରେୟସୀମାନଙ୍କ ପାଇଁ ଅଭୟ ପ୍ରଦାନକାରୀ ଭୁଜ ଦ୍ୱୟ ଓ ମହାଲକ୍ଷ୍ମୀଙ୍କର ବିହାରସ୍ଥଳୀ ବିଶାଳ ବକ୍ଷର ଆକର୍ଷଣ ଏଡ଼ାଇବା ତାଙ୍କ ପକ୍ଷରେ ଅସମ୍ଭବ । ସେମାନେ ସଂପୂର୍ଣ୍ଣ ମୋହିତ ହୋଇପଡ଼ିଛନ୍ତି ଏ କୋଟି କନ୍ଦର୍ପ ମୋହନକାରୀ ଦିବ୍ୟ ଶୋଭାରେ । ପତ୍ନୀ ପଣରେ ନହେଲେ ମଧ ଦାସୀ ପଣରେ କୃଷ୍ଣ ସେବା ଅଭିଳାଷୀ ହୋଇଛନ୍ତି ସେମାନେ ।

ଭଗବାନ ନାରାୟଣ ତ୍ରିଲୋକରେ ଧର୍ମ ମର୍ଯ୍ୟାଦାରେ ଚଳିବାକୁ ବେଦ ଧର୍ମ ପ୍ରବର୍ତ୍ତନ କରିଛନ୍ତି । ଗୋଲୋକ ବିହାରୀ କୃଷ୍ଣଙ୍କର ରୂପମାଧୁରୀ, ଲୀଳା ମାଧୁରୀ, ମୁରଲୀ ମାଧୁରୀ ଏହି ଦୁର୍ଲ୍ଲଙ୍ଘ୍ୟ ସ୍ୱଧର୍ମପାଳନ ଶିକ୍ଷାର ଅନେକ ଉର୍ଦ୍ଧ୍ୱରେ ।

ଶ୍ରୀମନ୍ ନାରାୟଣଙ୍କ ଧର୍ମ ମର୍ଯ୍ୟାଦା ଏକ ଦୁଇକୂଳ ଖାଉଥିବା ନଦୀ । ଶ୍ରୀକୃଷ୍ଣ ଲୀଳାପୁରୁଷୋତ୍ତମ । ତାଙ୍କ ଲୀଳା ଧର୍ମ ମର୍ଯ୍ୟାଦାରେ ଏକ ଉଚ୍ଛୁଳା ପ୍ରେମର ନଈ ବଢ଼ି । ଗୋପୀମାନେ ପ୍ରଶ୍ନ କଲେ, ''ହେ, ଶ୍ୟାମସୁନ୍ଦର, କେବଳ ବୃନ୍ଦାବନ କାହିଁକି ଭୂଃ-ଭୁବଃ-ସ୍ୱଃ ଲୋକରେ ଇନ୍ଦ୍ରାଣୀ, ବ୍ରହ୍ମାଣୀ, ରୁଦ୍ରାଣୀ ସମେତ ଏପରି କେଉଁ ଅବଳା ଅଛି କି, ଯେ କୃଷ୍ଣଙ୍କ ମାଧୁର୍ଯ୍ୟରେ ମୋହିତ ନହୋଇ ରହିପାରିବ । କୃଷ୍ଣ ପ୍ରେମ ମାଧୁର୍ଯ୍ୟର ଲୋଭ ତ୍ୟାଗ କରି ଲୌକିକ ଐଶ୍ୱର୍ଯ୍ୟ ପଛରେ ଧାଇଁବ ? ମନୁଷ୍ୟ କ'ଣ ବଣର ପଶୁ, ପକ୍ଷୀ, ବୃକ୍ଷ, ଲତା, ନଦୀ ପର୍ବତ, ସୁଦ୍ଧା ଯାହାଙ୍କ ସାନ୍ନିଧ୍ୟରେ ପୁଲକିତ, ସ୍ପନ୍ଦନ ରହିତ ହେଉଛନ୍ତି । ଯାହାଙ୍କ ହସ୍ତର ଦିବ୍ୟ ବଂଶୀ ସ୍ୱନ ଚେତନକୁ ଜଡ଼ କରୁଛି ପୁଣି ଜଡ଼କୁ କରୁଛି ଚେତନ ତା ହସ୍ତରେ ଆମେ କୃଷ୍ଣପ୍ରେୟସୀମାନେ କି ଛାର । ଆମେମାନେ କେବଳ ତାଙ୍କ କରକମଳରେ କାଠ କଣ୍ଢେଇ ।''

ପ୍ରଶ୍ନ-୬୬: ସକଳ ଧର୍ମ ଶାସ୍ତ୍ର ଏକ ସ୍ୱରରେ ଘୋଷଣା କରନ୍ତି ଯେ ଦେବୀ ଦେବତା ସାଧୁ ସନ୍ଥଙ୍କ ପୀଡ଼ା ହେଲେ ସେମାନଙ୍କୁ ରକ୍ଷା କରିବା ନିମିତ୍ତ ଭଗବାନ ନାରାୟଣ ବାରମ୍ବାର ଅବତାର ଗ୍ରହଣ କରନ୍ତି । କେତେବେଳେ ବିଷ୍ଣୁ କେତେବେଳେ ମହାବିଷ୍ଣୁଙ୍କୁ ଲୀଳାବତାର, ଯୁଗାବତାର, ମନ୍ୱନ୍ତରାବତାର ଆଦି ଗ୍ରହଣ କରି ଭଗବାନ ଜୀବକୁ କର୍ମ, ଜ୍ଞାନ ଓ ଭକ୍ତି ମାର୍ଗ ଦର୍ଶନ କରନ୍ତି । ଏକ କଳ୍ପରେ (୧୪ମନ୍ୱନ୍ତର ବା ୧୦୦୦ଚତୁର୍ଯୁଗରେ) ସ୍ୱୟଂ କୃଷ୍ଣ କିନ୍ତୁ ଥରେ ମାତ୍ର ୭ମ ମନ୍ୱନ୍ତରର ୨୮ତମ ଦ୍ୱାପର ଯୁଗରେ ଅବତୀର୍ଣ୍ଣ ହୁଅନ୍ତି । ଅନ୍ୟ ଦ୍ୱାପର ଯୁଗମାନଙ୍କରେ ବିଷ୍ଣୁ-ମହାବିଷ୍ଣୁ ସେ କାମ ଚଳାଇ ଦେଇପାରନ୍ତି । ଗୋଲୋକ ବିହାରୀଙ୍କର କୃଷ୍ଣ ଅବତାରର କାରଣ ଜୀବକୁ ରାସ-ମହାରାସର ପ୍ରେମ-ଦିବ୍ୟପ୍ରେମ ଆସ୍ୱାଦନ କରାଇବା । ଅନେକ ଅବତାର କାଳରେ ଯେଉଁ ଯେଉଁ ପ୍ରତିଶ୍ରୁତି ସେ ଜୀବକୁ ଦେଇଥାନ୍ତି ତାକୁ ପରିପୂରଣ କରିବାକୁ ତାଙ୍କୁ ଆସିବାକୁ ପଡ଼େ । ବେଦ ଋଚାରୂପୀ ଗୋପୀମାନଙ୍କୁ ଏ ରହସ୍ୟ ଜଣାଥିଲା ।

ସୁତରାଂ ଗୋପୀମାନେ ଖୋଲି କହିଛନ୍ତି, ''ହେ, ଦୁଃଖୀ ଶ୍ୟାମ(ଆର୍ତ୍ତବନ୍ଧୋ), ପତିତପାବନ ଆପଣ ସ୍ୱଭାବତଃ ଦୁଃଖନାଶନକାରୀ । ଆମେମାନେ ଜୀବ । ଆପଣଙ୍କ ଅଂଶ । ସ୍ୱଭାବତଃ କାମ ପୀଡ଼ିତା ଓ ସଂସାରୀ କାମନା ଆସକ୍ତିଯୁକ୍ତା । ଏ ଦୁଇ ରୋଗ ଉପଶମ କରିବାର ପ୍ରକୃଷ୍ଟ ବୈଦ୍ୟରାଜ ଆପଣ । ଅତଏବ ଆମ ମସ୍ତକରେ ପାଦ ରଖି (ନିଧେହି) କାମନା ବ୍ୟାଧି ଓ କାମତପ୍ତ ସ୍ତନ ଉପରେ ପାଦ ରଖି କାମ ବ୍ୟାଧି ଦୂର କରନ୍ତୁ । କାରଣ ହେଲା ଆମେମାନେ ଦାସୀ । ଆପଣ ପ୍ରଭୁ । ଆମ୍ଭେମାନେ ତ୍ରେତୟା ଆଦି ଯୁଗମାନଙ୍କରେ ଆପଣଙ୍କଠାରୁ ଯେଉଁ ପ୍ରତିଶ୍ରୁତି ପ୍ରାପ୍ତ ହୋଇଛୁ ଏବେ ଆପଣ କେବଳ ସେତିକି ପୂରଣ କରିଦିଅନ୍ତୁ । ଆମେ ସ୍ୱଧର୍ମ ତ୍ୟାଗୀ । ଆମକୁ ଆଉ ସ୍ୱଧର୍ମ ପାଳନ କରି ସ୍ୱର୍ଗସୁଖ ଲାଳସା ଦେଖାନ୍ତୁ ନାହିଁ ।''

ଯୋଗର ଈଶ୍ୱର ବୋଲି ଶଙ୍କର ଭଗବାନ ଯୋଗେଶ୍ୱର । ପୁଣି ବ୍ରହ୍ମା-ଶଙ୍କର ଆଦି ସମସ୍ତ ଈଶ୍ୱର ମାନଙ୍କର ମଧ୍ୟ ଈଶ୍ୱର ବୋଲି ଶ୍ରୀକୃଷ୍ଣ ଯୋଗେଶ୍ୱରେଶ୍ୱର । ଗୋପୀମାନଙ୍କ ପ୍ରଚଣ୍ଡ ଶାସ୍ତ୍ରୋକ୍ତ ବୁଦ୍ଧି ଯୁକ୍ତ, ଅକାଟ୍ୟ ପ୍ରମାଣ ଓ ସର୍ବସ୍ୱ ତ୍ୟାଗ ମୂଳକ ଶରଣାଗତି ପାଖରେ (ବିକ୍ଲବିତଂ) ଗୋପୀନାଥ କ'ଣ ହାରିଗଲେ ?

**ଶ୍ରୀଶୁକ ଉବାଚ**

**ଇତି ବିକ୍ଲବିତଂ ତାସାଂ ଶ୍ରୁତ୍ୱା ଯୋଗେଶ୍ୱରେଶ୍ୱରଃ ।**
**ପ୍ରହସ୍ୟ ସଦୟଂ ଗୋପୀଃ ଆତ୍ମାରାମୋଽପି-ଅରୀରମତ୍ ॥୪୨॥**

ଉ. ଠକିବାକୁ ବା ଖସି ପଳାଇବାକୁ ରାସବିହାରୀଙ୍କୁ ଆଉ ବାଟ କାହିଁ ? ସେ ଚିନ୍ତା କଲେ ଗୋଟିଏ ଟେକାରେ ଦୁଇଟି ଚଢ଼େଇ ଶିକାର କରିବେ । ଅଧିକାରୀ ଗୋପୀମାନଙ୍କୁ ତାଙ୍କର ଜନ୍ମଜନ୍ମାନ୍ତର ଦାବୀ, ଅଧିକାର ଦିବ୍ୟ ପ୍ରେମ ଦାନ କରିବେ । ତା ସହିତ ବ୍ରହ୍ମା-ଶଙ୍କର-ବିଷ୍ଣୁ-ଇନ୍ଦ୍ରାଦି ଦେବୀ ଦେବତାଙ୍କୁ ସେ ଜଣାଇ ଦେଇପାରିବେ ସେ କାମଜୟୀ ମଧ୍ୟ ।

ସେ କ୍ଲୀଂ ବୀଜରେ ବଂଶୀବାଦନ କରନ୍ତେ କାମଦେବ ତାଙ୍କ ସଖା ବସନ୍ତ, ଋତୁ, ମଳୟ ପବନ, ପୁଷ୍ପ ଧନୁ, ପୁଷ୍ପ ବାଣ ଆଦି ଧରି ପହଞ୍ଚି ସାରିଥିଲେ । ଅପେକ୍ଷା କରିଥିଲେ କେବଳ କୃଷ୍ଣଙ୍କ ଆଦେଶକୁ । ସେ ବ୍ରହ୍ମାଙ୍କୁ ହରାଇଥିଲେ ସରସ୍ୱତୀ ଦେଖାଇ, ଶଙ୍କରଙ୍କୁ, ଇନ୍ଦ୍ରଙ୍କୁ, ବିଶ୍ୱାମିତ୍ର, ଚନ୍ଦ୍ର ଆଦିଙ୍କୁ ହରାଇ ସାରିଥିଲେ ଯଥାକ୍ରମେ ମୋହିନୀ, ଅହଲ୍ୟା, ମେନକା ଓ ଦେବଗୁରୁ ବୃହସ୍ପତିଙ୍କ ପତ୍ନୀ ତାରାଙ୍କୁ ଦେଖାଇ । କେବଳ ହାରିଛନ୍ତି ନର-ନାରାୟଣ ଓ ଶ୍ରୀରାମଙ୍କ ପାଖରେ । ଏବେ ଶ୍ରୀକୃଷ୍ଣଙ୍କ ପାଖରେ ସର୍ତ୍ତ ବାଡ଼ିଲେ ଲଢ଼େଇରେ ଅବିବାହିତ(ନର-ନାରାୟଣ) କିମ୍ବା ଏକ ପତ୍ନୀ ବ୍ରତ (ରାମଙ୍କ ଭଳି)ରଖିଲେ ଚଳିବନି । ଏହା ତ ଦୂର୍ଗ ଭିତରେ ଲୁଚି ଜଣେ ରଜା ପୁଅର ଯୁଦ୍ଧକୌଶଳ ଶିଖିବା ଭଳି । ଯୁଦ୍ଧ କଲେ କାହାରି ବୀରତ୍ୱ ଜଣାଯାଏନା ।

ଅନେକ ସୁନ୍ଦରୀ ଯୁବତୀ ଥିବେ । ବସନ୍ତ ଋତୁ ରହିବ । ମଳୟ ପବନ ବହିବ । ଏକାନ୍ତ ସ୍ଥାନ ହୋଇଥିବ । ରାତ୍ରୀ କାଳ ହେବ । ନୃତ୍ୟ-ଗୀତ-ବାଦ୍ୟର ଆସର ଜମିଥିବ । ସେ ଯୁବତୀମାନେ ଆପଣଙ୍କୁ ପାଇବାକୁ ପରସ୍ପର ମଧ୍ୟରେ ପ୍ରତିଯୋଗିତା କରୁଥିବେ । ଆପଣ ଯଦି ଅଖଣ୍ଡ ବ୍ରହ୍ମଚାରୀ ବ୍ରତରୁ ଚ୍ୟୁତ ନ ହେବେ ତେବେ ଜଣାଯିବ ଆପଣ ବାସ୍ତବରେ ଅଚ୍ୟୁତ । ଭଗବାନ କନ୍ଦର୍ପ ରାଜାଙ୍କର ସକଳ ସର୍ତ୍ତମାନି ନେଲେ । ଭଗବାନ ସ୍ୱୟଂ ନିଜ ତରଫରୁ ଏକ ସର୍ତ୍ତ ମଧ୍ୟ ରଖିଲେ । ଯୁଦ୍ଧରେ ଯେ ହାରିବ ସେ ଜିଣିବା ପକ୍ଷ ଯୋଦ୍ଧାର ପୁଅ ହୋଇ ଜନ୍ମ ହେବ । କନ୍ଦର୍ପ ସହର୍ଷ ସ୍ୱୀକାର କରିଗଲେ ସେ ସର୍ତ୍ତକୁ । ଶିବଜୀଙ୍କ ବରରେ ତାଙ୍କୁ କୃଷ୍ଣପୁତ୍ର ପ୍ରଦ୍ୟୁମ୍ନ ରୂପେ ଦ୍ୱାରକା ଲୀଳା କରିବାକୁ ହେବ ବୋଲି ସେ ନିଜ ପତ୍ନୀ ରତି ଦେବୀଙ୍କ ଠାରୁ ଜାଣି ସାରିଥାନ୍ତି ।

ଲୀଳା ବିହାରୀ ଶ୍ରୀକୃଷ୍ଣ ଏ ଦୁଇ ଲୀଳାକୁ ଏକତ୍ର ରୂପଦେବା ପାଇଁ ଗୋପୀଙ୍କ ଶରଣାଗତି ସ୍ୱୀକାର କରିନେଲେ । ଆତ୍ମାରାମ ହୋଇ ମଧ୍ୟ ରମଣକାମ, ଗୋପୀକାମ ହେବାକୁ ବାଧ୍ୟ ହେଲେ । ଯୋଗମାୟା ଭୌତିକ ଚନ୍ଦ୍ରଙ୍କୁ ଅପସାରଣ କରି ଚିନ୍ମୟ ଚନ୍ଦ୍ର ଉଦୟ କରାଇଦେଲେ ।

|| ଅପଣ୍ଡିତ ଦାମୋଦର ବଳିୟାରସିଂହ ||

ପ୍ରଶ୍ନ-୬୭: ଏବେ ବହୁ ଆକାଙ୍‌କ୍ଷିତ, ବହୁ ପ୍ରତୀକ୍ଷିତ ଦିବ୍ୟ ରାସ ଲୀଳା ପ୍ରାରମ୍ଭ ହେଲା । ଜଣେ ବୋଲି ପ୍ରେମିକ କୃଷ୍ଣ । ଅଥଚ ସହସ୍ର ସହସ୍ର କୃଷ୍ଣ ପ୍ରେୟସୀ । ଚନ୍ଦ୍ର ଓ କୃଷ୍ଣଚନ୍ଦ୍ରଙ୍କର ସାମ୍ୟତା ଏଠାରେ ଲକ୍ଷ୍ୟ କରିବା କଥା । ଚନ୍ଦ୍ର ବହୁ ବଲ୍ଲଭ । ସତେଇଶ ନକ୍ଷତ୍ର ପତ୍ନୀଙ୍କୁ ନେଇ (ଉଡୁଭିଃ ବୃତଃ) ଖୋଲା ଆକାଶରେ କିରଣ ଦାନ କରି ଆହ୍ଲାଦିତ କରନ୍ତି । ଚନ୍ଦ୍ରବଂଶୀ ଶ୍ୟାମସୁନ୍ଦର ମଧ କେନ୍ଦ୍ର ବିନ୍ଦୁରେ ରହି ରସ ବର୍ଷଣ କରିଚାଲିଲେ । ତାଙ୍କ ଚାରିପଟେ ସକଳ ଗୋପୀଗଣ ହାତ ଧରା ଧରି ହୋଇ ନାଚ ଆରମ୍ଭ କଲେ । ସେ ତ ଲୀଳାମୟ ଓ ଇଛାମୟ । ସାଙ୍ଗରେ ଅଛନ୍ତି ପୁଣି ଅଘଟଣ ଘଟନ ପଟୀୟସୀ ଯୋଗମାୟା । ମଧୁର ଚିତ୍‌ବନ୍(କଟାକ୍ଷ) । ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଗୋପୀମାନଙ୍କର ମୁଖ କମଳମାନ ପୂର୍ଣ୍ଣ ପ୍ରସ୍ଫୁଟିତ ହୋଇଗଲେ । ସେହି କମଳ ପୁଷ୍ପମାନଙ୍କ ଉପରେ ଶ୍ୟାମସୁନ୍ଦର ମନଖୋଲା ହସଟିଏ ହସି ଦିବ୍ୟ ଦନ୍ତପନ୍ତିରୁ ପ୍ରେମ ରସ କିରଣ(ଦ୍ୱିଜ କୁଳ ଦୀଧିତିଃ) ସିଞ୍ଚନ କରିଦିଅନ୍ତେ ସେ ସମଗ୍ର ରାସଲୀଳା କ୍ଷେତ୍ରଟି ଅପୂର୍ବ ରସ ଛଟାରେ ଶୋଭାୟମାନ (ବ୍ୟରୋଚତ) ହୋଇ ଉଠିଲା । ଗୋପଲଳନା ଓ ଗୋପୀନାଥ ସମସ୍ତେ ତାଳଦେଇ ନାଚି ନାଚି ପ୍ରେମ ବିଭୋର ହୋଇଗଲେ ।

କଥା ହୁଁ କୁ ଗୀତ ମୁହଁକୁ । ନାଚ ସହିତ ଗାଉଣା ବାଜଣା ନହେଲେ ତାଳିମାଡ଼ ନହେଲେ, ହୁଳହୁଳି ହରିବୋଲ ନଥାଇ ରାସଲୀଳା ଜମିଲା କେମିତି ?

ଶ୍ରୀ ଶୁକ ଉବାଚ

**ଉପଗୀୟମାନ ଉଦ୍‌ଗାୟନ୍ ବନିତା ଶତ ଯୂଥପଃ ।**
**ମାଳାଂ ବିଭ୍ରତ୍ ବୈଜୟନ୍ତୀଂ ବ୍ୟଚରନ୍ ମଣ୍ଡୟନ୍ ବନମ୍ ॥୪୪॥**

ଉ. ସେ ସବୁର ଅଭାବ ହେବାକୁ ମଉକା କାହିଁ ? ନାଚ ସହିତ ତାଳେ ତାଳେ କୃଷ୍ଣ ଲୀଳାକୁ ତୁଣ୍ଡରେ ଗାନ କରୁଥାନ୍ତି ବ୍ରଜ ବନିତା ମାନେ । ଉଚ୍ଚ ସ୍ୱରରେ ପାଳି ଧରୁଥାନ୍ତି ସ୍ୱୟଂ ରାଧା ବଲ୍ଲଭ । ସମସ୍ତେ ମିଶି ବେଳେ ବେଳେ ତାଳିମାରି, ହାତ ଉପରକୁ କରି ଡ଼େଉଁ ଥାଆନ୍ତି । ଆକାଶରେ ଦେବୀ, ଦେବତା, ଗନ୍ଧର୍ବ, କିନ୍ନର, ବିଦ୍ୟାଧର ଆଜି ପୁଷ୍ପ ବୃଷ୍ଟି କରି, ଦୁନ୍ଦୁଭି ବଜାଇ, ହୁଳହୁଳି, ହରିବୋଲରେ ଗଗନ ପବନ କମ୍ପମାନ କରୁଥାନ୍ତି । ଭଗବାନଙ୍କ ବକ୍ଷ ସ୍ଥିତ ବୈଜୟନ୍ତୀମାଳାଙ୍କ ଶୋଭା(ବିଭ୍ରତ) ଦେଖେ କିଏ ? ନାଚପାଇଁ ଯମୁନା ପୁଳିନ ଯଥେଷ୍ଟ ସ୍ଥାନର ବ୍ୟବସ୍ଥା କରିଥିଲେ ସତ । ତଥାପି ନିକଟସ୍ଥ ବୃନ୍ଦାବିପିନ ସେମାନଙ୍କ ଆନନ୍ଦକୁ ଆହୁରି ବହୁଗୁଣିତ କରିଦେଲେ ନିଜର ଅପୂର୍ବ ସୁଷମା ମଣ୍ଡିତ ପ୍ରେମମୟ ପରିବେଶ ଦ୍ୱାରା ସ୍ୱାଗତ କରି(ମଣ୍ଡୟନ୍ ବନଂ) ।

ପ୍ରଶ୍ନ-୬୮ : ଶ୍ରୀକୃଷ୍ଣଙ୍କ ରାସଲୀଳା ଲାଗି ଯମୁନା ନଦୀ କେଉଁ କେଉଁ ସେବା ଯୋଗାଇ ଦେଇ ଦିବ୍ୟ ପ୍ରେମାନନ୍ଦରେ ସୌଭାଗ୍ୟବତୀ ବୋଲାଇଲେ ?

**ନଦ୍ୟାଃ ପୁଳିନଂ ଆବିଶ୍ୟ ଗୋପୀଭିଃ ହିମ ବାଲୁକମ୍ ।**
**ଜୁଷ୍ଟଂ ତତ୍ ତରଳ-ଆନନ୍ଦ କୁମୁଦ-ଆମୋଦ ବାୟୁନା ॥୪୫॥**

ଉ. ସ୍ୱୟଂ ଯମୁନା ମହାରାଣୀ ଦିବ୍ୟ ଶୀତଳ(ହିମ) ବାଲୁକା ଶେଜ ହୋଇ ଶୋଇ ପଡ଼ିଲେ । ନାମ ଧାରଣ କଲେ ରମଣରେତି । ମଳୟ ପବନକୁ ଶୀତଳ କରିବା ଲାଗି ସେ ଯୋଗେଇ ଦେଲେ ଅସଂଖ୍ୟ ଶୀତଳ ଜଳକଣା ପ୍ରେମ ଗଦ୍ ଗଦ୍ ହୋଇ । ବୃନ୍ଦାବନରେ ବନରାଜି ଯୋଗାଉ ଥାନ୍ତି ପୁଷ୍ପରେଣୁର ସୁଗନ୍ଧ । ମଝିରେ ମଝିରେ ଯମୁନା ନଦୀ ତରଙ୍ଗ ରୂପକ କରଦ୍ୱାରା କଇଁଫୁଲ(କୁମୁଦ-ଆମୋଦ) ପଦ୍ମଫୁଲ ଆଦିଙ୍କୁ ନେଇ ଭଗବାନଙ୍କ ଚରଣ କମଳରେ ସଭକ୍ତିକ ସମର୍ପଣ କରୁଥାନ୍ତି । ଫଳରେ ସକଳ ଗୋପୀମାନଙ୍କର ଉଚ୍ଛୁଳା ଯୌବନ ତରଙ୍ଗାୟିତ ହେବାରେ ଲାଗିଲା । ସରଳ, ତରଳ, ଚଞ୍ଚଳ ମନ ସେମାନଙ୍କର କନ୍ଦର୍ପ ପୀଡ଼ାର ଶରବ୍ୟ ହେଲେ । ପଞ୍ଚ ପୁଷ୍ପବାଣ ବିନ୍ଧି କାମ ଦେବ ଜିଣିଗଲେ ସକଳ ଗୋପୀମାନଙ୍କର ଗୋପନ ରାଇଜର ସଜଡ଼ା ଅସଜଡ଼ା ମନକୁ । ଏବେ ଛକି ରହିଲେ ସେ ଗୋବିନ୍ଦଙ୍କ ଆତ୍ମାରାମ-ଆପ୍ତକାମ ଟାଣୁଆ ମନକୁ ।

ପ୍ରଶ୍ନ-୬୯ : କନ୍ଦର୍ପଙ୍କ ପଞ୍ଚ ପୁଷ୍ପବାଣ ସ୍ୱଭାବତଃ ଜଗତ ମୋହନ । ଶ୍ରୀକୃଷ୍ଣଙ୍କ ରୂପ କିନ୍ତୁ କୋଟି କନ୍ଦର୍ପ ମୋହନ । ଉଭୟେ ପ୍ରାଣପଣେ ଲଢ଼େଇରେ ମାତିଲେ । ଷୋଳ ସହସ୍ର ଯୁବତୀ ନାରୀଙ୍କ ଯୌବନ ପସରା ହିଁ କନ୍ଦର୍ପଙ୍କ ପଞ୍ଚ ପୁଷ୍ପବାଣ । ଶେଷରେ କ'ଣ ଗୋପୀନାଥ ବଳବାନ୍ କାମଦେବଙ୍କ ପାଖରେ ହାରିଗଲେ ?

ବାତ୍ସାୟନ ଋଷିଙ୍କ କାମ ଶାସ୍ତ୍ର ଅନୁସାରେ ତିଥି ଭେଦରେ ନାରୀର ଭିନ୍ନ ଭିନ୍ନ ଅଙ୍ଗରେ କାମ ଉତ୍ତେଜନା ଘର ବାନ୍ଧିଥାନ୍ତି । ପୁରୁଷକୁ ସେହି ସେହି ଭେଦରେ ନାରୀ ଦେହର ଭିନ୍ନ ଭିନ୍ନ ଅଙ୍ଗକୁ ସ୍ପର୍ଶ-ଆଲିଙ୍ଗନ-ନଖ ଚାଳନା-କଟାକ୍ଷପାତ-ଥଟ୍ଟା ପରିହାସ ଆଦି ଦ୍ୱାରା ଚନ୍ଦ୍ରଚାଳନା କରିବାକୁ ହୋଇଥାଏ । କାମଦେବଙ୍କ ଦେଖାରେ ଚଉଷଠୀ କାମ କଳା ବିଶେଷଜ୍ଞ ଭଗବାନ କୃଷ୍ଣ ସକଳ କାମ ଅସ୍ତ୍ର ପ୍ରୟୋଗ କରୁଛନ୍ତି ବ୍ରଜସୁନ୍ଦରୀମାନଙ୍କ ଦିବ୍ୟ ଦେହରେ । ରାସ ବିହାରୀ ଏବେ ରମଣ ବିହାରୀ ହୋଇ ପୂର୍ଣ୍ଣ ପ୍ରାଣରେ ଅଲୌକିକ ଦିବ୍ୟ କାମଲୀଳା କରୁଛନ୍ତି ।

କାମଦେବ ଆଶ୍ଚର୍ଯ୍ୟ ହେଲେ । କୃଷ୍ଣଙ୍କ କାମବାଣରେ ଗୋପୀଙ୍କ କାମ ଉତ୍ତେଜନା ସବୁ ବୃଦ୍ଧିଲାଭ କରିବା ପରିବର୍ତ୍ତେ ଶାନ୍ତ ହୋଇଯାଉଛି । ସେମାନେ ସଂସାରୀ ପ୍ରେମ କାମ ଅନୁଭୂତି ଭୁଲି ଏବେ ଦିବ୍ୟ ପ୍ରେମରେ ଭାସୁଛନ୍ତି । କାରଣ କାମଦେବଙ୍କ ଶର ଆଉ ଗୋପୀ ମାନଙ୍କୁ ଆଦୌ କାଟୁ କରୁନି । ଅନ୍ୟ ପକ୍ଷରେ ଶ୍ରୀକୃଷ୍ଣ ଗୋପୀମାନଙ୍କ କାମବାଣ ସବୁ ଅକ୍ଳେଶରେ ନିଷ୍ପ୍ରଭ କରିଦେଇପାରୁଛନ୍ତି । କାମଦେବଙ୍କର ଏବେ ହୋସ୍ ଆସିଲା । ସେ ପ୍ରତ୍ୟକ୍ଷ ଦର୍ଶନ କଲେ ଓ ଅନୁଭବ କଲେ ଯେ-ମନମୋହନଙ୍କ ଦେହ ପଞ୍ଚଭୌତିକ ଦେହ ନୁହେଁ । ସତ୍-ଚିତ୍-ଆନନ୍ଦମୟ ଚିନ୍ମୟ ଦେହ । କାମଦେବଙ୍କର ସକଳ ପୁଷ୍ପବାଣ ଜୀବର ମୃଣ୍ମୟ ଦେହ ପାଇଁ ବିପଦପୂର୍ଣ୍ଣ କିନ୍ତୁ ଭଗବାନଙ୍କ ଚିନ୍ମୟ ଦେହ ପାଇଁ ସଂପୂର୍ଣ୍ଣ ବ୍ୟର୍ଥ । ସ୍ୱର୍ଗ ସମ୍ରାଟ୍ ଇନ୍ଦ୍ର, ସୃଷ୍ଟି କର୍ତ୍ତା ବ୍ରହ୍ମାଜୀଙ୍କ ଭଳି ସେ ଶେଷରେ କାମଯୁଦ୍ଧରେ ହାରି ଶରଣ ପଶିଲେ ଭଗବାନଙ୍କ ଦିବ୍ୟ ଚିନ୍ମୟ ଚରଣ କମଳରେ । ପୂର୍ବ ସର୍ତ୍ତ ଅନୁଯାୟୀ ଅପେକ୍ଷା କଲେ ଶ୍ରୀକୃଷ୍ଣଙ୍କ ଔରସରେ ରକ୍ମିଣୀଙ୍କ ଗର୍ଭରେ ପ୍ରଦ୍ୟୁମ୍ନରୂପେ ଜନ୍ମ ହେବା ଲାଗି । କୃଷ୍ଣଙ୍କ କାମଲୀଳା ଏବେ ସ୍ୱୀକୃତ ହେଲା କାମ ବିଜୟ ଲୀଳାରେ ।

ଶଙ୍କର ଭଗବାନ ପରମ ବୈଷ୍ଣବ ବୋଲି ସର୍ବଜନ ସ୍ୱୀକୃତ । ସେ ତପସ୍ୟାରତ ଥିବା ବେଳେ ତାରକାସୁର ବଧ ନିମିତ୍ତ ଇନ୍ଦ୍ରଙ୍କ ଆଦେଶରେ କାମଦେବଙ୍କ ପୁଷ୍ପବାଣର ସମ୍ମୁଖୀନ ହୋଇଥିଲେ । ନିଜର ପ୍ରଚଣ୍ଡ ତପସ୍ୟାଶକ୍ତି ପ୍ରୟୋଗରେ ମହାଶକ୍ତିଶାଳୀ କାମଦେବଙ୍କ ଶିକାର ହୋଇ ଅଡୁଆରେ ପଡ଼ିଗଲେ । ସେହିଭଳି ଗୋପ ରମଣୀମାନେ କାମଦେବଙ୍କୁ ବିଜୟ କରି କିଛି ଅସୁବିଧାରେ ପଡ଼ିଗଲେ କି ?

**ଏବଂ ଭଗବତଃ କୃଷ୍ଣାତ୍ ଲବ୍ଧମାନା ମହାତ୍ମନଃ ।**
**ଆତ୍ମାନଂ ମେନିରେ ସ୍ତ୍ରୀଣାଂ ମାନିନ୍ୟୋ ହି-ଅଧିକଂ ଭୁବି ॥୪୭॥**

ଉ. ଭଗବତ୍ କୃପାରୁ ସେମାନେ ଜନ୍ମ-ଜନ୍ମାନ୍ତର ଲାଗି କାମପୀଡ଼ା ମୁକ୍ତ ହେଲେ ଅବଶ୍ୟ । ତେବେ ଭଗବାନଙ୍କ ଅଲୌକିକ କୃପାପାତ୍ର ବୋଲି ନିଜକୁ ମନେ କରି (ଆତ୍ମାନଂ ମେନିରେ) ପୃଥବୀରେ (ଭୁବି) ସର୍ବଶ୍ରେଷ୍ଠା ସ୍ତ୍ରୀ ବୋଲି ଗର୍ବ ଓ ଅହଂକାରର (ମାନିନ୍ୟୋ) ଶିକାର ହୋଇଗଲେ । ଭଗବାନ ଜୀବର ସକଳ ଦୁଷ୍ଟାମି, ଅମାନିଆ ପଣ ସହନ୍ତି ସିନା । ସହିପାରନ୍ତି ନାହିଁ ଜୀବର ସାମାନ୍ୟ ଗର୍ବ ଅହଂକାର । ସେ ଅଭକ୍ତ-ଭକ୍ତ ଯାହା ବି ହେଉ । ଗୋପୀମାନଙ୍କର ଅହଂକାର ଦୂର କରିବାର ଗୁରୁ ଦାୟିତ୍ୱ ପଡ଼ିଲା ଏବେ ଠାକୁରଜୀଙ୍କର ଉପରେ ।

ପ୍ରଶ୍ନ-୭୦: କୃଷ୍ଣପ୍ରେୟସୀ ଗୋପୀମାନଙ୍କର ଏ ସୌଭାଗ୍ୟଜନିତ ଗର୍ବ-ଅହଂକାରକୁ ଦୂର କରି (ପ୍ରଶମାୟ) ଭକ୍ତି ସୁଲଭ କୃପା (ପ୍ରସାଦାୟ) କରିବାକୁ ଭକ୍ତ ବତ୍ସଳ ଭଗବାନ କ'ଣ ବ୍ୟବସ୍ଥା କଲେ ?

**ତାସାଂ ତତ୍ ସୌଭାଗମଦଂ ବୀକ୍ଷ ମାନଂ ଚ କେଶବଃ ।**
**ପ୍ରଶମାୟ ପ୍ରସାଦାୟ ତତ୍ର-ଏବ ଅନ୍ତର୍ଧୀୟତ ॥୪୮॥**

ଉ. ଅତି ସୁଚିନ୍ତିତ ଉପାୟଟିଏ କରି ବସିଲେ । ସେ ସଙ୍ଗେ ସଙ୍ଗେ ସେହି ସ୍ଥଳରେ ତାଙ୍କ ହ୍ଲାଦିନୀ ଶକ୍ତି ଶ୍ରୀରାଧାରାଣୀଙ୍କୁ ସାଥିରେ ଧରି ରାସସ୍ଥଳୀରୁ ଅନ୍ତର୍ଦ୍ଧାନ ହୋଇଗଲେ । ଅନ୍ୟ ସ୍ଥାନକୁ ଯାଇ ନାହାନ୍ତି ଶ୍ରୀରାଧା ଓ ଶ୍ରୀକୃଷ୍ଣ ।

ସେଇ ବୃନ୍ଦାବନ ଦିବ୍ୟ କାନନରେ ଗୋପୀମାନଙ୍କୁ କେବଳ ଅଦୃଶ୍ୟ ହୋଇଗଲେ । ଭଗବାନଙ୍କ ବିଧାନ ଅନୁସାରେ ଅହଂକାରୀ ଜୀବକୁ ଗର୍ବ ଗଞ୍ଜନ ନରହରିଙ୍କ ଦିବ୍ୟ ସ୍ୱରୂପ ଦର୍ଶନ ହୁଏନା । ଏଠାରେ ତାହାହିଁ ଘଟିଛି । ଭଗବାନ-ଭଗବତୀ ସେଇଠି ଅଛନ୍ତି । ଗୋପୀମାନେ କିନ୍ତୁ କେହି ହେଲେ ତାଙ୍କୁ ଦେଖିପାରୁ ନଥାନ୍ତି । ନଟନାଗରଙ୍କ ହଟ ପୁଣି ଆରମ୍ଭ ହୋଇଗଲା । ଗୋପୀମାନେ ନିଜ ନିଜ ସାଧନାର ବଳକୁ ଦେଖିବସିଲେ । ସେମାନଙ୍କର ଆତ୍ମ (ଦେହ)ଦୃଷ୍ଟି ହୁଅନ୍ତେ ଭଗବତ୍ ଦୃଷ୍ଟି ଅନ୍ତର୍ହିତ ହୋଇଗଲା ।

## ଅଥ ୩୦ଶ ଅଧ୍ୟାୟଃ

## (କୃଷ୍ଣ ବିରହିଣୀ ଗୋପୀମାନଙ୍କ ବନ ବନରେ କୃଷ୍ଣ ଅନ୍ୱେଷଣ)

ପ୍ରଶ୍ନ-୭୧: ଗଙ୍ଗାନଦୀରେ ବାଲିଥାଏ । ଯମୁନା ନଦୀରେ ମଧ୍ୟ ବାଲିଥାଏ । କୃଷ୍ଣ ଭକ୍ତ ପାଇଁ କିନ୍ତୁ ଦୁଇ ବାଲିରେ ଆକାଶ ପାତାଳ ଫରକ । ଗଙ୍ଗାର ବାଲି ଧଳା ବାଲି । ଯମୁନା ବାଲି ଧଳା-କଳା ଉଭୟ ବାଲି କଣାରେ ମିଶ୍ରିତ । କାରଣ ଗୋରୀ ରାଧା-ରାଧାଅଂଶୀ ଗୋପୀ ଓ କଳା କୃଷ୍ଣ ରୂପରେ ଯମୁନା ନଦୀରେ ଆଜି ମଧ୍ୟ ସ୍ୱତନ୍ତ୍ର ବାଲି ରୂପରେ ଦର୍ଶନ ଦେଉଛନ୍ତି । ହଠାତ୍ ଭଗବାନ କୃଷ୍ଣ ଅନ୍ତର୍ଦ୍ଧାନ ହୋଇ ଯାଆନ୍ତେ (ଅନ୍ତର୍ହିତେ) ଗୋପାଙ୍ଗନାମାନଙ୍କର କିଭଳି ଦୁରବସ୍ଥା ହୋଇଥିଲା ସେତେବେଳେ ?

ଶ୍ରୀଶୁକ ଉବାଚ

**ଅନ୍ତର୍ହିତେ ଭଗବତି ସହସା-ଏବ ବ୍ରଜ-ଅଙ୍ଗନାଃ ।**
**ଅତପ୍ୟନ୍ ତଂ ଅଚକ୍ଷଣାଃ କରିଣ୍ୟ ଇବ ଯୁଥପମ୍ ॥୧॥**

ଉ. ଭୟଙ୍କର ଜଙ୍ଗଲ ମଧ୍ୟରେ ଦଳେ ମାଈ ହାତୀଙ୍କ ମଧ୍ୟରେ ଥିବା ଦଳପତି ଅଣ୍ଡିରା ହାତୀକୁ ଯୂଥପତି କୁହାଯାଏ । ପୁରୁଷ ହାତୀଟି ମରିହଜିଗଲେ ସମଗ୍ର ମାଈ ହାତୀମାନଙ୍କର ଯେଉଁ ଦୟନୀୟ ଅବସ୍ଥା ହୁଏ ଆଜି କୃଷ୍ଣଙ୍କ ଅବର୍ତ୍ତମାନତାରେ (ଅଚକ୍ଷଣାଃ) ଗୋପୀମାନଙ୍କର ଠିକ୍ ସେହି ଦୁଃଖାପ୍ଲୁତ ଅବସ୍ଥା ହୋଇଛି । ଭଗବାନ ସକଳ ଜୀବ ସୁହୃତ୍ । ସେ ମାୟା ରୂପରେ ପ୍ରକଟ (ଆବିର୍ଭୂତ) ହୋଇ ଜୀବର କ୍ଷୁଧା-ତୃଷା-ସୁଖ-ସୁବିଧା ବ୍ୟବସ୍ଥା କରିଥାନ୍ତି । ପୁଣି ଅର୍ନ୍ତହିତ ହୋଇ ଯୋଗମାୟା ରୂପରେ ଅନ୍ତଃକରଣରେ ଉଦୟ ହୋଇ ଜୀବର ପରମ କଲ୍ୟାଣ ମଧ୍ୟ ସାଧନ କରନ୍ତି । ଏହି ଲୀଳାରେ ଠିକ୍ ତାହାହିଁ ହୋଇଛି । ଗୋପୀମାନେ କୃଷ୍ଣ ଅଦର୍ଶନରେ ତୀବ୍ର ବିରହ ବ୍ୟାକୁଳ ହୋଇ ପଡ଼ିଛନ୍ତି । ହିତ-ଅହିତ ଜ୍ଞାନ ଭୁଲିଯାଇଛନ୍ତି ।

ଯମୁନା ପୁଳିନରେ ଅନ୍ତର୍ଯ୍ୟାମୀ ଭଗବାନ ଅନ୍ତର୍ହିତ ହୋଇ ପ୍ରତ୍ୟେକ ଗୋପୀଙ୍କର ଅନ୍ତର୍ମନରେ ଆବିର୍ଭୂତ ହୁଅନ୍ତେ ଗୋପୀମାନେ ନିଶ୍ଚୟ ବିରହ ଯନ୍ତ୍ରଣାରେ ଛଟପଟ ହୋଇଥିବେ । ସେମାନଙ୍କୁ ଦୁଃଖ ଦେଇ, କହ୍ନାଇ ଭଗବାନ ସେମାନଙ୍କୁ ଏକ ଦୁର୍ଲଭ କୃପା କରିଛନ୍ତି । ଗୋପୀମାନଙ୍କ ଚକ୍ଷୁ ପରଦାରୁ ଗୋବିନ୍ଦ ଦୂରେଇ ଯାଇଛନ୍ତି ସତ । କିନ୍ତୁ ସେମାନଙ୍କ ମନ ପରଦାରେ ଭାସି ଉଠିଛି ଗୋବିନ୍ଦଙ୍କର ଚାଲି-ଚଳନ-ଢ଼ଙ୍ଗ-ରଙ୍ଗ ଅତୀତର ସ୍ନେହାସ୍ୱଦ ହାସ୍ୟ କ୍ରୀଡ଼ା, କୌତୂକପୂର୍ଣ୍ଣ କଟାକ୍ଷ, ମଧୁର ଆଳାପ-ଆଲୋଚନା ଭିତ୍ତିକ ବାଲଲୀଳା; ପୌଗଣ୍ଡଲୀଳା ଓ କୈଶୋର ଲୀଳା ସମୂହ ।

ସେଇ ସେଇ ରୂପ ଧ୍ୟାନ, ଗୁଣ ଚିନ୍ତନ ଓ ଲୀଳା ସ୍ମରଣ କରି କରି ଗୋପୀମାନେ ଅଲୌକିକ ଆନନ୍ଦରେ ଅଭିଭୂତ ହୋଇପଡ଼ିଛନ୍ତି । ଚକ୍ଷୁରୁ ଅବଶ୍ୟ ବହୁଛି ଧାର ଧାର ଅଶ୍ରୁ କିନ୍ତୁ ମନ-ମସ୍ତିଷ୍କ-ହୃଦୟ ସମସ୍ତେ ପ୍ରେମ ସାଗରରେ ଉବୁଟୁବୁ ।

ପ୍ରଶ୍ନ-୭୨: ଗୋପୀମାନଙ୍କର ମନ-ବୁଦ୍ଧି-ଚିତ୍ତ-ଅହଂକାର କୃଷ୍ଣ ସ୍ମରଣ କଲାବେଳେ ସେମାନଙ୍କର ଦେହ-ଇନ୍ଦ୍ରିୟ-ପ୍ରାଣ-ବାଣୀ ନିଷ୍କ୍ରିୟ ହୋଇଗଲେ । କୃଷ୍ଣଙ୍କ ଗମନ, ହାସ୍ୟ, ଚାହାଣୀ, ବାକ୍ ଚାତୁରୀ ଭାବନା କରୁ କରୁ ସେମାନଙ୍କର ଇନ୍ଦ୍ରିୟମାନେ ମଧ୍ୟ ତନ୍ମୟ ତଲ୍ଲୀନ ହୋଇ ଯାଇଛନ୍ତି । ସେମାନେ ଭିନ୍ନ ଭିନ୍ନ କୃଷ୍ଣ ଲୀଳାର ଅଭିନୟ

ସବୁ ନିଜେ ନିଜେ କରି ଚାଲିଛନ୍ତି । ଦାସୋ-ହଂ ଭାବ ଉଭେଇ ଯାଇଛି । ଉଦୟ ହୋଇଛି ସୋଽହଂ ଭାବ । ମୁଁ ସେଇ କୃଷ୍ଣ ଆଉ ଅନ୍ୟ କେହି ନୁହେଁ । କାରଣ ସେମାନଙ୍କର ସୂକ୍ଷ୍ମ ଅହଂକାର ଟିକକ(ତତ୍-ଆତ୍ମିକା) କୃଷ୍ଣଙ୍କୁ ସମର୍ପିତ ହୋଇଯାଇଛି । କୃଷ୍ଣଲୀଳା ଅଭିନୟ କରୁ କରୁ କୃଷ୍ଣ ଅଦର୍ଶନରେ କୃଷ୍ଣପ୍ରେୟସୀମାନେ ବିରହିଣୀ । ପାଗଳିନୀ । ଅସଂଖ୍ୟାତ ଗୋପୀ ଏକତ୍ରହୋଇ (ସଂହତା) ଉଚ୍ଚ ସ୍ୱରରେ କୃଷ୍ଣ ମହିମା ଗାନ କରି କରି (ଗାୟନ୍ତଃ ଉଚ୍ଚୈଃ) ବନରୁ ବନାନ୍ତର ଘୂରି ବୁଲିଲେ (ବନାତ୍ ବନଂ) । ସେମାନେ କେବଳ କାନ୍ଦ ବୋବାଳି ପକାଇ ଘୂରି ବୁଲିଲେ ନାହିଁ । ବୃନ୍ଦାବନର ଲତା-ପତାକୁ କୃଷ୍ଣଙ୍କ ସନ୍ଦେଶ ପଚାରିଲେ । ଗୋପୀମାନଙ୍କର ବୃକ୍ଷଲତାକୁ କୃଷ୍ଣ ସନ୍ଦେଶ ପଚାରିବା କେବେ ବି ଅଜ୍ଞାନର ପରିଚାୟକ ନୁହେଁ । ପରିପୂର୍ଣ୍ଣ ଜ୍ଞାନ ହିଁ ସଂସାର ଦୃଷ୍ଟିରେ ଅଜ୍ଞାନ ଅଟେ । ଗୋପୀମାନେ ଭାବିଲେ ବ୍ରଜ ଶବ୍ଦର ଅର୍ଥ ବ୍ୟାପକ । ବ୍ରଜ ବିହାରୀ ଶ୍ରୀକୃଷ୍ଣ ସେହି ନ୍ୟାୟରେ ସର୍ବବ୍ୟାପକ ଅଟନ୍ତି । ଆକାଶ ଯେଭଳି ସକଳ ପ୍ରାଣୀ-ବୃକ୍ଷ-ଲତାଦିରେ ଭିତରେ ଓ ବାହାରେ ପୂରି ରହିଥାନ୍ତି ଶ୍ରୀକୃଷ୍ଣ ମଧ୍ୟ ସେହିଭଳି ବୃନ୍ଦାବନର ବୃକ୍ଷ ଲତା ମଧ୍ୟରେ(ବନସ୍ପତୀନ୍) ଅଛନ୍ତି । କାରଣ କୃଷ୍ଣ ଜୀବ ନୁହନ୍ତି । ସେ ପରମପୁରୁଷ । ସର୍ବପ୍ରଥମେ ଗୋପାଙ୍ଗନାମାନେ ବଡ଼ ବଡ଼ ବୃକ୍ଷ ଦେଖି ଅଶ୍ୱତ୍‌ଥ, ପ୍ଳକ୍ଷ ଓ ନ୍ୟଗ୍ରୋଧ(ବଟବୃକ୍ଷ)ଙ୍କୁ କୃଷ୍ଣଙ୍କ ଠିକଣା କାହିଁକି ପଚାରିଲେ ?

**ଦୃଷ୍ଟୋ ବଃ କଚ୍ଚିତ୍ ଅଶ୍ୱତ୍‌ଥ ପ୍ଳକ୍ଷ ନ୍ୟଗ୍ରୋଧ ନୋ ମନଃ ।**
**ନନ୍ଦ ସୂନୁଃ ଗତୋ ହୃତ୍ୱା ପ୍ରେମ ହାସ-ଅବଲୋକନୈଃ ॥୫॥**

ଉ. ଗୋପଲଳନା ମାନେ ପଚାରିଲେ, ''ହେ, ଅଶ୍ୱତ୍‌ଥ, ହେ ପ୍ଳକ୍ଷ, ହେ ବଟବୃକ୍ଷ ନନ୍ଦପୁତ୍ର କଳା କାହ୍ନୁ ତାଙ୍କ ମଧୁର ହସ, କୌତୁକ, କଟାକ୍ଷ ପ୍ରେମ ପୂର୍ଣ୍ଣ ମୁରଲି ଧ୍ୱନିରେ ଆମ ମାନଙ୍କ ଚିତ୍ତ ହରଣ କରି କୁଆଡ଼େ ପଳାଇ ଯାଇଛନ୍ତି । ତୁମ୍ଭେମାନେ ତାଙ୍କୁ ଦେଖିଥିଲେ (ଦୃଷ୍ଟୋ ବଃ) ପ୍ରକାଶ କରି ଆମ ଦୁଃଖ ଦୂର କର ।''

ପ୍ରଶ୍ନ-୭୩: ବଟବୃକ୍ଷ ଆଦି ଅଫଳନ୍ତି ଶୁଷ୍କ ବୃକ୍ଷ । ସୁତରାଂ ପ୍ରେମିକ ପ୍ରେମିକାଙ୍କର ଖବର ବିଷୟରେ ସେମାନେ ଉଦାସୀନ ରହିପାରନ୍ତି । ଫୁଲ ଗଛମାନେ ସେ ପ୍ରେମ ଲୀଳା ସଙ୍କେତ ବୁଝୁଥିବେ ପରା । କେଉଁ କେଉଁ ଫୁଲ ଗଛମାନଙ୍କୁ ସେତେବେଳେ ଗୋପୀମାନେ ପ୍ରଶ୍ନ କରିଥିଲେ ?

**କଚ୍ଚିତ୍ କୁରୁବକ-ଅଶୋକ ନାଗ ପୁନ୍ନାଗ ଚମ୍ପକାଃ ।**
**ରାମାନୁଜୋ ମାନିନୀନାଂ ଇତୋ ଦର୍ପ ହରତି ସ୍ମ ॥୬॥**

ଉ. ଗୋପ ଲଳନାମାନେ କୁରୁବକ, ଅଶୋକ, ନାଗକେଶର, ପୁନ୍ନାଗ ଓ ଚମ୍ପା ବୃକ୍ଷ ଆଦିକୁ ପଚାରିଲେ, ''ହେ, ରସିକ ବୃକ୍ଷଗଣ, ବଳରାମଙ୍କ ଅନୁଜ କୃଷ୍ଣଙ୍କ ମନ ମୋହନକାରୀ ଅଲୌକିକ ରୂପ ଗୁଣ ଲୀଳା ବିଷୟରେ ତୁମେମାନେ ଅବଗତ । ସଂସାରର ସକଳ ରୂପଗୁଣର ଅହଂକାରୀଙ୍କର (ମାନିନୀନାଂ) ଗର୍ବ, ଦମ୍ଭ ଚୂନା କଲାବାଲା ସେ । ତାଙ୍କ ଯିବା ବାଟ ଜାଣିଥିଲେ ଦୟାକରି ପ୍ରକାଶ କର ।''

ପ୍ରଶ୍ନ-୭୪: ଗୋପୀମାନେ ତଥାପି ନିରାଶ । କୌଣସି ଉତ୍ତର ମିଳିଲାନି ସେମାନଙ୍କ ଠାରୁ । ଭାବିଲେ ଏ ବୃକ୍ଷମାନେ ପୁରୁଷ ଶ୍ରେଣୀର । ନିଷ୍ଠୁରତା ଏମାନଙ୍କ ସ୍ୱଭାବ । ଚାଲ ଏଥର ଜଣେ ନାରୀ ବୃକ୍ଷ ତୁଳସୀଙ୍କୁ ପଚାରି ବୁଝିବା । ସେ ଦୟାମୟୀ (କଲ୍ୟାଣୀ), କୃଷ୍ଣ ପ୍ରେୟସୀ (ଚରଣ ପ୍ରିୟେ) । କାରଣ ଆମେ ସମସ୍ତେ ନାରୀ ପୁଣି ଦୁଃଖିନୀ । କୋମଳ ହୃଦୟା ତୁଳସୀ କୃଷ୍ଣଙ୍କର ପ୍ରାଣ ପ୍ରେୟସୀ ବୋଲି ଗୋପୀମାନେ କଅଣ ତାଙ୍କର ବହୁମାନନ କଲେ ?

**କଚ୍ଚିତ୍ ତୁଳସୀ କଲ୍ୟାଣି ଗୋବିନ୍ଦ ଚରଣ ପ୍ରିୟେ ।**
**ସହ ତ୍ୱ-ଅଳିକୁଳୈଃ ବିଭ୍ରତ୍ ଦୃଷ୍ଟଃ ତେଽତିପ୍ରିୟୋଽଚ୍ୟୁତଃ ॥୭॥**

ଉ. ଗୋବିନ୍ଦଙ୍କ ଚରଣ କମଳ ମାହାତ୍ମ୍ୟ କେବଳ ଗୋପୀଙ୍କୁ ଜଣା । ଏକଥା ବ୍ରହ୍ମା-ଶଙ୍କର କ'ଣ ବୈକୁଣ୍ଠ ବିହାରିଣୀ ମହାଲକ୍ଷ୍ମୀଙ୍କୁ ମଧ ଅଜଣା । କୃଷ୍ଣ ଭକ୍ତମାନେ କୃଷ୍ଣ କୃପାରୁ କୃଷ୍ଣଙ୍କ ଶ୍ରୀଅଙ୍ଗରେ ସ୍ଥାନ ପାଆନ୍ତି ଅବଶ୍ୟ କିନ୍ତୁ ସାମାନ୍ୟତମ ଐଶ୍ୱର୍ଯ୍ୟ ଆକାଙ୍କ୍ଷା ରହିଗଲେ ବିପଦ । କାହାକୁ ମିଳେ ଶ୍ରୀକୃଷ୍ଣଙ୍କ ମସ୍ତକରେ ସ୍ଥାନ ମୁକୁଟ, ମୟୂରଚୂଳ, କୀରୀଟ ରୂପରେ । ପୁଣି କିଏ କିଏ ପ୍ରାପ୍ତ ହୁଅନ୍ତି ପୀତାମ୍ବର, କଙ୍କଣ, ଅଙ୍ଗଦ, ମୁଦ୍ରିକା, ବଂଶୀ ନୂପୁର ଆଦି ହେବାର ସୌଭାଗ୍ୟ । କିନ୍ତୁ ଚରଣ କମଳ ସ୍ଥାନ ବାଛି ନେଇଛନ୍ତି ମା'ତୁଳସୀ । ସକଳ ଐଶ୍ୱର୍ଯ୍ୟର ଅଧିକାରିଣୀ ମହାଲକ୍ଷ୍ମୀ ଖାସ୍ ଏହି କାରଣରୁ ତାଙ୍କୁ ସଉତୁଣୀ ପଣରେ ଗଣନ କରନ୍ତି । ଈର୍ଷ୍ୟା କରୁଥାନ୍ତି କାଳେ କାଳେ ।

ତୁଳସୀଦେବୀ ଭଗବାନଙ୍କ ଚରଣ କମଳକୁ ଏଭଳି ଜାବୁଡ଼ି ଧରିଥାନ୍ତି ଯେ ସେ ତୁଳସୀ ଦିବ୍ୟଗନ୍ଧରେ ଆକର୍ଷିତ ହୋଇ ଭ୍ରମରମାନେ ଠାକୁରଙ୍କୀଙ୍କ ପୂଜନ ବେଳେ ବ୍ୟତିବ୍ୟସ୍ତ କରୁଥିଲେ ମଧ ଭଗବାନ ତୁଳସୀଙ୍କ ପ୍ରେମରେ ନିମଗ୍ନ ରହି ସେ

ସବୁକୁ ହସି ହସି ସହିଯିବାକୁ ପସନ୍ଦ କରିଥାନ୍ତି । ଏହା କ'ଣ ତୁଳସୀଦେବୀଙ୍କର ସାଧାରଣ ସୌଭାଗ୍ୟ କି ।

ପ୍ରଶ୍ନ-୭୫: ତୁଳସୀ ଦେବୀ ଜାତିରେ ନାରୀ ହୋଇ ଯଦି ଗୋପୀଙ୍କ ପ୍ରଶ୍ନର ଉତ୍ତର ଦେଲେ ନାହିଁ ତେବେ ଗୋପାଙ୍ଗନାମାନେ ଅନ୍ୟ ନାରୀ (ଲତା) ମାନଙ୍କୁ କାହିଁକି କୃଷ୍ଣଙ୍କ ସନ୍ଦେଶ ପଚାରିଲେ ନାହିଁ ?

**ମାଲତି-ଅଦର୍ଶି ବଃ କଚ୍ଚିତ୍ ମଲ୍ଲିକେ ଜାତି ଯୁଥିକେ ।**
**ପ୍ରୀତିଂ ବୋ ଜନୟନ୍ ଯାତଃ କର ସ୍ପର୍ଶେନ ମାଧବଃ ॥୮॥**

ଉ. ସେମାନେ ସେକଥା ମଧ୍ୟ କରିଛନ୍ତି । ମାଳତୀ, ମଲ୍ଲୀ, ଜାଈ, ଯୁଈ ଆଦି ସମସ୍ତଙ୍କୁ ପଚାରିଛନ୍ତି । ସେମାନଙ୍କ ପ୍ରଶ୍ନରେ ମଧ୍ୟ ଭରି ରହିଛି କୃଷ୍ଣ ପ୍ରେମର ମଧୁରତା, ମାଦକତାର ନିଶା । ସେମାନେ କହୁଛନ୍ତି, "ହେ, ମାଳତୀ, ହେ ମଲ୍ଲୀ, ଜାଈ, ଯୂଈ, ତୁମେମାନେ ଅବଶ୍ୟ ତାଙ୍କୁ ଏ ବାଟରେ ଆସିବା ଦେଖିଅଛ । ତାଙ୍କର ସ୍ପର୍ଶ ମଧ୍ୟ ପାଇଛ । କାରଣ ତାଙ୍କର ଦିବ୍ୟ ସ୍ପର୍ଶ ପ୍ରାପ୍ତ ହୋଇ (କର ସ୍ପର୍ଶେନ ମାଧବଃ) ତୁମେମାନେ କୃଷ୍ଣ ଆଲିଙ୍ଗନ ଲବ୍‌ଧ ପ୍ରେମକୁ ଲୁଚେଇ ପାରୁନାହଁ । ପ୍ରକାଶ କରୁଛ (ପ୍ରୀତିଂ ଜନୟନ୍) ତୁମ ସ୍ୱାମୀ ରୂପୀ ବୃକ୍ଷମାନଙ୍କ ଦେହରେ ଲଟେଇ ହୋଇ ଜାବୁଡ଼ି ଧରିଛ ସେମାନଙ୍କୁ ।" ସ୍ୱଭାବତଃ ବୃକ୍ଷ ଜୀବନ ପରୋପକାରୀ । ତଥାପି ଆମ୍ବ, ପଣସ, ଶାଳ, ଅଶନ, ଜାମୁ ବୃକ୍ଷ ଆଦି ଅତ୍ୟନ୍ତ ପରୋପକାରୀ । ସେମାନେ ଜୀବ ଜଗତକୁ ଆଶ୍ରୟ ନିମିତ୍ତ ଛାୟା, ଖାଇବା ନିମିତ୍ତ ଫଳ, ବାସଗୃହ ନିର୍ମାଣ ନିମିତ୍ତ ନିଜ ଦେହ ଦାନ କରି ନିଜ ନିଜ ଜୀବନ, ଜନ୍ମ, ମରଣକୁ ଧନ୍ୟ କରିଥାନ୍ତି । ଯମୁନା କୂଳରେ ଏସବୁ ବୃକ୍ଷମାନଙ୍କୁ ଗୋପୀମାନେ ଦେଖି ନିଜର ଦୁଃଖ ନିବେଦନ କରି କହିଛନ୍ତି, "ହେ, ପ୍ରିୟ ଚୂତ (ଲୋଟଣି ଆମ୍ବ), ଶାଳ, ପଣସ, ଅଶନ, କୋବିଦାର, ଜାମ୍ବୁ, ଅରଖ, ବେଲ, ବକୁଳ, ଆମ୍ର (ଆମ୍ବ), ବଡ଼ କଦମ୍ବ, କ୍ଷୁଦ୍ର କଦମ୍ବ (ନୀପାଃ) ଆମେମାନେ ପ୍ରିୟତମ କୃଷ୍ଣଙ୍କୁ ହରାଇ ସର୍ବହରା ହୋଇଛୁ । ତୁମେମାନେ ମହାପରୋପକାରୀ । ପର ଦୁଃଖ ଦେଖି ତୁମ ହୃଦୟ ତରଳିଯାଏ । ତୁମକୁ ମୂଳରୁ କୁରାଢ଼ିରେ କାଟୁଥିବା ଘାତକକୁ ତୁମେ ଛାୟା ଦିଅ । ତୁମ୍ଭକୁ ଟେକା ପଥର ଫିଙ୍ଗିଲେ ତୁମେ ଫଳ ଦେଇଥାଅ । ଆମକୁ କୃଷ୍ଣଙ୍କ ଠିକଣା ବତାଇ ଅନୁଗୃହୀତ କର ।"

ଗୋପୀମାନେ ମନେ କଲେ ବୃକ୍ଷମାନେ କୃଷ୍ଣ ଦର୍ଶନରେ ନିଶ୍ଚୟ ସମାଧିସ୍ଥ ହୋଇଯାଇଛନ୍ତି । ତେଣୁ ଉତ୍ତର ଦେବାରେ ସେମାନେ ଅସମର୍ଥ କିମ୍ବା ଏହି ବୃକ୍ଷମାନଙ୍କ

ପାଖ ଦେଇ ଗୋବିନ୍ଦ ଯାଇ ନଥିବେ । ସେମାନେ ଠିକ କଲେ ଏପରି ଏକ କୃଷ୍ଣ ପ୍ରେୟସୀଙ୍କୁ ଠିକଣା ପଚାରିବା ଯେ ନିଶ୍ଚୟ ତାଙ୍କ ଦର୍ଶନ ସ୍ପର୍ଶ ପ୍ରାପ୍ତ ହୋଇଥିବେ । ସଙ୍ଗେ ସଙ୍ଗେ ସେମାନଙ୍କ ଆଖିରେ ପଡ଼ିଲେ ବସୁମାତା ପୃଥିବୀଦେବୀ । ସେମାନେ ଲକ୍ଷ୍ୟ କଲେ ଧରଣୀ ରାଣୀ ନୂତନ ସବୁଜ ରଙ୍ଗର ତୃଣ, ଘାସ, ଦୁବ ଧାରଣ କରିଛନ୍ତି । ଭଗବତ ଦର୍ଶନରେ ଭକ୍ତ ପୁଲକିତ ରୋମାଞ୍ଚିତ ହୁଏ । ଏବେ ପୃଥିବୀ ପୃଷ୍ଠରେ ଏହି ସବୁଜ ତୃଣର ଗାଲିଚା ନିଶ୍ଚୟ ବସୁମାତାଙ୍କର ରୋମାଞ୍ଚର ସଂକେତ । ଏ ଦିବ୍ୟ ପ୍ରେମର ଅଙ୍କୁର ବିଷୟରେ ଗୋପଲଳନାମାନେ ପୃଥିବୀ ମାତାଙ୍କର ରୋମାଞ୍ଚର ତିନି ମୁଖ୍ୟ କାରଣ ବତାଇଲେ । କହିଲେ, ''ହେ, ସୌଭାଗ୍ୟବତୀ କ୍ଷିତି ଦେବୀ, ତୁମେ ନିଶ୍ଚୟ ପୂର୍ବରୁ କୌଣସି କଠିନ ତପସ୍ୟା କରିଥିଲ । ସେଇ ତପସ୍ୟାର ଫଳ ଆଜି ଫଳିଛି । ତୁମେ ଶ୍ରୀକୃଷ୍ଣଙ୍କ ଚରଣକମଳ ସ୍ପର୍ଶ ପ୍ରାପ୍ତ ହୋଇ ଦିବ୍ୟ ପ୍ରେମରେ ପୁଲକିତ ହୋଇ ଏଭଳି ଶୋଭାୟମାନ ହୋଇଛ କିମ୍ବା ଠାକୁରଜୀଙ୍କ ପୂର୍ବ ବାମନାବତାର କାଳରେ (ଉରୁକ୍ରମ ବିକ୍ରମାତ୍) ତୁମକୁ ତାଙ୍କ ସାନ ସାନ ପାଦରେ ମାପିଥିବା କଥା ସ୍ମରଣ କରିଛ । ଅନ୍ୟ ଏକ ସମ୍ଭାବନା ମଧ ଅମୂଳକ ନୁହେଁ । କଳ୍ପ ଆରମ୍ଭ ବେଳେ ଶ୍ରୀକୃଷ୍ଣଙ୍କ ବରାହ ଅବତାର ବେଳେ (ବରାହ ବପୁଷଃ) ସେ ତୁମକୁ ତାଙ୍କ ଦନ୍ତାଗ୍ରରେ ଧାରଣ କରି ତାଙ୍କ ଦିବ୍ୟ ସ୍ପର୍ଶ-ଆଲିଙ୍ଗନ-ଦର୍ଶନ-ଈକ୍ଷଣ ଆଦି ପ୍ରଦାନ କରିଥିଲେ । ସେହି ଦିବ୍ୟ ପ୍ରେମ ସ୍ମରଣ କରି ଏଭଳି ଲକ୍ଷଣଯୁକ୍ତ ହୋଇଛ କି ?''

ପ୍ରଶ୍ନ-୭୬: କୃଷ୍ଣ ଅନୁରାଗିଣୀ ବ୍ରଜ ଗୋପୀକାମାନେ ବଣରେ ବୁଲି କୃଷ୍ଣଙ୍କୁ ଖୋଜିବା ବେଳେ ଦେଖିଛନ୍ତି ଚଳଚଞ୍ଚଳ ନୟନା ବଣ ହରିଣୀଟିଏ । ତାର ଢ଼ଳ ଢ଼ଳ ନେତ୍ର ଦୁଇଟି ପ୍ରେମ ରସରେ ଢୁଲୁବୁଲୁ । ଗୋପୀମାନେ ଭାବିଲେ ଏ ହରିଣୀ ନିଶ୍ଚୟ ଭେଟିଥିବ ରସିକ ମୁକୁଟମଣି ଶ୍ୟାମସୁନ୍ଦରଙ୍କୁ । ନଚେତ ଏହାର ନୟନ-ମନ-ହୃଦୟରେ ପ୍ରେମ କମଳ ଖେଳନ୍ତା କେମିତି ? ଏହି ସମୟରେ ହଠାତ୍ ତାଙ୍କ ଦୃଷ୍ଟି ପଥାରୂଢ଼ ହୋଇଛି କୁନ୍ଦଫୁଲ(ଚମେଲି ଫୁଲ) ମାଳାଟିଏ । ଫୁଲମାଳାରୁ ବାହାରୁଥିବା ଦିବ୍ୟ ସୁଗନ୍ଧ ବିଷୟରେ ପରସ୍ପର ମଧ୍ୟରେ କୃଷ୍ଣ କୈନ୍ଦ୍ରିକ ଆଲୋଚନା କଲେ ।

କେହି ଜଣେ ଗୋପୀ କହୁଛନ୍ତି, 'ହେ ସଖି, ଦେଖ ଏହି ସଜ କୁନ୍ଦଫୁଲର ମାଳା ଯାହାକୁ ଗୋପୀନାଥ (କୁଳପତେଃ) ବକ୍ଷରେ ପ୍ରେମରେ ଧାରଣ କରିଥାନ୍ତି । ସେଥିରେ ଯେଉଁ କୁଙ୍କୁମର ବାସ ଓ ରଙ୍ଗର ସୂଚନା ମିଳୁଛି ତାହା ତାଙ୍କର କୌଣସି ପ୍ରେୟସୀର(କାନ୍ତା-ଅଙ୍ଗ ସଙ୍ଗ) ବକ୍ଷ ଲେପିତ ଅଙ୍ଗରାଗ । ଦୁହେଁ ପ୍ରେମରେ ପରସ୍ପରକୁ ଆଲିଙ୍ଗନ କରିବାବେଳେ ଏଇଟି ପ୍ରେମାଧିକ୍ୟ ହେତୁ ଖସି ପଡ଼ିଛି । ଅତଏବ ନନ୍ଦ

ନନ୍ଦନ ନିଶ୍ଚୟ ଏହି ପାଖ ଆଖରେ କେଉଁଠି ଥିବେ । କାହାର ବାହୁ ବନ୍ଧନରେ ଆବଦ୍ଧ ହୋଇ ଲତା କୁଞ୍ଜରେ ଲୁଚି ଯାଇଥିବେ । ହେଇ ଦେଖତ, ପବନ ଦେବତା କେଡ଼େ ଭାଗ୍ୟବାନ । ସେ ସେହି ପ୍ରିୟା ପ୍ରିୟତମଙ୍କ ମିଳନ ଜନିତ ସୁଗନ୍ଧକୁ ନିଜେ ଗ୍ରହଣ କରି ଆମକୁ ଦେବାକୁ ଧାଇଁ ଆସିଛନ୍ତି ।'

ସେ ଦୁଇ ସଖୀଙ୍କ କଥୋପକଥନର ପ୍ରେମ ସନ୍ଦେଶରେ ମୁଗ୍ଧ ହୋଇ ଆଉ ଜଣେ ଗୋପୀ ଆହୁରି ପାଦେ ଆଗେଇ ଯାଇଛନ୍ତି । ସେ କହୁଛନ୍ତି, ''ବିଲକୁଲ ସତ କଥା ସଖି । ସେ (ରାମ-ଅନୁଜ) ପ୍ରିୟା କାନ୍ଧରେ(ଅଂସେ) ଗୋଟିଏ ବାହୁ ରଖି ଆର ହସ୍ତରେ ନିଶ୍ଚୟ ଲୀଳା କମଳଟିଏ ଧରିଥିବେ ।'' ଲୀଳାମୟ ପ୍ରଭୁଙ୍କ କମଳ ହସ୍ତରେ ଲୀଳା କମଳଥିବା କଥା ଭାବନା କରି ଦିବ୍ୟ କୃଷ୍ଣପ୍ରେମମଗ୍ନା ଆଉ ଜଣେ ଗୋପୀ କହୁଛନ୍ତି, ''କୃଷ୍ଣ ବକ୍ଷରେ ସଦା ଶୋଭାପାଏ ନବତୁଳସିକା ମାଳା । ମଧୁପଲୋଭୀ ଭ୍ରମରମାନେ ନିଶ୍ଚୟ ତାଙ୍କ ଅନୁଗମନ କରି ସେ ଦୁହିଁଙ୍କ ମଧୁର ମିଳନରେ ବାଧକ ହୋଇଥିବେ । ସେମାନଙ୍କୁ ଘଉଡ଼ାଇବାକୁ ଶ୍ୟାମସୁନ୍ଦର ନିଶ୍ଚୟ ସେଇ ଲୀଳା କମଳଟିର ଆଶ୍ରୟ ନେଇଥିବେ ।'' ସଖୀ ଜଣକ ସୁନ୍ଦର ସାକ୍ଷ୍ୟ ପ୍ରମାଣର ବନ୍ଦୋବସ୍ତ କରିଛନ୍ତି । କହୁଛନ୍ତି, ''ଦେଖ ସଖି, ଏହି ବଣର ବୃକ୍ଷମାନେ କିପରି ସଳଖ ଭାବରେ ନରହି ଶାଖା ଡ଼ାଳ ମାନଙ୍କୁ ନୁଆଁଇ ଦେଇଛନ୍ତି ସେହି ଦିବ୍ୟ ପ୍ରେମ ବିତରଣକାରୀ ଗୋବିନ୍ଦଙ୍କୁ ବିନମ୍ର ପ୍ରଣାମ ଜଣାଇବା ମୁଦ୍ରାରେ ।'' ସାଥେ ସାଥେ ସେ ସଖି ପ୍ରଶ୍ନ କରି ବସିଛନ୍ତି ସେ ନିକଟସ୍ଥ ବୃକ୍ଷ ମାନଙ୍କୁ-ପ୍ରେମରସ ରସିକ ଶେଖର ଗୋପୀଜନ ବଲ୍ଲଭ ସେମାନଙ୍କର ଅଭିନନ୍ଦନକୁ ସପ୍ରେମ ସ୍ୱୀକାର କରିଛନ୍ତି (ପ୍ରଣୟ-ଅବଲୋକୈଃ) କି ନାହିଁ ।

ସାହିତ୍ୟ ରାଜ୍ୟରେ ପୁରୁଷଙ୍କୁ ବୃକ୍ଷ ଓ ନାରୀଙ୍କୁ ଲତା ଭାବରେ ଗ୍ରହଣ କରାଯାଇଥାଏ । ବୃନ୍ଦାବନରେ ବୃକ୍ଷମାନଙ୍କ ଆଶ୍ରୟରେ ଅନେକ ଲତାମାନ ଦୃଶ୍ୟ ହୁଅନ୍ତି । ଗୋପଲଳନାମାନେ ସ୍ୱଜାତୀୟ ଲତାମାନଙ୍କୁ ହଜିଥିବା କୃଷ୍ଣଙ୍କ ଖବର ପଚାରିବା ଉଚିତ ହୋଇ ନଥାନ୍ତା କି ?

**ପୃଚ୍ଛେତ-ଇମା ଲତା ବାହୂନ୍ ଅପି-ଆଶ୍ଳିଷ୍ଟା ବନସ୍ପତେଃ ।**
**ନୂନଂ ତତ୍ କରଜ ସ୍ପୃଷ୍ଟା ବିଭ୍ରତି-ଉତ୍ପୁଲକାନି-ଅହୋ ॥୧୩॥**

ଉ. ଗୋପାଙ୍ଗନାମାନେ ସେଥିରେ ଆଦୌ ଅବହେଳା କରି ନାହାନ୍ତି । ସେମାନେ ସ୍ପଷ୍ଟ ଲକ୍ଷ୍ୟ କରିଛନ୍ତି ବୃନ୍ଦାବନର ଲତାମାନଙ୍କର ଦେହରେ ଦିବ୍ୟ ପ୍ରେମରେ ଉଚ୍ଛୁଳା ତରଙ୍ଗ । ସାଧାରଣତଃ ଲତାମାନେ ସେମାନଙ୍କ ପତି ବୃକ୍ଷମାନଙ୍କର ଅଙ୍ଗସଙ୍ଗ ଲାଭ କରି ତାଙ୍କ ଦେହରେ (ଆଶ୍ଳିଷ୍ଟା ବନସ୍ପତେଃ) ଲଟେଇ ଥାଆନ୍ତି । ସେ ସବୁ

କେବଳ ସେମାନଙ୍କ ଦେହ ସହିତ ଦେହର ମିଳନର ଫଳ କିନ୍ତୁ ଏବେ ଲତାମାନେ ନିଜ ନିଜ ଦେହରେ ରୋମାଞ୍ଚର ଲକ୍ଷଣ ପ୍ରକାଶ କରିବା ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା(ଅହୋ) । ନିଶ୍ଚିତ ରୂପେ (ନୂନଂ) ଏହି ଲତାମାନେ ରସିକ ପୁରୁଷ ବ୍ରଜେନ୍ଦ୍ର ନନ୍ଦନଙ୍କ ଦିବ୍ୟ କରକମଳରେ ଦିବ୍ୟ ସ୍ପର୍ଶ ପାଇ ଧନ୍ୟା ହୋଇଛନ୍ତି । ନଚେତ ଏତେ ଗଭୀର ପ୍ରେମରେ ସେମାନେ ଆବିଷ୍ଟ ହେବା ସର୍ବାଦୌ ଅସମ୍ଭବ ବ୍ୟାପାର ।

ଗୋପୀମାନେ ଭାବିଲେ ଏହା ସେମାନଙ୍କ ପାଇଁ ଏକ ମହାନ୍ ଶିକ୍ଷଣୀୟ କୃଷ୍ଣ ପ୍ରେମର ସନ୍ଦେଶ । ସତେ ଯେପରି ସେ ଲତାଗଣ କହୁଛନ୍ତି, ''ହେ ଜୀବଗଣ, ଧନ, ଦାରା, ସୁତ ଆଦି ପଛରେ ଦୌଡ଼ି ଅନେକ ସୁଖ ପାଇପାର କିନ୍ତୁ ହରାଇ ବସିବ କୃଷ୍ଣପ୍ରାପ୍ତି ଜନିତ ଶାନ୍ତି ଓ ଆନନ୍ଦ । କୃଷ୍ଣ ପ୍ରେମମୟ ଓ କୃପାମୟ ମଧ୍ୟ । ସୁତରାଂ ଜୀବନର ସର୍ବୋଚ୍ଚ ଆନନ୍ଦ ରାସଲୀଳା ବୁଝିବାକୁ ଚେଷ୍ଟାକର । ଅନ୍ତିମ ଶ୍ୱାସଯାଏ କୃଷ୍ଣ ନାମ-ରୂପ-ଲୀଳା-ଗୁଣ-ଧାମ-ସନ୍ଥ ସ୍ମରଣ କରୁଥାଅ । ଭଗବତ୍ ଦର୍ଶନ ପରେ ମଧ୍ୟ ସେ ସ୍ମରଣ ଆଦୌ ଛାଡ଼ ନାହିଁ । ମାୟା ଆକ୍ରମଣ କରି ବସିବ । ମଣିଷ ମନକୁ କି ବିଶ୍ୱାସ ଭାଇ ? ପରାଶର, ବିଶ୍ୱାମିତ୍ର, ବ୍ରହ୍ମା, ଶଙ୍କର ଆଦିଙ୍କୁ ଦଗା ଦେବା ବାଲା ଜନ୍ତୁ ଏଇ ମନ । ଅତଏବ ହେ ସାଧୁ, ସାବଧାନ ।''

ପ୍ରଶ୍ନ-୭୭: ଗୋପୀମାନେ ଏବେ ସଂପୂର୍ଣ୍ଣ କୃଷ୍ଣ ପ୍ରେମ ପାଗଳିନୀ । କିଂକର୍ତ୍ତବ୍ୟ ବିମୂଢ଼ ଅବସ୍ଥା ସେମାନଙ୍କର । ସେମାନେ ବାସ୍ତବରେ କୃଷ୍ଣ ବିଯୋଗିନୀ ନୁହନ୍ତି । ବହିରଙ୍ଗରେ ସେମାନେ କୃଷ୍ଣ ବିଯୋଗିନୀ କିନ୍ତୁ କୃଷ୍ଣ ଲୀଳା ଚିନ୍ତନରେ ସେମାନେ ଅନ୍ତରଙ୍ଗରେ କୃଷ୍ଣପ୍ରେମ ଉନ୍ମାଦିନୀ । ମନ ଜୀବର ଦଶ ଇନ୍ଦ୍ରିୟଙ୍କୁ ନିୟନ୍ତ୍ରଣ କରିଥାଏ । ଗୋପୀମାନଙ୍କର ମନ କୃଷ୍ଣ ପ୍ରେମରେ ଗୋଟାସୁଦ୍ଧା ମଗ୍ନ ଥିବାବେଳେ ସେମାନଙ୍କର ଇନ୍ଦ୍ରିୟମାନେ କିପରି କୃଷ୍ଣ ପ୍ରେମରୁ ବଞ୍ଚିତ ହେଲେ ?

**ଇତି-ଉନ୍ମତ୍ତ ବଚୋ ଗୋପ୍ୟଃ କୃଷ୍ଣ-ଅନ୍ୱେଷଣ କାତରାଃ ।**
**ଲୀଳା ଭଗବତଃ-ତାଃ-ତାଃ ହି-ଅନୁଚକ୍ରୁଃ ତତ୍-ଆତ୍ମିକା ॥୧୪॥**

ଉ. ଏ କ୍ଷେତ୍ରରେ ଗୋପୀମାନଙ୍କର ଇନ୍ଦ୍ରିୟମାନେ ଆଉ ସ୍ୱବଶରେ ରହିପାରିନାହାନ୍ତି । କୃଷ୍ଣଗତ ପ୍ରାଣା ଗୋପୀମାନଙ୍କର ଇନ୍ଦ୍ରିୟ ନିୟନ୍ତ୍ରଣ ଡ଼ୋରି ସ୍ୱୟଂ ଶ୍ୟାମସୁନ୍ଦର ଧରି ନେଇଛନ୍ତି । ଗୋପୀମାନେ ଭାବ ସମାଧିରେ ସଂପୂର୍ଣ୍ଣ ଆବିଷ୍ଟ ହୋଇଯାଇଛନ୍ତି । ସେମାନଙ୍କ ସମାଧି ଜ୍ଞାନୀ, ଯୋଗୀମାନଙ୍କର ଜଡ଼ ସମାଧିଠାରୁ ସଂପୂର୍ଣ୍ଣ ଭିନ୍ନ ପୁଣି ଅନେକ ଉଚ୍ଚରେ । ଭାବ ସମାଧିସ୍ଥ ଅବସ୍ଥାରେ ସେମାନେ ଭଗବାନ କୃଷ୍ଣଙ୍କର ଚିନ୍ମୟ ଲୀଳାରେ ନିଜକୁ ହଜାଇ ବସିଛନ୍ତି ।

ପ୍ରଶ୍ନ-୭୮ : କୃଷ୍ଣାବତାର କାଳରେ ଭଗବାନ ପୂତନା ଉଦ୍ଧାର ଓ ଶକଟାସୁର ଉଦ୍ଧାର ଲୀଳା କରି ଦିବ୍ୟ ଲୀଳାର ଶୁଭାରମ୍ଭ କରିଥିଲେ । ଗୋପୀମାନେ ମନେ ମନେ ଏ ବାଳ ଲୀଳା ଚିନ୍ତନ କରିବାରେ କ'ଣ ଆଗ୍ରହୀ ହେଲେ କି ?

**କସ୍ୟାଃଚିତ୍ ପୂତନାୟନ୍ତ୍ୟାଃ କୃଷ୍ଣାୟନ୍ତୀ-ଅପିବତ୍ ସ୍ତନମ୍ ।**
**ତୋକାୟିତ୍ୱା ରୁଦତି-ଅନ୍ୟା ପଦ-ଆହନ୍ ଶକଟାୟତୀମ୍ ।।୧୫।।**

ଉ. ଗୋପୀମାନେ ମଧ୍ୟ ସେହି ଲୀଳାରୁ ଅଭିନୟର ଅୟମାରମ୍ଭ କରିଛନ୍ତି । ଜଣେ ଗୋପୀ ପୂତନା ହୋଇଗଲେ । ଆଉ ଜଣେ ଗୋପୀ ଶିଶୁ କୃଷ୍ଣ ହୋଇ ପ୍ରଥମ ଗୋପୀର ସ୍ତନ୍ୟପାନ କରୁ କରୁ ପ୍ରାଣ ହରଣ କରିବା ଲୀଳା କଲେ ।

ଅନ୍ୟ ଲୀଳାରେ ଜଣେ ଗୋପୀ ଶକଟାସୁର ହେଲେ । ଆଉ ଜଣେ ଗୋପୀ ଶିଶୁ କୃଷ୍ଣ ହୋଇ (ତୋକୟିତ୍ୱା)କ୍ରନ୍ଦନ କରି କରି ଶୋଇପଡ଼ି ଶକଟାସୁରକୁ ପଦ ପ୍ରହାର କଲେ(ପଦ-ଆହନ୍) ।

ପ୍ରଶ୍ନ-୭୯ : ପରବର୍ତ୍ତୀ ପ୍ରସଙ୍ଗରେ ତୃଣାବର୍ତ୍ତ ଉଦ୍ଧାର ଓ ଗୁରୁଣ୍ଡି ଗୋପାଳ ଲୀଳା କେମିତି ଅଭିନୀତ ହେଲେ ସେ ଯମୁନା କୂଳରେ ?

**ଦୈତ୍ୟାୟିତ୍ୱା ଜହାର-ଅନ୍ୟାଂ ଏକା କୃଷ୍ଣ-ଅର୍ଭ ଭାବନାମ୍ ।**
**ରିଙ୍ଗୟାମାସ କା-ଅପି-ଅଙ୍‌ଘ୍ରୀ କର୍ଷନ୍ତୀ ଘୋଷ ନିଃସ୍ୱନୈଃ ।।୧୬।।**

ଉ. ଜଣେ ଗୋପୀ ବାଳକ(ଅର୍ଭ) କୃଷ୍ଣ ହୋଇ ବସିପଡ଼ନ୍ତେ ଆଉ ଜଣେ ତୃଣାବର୍ତ୍ତ ଅସୁର ହୋଇ ତାଙ୍କୁ ଶୂନ୍ୟେ ଶୂନ୍ୟେ ଟେକି ନେଲେ(ଜହାର ଅନ୍ୟାଂ) । ଜଣେ ଗୋପୀ ଆଣ୍ଠେଇ ପଡ଼ି ଯମୁନା ବାଲିରେ ପାଦ ଘୋଷାରି ଗୁରୁଣ୍ଡନ୍ତେ ଅନ୍ୟ ଗୋପୀମାନେ ତାଙ୍କ ପାଦ ପାଉଞ୍ଜିର ଶବ୍ଦକୁ ନିଜ ନିଜ ମୁଖରେ ସୃଷ୍ଟି କରି ଦିବ୍ୟାନନ୍ଦରେ ମଜ୍ଜିଗଲେ ।

ପ୍ରଶ୍ନ-୮୦ : ପୌଗଣ୍ଡ ଲୀଳାରେ ବତ୍ସାସୁର ବକାସୁର ଉଦ୍ଧାର ଲୀଳା ଅତ୍ୟନ୍ତ ମନୋମୁଗ୍ଧକର । ଗୋପୀମାନେ ଏ ଲୀଳା ନକରି ଛାଡ଼ି ନଥିବେ ନିଶ୍ଚୟ ?

**କୃଷ୍ଣ ରାମାୟିତେ ଦ୍ୱେ ତୁ ଗୋପାୟନ୍ତ୍ୟଃ ଚ କାଶ୍ଚନ ।**
**ବତ୍ସାୟତୀଂ ହନ୍ତି ଚ-ଅନ୍ୟା ତତ୍ର-ଏକା ତୁ ବକାୟତୀମ୍ ।।୧୭।।**

ଉ. ଦୁଇଜଣ ଗୋପୀ କୃଷ୍ଣ ବଳରାମ ହୁଅନ୍ତେ ଅନ୍ୟଗୋପୀକାମାନେ ଗୋପାଳବାଳକ ଓ ବତ୍ସାସୁର, ବକାସୁର ଅଭିନୟ କରିବାରେ ଲାଗିଲେ । ଗୋଟିକପରେ

ଆଉ ଗୋଟିଏ ଲୀଳା ଅଭିନୟ ରସ ମାଧୁର୍ଯ୍ୟକୁ ଉତ୍ତରୋତ୍ତର ବୃଦ୍ଧି କରୁଥାନ୍ତି । ହସ, ଖୁସି, ତାଳି ମାଡ଼ରେ ଯମୁନା ପୁଳିନରେ ଦିବ୍ୟ ଲୀଳା ରସର ବନ୍ୟା ହୋଇଗଲା ।

ପ୍ରଶ୍ନ-୮୧ : ଅଭିନୟ ବେଳେ ଗୋଚାରଣ ଓ ବଂଶୀ ବାଦନ ଲୀଳା କରିବାକୁ ଯାଇ ଗୋପୀମାନେ ସବୁ କ'ଣ କ'ଣ କଲେ ?

**ଅଭୂୟ ଦୂରଗା ଯଦ୍‌ବତ୍ କୃଷ୍ଣଃ ତଂ ଅନୁକୁର୍ବତୀମ୍ ।**
**ବେଣୁଂ କ୍ୱଣନ୍ତୀଂ କ୍ରୀଡ଼ନ୍ତୀଂ ଅନ୍ୟାଃ ଶଂସନ୍ତି ସାଧୁ-ଇତି ॥୧୮॥**

ଉ. କେତେଜଣ ଗୋପୀ ଗାଈ ହୋଇଗଲେ । ଦୁଇ ପାଦ ଏବଂ ଦୁଇ ହସ୍ତରେ ଆଣ୍ଠେଇ ଚାଲିଲେ । ଜଣେ ଗୋପୀ କୃଷ୍ଣ ଭୂମିକାରେ ସେମାନଙ୍କୁ କାଳୀ, ଧବଳୀ, ଶ୍ୟାମଳୀ ବୋଲି ଗାଈମାନଙ୍କ ନାମ ଧରି ଡ଼ାକ ଛାଡ଼ିଲେ । ସତେ ଯେମିତି ସେ ଗାଈମାନେ କୃଷ୍ଣଙ୍କୁ ଭୁଲି ବନର ସବୁଜ ଚାରା (ବିଷୟ) ଲୋଭରେ ଦୂରକୁ ପଳାଇଯାଇଛନ୍ତି । ସେମାନଙ୍କୁ ପାଖକୁ ଡ଼ାକି କୃଷ୍ଣ ସାନ୍ନିଧ ରସ ପାନ କରାଇବା କୃଷ୍ଣଙ୍କ ଦାୟିତ୍ୱ ନିଶ୍ଚୟ । ସୁତରାଂ କୃଷ୍ଣ ହୋଇ ଜଣେ ଗୋପୀ ଦିବ୍ୟ ମୁରଲୀ ବଜାଇ(ବେଣୁଂ କ୍ୱଣନ୍ତୀଂ) ସେମାନଙ୍କ ମନ ବୁଦ୍ଧିକୁ ମୋହିତ କରୁଥିବାବେଳେ ଅନ୍ୟ ଗୋପାଙ୍ଗନାମାନେ ଉଚ୍ଚସ୍ୱରରେ ସାଧୁ, ସାଧୁ, ବଢ଼ିଆ, ବଢ଼ିଆ କହି ତାଳି ମାରି ନାଚି ଉଠୁଥିଲେ ।

ପ୍ରଶ୍ନ-୮୨ : ମଧୁରାଧିପତି ଶ୍ୟାମସୁନ୍ଦରଙ୍କର ବଚନ, ନୟନ, ଅଶନ, ବମନ ଗମନ ସବୁ ସୁନ୍ଦର । ଜଣେ କେହି ଗୋପୀ ନିଶ୍ଚୟ ତାଙ୍କ ଠାଣି, ମାଣି ଓ ଗତି ବିଳାସର ଅଭିନୟ କରିଥିଲେ କି ?

**କସ୍ୟାଞ୍ଚିତ୍ ସ୍ୱଭୁଜଂ ନ୍ୟସ୍ୟ ଚଲନ୍ତୀ-ଆହ-ଅପରା ନନୁ ।**
**କୃଷ୍ଣୋଽହଂ ପଶ୍ୟତ ଗତିଂ ଲଳିତଂ ଇତି ତତ୍‌ମନାଃ ॥୧୯॥**

ଉ. କୃଷ୍ଣଙ୍କ ଗମନ ଭଙ୍ଗୀ ଅତୀବ ମନୋହର । ଜଣେ ଗୋପୀ ଆଉ ଜଣେ ଗୋପୀଙ୍କ କାନ୍ଧରେ ଭାରା ରଖି କୃଷ୍ଣ ମନା(ତତ୍‌ମନା) ହୋଇ ଢ଼ଳି ଢ଼ଳି ଚାଲିବାର ଉପକ୍ରମ କଲେ । କହିଲେ, "ଦେଖ ଗୋ ସଖି, ମୁଁ ସ୍ୱୟଂ କୃଷ୍ଣ ଅଟେ । ମୋ ସୁନ୍ଦର ଚାଲିକୁ ଲକ୍ଷ୍ୟ କର ତ ।"

ପ୍ରଶ୍ନ-୮୩: ପବିତ୍ର କୃଷ୍ଣ ଲୀଳାରେ ଗୋବର୍ଦ୍ଧନ ଲୀଳା ଏକ ସ୍ୱତନ୍ତ୍ର ସ୍ଥାନ ଦାବି କରନ୍ତି । କାରଣ ଏହା ଏକ ସାର୍ବଜନୀନ ରାସ ଲୀଳା । ଏ ଲୀଳାରେ ସମସ୍ତ ଗୋପୀ, ଗୋପାଳ, ଗାଈ, ବାଛୁରୀ, ନଦୀ, ପର୍ବତ, ଦେବୀ, ଦେବତା ସମସ୍ତେ

ପରମାନନ୍ଦରେ ମଗ୍ନ ହୋଇଯାଇଥିଲେ । ଗୋପାଳଙ୍କୁ ଗୋବିନ୍ଦ ପଦବୀରେ ସ୍ୱୟଂ ଦେବରାଜ ଇନ୍ଦ୍ର ଅଭିଷେକ କରିଥିଲେ । ଗୋପୀମାନେ ଏ ଲୀଳା ଅଭିନୟ କରିବାକୁ ଭୁଲିଗଲେ କେମିତି ?

**ମା ଭୈଷ୍ଟ ବାତ ବର୍ଷାଭ୍ୟାଂ ତତ୍‌ତ୍ରାଣଂ ବିହିତଂ ମୟା ।**
**ଇତି-ଉକ୍ତ୍ୱା-ଏକେନ ହସ୍ତେନ ଯତନ୍ତୀ-ଉନ୍ନିଦଧେ ଽମ୍ବରମ୍ ॥୨୦॥**

ଉ. ଭୁଲିଲେ କେତେବେଳେ ? ସହସ୍ର ସହସ୍ର ଗୋପୀ ଏକମେଳ ହୋଇ ଏ ଲୀଳାଟି ଅଭିନୟ ବେଳେ ମାତ୍ କରିଦେଲେ । ଜଣେ ଗୋପୀ ଅତ୍ୟନ୍ତ ପ୍ରେମ ବିଭୋର ହୋଇ ବସନ ଖଣ୍ଡିଏ (ଅମ୍ବରଂ) ଗୋଲାକାର କରି ଗୁଡ଼ାଇ ଏକ ହସ୍ତରେ ଟେକି ଧରି(ଉନ୍ନିଦଧେ) କହିଲେ, "ହେ ଗୋପୀ, ଗୋପାଳଗଣ, ତୁମେ ଦେବରାଜ ଇନ୍ଦ୍ରଙ୍କୁ ଆଦୌ ଡ଼ର ନାହିଁ(ମା ଭୈଷ୍ଟ) । ତୁମକୁ ଉଦ୍ଧାର କରିବା ଉପାୟ ମୋତେ ଜଣା(ତ୍ରାଣଂ ବିହିତଂ ମୟା) । ଆସ, ଆସ, ସମସ୍ତେ ଗାଈ ବାଛୁରୀ ଧରି ଏହି ଗୋବର୍ଦ୍ଧନ ପର୍ବତ ତଳେ ଆଶ୍ରୟ ନିଅ ।"

ପ୍ରଶ୍ନ-୮୪: କାଳୀୟ ଦଳନ ଲୀଳାରେ ଅଦ୍ଭୁତ ଭୟାନକ, କରୁଣ, ହାସ୍ୟ, ଶାନ୍ତ ଆଦି ଅନେକ ରସମାନଙ୍କ ମିଳନ ହୋଇଥିଲା । ଏହା ଏକ ବିଚିତ୍ର ରସାନୁଭୂତି । ଗୋପୀମାନେ, କ'ଣ ଏହି ଲୀଳା କରିବାକୁ ସାହାସ ବାନ୍ଧିପାରିଲେ କି ?

**ଆରୁହ୍ୟ-ଏକା ପଦା-ଆକ୍ରମ୍ୟ ଶିରସି-ଆହ-ଅପରାଂ ନୃପ ।**
**ଦୁଷ୍ଟ-ଅହେ ଗଚ୍ଛ ଜାତୋଽହଂ ଖଳାନାଂ ନନୁ ଦଣ୍ଡଧୃକ୍ ॥୨୧॥**

ଉ. ସେତେବେଳେ ଜଣେ ହେଲେ ଗୋପୀ ହୋସ୍‌ରେ ନଥାନ୍ତି । ସମସ୍ତେ କୃଷ୍ଣ ପ୍ରେମଲୀଳା ଚିନ୍ତନରେ ଗୋଟା ସୁଦ୍ଧା ବେହାସ୍ । ଜଣେ ଗୋପୀ କାଳୀୟ ସର୍ପ ହୋଇ ଦୁଇ ହାତ ଉପରକୁ ଟେକି ତାର ଫଣା ଦେଖାଇଲା । ଆଉ ଜଣେ ଗୋପୀ ସଙ୍ଗେ ସଙ୍ଗେ କୃଷ୍ଣ ପ୍ରେମ ଅବିଷ୍ଟ ହୋଇ ତାଙ୍କ ମସ୍ତକରେ ପାଦ ଛୁଆଁଇ କହିଲେ, "ହେ ଦୁଷ୍ଟ କାଳୀୟ ନାଗ(ଆହେ), ତୁମେ ଏ ବୃନ୍ଦାବନ ଧାମ ଛାଡ଼ି ଅନ୍ୟତ୍ର ପଳାୟନ କର । ଖଳ ଦମନ ଓ ଭକ୍ତ ସଂରକ୍ଷଣ ପାଳନ ଲାଗି ମୁଁ ଭକ୍ତ ବଂଶରେ କୃଷ୍ଣ ଅବତାର ଗ୍ରହଣ କରିଛି । ସାବଧାନ ।"

ପ୍ରଶ୍ନ-୮୫: ଆଗକୁ ରାସ ଲୀଳା ଅଛି । ଏ ଯାବତ୍ ଆସୁରୀ ଶକ୍ତିମାନଙ୍କର ଦମନ ଲୀଳା ଚାଲିଥିଲା । ଦୈବୀ ଶକ୍ତି ଅଗ୍ନି, ବରୁଣ ଆଦିକୁ ମହାରାସଲୀଳା ଅନୁକୂଳ କରିବା ନିମିତ୍ତ ସେମାନେ କେଉଁ ଲୀଳା ଅଭିନୟ କଲେ ?

**ତତ୍ର-ଏକା-ଉବାଚ ହେ ଗୋପା ଦାବ-ଅଗ୍ନିଂ ପଶ୍ୟତ-ଉଲ୍ବଣମ୍ ।**
**ଚକ୍ଷୂଂଷି-ଆଶୁ-ଅପିଦଧ୍ୱଂ ବୋ ବିଧାସ୍ୟେ କ୍ଷେମଂ ଅଞ୍ଜସା ॥୨୨॥**

ଉ. ସେମାନେ ସେଥିପାଇଁ ଦାବାଗ୍ନି ପାନ ଲୀଳା ଅଭିନୟ ଅନୁଷ୍ଠାନ କରିଦେଲେ । ଜଣେ ଗୋପୀ ବ୍ରଜବଲ୍ଲଭ କୃଷ୍ଣ ହୋଇ କହିଲେ, ''ହେ ଗୋପୀ, ଗୋପାଳଗଣ, ଦେଖ ତ କେଡ଼େ ଭୟଙ୍କର ଅଗ୍ନି(ଉଲ୍ବଣଂ) ତୁମକୁ ଆକ୍ରମଣ କରିବାକୁ ଆସୁଛି । ତୁମେ ସମସ୍ତେ ତୁରନ୍ତ(ଆଶୁ) ନିଜ ନିଜ ନେତ୍ର ବନ୍ଦ କରିଦିଅ(ଅପିଦଧ୍ୱଂ) । ଦେଖ ମୁଁ ତୁମକୁ ସେ ବିପଦରୁ କିଭଳି ସହଜରେ(ଅଞ୍ଜସା) ରକ୍ଷା କରିପାରୁଛି ।''

ପ୍ରଶ୍ନ-୮୬: ଭଗବାନ କୃଷ୍ଣ ନିତ୍ୟ ମୁକ୍ତ । ଜୀବ ନିତ୍ୟ ବନ୍ଧନ ଯୁକ୍ତ । ଏ ନିତ୍ୟ ନିୟମ ଓଲଟି ଯାଇଛି ଦାମ ବନ୍ଧନ ଲୀଳାରେ । ଏ ଲୀଳାରେ ବାତ୍ସଲ୍ୟ ପ୍ରେମର ପତାକା ଉଡ଼ାଇଛନ୍ତି କୃଷ୍ଣଚନ୍ଦ୍ର । ଗୋପୀମାନେ ଏହାକୁ କିପରି ରୂପ ଦେଇପାରିଲେ ?

**ବଦ୍ଧା-ଅନ୍ୟୟ ସ୍ରଜା କାଚିତ୍ ତନ୍ୱୀ ତତ୍ର ଉଲୂଖଲେ ।**
**ବଧ୍ନାମି ଭାଣ୍ଡ ଭେତ୍ତାରଂ ହୈୟଂଗବ ମୁଷଂ ତ୍ୱ-ଇତି ।**
**ଭୀତା ସୁଦୃକ୍ ପିଧାୟ-ଆସ୍ୟଂ ଭେଜେ ଭିତି ବିଡ଼ମ୍ବନସ୍ ॥୨୩॥**

ଉ. ବଢ଼ିଆ ଜମିଲା ଏ ଲୀଳା ଅଭିନୟ । ଜଣେ ଗୋପୀ ଜାକି ଜୁକି ହୋଇ ଉଲୂଖଳଟିଏ ହୋଇଗଲେ । ଆଉ ଜଣେ ଗୋପୀ ତାଙ୍କ ଗଭାରୁ ଫୁଲମାଳଟିଏ କାଢ଼ି ଗୋଟିଏ ପଟ ଉଲୂଖଳରେ ଲଗାଇ ଅନ୍ୟ ପାଖଟିକୁ ହାତରେ ଧରି ଗର୍ଜନ କଲେ, 'କାହିଁ ଗଲା ସେ ଉଦଣ୍ଡ କଳା କାହ୍ନୁ । କେତେ ବୋଲଣା କଲାଣି । ରାଇଜ ଯାକ ମାଇପିଙ୍କ ଅଭିଯୋଗ, ନାଲିସ୍, ଧମକ । ଆଜି ଆମ ଦଧି ହାଣ୍ଡି ଭାଙ୍ଗିଛି(ହୈୟଂଗବ ମୁଷଂ) । ତାକୁ ଏହି ରସିରେ ବାନ୍ଧିବି ।' ଏହା ଶୁଣି ଜଣେ ଗୋପୀ କୃଷ୍ଣ ଭୂମିକାରେ ତତ୍କ୍ଷଣାତ୍ ଅବତୀର୍ଣ୍ଣ ହେଲେ । ବନ୍ଧନ ଭୟରେ(ଭୀତା) ଦିବ୍ୟ ଚଞ୍ଚଳ ନେତ୍ର ଦ୍ୱୟକୁ(ସୁଦୃକ୍) ଓ ମୁହଁକୁ ଦୁଇ ହାତରେ ଘୋଡ଼େଇ(ପିଧାୟ ଆସ୍ୟଂ) କାନ୍ଦିବା ବାହାନା କଲେ(ଭେଜେ ଭିତି ବିଡ଼ମ୍ବନଂ) ।

ପ୍ରଶ୍ନ-୮୭: ବୃନ୍ଦାବନ କାନନରେ ଏଣେ ତେଣେ ବୁଲି ବୁଲି କୃଷ୍ଣ ସନ୍ଦେଶ ପଚାରି କୃଷ୍ଣ ଲୀଳା ଅଭିନୟ କରୁ କରୁ ହଠାତ୍ କ'ଣ ଦେଖି ଚମକି ପଡ଼ିଲେ ?

**ଏବଂ କୃଷ୍ଣଂ ପୃଚ୍ଛମାନା ବୃନ୍ଦାବନ ଲତାଃ ତରୂନ୍ ।**
**ବ୍ୟଚକ୍ଷତ ବନ-ଉଦ୍ଦେଶେ ପଦାନି ପରମାତ୍ମନଃ ॥୨୪॥**

ଉ. ନନ୍ଦ କିଶୋର କଳା କାହ୍ନୁଙ୍କ ପଦ ଚିହ୍ନ କୌଣସି ଏକ ସ୍ଥାନରେ(ବନ-ଉଦ୍ଦେଶେ) ଦର୍ଶନ କରି ଚିତ୍କାର କରି ଉଠିଲେ । ହେଇ ଦେଖ, ହେଇ ଦେଖ, ହଜିଲା ବଳଦ ଖୋଜିଲା ଠାଇଁ ।

ପ୍ରଶ୍ନ-୮୮: ଗୋପୀମାନେ କିଭଳି ସନାକ୍ତ କଲେ ଯେ ସେ ପଦ ଚିହ୍ନ କଳା କାହ୍ନୁଙ୍କର ବୋଲି ?

**ପଦାନି ବ୍ୟକ୍ତଂ ଏତାନି ନନ୍ଦ ସୂନୋଃ ମହାତ୍ମନଃ ।**
**ଲକ୍ଷ୍ୟନ୍ତେ ହି ଧ୍ୱଜ-ଅମ୍ଭୋଜ ବଜ୍ର-ଅଙ୍କୁଶ ଯବ-ଆଦିଭିଃ ॥୨୫॥**

ଉ. ପଦ ଚିହ୍ନିବାରେ ସେମାନେ ଆଦୌ ସନ୍ଦେହ କଲେ ନାହିଁ । ଜୀବର ପଦଚିହ୍ନ ଓ ଭଗବାନଙ୍କ ପଦଚିହ୍ନ ଭକ୍ତକୁ ଭଲ ଭାବରେ ଜଣାଥାଏ । ଗୋପୀମାନେ ଦେଖିଲେ ଯମୁନା ପୁଳିନ ବାଲୁକା ଶଯ୍ୟାରେ ସେହି ପାଦ ଚିହ୍ନରେ ବଜ୍ର-ଅଙ୍କୁଶ-ପଦ୍ମ-ଧ୍ୱଜା ଆଜି ୩୨ଲକ୍ଷଣ ବିଦ୍ୟମାନ ।

ପ୍ରଶ୍ନ-୮୯: ଭଲ କରି ନିରେଖି ଦେଖିଲେ ଗୋପୀମାନେ । ପାଖ ପାଖ ହୋଇ ଭଗବାନଙ୍କ ଚରଣ କମଳର ଚିହ୍ନ ବାରି ହେଉଛି । ସେମାନେ ସେ ଚରଣ ଚିହ୍ନର ପିଛା କରି ଭାରି ଖୁସି ହୋଇଯାଇଥିଲେ କି ?

**ତୈଃ ତୈଃ ପଦୈଃ ତତ୍‌ପଦବୀଂ ଅନ୍ୱିଚ୍ଛନ୍ତ୍ୟୋଽଗ୍ରତୋଽବଲାଃ ।**
**ବଧ୍ୱାଃ ପଦୈଃ ସୁପୃକ୍ତାନି ବିଲୋକ୍ୟ-ଆର୍ତ୍ତାଃ ସମବ୍ରୁବନ୍ ॥୨୬॥**

ଉ. ଖୁସି ହେବେ କ'ଣ ବରଂ ଦୁଃଖରେ ଭାଙ୍ଗିପଡ଼ିଲେ(ଆର୍ତ୍ତାଃ) । କାରଣ ସେମାନେ ଦେଖିଲେ ପ୍ରିୟତମଙ୍କର ପଦ ଯୁଗଳ ସହିତ ଆଉ କେହି ଜଣେ ହରିପ୍ରିୟାଙ୍କର (ବଧ୍ୱାଃ) ଚରଣ ଚିହ୍ନ ଯୋଡ଼ି ଜାଉଁଳି ହୋଇ ପଡ଼ିଛି ।

ପ୍ରଶ୍ନ-୯୦: ଗୋପୀମାନଙ୍କ ମନକୁ ପାପ ଛୁଇଁଲା । ସେମାନେ ବ୍ୟସ୍ତ ହେଲେ ବୋଧେ ନନ୍ଦସୂନୁ ଅନ୍ୟ କୌଣସି ପ୍ରିୟତମା ସଙ୍ଗେ ଏ ବାଟେ ଚାଲି ଚାଲି ଯାଇଛନ୍ତି । ସେ ଜଣେ ନାରୀ ହୋଇଥିବେ ଏକଥା କାହିଁକି ଗୋପୀମାନେ ମନକୁ ଆଣିଲେ ?

**କସ୍ୟା ପଦାନି ଚ-ଏତାନି ଯାତାୟା ନନ୍ଦସୂନୁନା ।**
**ଅଂସନ୍ୟସ୍ତ ପ୍ରକୋଷ୍ଠାୟାଃ କରେଣୋଃ କରିଣା ଯଥା ॥୨୭॥**

ଉ. ଚୋର ମନ ଚୋରୀ ଗଣ୍ଠିଲିରେ ଥାଏ । ପ୍ରଥମତଃ ବଂଶୀବାଦନ, ରାସ ମିଳନ ବେଳେ ଗୋବିନ୍ଦଙ୍କ ଚତୁପାର୍ଶ୍ୱରେ କେବଳ ନାରୀମାନେ ହିଁ ଥିଲେ । ଦ୍ୱିତୀୟତଃ ସେମାନଙ୍କର କେହି ପ୍ରେମ ପ୍ରତିଦ୍ୱନ୍ଦୀ ଯୁବତୀ ରସିଆ କାମିନୀ ରଙ୍କା କଳାକାହ୍ନୁକୁ

କାଳେ କୌଣସି ଲୋଭନୀୟ ଚିଜ ଦେଖାଇ ହାତେଇ ନେଇଥିବ ଏହି ଆଶଙ୍କାରେ ସେମାନେ ପରମ ବ୍ୟାକୁଳିତା ହୋଇଗଲେ ।

ପ୍ରଶ୍ନ-୯୧ : ଗୋବିନ୍ଦଙ୍କ ଚରଣ ଚିହ୍ନ ସହିତ ଅନ୍ୟ ଯେଉଁ ଗୋପୀର (ଅନୟା) ଚରଣ ଚିହ୍ନ ଦିଶୁଥିଲା ସେ ଗୋପୀ ଅନ୍ୟମାନଙ୍କଠାରୁ ଅଧିକ ଭାଗ୍ୟବତୀ ବୋଲି କାହିଁକି ସେମାନେ ମନେ କଲେ ?

**ଅନୟା-ଆରାଧିତୋ ନୂନଂ ଭଗବାନ୍ ହରିଃ ଈଶ୍ୱରଃ ।**
**ଯତ୍‌ନୋ ବିହାୟ ଗୋବିନ୍ଦଃ ପ୍ରୀତୋ ଯାଂ-ଅନୟଦ୍ ରହଃ ॥୨୮॥**

ଉ. କର୍ମ ମାର୍ଗରେ (ଓଁ) ଈଶ୍ୱରଙ୍କୁ, ଜ୍ଞାନ ମାର୍ଗରେ ପରମାତ୍ମା ନାରାୟଣଙ୍କୁ (ହରିଃ) ଓ ଭକ୍ତି ମାର୍ଗରେ କୃଷ୍ଣଙ୍କୁ (ଭଗବାନ୍) ସ୍ମରଣ, ଚିନ୍ତନ, ଧ୍ୟାନ ଆଦି କରାଯାଏ । ଗୋପୀମାନେ ଏ ସବୁ ଅତୀତରେ ଜନ୍ମ-ଜନ୍ମାନ୍ତରେ କରି ଆସିଛନ୍ତି । ହେଲେ ଗୋବିନ୍ଦଙ୍କ ମନକୁ ମୋହିତ କରିପାରିନାହାନ୍ତି । ବର୍ତ୍ତମାନ ଏ ବିଶିଷ୍ଟ ଗୋପୀ କେଉଁ ବିଶିଷ୍ଟ ପଦ୍ଧତିରେ ଗୋବିନ୍ଦଙ୍କୁ ଆରାଧନା କରି ପ୍ରସନ୍ନ(ପ୍ରୀତୋ)କରିପାରିଲେ ଯାହା ଫଳରେ ସେ ଗୋବିନ୍ଦଙ୍କୁ ନେଇ ଏକାନ୍ତ ନିରୋଳା ସ୍ଥାନକୁ(ରହଃ) ଯିବାକୁ ସମର୍ଥ ହେଲେ ତାହା ହିଁ ସୂଚନା ଦେଉଛି ସେ ଗୋପୀଙ୍କର ରଚମ ସୌଭାଗ୍ୟର ।

ମହାତ୍ମାମାନଙ୍କ ମତରେ ଗୋପୀମାନେ ଦେଖିଛନ୍ତି ଅନନ୍ୟା ଗୋପୀ ଜଣଙ୍କ ଅନ୍ୟ କେହି ନୁହନ୍ତି । ସେମାନଙ୍କର ଚିର ପରିଚିତା ଶ୍ରୀରାଧା ରାଣୀ । କାରଣ ସେ ଦୁଇଚରଣ ଯୁଗଳରେ ଚକ୍ର-ଛତ୍ର-କଙ୍କନ-କମଳ-ଧ୍ୱଜା ଆଦି ୧୯ଲକ୍ଷଣ ବିଦ୍ୟମାନ ।

ପରିସ୍ଥିତିରେ ପଡ଼ି ପରମହଂସ ଚୂଡ଼ାମଣି ଶୁକଦେବଜୀ ରାଧାଙ୍କ ନାମ ଲୁଚାଇବାକୁ ଶତ ପ୍ରଯତ୍ନ କରି ମଧ ଅଜାଣତରେ ପ୍ରକାଶ କରିପକାଇଛନ୍ତି । ଭାବର ଉଚ୍ଛ୍ୱାସ ସହିବା ସର୍ବଦା ସମ୍ଭବ ହୁଏନା । ସୁତରାଂ ଆରାଧିତ ଶବ୍ଦ ଶ୍ରୀରାଧାଙ୍କ ସୌଭାଗ୍ୟକୁ ସୂଚିତ କରୁଥିବା ଦିବ୍ୟ ଦୁନ୍ଦୁଭିଘୋଷ ମାତ୍ର । ଅନ୍ୟ କିଛି ନୁହେଁ ।

ପ୍ରଶ୍ନ-୯୨ : ଯୁଗଳ ସରକାରଙ୍କର(ଶ୍ରୀରାଧା-ଶ୍ରୀକୃଷ୍ଣ) ଦିବ୍ୟ ଚରଣ କମଳ ପ୍ରାପ୍ତ ଧୂଳି କଣାର କେଉଁ ବିଶିଷ୍ଟ ମାହାତ୍ମ୍ୟ ହେତୁ ଗୋପୀମାନେ ନିଜକୁ ଧନ୍ୟା ମନେ କଲେ ?

**ଧନ୍ୟା ଅହୋ ଅମୀ ଆଲ୍ୟୋ ଗୋବିନ୍ଦ-ଅଙ୍ଘ୍ରି-ଅବ୍ଜ-ରେଣବଃ ।**
**ଯାନ୍ ବ୍ରହ୍ମା-ଈଶୌ ରମା ଦେବୀ ଦଧୁଃ ମୂର୍ଦ୍ଧନି-ଅଘନୁତ୍ତୟେ ॥୨୯॥**

ଉ. ସେମାନେ କହିଲେ, "ହେ, ସଖୀ(ଆଲ୍ୟୋ), ଯେଉଁ ଚରଣ ଧୂଳି

ମସ୍ତକରେ ବୋଳିବାକୁ ବ୍ରହ୍ମା-ଶଙ୍କର-ରମା-ସରସ୍ୱତୀ ଆଦି ବ୍ୟାକୁଳ ହୁଅନ୍ତି ତାଙ୍କର ଅଜ୍ଞାନତା କୃତ ପାପ ରାଶି ନାଶ କରିବାକୁ(ଅଘନୁତ୍ତୟେ) ଆମେ ତାକୁ ଅନାୟାସରେ ପାଇବା ଅପାଠୋଇ ଗୋପାଳୁଣୀଙ୍କର ପକ୍ଷେ କ'ଣ କମ ସୌଭାଗ୍ୟର କଥା ।''

ପ୍ରଶ୍ନ-୯୩: ଏକ ପକ୍ଷରେ ଗୋପୀମାନେ ଦୁହିଁଙ୍କ ଚରଣ କମଳ ରେଣୁ ଦର୍ଶନ କରି ହର୍ଷିତ ହେଉଥିବା ବେଳେ ଅନ୍ୟ ପକ୍ଷରେ ସେଇ ସେଇ ଗୋପୀମାନେ ଦୁଃଖିତା ହେବାର (କ୍ଷୋଭଂ କୁର୍ବନ୍ତି ଉଚ୍ଚୈଃ) କାରଣ କ'ଣ ହୋଇପାରେ ?

**ତସ୍ୟା ଅମୂନି ନଃ କ୍ଷୋଭଂ  କୁର୍ବନ୍ତି-ଉଚ୍ଚୈଃ ପଦାନି ଯତ୍ ।**
**ଯା-ଏକା-ଅପହୃତ୍ୟ ଗୋପୀନାଂ ରହୋ  ଭୁଂକ୍ତେ଼ଽଚ୍ୟୁତ-ଅଧରମ୍ ।।୩୦।।**

ଉ. ପ୍ରେମ ବିୟୋଗ ହିଁ ପ୍ରେମ ସଂଯୋଗର ପୋଷକ ଅଟେ । ମାନ-ମଦ-ଈର୍ଷ୍ୟା ଆଦି ଭଗବାନଙ୍କ ଲୀଳାରେ ବାଧକ ଅଟନ୍ତି । ତଥାପି ଭଗବତ କୃପାରୁ ଏମାନେ ମଧ ଦିବ୍ୟରୂପ ଧାରଣ କରି ଶ୍ରୀକୃଷ୍ଣ ଦିବ୍ୟଲୀଳାକୁ ଅଧିକ ରସାଳ କରାଇ ଏହାର ପୁଷ୍ଟି ସାଧନ କରିଥାନ୍ତି । ବାହାରୁ ଦେଖିଲେ ଜଣାଯାଏ ଗୋପୀମାନେ ଈର୍ଷ୍ୟା ବଶତଃ କହୁଛନ୍ତି-''ଆମ ମାନଙ୍କୁ ପଛରେ ପକାଇ ଏକାକୀ ଏ ଗୋପୀ ଗୋପୀମାନଙ୍କ କୋଠ ସମ୍ପତ୍ତିକୁ ନିର୍ଜନ ସ୍ଥାନକୁ(ରହୋ) ନେଇ (ଅପହୃତ୍ୟ) ତାଙ୍କ ଦିବ୍ୟ ଅଧର-ଅମୃତ ରସ ପାନ କଲା ।'' ବାସ୍ତବରେ ସେମାନେ ସମସ୍ତେ କୃଷ୍ଣପ୍ରେମ ରସରେ ପ୍ରମୁଦିତା ଓ ଆହ୍ଲାଦିତା ।

ପ୍ରଶ୍ନ-୯୪: ଯୋଡ଼ି ଯୋଡ଼ି ପଦ ଚିହ୍ନ ଖୋଜି ଖୋଜି ଯାଉ ଯାଉ ଯେତେବେଳେ ସେମାନେ କେବଳ କୃଷ୍ଣଙ୍କର ଚରଣ ଚିହ୍ନ ଦେଖିଲେ ସେତେବେଳେ ସେମାନେ ମନେ ମନେ କ'ଣ ଭାବନା କଲେ ?

**ନ ଲକ୍ଷ୍ୟନ୍ତେ ପଦାନି-ଅତ୍ର  ତସ୍ୟା ନୂନଂ ତୃଣ-ଅଙ୍କୁରୈଃ ।**
**ଖିଦ୍ୟତ୍ ସୁଜାତ-ଅଙ୍ଗ୍ରିତଳାଂ  ଉନ୍ନନ୍ୟେ ପ୍ରେୟସୀଂ ପ୍ରିୟଃ ।।୩୧।।**

ଉ. ଗଭୀର କୃଷ୍ଣପ୍ରେମ ଚିନ୍ତନରେ ସେମାନଙ୍କ ଭାବନା ଦିବ୍ୟ ହୋଇସାରିଥିଲା ତ । ସୁତରାଂ ସେମାନେ ମନେ କଲେ, ବୋଧହୁଏ ରାଧାରାଣୀଙ୍କ କୋମଳ ପାଦରେ ତୃଣ ଅଙ୍କୁର ବାଜିବାରୁ ଦୟାସାଗର ଭଗବାନଙ୍କ ମନକୁ ବାଧିଛି ଏ କଥା । ସେ (ପ୍ରିୟଃ) ଶ୍ରୀରାଧାଙ୍କୁ ଶ୍ରୀଅଙ୍ଗକୁ (ପ୍ରେୟସୀଂ) ନିଜ କାନ୍ଧ ଉପରକୁ ଟେକି ନେଇଛନ୍ତି( ଉନ୍ନିନ୍ୟେ) । ତେଣୁ ପ୍ରେୟସୀଙ୍କ ପାଦ ଚିହ୍ନ ଆଉ ଯମୁନା ବାଲିରେ ପଡ଼ିପାରିନାହିଁ ।

ପ୍ରଶ୍ନ-୯୫: ପ୍ରିୟତମା ରାଧାଙ୍କୁ ପ୍ରିୟତମ କୃଷ୍ଣ କାନ୍ଧରେ ବୋହିବା କେହି

ସ୍ୱଚକ୍ଷୁରେ ଦେଖିନାହାନ୍ତି । ଆଉ ଜଣେ ଗୋପୀ ସେମାନଙ୍କ ଧାରଣା ଅମୂଳକ ନୁହେଁ ବୋଲି କିଭଳି ପୁଷ୍ଟି କଲା କେଉଁ ଠୋସ୍ ପ୍ରମାଣ ଆଧାରରେ ?

**ଇମାନି-ଅଧିକ ମଗ୍ନାନି ପଦାନି ବହତୋ ବଧୂମ୍ ।**
**ଗୋପ୍ୟଃ ପଶ୍ୟତ କୃଷ୍ଣସ୍ୟ ଭାରାକାନ୍ତସ୍ୟ କାମିନଃ ।**
**ଅତ୍ର-ଅବରୋପିତା କାନ୍ତା ପୁଷ୍ପ ହେତୋଃ ମହାତ୍ମନ ॥୩୨॥**

ଉ.ଗୋପୀଜଣକ ପ୍ରମାଣ ଦେଇ କହୁଛନ୍ତି, "ହେ ଗୋପବାଳାଗଣ (ଗୋପ୍ୟଃ), ଦେଖ ତ । ସେ ଲମ୍ପଟ କୃଷ୍ଣ(କାମିନଃ) ରାଧାଙ୍କୁ କାନ୍ଧରେ ବୋହିବାବେଳେ (ବହତୋ ବଧୂଂ) ତାଙ୍କ ଓଜନ ବଢ଼ିଯାଇଛି । ତାଙ୍କ ପାଦ ଚିହ୍ନ କେତେ ଅଧିକ ପୋତି ହୋଇଛି ନଦୀ ବାଲିରେ । ଏହା କ'ଣ ଯଥେଷ୍ଟ ପ୍ରମାଣ ନୁହେଁ କି । ହେଇ ପୁଣି ଦେଖ ତ । ଏ ଫୁଲ ଗଛଟିକୁ ଦେଖ । ଏ ଗଛରୁ ସେ ପ୍ରିୟତମା ନିମିତ୍ତ ଫୁଲ ତୋଳିବାକୁ ଏଠାରେ ତାଙ୍କୁ ତଳକୁ ଓହ୍ଲାଇଛନ୍ତି (ଅବରୋପିତା କାନ୍ତା) ।"

ପ୍ରଶ୍ନ-୯୬: କୌଣସି ଫୁଲ ଗଛ ପାଖରେ ଭଗବାନଙ୍କ ପଦ ଚିହ୍ନ ହୁଏତ ଦେଖାଯାଇପାରିଥାଏ । ତେବେ ସେଠାରେ ସେ ଠିଆ ହୋଇ ଫୁଲ ତୋଳିଥିଲେ ବୋଲି କେଉଁ ପ୍ରମାଣ ଆଧାରରେ ସେମାନେ ନିଶ୍ଚୟ କଲେ ?

**ଅତ୍ର ପ୍ରସୂନ-ଅବଚୟଃ ପ୍ରିୟା-ଅର୍ଥେ ପ୍ରେୟସା କୃତଃ ।**
**ପ୍ରପଦ-ଆକ୍ରମଣେ ଏତେ ପଶ୍ୟତ-ଅସକଳେ ପଦେ ॥୩୩॥**

ଉ. ସେମାନେ ଦେଖିଲେ ଏକ ସ୍ଥାନରେ(ଅତ୍ର) ଠାକୁରଜୀଙ୍କ ପଦଚିହ୍ନ ଅସଂପୂର୍ଣ୍ଣ ଦୃଶ୍ୟ ହେଉଛି(ଅସକଳେ ପଦେ) । ପାଦର ବୁଢ଼ା ଆଙ୍ଗୁଠି ଚିହ୍ନ ସ୍ପଷ୍ଟ ଦିଶୁଛି କିନ୍ତୁ ପାଦର ପଛ ପଟର ଅଂଶ ଆଦୌ ଦୃଶ୍ୟ ହେଉନାହିଁ । ସୁତରାଂ ଗୋପୀମାନେ ଭାବିଲେ ବୋଧେ ଫୁଲ ତୋଳିବା ବେଳେ ତାଙ୍କ ହାତ ପାଇନି ଉପରକୁ । ସେ ପାଦର ଆଙ୍ଗୁଠି ଅଗରେ ଠିଆ ହୋଇ ଫୁଲ ତୋଳିବାକୁ ଉଦ୍ୟମ କରିବାରୁ ଏପରି ପରିସ୍ଥିତି ଉପୁଜିଛି । ପ୍ରାଣ ପ୍ରିୟା ପାଇଁ ସେଇ ଫୁଲଟି ତୋଳିବା ନିଶା ନିଶ୍ଚୟ ଘାରିଛି ରାଧାକାନ୍ତଙ୍କୁ । ଧନ୍ୟ ହେ ଗୋବିନ୍ଦ ! ଧନ୍ୟ ତୁମ ଗୋପୀପ୍ରେମ । ଧନ୍ୟ ସେଇ ପ୍ରେମସିକ୍ତ ଫୁଲ ଗୋଟିକ ।

ପ୍ରଶ୍ନ-୯୭: ରସିକ ଶେଖର କୃଷ୍ଣଙ୍କର ଏ ଦିବ୍ୟ ଲୀଳାସ୍ଥଳୀ ଏବେ ବୃନ୍ଦାବନର ରାଧାଦାମୋଦର ମନ୍ଦିର ଓ ରାଧାରମଣ ମନ୍ଦିର ମଝିରେ ଥାଇ ସାକ୍ଷୀ ଦେଉଛନ୍ତି ଏକ ଶୃଙ୍ଗାର ବଟ । କୃଷ୍ଣଭକ୍ତମାନେ ବୃନ୍ଦାବନ ଦର୍ଶନ ବେଳେ ଏହି ମହାବୃକ୍ଷଙ୍କୁ ସପ୍ରେମ

ପ୍ରଣାମ କରନ୍ତି । ବର୍ତ୍ତମାନ ସେଠାରେ ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କ ବିଗ୍ରହ ପୂଜିତ ହେଉଛନ୍ତି । ଭଗବାନ ଯଦି କିଛି ଫୁଲ ତୋଳିଲେ ସେ ଫୁଲକୁ ସବୁ ମାଳା ଆକାରରେ ଗୁନ୍ଥିବାକୁ ମନ କଲେ କି ?

**କେଶ ପ୍ରସାଧନଂ ତୁ-ଅତ୍ର କାମିନ୍ୟାଃ କାମିନା କୃତମ୍ ।**
**ତାନି ଚୂଡ଼ୟତା କାନ୍ତାଂ ଉପବିଷ୍ଟଂ ଇହ ଧ୍ରୁବମ୍ ॥୩୪॥**

ଉ. ଗୋପୀମାନେ ଦିବ୍ୟ ଭାବନାର ସବୁ ମାଇଲ ଖୁଣ୍ଟ ଅତିକ୍ରମ କରିଚାଲିଥାନ୍ତି । ସେମାନଙ୍କ ଭାବନା ସୀମା ସରହଦ କିଛି ମାନୁନଥାନ୍ତି । ଜଣେ ଗୋପୀ କହୁଛନ୍ତି-"ହେଇ ଦେଖ ସଖି, ଏଠାରେ ଆମ ପ୍ରିୟତମ ଶ୍ରୀରାଧାଙ୍କୁ ତଳକୁ ଓହ୍ଲାଇଛନ୍ତି ନିଶ୍ଚୟ । ଦୁହେଁ ପାଖାପାଖି ବସିଛନ୍ତି(ଉପବିଷ୍ଟଂ) ଏଠାରେ (ଇହ) । ପ୍ରିୟତମାଙ୍କର ମନୋମୁଗ୍ଧକର କେଶ ପ୍ରସାଧନ କରିଛନ୍ତି ସ୍ୱହସ୍ତରେ । ଜୁଡ଼ା ପାରିଛନ୍ତି । ସେହି ଜୁଡ଼ାରେ ଫୁଲମାଳଟିକୁ ସଜାଇଛନ୍ତି ମଧ୍ୟ ।"

ପ୍ରଶ୍ନ-୯୮ : ସ୍ଥାନ ନିର୍ଜନ ଯମୁନା କୂଳ ବାଲୁକା ଶଯ୍ୟା । କାଳ ଚନ୍ଦ୍ର ଜ୍ୟୋସ୍ନା ବିଧୌତ ରାକା ରଜନୀ । ପାତ୍ର ଦୁଇଜଣ ଯୁବକ ଯୁବତୀ । ପରିସ୍ଥିତି ଯୁବକ ପୁରୁଷ ଜଣକ ଯୁବତୀ ନାରୀର କେଶ ପ୍ରସାଧନ ଆଦି କରି ବେଶ ଶୃଙ୍ଗାର କରିବା । ବକ୍ତା ଶିରୋମଣି ପରମ ବିରକ୍ତ ଶୁକଦେବ ଗୋସ୍ୱାମୀଙ୍କ ମୁଖରୁ ଏଭଳି ବର୍ଣ୍ଣନା କାହିଁକି ରୂପନେଲା ବ୍ରହ୍ମଶାପ ଗ୍ରସ୍ତ ମରଣ ଉନ୍ମୁଖ ଶ୍ରୋତା ପରୀକ୍ଷିତଙ୍କୁ ଶୁଣାଇବାକୁ ?

**ରେମେ ତୟା ଚ-ଆତ୍ମରତ ଆତ୍ମାରାମୋଽପି-ଅଖଣ୍ଡିତଃ ।**
**କାମିନାଂ ଦର୍ଶୟନ୍ ଦୈନ୍ୟଂ ସ୍ତ୍ରୀଣାଂ ଚ-ଏବ ଦୁରାତ୍ମନାମ୍ ॥୩୫॥**

ଉ. ଅବଶ୍ୟ ଏକଥାର ବର୍ଣ୍ଣନ, ଶ୍ରବଣ, କୀର୍ତ୍ତନ କେବଳ କାମୁକ ସଂସାରୀ ଲୋକଙ୍କ ପକ୍ଷେ ଶୋଭାପାଏ । କାରଣ ନାରୀ ଯେତେବେଳେ ଜାଣେ ଜଣେ ପୁରୁଷ ତା ଜାନୁଯୌବନ ଦର୍ଶନରେ ମୋହିତ ସେ ଗୋଡ଼ ଲମ୍ବାଇଚାଲେ । ଲମ୍ପଟ ପୁରୁଷ ବିନା ଦ୍ୱିଧାରେ ତାର ସେବା କରି (ଦର୍ଶୟନ ଦୈନ୍ୟଂ) ନିଜକୁ ଧନ୍ୟ ମନେ କରେ । କାରଣ ସେ ଦୁହେଁ ଦୁରାତ୍ମା ।

ଶୁକଦେବ ପରମହଂସ ଏ ବର୍ଣ୍ଣନାବେଳେ ଶ୍ରୋତାମଣ୍ଡଳୀକୁ ଯଥେଷ୍ଟ ସତର୍କ ବାଣୀ ଶୁଣାଇବାକୁ ଭୁଲି ନାହାନ୍ତି । ସେ ବେଦ ବର୍ଣ୍ଣିତ କୃଷ୍ଣଙ୍କର ଦିବ୍ୟତାର ସୂଚକ ତିନି ବିଶେଷଣ ବ୍ୟବହାର କରିଛନ୍ତି ଏଠାରେ । କୃଷ୍ଣ ଆତ୍ମାରମଣକାରୀ(ଆତ୍ମରତ) । ସେ ଆତ୍ମତୃପ୍ତ(ଆତ୍ମାରାମ) । ପୁଣି ସେ ସ୍ୱୟଂ ସମ୍ପୂର୍ଣ୍ଣ ପୂର୍ଣ୍ଣତମ ପୁରୁଷୋତ୍ତମ ଅଖଣ୍ଡ

ବ୍ରହ୍ମଚାରୀ ଆପ୍ତକାମ ସ୍ୱୟଂ ଭଗବାନ(ଅଖଣ୍ଡିତ) । ଶ୍ରୀରାଧା କୌଣସି ଲୌକିକ ରମଣୀ ନୁହନ୍ତି । ସେ ଅଲୌକିକ କୃଷ୍ଣଙ୍କର ଦିବ୍ୟ ହ୍ଲାଦିନୀ ଶକ୍ତି । ଯୋଗମାୟା ଶକ୍ତି । ଏ ଦୁଇ କଥା ମନେ ରଖିଲେ ଏ ଚିନ୍ମୟ ଅପ୍ରକଟ ଲୀଳା ରହସ୍ୟ ବୁଝିହୁଏ । ବୁଝି ନ ପାରିଲେ ଶ୍ରୋତା ବା ପାଠକ ନିଜର ସର୍ବନାଶ କରିଥାଏ ।

ପ୍ରଶ୍ନ-୯୯: ଏ ଦିବ୍ୟ ଶୃଙ୍ଗାର ଲୀଳା ବର୍ଣ୍ଣନ କଲାବେଳେ ବକ୍ତା ମହାଶୟ ଠିକ୍ ଠଉରେଇ ପାରିଛନ୍ତି ଉପସ୍ଥିତ ଶ୍ରୋତା ମଣ୍ଡଳୀର ମନୋଭାବକୁ । ସୁତରାଂ ସେ ଆଉ ଆଗକୁ ବଢ଼ିବା ଉଚିତ ମନେ କରିନ୍ାହାନ୍ତି ବୋଲି ଭାଗବତ ପାଠକ କିପରି ସୂଚନା ପାଇଥାଏ ?

**ଇତି-ଏବଂ ଦର୍ଶୟନ୍ତ୍ୟଃ ତାଃ ଚେରୁଃ ଗୋପ୍ୟୋ ବିଚେତସଃ ।**
**ଯାଂ ଗୋପୀ ଅନୟତ୍ କୃଷ୍ଣୋ ବିହାୟ-ଅନ୍ୟାଃ ସ୍ତ୍ରିୟୋ ବନେ ।।୩୬।।**

ଉ. ଗୋପୀମାନେ କୃଷ୍ଣପ୍ରେମ ପାଗଳିନୀ । କୃଷ୍ଣପ୍ରେମ ସଂକେତ ଖୋଜି ଖୋଜି ସେମାନେ ଏବେ ସଂପୂର୍ଣ୍ଣ ଆତ୍ମହରା(ବିଚେତସଃ) । ଅନ୍ୟ ଗୋପୀମାନଙ୍କୁ ତ୍ୟାଗ କରି ଯେଉଁ ଭାଗ୍ୟବତୀକୁ ଧରି ସେ ଅନ୍ତର୍ଦ୍ଧାନ ହୋଇଛନ୍ତି ସେ ଦୁହିଁଙ୍କ ଲୀଳା ଭାବନା କରି ବୁଲୁଛନ୍ତି(ଚେରୁଃ ବନେ) । ଇତ୍ୟାଦି ଇତ୍ୟାଦି (ଇତି-ଏବଂ) କହି ଲୀଳାବର୍ଣ୍ଣନରେ ବ୍ରେକ୍ ଲଗାଇ ଦେଇଛନ୍ତି ବକ୍ତାମହାଶୟ । ହୁଏତ ଅଧିକ ବର୍ଣ୍ଣନାରେ ଆଗକୁ କିଛି ବିପଦ ଆସୁଥିବା ଆଶଙ୍କାରେ ।

ପ୍ରଶ୍ନ-୧୦୦: ଭଗବାନଙ୍କ ସାନ୍ନିଧ ପାଇ ମାନ, ଗର୍ବ କଲେ ବୋଲି ଏତେ ସଂଖ୍ୟକ ଗୋପାଙ୍ଗନା ତାଙ୍କ ବିୟୋଗ ଦୁଃଖରେ ସଢ଼ିବା ବେଳେ ଯେଉଁ ସୌଭାଗ୍ୟବତୀ ଗୋପୀ(ଶ୍ରୀରାଧା) ତାଙ୍କ ସତ୍ସଙ୍ଗ ପ୍ରାପ୍ତ ହେଲେ ତାଙ୍କର ମନରେ କ'ଣ ମାନ କିମ୍ବା ଗର୍ବର ଉଦ୍ରେକ ହେଲା ନାହିଁ ?

**ସା ଚ ମେନେ ତତ୍ଆତ୍ମାନଂ ବରିଷ୍ଠଂ ସର୍ବ ଯୋଷିତାମ୍ ।**
**ହିତ୍ୱା ଗୋପୀଃ କାମୟାନା ମାଂ ଅସୌ ଭଜତେ ପ୍ରିୟଃ ।।୩୭।।**

ଉ. ହେଲା ନି କିପରି ? ସେ ମଧ୍ୟ ଭାବିଲେ (ମେନେ) ସକଳ ଗୋପଲଳନାଙ୍କ ମଧ୍ୟରେ ମୁଁ ସିନା ବରିଷ୍ଠ ବୋଲି ସେହି ଭଗବାନ ସେ ଗୋପୀମାନଙ୍କୁ ଛାଡ଼ି ଏକା ମୋ ସେବାରେ ଲାଗିଛନ୍ତି । ସେ ମଧ୍ୟ ନିଜର ସୌଭାଗ୍ୟର ପ୍ରଶଂସା କରିବାରେ ଲାଗିଲେ । ଏ ଲୀଳା ସ୍ଥଳୀଟି ଆଜି ବୃନ୍ଦାବନ ଧାମର ମାନସରୋବର ।

ପ୍ରଶ୍ନ-୧୦୧ : ବାସ୍ତବରେ କୌଣସି ଗୋପୀ କିମ୍ବା ଶ୍ରୀରାଧା କେହି ଜଣେ ହେଲେ ମାନ, ଗର୍ବ, ଅହଂକାରୀ ନଥିଲେ । ଏସବୁ ମାୟିକ ସଂସାରୀ ଜୀବ ଅନ୍ତଃକରଣର ଦୁର୍ବଳତା ମାତ୍ର । ଏ ଲୀଳାର ଅଧିକାରୀ ସମସ୍ତେ ମାୟାତୀତ ସ୍ୱତନ୍ତ୍ର ଶ୍ରେଣୀର ଭଗବତ ପାର୍ଷଦ । ଭଗବାନଙ୍କର ଅନ୍ତରଙ୍ଗା ଶକ୍ତିର ହ୍ଲାଦିନୀ ଅଂଶର କାୟବ୍ୟୂହରୂପା । ଭଗବାନ ଏକଥା ଗୋପୀମାନଙ୍କୁ ପରବର୍ତ୍ତୀ ୩୨ଶ ଅଧ୍ୟାୟରେ ବୁଝାଇବେ । ଲୀଳା ଅଭିନୟରେ ଶ୍ରୀରାଧା ମିଥ୍ୟା ଅହଂକାରର ଶିକାର ହୋଇ(ଦୃପ୍ତା) କି କାଣ୍ଡ କରି ବସିଲେ ?

**ତତୋ ଗତ୍ୱା ବନ-ଉଦ୍ଦେଶଂ ଦୃପ୍ତା କେଶବଂ ଅବ୍ରବୀତ୍ ।**
**ନ ପାରୟେଽହଂ ଚଳିତୁଂ ନୟ ମାଂ ଯତ୍ର ତେ ମନଃ ॥୩୮॥**

ଉ. ବୃନ୍ଦାବନର ଏକ ନିର୍ଜନ କୋଣକୁ ଭଗବାନଙ୍କୁ ରାଧାରାଣୀ ଡ଼ାକି ନେଇଛନ୍ତି । ଏକ ସୁନ୍ଦର ପେଖନା କାଢ଼ିଛନ୍ତି । କହିଛନ୍ତି, ''ହେ, ପ୍ରିୟେ, ମୁଁ ଅବଳା ଦୁର୍ବଳା । କୋମଳାଙ୍ଗୀ । ବୁଲି ବୁଲି ଶ୍ରାନ୍ତ କ୍ଳାନ୍ତ । ଚାଲିବାକୁ ଆଉ ମୋ ଦେହରେ ବଳ ନାହିଁ । ତୁମେ ଯଦି ମୋତେ କୁଆଡ଼େ ନେବାକୁ ଚାହୁଁଥାଅ(ଯତ୍ରତେ ମନଃ) ତେବେ ମୋତେ କାନ୍ଧରେ ବସାଇ ବୋହି ନେବାର ବନ୍ଦୋବସ୍ତ କର ! !''

ପ୍ରଶ୍ନ-୧୦୨ : ଜୀବ ଓ ଭଗବାନ ଦିବ୍ୟ ଲୀଳା ଅଭିନୟରେ ଶ୍ରୀକୃଷ୍ଣ କ'ଣ ଶ୍ରୀରାଧା ରାଣୀଙ୍କୁ ସତରେ ତାଙ୍କ କାନ୍ଧରେ ବସେଇ ବୋହିନେଲେ ?

**ଏବଂ ଉକ୍ତଃ ପ୍ରିୟାଂ ଆହ ସ୍କନ୍ଧ ଆରୁହ୍ୟତାଂ ଇତି ।**
**ତତଃ ଚ-ଅନ୍ତର୍ଦଧେ କୃଷ୍ଣଃ ସା ବଧୂ-ଅନ୍ୱତପ୍ୟତ ॥୩୯॥**

ଉ. ନଟଖଟ ନନ୍ଦ ନନ୍ଦନ ତ ଉଡ଼ନ୍ ଛୁ ବାଲା । ଶ୍ରୀରାଧା ରାଣୀଙ୍କୁ କହିଲେ, 'ତେବେ କାନ୍ଧରେ ବସ ।' ନଇଁ ପଡ଼ି କାନ୍ଧ ପ଼ତେଇଲେ ମଧ୍ୟ । ବୃଷଭାନୁ ନନ୍ଦିନୀ ବସିବାକୁ ଗୋଡ଼ ବଢ଼ାଇବା ମାତ୍ରେ ଠାକୁରଜୀ ଛୁ ମାରିଦେଲେ । ଆଉ ତାଙ୍କୁ ଧରେ କିଏ । ଅନୁତାପ ଅନଳରେ ଶ୍ରୀଜୀ ଜଳିବାରେ ଲାଗିଲେ । କେଡ଼େ ପାଇଟି କଲି ! କେତେ ତପ ଫଳରେ ଏତେ ଗୋପୀଙ୍କଠାରୁ ଛଡ଼ାଇ ଆଣିଥିବା ଦରବ ଆଖି ପିଛୁଳାକେ ହରାଇ ବସିଲି ।

ଅସଲରେ ଭଗବାନ ପ୍ରିୟାଜୀକୁ ଠକିବା ଉଦ୍ଦେଶ୍ୟରେ ଆଦୌ ଲୁଚି ପଡ଼ି ନାହାନ୍ତି । ଯଦି ସେତେବେଳେ ସମସ୍ତ ଗୋପୀଙ୍କ ସମ୍ମୁଖରେ ସେ ଦୁହେଁ ଦର୍ଶନ ଦେଇଥାନ୍ତେ ତେବେ ଗୋପୀମାନେ ଈର୍ଷ୍ୟାରେ ଜଳି ଯାଇଥାନ୍ତେ । ଆହୁରି ଅସୁବିଧା

ଜନକ ପରିସ୍ଥିତିରେ ପଡ଼ିଥାନ୍ତେ । ସୁତରାଂ ଏ ଅଚିନ୍ତ୍ୟ ଲୀଳା କଲେ ଭଗବାନ ।

ପ୍ରଶ୍ନ-୧୦୩: ସଂସାର ଲୀଳାରେ ଜୀବ ଦୁଃଖ ପାଇଲେ ସଙ୍ଗେ ସଙ୍ଗେ ଅନ୍ୟ ଉପରେ ସେ ଦୁଃଖରେ କାରଣକୁ ଲଦି ଦେଇ ନିଜକୁ ଦୋଷମୁକ୍ତ କରିବାକୁ ଚେଷ୍ଟା କରେ । ରାଧା ଠାକୁରାଣୀ କ'ଣ ସେହିଭଳି ଗୋବିନ୍ଦଙ୍କ ଉପରେ ଦୋଷ, ଅଭିମାନ ଲଦିବାକୁ ପସନ୍ଦ କଲେ ?

**ହା ନାଥ ରମଣ ପ୍ରେଷ୍ଠ କ୍ୱ-ଅସି କ୍ୱ-ଅସି ମହାଭୁଜ ।**
**ଦାସ୍ୟାଃ ତେ କୃପଣାୟା ମେ ସଖେ ଦର୍ଶୟ ସନ୍ନିଧିମ୍ ।।୪୦।।**

ଉ. ଦିବ୍ୟ ପ୍ରେମ ସ୍ୱରୂପିଣୀ ଶ୍ରୀଠାକୁରାଣୀ ଆଦୌ ସେ କଥା କରି ନାହାନ୍ତି । ବରଂ ଓଲଟି ନିଜ ଉପରକୁ ସବୁ ଦୋଷ ଟାଣି ଆଣିଛନ୍ତି । ବ୍ୟାକୁଳ କ୍ରନ୍ଦନରେ ବନ ଅରଣ୍ୟ ଭୂମିକୁ କମ୍ପମାନ କରିଛନ୍ତି । ମଧୁର ଭାବ ଭକ୍ତିରେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଆଦି ଅନ୍ୟ ଚାରି ଭାବ ଅନ୍ତର୍ନିହିତ ଥିବା ସେ ପ୍ରମାଣ କରିଛନ୍ତି ଏହି ଅମୃତ ଶ୍ଳୋକଟି ମାଧ୍ୟମରେ । ନାଥ(ଶାନ୍ତ) ରମଣ(ମଧୁର), ପ୍ରେଷ୍ଠ(ବାତ୍ସଲ୍ୟ), ଦାସ୍ୟାଃ(ଦାସ୍ୟ) ଓ ସଖେ(ସଖ୍ୟ) ପାଞ୍ଚ ପଦରେ ପାଞ୍ଚ ଭାବର ପ୍ରକଟି କରଣ ହୋଇଛି ।

ପ୍ରିୟ ପ୍ରିୟତମଙ୍କର ଏ ଦିବ୍ୟ ଲୀଳା ପ୍ରେମମାର୍ଗ ସାଧକ ମାନଙ୍କ ଲାଗି ଏକ ଚେତାବନି, ସାବଧାନି । ଯୁଗଳ ସରକାର ସତେ ଯେମିତି ଶିକ୍ଷା ଦେଉଛନ୍ତି, ''ହେ, ସାଧକ ଗଣ, ଭଗବତ ପ୍ରାପ୍ତି ପରେ ମଧ ଗୋଡ଼ ଲମ୍ବାଇ ବସନା । ବିପଦ କେତେବେଳେ କେଉଁ ରୂପରେ ଆସିବ କିଏ କହିବ ?''

ପ୍ରଶ୍ନ-୧୦୪: ପ୍ରେମମୟୀ ରାଧାରାଣୀଙ୍କ କରୁଣ ବିଳାପରେ ବୃନ୍ଦାବନର ଲତା, ପତା, ତରୁ, ତୃଣ, ଗୁଳ୍ମ, ପଶୁ, ପକ୍ଷୀ ମଧ କାନ୍ଦି ପକାଇଲେ । ତାଙ୍କର କ୍ରନ୍ଦନ ଥିଲା ଜୀବର କୃଷ୍ଣ ବିରହ ଦୁଃଖର ଏକ ଦିବ୍ୟ ବିଜ୍ଞାପନ । ଏ ଅଲୌକିକ ବିରହ ବିଳାପର କି ଦିବ୍ୟ ଫଳ ଫଳିଲା ?

**ଅନ୍ୱିଚ୍ଛନ୍ତ୍ୟୋ ଭଗବତୋ ମାର୍ଗଂ ଗୋପ୍ୟୋଽବିଦୂରତଃ ।**
**ଦଦୃଶୁଃ ପ୍ରିୟ ବିଶ୍ଳେଷାତ୍ ମୋହିତାଂ ଦୁଃଖିତାଂ ସଖୀମ୍ ।।୪୧।।**

ଉ. ଗୋପୀମାନେ ଭଗବାନଙ୍କୁ ଖୋଜି ଖୋଜି (ଅନ୍ୱିଚ୍ଛନ୍ତ୍ୟୋ) ସେଇ ମାର୍ଗରେ ପାଖରେ(ଅବିଦୂରିତଃ) ପାଇଲେ କୃଷ୍ଣ ପ୍ରେମର ଶ୍ରେଷ୍ଠ ପୂଜାରିଣୀ ଶ୍ରୀରାଧାଙ୍କୁ ଅନାୟାସରେ । ସେମାନେ ଦେଖିଲେ(ଦଦୃଶୁଃ) ରାଧାରାଣୀଙ୍କର ମଧ ସେଇ ଏକା ଅବସ୍ଥା । ସେ ମଧ କୃଷ୍ଣ ବିରହରେ ମୋହ ଗ୍ରସ୍ତା(ବିଶ୍ଳେଷାତ୍ ମୋହିତାଂ) ଓ ଦୁଃଖିତା । ସମସ୍ତେ ସମଦଶାପନ୍ନ ।

ପ୍ରଶ୍ନ-୧୦୫: ଦୁର୍ଦ୍ଦଶାର କାରଣ ଶ୍ରୀରାଧାଙ୍କୁ ପଚାରିଲେ ଗୋପୀମାନେ । ଶ୍ରୀରାଧା ବର୍ଣ୍ଣନ କଲେ ଆମୂଳ ଚୂଳ ବୃତ୍ତାନ୍ତ । କହିବାକୁ ଭୁଲିଲେ ନାହିଁ ଶ୍ରୀକୃଷ୍ଣଙ୍କ ଦୟାଳୁତା, ବହୁମାନନ କରିବା କଥା ସହିତ ତାଙ୍କ ଆଡୁ ହୋଇଥିବା ଅବମାନନା ଓ ଦୌରାତ୍ମ୍ୟ କଥା । ଏ କଥା ଶ୍ରବଣ କରି ଗୋପୀମାନେ କ'ଣ ଭାବିଲେ ମନେ ମନେ ?

**ତଥା କଥିତଂ ଆକର୍ଣ୍ଣ୍ୟ ମାନ ପ୍ରାପ୍ତିଂ ଚ ମାଧବାତ୍ ।**
**ଅବମାନଂ ଚ ଦୌରାତ୍ମ୍ୟାଦ୍ ବିସ୍ମୟଂ ପରମଂ ଯଯୁଃ ॥୪୨॥**

ଉ. କ'ଣ ଆଉ ଭାବନ୍ତେ ? ଅତ୍ୟନ୍ତ ବିସ୍ମୟ ପ୍ରକାଶ କଲେ । ଭଗବାନଙ୍କ ସହିତ ବ୍ୟବହାର କରିବା ବେଳେ ଯଦି ସ୍ୱୟଂ ଯୋଗମାୟାଙ୍କର ଭୁଲ ହୋଇଯାଉଛି ସେତେବେଳେ ସେମାନଙ୍କ ଭଳି ଜୀବ ପକ୍ଷରେ ପ୍ରମାଦରେ ପଡ଼ିଯିବା କେଉଁ ବଡ଼ କଥା ! ! ସମସ୍ତେ ଏବେ ଆଶ୍ୱସ୍ତ ହେଲେ କୃଷ୍ଣ କୃପାର ସାଧନ ପୁରୁଷାର୍ଥ ପରାୟଣ ନୁହେଁ ବରଂ କୃଷ୍ଣ କୃପା ସାଧ୍ୟ ।

ପ୍ରଶ୍ନ-୧୦୬: ବୁଦ୍ଧି ଅକଲ ତ ବହୁତ ଶିଖିଲେ ଗୋପୀମାନେ । ଶ୍ରୀରାଧାଙ୍କ ନେତୃତ୍ୱରେ ଏବେ କୃଷ୍ଣ ମିଳନ ଲାଗି କେଉଁ ଉପାୟ କଲେ ?

**ତତୋଽବିଶନ୍ ବନଂ ଚନ୍ଦ୍ର ଜ୍ୟୋତ୍ସ୍ନା ଯାବତ୍ ବିଭାବ୍ୟତେ ।**
**ତମଃ ପ୍ରବିଷ୍ଟଂ ଆଲକ୍ଷ୍ୟ ତତୋ ନିବବୃତ୍ତୁଃ ସ୍ତ୍ରିୟଃ ॥୪୩॥**

ଉ. ସମସ୍ତେ ଏକ ମେଳ ହୋଇ ପ୍ରଥମେ ବୃନ୍ଦାବନର ଗହନ ବନ ପ୍ରଦେଶରେ କୃଷ୍ଣ ଅନ୍ୱେଷଣ କଲେ । ସତର୍କ ଦୃଷ୍ଟି ପ୍ରସାରଣ କରି ଦେଖିଲେ (ବିଭାବ୍ୟତେ) ବନ ପ୍ରଦେଶ ଏତେ ଘନ ବୃକ୍ଷଲତା ଆଚ୍ଛାଦିତ ହୋଇଛି ଯେ ଚନ୍ଦ୍ର କିରଣ ମଧ୍ୟ ସେଥିରେ ଭେଦ କରିପାରୁ ନାହିଁ । କେବଳ ଘନ ଅନ୍ଧକାର । କୃଷ୍ଣ ସ୍ୱୟଂ ଚିକ୍କଣ କଳା ରଙ୍ଗର । ସେ ସେଥିରେ ଲୁଚି ଥିଲେ ମଧ୍ୟ ତାଙ୍କୁ ଖୋଜି ପାଇବା ସଂପୂର୍ଣ୍ଣ ଅସମ୍ଭବ ବ୍ୟାପାର । ସୁତରାଂ ସେମାନେ ପୁଣି ଯମୁନା ପୁଳିନକୁ ଫେରି ଆସିଲେ(ନିବବୃତ୍ତୁଃ) । କାରଣ ଜିନିଷ ଯେଉଁଠାରେ ହଜିଥାଏ ସେହିଠାରେ ତାଙ୍କୁ ଖୋଜିବା ବୁଦ୍ଧିମାନର କାମ ।

ପ୍ରଶ୍ନ-୧୦୭: ଗୋପୀମାନେ ଜାଣିଛନ୍ତି ସେମାନେ ଯମୁନା କୂଳକୁ ଜଳ ଆହରଣ ଲାଗି ଆସିବା ବେଳେ ନ ଡ଼ାକିଲେ ମଧ୍ୟ ଶ୍ୟାମସୁନ୍ଦର ଆପେ ଆପେ ଆସି କାନି ଟାଣନ୍ତି । ଜଳ ଭରା କଳସୀ ଟେକି କାଖରେ ଦିଅନ୍ତି । ମାଧବ ବସ୍ତୁ ପ୍ରିୟ କି

କର୍ମପ୍ରିୟ ନୁହନ୍ତି । ମାଧବ ସଦାସର୍ବଦା ଭକ୍ତି ପ୍ରିୟ । ପୁଣି ସେ ଭକ୍ତିର ଅସଲି ଚାବିକାଠି ବିରହ ବ୍ୟାକୁଳତା । ରାଧାରାଣୀଙ୍କ ଉପଦେଶରେ ଗୋପୀମାନେ କ'ଣ ସବୁ କରି ସେମାନଙ୍କ କୃଷ୍ଣ ବିରହ ବ୍ୟାକୁଳତାକୁ ସାବ୍ୟସ୍ତ କରିବାକୁ ପସନ୍ଦ କଲେ ?

**ତତ୍ ମନସ୍କାଃ ତତ୍ ଆଳାପାଃ ତତ୍‌ବିଚେଷ୍ଟାଃ ତତ୍ ଆତ୍ମିକାଃ ।**
**ତଦ୍‌ଗୁଣାନ୍ ଏବ ଗାୟନ୍ତ୍ୟୋ ନ-ଆତ୍ମ-ଆଗାରାଣି ସସ୍ମରୁଃ ।।୪୪।।**

ଉ. କୃଷ୍ଣ ଭଜନରେ ଏକ ସୁନ୍ଦର ଆଦର୍ଶ ସେମାନେ ଜଗତକୁ ଶିକ୍ଷାଦେଇଗଲେ । ସେମାନେ ମନରେ କୃଷ୍ଣ ରୂପ ଧ୍ୟାନ କଲେ । ବାଣୀରେ କୃଷ୍ଣ ନାମ ଲୀଳା କୀର୍ତ୍ତନ କଲେ । ଅଙ୍ଗ ପ୍ରତ୍ୟଙ୍ଗରେ କୃଷ୍ଣ ଲୀଳା ଅଭିନୟ (ବିଚେଷ୍ଟା)କଲେ । ଏକ ବାକ୍ୟରେ କାୟମନୋ-ବାକ୍ୟରେ ସେମାନେ କୃଷ୍ଣଙ୍କୁ ଧାରଣ କରି ସଂପୂର୍ଣ୍ଣ କୃଷ୍ଣ ତନ୍ମୟ ହୋଇ(ତଦ୍ ଆତ୍ମିକା) କୃଷ୍ଣ ଗୁଣ ବାହୁନିବାରେ ଲାଗିଗଲେ । ସୁତରାଂ ନିଜ ନିଜର ଦେହ-ଗୃହ(ଆତ୍ମ-ଆଗାରାଣି) ସ୍ମରଣ କରିବାକୁ ଅବକାଶ ପାଇଲେ ନାହିଁ(ନ ସସ୍ମରୁଃ) ।

ପ୍ରଶ୍ନ-୧୦୮ : ବୈଷ୍ଣବ ଶାସ୍ତ୍ରର ସାର କଥା ହେଲା ଦେହ ଗୃହର ବିସ୍ମରଣ ସହିତ କୃଷ୍ଣ ତନ୍ମୟ ହୋଇ କୃଷ୍ଣ ଗୁଣ କୀର୍ତ୍ତନ ହିଁ ଭଗବତ ପ୍ରାପ୍ତି ଅଟେ । ଗୋପାଙ୍ଗନା ମାନେ କାହିଁକି କୃଷ୍ଣ ଅନ୍ୱେଷଣ ବନ୍ଦ କରିବାକୁ ପସନ୍ଦ କଲେ ?

**ପୁନଃ ପୁଳିନଂ ଆଗତ୍ୟ କାଳିନ୍ଦ୍ୟାଃ କୃଷ୍ଣ ଭାବନାଃ ।**
**ସମବେତା ଜଗୁଃ କୃଷ୍ଣଂ ତତ୍ ଆଗମନ କାଙ୍‌କ୍ଷିତାଃ ।।୪୫।।**

ଉ.କୃଷ୍ଣ ବିଶ୍ୱବ୍ୟାପକ ସ୍ଥୁଳତମ ବିରାଟ ପୁରୁଷ । ପୁଣି ସେଇ କୃଷ୍ଣ ଘଟଘଟବାସୀ ସୂକ୍ଷ୍ମତମ ଅନ୍ତରାତ୍ମା । ସେ ଦୟାଳୁ, ସର୍ବସମର୍ଥ ଓ ଦୀନବନ୍ଧୁ ମଧ୍ୟ । ତେଣୁ ସେମାନେ କୃଷ୍ଣ ଲୀଳା ଗାନ କଲେ(ଜଗୁଃ) ଓ ତାଙ୍କ ପ୍ରାକଟ୍ୟକୁ ଅପେକ୍ଷା କଲେ । ନାଦ ବ୍ରହ୍ମଙ୍କ ସହିତ ଶବ୍ଦ ବ୍ରହ୍ମଙ୍କ ମିଳନରେ ପ୍ରଭୁଙ୍କ ପ୍ରାକଟ୍ୟ ହୁଏ ବୋଲି ଶ୍ରୁତିରୂପା ଗୋପୀମାନଙ୍କୁ ଜଣାଥିଲା । ସେମାନଙ୍କର ବିରହ ବିଳାପ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ହେବ ।

**ଇତି ଶ୍ରୀମଦ୍‌ଭାଗବତେ ମହାମୁନି କୃତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଦଶମ ସ୍କନ୍ଧେ ତ୍ରିଂଶୋଽଧ୍ୟାୟଃ**

**।। ହରିଃ ଓଁ ତତ୍ ସତ୍ ।।**

**ଶ୍ରୀକୃଷ୍ଣାର୍ପଣମସ୍ତୁ**

## ୨୧ଶ ନକ୍ଷତ୍ର-ଉତ୍ତର ଆଷାଢ଼ା

## ଅଥ ୩୧ଶ ଅଧ୍ୟାୟଃ

### ଗୋପୀଗୀତ (ଛନ୍ଦ-କନକ ମଞ୍ଜରୀ ପୁଣି ମନ୍ଦାକ୍ରାନ୍ତା)

ପ୍ରଶ୍ନ-୧ : ଭୂଃ, ଭୁବଃ ଆଦି ଚତୁର୍ଦ୍ଦଶ ଭୁବନ ମଧ୍ୟରେ ସତ୍ୟଲୋକ ଶ୍ରେଷ୍ଠତମ । କାରଣ ସେଠାରେ ବ୍ରହ୍ମଲୋକରେ ବ୍ରହ୍ମାଜୀ, ବିଷ୍ଣୁଲୋକରେ ନାରାୟଣ ଓ ଶିବ ଲୋକରେ ଶଙ୍କର ଭଗବାନ ରହନ୍ତି ଯଥାକ୍ରମେ ପତ୍ନୀ ସାବିତ୍ରୀ, ମହାଲକ୍ଷ୍ମୀ ଓ ସତୀଙ୍କ ଗହଣରେ । ତେବେ ଗୋପୀମାନେ କାହିଁକି ମର୍ତ୍ତ୍ୟଲୋକର ବ୍ରଜଧାମକୁ ସର୍ବଶ୍ରେଷ୍ଠ ଗୌରବମୟ ସ୍ଥଳି (ଅଧିକଂ) ବୋଲି କହିଲେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି ?

**ଗୋପ୍ୟଃ ଉଚୁଃ**

**ଜୟତି ତେଽଧିକଂ ଜନ୍ମନା ବ୍ରଜ**
**ଶ୍ରୟତ ଇନ୍ଦିରା ଶଶ୍ୱତ୍ ଅତ୍ର ହି ।**
**ଦୟିତ ଦୃଶ୍ୟତାଂ ଦିକ୍ଷୁ ତାବକାଃ**
**ତ୍ୱୟି ଧୃତା-ଅସବଃ ତ୍ୱାଂ ବିଚିନ୍ୱତେ ॥୧॥**

ଉ. କାରଣଟି ହେଲା ମହାଲକ୍ଷ୍ମୀ(ଇନ୍ଦିରା) ବୈକୁଣ୍ଠରେ ନାରାୟଣଙ୍କ ଐଶ୍ୱର୍ଯ୍ୟର ମୋହ ତ୍ୟାଗ କରି କୃଷ୍ଣ ପ୍ରେମରସର (ଶ୍ରୟତ) ମାଧୁର୍ଯ୍ୟ ପାନ ଲାଳସାରେ ଆସି ବ୍ରଜଭୂମିରେ (ଅତ୍ର) ଡ଼େରା (ଶଶ୍ୱତ)ପକାଇଲେ ବୋଲି । କୃଷ୍ଣଙ୍କ ଜନ୍ମଲୀଳା(ତେ ଜନ୍ମନା) ବାଲ୍ୟ, କୈଶୋର ଲୀଳାର ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ବୈକୁଣ୍ଠରେ ମଧ୍ୟ ଅପ୍ରାପ୍ୟ । ଭଗବାନ କୃଷ୍ଣଙ୍କ ଅବତାର ଭକ୍ତକୁ କେବଳ ଆନନ୍ଦ ଦେବାକୁ ହୁଏ । ଦୁଷ୍ଟ ଦଳନ, ସନ୍ଥ ପାଳନ ଓ ଧର୍ମ ସଂସ୍ଥାପନ ଆଦି ସବୁ ଗୌଣ ଲକ୍ଷ୍ୟ ଏହି ବିରଳ ଅବତାରରେ । ଆଜି ଗୋପୀମାନେ (ତାବକାଃ) ଗୋବିନ୍ଦଙ୍କୁ କେବଳ ଆନନ୍ଦ ଦେବାକୁ ଗୃହସ୍ଥାଶ୍ରମର ନିଗଡ଼ ଶୃଙ୍ଖଳ(ଚାରି ଦଉଡ଼ି ଧର୍ମ-ଅର୍ଥ-କାମ-ମୋକ୍ଷ) କାଟି ଅର୍ଣ୍ଣାରେ କାନି ଗୁଡ଼େଇ ବାହାରିଛନ୍ତି । ସେମାନେ ପ୍ରାଣ ଧାରଣ କରିଛନ୍ତି(ଧୃତା-ଅସବଃ) କୃଷ୍ଣଙ୍କୁ ଖୋଜିବାକୁ

(ବିଚିନ୍ୱତେ) । କୃଷ୍ଣରସ ପାନ କରିବା କାଇଦା ସେମାନେ ମର୍ତ୍ତ୍ୟର ଲୋକଙ୍କୁ ଶିଖାଇବେ । କନକ ମଞ୍ଜରୀ ଛନ୍ଦରେ ଏ ଛାନ୍ଦ ରଚନା ହୋଇଛି । ଏ ଛନ୍ଦରେ ଶ୍ଳୋକକୁ ମନ ପ୍ରାଣ ଦେଇ ଗାଇଲେ କୃଷ୍ଣ ପ୍ରେମର ନିଶା ବା ମାଦକତା (କନକ ମଞ୍ଜରୀ ଅର୍ଥ ଧାତୁରା ରସ ବା ଫଳ) ପ୍ରାପ୍ତ ହୁଏ ଗାନକାରୀ କୃଷ୍ଣ ଭକ୍ତକୁ । ମନ୍ଦ ଧୀର ଅଥଚ ଭାବପୂର୍ଣ୍ଣ ଭାବରେ ଗାନ କଲେ ମନ, ବୁଦ୍ଧି, ଚିତ୍ତ ଆକର୍ଷିତ ହୁଏ ବୋଲି ଛନ୍ଦର ନାମ ମନ୍ଦାକ୍ରାନ୍ତା ହୋଇଛି ।

ପ୍ରଶ୍ନ-୨ : ଭଗବାନ ସର୍ବଦା ସୁନ୍ଦର । ତାଙ୍କର ମତ୍ସ୍ୟ, କଚ୍ଛପ ଓ ବରାହ ଆଦି ସକଳ ଅବତାର ମଧ୍ୟ ସୁନ୍ଦର । ବିଶେଷତଃ କୃଷ୍ଣ ଅବତାର ନାହିଁ-ନଥିଲା-ନୋହିବ ଭାବେ ସର୍ବୋଚ୍ଚ ସୁନ୍ଦର । ତାଙ୍କର ସକଳ ଅଙ୍ଗ ଶୋଭା ମଧ୍ୟ ଏକ ଆରକୁ ବଳି । ତେବେ ଗୋପୀମାନେ କୃଷ୍ଣଙ୍କର କେଉଁ ଦିବ୍ୟ ଅଙ୍ଗକୁ ଅଧିକ ପ୍ରଶଂସା କଲେ ?

**ଶରତ୍ ଉଦ-ଆଶୟେ ସାଧୁଜାତସତ୍**

**ସରସିଜ-ଉଦର ଶ୍ରୀମୁଷା ଦୃଶା ।**

**ସୁରତନାଥ ତେ଼ଶୁଲ୍କ ଦାସିକା**

**ବରଦ ନିଘ୍ନତୋ ନ-ଇହ କିଂ ବଧଃ ॥୨॥**

ଉ. ସେମାନେ ତାଙ୍କର ଦିବ୍ୟ କମଳ ନୟନକୁ ପ୍ରଶଂସାରେ ପୋତି ପକାଇଲେ । କାରଣ ସେ ଶରତ କାଳରେ ଜଳାଶୟ ମଧ୍ୟରେ ସଯତ୍ନବର୍ଦ୍ଧିତ ସର୍ବଶ୍ରେଷ୍ଠ କମଳର ଶ୍ରୀ (ଶୋଭା)କୁ ସୁନ୍ଦର ପଣିଆରେ (ଦୃଶା) ବଳିପଡ଼େ ବୋଲି । ଦିବ୍ୟ ପ୍ରେମର ଶ୍ରେଷ୍ଠ ନାୟକ (ସୁରତ ନାଥ) ବିନାମୂଲ୍ୟରେ କିଣା ଦାସୀ (ଅଶୁଲ୍କ ଦାସିକାଃ) ଗୋପୀମାନଙ୍କୁ ସେଇ ଦୁଷ୍ଟ ନୟନବାଣ ମଲା ଭଳି କରିଛି (ନିଘ୍ନତଃ ନେହ କିଂ ବଧ) । ପ୍ରଥମେ ତାଙ୍କ ନେତ୍ରର ପ୍ରଶଂସା କରାଯାଇଛି । ପରେ ଚୋର ହତ୍ୟାକାରୀ ବୋଲି ନିନ୍ଦା ମଧ୍ୟ କରାଯାଇଛି । ସେଇ ନିନ୍ଦାରେ ମଧ୍ୟ ପ୍ରଚ୍ଛନ୍ନ ଦିବ୍ୟ ପ୍ରେମ ଭରି ରହିଛି । ଏହାକୁ ଅଳଙ୍କାର ଶାସ୍ତ୍ରରେ ବ୍ୟାଜ ସ୍ତୁତି କୁହାଯାଏ ।

ପ୍ରଶ୍ନ-୩: ଭଗବାନ ପତିତ ପାବନ ପୁଣି ସଙ୍କଟ ତାରଣ । ଗୋପୀ ଗୋପାଳଙ୍କୁ ଠାକୁରଜୀ ଏଭଳି କେଉଁ କେଉଁ କଠିନ ବିପଦରୁ ରକ୍ଷା କରିଛନ୍ତି ବୋଲି ଗୋପୀମାନେ ସ୍ମରଣ କଲେ ?

**ବିଷଜଳ-ଅପ୍ୟୟାତ୍ ବ୍ୟାଳରାକ୍ଷାସାତ୍**

**ବର୍ଷମାରୁତାତ୍ ବୈଦ୍ୟୁତ-ଅନଳାତ୍ ।**

**ବୃଷମୟ-ଆତ୍ମଜାତ୍ ବିଶ୍ୱତଃ ଭୟାତ୍**

**ଋଷଭ ତେ ବୟଂ ରକ୍ଷିତା ମୁହୁଃ ।।୩।।**

ଉ. କାଳିନ୍ଦୀ ହ୍ରଦର ବିଷ ଜଳରୁ, ଅଘାସୁର(ବ୍ୟାଳ-ସର୍ପ ରାକ୍ଷାସାତ୍) ଇନ୍ଦ୍ରଙ୍କ ମୂଷଳଧାର ବର୍ଷା, ଝଡ଼ ବତାସରୁ, ବ୍ରଜପାତ ଭୟରୁ, ତୃଣାବର୍ତ୍ତ(ବୃଷ ଆତ୍ମଜ) ଓ ଅରିଷ୍ଟାସୁର (ମୟ ଆତ୍ମଜ) ଭଳି ଅନେକ ମରଣାନ୍ତକ ବିପଦରୁ ସେ ରକ୍ଷା କରିଛନ୍ତି । ଏବେ କିନ୍ତୁ ସେମାନେ ଆହୁରି ଅଧିକ ଭୟଙ୍କର ପ୍ରାଣନାଶକାରୀ ଗୋବିନ୍ଦ ବିରହ ଅସୁର କବଳରେ ପଡ଼ି ତ୍ରାହି ତ୍ରାହି ରଡ଼ି ଛାଡୁଛନ୍ତି । ଗୋପୀମାନଙ୍କର ଭୟ ଯେ କୃଷ୍ଣ ବିରହରେ ମଲେ କୃଷ୍ଣ ନାମରେ କଳଙ୍କ ରଟିବ । ବରଂ କାଳୀୟ ନାଗ ବିଷରେ ଇନ୍ଦ୍ରକୋପରେ, ଅସୁର ହାତରେ ଗୋପୀଏ ମରିଥିଲେ ଦୋଷ ସେମାନଙ୍କ ନାମରେ ଲାଗିଥାନ୍ତା । ଗୋପୀମାନେ ବାସ୍ତବରେ ମରିବାକୁ ଡରୁନାହାନ୍ତି । ଭକ୍ତ ପାଇଁ ନିଜର ମୃତ୍ୟୁ ବା ନିଜ ପତି କିମ୍ବା ପୁତ୍ରର ମରଣ ମଧ୍ୟ ଭଗବତ୍ କୃପା ବୋଲି ସେମାନଙ୍କର ବିଶ୍ୱାସ । ଜୀବନରେ କୃଷ୍ଣ ବିରହ ଦୁଃଖ ନ ଜାଣିଲେ କୃଷ୍ଣ ମିଳନ ସୁଖ ସେ ଜାଣିବ କାହୁଁ ? ଖିରୀର ସ୍ୱାଦ ଚାଖିବାକୁ ହେଲେ ଭୋଜିରେ ପିତା, କଷା, କଟୁ, ତିକ୍ତ ଚାଖିବାକୁ ହୁଏ । ଉପାସ କଲେ ସିନା ଜଣେ ଜାଣିପାରିବ ଅନ୍ନ ତରକାରୀର ସ୍ୱାଦ । ମୁଣ୍ଡରୁ ଓଢ଼ଣା ଖସାଇ ଦେଖିଲେ ସିନା ରସିକ ଜାଣିପାରିବ ଜଣେ ସୁନ୍ଦରୀର ଅନ୍ତର ସୁନ୍ଦର ନା ମୁହଁଟା ମଧ୍ୟ ସୁନ୍ଦର ।

ପ୍ରଶ୍ନ-୪: ଗୋପୀମାନେ ଜାଣିଥିଲେ ଗୋପୀନାଥ ରସିକ, ସଚ୍ଚା ପ୍ରେମିକ । ସେମାନେ କ'ଣ କୃଷ୍ଣଙ୍କ ଐଶ୍ୱର୍ଯ୍ୟ, ଭଗବତ୍ତା ବିଷୟ ଆଦୌ ଜାଣି ନଥିଲେ କି ?

**ନ ଖଳୁ ଗୋପିକା ନନ୍ଦନୋ ଭବାନ୍**

**ଅଖିଳ ଦେହିନାଂ ଅନ୍ତର-ଆତ୍ମା ଦୃକ୍ ।**

**ବିଖନସା-ଅର୍ଥିତୋ ବିଶ୍ୱଗୁପ୍ତୟେ**

**ସଖ ଉଦେୟିବାନ୍ ସାତ୍ୱତାଂ କୁଳେ ।।୪।।**

ଉ. ବିଲକୁଲ ଜାଣିଥିଲେ । ଭଲ କରି ଜାଣିଥିଲେ । ତେଣୁ କହୁଛନ୍ତି, ''ତୁମେ କେବଳ ଯଶୋଦା ନନ୍ଦନ ନୁହଁ । ସର୍ବାନ୍ତର୍ଯ୍ୟାମୀ (ଅନ୍ତର ଆତ୍ମାଦୃକ୍) ବ୍ରହ୍ମାଜୀଙ୍କ ପ୍ରାର୍ଥନାରେ (ବିଖନସା-ଅର୍ଥିତୋ) ଦୁଷ୍ଟ ଦଳନ ଓ ସନ୍ଥ ପାଳନ (ବିଶ୍ୱଗୁପ୍ତୟେ)

ଯାଦବ କୁଳରେ ଭକ୍ତମାନଙ୍କୁ ଆନନ୍ଦ ପ୍ରଦାନ କରିବାକୁ ଅବତାର ଗ୍ରହଣ କରିଛ ।''

ସୁତରାଂ ଏ ଶ୍ଳୋକରେ କୃଷ୍ଣଙ୍କ ଗୁପ୍ତ ଐଶ୍ୱର୍ଯ୍ୟ ପ୍ରକଟ କରିଛନ୍ତି ସେମାନେ । ଭଗବାନଙ୍କ ଐଶ୍ୱର୍ଯ୍ୟ ସ୍ମରଣ କଲେ ଭକ୍ତ ଅନ୍ତରରେ ଦୀନ ଭାବର ପରିପକ୍ୱତା ଆସେ । ସେତେବେଳେକୁ କୃଷ୍ଣ ସେମାନଙ୍କ ଦଶ ଇନ୍ଦ୍ରିୟ ସହିତ ମ ନରେ ମଧ୍ୟ ବସି ସାରିଥିଲେ । ଜଣେ ଗୋପୀ ତେଣୁ କହୁଛି, ''ଆଖିରେ ପଡ଼ିଥିବା କୃଷ୍ଣ ହାତର ଅବୀର ଗୁଣ୍ଡ ସିନା କାଢ଼ି ସଫା କରିଦେଲି । ହେଲେ ସେ ନନ୍ଦପୁତ ଭୂତ ମୋ ନୟନ, ମନରୁ ବାହାରିବ କେମିତି ?''

ଏ ଶ୍ଳୋକରେ କୃଷ୍ଣଙ୍କ ତ୍ରିବିଧ ପରିଚୟ ମିଳେ । ଗୋପିକାନନ୍ଦନ କହିବା ଭକ୍ତିମାର୍ଗୀର ପ୍ରେମଦୃଷ୍ଟି । ଅନ୍ତରଆତ୍ମା ଦୃକ୍ କହିବା ଅର୍ଥ କୃଷ୍ଣଙ୍କୁ ଜ୍ଞାନମାର୍ଗୀର ତତ୍ତ୍ୱଦୃଷ୍ଟିରେ ପରମାତ୍ମା ବୋଲି ସ୍ୱୀକାର କରିବା । ବିଖନସା ଅର୍ଥିତୋ ବିଶ୍ୱଗୁପ୍ତୟେ କହିବା ମାନେ କର୍ମମାର୍ଗୀର ଓଁ ବା ବ୍ରହ୍ମଦୃଷ୍ଟିରେ ଅବତାର ବାଦକୁ ମାନିନେବାକୁ ବୁଝାଏ ।

ପ୍ରଶ୍ନ-୫ : ଦିବ୍ୟ ବୃନ୍ଦାବନରେ ଶ୍ରୀକୃଷ୍ଣ କିଶୋର ବାଳକ । ତାଙ୍କ କରକମଳ (କର ସରୋରୁହଂ) ଶିରରେ ଧାରଣ କରିବାକୁ ଗୋପିମାନେ ଚାହିଁବା କାରଣ କ'ଣ ହୋଇପାରେ ?

**ବିରଚିତ-ଅଭୟଂ ବୃଷ୍ଣିଧୂର୍ଯ୍ୟ ତେ**
**ଚରଣଂ ଇୟୁଷାଂ ସଂସୃତେଃ ଭୟାତ୍ ।**
**କର ସରୋରୁହଂ କାନ୍ତ କାମଦଂ**
**ଶିରସି ଧେହି ନଃ ଶ୍ରୀକରଗ୍ରହମ୍ ॥୫॥**

ଉ. ବୃଷ୍ଣିଧୂର୍ଯ୍ୟ ଅର୍ଥ ଧର୍ମ । ଶ୍ରୀକରଗ୍ରହମ୍ ଅର୍ଥ ଧନ (ଅର୍ଥ) । କାନ୍ତ କାମଦଂ ଅର୍ଥ କାମ । ବିରଚିତ ଅଭୟଂ କହିଲେ ମୋକ୍ଷକୁ ବୁଝାଏ । ଠାକୁରଜୀଙ୍କ କରକମଳରେ ଧର୍ମ, ଅର୍ଥ, କାମ, ମୋକ୍ଷ (ସାଯୁଜ୍ୟମୁକ୍ତି ଓ ଜୀବନ୍ମୁକ୍ତି ଉଭୟ) ଚାରି ପୁରୁଷାର୍ଥ ବାସ କରନ୍ତି । ତେଣୁ ସିନା ବ୍ରଜାଙ୍ଗନାମାନେ ବ୍ୟାକୁଳରେ ଏକଥା ମାଗୁଛନ୍ତି ଗୋବିନ୍ଦଙ୍କୁ ।

ସଂସାରରେ ଧନୀଲୋକ ଦୁଃଖୀର ଦୁଃଖ ବୁଝିବାରେ ଅସମର୍ଥ । ଭଗବାନ ଶ୍ରୀଧର ବା ଲକ୍ଷ୍ମୀପତି ବୋଲି ସିନା ଭକ୍ତର ଦୁଃଖ ଦୂର କରିପାରିବେ । ଏକଥା ଗୋପୀମାନଙ୍କୁ ହାଡ଼େ ହାଡ଼େ ଜଣା । ଅଧ୍ୟାତ୍ମବାଦ ଏକଥା ଆଦୌ କହେନା ଯେ-ହେ ମନୁଷ୍ୟ, ଭୌତିକ ଧନ ଦୌଲତକୁ ଘୃଣା କର । ଦୂରେଇ ଦିଅ । ବରଂ କହନ୍ତି ନା ନା ସେ ସବୁକୁ କଷ୍ଟ କରି ଅର୍ଜନ କର । ସେ ସବୁର ସଦୁପଯୋଗ କର । ଭକ୍ତ ପାଇଁ ପଇସା, ତପସ୍ୟା ଉଭୟେ ଉପକାରୀ । ଧନ କାହାକୁ ଦୁଃଖ ଦିଏନା । ଦୁଃଖ ଦିଏ

ଧନର ଆସକ୍ତି । ସଂସାରରେ ଯେ ସର୍ବତ୍ର ମଇଳା ଖୋଜେ ସେ ତ ଗୋବର ପୋକ । ତାକୁ ଲହୁଣୀ ଖାଇବାକୁ ଦେଲେ ସେ ମରିଯିବ । ଯେ ଫୁଲରୁ ମହୁ କାଢ଼ିପାରେ ସେ ମହୁମାଛି । ମାଟି ଗଦାରୁ ଯେ ଚିନି କାଢ଼ିପାରେ ସେ ପିମ୍ପୁଡ଼ି । ଭକ୍ତ ପାଇଁ ଧନ, ଦୌଲତ, ପଦ, ପ୍ରତିଷ୍ଠା ଭଗବାନଙ୍କ ସଂପତ୍ତି । ତାକୁ ନିଜ ଭୋଗରେ ଲଗାଇବା ଅନୁଚିତ । ସେସବୁକୁ ସାଇତିବା, ଉପଯୁକ୍ତ, ପାତ୍ରରେ ଦେଇ ଦାୟିତ୍ୱମୁକ୍ତ ହେବା ଭକ୍ତର କର୍ତ୍ତବ୍ୟ । ସେଥିରେ ସେବକ ମାଲିକ ବା ଭକ୍ତ ଭଗବାନ ଉଭୟେ ପ୍ରସନ୍ନ ।

ପ୍ରଶ୍ନ-୬: ଭଗବାନ କୃଷ୍ଣଙ୍କର ବଦନ କମଳ (ଜଳରୁହ-ଆନନଂ) ଦର୍ଶନ କ'ଣ ପାଇଁ ଏତେ ଜରୁରୀ ହୋଇପଡ଼ିଲା ଗୋପୀମାନଙ୍କ ପକ୍ଷେ ?

**ବ୍ରଜଜନ-ଆର୍ତ୍ତିହନ୍ ବୀର ଯୋଷିତାଂ**

**ନିଜ ଜନ ସ୍ମୟ ଧ୍ୱଂସନ ସ୍ମିତ ।**

**ଭଜ ସଖେ ଭବତ୍ କିଂକରୀଃ ସ୍ମ ନୋ**

**ଜଳରୁହ-ଆନନଂ ଚାରୁଦର୍ଶୟ ॥୬॥**

ଉ. ନିଜ ଜନ ବା ବ୍ରଜଧାମରେ ଭକ୍ତର ଆର୍ତ୍ତି (ଦୁଃଖ) ଦୂର କରିବା ପାଇଁ ଭଗବାନଙ୍କ ଶ୍ରୀମୁଖ ସରୋଜର (ସ୍ମିତ) ଦର ହାସ ଟିକକ ଯଥେଷ୍ଟ । ଏକଥା ଗୋପୀମାନେ ଭଲ କରି ଜାଣିସାରିଛନ୍ତି । ସେଥିପାଇଁ ଗୋପାଙ୍ଗନାମାନେ ବ୍ୟାକୁଳ ହୋଇ ଠାକୁରଜୀଙ୍କୁ ସଖା ଓ ବୀର ବୋଲି ଦୁଇ ସମ୍ବୋଧନ କରିଛନ୍ତି । ନିଜ ତରଫରୁ ସେମାନେ ବିନାମୂଲ୍ୟରେ କିଣା କୃଷ୍ଣଦାସୀ ବୋଲି ଜଣାଇଦେଉଛନ୍ତି । ସେମାନଙ୍କ ଜୀବନ ପ୍ରାଣ, ମନ ସବୁ କୃଷ୍ଣ ସେବା ପାଇଁ ସମର୍ପିତ । କୃଷ୍ଣ ପ୍ରେମ ଗୋପୀଙ୍କ ପାଇଁ ଦୁଇ ପ୍ରକାର । କୃଷ୍ଣ ମିଳନ ହିଁ ଶୃଙ୍ଗାର । ପୁଣି କୃଷ୍ଣ ବିରହ ଅଙ୍ଗାର ନୁହେ ମହାଶୃଙ୍ଗାର ଯେଉଁ ଦିବ୍ୟ ପ୍ରେମ ଅନୁଭୂତି ମହାବୈକୁଣ୍ଠରେ ମଧ୍ୟ ଦୁର୍ଲ୍ଲଭ ।

ପ୍ରଶ୍ନ-୭: କରକମଳ, ବଦନ କମଳ ସ୍ପର୍ଶନ ଓ ଦର୍ଶନ ଆକାଙ୍କ୍ଷା କରିବା ପରେ ପୁଣି ଗୋବିନ୍ଦ ଚରଣ କମଳ ପ୍ରତି ଗୋପୀମାନଙ୍କର ଶ୍ରଦ୍ଧା କାହିଁକି ବଳିଲା ?

**ପ୍ରଣତ ଦେହିନାଂ ପାପ କର୍ଶନଂ**

**ତୃଣ ଚର-ଅନୁଗଂ ଶ୍ରୀନିକେତନମ୍ ।**

**ଫଣିଫଣା-ଅର୍ପିତଂ ତେ ପଦାମ୍ବୁଜଂ**

**କୃଣୁ କୁଚେଷୁ ନଃ କୃନ୍ଧି ହୃତ୍‌ଶୟମ୍ ॥୭॥**

ଉ. ଏହାର ଅନେକ ବିଶେଷ କାରଣ ଅଛି । ଶରଣାଗତ ଭକ୍ତ (ପ୍ରଣତ ଦେହିନାଂ) ପାପ ନାଶ କରିବାରେ ତାଙ୍କ ପଦ-ଅମ୍ବୁଜ ସଂପୂର୍ଣ୍ଣ ସମର୍ଥ । ଏକଥା ସେମାନେ କାଳୀୟନାଗ ଉଦ୍ଧାର ପ୍ରସଙ୍ଗରେ ଦେଖି ସାରିଛନ୍ତି ବୋଲି ଉଲ୍ଲେଖ କରୁଛନ୍ତି । ପୁଣି ସେ ପଦକମଳ ବୈକୁଣ୍ଠ ସ୍ୱାମିନୀ ମହାଲକ୍ଷ୍ମୀ (ଶ୍ରୀ)ଙ୍କର ଭଜନୀୟ ଚିଜ୍ଞ । ମାୟାବଦ୍ଧ ଜୀବର ହୃଦୟସ୍ଥିତ କାମନା ବାସନାର ଗ୍ରନ୍ଥି ଛେଦନ କରିବାରେ (କୃନ୍ଧି ହୃତ୍ ଶୟମ୍) ସେ ପଦ କମଳ ସକ୍ଷମ । ଅତଏବ ଗୋପ ଲଳନାମାନେ କୃଷ୍ଣ ପଦଦ୍ୱୟକୁ ନିଜ କଠିନ ବକ୍ଷରେ ସ୍ଥାପନ କରାଇ କାମନା ଗ୍ରନ୍ଥୀ ଭେଦନ କରାଇ ହୃଦୟକୁ କୋମଳ କରିବାକୁ ଆଗ୍ରହ ପ୍ରକାଶ କରୁଛନ୍ତି ।

ପ୍ରଶ୍ନ-୮ : ଗୋପାଙ୍ଗନାମାନେ ଗୋବିନ୍ଦ ବିରହ ପୀଡ଼ାରେ ଅତ୍ୟନ୍ତ ବ୍ୟଥିତା । ତେବେ ସେମାନଙ୍କ ବିରହ ବ୍ୟାଧିର ଔଷଧ କ'ଣ ବୋଲି ସେମାନେ ମନେ କଲେ ?

**ମଧୁରୟା ଗିରା ବଲ୍‌ଗୁବାକ୍ୟୟା**
**ବୁଧ ମନୋଜ୍ଞୟା ପୁଷ୍କର-ଈକ୍ଷଣ ।**
**ବିଧିକରିଃ ଇମା ବୀର ମୁହ୍ୟତୀଃ**
**ଅଧର ସୀଧୁନା-ଆପ୍ୟାୟୟସ୍ୱ ନଃ ॥୮॥**

ଉ. ଗୋପୀମାନେ କହିଲେ, ''ହେ କମଳନୟନ (ପୁଷ୍କର ଈକ୍ଷଣ), ଆମ ବିରହ ବ୍ୟାଧିର ଉପଶମ ହେବାର ମହୌଷଧି ଆପଣଙ୍କ ପାଖରେ ସଦା ବିଦ୍ୟମାନ । ଆପଣଙ୍କ ମିଠା କଥା (ମଧୁରୟା ଗିରା), କୋମଳ ଆଶ୍ୱସନା (ବଲ୍‌ଗୁ ବାକ୍ୟୟା) ଜ୍ଞାନୀ, ବୁଦ୍ଧିମାନଙ୍କର ଦୁଃଖ ଦୂର କରିବାରେ ସମର୍ଥ । ସୁତରାଂ ଆମକୁ ସେଇ ବଚନ ଅମୃତ ମଧୁ ପାନ କରାଅ (ଆପ୍ୟାୟୟସ୍ୱ) ।''

ପ୍ରଶ୍ନ-୯ : ମୃତ୍ୟୁ ଲୋକରେ ସ୍ୱର୍ଗର ଅମୃତ ଏକ ଅତୀବ ଲୋଭନୀୟ ପଦାର୍ଥ । କାରଣ ତାକୁ ପାଇବାକୁ ପ୍ରାୟତଃ ଅଧିକାଂଶ ଲୋକ ଯାଗ, ଯଜ୍ଞ, ଦାନ, ପୁଣ୍ୟ, ତୀର୍ଥ ଓ ବ୍ରତ ଆଦି କରନ୍ତି । ଏଠାରେ ସ୍ୱର୍ଗ ଅମୃତକୁ ତୁଚ୍ଛ କରି ଗୋପୀମାନେ କୃଷ୍ଣ କଥାମୃତକୁ ଉଚ୍ଚସ୍ଥାନ ଦେଲେ କେଉଁ ସାହସରେ ?

**ତବ କଥା-ଅମୃତଂ ତପ୍ତ ଜୀବନଂ**
**କବିଭିଃ ଇଡ଼ିତଂ କଲ୍ମଷା-ଅପହମ୍ ।**
**ଶ୍ରବଣ ମଙ୍ଗଳଂ ଶ୍ରୀମତ୍-ଆତତଂ**
**ଭୁବି ଗୃଣ୍ୱନ୍ତି ଯେ ଭୂରିଦା ଜନାଃ ॥୯॥**

ଉ. ଏହା ଗୋପୀମାନଙ୍କର ଅଙ୍ଗେ ନିଭାଇବା କଥା । ପଢ଼ା ଶୁଣା କଥା ନୁହେଁ । ସେମାନେ ଦେଖିଲେ ଯେ କୃଷ୍ଣ ବିରହରେ ତ ସମସ୍ତେ ମରିଯିବା କଥା । ତେବେ ସେମାନେ ଆଜି ବଞ୍ଚିଛନ୍ତି କାହିଁକି ? ଉତ୍ତର ହେଲା-କୃଷ୍ଣ କଥା ଶ୍ରବଣ ହେତୁ । ସ୍ୱର୍ଗ ଅମୃତ ଦେଇପାରେ ଦୀର୍ଘ ଆୟୁଷ, ଦେବତାଙ୍କ ଭଳି ସୁଖ ଭୋଗିବାର ଖୋରାକ କିନ୍ତୁ ଦେଇ ପାରିବନି ଦିବ୍ୟ ଜୀବନ । ଏକଥା କରି ପାରିବ କୃଷ୍ଣ କଥା ଶ୍ରବଣ ।

ପ୍ରଥମ କାରଣ ସ୍ୱର୍ଗ ଅମୃତ ପାନ କରି ଦେବତାମାନେ ମତୁଆଲା ହୁଅନ୍ତି । ଈଶ୍ୱର ସେବା ଭୁଲି ବିଷୟ ଭୋଗ ଲାଳସା ବଢ଼ାଇ ଚାଲନ୍ତି । କଥାମୃତ କିନ୍ତୁ ଜୀବକୁ ଭୋଗଲାଳସା ବିମୁଖ କରାଇ ତାର ଚିତ୍ତକୁ ପ୍ରସନ୍ନ କରାଏ । ଦ୍ୱିତୀୟ କାରଣ ସ୍ୱର୍ଗର ଅମୃତ ପୁଣ୍ୟ କ୍ଷୟ କରେ ସିନା ପାପ କ୍ଷୟ କରି ପାରେନା । ଗୀତା କୁହନ୍ତି, ''କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି ।'' କଥାମୃତ କିନ୍ତୁ ପାପ ନାଶକ (କଲ୍ମଷାପହଂ) ଅଟେ । ପୁଣି ପୁଣ୍ୟ ନାଶକ ନୁହେଁ ବରଂ ପୁଣ୍ୟ ବର୍ଦ୍ଧକ । ତୃତୀୟ କାରଣ ସ୍ୱର୍ଗ ଅମୃତ କେବଳ ସ୍ୱର୍ଗରେ ମିଳେ ଅନ୍ୟତ୍ର ନୁହେଁ । କଥାମୃତ କିନ୍ତୁ ଅତ୍ର ତତ୍ର ସର୍ବତ୍ର ମିଳେ । କେବଳ ପାନ କରିବା ଇଚ୍ଛା ଜାଗ୍ରତ ହେଲେ ତା ପାଖକୁ କୃଷ୍ଣ ପଠାଇ ଦିଅନ୍ତି ସାଧୁ, ବୈଷ୍ଣବ କୃଷ୍ଣ କଥା ଶୁଣାଇବା ଲାଗି । ପରୀକ୍ଷିତ ଏହାର ଏକ ପ୍ରକୃଷ୍ଟ ପ୍ରମାଣ । ଚତୁର୍ଥ କାରଣ ସ୍ୱର୍ଗ ଅମୃତ ମିଳେ ଜୀବ ମଲା ପରେ ଦେବତା ଜନ୍ମ ପ୍ରାପ୍ତ ହେଲେ । କଥାମୃତ କିନ୍ତୁ ମିଳୁଥାଏ ଜୀବନ ଥାଉ ଥାଉ । ପୁଣି ମଲା ପରେ ମଧ୍ୟ କୃଷ୍ଣ କଥା ବ୍ୟବସ୍ଥା କରନ୍ତି ତାକୁ ପୁଣି ବୈଷ୍ଣବ ଘରେ ଜନ୍ମ ଦିଆଇ । ଏହା କ'ଣ କମ୍ ଗୌରବର କଥା ।

ଏ ଶ୍ଳୋକର ଆହୁରି ଏକ ବିଲକ୍ଷଣ ଅର୍ଥ ଅଛି । ଯାହା ସଂପୂର୍ଣ୍ଣ ଓଲଟ ବ୍ୟାଖ୍ୟା । କୃଷ୍ଣ କଥାର ନିନ୍ଦା । ତବକଥାମୃତଂ ଅର୍ଥ କୃଷ୍ଣ କଥା ଶୁଣିବା ଲୋକ ମରଣକୁ ବରଣ କରେ । ସଂସାର ପାଇଁ ତାର ମୃତ୍ୟୁ ଘଟେ । କେବଳ କୃଷ୍ଣ ଓ କୃଷ୍ଣ ଭକ୍ତଙ୍କ ସେବା ପାଇଁ ସେ ବଞ୍ଚିରହେ । ତପ୍ତ ଜୀବନର ଅର୍ଥ କୃଷ୍ଣ କଥା ଶ୍ରବଣ ସୁଯୋଗ ନମିଳିଲେ ସେ ଛାଟି ପିଟି ହୁଏ ଠିକ୍ ତାତିଲା କଡ଼େଇରେ ପଡ଼ିବା ଭଳି । ସେଇ ତ କୃଷ୍ଣଙ୍କୁ ପାଇବା ହରାଇବା ଜନିତ ଦିବ୍ୟ ଅନୁଭବ ଯାହାର ଟେର ସୁଦ୍ଧା ବିଷୟୀ ଜୀବ ପାଏନା କର୍ମକାଣ୍ଡ ଜ୍ଞାନ କାଣ୍ଡ ମାଧ୍ୟମରେ । କୃଷ୍ଣ କଥା ଶୁଣିଲେ ମଙ୍ଗଳ ହିଁ ମଙ୍ଗଳ ହୁଏ ଜୀବର । ଶ୍ରୀମତ୍ ଆତତଂ ଅର୍ଥ କିଛି ବୈଷ୍ଣବ ଧନୀ ଲୋକମାନେ ଧନର ସଦୁପଯୋଗ କରି ଏହାର ପ୍ରଚାର ପ୍ରସାର ଭାଗବତ ସପ୍ତାହ ଆଦି କରନ୍ତି ଏବଂ କରାନ୍ତି । ସଂସାରରେ ଅନ୍ନ ଦାନ, ବସ୍ତ୍ର ଦାନ, ବିଦ୍ୟାଦାନ ଆଦି ପୁଣ୍ୟ କର୍ମ ଅବଶ୍ୟ ।

କୃଷ୍ଣ କଥା କୀର୍ତ୍ତନ ରୂପୀ ଦାନ କିନ୍ତୁ ଏକ ମହାଦାନ । ସେହିଭଳି ଭକ୍ତି, ପ୍ରେମର ଦାତା ପ୍ରବଚକ କେବଳ ଭୂରିଦା ଜନା । ଅନ୍ନ, ବସ୍ତ୍ର, ସ୍ୱର୍ଣ୍ଣ, ଭୂମି, ଗୋଦାନ, କେବଳ ମାତ୍ର ଦାନ । ଭୂରିଦା (ପ୍ରଚୁର) ଦାନ ନୁହେଁ ।

ପ୍ରଶ୍ନ-୧୦: ଠାକୁରଜୀଙ୍କ ବିରହରେ ଗୋପୀମାନେ ତାଙ୍କର ହସ (ପ୍ରହସିତଂ) ସ୍ନେହପୂର୍ଣ୍ଣ କଟାକ୍ଷ (ପ୍ରେମ ବୀକ୍ଷଣଂ), ଲବଣୀ ଚୋରୀ, ଗୋପନ ସ୍ଥାନରେ କଥା ବାର୍ତ୍ତା (ରହସି ସଂବିଦୋ) ମାଠିଆ ଭଙ୍ଗା ଇତ୍ୟାଦି ଲୀଳା (ବିହରଣଂ) ଆଦିକୁ ସ୍ମରଣ କରି ହୃଦୟକୁ ଶୁଦ୍ଧ କରିବାରେ ଆନନ୍ଦ ପ୍ରାପ୍ତ ହେଉଥିଲେ । ତେବେ ସେମାନେ କୃଷ୍ଣଙ୍କୁ ଛଳିଆ କପଟୀ (କୁହକ) ବୋଲି କାହିଁକି କହିଲେ ?

**ପ୍ରହସିତଂ ପ୍ରିୟ ପ୍ରେମବୀକ୍ଷଣଂ**
**ବିହରଣଂ ଚ ତେ ଧ୍ୟାନମଙ୍ଗଳମ୍ ।**
**ରହସି ସଂବିଦୋ ଯାହୃଦି ସ୍ପୃଶଃ**
**କୁହକ ନୋ ମନ କ୍ଷୋଭୟନ୍ତି ହି ।।୧୦।।**

ଉ. ମନ୍ଦ ଉଦ୍ଦେଶ୍ୟ ରଖି ଭଲ ବ୍ୟବହାର ଦେଖାଇବାକୁ ସଂସାରରେ ଛନ୍ଦ କପଟ କୁହାଯାଏ । ସଂସାରକୁ ମନ୍ଦ ଜଣାଇ ଭଲ ଉଦ୍ଦେଶ୍ୟ ରଖି ଭଗବାନ ଲୀଳା କରିବା ମଧ୍ୟ ଏକ ପ୍ରକାର କପଟତା ବା ଛଳ ଅଟେ । ଗୋପୀମାନେ ତେଣୁ ସଂସାରକୁ ଲୁଚାଇ କୃଷ୍ଣଙ୍କୁ ପ୍ରେମ କରିବା ଏକ ବନ୍ଦନୀୟ ପ୍ରେମ ପରମ୍ପରା । ସଂସାରୀ ବୁଦ୍ଧିର ଅଗମ୍ୟ ଏହି କପଟତା । ତାହାହିଁ ଗୋପୀମାନଙ୍କ ମନକୁ ଆନ୍ଦୋଳିତ କରୁଥିଲା (କ୍ଷୋଭୟନ୍ତି) ନିଶ୍ଚିତ ରୂପରେ (ହି) ।

ପ୍ରଶ୍ନ-୧୧: ଶୁକଦେବଜୀ ଗୋପୀମାନଙ୍କର ମନର କ୍ଷୋଭର କି କି ଦୃଷ୍ଟାନ୍ତ ସବୁ ଦେଲେ ?

**ଚଳସି ଯଦ୍ ବ୍ରଜାତ୍ ଚାରୟନ୍ ପଶୂନ୍**
**ନଳିନ ସୁନ୍ଦରଂ ନାଥ ତେ ପଦମ୍ ।**
**ଶିଳ ତୃଣ-ଅଙ୍କୁରୈଃ ସୀଦତି-ଇତି ନଃ**
**କଲିଲତାଂ ମନଃ କାନ୍ତ ଗଚ୍ଛତି ।।୧୧।।**

ଉ. ଶ୍ରୀକୃଷ୍ଣଙ୍କର ହୃଦୟ ଯେତିକି କୋମଳ ତାଙ୍କର ଚରଣ ମଧ୍ୟ ପଦ୍ମ ସଦୃଶ ଅତୀବ କୋମଳ । ଖାଲି ପାଦରେ ଠାକୁରଜୀ ଗୋ ଚାରଣକୁ ଯିବା ଗୋପୀମାନେ

ଦେଖନ୍ତି । କୋମଳ ଟିକି ଟିକି ପାଦରେ କଠିନ ଗୋଡ଼ି ପଥର, କଣ୍ଟା ଝଣ୍ଟା ବାଜି ତାଙ୍କୁ ଅସହ୍ୟ କଷ୍ଟ ହେଉଥିବା କଥାଟି ସେ ବାରମ୍ବାର ଭାବୁଛନ୍ତି । ତାଙ୍କ ମନ ଆନ୍ଦୋଳିତ (ସୀଦତି) ହେଉଛି । ଦୁଃଖରେ ବ୍ୟାକୁଳିତ (କଲିଳତାଂ) ମଧ୍ୟ ହେଉଛି ।

କାନ୍ତ କୁହାଯାଏ ଯେଉଁ ପଦର ଶେଷରେ କ ବର୍ଣ୍ଣ ଥାଏ (କ ଯୁକ୍ତ ଅନ୍ତ) । ଏଠାରେ ଅନ୍ତକ ଯମ ଶବ୍ଦକୁ ନିଆଯାଇଛି । ଗୋପୀମାନେ କହୁଛନ୍ତି, 'ହେ ପ୍ରିୟତମ । ଯମ ଆସୁଛି ଆମକୁ ମାରିବାକୁ । ସେ ଦେଖୁଛି ଆମେ କୃଷ୍ଣ ବିରହରେ ମୃତ୍ୟୁ ଯନ୍ତ୍ରଣା ଠାରୁ ଅଧିକ ଦୁଃଖ ଭୋଗୁଛୁ । ଯମର ବୁଦ୍ଧି ହଜି ଯାଉଛି । ଏମାନଙ୍କୁ ନେଇ ନରକରେ ଆଉ ଅଧିକ କି ଯନ୍ତ୍ରଣା ଦେଇ ପାରିବି । ସୁତରାଂ ସେ ଆମକୁ ନନେଇ ଫେରି ପଳାଉଛି ।''

ପ୍ରଶ୍ନ-୧୨ : ବୈଷ୍ଣବ ମତରେ ରାସକ୍ରୀଡ଼ା କାମ ବର୍ଦ୍ଧକ ଲୀଳା ନୁହେଁ ବରଂ କାମ ବିନାଶକ ବା ବିମର୍ଦ୍ଦକ ଲୀଳା । କୃଷ୍ଣଙ୍କର କେଉଁ ଦିବ୍ୟରୂପକୁ ସ୍ମରଣ କରି ଗୋପୀମାନେ କନ୍ଦର୍ପ ପୀଡ଼ା (ସ୍ମର ଯଚ୍ଛସି) ପାଉଥିଲେ ?

**ଦୀନ ପରିକ୍ଷୟେ ନୀଳକୁନ୍ତଳୈଃ**
**ବନରୁହ-ଆନନଂ ବିଭ୍ରତ୍-ଆବୃତମ୍ ।**
**ଘନ ରଜସ୍ୱଲଂ ଦର୍ଶୟନ୍ ମୁହୁଃ**
**ମନସି ନଃ ସ୍ମରଂ ବୀର ଯଚ୍ଛସି ।।୧୨।।**

ଉ. ସଂସାରରେ ବ୍ରହ୍ମା-ଶଙ୍କର ଆଦି ସମସ୍ତେ ଡ଼ରନ୍ତି କାମ ଦେବତା ବା କନ୍ଦର୍ପକୁ । ସେ ମୁନି, ଋଷି, ଦେବତା ବା ରାଜା ଯେ ବି ହେଉ । ଏହି ରାସକ୍ରୀଡ଼ା ମାଧ୍ୟମରେ ଶ୍ରୀକୃଷ୍ଣ ଦେଖାଇ ଦେଇଛନ୍ତି ସେ କେବଳ କାମଜୟୀ । ତେଣୁ ଗୋପୀମାନେ ତାଙ୍କୁ ଏଠାରେ ବୀର ବୋଲି ସମ୍ବୋଧନ କରିଛନ୍ତି ।

ଗୋଧୂଳି ସମୟ (ଦିନ ପରିକ୍ଷୟେ) ହୋଇଛି । ଗୋଷ୍ଠ ବାହୁଡ଼ା ବେଳର ଦୃଶ୍ୟ । ତାଙ୍କ ପଦ୍ମ ମୁଖ (ବନରୁହ-ଆନନଂ) ନୀଳ କୁନ୍ତଳରେ ଘୋଡ଼େଇ ହୋଇ ଯାଉଛି । ସେ କୁନ୍ତଳ ପୁଣି ଗୋଧୂଳି ରଞ୍ଜିତ । ଏହି ଅଲୌକିକ ଦୃଶ୍ୟ ବାରମ୍ବାର (ମୁହୁଃ) ମନେ ପକାଇ ଗୋପାଙ୍ଗନାମାନେ କାମକୁ ଧୀକ୍କାର କରିଛନ୍ତି । କାରଣ ସେମାନେ ଏବେ କୋଟି କନ୍ଦର୍ପ ମୋହନ କଳାକାହ୍ନୁଙ୍କ ଶରଣାଗତ । କୃଷ୍ଣପ୍ରେମ କବଚ ଧାରଣ କରିଛନ୍ତି ସେମାନେ ମନରେ ଓ ବୁଦ୍ଧିରେ । କବଚଟି ହେଲା କୃଷ୍ଣରୂପ ଧ୍ୟାନ ।

ପ୍ରଶ୍ନ-୧୩: ପୂର୍ବ ଶ୍ଳୋକରେ ବର୍ଣ୍ଣନା ହେଲା ଯେ ଗୋପାଙ୍ଗନାମାନେ କାମ ପୀଡ଼ିତା । ଏହା ନିଶ୍ଚିତ ରୂପରେ ଭୌତିକ କନ୍ଦର୍ପ ପୀଡ଼ା ବା କାମନା ନୁହେଁ ।

ଠାକୁରଜୀଙ୍କ ସହିତ ଦିବ୍ୟ ଶୃଙ୍ଗାରର କାମନା । ସୁତରାଂ ଏ ରାସକ୍ରୀଡ଼ା ସ୍ଥଳୀକୁ ଏବେ ବ୍ରଜମଣ୍ଡଳର ରମଣରେତି କୁହାଯାଏ । ଏଥିପାଇଁ ନନ୍ଦ ନନ୍ଦନଙ୍କୁ ସେମାନେ ରାଧାରମଣ ବୋଲି ସମ୍ବୋଧନ କଲେ । ରମଣ ବିହାରୀଙ୍କ ଚରଣ କମଳର କେଉଁ କେଉଁ ଗୁଣ ବାଛୁନିଲେ ସେମାନେ ?

**ପ୍ରଣତ କାମଦଂ ପଦ୍ମଜା-ଅର୍ଚ୍ଚିତଂ**

**ଧରଣି ମଣ୍ଡନଂ ଧ୍ୟେୟଂ ଆପଦି ।**

**ଚରଣ ପଙ୍କଜଂ ଶନ୍ତମଂ ଚ ତେ**

**ରମଣ ନଃ ସ୍ତନେଷ୍ୱ-ଅର୍ପୟ-ଆଧିହନ୍ ॥୧୩॥**

ଉ. ଠାକୁରଜୀଙ୍କର ଦିବ୍ୟ ଚରଣ କମଳ ଶରଣାଗତି ଭକ୍ତର ବାଞ୍ଛା ପୂରଣକାରୀ (କାମଦଂ), ମହାଲକ୍ଷ୍ମୀଙ୍କ ପୂଜିତ (ପଦ୍ମଜା ଅର୍ଚ୍ଚିତଂ) ବା ବ୍ରହ୍ମାଜୀଙ୍କ ଅର୍ଚ୍ଚନୀୟ (ପଦ୍ମଜ-ଅର୍ଚ୍ଚିତଂ), ମର୍ତ୍ତ୍ୟଲୋକର ଶୋଭା (ଧରଣି ମଣ୍ଡନଂ), ଜୀବର ବିପଦ ଆପଦ ସମୟରେ ସ୍ମରଣୀୟ (ଧ୍ୟେୟଂ ଆପଦି) ଓ ଜୀବନ ଜଞ୍ଜାଳରେ ପରମ ଶାନ୍ତି ଦେବା ବାଲା (ଶନ୍ତମଂ) । ସେଥିଲାଗି ଗୋପୀମାନେ ତାଙ୍କ ଚରଣ କମଳକୁ ନିଜ ବକ୍ଷରେ ସ୍ଥାପନ କରିବାକୁ କାମନା ପ୍ରକଟ କରିଛନ୍ତି ।

ପ୍ରଶ୍ନ-୧୪ : ଅମୃତ ଦ୍ୱିବିଧ । ସ୍ୱର୍ଗ ଅମୃତ ଦିଏ ଦୀର୍ଘ ଜୀବନ । ଯାହା ସମୁଦ୍ର ମନ୍ଥନରୁ ମିଳିଥିଲା । ଦେବ ଦାନବ ଉଭୟଙ୍କ କଠୋର ସାଧନାରୁ ପ୍ରାପ୍ତ ହେବାରୁ ତାହା ଧରା ଅମୃତ । ଦ୍ୱିତୀୟ ଅମୃତ ହେଉଛି ଅଧରା-ଅମୃତ ବା ଠାକୁରଜୀଙ୍କ ଅଧର-ଅମୃତ । ଗୋପ ଲଳନାମାନେ ଚାହାନ୍ତିନି ଦୀର୍ଘ ଜୀବନ । ବରଂ ଚାହାନ୍ତି ଦିବ୍ୟ ଜୀବନ । ସେମାନେ ଏ ଅମୃତରେ କି କି ଗୁଣସବୁ ଦର୍ଶନ କରିଥିଲେ ?

**ସୁରତ ବର୍ଦ୍ଧନଂ ଶୋକନାଶନଂ**

**ସ୍ୱରିତ ବେଣୁନା ସୁଷ୍ଠୁ ଚୁମ୍ବିତମ୍ ।**

**ଇତର ରାଗ ବିସ୍ମାରଣଂ ନୃଣାଂ**

**ବିତର ବୀର ନଃ ତେଽଧରାମୃତମ୍ ॥୧୪॥**

ଉ. ଅଧରା ଅମୃତ ବା ଅଲୌକିକ ଅମୃତ ଦିବ୍ୟପ୍ରେମ ବର୍ଦ୍ଧକ (ସୁରତ ବର୍ଦ୍ଧନଂ), ଜୀବର ତ୍ରିତାପ ନାଶକ (ଶୋକନାଶନଂ), ମୋହନ ବେଣୁ ଦ୍ୱାରା ଏହା· ନିରନ୍ତର ଆସ୍ୱାଦିତ (ସୁଷ୍ଠୁ ଚୁମ୍ବିତମ୍) ଓ ସଂସାରର, ସ୍ୱର୍ଗର, ବ୍ରହ୍ମଲୋକର ଆକର୍ଷଣକୁ ମଧ୍ୟ ମ୍ଳାନ କରିବା ବାଲା (ଇତର ରାଗ ବିସ୍ମାରଣ ନୃଣାଂ) । ଅତଏବ ସେମାନେ

କରବଦ୍ଧ ପ୍ରାର୍ଥନା କରିଛନ୍ତି ଗୋବିନ୍ଦଙ୍କଠାରେ ଏହାକୁ ତାଙ୍କ ମଧ୍ୟରେ ବିତରଣ କରିବାକୁ (ବିତର) । ଧନ୍ୟ ସେଇ ବ୍ରଜର ବେଣୁ, ବ୍ରଜର ଧେନୁ ଓ ବ୍ରଜର ରେଣୁ !!!

ପ୍ରଶ୍ନ-୧୫: ସକାଳ ସଞ୍ଜରେ ଗୋପୀମାନେ ଦର୍ଶନ କରିବା ସୁଯୋଗ ପାଉଥିଲେ ଗୋବିନ୍ଦଙ୍କର । ଦିନ ସାରା ଗୋବିନ୍ଦ ବୃନ୍ଦାବନର ଦ୍ୱାଦଶ ବନରେ ଗୋଚାରଣ ଲୀଳାରେ ବୁଲନ୍ତି (ଅହ୍ନି କାନନଂ) । କେଉଁ କାରଣ ହେତୁ ସେମାନେ ସୃଷ୍ଟି କର୍ତ୍ତାଙ୍କ ଠାରେ ମୂର୍ଖାମୀ (ଜଡ଼) ଦର୍ଶନ କଲେ ?

**ଅଟତି ଯଦ୍ ଭବାନ୍-ଅହ୍ନି କାନନଂ**

**ତ୍ରୁଟିଃ ଯୁଗାୟତେ ତ୍ୱାଂଅପଶ୍ୟତାମ୍ ।**

**କୁଟିଳ କୁନ୍ତଳଂ ଶ୍ରୀମୁଖଂ ଚ ତେ**

**ଜଡ଼ ଉଦୀକ୍ଷତାଂ ପକ୍ଷ୍ମକୃତ୍ ଦୃଶାମ୍ ॥୧୫॥**

ଉ. ସକାଳ ସଞ୍ଜ ମଧ୍ୟରେ ଦୀର୍ଘ ବାର ଘଣ୍ଟା ବ୍ୟବଧାନ । ଠାକୁରଜୀଙ୍କ ଦିବ୍ୟ ମୁଖ ଅବଲୋକନ କରିବାକୁ ଗୋପୀମାନେ ଅତୀବ ବ୍ୟାକୁଳ । ସେଥିରେ ପୁଣି ବିଘ୍ନ କରୁଛି ଠାକୁରଜୀଙ୍କ ମସ୍ତକର ଦିବ୍ୟ କେଶ । ତାକୁ ଗାଳି କଲେ କୁଟିଳ ପଦଦ୍ୱାରା । ବ୍ରହ୍ମାଙ୍କ ମୂର୍ଖ କହିଲେ ସେ କାହିଁକି ଗୋପୀଙ୍କ ନେତ୍ରମାନଙ୍କରେ ପଲକ ଖଞ୍ଜିଲେ । କାରଣ ସେ ମଧ୍ୟ ପ୍ରିୟତମଙ୍କ ଅପଲକ ଦର୍ଶନରେ ବାଧକ ସାଜୁଛି ପରା ।

ପ୍ରଶ୍ନ-୧୬: ଗୋପାଙ୍ଗନାମାନେ ଚାରି ଦଉଡ଼ି (ଧର୍ମ-ଅର୍ଥ-କାମ-ମୋକ୍ଷ) ବନ୍ଧନ କଟା । ସେମାନେ ଗୋବିନ୍ଦ ଦର୍ଶନ ପାଇଁ ନିଜ ନିଜର ପତି, ସୁତ, ବନ୍ଧୁ, ପରିଜନ ମାନଙ୍କ ବାରଣ ମାନି ନାହାନ୍ତି । ଉପେକ୍ଷା କରି (ଅତି ବିଲଂଙ୍ଘ୍ୟ) । ଗୋବିନ୍ଦଙ୍କ ପ୍ରେମ ପାଇଁ ପାଗଳୀ ହୋଇ ବନକୁ ଆସିଛନ୍ତି । ତାହା ପୁଣି କୌଣସି ସଂସାରୀ ଜାର ପୁରୁଷ ପାଖକୁ ନୁହେଁ । ଆଜନ୍ମ ବ୍ରହ୍ମଚାରୀ (ଅଚ୍ୟୁତ) ବ୍ରତଧାରୀ ଭଗବାନ ରାସ ବିହାରୀଙ୍କ ନିକଟକୁ । ଆକର୍ଷଣର ହେତୁ ଦିବ୍ୟ ବଂଶୀ ସ୍ୱର ତାଙ୍କୁ ମୋହିତ କରିଛି । ତେବେ କେଉଁ କାରଣରୁ ସେମାନେ ଶ୍ୟାମ ସୁନ୍ଦରଙ୍କୁ କପଟୀ କହି ନିନ୍ଦା କଲେ ?

**ପତି ସୁତା-ଅନ୍ୱୟ ଭ୍ରାତୃ ବାନ୍ଧବାନ୍**

**ଅତିବିଲଙ୍ଘ୍ୟ ତେଽଚ୍ୟୁତ-ଆଗତାଃ ।**

**ଗତିବିଦଃ ତବ-ଉଦ୍‌ଗୀତ ମୋହିତାଃ**

**କିତବ ଯୋଷିତଃ କଃ ତ୍ୟଜେତ୍ ନିଶି ॥୧୬॥**

ଉ. ଶରତ ପୂର୍ଣ୍ଣିମାର ମଧ୍ୟ ରାତ୍ରୀରେ ଭଗବାନଙ୍କ ଦିବ୍ୟ ମୁରଲୀ ବାଜିଛି । ସଂସାରର ସକଳ ଆକର୍ଷଣ, ପିତା ପତିଙ୍କ ଆକଟ ଗୋପଲଲନାମାନେ ମାନି ନାହାନ୍ତି । ଏକ ଆରେକକୁ ନ ଜଣାଇ ଏକ ମୁହାଁ ହୋଇ ଦୌଡ଼ିଛନ୍ତି । ସତେ ଯେପରି ମୁରଲୀ କେବଳ ସେଇ ଗୋଟିକ ନାମ ଧରି ତାଙ୍କୁ ଗୋବିନ୍ଦ ମିଳନ ପାଇଁ ଡ଼ାକୁଛି । ଏପରି ସ୍ଥଳେ ତାଙ୍କର ସଦ୍‌ଗତି ହେବ କି ଦୁର୍ଗତି ହେବ ସେମାନଙ୍କୁ ଜଣା ନଥିଲା । ଶ୍ରୀକୃଷ୍ଣଙ୍କ ଉପରେ ସେମାନେ ପୁରା ଭରସା କରିଛନ୍ତି ସେ ସଂସାରର ହର୍ତ୍ତା କର୍ତ୍ତା ଓ ଦୈବ ବିଧାତା । ସେମାନଙ୍କ ପତିଙ୍କର ପତି ପରମ ପତି ଓ ଗତି (ଗତିବିଦ୍) ।

ଭଗବାନଙ୍କୁ ବୈଦିକ ସାହିତ୍ୟ ସତ୍ୟ ସଂକଳ୍ପ କହନ୍ତି । ଶରଣାଗତକୁ ଦୂରେଇ ନ ଦେବା ତାଙ୍କର ବଜ୍ର ନିର୍ଘୋଷ ବାଣୀ । ସେ ପରିସ୍ଥିତିରେ ଗୋବିନ୍ଦ ଆଜି ସେମାନଙ୍କୁ ତ୍ୟାଗ କାହିଁକି କରିଛନ୍ତି ବୋଲି ବୁଝିପାରୁନାହାନ୍ତି ନିଜ ନିଜର କ୍ଷୁଦ୍ର ମସ୍ତିଷ୍କରେ । ଲୌକିକ ବୁଦ୍ଧିରେ ସେମାନେ ଜଣେ ଜଣେ ସୁନ୍ଦରୀ ନାରୀ (ଯୋଷିତ୍) ଏବଂ ଶ୍ରୀକୃଷ୍ଣ ଜଣେ ସୁନ୍ଦର ଲମ୍ପଟ ପୁରୁଷ । ଜଣେ ସୁନ୍ଦରୀ ନାରୀକୁ କସ୍ମିନ୍ କାଳେ ଲମ୍ପଟ ପୁରୁଷ ଦୂରେଇ ନଥାଏ । ସୁତରାଂ କୃଷ୍ଣ ତାଙ୍କୁ ଛାଡ଼ି ପଳାଇ ଯାଇଥିବାରୁ ତାଙ୍କୁ ଛଳନାକାରୀ, ଅଭିନୟକାରୀ, କପଟୀ (କିତବ) କହିଛନ୍ତି । ବ୍ୟାଜ ସ୍ତୁତି ଅଳଂକାରର ଏହା ଏକ ସୁନ୍ଦର ଦୃଷ୍ଟାନ୍ତ । ଉପରେ ଉପରେ ନିନ୍ଦା ସିନା ଭିତିରି ଉଦ୍ଦେଶ୍ୟ ପ୍ରଶଂସା ।

ପ୍ରଶ୍ନ-୧୭: ଗୋପୀ ଗୋପୀନାଥଙ୍କର ବ୍ରଜମଣ୍ଡଳର ଦାଣ୍ଡରେ ହାଟରେ ଅନେକ ଥଟ୍ଟା, ମଜ୍ଜା, ହାସ ପରିହାସ ଚାଲେ । ତଥାପି ଉଭୟଙ୍କ ମନ ପୂରେନା । ଏକାନ୍ତ ସ୍ଥାନରେ କିଛି କିଛି ଗୋପନୀୟ କଥାବାର୍ତ୍ତା ମଧ୍ୟ ଚାଲେ । ସେ କଥାର ମର୍ମ ଅନଧିକାରୀ ଗୋପବାସୀ କାହୁଁ ଜାଣିବେ ? ଗୋପୀମାନେ ନିଜ ନିଜର ଭକ୍ତି ଶକ୍ତି ବଳରେ ଜାଣିପାରିଥିଲେ କୃଷ୍ଣ ହେଉଛନ୍ତି ଗୋଲୋକ ବିହାରୀ ଭଗବାନ । ତାଙ୍କ ପ୍ରଶସ୍ତ ବକ୍ଷସ୍ଥଳ (ବୃହତ୍‌ଉର) ଦେଖନ୍ତେ ମନେ ପଡ଼ିଛନ୍ତି ମହାଲକ୍ଷ୍ମୀ (ଶ୍ରୀୟୋ) ଯେ ବିଷ୍ଣୁ ବକ୍ଷ ବିହାରିଣୀ । ଦୁହିଁଙ୍କର ହସ କୌତୁକର ସ୍ଥାନ । ଏ ଦୁଇ କଥା ବ୍ୟତୀତ ଆଉ କ'ଣ କ'ଣ ମନେ ପକାଇ ଗୋପୀମାନେ କୃଷ୍ଣ ଦର୍ଶନ ଲାଗି ତୀବ୍ର ଲାଳସା (ଅତିସ୍ପୃହା) କଲେ ?

**ରହସି ସଂବିଦଂ ହୃତ୍-ଶୟ-ଉଦୟଂ**
**ପ୍ରହସିତ-ଆନନଂ ପ୍ରେମ ବୀକ୍ଷଣମ୍ ।**
**ବୃହତ୍ ଉରଃ ଶ୍ରୀୟୋ ବୀକ୍ଷ ଧାମ ତେ**
**ମୁହୁଃ ଅତିସ୍ପୃହା ମୁହ୍ୟତେ ମନଃ ॥୧୭॥**

ଉ. କୃଷ୍ଣଙ୍କର ହସ ହସ ବଦନ (ପ୍ରହସିତ-ଆନନଂ) ଓ ପ୍ରେମପୂର୍ଣ୍ଣ କଟାକ୍ଷ (ପ୍ରେମ ବୀକ୍ଷଣଂ) ଗୋପାଙ୍ଗନାମାନଙ୍କ ମନକୁ ସଂପୂର୍ଣ୍ଣ ମୋହିତ କରିଦେଇଛି ।

ପ୍ରଶ୍ନ-୧୮: ମୃତ୍ୟୁ ଲୋକରେ ଜୀବ ମାତ୍ରେ ଦୁଃଖୀ ବା ପାପୀ । ଭଗବାନଙ୍କର ଲୀଳା ମାଧୁରୀ ଓ ରୂପ ମାଧୁରୀ ସେ ପାପ, ଦୁଃଖ, ସନ୍ତାପ (ବୃଜିନ) ହରଣ କରିବାକୁ (ହନ୍ତୀ) ମହୌଷଧିର କାମ ଦିଏ । ସୁତରାଂ ତାଙ୍କ ନାମ ବିଶ୍ୱମଙ୍ଗଳ । ଅନ୍ୟ ବୃନ୍ଦାବନବାସୀ (ବନ ଓକସାଂ) ଦିନ ସାରା କୃଷ୍ଣଙ୍କ ସାନିଧ ପ୍ରାପ୍ତ ହୋଇ ଅନେକ ଲାଭାନ୍ୱିତ ହେଉଛନ୍ତି । ଗୋପୀମାନେ କିନ୍ତୁ ସଂସାର ଜଞ୍ଜାଳରେ ଦୁଃଖୀ । ସେମାନେ ଅବଶ୍ୟ ସଂସାରୀ ଦ୍ରବ୍ୟ ଅଭାବରେ ଦୁଃଖୀ ନୁହନ୍ତି । ଦୀର୍ଘ ସମୟ କୃଷ୍ଣ ବିରହରେ କେବଳ ଦୁଃଖୀ । ସୁତରାଂ ସନ୍ତାପିତ ପ୍ରାଣକୁ ଶୀତଳ କରିବାକୁ ସେମାନେ ରାସ ବିହାରୀଙ୍କ ଠାରୁ କ'ଣ ପାଇବାକୁ ନିବେଦନ କରିଛନ୍ତି ?

**ବ୍ରଜ ବନ-ଓକସାଂ ବ୍ୟକ୍ତିଃ ଅଙ୍ଗ ତେ**
**ବୃଜିନ ହନ୍ତୀ-ଅଳଂ ବିଶ୍ୱମଙ୍ଗଳମ୍ ।**
**ତ୍ୟଜ ମନାକ୍ ଚ ନଃ ତ୍ୱତ୍ ସ୍ପୃହା-ଆତ୍ମନାଂ**
**ସ୍ୱଜନ ହୃଦ୍ ରୁଜାଂ ଯତ୍ ନିଷୂଦନମ୍ ॥୧୮॥**

ଉ. କୃଷ୍ଣ ଅଦର୍ଶନରେ ସେମାନେ ଆଧି-ବ୍ୟାଧି ଜର୍ଜରିତା । ଏହାର ଏକମାତ୍ର ଔଷଧ କେବଳ ପ୍ରିୟତମ କୃଷ୍ଣଙ୍କ ଦର୍ଶନ । ଗୋପୀମାନେ ଟିକିଏ (ମନାକ୍) ସେଇ ଦର୍ଶନର ଝଲକ୍ ପ୍ରାର୍ଥନା କରିଛନ୍ତି (ତ୍ୟଜ) ଯାହା ଭକ୍ତମାନଙ୍କ (ସ୍ୱଜନ ହୃଦ୍‌ରୁଜାଂ) ଚିତ୍ତ ପ୍ରସନ୍ନ କରିପାରିବ (ଯତ୍ ନିଷୂଦନଂ) ।

ପ୍ରଶ୍ନ-୧୯: ଗୋପୀଗୀତ ପ୍ରସଙ୍ଗରେ ପୂର୍ବବର୍ତ୍ତୀ ଅଠର ଶ୍ଳୋକରେ ଅଠର ଜଣ ଭିନ୍ନ ଭିନ୍ନ ଗୋପୀ ପ୍ରେମ ପ୍ରଦାତ୍ତା ଶିରୋମଣି କୃଷ୍ଣଙ୍କର ଦର୍ଶନ ଲାଳସା ବ୍ୟକ୍ତ କରିଛନ୍ତି ତାଙ୍କର ଦିବ୍ୟ ଗୁଣ, ଲୀଳା ଆଦିର ସ୍ମରଣ କରି କରାଇ ।

ପରିଶେଷରେ ଏ ଅଧ୍ୟାୟର ଏହି ଶେଷ ଶ୍ଳୋକରେ ସେମାନେ ଶ୍ରୀକୃଷ୍ଣଙ୍କର ସଂପୂର୍ଣ୍ଣ ଶରଣାଗତି ଆଦରି ନେଇଛନ୍ତି । ସାଧନ ଶୂନ୍ୟା ହୋଇଯାଇ ରାଗାନୁଗା ପ୍ରେମ ଅନୁରାଗିଣୀ ହୋଇଛନ୍ତି । ସେମାନଙ୍କର ଏକମାତ୍ର ଲାଳସା କୃଷ୍ଣ ଦର୍ଶନ ଲାଗି ଲାଳସା ବୃଦ୍ଧି ପ୍ରାପ୍ତ ହେଉ । ଦର୍ଶନ ମିଳୁ କି ନ ମିଳୁ ସେଥିପାଇଁ ସେମାନେ ସଂପୂର୍ଣ୍ଣ ନିସ୍ପୃହ । ଗୋପୀମାନେ ପ୍ରେମ ସନ୍ନ୍ୟାସିନୀ ପରୀକ୍ଷାରେ କୃତକାର୍ଯ୍ୟ ହେଲେ ବୋଲି କେଉଁ କେଉଁ ସଙ୍କେତରୁ ଗୋବିନ୍ଦ ବୁଝିନେଲେ ?

**ଯତ୍ ତେ ସୁଜାତ ଚରଣ-ଅମ୍ବୁରୁହଂ ସ୍ତନେଷୁ**
**ଭୀତାଃ ଶନୈଃ ପ୍ରିୟ ଦଧୀମହି କର୍କଶେଷୁ ।**
**ତେନ-ଅଟବୀଂ ଅଟସି ତଦ୍‌ବ୍ୟଥତେ ନ କିଂ ସ୍ୱିତ୍**
**କୂର୍ପ-ଆଦିଭିଃ ଭ୍ରମତି ଧୀଃ ଭବଦ୍ ଆୟୁଷାଂ ନଃ ॥୧୯॥**

ଉ. ଏହି ଶ୍ଲୋକରେ ମର୍ମ ବୁଝିବା ପରେ ଗୋବିନ୍ଦ ଗୋପୀଙ୍କୁ ଦର୍ଶନ ଦେବାକୁ ବାଧ୍ୟ ହୋଇଛନ୍ତି । କାରଣ ଶ୍ଳୋକଟି ମହାରାସ କ୍ରୀଡ଼ାରେ ଏକ ଟର୍ଣ୍ଣିଂ ପଏଣ୍ଟ । ସେମାନଙ୍କର ଦାବୀ (ଆମେ ମହାରାସର ପ୍ରକୃତ ଅଧିକାରିଣୀ) ଭଗବାନ ମାନି ନେଇଛନ୍ତି । ଗୋପାଙ୍ଗନାମାନେ କିଛି ସାଧାରଣ ନାରୀ ନଥିଲେ । ଅନେକ ଗୋପୀ ବେଦ ମନ୍ତ୍ରରୂପା । ଏ ଶ୍ଳୋକ ଶୁଣାଇ ସାରିବା ପରେ ସେମାନଙ୍କର ବାଣୀ ବିଶ୍ରାମ ନେଇଛନ୍ତି । ଅନ୍ୟ କିଛି କହିବାକୁ ବାକ୍‌ଦେବୀ ସରସ୍ୱତୀ ମଧ୍ୟ କୁଣ୍ଠିତ ହୋଇଛନ୍ତି ।

ଗୋପୀମାନେ ବିନା ଦ୍ୱିଧାରେ କହି ପକାଇଲେ, ‘‘ହେ ରସିକ ଶେଖର ଶ୍ରୀକୃଷ୍ଣ, ଆପଣ ଆମ ମାନଙ୍କର ଜୀବନର ଜୀବନ (ଭବଦ୍ ଆୟୁଷାଂ) । ଆପଣ ଆପଣଙ୍କର ସୁକୋମଳ ପାଦ କମଳକୁ ନଗ୍ନ ରଖି ଗୋଚାରଣ କରିବାକୁ ଯାଉଛନ୍ତି । ବଣ ଜଙ୍ଗଲର ଗୋଡ଼ି, ପଥର, କଣ୍ଟା ଝଣ୍ଟାକୁ ବେଖାତିର କରି ବୁଲୁଛନ୍ତି । ଆମର ବୁଦ୍ଧିରେ ଭ୍ରମ ଉତ୍ପନ୍ନ ହୁଏ ଯେତେବେଳେ ଆମେ ଆପଣଙ୍କର ସେଇ ଚରଣ କମଳକୁ ଆମ କଠିନ ବକ୍ଷ ସ୍ଥଳ (ଆମେ ସବୁ ନବୀନା ଯୁବତୀ ହେତୁ) ରେ ସ୍ଥାପନା କରିବାକୁ ମନ ମଧ୍ୟରେ ଧ୍ୟାନ କରୁଥାଉ । ସେତେବେଳେ ଆପଣଙ୍କୁ କେତେ ଦାରୁଣ କଷ୍ଟ ହେଉ ନଥିବ ।’’ ଏ ପରମ ନିବେଦନ ଶ୍ରବଣ କରି ଗୋବିନ୍ଦଙ୍କ ହୃଦୟ ସଂପୂର୍ଣ୍ଣ ତରଳି ଯାଇଛି । ସେ ଅକୁଣ୍ଠ ଚିତ୍ତରେ ସ୍ୱୀକାର କରିଛନ୍ତି ଜୀବର ଶରଣାଗତି ବା ପ୍ରପନ୍ନତାକୁ । ପ୍ରେମଦାନର ବଲ୍ ଏବେ ଗୋବିନ୍ଦଙ୍କ କୋର୍ଟରେ ।

# ଅଥ ୩୨ଶ ଅଧ୍ୟାୟଃ

## (ଗୋପୀ ଗୋପୀନାଥଙ୍କର ପୁନର୍ମିଳନ ଓ ପ୍ରଶ୍ନୋତ୍ତର ପ୍ରସଙ୍ଗ)

ପ୍ରଶ୍ନ-୨୦: ଗୋବିନ୍ଦ ରମଣ ରେତି ଠାରେ ଅଦୃଶ୍ୟ ହୁଅନ୍ତେ ଗୋପୀମାନେ ତାଙ୍କ ଗୁଣ ବାହୁନୁଥିଲେ । ତାଙ୍କୁ ଅନ୍ଧକାରରେ ଖୋଜୁଥିଲେ ମଧ୍ୟ । ଇତି ମଧ୍ୟରେ ରାଧାରାଣୀ ଆସି ପହଞ୍ଚିଛନ୍ତି । କହିଛନ୍ତି, ''ହେ ଗୋପୀବାଳାମାନେ । ତାଙ୍କୁ ଖୋଜିଲେ କ'ଣ ସେ ମିଳିବେ । ସେ ବଡ଼ ହଟିଆ, ନଟଖଟିଆ । ଖାଲି ଖୋଜିଲେ ସେ ବଣରେ ଲୁଚିବେ । ଦୂରକୁ ଦୂରକୁ ଯିବେ କଣ୍ଟାବୁଦାରେ ପଶିବେ । ତାଙ୍କ ପାଦରେ କଣ୍ଟା ପଶିବ । ଏବେ ମୁଁ ଯାହା କହୁଛି କର । ତେବେ ତାଙ୍କୁ ପାଇବ ।'' ଶ୍ରୀରାଧାଙ୍କ ବୋଲମାନି ଗୋପୀମାନେ କି ଉପାୟ କଲେ ସେତେବେଳେ ?

ଶ୍ରୀଶୁକ ଉବାଚ

**ଇତି ଗୋପ୍ୟଃ ପ୍ରଗାୟନ୍ତ୍ୟଃ ପ୍ରଳପନ୍ତ୍ୟଃ ଚ ଚିତ୍ରଧା ।**
**ରୁରୁଦୁଃ ସୁସ୍ୱରଂ ରାଜନ୍ କୃଷ୍ଣ ଦର୍ଶନ ଲାଳସା ॥୧॥**

ଉ. ରାଧାରାଣୀଙ୍କ ବୁଦ୍ଧିରେ ସେମାନେ ତାଙ୍କୁ ଖୋଜିବା ବନ୍ଦ କଲେ । ଯମୁନା କୂଳରେ ସମସ୍ତେ ବସି ଉଚ୍ଚ ସ୍ୱରରେ ବ୍ୟାକୁଳ କ୍ରନ୍ଦନ କଲେ (ରୁରୁଦୁଃ) । ତାହା ପୁଣି ଉତ୍ତମ ସ୍ୱରରେ (ସୁସ୍ୱରଂ) । ସେ କ୍ରନ୍ଦନ ପୁଣି ଗୋବିନ୍ଦ ଲୀଳା, ଗୁଣ ସମନ୍ୱିତ । ନିଚ୍ଛକ ପ୍ରଳାପ । ସେମାନେ ଅନେକ ପ୍ରକାର ରଙ୍ଗରେ ଢ଼ଙ୍ଗରେ (ଚିତ୍ରଧା) 'ହେ ପ୍ରିୟତମ ଦର୍ଶନ ଦିଅ' ବୋଲି ରୀତିମତ ବୋବାଳି ଛାଡ଼ିଲେ ।

ପ୍ରଶ୍ନ-୨୧: ଭକ୍ତର ବ୍ୟାକୁଳତା ଭଗବାନଙ୍କର ହୃଦୟ ନିଶ୍ଚୟ ତରଳାଇ ଦିଏ । ଏ ପରିସ୍ଥିତିରେ ଗୋବିନ୍ଦ କ'ଣ ତାଙ୍କୁ ସତରେ ଦର୍ଶନ ଦେଇ କୃତାର୍ଥ କଲେ ?

**ତାସାଂ ଆବିର୍ଭୂଃ ଶୌରିଃ ସ୍ମୟମାନ ମୁଖ-ଅମ୍ବୁଜଃ ।**
**ପୀତାମ୍ବରଧରଃ ସ୍ରକ୍‌ବୀ ସାକ୍ଷାତ୍ ମନ୍ମଥ ମନ୍ମଥ ॥୨॥**

ଉ. ଗୋପୀଙ୍କ ବ୍ୟାକୁଳ କ୍ରନ୍ଦନ ଠିକ୍ କାମ ଦେଖାଇଲା । ଠାକୁରଜୀ ତତ୍‌କ୍ଷଣାତ୍ ପ୍ରକଟ ହୋଇଗଲେ (ଆବିର୍ଭୂଃ) । କାରଣ ସେ ଅନ୍ୟ କୁଆଡ଼େ ଯାଇ ନଥିଲେ । ସେଇଠାରେ ଅଦୃଶ୍ୟ ଭାବରେ ବିଦ୍ୟମାନ ଥିଲେ । ମୁହଁ ତାଙ୍କର ହସ ହସ (ସ୍ମୟମାନ) ।

ଗଳାରେ ତାଙ୍କ ପୁଷ୍ପମାଳ (ସ୍ରକ୍-ବୀ) । ହାତରେ ଧରିଥାନ୍ତି ପୀତାମ୍ବର ଖଣ୍ଡିଏ । ତାଙ୍କୁ ଦେଖି ମନେ ହେଉଥିଲା ସତେ ଯେପରି କୋଟି କନ୍ଦର୍ପ ଦଳନ କରିବା ଚେହେରା ଧରିଛନ୍ତି ସେ । କଂ କହିଲେ ବ୍ରହ୍ମାଙ୍କୁ ବୁଝାଏ । ବ୍ରହ୍ମାଙ୍କୁ ଯେ ମୋହିତ କରିପାରନ୍ତି ସେ କନ୍ଦର୍ପ, କାମଦେବ ବା ମନ୍ମଥ । ମନ୍ମଥଙ୍କୁ ଯେ ମୋହିତ କରିପାରନ୍ତି ସେ ମୁରଲୀଧାରୀ (ମନ୍ମଥ ମନ୍ମଥ) ଶ୍ରୀକୃଷ୍ଣ । କେହି କେହି ମହାତ୍ମା ଏହାର ଏକ ସୁନ୍ଦର ଅର୍ଥ ବାହାର କରନ୍ତି । ମନ୍ମଥ ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ ରୂପରେ ଜନ୍ମ ନେବାକୁ ଅପେକ୍ଷା କରିଥାନ୍ତି ସେତେବେଳକୁ । ସେ ସୂକ୍ଷ୍ମ ଶରୀରରେ ରହି ରାସକ୍ରୀଡ଼ା ଦେଖୁଥାନ୍ତି । ସେ ଶ୍ରୀକୃଷ୍ଣଙ୍କ ଦିବ୍ୟରୂପ ଦର୍ଶନରେ ନିଜ ମନକୁ ମଧ ମନ୍ଥନ କରିବାକୁ ଲାଗିଲେ । ସେ କାହିଁକି ଗୋପୀଟିଏ ହେଲେନି । ଦେବତାଟିଏ ହେଲେ । ଏଥିପାଇଁ ମନ୍ମଥ ମନ୍ମଥ ଶବ୍ଦ ଏଠାରେ ଖଞ୍ଜାଯାଇଛି । ଦ୍ୱାରକାଲୀଳାରେ ସେ ତାଙ୍କ ପୁତ୍ର ହେବେ ।

ପ୍ରଶ୍ନ-୨୨: ପ୍ରିୟତମ (ପ୍ରେଷ୍ଠଂ)ଙ୍କୁ ଦର୍ଶନ କରି (ବିଲୋକ୍ୟ) ଗୋପାଙ୍ଗନାମାନେ ଆନନ୍ଦରେ ସତେ ଯେପରି ଆତ୍ମହରା ହୋଇଗଲେ (ପ୍ରୀତି-ଉତ୍‌ଫୁଲ୍ଲ ଦୃଶୋଽବଲାଃ) । ସେ ପରିସ୍ଥିତିରେ ଗୋପୀମାନେ କଲେ କ'ଣ ?

**ତଂ ବିଲୋକ୍ୟ-ଆଗତଂ ପ୍ରେଷ୍ଠଂ ପ୍ରୀତି-ଉଦ୍‌ଫୁଲ୍ଲଦୃଶୋଽବଲାଃ ।**
**ଉତସ୍ଥୁଃ ଯୁଗପତ୍ ସର୍ବାଃ ତନ୍ୱଃ ପ୍ରାଣଂ ଇବ-ଆଗତମ୍ ॥୩॥**

ଉ. ସମସ୍ତେ (ସର୍ବାଃ)ତରବରହୋଇ ଏକାବେଳକେ (ଯୁଗପତ୍) ଉଠିପଡ଼ିଲେ । ଏ ଅଦ୍ଭୁତ ଦୃଶ୍ୟ ଦେଖି ମନେ ହେଲା ସତେ ଯେପରି ଅନେକ ଜୀବ ପ୍ରାଣ ଶୂନ୍ୟ ଅବସ୍ଥାରେ ଥିଲେ । ପ୍ରାଣ ପଶିବାରୁ ଶବ ଗୁଡ଼ିକ (ତନ୍ୱଃ) ଜୀବନ୍ତ ହୋଇ ଉଠିଲେ । ଏକଥା ସେମାନଙ୍କ ସୁନ୍ଦର ନେତ୍ରରୁ (ଦୃଶୋଃ) ସ୍ପଷ୍ଟ ବାରିହେଉଥିଲା ।

ପ୍ରଶ୍ନ-୨୩: ଅଚେତନ ଅବସ୍ଥାରୁ ହଠାତ୍ ଚେତନ ଅବସ୍ଥା ପ୍ରାପ୍ତ ହୁଅନ୍ତେ ସେମାନଙ୍କଠାରେ କି କି ପ୍ରତିକ୍ରିୟା ପ୍ରକାଶ ପାଇଲା ?

**କାଚିତ୍ କରାମ୍ବୁଜଂ ଶୌରେଃ ଜଗୃହେଽଞ୍ଜଳିନା ମୁଦା ।**
**କାଚିତ୍ ଦଧାର ତଦ୍ ବାହୁଂ ଅଂସେ ଚନ୍ଦନ ଭୂଷିତମ୍ ॥୪॥**

ଉ. ଜଣେ ଗୋପୀ ଠାକୁରଜୀଙ୍କର (ଶୌରେଃ) ହସ୍ତ ପଦ୍ମକୁ ଆନନ୍ଦରେ (ମୁଦା) ନିଜ କର ଅଞ୍ଜଳିରେ ଜାବୁଡ଼ି ଧରି ପକାଇଲା । ଅନ୍ୟ ଜଣେ ଗୋପୀ ତାଙ୍କର ଚନ୍ଦନ ଲେପିତ ଭୁଜ ଦଣ୍ଡକୁ ନିଜ କାନ୍ଧରେ ସ୍ଥାପନ କରିଦେଲା (ଦଧାର) ।

ପ୍ରଶ୍ନ-୨୪: ଅତି ପାଖରେ ଥିବା ଗୋପୀମାନେ କି କି ସୁଯୋଗ ପ୍ରାପ୍ତ ହେଲେ ?

**କାଚିତ୍ ଅଞ୍ଜଳିନା ଅଗୃହ୍ଣାତ୍ ତନ୍ୱୀ ତାମ୍ବୁଳ ଚର୍ବିତମ୍ ।**
**ଏକା ତତ୍ ଅଙ୍ଘ୍ରି କମଲଂ ସନ୍ତପ୍ତା ସ୍ତନୟୋ-ଅଧାତ୍ ॥୫॥**

ଉ. କେହି ଜଣେ ଗୋପୀ ନିଜ ଅଞ୍ଜଳି ପତାଇ ରାସେଶ୍ୱରଙ୍କର ବଦନ କମଳରୁ ତାମ୍ବୁଳ ପ୍ରସାଦ ପାଇଲା ତ ଅନ୍ୟ ଜଣେ ତାଙ୍କର ଦୁଇ ଚରଣ କମଳକୁ ଧରି ନିଜ ଉଜରଦ୍ୱୟ ମଧ୍ୟରେ ସନ୍ତର୍ପଣରେ ସ୍ଥାପନ କରିନେଲା ।

ପ୍ରଶ୍ନ-୨୫: କେହି କେହି ଗୋପୀ ତ ପୁଣି ତାଙ୍କ ଉପରେ କ୍ରୋଧିତ ହୋଇସାରିଥିଲେ । ସେମାନେ ସବୁ କି ପ୍ରତିକ୍ରିୟା ପ୍ରକାଶ କଲେ ?

**ଏକା ଭ୍ରୁକୁଟିଂ ଆବଧ୍ୟ ପ୍ରେମ ସଂରମ୍ଭୋ ବିହ୍ୱଳା ।**
**ଘ୍ନନ୍ତୀ-ଇବ ଐକ୍ଷତ୍ କଟାକ୍ଷେପୈଃ ସଂଦଷ୍ଟ ଦଶନ ଛଦା ॥୬॥**

ଉ. ପଞ୍ଚମ ଗୋପୀ ଜଣକ ପ୍ରଣୟ କୋପ କଲା । ନିଜ ଦାନ୍ତଦ୍ୱାରା ଓଠକୁ କ୍ରୋଧରେ କାମୁଡ଼ି ପକାଇଲା (ସଂଦଷ୍ଟ ଦଶନ ଛଦା) । ତୀକ୍ଷ୍ଣଶର ମାରି ହତ୍ୟା କଲାଭଳି (ଘ୍ନନ୍ତୀ-ଇବ) ନିଜ କଟାକ୍ଷ ବାଣ ବିନ୍ଧିବା ଭଳି ଶ୍ରୀକୃଷ୍ଣଙ୍କୁ ଚାହିଁ ରହିଲା ।

ପ୍ରଶ୍ନ-୨୬: ସାଧୁ ବା ସନ୍ଥ(ସନ୍ତଃ) ପରମାତ୍ମାଙ୍କ ଚରଣ କମଳକୁ ଧ୍ୟାନରେ ଦର୍ଶନ କଲାବେଳେ ଏତେ ଆନନ୍ଦ ସାଗରରେ ସେମାନେ ବୁଡି ଯାଆନ୍ତି ଯେ ସେଥିରେ ସାଧୁଙ୍କର ତୃପ୍ତି ଆସେନା । ସେହି ନ୍ୟାୟରେ ଜଣେ ଅସାମାନ୍ୟା ଗୋପୀ ମଧ୍ୟ ସେଠାରେ ବିଦ୍ୟମାନା ଥିଲେ । ସେ କେବଳ ନିର୍ନିମେଷ ନୟନରେ (ଅନିମିଷ ଦୃଗ୍‌ଭ୍ୟାଂ) ମଦନ ମୋହନଙ୍କ ମୁଖ ଅମ୍ବୁଜର ମଧୁପାନ କରିବାରେ ସଂପୂର୍ଣ୍ଣ ମଜ୍ଜି ଯାଇଥିଲେ । ସେ ଗୋପୀ ଜଣକ କିଏ କି ?

**ଅପରା-ଅନିମିଷ ଦୃଗ୍‌ଭ୍ୟାଂ ଜୁଷାଣା ତତ୍‌ମୁଖାମ୍ବୁଜମ୍ ।**
**ଆପୀତଂ ଅପି ନ-ଅତୃପ୍ୟତ୍ ସନ୍ତଃ ତତ୍ ଚରଣଂ ଯଥା ॥୭॥**

ଉ. ମହାତ୍ମା ମାନଙ୍କ ମତରେ ସେ ଜଣକ ରାସେଶ୍ୱରୀ ଶ୍ରୀମତୀ ରାଧାରାଣୀ ନିଷ୍ଚୟ । କାରଣ ସେ ପ୍ରେମପ୍ଳୁତ ନୟନରେ ଯେତେ କୃଷ୍ଣ ମୁଖ ମାଧୁରୀ ପାନ କଲେ ମଧ୍ୟ ତୃପ୍ତ ହୋଇପାରୁ ନଥିଲେ ।

ପ୍ରଶ୍ନ-୨୭: ଗୋପୀମାନଙ୍କ ମଧ୍ୟରେ କେହି କେହି ଗୋପୀ ଠାକୁରଜୀଙ୍କର ରୂପ ଧ୍ୟାନ ମଧ୍ୟ କରନ୍ତି । ଯେଉଁମାନେ ଗୋବିନ୍ଦଙ୍କର ଅପହଞ୍ଚ ଦୂରତାରେ ଥିଲେ ସେମାନେ କୃଷ୍ଣ ମିଳନର ଆନନ୍ଦ କିପରି ଆସ୍ୱାଦନ କଲେ ?

**ତଂ କାଚିତ୍ ନେତ୍ରରନ୍ଧ୍ରେଣ ହୃଦି କୃତ୍ୱା ନିର୍ମୀଲ୍ୟ ଚ ।**
**ପୁଲକ-ଅଙ୍ଗୀ-ଉପଗୁହ୍ୟ ଆସ୍ତେ ଯୋଗୀ-ଇବ-ଆନନ୍ଦ ସଂପ୍ଳୁତା ॥୮॥**

ଉ. ସେମାନେ ଆଦୌ ନିରାଶ ହେଲେନି । ବଢ଼ିଆ ଉପାୟ କଲେ । ରାସ ରସିକଙ୍କୁ ନିଜ ନିଜ ନେତ୍ରରନ୍ଧ୍ର ଦେଇ ହୃଦୟ ଗୁହାରେ ବନ୍ଦୀ ବନେଇ ରଖିନେଲେ । କାଳେ ଖସି ପଳାଇବେ ସେହି ଭୟରେ ନିଜ ପଲକ ରୂପ କବାଟଟିମାନ ପକାଇ ବନ୍ଦ କରିଦେଲେ । ଏ କଥା କରି ସେମାନେ ଏତେ ଦିବ୍ୟ ଆନନ୍ଦ ପ୍ରାପ୍ତ ହେଲେ ଯେ ତାଙ୍କର ସର୍ବାଙ୍ଗ ଶରୀର ରୋମାଞ୍ଚିତ ହୋଇଯାଇଥିଲା । ସତେ ଯେମିତି ଜଣେ ଧ୍ୟାନ ଯୋଗୀ ପରମାତ୍ମାଙ୍କୁ ଧ୍ୟାନ କରି ସମାଧି ଆନନ୍ଦରେ ବୁଡ଼ି ଯାଇଛି ।

ପ୍ରଶ୍ନ-୨୮ : ଜଣେ ଜିଜ୍ଞାସୁ ସତ୍‌ସଙ୍ଗ ପ୍ରାପ୍ତ ହେଲେ ଅଧ୍ୟାତ୍ମ୍ୟ ଆନନ୍ଦ ପ୍ରାପ୍ତ ହୁଏ । ସଂସାରରେ ସକଳ ଭୌତିକ ଦୁଃଖ, କଷ୍ଟ ପାସୋରି ଯାଏ । ଗୋପାଙ୍ଗନାମାନେ ଖୋଦ୍ ଗୋବିନ୍ଦଙ୍କ ସତ୍‌ସଙ୍ଗ ପାଇ କି ମାନସିକ ସ୍ଥିତିରେ ପହଞ୍ଚିଥିଲେ ?

**ସର୍ବାଃ ତାଃ କେଶବ-ଆଲୋକ ପରମ-ଉତ୍ସବ ନିର୍ବୃତ୍ତାଃ ।**
**ଜହୁଃ ବିରହଜଂ ତାପଂ ପ୍ରାଜ୍ଞଂ ପ୍ରାପ୍ୟ ଯଥା ଜନାଃ ॥୯ ॥**

ଉ. ସେମାନେ ସମସ୍ତେ ନଟନାଗରଙ୍କ ଦିବ୍ୟ ଦର୍ଶନ ପାଇ ଆନନ୍ଦ ସାଗର ଲହରିରେ ବୁଡ଼ିଗଲେ । ହରି ବିରହ ସନ୍ତାପରୁ ସଂପୂର୍ଣ୍ଣ ମୁକ୍ତ ହୋଇଯାଇଥିଲେ ।

ପ୍ରଶ୍ନ-୨୯ : ଶ୍ରୀକୃଷ୍ଣଙ୍କ ପ୍ରାକଟ୍ୟରେ ସକଳ ଗୋପୀ ଗୋବିନ୍ଦଙ୍କ ପାଖକୁ ପାଖକୁ ଲାଗି ଆସିଲେ । ଶୋକ ବିବର୍ଜିତ ଚିତ୍ତରେ ଗୋପୀମାନଙ୍କର ଅଚ୍ୟୁତ ଭଗବାନଙ୍କୁ ଘେରିଯିବା (ଅଚ୍ୟୁତୋ ବୃତ୍ତଃ) ଦୃଶ୍ୟଟି କେଉଁ ଭଳି ଶୋଭାୟମାନ ହେଲା ?

**ତାଭିଃ ବିଧୂତ ଶୋକଭିଃ ଭଗବାନ-ଅଚ୍ୟୁତୋ ବୃତ୍ତଃ ।**
**ବ୍ୟରୋଚତ-ଅଧିକଂ ତାତ ପୁରୁଷଃ ଶକ୍ତିଭିଃ ଯଥା ॥୧୦॥**

ଉ. ଦୃଶ୍ୟଟି ଅତ୍ୟନ୍ତ ଦିବ୍ୟ (ବ୍ୟରୋଚତ ଅଧିକଂ) ମନେ ହେଉଥିଲା ଠିକ୍ ଯେମିତି ପରମାତ୍ମାଙ୍କ ଚତୁର୍ଦ୍ଦିଗରେ ତାଙ୍କ ଶକ୍ତି, ଭକ୍ତ ବା ନିତ୍ୟ ପାର୍ଷଦଗଣ ବେଢ଼ିଯାଇଛନ୍ତି ।

ପ୍ରଶ୍ନ-୩୦ : ଘଟଣାଟି ଘଟୁଥିଲା ବ୍ରଜମଣ୍ଡଳର ଯମୁନା କୂଳରେ ଗୋବିନ୍ଦ ଘାଟର ରମଣ ରେତି ନାମକ ସ୍ଥାନରେ । ଗୋବିନ୍ଦ ଦେଖିଲେ, ଯୋଗମାୟା କ୍ରୀଡ଼ା ସ୍ଥଳଟିକୁ ନାନାବିଧ ବୃକ୍ଷ, ଲତା ଆଦିରେ ସଜେଇ ଦେଇଛନ୍ତି । କୁନ୍ଦ, ମନ୍ଦାର ଆଦି

ଅନେକ ସୁଗନ୍ଧିତ ପୁଷ୍ପ ବିକଶିତ କରାଇ ଦେଇଛନ୍ତି । ମନ୍ଦ ମନ୍ଦ ମଳୟ ପବନ ବହୁଛି । ପୁଷ୍ପ ଗନ୍ଧ ଲୋଭରେ ଭ୍ରମର ମାନେ ଗୁଞ୍ଜନ କରୁଛନ୍ତି । ଅନ୍ଧାର ଦୂର କରିବାକୁ ଶରତ ପୂର୍ଣ୍ଣିମାଙ୍କର ବିମଳ ଚନ୍ଦ୍ର କିରଣର ସମୁଚିତ ବ୍ୟବସ୍ଥା କରାଯାଇଛି । ବୃକ୍ଷ, ଲତା, ପୁଷ୍ପ, ଫଳ, ପବନ, ଭ୍ରମର, ଚନ୍ଦ୍ର, କିରଣ ମଧ୍ୟରୁ କୌଣସିଟି ପାର୍ଥିବ ବା ଭୌତିକ ନୁହନ୍ତି । ସବୁ ଅଲୌକିକ, ଦିବ୍ୟ, ଚିନ୍ମୟ । ଏ ସବୁ ସୁବନ୍ଦୋବସ୍ତ ଦେଖିବା ପରେ ରସିକ ଇନ୍ଦ୍ର ମୌଳି ଗୋବିନ୍ଦ କ'ଣ କହିଲେ ଗୋପୀମାନଙ୍କୁ ?

**ତାଃ ସମାଦାୟ କାଳିନ୍ଦ୍ୟା ନିର୍ବିଶ୍ୟ ପୁଳିନଂ ବିଭୁଃ ।**
**ବିକସତ୍ କୁନ୍ଦମନ୍ଦାର ସୁରଭି-ଅନିଳ-ଷଟ୍‌ପଦମ୍ ॥୧୧॥**

ଉ. କହିବେ ଆଉ କ'ଣ ? ସେମାନଙ୍କୁ ତୁରନ୍ତ ନେଇ ଯମୁନା କୂଳରେ ପହଞ୍ଚିଗଲେ ।

ପ୍ରଶ୍ନ-୩୧ : ମହାତ୍ମାମାନଙ୍କ ମତରେ ଗୋପୀମାନଙ୍କର ସଂଖ୍ୟା ଷୋଳ ସହସ୍ର ନୁହେଁ ବରଂ ତିନିକୋଟି । ସେଠାରେ ତ ଚୌକୀ, ବେଞ୍ଚ ନଥିବ । ଏତେ ଗୋପୀଙ୍କର ବସିବା ବନ୍ଦୋବସ୍ତ କିପରି କରାଯାଇଥିଲା ?

**ଶରତ୍ ଚନ୍ଦ୍ର-ଅଂଶୁ ସନ୍ଦୋହ ଧ୍ୱସ୍ତ ଦୋଷା ତମଃ ଶିବମ୍ ।**
**କୃଷ୍ଣାୟା ହସ୍ତ ତରଳ ଆଚିତ କୋମଳ ବାଲୁକମ୍ ॥୧୨॥**

ଉ. ରାତି ଅନ୍ଧାର (ତମ) ଦୂର କରିବାକୁ ଯୋଗମାୟା ଯେତେବେଳେ ଦିବ୍ୟ ଚନ୍ଦ୍ରଙ୍କର ଉଦୟ କରାଇ ପାରିଲେ ବସିବା ବ୍ୟବସ୍ଥାର ଅଭାବ ରହନ୍ତା କିପରି ? ଏ କଥା କଲେ ସ୍ୱୟଂ ଯମୁନା ମହାରାଣୀ (କୃଷ୍ଣାୟା) । ସେ ଗଣି ଗଣି ଯେତିକି ସଂଖ୍ୟକ ଗୋପୀଥିଲେ ସେତିକି ସଂଖ୍ୟକ ଦିବ୍ୟ ବାଲି ଗଦା ପ୍ରକଟ କରାଇଥିଲେ ନିଜ ତରଙ୍ଗ ରୂପୀ ହସ୍ତ ଦ୍ୱୟ ଦ୍ୱାରା କୋମଳ ବାଲୁକାରାଶିକୁ ଏକତ୍ର (ଆଚିତ) କରି ।

ପ୍ରଶ୍ନ-୩୨ : ଏବେ ପ୍ରଶ୍ନ ଉଠୁଛି ଗୋବିନ୍ଦ ବସିଲେ କେଉଁଠି ? କର୍ମକାଣ୍ଡୀମାନେ ତାଙ୍କୁ କାଠ ପିଢ଼ାରେ ବସାନ୍ତି । ଜ୍ଞାନକାଣ୍ଡୀମାନେ ତାଙ୍କୁ ନିଜ ହୃଦୟ ସିଂହାସନରେ ବସାନ୍ତି । ଆଜି ଗୋପୀମାନେ ତାଙ୍କୁ ନିଜ ନିଜ ଓଢ଼ଣୀ ପାରି ବସାଇଦେଲେ । ଯେଉଁ ଓଢ଼ଣୀଟି ମାନ ସେମାନଙ୍କ ଦ୍ୱାରା ବ୍ୟବହୃତ ହୋଇସାରିଛି । କେଉଁଥିରେ ଲାଗିଛି ତାଙ୍କ ବକ୍ଷ ସ୍ଥଳର କୁଙ୍କୁମ ବା ହଳଦୀ ପୁଣି କେଉଁଥିରେ ଲାଗିଛି ସେମାନଙ୍କ ଦେହର ଝାଳ ବା ମୁହଁର ଲାଳ । ପ୍ରେମ ରାଇଜରେ ଅସନା ନାଶନା କ'ଣ ଥାଏକି ? ଗୋବିନ୍ଦ

ଆନନ୍ଦରେ ସେ ଆସନରେ ବସି ପଡ଼ନ୍ତେ କିଏ ତାଙ୍କ ଚରଣ କମଳକୁ ନେଇ ନିଜ କୋଳରେ ରଖିଦେଲା । ପୁଣି କିଏ ଭୂଜ ଦଣ୍ଡକୁ ନିଜ ହସ୍ତରେ ସ୍ପର୍ଶ କରି ପ୍ରମୁଦିତ ହେଲା । ବାକୀ ଗୋପୀମାନେ ତାଙ୍କ ସ୍ଥୁଳ ପୂଜା, ଅର୍ଚ୍ଚନା କରିବାରେ ଲାଗିଗଲେ । ଏବେ ଗୋପୀମାନେ ଚିନ୍ତନ କଲେ ପ୍ରିୟତମ ଶ୍ୟାମ ସୁନ୍ଦର ହଠାତ୍ ଅନ୍ତର୍ଦ୍ଧାନ ହୋଇ ଅସହ୍ୟ ବିରହପୀଡ଼ା ଦେବାର କାରଣ । ନିଜ ନିଜର ପ୍ରଣୟ କୋପକୁ ଚାପି ରଖି ଗୋବିନ୍ଦଙ୍କୁ କିଭଳି ଶବ୍ଦରେ ସେହି କାରଣ ପଚାରି ବସିଲେ ?

**ଗୋପ୍ୟ ଉଚୁଃ**

**ଭଜତୋଽନୁଭଜନ୍ତି-ଏକ ଏକ ଏତଦ୍ ବିପର୍ଯ୍ୟୟମ୍ ।**
**ନ-ଉଭୟାନ୍ ଚ ଭଜନ୍ତି-ଏକେ ଏତତ୍ ନଃ ବ୍ରୁହି ସାଧୁ ଭୋଃ ॥ ୧୬॥**

ଉ. ଗୋପାଙ୍ଗନାମାନେ ପ୍ରଶ୍ନ କଲେ, ‘‘ହେ ନଟ ନାଗର, ସଂସାରରେ କିଛି ଲୋକ ଭଲ ପାଇବା ଲୋକକୁ ଭଲ ପାଆନ୍ତି, ପୁଣି କେହି କେହି ଭଲ ନ ପାଇବା ଲୋକକୁ ଭଲ ପାଆନ୍ତି ଅଥଚ କେହି କେହି ମଧ ଭଲ ପାଇବା, ଭଲ ନ ପାଇବା ଉଭୟଙ୍କୁ ଭଲ ପାଆନ୍ତି ନାହିଁ । ଆପଣ ଆମକୁ (ନଃ) କହନ୍ତୁ ଦେଖି ଆପଣ ଏ ତିନି ପ୍ରକାରର ଲୋକ ମଧ୍ୟରୁ କେଉଁ ପ୍ରକାରର ?

ପ୍ରଶ୍ନ-୩୩: ଠାକୁରଜୀ ତ ଅଡୁଆ ପ୍ରଶ୍ନର ଉତ୍ତର ଦେବାରେ ଭାରି କୁଶଳୀ । ଦେଖିଲେ ତିନିଟି ଯାକ ଉତ୍ତରରୁ ଯେ କୌଣସିଟିକୁ ସ୍ୱୀକାର କଲେ ବିପଦ । ଗୋପୀମାନେ ତାଙ୍କୁ କାଇଲି ବା ଅପଦସ୍ତ କରିଦେବେ । ତେବେ ଭଗବାନ କିଭଳି ଉତ୍ତରଟିଏ ଦେଇ ନିଜକୁ ବଞ୍ଚାଇ ପାରିଲେ ?

**ଶ୍ରୀ ଭଗବାନ ଉବାଚ**

**ମିଥୋ ଭଜନ୍ତି ଯେ ସଖ୍ୟଃ ସ୍ୱାର୍ଥ-ଏକାନ୍ତ-ଉଦ୍ୟମା ହି ତେ ।**
**ନ ତତ୍ର ସୌହୃଦଂ ଧର୍ମଃ ସ୍ୱାର୍ଥ-ଅର୍ଥଂ ତତ୍ ହି ନ-ଅନ୍ୟଥା ॥ ୧୭॥**

ଉ. ଭଗବାନ ସିଧା ସଳଖ କହିଲେ, ‘‘ହେ, ସୁନ୍ଦରୀଗଣ । ସଂସାରରେ ଭଲ ପାଇବା ଲୋକ ଦୁଇ ପ୍ରକାରର । ନିଜ ନିଷ୍ଠୁର ସ୍ୱାର୍ଥ ପାଇଁ । ପୁଣି କରୁଣାବଶତଃ ଧର୍ମ ପାଇଁ । ସଂସାରୀ ଲାଭ ପାଇଁ ଭଲ ପାଇବା ଲୋକର ପ୍ରେମ ତ ସ୍ୱାର୍ଥୀ ପ୍ରେମ ଅତଏବ ନିନ୍ଦନୀୟ । କାରଣ ସେଥିରେ ମିତ୍ରତା (ସଖ୍ୟଃ) ନଥାଏ କି ଧର୍ମ ନଥାଏ (ନ-ଅନ୍ୟଥା) ।

ପ୍ରଶ୍ନ-୩୪: ଦ୍ୱିତୀୟ ପ୍ରକାର ଭଲ ପାଇବା ଲୋକ ପୁଣି କେମିତି ?

**ଭଜନ୍ତି-ଅଭଜତୋ ଯେ ବୈ କରୁଣାଃ ପିତରୌ ଯଥା ।**
**ଧର୍ମୋ ନିରପବାଦୋଽତ୍ର ସୌହୃଦଂ ଚ ସୁମଧ୍ୟମାଃ ॥୧୮॥**

ଉ. ଠାକୁରଜୀ କହିଲେ, "ହେ ସୁନ୍ଦରୀ (ସୁମଧ୍ୟମାଃ), ତ୍ରୁଟି ବିହୀନ ମିତ୍ରତାପୂର୍ଣ୍ଣ ଓ ଧର୍ମାନୁମୋଦିତ ଭଲ ପାଇବା ପ୍ରେମ କେବଳ ବନ୍ଦନୀୟ । ଦୁଇଟି ଉଦାହରଣ ଦେଖ । ଶିଷ୍ୟ ଗୁରୁଙ୍କୁ ଭଲ ନପାଇଲେ ମଧ୍ୟ ଗୁରୁଙ୍କର ଶିଷ୍ୟକୁ ଭଲ ପାଇବା ଏବଂ ପୁତ୍ର ପିତାଙ୍କୁ ଭଲ ନପାଇଲେ ମଧ୍ୟ ପିତା ପୁତ୍ରକୁ ଭଲ ପାଇବା ବନ୍ଦନୀୟ ପ୍ରେମ ।

ପ୍ରଶ୍ନ-୩୫: ଭଲ ନ ପାଇବା ଲୋକଙ୍କୁ ଭଗବାନ ଚାରି ପ୍ରକାର ବୋଲି କହିଛନ୍ତି । ଆତ୍ମାରାମ ଜ୍ଞାନୀ ଓ ଆପ୍ତକାମ ଭକ୍ତ ଏ ଦୁହେଁ ବନ୍ଦନୀୟ । ଅନ୍ୟ ଦୁଇ ପ୍ରକାର ମନୁଷ୍ୟ ନିନ୍ଦନୀୟ । ଏଭଳି ଭଲ ନ ପାଇବା ମନୁଷ୍ୟମାନଙ୍କର ଦୃଷ୍ଟାନ୍ତ କିଏ କିଏ ?

**ଭଜତୋଽପି ନ ବୈ କେଚିତ୍ ଭଜନ୍ତି-ଅଭଜତଃ କୁତଃ ।**
**ଆତ୍ମାରାମା ହି-ଆପ୍ତକାମା ଅକୃତଜ୍ଞା ଗୁରୁଦ୍ରୁହଃ ॥୧୯॥**

ଉ. କୃତଘ୍ନ (ଅକୃତଜ୍ଞ) ଲୋକ ଓ ଗୁରୁଦ୍ରୋହୀ ଏ ଦୁଇ ପ୍ରକାର ଲୋକ ଭଲ ନ ପାଇବା ଓ ଭଲ ପାଇବା ଲୋକ କାହାକୁ ହେଲେ ଭଲ ପାଆନ୍ତି ନାହିଁ । ଏଠାରେ ଗୁରୁଦ୍ରୋହୀର ଅର୍ଥ ଗୁରୁଙ୍କୁ ଅବଜ୍ଞା କରିବା ଲୋକ ନୁହେଁ । ମହାତ୍ମାମାନଙ୍କ ମତରେ ଗୁରୁ (ଭୟଙ୍କର) ଦ୍ରୋହୀ (ଅପରାଧୀ)ମାନେ ଏହି ଗୁରୁଦ୍ରୋହୀ ଶ୍ରେଣୀର । ଭୟଙ୍କର ଅପରାଧୀ କାହାକୁ କେବେ ବି ଭଲ ପାଇପାରେନା । ଉପକାର କରିଥିବା ଲୋକର ଉପକାର ଭୁଲିଯିବା ଏବଂ ତାର ଉପକାର ନ ଶୁଝିବା ଲୋକ ଅକୃତଜ୍ଞ ।

ଭଗବାନ ସିଧାସଳଖ କହିଦେଲେ ଯେ ସେ ଏ ଚାରି ପ୍ରକାର ଲୋକଙ୍କ ମଧ୍ୟରୁ କେଉଁ ଗୋଟିକ ହେଲେ ନୁହନ୍ତି । କାରଣ ଏମାନେ ସମସ୍ତେ ଜୀବ । ଏମାନଙ୍କର ଜୀବନର ଚରମ ଓ ପରମ ଲକ୍ଷ୍ୟ ଆନନ୍ଦପ୍ରାପ୍ତି । ମୁଁ ତ ସ୍ୱୟଂ ଆନନ୍ଦମୟ । ଅତଏବ ସ୍ଥୁଳ ଭାବରେ ବୁଝିଲେ ମୁଁ ସ୍ୱତଃ ଆତ୍ମାରାମ ଓ ଆପ୍ତକାମଙ୍କ ସଦୃଶ । ରହସ୍ୟ କଥାଟି ଏଥର ଖୋଲି କହିଲେ- "ହେ, ଗୋପବାଳାଗଣ, ସକାମ ଭକ୍ତକୁ ମୁଁ ହଠାତ୍ ଭଲ ପାଇ ପାରେନା । ତାଙ୍କ ସହ ଲୁଚକାଳି ଖେଳେ । ନିଜେ ଖେଳି ଅନ୍ୟକୁ ଖେଳାଇବାରେ ମୋର ଆନନ୍ଦ । ଆଜିକାଲି ସରପ୍ରାଇଜ୍ ଦେବାକୁ ଆଗରୁ କାହାକୁ କିଛି ନ ଜଣାଇ ହଠାତ୍ ପହଞ୍ଚିଯିବା ଭଳି ମୋ ଭଲ ପାଇବା ।" ତଥାପି ସୁନ୍ଦର ଦୃଷ୍ଟାନ୍ତଟିଏ ଦେଲେ ଭଗବାନ ଗୋପୀମାନଙ୍କୁ ବୁଝାଇବାକୁ ଯାଇ କହିଲେ, "ଜଣେ ଗରିବ ଲୋକ କିଛି

ଧନ ପାଇଗଲେ ଖୁସି ହୁଏ । ସେ ଧନକୁ ହରାଇ ବସିଲେ ଦୁଃଖରେ ଭାଙ୍ଗିପଡ଼େ । ଧନ ଚିନ୍ତାରେ ମନକୁ ବୁଡ଼ାଇ ରଖେ । ମୁଁ ଚାହେଁ ଜୀବ ମୋର ନିରନ୍ତର ଚିନ୍ତନ କରୁଥାଉ । ସଂସାର ସୁଖ ଚିନ୍ତନ ଆଦୌ ନ କରୁ । ସେଥିପାଇଁ ସିନା ତୁମମାନଙ୍କର ପ୍ରେମର ଗଭୀରତା ମାପିବାକୁ ତୁମଠାରୁ କିଛି କାଳ ଲାଗି ଅଦୃଶ୍ୟ ହୋଇ ରହିଥିଲି । ମୁଁ ଆଦୌ କୁଆଡ଼େ ଯାଇନାହିଁ । ଏଇ ରମଣ ରେତି କ୍ରୀଡ଼ା କ୍ଷେତ୍ରରେ ମସ୍ତକର ପୀତାମ୍ବର ଘୋଡ଼େଇ ଠିଆ ହୋଇଥିଲି । ତୁମ ବିରହ ପୀଡ଼ାର ଗଭୀରତା କେବଳ ମାପୁଥିଲି ଟେପ୍ ପକାଇ । କ୍ଷମାକର ଭକ୍ତଗଣ । ମୋତେ ଆଦୌ ଭୁଲ ବୁଝନା ।''

ପ୍ରଶ୍ନ-୩୬: କୃଷ୍ଣ ସ୍ୱୟଂ ଷୋଳକଳା ଭଗବାନ । ଗୋପୀମାନେ ଆଜ୍ଞାଧୀନ ଜୀବ । ଭଗବାନ ଭକ୍ତମାନଙ୍କୁ କ୍ଷମା ମାଗିବା ଅସଙ୍ଗତ କଥା ନୁହେଁ କି ?

**ନ ପାରୟେଽହଂ ନିରବଦ୍ୟ ସଂଯୁଜାଂ**
**ସ୍ୱସାଧୁକୃତ୍ୟଂ ବିବୁଧ-ଆୟୁଷ-ଅପି ବଃ ।**
**ଯା ମା-ଅଭଜନ୍ ଦୁର୍ଜରଃ ଗେହ ଶୃଙ୍ଖଳାଃ**
**ସଂବୃଷ୍ୟ ତତ୍ ବଃ ପ୍ରତିଯାତୁ ସାଧୁନା ॥୨୨॥**

ଉ. କଥାଟି ଆଦୌ ନାକରା ନୁହେଁ । ଭଗବାନଙ୍କର ଶବ୍ଦ ବ୍ୟଞ୍ଜନା ଲକ୍ଷ୍ୟ କଲେ ପ୍ରସଙ୍ଗଟି ଭକ୍ତ ହୃଦୟକୁ ଆନନ୍ଦ ଆପ୍ଲୁତ କରିପାରେ । ସେ କହିଛନ୍ତି, ''ଗୋପ ଲଳନାମାନେ, ଗୃହତ୍ୟାଗୀ ମୁନି ଋଷିମାନେ ମଧ୍ୟ ଗୃହ, ପୁତ୍ର, ପରିଜନଙ୍କର ଗୃହ ଆସକ୍ତିର ଶିକୁଳିକୁ କାଟିପାରନ୍ତି ନାହିଁ । ଏହା ନିଶ୍ଚୟ ଲୌକିକ ବନ୍ଧନ । ସେମାନଙ୍କର ଚେଷ୍ଟା ମଧ୍ୟ ତଦ୍ରୂପ ଲୌକିକ । ଅଥଚ ତୁମ ଭଳି ସାଧିକାମାନେ ଏ ବନ୍ଧନକୁ ଏତେ ସହଜରେ ମୋ ବଂଶୀସ୍ୱନରେ ମୁଗ୍ଧ ହେବା, ନିଶା ଅର୍ଦ୍ଧରେ ମୋ ପାଖକୁ ଦୌଡ଼ି ଆସିବା, ମୋ ପ୍ରେରଣାରେ ଘରକୁ ବାହୁଡ଼ି ନଯାଇ ମୋଠାରେ ଶରଣ ପଶିବା ଓ ମୋତେ ଏକମାତ୍ର ଆଶ୍ରୟ କରିବା କଅଣ କମ୍ ଅଲୌକିକ ବ୍ୟାପାର । ତୁମେ ମୋ ପ୍ରତି କେତେବଡ଼ ଉପକାର କରି ନ ? ମୁଁ ଏକ ମନ୍ୱନ୍ତର କାଳ (ବିବୁଧ-ଆୟୁଷ-ଅପି) ଉପକାର କରିବାକୁ ଚେଷ୍ଟା କଲେ ବି ତୁମ ଋଣରୁ ମୁକ୍ତ ହେବା ଅସମ୍ଭବ । ହଁ ତୁମେ କୃପାକରି ତୁମ ପଟରୁ ମୋତେ ଋଣ ମୁକ୍ତ କରିପାର (ପ୍ରତିଯାତୁ ସାଧୁନା) । ତୁମର ମୋର ଏ ମିଳନ ଆଦୌ ଲୌକିକ ନୁହେଁ । ଭବିଷ୍ୟତରେ କଳିଯୁଗରେ ମଧ୍ୟ ଅନ୍ୟଭକ୍ତମାନେ ଏହାର ମର୍ମ ବୁଝିଯିବେ । ତାଙ୍କ ପାଇଁ ତୁମେ ସ୍ମରଣ ସାଧନାର ଦ୍ୱାର ଉନ୍ମୁକ୍ତ କରିଦେଲ । ଆମର ଏ ମିଳନ ଜୀବ-ଶିବ, ଜୀବ-ବ୍ରହ୍ମଙ୍କ ଅପୂର୍ବ ଅଲୌକିକ

ମିଳନ (ନିରବଦ୍ୟ ସଂଯୁକ୍ତାଂ) । ଏଥିରେ ଲୌକିକ କାମ ବାସନାର ଲେଶ ମାତ୍ର ଗନ୍ଧ ନାହିଁ । ନା ତୁମେମାନେ କାମ ଆସକ୍ତ । ନା କାମ ମୋତେ ଆକ୍ରମଣର ଚେଷ୍ଟା କରିବାକୁ ସାହସ କରିବ । କନ୍ଦର୍ପ ମୋର ପୁତ୍ର । ମୋର ଏକ ଅଧୀନସ୍ଥ ଦେବତା । ହୋଇପାରେ ସେ ପରାଶର, ବିଶ୍ୱାମିତ୍ର, ଶଙ୍କର ଜୟୀ । ମୋ ଭକ୍ତମାନଙ୍କ ପାଇଁ ମୁଁ କାମଜୟୀ । ମୋର ଏ ଲୀଳା କାମ ଲୀଳା ନୁହେଁ ବରଂ କାମ ବିଜୟ ଲୀଳା ।

## ଅଥ ୩୩ଶ ଅଧ୍ୟାୟଃ

## (ଗୋପୀ ଗୋପୀନାଥଙ୍କର ମହାରାସ ଲୀଳା)

ପ୍ରଶ୍ନ-୩୭. ପୂର୍ବ ଅଧ୍ୟାୟରେ ଗୋପୀମାନଙ୍କର ପ୍ରଶ୍ନ ଯେମିତି ଅଡୁଆ ଥିଲା, ଭଗବାନଙ୍କର ଉତ୍ତର ମଧ୍ୟ ସେମିତି ଅତ୍ୟନ୍ତ ମନୋହାରୀ (ସୁପେଶଳାଃ) ହେଲା । ସମୁଚିତ ଉତ୍ତର ଶୁଣିବା ପରେ ଗୋପୀମାନଙ୍କର ଅବସ୍ଥା କିଭଳି ହେଲା ?

ଶ୍ରୀ ଶୁକ ଉବାଚ

**ଇତ୍ଥଂ ଭଗବତୋ ଗୋପ୍ୟଃ ଶ୍ରୁତ୍ୱା ବାଚଃ ସୁପେଶଳାଃ ।**
**ଜହୁଃ ବିରହଜଂ ତାପଂ ତତ୍ ଅଙ୍ଗ-ଉପଚିତ-ଆଶିଷଃ ॥୧॥**

ଉ. ଗୋବିନ୍ଦଙ୍କର ଦର୍ଶନ ପରେ ପରେ ପ୍ରତ୍ୟେକ ଗୋପୀ ଗୋବିନ୍ଦଙ୍କର ଅଙ୍ଗସଙ୍ଗ ପ୍ରାପ୍ତ ହେଲେ । ଦେଖାଗଲା ରମଣ ରେତିରେ ଯେତେ ଗୋପୀ ସେତେ କୃଷ୍ଣ । ଭଗବାନଙ୍କର ଦିବ୍ୟ ଅଲୌକିକ ଅଙ୍ଗ ସ୍ପର୍ଶପ୍ରାପ୍ତ ହୋଇ ଗୋପୀମାନଙ୍କର ଦେହ, ମନ, ବୁଦ୍ଧି ଓ ଚିତ୍ତ ସବୁ ଦିବ୍ୟ ହୋଇଗଲା । ସେମାନଙ୍କର ସକଳ ଭୌତିକ ବାସନାର ପୂର୍ତ୍ତି ଓ କ୍ଷୟ ହୋଇଗଲା । ବ୍ରହ୍ମ ଠାରୁ ଦୂରରେ ରହିବା କାରଣରୁ ସେମାନେ ଯେଉଁ ବିରହ ପୀଡ଼ା ଭୋଗ କରୁଥିଲେ ସେ ସବୁକୁ ତ୍ୟାଗ କରିଦେଲେ (ଜହୁଃ) ।

ପ୍ରଶ୍ନ-୩୮ : ଯୋଗମାୟାଙ୍କ (ଶ୍ରୀରାଧା) ଅନୁମତି କ୍ରମେ ଆରମ୍ଭ ହେଲା (ଆରଭତ) ଏଥର ଅଲୌକିକ ମହାରାସଲୀଳା । ଯଦିଚ ରାସଲୀଳା ଦିବ୍ୟ ତଥାପି ଭୌତିକ ବିମାନରେ ସ୍ୱର୍ଗରେ ବସି ଉପଭୋଗ କରୁଥିବା ଦେବୀ ଦେବତାମାନଙ୍କ ଭୌତିକ ଦୃଷ୍ଟିରେ ଏହା କିପରି ଦୃଶ୍ୟମାନ ହେଉଥିଲା ?

**ତତ୍ର-ଆରଭତ ଗୋବିନ୍ଦୋ ରାସକ୍ରୀଡ଼ାଂ ଅନୁବ୍ରତୈଃ ।**
**ସ୍ତ୍ରୀରତ୍ନୈଃ ଅନ୍ୱିତଃ ପ୍ରୀତୈଃ ଅନ୍ୟୋନ୍ୟ-ଆବଦ୍ଧ ବାହୁଭିଃ ॥୨॥**

ଉ. ଦେଖାଗଲା ଯେ ଶ୍ରଦ୍ଧାଶୀଳ (ଅନୁବ୍ରତୈଃ) ଗୋପୀମାନେ ସମସ୍ତେ ଜଣେ ଜଣେ କୃଷ୍ଣଙ୍କ ସହିତ ବାହୁଦ୍ୱୟ ଦ୍ୱାରା ପରସ୍ପର ଆଲିଙ୍ଗନରେ ବନ୍ଧା ହୋଇଛନ୍ତି ।

ପ୍ରଶ୍ନ-୩୯ : ଗୋପୀ ଗୋବିନ୍ଦଙ୍କ ଆଲିଙ୍ଗନ ପରେ ଲୀଳାରେ ପୁଣି କି ନୂତନତା ପରିଲକ୍ଷିତ ହେଲା ?

**ରାସ-ଉତ୍ସବ ସଂପ୍ରବୃତ୍ତୋ ଗୋପୀ ମଣ୍ଡଳ ମଣ୍ଡିତଃ ।**
**ଯୋଗ-ଈଶ୍ୱରେଣ କୃଷ୍ଣେନ ତାସାଂ ମଧ୍ୟେ ଦ୍ୱୟୋଃ ଦ୍ୱୟୋଃ ॥୩॥**

ଉ. ଏବେ ଗୋବିନ୍ଦ ଓ ଗୋପୀ ସମସ୍ତେ ମିଶି ପରସ୍ପରର ହାତ ଧରାଧରି ହୋଇ ଏକ ବୃତ୍ତାକାର ମଣ୍ଡଳୀ ଗଠନ କଲେ । ଫଳରେ ପ୍ରତ୍ୟେକ ଦୁଇ ଦୁଇ ଜଣ ଗୋପୀମାନଙ୍କ ମଧ୍ୟରେ ମହାଯୋଗେଶ୍ୱର ଭଗବାନ କୃଷ୍ଣ ଶୋଭାୟମାନ ହେଲେ । ଏହି ବୃତ୍ତାକାର ରାସ ଉତ୍ସବ କଳ୍ପନା ଶ୍ରୀପାଦ ବଲ୍ଲଭ ଆଚାର୍ଯ୍ୟଙ୍କ ମତ ।

ପ୍ରଶ୍ନ-୪୦ : ରାସକ୍ରୀଡ଼ାର ସ୍ଥାନ, କାଳ, ପାତ୍ର ଅଲୌକିକ ହୋଇସାରିଥିଲେ । ଏପରିକି ଭୂମି, ଜଳ, ପବନ, ଫୁଲ, ଫଳ, ବୃକ୍ଷ, ଲତା, ଆକାଶ ମଧ୍ୟ । ଆକାଶ କହିଲେ ଲୋକେ ଶୂନ୍ୟ, ମହାଶୂନ୍ୟକୁ ବୁଝନ୍ତି । ସେ କିଭଳି ଅଲୌକିକ ହେଲା ?

**ପ୍ରବିଷ୍ଟେନ ଗୃହୀତାନାଂ କଣ୍ଠେ ସ୍ୱ ନିକଟଂ ସ୍ତ୍ରିୟଃ ।**
**ଯଂ ମନ୍ୟେରନ୍ ନଭଃ ତାବତ୍ ବିମାନ ଶତ ସଂକୁଳମ୍ ।**
**ଦିବ-ଓକସାଂ ସ ଦାରାଣାଂ ଔତ୍ସୁକ୍ୟ-ଅପହୃତ-ଆତ୍ମନାମ୍ ॥୪॥**

ଉ. ଦିବ୍ୟ ରାସ କ୍ରୀଡ଼ା ଆରମ୍ଭରେ ପ୍ରତ୍ୟେକ ଗୋପୀ ମନେ କଲେ ଗୋବିନ୍ଦ ଗୋଟାସୁଦ୍ଧା କେବଳ ତାଙ୍କ ଗଳାରେ ହାର ବନିଛନ୍ତି (ଗୃହୀତାନାଂ କଣ୍ଠେ) । ଏକଥା ଭବିଷ୍ୟତରେ କାଳେ କଳିଯୁଗୀ ଲୋକେ ବିଶ୍ୱାସ ନ ଯିବେ ଭଗବାନ ସାକ୍ଷୀମାନଙ୍କର ସୁବନ୍ଦୋବସ୍ତ କରିଛନ୍ତି । ସେତେବେଳେ ମନେ ହେଲା (ମନ୍ୟେରନ୍) ଦିବ୍ୟ ଆକାଶରେ (ନଭଃ) ସ୍ୱର୍ଗବାସୀ ଦେବତା (ଦିବ ଓକସାଂ) ନିଜ ନିଜ ପତ୍ନୀ ମାନଙ୍କ ସହ (ସଦାରାଣାଂ) ବସିମାନରେ ବସି ଏ ଦୃଶ୍ୟ ଦେଖିବାରେ ବ୍ୟସ୍ତ । ଓଡ଼ିଆ ବୈଷ୍ଣବ କବି ଶ୍ରୀଜଗନ୍ନାଥ ଦାସଙ୍କ ଭାଷାରେ – 'ଗୋପୀକେ ଗୋବିନ୍ଦ ଗୋଟିଏ ସ୍ୱର୍ଗେ ଦେଖନ୍ତି ଦେବତାଏ ।' ସ୍ୱର୍ଗର ଦେବୀ ଦେବତାମାନେ ମଧ୍ୟ ସମସ୍ତେ ମାୟାଧୀନ ଜୀବ । ସେମାନଙ୍କର ମନ, ବୁଦ୍ଧି, ଚିନ୍ତନ ସବୁ ପ୍ରାକୃତ । ସେମାନେ କାଳେ ଭୁଲ ବୁଝିବସିବେ । ଏଥିପାଇଁ ଭଗବାନ

ସେମାନଙ୍କ ବିମାନ ସହିତ ମନକୁ, ବୁଦ୍ଧି ବିଚାର ଆଦିକୁ ମଧ୍ୟ ଦିବ୍ୟ କରିଦେଲେ (ଅପହୃତ-ଆତ୍ମନାଂ) ।

ପ୍ରଶ୍ନ-୪୧: ଦେବୀ, ଦେବତା, ଗନ୍ଧର୍ବ, କିନ୍ନର ଇତ୍ୟାଦିଙ୍କର ଉପସ୍ଥିତି ଦିବ୍ୟ ହେବାରୁ ସେମାନେ ରାସଲୀଳାରେ କି ଭୂମିକା ନିଭାଇଲେ ?

**ତତୋ ଦୁନ୍ଦୁଭୟୋଃ ନେଦୁଃ ନିପେତୁଃ ପୁଷ୍ପ ବୃଷ୍ଟୟଃ ।**
**ଜଗୁଃ ଗନ୍ଧର୍ବ ପତୟଃ ସସ୍ତ୍ରୀକାଃ ତତ୍ ଯଶୋଽମଳମ୍ ।।୫।।**

ଉ. ଆକାଶରେ ଦୁନ୍ଦୁଭିଃ ବାଜିଲା (ନେଦୁଃ) । ଦିବ୍ୟ ପୁଷ୍ପ ବୃଷ୍ଟି ହେଲା (ନିପେତୁଃ) । ଗନ୍ଧର୍ବମାନେ ଦିବ୍ୟ ସ୍ୱରରେ ନିଜ ନିଜ ସ୍ତ୍ରୀମାନଙ୍କ ସହିତ ରାଧା-କୃଷ୍ଣଙ୍କର ଅମଳ କୀର୍ତ୍ତିରାଜି ଗାନ କଲେ (ଜଗୁଃ) । ନାଚିବାରେ ତନ୍ମୟ ହୋଇଗଲେ ସମସ୍ତେ ।

ପ୍ରଶ୍ନ-୪୨: ଦିବ୍ୟ ଆକାଶରେ ଗନ୍ଧର୍ବ କିନ୍ନରମାନଙ୍କ ନାଚ ଦେଖିବା ପରେ, ଏଣିକି ଗୋପୀ ଗୋବିନ୍ଦ କ'ଣ ସବୁ କଲେ ?

**ବଳୟାନାଂ ନୂପୁରାଣାଂ କିଙ୍କିଣୀନାଂ ଚ ଯୋଷିତାମ୍ ।**
**ସ ପ୍ରିୟାଣାଂ ଅଭୂତ୍ ଶବ୍ଦଃ ତୁମୁଳୋ ରାସ ମଣ୍ଡଳେ ।।୬।।**

ଉ. ପ୍ରିୟତମ (ପ୍ରିୟାଣାଂ)ଙ୍କ ସହିତ ଗୋପୀମାନେ ମଧ୍ୟ ଦିବ୍ୟ ନୃତ୍ୟରେ ରାସମଣ୍ଡଳକୁ ଅଳଂକୃତ କଲେ । ସେମାନଙ୍କର ହସ୍ତର ବଳୟ, ପାଦର ନୂପୁର, କଟୀର କିଙ୍କିଣୀ ଇତ୍ୟାଦି ଦିବ୍ୟ ଧ୍ୱନି ସୃଷ୍ଟି କରିବାରେ ଲାଗିଲେ ।

ପ୍ରଶ୍ନ-୪୩: ପରବର୍ତ୍ତୀ ପର୍ଯ୍ୟାୟରେ ମଝିରେ ଜଣେ ଗୋବିନ୍ଦଙ୍କୁ ରଖି ଦଳ ଦଳ ଗୋପୀ ତାଙ୍କୁ ବେଢ଼ି ଯେତେବେଳେ ନୃତ୍ୟ କରିବାରେ ଲାଗିଲେ ସେତେବେଳର ଦୃଶ୍ୟ କିଭଳି ହୋଇଥିଲା ?

**ତତ୍ର-ଅତି ଶୁଶୁଭେ ତାଭିଃ ଭଗବାନ୍ ଦେବକୀ ସୁତଃ ।**
**ମଧ୍ୟେ ମଣୀନାଂ ହୈମାନାଂ ମହାମରକତୋ ଯଥା ।।୭।।**

ଉ. ମନେ ହେଉଥିଲା ସତେ ଯେପରି ଗୋପୀମାନେ ସୁନା ଚେନ୍‌ର ଗୋଟିଏ ଗୋଟିଏ କଡ଼ି ମାଳାକାରରେ ଗୁନ୍ଥା ହୋଇଛନ୍ତି । ଭଗବାନ ଗୋବିନ୍ଦ ମଝିରେ ମୂଲ୍ୟବାନ୍ ମହାମର୍କତମଣିର ଲକେଟ୍ ଭଳି ଅତିଶୟ ଶୋଭାୟମାନ (ଅତି ଶୁଶୁଭେ) ହେଉଛନ୍ତି ।

ସେ ଦିବ୍ୟ ଦୃଶ୍ୟର ବର୍ଣ୍ଣନା କଲାବେଳେ ବକ୍ତା ଶୁକଦେବଜୀ ମଧ୍ୟ ଭାବ

ବିହ୍ୱଳ ହୋଇ ସୁନ୍ଦର ଭୌତିକ ଦୃଷ୍ଟାନ୍ତଟିଏ ଉପସ୍ଥାପନ କରିଛନ୍ତି । ଗୋପୀମାନଙ୍କର ଓ ଗନ୍ଧର୍ବ ମାନଙ୍କର ଦିବ୍ୟ ଗୀତ ମେଘ ଗର୍ଜନ । ସେମାନଙ୍କ କଳା, ଉନ୍ମୁକ୍ତ କେଶ ରାଶୀ ବର୍ଷଣ ମୁଖର କଳାମେଘ । ସେମାନଙ୍କର ସ୍ୱେଦ ବିନ୍ଦୁ ବର୍ଷାଜଳ । ଗୋରା ଗୋରା ଦେହ ସବୁ ବିଜୁଳି ରେଖା କି ! ! !

ପ୍ରଶ୍ନ-୪୪: ଅଲୌକିକ ରାସ-କ୍ରୀଡ଼ା ସମୟରେ ଲୌକିକ ଜଗତର କି ଅବସ୍ଥା ହେଲା ?

**ଉଚ୍ଚୈଃ ଜଗୁଃ ନୃତ୍ୟମାନା 'ରକ୍ତକଣ୍ଠ୍ୟୋ ରତିପ୍ରିୟାଃ ।**
**କୃଷ୍ଣ-ଅଭିମର୍ଶ ମୁଦିତା ଯତ୍ ଗୀତେନ-ଇଦଂ ଆବୃତମ୍ ।।୯।।**

ଉ. ଗୋବିନ୍ଦ (ରତିପ୍ରିୟାଃ) ମିଳନ ସୁଖକୁ ଗୋପୀମାନେ ଲୁଟିବାରେ ଲାଗିଗଲେ । ଉଚ୍ଚ କଣ୍ଠରେ ଗୋବିନ୍ଦଙ୍କ ଲୀଳା କୀର୍ତ୍ତନ କଲେ । ତାହା ପୁଣି ସୁନ୍ଦର ଦିବ୍ୟ ଗହଣା ମଣ୍ଡିତ କଣ୍ଠରେ (ରକ୍ତ କଣ୍ଠ୍ୟୋ) । ଠାକୁରଜୀ ମଧ୍ୟ କାହିଁକି କୃପଣତା କରନ୍ତେ । ସେ ନିଜର ଆଲିଙ୍ଗନ, ଚୁମ୍ବନ ଆଦି ସୁଖ ଦେଇ ଗୋପୀମାନଙ୍କୁ ଉତ୍ସାହିତ କରୁଥାନ୍ତି । ଗୋପୀ ଗୋବିନ୍ଦଙ୍କ ଦିବ୍ୟ ରାସକ୍ରୀଡ଼ା ଏଭଳି ମାହୋଲ ସୃଷ୍ଟି କଲା ଯେ ଶୁକଦେବଜୀଙ୍କୁ ମନେ ହେଲା ସତେ ଯେମିତି ସମଗ୍ର ଲୌକିକ ବ୍ରହ୍ମାଣ୍ଡ ମଧ୍ୟ ଅଲୌକିକ ଦିବ୍ୟତାରେ ଭରିଯାଇଛି (ଇଦଂ ଆବୃତଂ) ।

ପ୍ରଶ୍ନ-୪୫: ଭଗବାନ ମୁକୁନ୍ଦ ସ୍ୱୟଂ ଷୋଳକଳା ଓ ଚଉଷଠୀ ବିଦ୍ୟାରେ ପାରଙ୍ଗମ ସର୍ବଜ୍ଞ । ଗୋପୀମାନେ କୌଣସି ସଙ୍ଗୀତ ଶିକ୍ଷକ ବା ନୃତ୍ୟ ଶିକ୍ଷକଙ୍କ ପାଖରେ ଗୀତ ନାଚ ଶିକ୍ଷା କରି ନଥିଲେ ଜୀବନରେ । ସେମାନେ କିପରି ଗୋବିନ୍ଦଙ୍କ ସହ ତାଳ ମେଳ ରଖି ନାଚ ଗୀତରେ ମାତିଲେ ?

**କାଚିତ୍ ସମ ମୁକୁନ୍ଦେନ ସ୍ୱର ଜାତିଃ ଅମିଶ୍ରିତା ।**
**ଉନ୍ନିନ୍ୟେ ପୂଜିତା ତେନ ପ୍ରୀୟତା ସାଧୁ ସାଧୁ-ଇତି ।**
**ତତ୍‌ଏବ ଧ୍ରୁବଂ ଉନ୍ନିନ୍ୟେ ତସ୍ୟୈ ମାନଂ ଚ ବହୁ-ଅଦାତ୍ ।।୧୦।।**

ଉ. ଗୋପୀମାନେ ସବୁ ବେସୁରା ଗାଇଲେ । ଅତାଳ ନାଚିଲେ(ଅମିଶ୍ରିତା) । ମଜା କଥା ହେଲା ଗୋବିନ୍ଦ ଭାବଗ୍ରାହୀ । ଭକ୍ତର ଦୋଷ ଦେଖିବା ତାଙ୍କ ଜାତକରେ ନାହିଁ । ସେ ଧରିନେଲେ ଗୋପୀମାନେ ଆଳାପ ଗାଉଛନ୍ତି, ଶାସ୍ତ୍ରୀୟ ଢ଼ଙ୍ଗରେ ନାଚୁଛନ୍ତି (ଉନ୍ନିନ୍ୟେ) । ଭଗବାନ ମଝିରେ ବାଃ ବାଃ (ସାଧୁ-ସାଧୁ-ଇତି) କହି ଉତ୍ସାହିତ କରୁଥିଲେ । ସେ ଗୋପୀମାନଙ୍କର ପ୍ରଶଂସା ମଧ୍ୟ (ମାନଂ ଚ ବହୁ-ଅଦଦାତ୍) କଲେ ।

ପ୍ରଶ୍ନ-୪୬: ଏତେ ଦୀର୍ଘ ସମୟ ନାଚ ଗୀତରେ ବିଭୋର ହୋଇ ଗୋପ ଲଳନାମାନେ ଥକି ପଡ଼ିଲେନି (ପରିଶ୍ରାନ୍ତା) କି ?

**କାଚିତ୍ ରାସ ପରିଶ୍ରାନ୍ତା ପାର୍ଶ୍ୱସ୍ଥସ୍ୟ ଗଦାଭୃତଃ ।**
**ଜଗ୍ରାହ ବାହୁନା ସ୍କନ୍ଧଂ ଶ୍ଲଥ ବଳୟ ମଲ୍ଲିକା ।।୧୧।।**

ଉ. କେହି କେହି ଅବଶ୍ୟ ଥକି ପଡୁଥିଲେ । ପ୍ରତ୍ୟେକ ଗୋପୀ ପାଖେ ପାଖେ ଜଣେ ଜଣେ ଗୋବିନ୍ଦ ଥାଆନ୍ତି । କୌଣସି ଗୋପୀ ହାଲିଆ ହୋଇ ଆଉଜି ପଡ଼ିଲେ ଭକ୍ତ ବତ୍ସଳ ଭଗବାନ (ଗଦାଭୃତ) ତା ମସ୍ତକକୁ ନିଜ କାନ୍ଧ ଉପରେ ରଖି ଦେଉଥାନ୍ତି । ହସ୍ତର କଙ୍କଣ, ବଳା ଢ଼ିଲା ପଡ଼ିଗଲେ ଆଉଁଶି ସେ ନିଜ ହାତରେ ହେଉଥିଲେ । ଗଭାରୁ ଦିବ୍ୟ ମଲ୍ଲୀଫୁଲ ଖସି ପଡୁଥିଲେ ତାଙ୍କ ଦିବ୍ୟ କୋମଳ ହସ୍ତରେ ପୁଣି ସେ ସବୁକୁ ସଜାଡ଼ି ଦେଉଥିଲେ (ଶ୍ଲଥ ବଳୟ ମଲ୍ଲିକା) ।

ପ୍ରଶ୍ନ-୪୭: ଗୋପୀମାନେ ଗୋବିନ୍ଦଙ୍କର ଅଫୁରନ୍ତ ପ୍ରେମର ପୁରା ମଜା ଉଠାଉଥିଲେ । ସେଭଳି ପରିସ୍ଥିତିରେ ଗୋପାଙ୍ଗନାମାନେ ଗୋବିନ୍ଦଙ୍କୁ କ'ଣ କିଛି ପ୍ରତିଦାନ ଦେଉଥିଲେ କି ?

**ତତ୍ର-ଏକ-ଅଂସ ଗତଂ ବାହୁଂ କୃଷ୍ଣସ୍ୟ-ଉତ୍ପଳ ସୌରଭମ୍ ।**
**ଚନ୍ଦନ ଲିପ୍ତଂ ଆଘ୍ରାୟ ହୃଷ୍ଟରୋମା ଚୁଚୁମ୍ବ ହ ।।୧୨।।**

ଉ. ଠାକୁରଜୀଙ୍କ ବାହୁ ଚନ୍ଦନ ଲିପ୍ତ ହୋଇଥାଏ । ତାଙ୍କ ଦିବ୍ୟ ଅଙ୍ଗରୁ କଇଁ ଫୁଲ କେଶରର ଗନ୍ଧ ବାହାରୁଥାଏ । ଗୋପୀ ଜଣେ ଯେବେ ଦେଖେ ତା କାନ୍ଧରେ ଗୋବିନ୍ଦଙ୍କ ବାହୁ । ସେ ଖୁସିରେ ମନ ପୁରାଇ ଆଘ୍ରାଣ କରି ନିଏ । ତାର ସର୍ବାଙ୍ଗ ଶରୀର ରୋମାଞ୍ଚିତ ହୋଇଯାଏ । ସେ ନିଜକୁ ଆଉ ସମ୍ଭାଳି ପାରେନି । ରସିକ ଇନ୍ଦ୍ର ମୌଳି କୃଷ୍ଣଙ୍କ ଦିବ୍ୟ ଗାଲରେ ଦିବ୍ୟ ପ୍ରେମଭରା ଚୁମ୍ବନଟିଏ ଆଙ୍କି ଦେଉଥିଲା (ଚୁଚୁମ୍ବତବହ) କୃଷ୍ଣପ୍ରେମର ପ୍ରତିଦାନ ରୂପରେ । ଧନ୍ୟ ଭଗବାନ । ଧନ୍ୟ ତୁମର ଭକ୍ତ । ଧନ୍ୟ ତୁମମାନଙ୍କ ଦିବ୍ୟ ରାସକ୍ରୀଡ଼ା ।

ପ୍ରଶ୍ନ-୪୮: ଗୋପୀ ମୁଖରୁ ଦିବ୍ୟ ଚୁମ୍ବନଟିଏ ପାଇ ଠାକୁରଜୀ ତାକୁ ଖୁସିରେ ଗ୍ରହଣ କଲେ ବୋଲି କିଛି ଦିବ୍ୟ ସଂକେତ ଦେଉଥିଲେ କି ?

**କସ୍ୟାଃଚିତ୍ ନାଟ୍ୟ ବିକ୍ଷିପ୍ତ କୁଣ୍ଡଳ ତ୍ୱିଷ ମଣ୍ଡିତମ୍ ।**
**ଗଣ୍ଡଂ ଗଣ୍ଡେ ସନ୍ଦଧତ୍ୟାଃ ପ୍ରାଦାତ୍ ତାମ୍ବୁଳ ଚର୍ବିତମ୍ ।।୧୩।।**

ଉ. ରାସ ନୃତ୍ୟ ସମୟରେ ଗୋପୀଟିଏ କାନରେ ଦିବ୍ୟ କୁଣ୍ଡଳଟିଏ ନାଇଥାଏ । ସେ ଖୁସିରେ ନିଜ ଗାଲକୁ ଠାକୁରଜୀଙ୍କ ଗାଲରେ ଲଗାଇ ଦିଅନ୍ତେ ପିନ୍ଧିଥିବା କୁଣ୍ଡଳ ଚମକି ଉଠିଲା (ତ୍ୱିଷ ମଣ୍ଡିତମ୍) ଗୋବିନ୍ଦ ଏ ଚମକ ଦେଖି ପ୍ରେମ ବିଭୋର ହୋଇପଡ଼ିଛନ୍ତି । ନିଜ ଦିବ୍ୟ ମୁଖରୁ ଦିବ୍ୟ ପାନ ଖଦଡ଼ା ଅଂଶ (ତାମ୍ବୁଳ ଚର୍ବିତମ୍) ସ୍ୱହସ୍ତରେ କାଢ଼ି ଆଣି ସେଇ ଗୋପୀର ମୁଖରେ ପ୍ରଦାନ କରିଛନ୍ତି (ପ୍ରାଦାତ୍) । ଏହା ହିଁ ତ ରାସ ରସିକଙ୍କର ଗୋପୀ ପ୍ରେମ ସ୍ୱୀକାରର ସଂକେତ ବା ମୋହର ।

ପ୍ରଶ୍ନ-୪୯ : ରାସଲୀଳା ସମୟରେ ଗୋପାଙ୍ଗନାମାନେ ନାଚୁଥିଲେ । ସେମାନେ ପିନ୍ଧିଥିବା ଅଳଙ୍କାର ଗୁଡ଼ିକ ମଧ୍ୟ ଦିବ୍ୟ (ଚିନ୍ମୟ) ଜୀବନ୍ତ ହୋଇ ନାଚିବାରେ ଲାଗିଲେ । ସୁମଧୁର ସ୍ୱରରେ ଗାଇବାରେ ମଧ୍ୟ ଲାଗିଥିଲେ (କୂଜନ୍ ନୂପୁର ମେଖଳା) । ଭଗବାନ ତାଙ୍କର ଭଗବତ୍ତା ଭୁଲିଯାଇଥିଲେ । ଗୋପୀମାନେ ସ୍ୱଭାବତଃ ଜୀବ । ସେମାନେ ନିଜ ନିଜର ଜୀବତ୍ୱ ଭୁଲି ଯାଇଥିଲେ ବୋଲି ପ୍ରମାଣ କ'ଣ ?

**ନୃତ୍ୟତୀ ଗାୟତୀ କାଚିତ୍ କୂଜନ୍ ନୂପୁର ମେଖଳା ।**
**ପାର୍ଶ୍ୱସ୍ଥ-ଅଚ୍ୟୁତ ହସ୍ତ-ଅବଜଂ ଶ୍ରାନ୍ତା-ଅଧାତ୍ ସ୍ତନୟୋଃ ଶିବମ୍ ॥୧୪॥**

ଉ.ବକ୍ତା ଶୁକଦେବ ଜଣେ ଆଜନ୍ମ ପରମହଂସ ମୁନି । ସେ ବିନା ସଂକୋଚରେ ବର୍ଣ୍ଣନା କରୁଛନ୍ତି ଗୋପୀକାଟିଏ ନାଚି ଗାଇ ପରିଶ୍ରାନ୍ତ ହୋଇଯାଇଛି । ପାଖରେ ଦେଖୁଛି ରାସକ୍ରୀଡ଼ାର ମହା ନାୟକଙ୍କୁ । ଉପରେ ଦେଖୁଛି ଶତ ଶତ ବିମାନରେ ବସି ମହାରାସରେ ଆନନ୍ଦ ଲୁଟୁଛନ୍ତି ଦେବୀ ଦେବତାମାନେ । ସେ କାଳ ବିଳମ୍ବ ନ କରି ଗୋବିନ୍ଦଙ୍କର ଦୁଇ ମଙ୍ଗଳମୟ ସୁଖଦ (ଶିବଂ) ହସ୍ତକୁ ଆଣି ନିଜର ଦୁଇ କୁଚରେ ସ୍ଥାପନ କରିଦେଇଛି । ଭୁଲି ଯାଇଛି ସ୍ତ୍ରୀ-ପୁରୁଷର ସଂଭ୍ରମତା । ତିଳାଞ୍ଜଳି ଦେଇଛି ଲାଜ, ସଂକୋଚ ଆଦି ବୈଦିକ ଲୌକିକ କାଇଦା କଟକଣାକୁ । ମହାରାସଲୀଳାରେ ଗୋପୀମାନେ ସମସ୍ତେ କେବଳ କୁମାରୀ ସନ୍ନ୍ୟାସିନୀ ନଥିଲେ । ଅନେକ ଥିଲେ ଘର ସଂସାରୀ ପକ୍‌କା ଗୃହିଣୀ ସନ୍ନ୍ୟାସିନୀ । ଗୋପୀମାନେ ଯଦି ନିଜକୁ ସଂସାର ସୁଖ ଆସକ୍ତ ଗୋପୀ ମାନୁଥାନ୍ତେ ଏ ଦୁଃସାହାସ କେବେ ବି କରିପାରି ନଥାନ୍ତେ ।

ପ୍ରଶ୍ନ-୫୦ : କ ଶବ୍ଦର ଅର୍ଥ ବ୍ରହ୍ମାନନ୍ଦ ପୁଣି କନ୍ଦର୍ପ । ବ୍ରହ୍ମାନନ୍ଦ ଓ କନ୍ଦର୍ପ ପୀଡ଼ା ଉଭୟକୁ ତୁଚ୍ଛ କରୁଥିବା ଅମୂଲ୍ୟ ଚିଜଟି ଶ୍ରୀକୃଷ୍ଣଙ୍କ ଦିବ୍ୟ ପ୍ରେମ । ଆଜି ଗୋପୀମାନେ ମହାଲକ୍ଷ୍ମୀଙ୍କର ପ୍ରାଣ ବଲ୍ଲଭଙ୍କୁ (ଶ୍ରିୟ ଏକ-ଅନ୍ତ ବଲ୍ଲଭମ୍) ପାଖରେ ପାଇଛନ୍ତି କୃଷ୍ଣ ରୂପରେ । କୃଷ୍ଣଙ୍କର ଗୁପ୍ତ ଷଡ଼ ଐଶ୍ୱର୍ଯ୍ୟ ମଧ୍ୟରୁ କେଉଁଟିକୁ ପାଇବାକୁ ସେମାନେ ଆଗ୍ରହ ପ୍ରକାଶ କଲେ ?

**ଗୋପ୍ୟୋ ଲବ୍ଧ୍ୱା-ଅଚ୍ୟୁତଂ କାନ୍ତଂ ଶ୍ରିୟ ଏକ-ଅନ୍ତ ବଲ୍ଲଭମ୍ ।**
**ଗୃହୀତ କଣ୍ଠ୍ୟ ତତ୍ ଦ୍ୱାର୍ଭ୍ୟାଂ ଗାୟନ୍ତ୍ୟଃ ତଂ ବିଜହ୍ରିରେ ॥୧୫॥**

ଉ. କୌଣସି ଗୋଟିଏ ହେଲେ ଗୁପ୍ତ ଐଶ୍ୱର୍ଯ୍ୟକୁ ସେମାନେ ଲୋଭ କରି ନାହାନ୍ତି । ବରଂ ରସିକ ଶେଖରଙ୍କର ଗୁପ୍ତତମ ଭଣ୍ଡାରରେ ଅନେକ ଯୁଗରୁ ସାଇତା ଥିବା ପ୍ରେମ ରସ (ଅନର୍ପିତ ଚରିଂ ଚିରାତ୍)ଲୁଟି ନେଇଛନ୍ତି (ବିଜହ୍ରିରେ) । ଭଗବାନଙ୍କ କଣ୍ଠରେ ଦୁଇ ହାତ ଛନ୍ଦି ଦେଇ (ଦ୍ୱାର୍ଭ୍ୟାଂ) ଗଳାର ହାର ହୋଇଯାଇଛନ୍ତି । ତୁଣ୍ଡରେ ତାଙ୍କର ଦିବ୍ୟ କୃଷ୍ଣ ଲୀଳା ଗାନ । ମନରେ ତାଙ୍କର ଲୀଳା ସ୍ମରଣ । କାରଣ ସେମାନେ ସମସ୍ତେ ପ୍ରେମ ସନ୍ନ୍ୟାସିନୀ । କୃଷ୍ଣ ପ୍ରେମ ମନ୍ଦିରର ଧ୍ୱଜାଧାରିଣୀ । ଐଶ୍ୱର୍ଯ୍ୟ ଲୋଭ କଲେ ଦେବ ଦୁର୍ଲ୍ଲଭ କୃଷ୍ଣ ପ୍ରେମ ରସ ଖାରିଆ ହୋଇଯିବ ଯେ !!

ରାସଲୀଳା ସମୟରେ ଗୋପୀମାନେ ତାଙ୍କର ସର୍ବସ୍ୱ ସମର୍ପଣ କରିଛନ୍ତି ଗୋବିନ୍ଦଙ୍କ ପାଖରେ । ଭଗବାନ ମଧ୍ୟ ନିଜର ଦିବ୍ୟ ସ୍ପର୍ଶ, ଆଲିଙ୍ଗନ, ଚଞ୍ଚଳ କଟାକ୍ଷ, ସ୍ମିତ ହାସ୍ୟ ଇତ୍ୟାଦି ଅକାତରରେ ଅଜାଡ଼ି ଦେଇଛନ୍ତି । ଏ ଜୀବ ଶିବ ମିଳନ ଆଦୌ ଭୌତିକ ନୁହେଁ । ଏହା ଏକ ଅଲୌକିକ ଅସାଧାରଣ ମିଳନ । ବକ୍ତାଶ୍ରୀ ଶୁକଦେବଙ୍କର ମନେ ହୋଇଛି ସତେ ଯେମିତି ଶିଶୁଟିଏ ଦର୍ପଣରେ ନିଜ ପ୍ରତିବିମ୍ବ ସହ ଖେଳ କୌତୁକରେ ମାତି ଆତ୍ମହରା ହେଉଛି କି ଆଉ !!!

ପ୍ରଶ୍ନ-୫୧ : ଏ ଦିବ୍ୟ କ୍ରୀଡ଼ା ଦର୍ଶନରେ ସ୍ୱର୍ଗର ଦେବୀ ଦେବତା ମାନେ ନିଜର ବୁଦ୍ଧି ହଜାଇ ଦେଇଥିଲେ କି ?

**କୃଷ୍ଣ ବିକ୍ରୀଡ଼ିତଂ ବୀକ୍ଷ୍ୟ ମୁମୁହୁଃ ଖେଚର ସ୍ତ୍ରିୟଃ ।**
**କାମ-ଅର୍ଦ୍ଦିତାଃ ଶଶାଙ୍କଃ ଚ ସଗଣୋ ବିସ୍ମିତୋଽଭବନ୍ ॥୧୯॥**

ଉ. ଆକାଶରେ ଦିବ୍ୟ ବିମାନରେ ଥିଲେ ମଧ୍ୟ ସେମାନଙ୍କର ବୁଦ୍ଧି ହଜିଗଲା । ସେମାନେ କନ୍ଦର୍ପ ଜ୍ୱାଳାରେ (କାମାର୍ଦ୍ଦିତାଃ) ଯନ୍ତ୍ରଣା ପାଇଲେ । ସ୍ୱୟଂ ଚନ୍ଦ୍ରଦେବ (ଶଶାଙ୍କଃଚ) ମଧ୍ୟ ନିଜର ସତେଇଶ ପତ୍ନୀଙ୍କ ସହିତ (ସଗଣୋ) ମୋହିତ ହୋଇଯିବା (ମୁମୁହୁଃ) କ'ଣ ସାମାନ୍ୟ କଥା !!! ଏହାହିଁ କୃଷ୍ଣପ୍ରେମର ପରାକାଷ୍ଠା ।

ପ୍ରଶ୍ନ-୫୨ : ବୈଦିକ ସାହିତ୍ୟରେ ନାରାୟଣ ପରମାତ୍ମା ରୂପେ ବର୍ଣ୍ଣିତ । ପରମାତ୍ମା ସର୍ବଦା ଆତ୍ମାରାମ । ସେ ପୁଣି ରମଣ ଇଚ୍ଛା କଲେ କିପରି ଓ କାହିଁକି ?

**କୃତ୍ୱା ତାବନ୍ତଂ ଆତ୍ମାନଂ ଯାବତୀଃ ଗୋପ ଯୋଷିତଃ ।**
**ରେମେ ସ ଭଗବାନ୍ ତାଭିଃ ଆତ୍ମାରାମୋଽପି ଲୀଳୟା ॥୨୦॥**

ଉ. ବେଦ ଓ ବେଦାନ୍ତ ଜ୍ଞାନୀମାନଙ୍କ ପାଇଁ ଲିଖିତ । ଭାଗବତ ଗ୍ରନ୍ଥ କିନ୍ତୁ ଭକ୍ତ କଣ୍ଠହାର । ଭକ୍ତମାନଙ୍କୁ ସେ ସବୁ ଶୁଷ୍କ ଜ୍ଞାନରୁ କିଛି ରସ ମିଳେନା । ଭକ୍ତକୁ ଆନନ୍ଦ ଦେବାକୁ ଭଗବାନଙ୍କୁ ଯେତେ ଗୋପୀ ସେତେ କୃଷ୍ଣ (କୃତ୍ୱା ତାବନ୍ତଂ ଆତ୍ମାନଂ) ହେବାକୁ ପଡ଼େ । ଦୁଷ୍ଟ ଦଳନ, ସନ୍ଥ ପାଳନ ଓ ଲୌକିକ ଧର୍ମ ସଂସ୍ଥାପନ କରିବା କାମ ନାରାୟଣ କରିଦେଇପାରନ୍ତି । ଅଲୌକିକ ପ୍ରେମଦାନ କରିବା ତାଙ୍କ ମର୍ଯ୍ୟାଦାର ବାହାରେ । ସେ କଥା କରିବାକୁ ଶ୍ରୀକୃଷ୍ଣଙ୍କୁ ଶ୍ରୀରାଧାଙ୍କ ସହିତ ଲୀଳା କରିବାକୁ ପରିସ୍ଥିତି ବାଧ କରେ (ଲୀଳୟା) । ସେହି କାରଣରୁ ଆତ୍ମାରାମ ଓ ଆପ୍ତକାମ ଶ୍ରୀକୃଷ୍ଣଙ୍କୁ ଏକ କଳ୍ପରେ ୪୩୨କୋଟି ବର୍ଷ ମଧ୍ୟରେ ଥରେ ମାତ୍ର ଗୋପୀରମଣ ଲୀଳା କରିବାକୁ ପଡ଼ିଛି ।

ପ୍ରଶ୍ନ-୫୩: ଦିବ୍ୟ ରାସକ୍ରୀଡ଼ାରେ କାଳର ମଧ୍ୟ କର୍ତ୍ତୃତ୍ୱ କିଛି ନଥିଲା । କେତେ ସମୟ ଧରି ରାସ ଲୀଳା ହେଲାଣି ଭକ୍ତ ଭଗବାନ କାହାକୁ ହେଲେ ମାଲୁମ୍ ନଥିଲା । ଗୋପୀମାନେ ନାଚି ଗାଇ ପରିଶ୍ରାନ୍ତ ହୋଇଗଲେ ଗୋବିନ୍ଦ କ'ଣ ନୀରବ ନିଷ୍କ୍ରିୟ ରହିଗଲେ କି ଆଉ ?

**ତାସାଂ ଅତି ବିହାରେଣ ଶ୍ରାନ୍ତାନାଂ ବଦନାନି ସଃ ।**
**ପ୍ରାମୃଜତ୍ କରୁଣଃ ପ୍ରେମ୍ଣା ଶନ୍ତମେନ-ଅଙ୍ଗ ପାଣିନା ॥୨୧॥**

ଉ. ନା ନା ଗୋବିନ୍ଦ ଆଦୌ ବସି ରହିଲେନି । ବରଂ ନିଜ ଦିବ୍ୟ ସୁଖଦ (ଶନ୍ତମେନ) କର କମଳରେ (ଅଙ୍ଗ ପାଣିନା) କରୁଣାବଶତଃ ଗୋପାଙ୍ଗନାମାନଙ୍କର ଶ୍ରାନ୍ତ, କ୍ଲାନ୍ତ ମୁଖମଣ୍ଡଳକୁ (ବଦନାନି) ପୋଛି ପକାଉଥିଲେ (ପ୍ରାମୃଜତ୍) । କାରଣ ସେ ଯେ କରୁଣା ବରୁଣାଳୟ । ଭକ୍ତର କଷ୍ଟ ସେ ସହନ୍ତେ କିପରି ?

କୃଷ୍ଣ ଲୀଳା କୀର୍ତ୍ତନ କରି କରି ଗୋପ ବଧୂମାନେ ଏବେ ନିଛକ ନର୍ତ୍ତକୀ ହୋଇଗଲେଣି । ସେମାନେ ତଥାପି ଗୋବିନ୍ଦଙ୍କୁ ଯଥୋଚିତ ସମ୍ମାନ କରିବାକୁ ଭୁଲି ନାହାନ୍ତି । ସେମାନଙ୍କର ଦିବ୍ୟ କୁଣ୍ଡଳଶ୍ରୀ, ଦିବ୍ୟ ଗଣ୍ଡଦେଶଶ୍ରୀ, ଅମୃତମୟ ଚରମ ତୃପ୍ତିର ହସ ଓ ପ୍ରେମ ପୂର୍ଣ୍ଣ କଟାକ୍ଷ ଇତ୍ୟାଦି ଦର୍ଶନ କରି ରାସ ରସିକ ମଧ୍ୟ ବିଭୋର । ଭକ୍ତମାନଙ୍କୁ ସାଙ୍ଗରେ ଧରି ଭଗବାନ ଯମୁନା ଜଳରେ ପ୍ରବେଶ କରିଛନ୍ତି । ବର୍ତ୍ତମାନ ଜଳ ବିହାର ଲୀଳାର ଶୁଭାରମ୍ଭ ହୋଇଛି । ଏଠାରେ ଶୁକ ଦେବଜୀ ଏକ ସୁନ୍ଦର ଦୃଷ୍ଟାନ୍ତ ଦେଇଛନ୍ତି । ସତେ ଯେପରି ଗୋଟିଏ ରାଜା ଦନ୍ତା ହାତୀ ଦଳେ ସ୍ତ୍ରୀ ହାତୀମାନଙ୍କ ସହିତ ଜଳକ୍ରୀଡ଼ା କରୁଛି କି ଆଉ !! ହସ୍ତୀ ହସ୍ତିନୀଙ୍କର ଜଳକ୍ରୀଡ଼ା କେବଳ ଜଳ ଫିଙ୍ଗାଫିଙ୍ଗିରେ ସୀମିତ ରୁହେ । ସେଥିରେ ଅନ୍ୟ କିଛି ଲୁଚାଛପା ଉଦ୍ଦେଶ୍ୟ ନଥାଏ ।

ଜଳ ବିହାର ଲୀଳାରେ ଶୁକଦେବ ପରମହଂସ ବୁଝାଉଛନ୍ତି ହାତୀମାନେ ଫସଲ କିଆରୀରେ ପଶି ସୁନା ଫସଲଥିବା ଧାନ କ୍ଷେତ୍ରର ମର୍ଯ୍ୟାଦା ନଷ୍ଟ କରିଥାନ୍ତି । ଏଠାରେ ଉଭୟ ଭକ୍ତ ଓ ଭଗବାନ ମିଶି ବେଦ ଧର୍ମ ଓ ଲୋକ ଧର୍ମ ଉଭୟକୁ ମନ୍ଥି ପକାଇଛନ୍ତି । ଲୋକ ଚକ୍ଷୁରେ ଧର୍ମର ମର୍ଯ୍ୟାଦା ଭୂଲୁଣ୍ଠିତ ହୋଇଛି । ତଥାପି ଭକ୍ତ ଭଗବାନ ଉଭୟେ ଲାଭବାନ୍ । ପରସ୍ପରର ତଥା କଥିତ କଳଙ୍କ ରାଶି ଧୋଇବାର ଭରପୂର ପ୍ରଯତ୍ନ କରିଛନ୍ତି । ଯଦିଚ ପ୍ରେମ ଦୃଷ୍ଟିରେ ଉଭୟ ପକ୍ଷ ସଂପୂର୍ଣ୍ଣ ନିଷ୍କଳଙ୍କ । ଏଠାରେ ଜଳ ବିହାରର ଏକମାତ୍ର ଉଦ୍ଦେଶ୍ୟ ପରସ୍ପର ଠାରୁ ପ୍ରେମରସ ଲୁଟିନେବା ।

ପରବର୍ତ୍ତୀ ପର୍ଯ୍ୟାୟରେ ଗୋପୀ ଗୋବିନ୍ଦଙ୍କର ଉପବନ ବିହାର ଲୀଳା ଆରମ୍ଭ ହୋଇଛି । ଯମୁନା କୂଳରେ ସେତେବେଳକୁ ପ୍ରକୃତିରାଣୀ ଦିବ୍ୟ ପତ୍ର, ପୁଷ୍ପ, ଫଳ, ବୃକ୍ଷଲତା, ଗୁଳ୍ମ, ପକ୍ଷୀ, ପଶୁ ସବୁଙ୍କୁ ସଜାଡ଼ି ସାଇତି ସାରିଥାନ୍ତି ଏହି ଦିବ୍ୟ ଲୀଳା ଲାଗି । ଲୌକିକ କାମ ଉପଦ୍ରବ ଉତ୍ତେଜନାକୁ ଅବରୁଦ୍ଧ କରି (ଆତ୍ମନି ଅବରୁଦ୍ଧ ସୌରତଃ) ଠାକୁରଜୀ ଶରଣାଗତ ଗୋପୀମାନଙ୍କ ଦିବ୍ୟ ପ୍ରେମ ରସର ଅଥଳ ସାଗରରେ ବୁଡ଼ାଇ ଦେଇଛନ୍ତି ସେମାନଙ୍କର ଜୀବନର ଜନ୍ମ-ଜନ୍ମାନ୍ତରର ଇଚ୍ଛା, କାମନା, ବାସନା ସବୁକୁ ପୂର୍ତ୍ତି କରିଦେଇ । କାରଣ ବାଳକ ଅବସ୍ଥାରେ ସେ ପ୍ରତ୍ୟେକ ଗୋପୀଙ୍କ କାନମୂଳେ କହିଥିଲେ ଯେ ରାତିରେ କେବେ ବଂଶୀସ୍ୱନ ଶୁଣିଲେ ରାସଲୀଳା ପର୍ବକୁ ନିଶ୍ଚୟ ଆସିବ । ବେଦ ମତରେ ସେ ସତ୍ୟ ସଂକଳ୍ପ । ଆଜି ସେଇ ସଂକଳ୍ପ ସେ ପୂର୍ଣ୍ଣ କରିଛନ୍ତି । ଏ ଲୀଳା ଚାଲିଛି ଏକ ବ୍ରହ୍ମରାତ୍ରୀ ପର୍ଯ୍ୟନ୍ତ ଅର୍ଥାତ୍ ଚାରିଶତ ବତ୍ରିଶ କୋଟି ମନୁଷ୍ୟ ବର୍ଷ ଯାଏଁ ।

ପ୍ରଶ୍ନ-୫୪: ପରୀକ୍ଷିତ ଜଣେ ଭକ୍ତ ରାଜା ଥିଲେ ଅବଶ୍ୟ । ଅଲୌକିକ ରାସ ଲୀଳାର ବିସ୍ତୃତ ବର୍ଣ୍ଣନାସବୁ ସେ କ'ଣ ସଂପୂର୍ଣ୍ଣ ହୃଦୟଙ୍ଗମ କରିପାରିଲେ ?

**ପରୀକ୍ଷିତ ଉବାଚ**

**ସଂସ୍ଥାପନାୟ ଧର୍ମସ୍ୟ ପ୍ରଶମାୟ-ଇତରସ୍ୟ ଚ ।**
**ଅବତୀର୍ଣ୍ଣୋ ହି ଭଗବାନ୍ ଅଂଶେନ ଜଗତ-ଈଶ୍ୱରଃ ॥୨୭॥**

ଉ. ରାଜାଙ୍କ ପକ୍ଷେ ସେ ସବୁ ବୁଝିବା ଆଦୌ ସମ୍ଭବ ହୋଇନଥିଲା । ତେଣୁ ତିନିଟି ଶ୍ଳୋକରେ ସେ ପ୍ରଶ୍ନ ପଚାରିବାକୁ ସାହସ ବାନ୍ଧିଛନ୍ତି । ପଚାରିଛନ୍ତି ଯେ କୃଷ୍ଣଙ୍କ ଅବତାର ହୁଏ ଧର୍ମ ରକ୍ଷା ଓ ଅଧର୍ମର (ଇତରସ୍ୟ) ବିନାଶ ବା ମୂଳୋତ୍ପାଟନ ଲାଗି । ସ୍ୱୟଂ ନାରାୟଣ ଏ ଦାୟିତ୍ୱ ସମ୍ଭାଳନ୍ତି ନିଜ ଐଶ୍ୱର୍ଯ୍ୟ ଅଂଶରେ (ଅଂଶେନ) ଅବତାର ଗ୍ରହଣ କରି (ଅବତୀର୍ଣ୍ଣୋ) ।

ପ୍ରଶ୍ନ-୫୫: ନାରାୟଣଙ୍କର ଧର୍ମ ବିଷୟରେ ଆଉ କେଉଁ କେଉଁ ଦାୟିତ୍ୱ ଥିବା କଥାର ସୂଚନା ଦେଲେ ରାଜା ପରୀକ୍ଷିତ ?

**ସ କଥଂ ଧର୍ମ ସେତୁନାଂ ବକ୍ତା କର୍ତ୍ତା-ଅଭିରକ୍ଷିତା ।**
**ପ୍ରତୀପଂ ଆଚରତ୍ ବ୍ରହ୍ମନ୍ ପରଦାରା-ଅଭିମର୍ଶନମ୍ ॥୨୮॥**

ଉ. ରାଜା ପରୀକ୍ଷିତ କହିଲେ ଯେ ଭଗବାନ ନାରାୟଣ ଧର୍ମ ଆଚରଣର (ଧର୍ମସେତୁନାଂ) ବକ୍ତା, ଧର୍ମର କର୍ତ୍ତା ଓ ଧର୍ମର ରକ୍ଷା ଦାୟିତ୍ୱ ମଧ ତାଙ୍କ ଉପରେ ନ୍ୟସ୍ତ । ତଥାପି ଆଶ୍ଚର୍ଯ୍ୟର କଥା ଧର୍ମର ବିପରୀତ ଆଚରଣ (ପ୍ରତୀପଂ) କଲେ କିପରି (କଥଂ) । ରାଜାଙ୍କ ମତରେ ଗୋପୀମାନଙ୍କ ସହିତ ଗୋପୀ ଜନ ବଲ୍ଲଭଙ୍କର ରମଣ ପରଦାରା-ଅଭିମର୍ଷଣ ଭଳି ଏକ ଘୋର ଧର୍ମ ବିରୋଧୀ ବା ପାପ କର୍ମ ।

ପ୍ରଶ୍ନ-୫୬: ଏଭଳି ଅଡୁଆ ପ୍ରଶ୍ନ କରିବାକୁ ଯାଇ ନିଜେ ରାଜା ବଡ଼ ଗୋଳମାଳିଆ ସ୍ଥିତିରେ ପହଞ୍ଚିଛନ୍ତି ବୋଲି ବକ୍ତା ମହାଶୟ କିପରି ଧରିନେଲେ ?

**ଆପ୍ତକାମୋ ଯଦୁପତିଃ କୃତବାନ୍ ବୈ ଜୁଗୁପ୍ସିତମ୍ ।**
**କିଂ ଅଭିପ୍ରାୟ ଏତତ୍ ନଃ ସଂଶୟଂ ଛିନ୍ଧି ସୁବ୍ରତ ॥୨୯॥**

ଉ. ଯେ ଭୁଲ କରିପାରେ ସେ ଜୀବ । ଯେ ଭୁଲ କରିପାରନ୍ତି ନାହିଁ ସେଇ ତ ଭଗବାନ । ଏକଥା ଭଲ ଭାବରେ ଜାଣିଛନ୍ତି ରାଜା । ଦୃଢ଼ ବିଶ୍ୱାସ କରୁଛନ୍ତି ମଧ । ରାଜାଙ୍କ ଲୌକିକ ବୁଦ୍ଧିରେ ଏ ଅଲୌକିକ କାଣ୍ଡ (ରମଣ କ୍ରିୟା) ଆଦୌ ଧରି ହେଉନି । ରାଜା ସେଥିପାଇଁ ତାଙ୍କର ସନ୍ଦେହ (ସଂଶୟ) ଦୂର କରିବାକୁ ବକ୍ତା ମହୋଦୟଙ୍କୁ ଯୋଡ଼ ହସ୍ତରେ ନିବେଦନ କରିଛନ୍ତି । ମାତ୍ର ରାଜାଙ୍କ ଶବ୍ଦ ଯୋଜନା ଅତ୍ୟନ୍ତ ନିକୃଷ୍ଟ ଧରଣର । କାରଣ ରାଜା ଯଦିଓ ସ୍ୱୀକାର କରୁଛନ୍ତି ଯେ କୃଷ୍ଣ ଯଦୁବଂଶ ଭଳି ଏକ ମହାନ ବଂଶ ପରମ୍ପରାଙ୍କର ଶ୍ରେଷ୍ଠ ଦାୟାଦ । ସେ ଆପ୍ତକାମ ମଧ କିନ୍ତୁ ପରସ୍ତ୍ରୀ ଅଭିଗମନ ଭଳି ଏକ ଜଘନ୍ୟ କାଣ୍ଡ (ଜୁଗୁପ୍ସିତଂ) ଭଳି ଅତ୍ୟନ୍ତ ଘୃଣ୍ୟ କର୍ମ କରିବାର ଲକ୍ଷ୍ୟ ହୁଏତ ମହତ୍ ହୋଇପାରେ । କାରଣ ଏଭଳି ଏକ କର୍ମ ଭଗବାନ ନାରାୟଣ ଅତୀତରେ ଜଳନ୍ଧର ବଧ ବେଳେ ରାକ୍ଷସ ରାଜ ଜଳନ୍ଧରଙ୍କର ପତିବ୍ରତା ସତୀ କୁଳର ମଉଡ଼ମଣି ତୁଳସୀଙ୍କର ସତୀତ୍ୱ ମଧ ହରଣ କରିଥିବା ଦୃଷ୍ଟାନ୍ତ ସେ ଅବଗତ ଅଛନ୍ତି ।

ପ୍ରଶ୍ନ-୫୭: ତିନି ଶ୍ଳୋକରେ ରାଜା ପରୀକ୍ଷିତଙ୍କ ଏଭଳି ଏକ ନିହାତି ଅଡୁଆ

ପ୍ରଶ୍ନର ଉତ୍ତର ଦେବାକୁ ବକ୍ତା ମହାଶୟଙ୍କୁ ଏଗାରଟି ଶ୍ଳୋକ (୩୦-୪୧)ଖର୍ଚ୍ଚ କରିବାକୁ ପଡ଼ିଛି । ଶୁକଦେବଜୀ କେଉଁ କେଉଁ ଦୃଷ୍ଟାନ୍ତ ସାହାଯ୍ୟରେ କଥାଟିକୁ ରାଜାଙ୍କୁ ବୁଝାଇବାକୁ ପ୍ରୟାସ କଲେ ?

ଶ୍ରୀ ଶୁକ ଉବାଚ

**ଧର୍ମ ବ୍ୟତିକ୍ରମୋ ଦୃଷ୍ଟ ଈଶ୍ୱରାଣାଂ ଚ ସାହସମ୍ ।**
**ତେଜୀୟସାଂ ନ ଦୋଷାୟ ବହ୍ନେଃ ସର୍ବଭୁଜୋ ଯଥା ॥୩୦॥**

ଉ. ପ୍ରଥମ ଦୃଷ୍ଟାନ୍ତରେ ଶୁକଦେବଜୀ ବୁଝାଉଛନ୍ତି ଯେ ଈଶ୍ୱର ଅଂଶରେ ଜାତ ତେଜୋମୟ ଦେବୀ ଦେବତା, ସାଧୁ ସନ୍ଥଙ୍କ ଠାରେ ମଧ୍ୟ ଅଧର୍ମ କାର୍ଯ୍ୟ ହେବାର ଦେଖିବାକୁ ମିଳେ । ଅଗ୍ନି ଦେବତା ପବିତ୍ର ଅପବିତ୍ର ଯାହା ତାଙ୍କ ମୁଖକୁ ଯାଏ ସବୁ ଆତ୍ମସାତ୍ କରି ମଧ୍ୟ ସର୍ବଦା ପବିତ୍ର ରହିପାରନ୍ତି ।

ପ୍ରଶ୍ନ-୫୮ : ଦ୍ୱିତୀୟ ଦୃଷ୍ଟାନ୍ତରେ ବକ୍ତା ମହାଶୟ ପୁଣି ଅନ୍ୟ କେଉଁ ଅଲୌକିକ କଥାଟିର ଉପସ୍ଥାପନ କଲେ ?

**ନ-ଏତତ୍ ସମାଚରେତ୍ ଜାତୁ ମନସା-ଅପି ହି-ଅନୀଶ୍ୱରଃ ।**
**ବିନଶ୍ୟତି-ଆରଚତ୍ ମୌଢ୍ୟାତ୍ ଯଥା ରୁଦ୍ରୋଽବ୍‌ଧିଜଂ ବିଷମ୍ ॥୩୧॥**

ଉ. ସ୍ଥୁଳ ଭାବରେ ସେଭଳି ମହାପୁରୁଷଙ୍କ ଆଚରଣ କରିବାକୁ ମାୟାବଦ୍ଧ ଜୀବ (ଅନୀଶ୍ୱରଃ) କରିବାକୁ ସାହସ କରିବା ତ ଦୂରର କଥା ମନରେ ମଧ୍ୟ ଚିନ୍ତନ କରିବା ଅନୁଚିତ୍ । ଯଦି କେହି କରେ ତାହାର ମୂର୍ଖ ପଣିଆକୁ କ୍ଷମା ମିଳିନଥାଏ । ଶଙ୍କର ଭଗବାନ ସିନା ସମୁଦ୍ର ମନ୍ଥନର ବିଷ ହଜମ କରିପାରିବେ ଅନ୍ୟ କେହି କଲେ ତାର ନିଶ୍ଚୟ ସର୍ବନାଶ ହୁଏ ।

ଏ ବିଷୟରେ କଳିଯୁଗରେ ଅନେକ ଉଦାହରଣ ଆମ ସମ୍ମୁଖକୁ ଆସେ । ଆଦି ଶଙ୍କରାଚାର୍ଯ୍ୟ ମାଂସ ଖାଇ ତୁଳସୀ ପତ୍ର ବାନ୍ତି କରିବା, ରାମକୃଷ୍ଣ ପରମହଂସ ବେଶ୍ୟାକୁ ଆଲିଙ୍ଗନ କରି ବ୍ରହ୍ମଚାରୀ ରହିବା, ଗଙ୍ଗାନଦୀ ନାଳ ନର୍ଦ୍ଦମାର ଜଳକୁ ଆତ୍ମସାତ କରି ପବିତ୍ର ରହିବା, ମୀରା ବାଈ ବିଷ ପାନ କରି ନ ମରିବା ଏଭଳି ଅନେକ ଦୃଷ୍ଟାନ୍ତ ଏହି ଶ୍ରେଣୀୟ ବୋଲି ଧରାଯାଇପାରେ । ଏ ସବୁ ଈଶ୍ୱର ଭକ୍ତି, ନିଷ୍ଠା, ଶ୍ରଦ୍ଧା ଓ ବିଶ୍ୱାସର ଅଦ୍ଭୁତ ଫଳ । ଅପର ପକ୍ଷରେ ଆଧୁନିକ ଯୁଗର ମହାଜ୍ଞାନୀ ଗ୍ରୀକ୍ ଦାର୍ଶନିକ ସକ୍ରେଟିସ୍ ବିଷପାନ କରି ମରିଯିବାକୁ ଈଶ୍ୱର ଭକ୍ତିର ଅଭାବ ବୋଲି କୁହାଯାଇପାରେ (ମୌଢ୍ୟାତ୍) ।

ପ୍ରଶ୍ନ-୫୯ : କେଉଁ ମୂଲ୍ୟବାନ ଉପଦେଶ ମାଧ୍ୟମରେ ଶୁକଦେବ ପରମହଂସ କଳିଯୁଗୀ ମଣିଷକୁ ସାବଧାନ ବାଣୀ ଶୁଣାଇଛନ୍ତି ?

**ଈଶ୍ୱରାଣାଂ ବଚଃ ସତ୍ୟଂ ତଥା-ଏବ-ଆଚରିତଂ କ୍ୱଚିତ୍ ।**
**ତେଷାଂ ଯତ୍ ସ୍ୱବଚୋ ଯୁକ୍ତଂ ବୁଦ୍ଧିମାନ୍ ତତ୍ ସମାଚରେତ୍ ।।୩୨।।**

ଉ. ଶ୍ରୀରାମ ଈଶ୍ୱର ଅବତାର । ତାଙ୍କର ଆଦେଶ (ବଚଃ) ଓ ଆଚରଣ ଉଭୟ ପାଳନୀୟ । କାରଣ ସେ ସ୍ୱୟଂ ବିଗ୍ରହବାନ ଧର୍ମ । ସ୍ୱଧର୍ମ ପାଳନ ଉପଦେଶ ଲାଗି ତାଙ୍କ ଅବତାର । ସେ ମର୍ଯ୍ୟାଦା ପୁରୁଷୋତ୍ତମ । ପରବର୍ତ୍ତୀ ଅବତାର ଶ୍ରୀକୃଷ୍ଣଙ୍କ ବଚନ ସତ୍ୟ ଅତଏବ ମାନନୀୟ । ସେ ସ୍ୱଧର୍ମ ତ୍ୟାଗର ଉପଦେଷ୍ଟା । ସୁତରାଂ ତାଙ୍କ ଆଚରଣ ସବୁ ସମସ୍ତ ପାଇଁ ପାଳନୀୟ ନୁହେଁ । ଜୀବ ହେଉ ମହାପୁରୁଷ ହେଉ ବା ଦେବତା ହେଉ ନିଜ ଶକ୍ତି, ସାମର୍ଥ୍ୟ, କ୍ଲାସ, ଅନୁସାରେ ତାଙ୍କ ଉପଦେଶ ପାଳନ କଲେ ତାଙ୍କ ଭକ୍ତି ନିରାପଦ ରହିପାରେ । ସେଇତ ସମଝଦାରୀ ବା ଜୀବର ବୁଦ୍ଧିମତ୍ତା ଯାହାକି ଆମ ପାଇଁ ପ୍ରଶଂସନୀୟ । ସ୍ୱଧର୍ମ ପାଳନ ଓ ସ୍ୱଧର୍ମ ତ୍ୟାଗକୁ ଅଧିକାରୀ ଭେଦରେ ପାଳନ କରିବାକୁ ହୁଏ ।

ପ୍ରଶ୍ନ-୬୦: ଧର୍ମ ପାଳନ ବିଷୟରେ ବେଦ, ବେଦାନ୍ତ, ପୁରାଣମାନଙ୍କରେ ସମସ୍ତଙ୍କ ପାଇଁ ଅଲଗା ଅଲଗା ବ୍ୟବସ୍ଥା କରାଯାଇଛି । ଯାହା ମନୁଷ୍ୟର ଧର୍ମ ତାହା ପଶୁ, ପକ୍ଷୀ, ବୃକ୍ଷଲତା, ଅସୁର, ଦୈତ୍ୟ ଓ ଦେବତାଙ୍କ ଧର୍ମ ନୁହେଁ । ସମସ୍ତେ କିନ୍ତୁ ନିଜ ନିଜ ଧର୍ମ ଶୃଙ୍ଖଳାରେ ବନ୍ଧା । ଏପରିକି ବ୍ରହ୍ମା, ବିଷ୍ଣୁ ଓ ଶଙ୍କରଜୀଙ୍କ ଧର୍ମ ସ୍ୱତନ୍ତ୍ର । ମନୁଷ୍ୟର ଦୃଷ୍ଟି ଯେତେବେଳେ ସଂକୀର୍ଣ୍ଣ ହୋଇଯାଏ ସେତେବେଳେ ସେ ଈଶ୍ୱରଙ୍କୁ ମଧ୍ୟ ନିଜ ଧର୍ମ ନିକିତିରେ ତଉଲି ବୁଦ୍ଧିର ବିପର୍ଯ୍ୟୟ ଘଟାଏ ।

ପାପ, ପୁଣ୍ୟ (କୁଶଳ) ବା ଧର୍ମ ଓ ଅଧର୍ମ (ବିପର୍ଯ୍ୟୟେଣ) କେବଳ ସ୍ୱାର୍ଥ ଅନ୍ୱେଷୀ, ଅହଂକାରୀ ଲୋକ ପାଇଁ କରାଯାଇଛି ବୋଲି କାହିଁକି ଶୁକଦେବଜୀ କହିଲେ ?

**କୁଶଳ-ଆଚରିତେନ-ଏଷାଂ ଇହ ସ୍ୱାର୍ଥୋ ନ ବିଦ୍ୟତେ ।**
**ବିପର୍ଯ୍ୟୟେଣ ବା-ଅନର୍ଥୋ ନିରହଙ୍କାରିଣାଂ ପ୍ରଭୋ ।।୩୩।।**

ଉ. ମହାପୁରୁଷ, ସନ୍ଥ, ସଜ୍ଜନ ଓ ଈଶ୍ୱରଙ୍କୁ ଏଠାରେ ପ୍ରଭୋ ଶବ୍ଦ ଦ୍ୱାରା ସଙ୍କେତ କରାଯାଇଛି । ସେମାନଙ୍କର କର୍ମ ସର୍ବଦା ସ୍ୱାର୍ଥ ରହିତ । ସେ ସବୁ ଜଗତ କଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ । ସେମାନେ ସର୍ବଦା ନିରହଂକାରୀ । ତାଙ୍କୁ ମନୁଷ୍ୟ ଦୃଷ୍ଟିରେ କରାଯାଉଥିବା ପାପ କିମ୍ବା ପୁଣ୍ୟ ଉଭୟେ ବାନ୍ଧିପାରିବାରେ ସର୍ବଥା ଅସମର୍ଥ । ସେମାନେ ପାପ ପୁଣ୍ୟ ଫଳରୁ ସର୍ବଦା ଊର୍ଦ୍ଧ୍ୱରେ ଥାଆନ୍ତି ।

ପ୍ରଶ୍ନ-୬୧ : ଇତର ପ୍ରାଣୀ (ତୀର୍ଯ୍ୟଙ୍), ମର୍ତ୍ତ୍ୟ (ମନୁଷ୍ୟ) ଓ ଦେବତା (ଦିବ-ଓକସାଂ) ଇତ୍ୟାଦି ସକଳ ପ୍ରାଣୀ (ଅଖିଳ ସତ୍ତ୍ୱାନାଂ) ଙ୍କର ଶାସନ କର୍ତ୍ତା ଶ୍ରୀକୃଷ୍ଣ । ଶାସିତ ମାନଙ୍କୁ ପୁଣ୍ୟ କର୍ମ (କୁଶଳ) ଫଳର ପୁରସ୍କାର ଦେଇ, ପାପ କର୍ମ (ଅକୁଶଳ) ଫଳର ସମୁଚିତ ଦଣ୍ଡ ଦେଇ ବଦ୍ଧ ଜୀବକୁ ବାଟକୁ ଆଣିବା ଲାଗି ଆଚାର ସଂହିତା ବୈଦିକ ପାପ-ପୁଣ୍ୟ ବ୍ୟବସ୍ଥା ନିଜେ କରିଛନ୍ତି ଶ୍ରୀକୃଷ୍ଣ । କେଉଁ ନ୍ୟାୟରେ ଈଶ୍ୱର ସେ ନିୟମରୁ ଊର୍ଦ୍ଧ୍ୱରେ ବୋଲି ବକ୍ତା ମହୋଦୟ ରାଜାଙ୍କୁ ବୁଝାଇବାକୁ ପ୍ରୟାସ କଲେ ?

**କିଂ ଉତ-ଅଖିଳ ସତ୍ତ୍ୱାନାଂ ତିର୍ଯ୍ୟଙ୍ ମର୍ତ୍ତ୍ୟ ଦିବ-ଓକସାମ୍ ।**
**ଈଶିତୁଃ ଚ ଈଶିତବ୍ୟାନାଂ କୁଶଳ-ଅକୁଶଳ-ଅନ୍ୱୟଃ ॥୩୪॥**

ଉ. ଦର୍ଶନ ଶାସ୍ତ୍ରରେ ଏହାକୁ କୈମୁତକୀ ନ୍ୟାୟ କୁହାଯାଏ । ନିଃସ୍ୱାର୍ଥପର, ନିରହଂକାରୀ ମହାପୁରୁଷମାନଙ୍କୁ ଯେତେବେଳେ ପାପ ପୁଣ୍ୟର ନିୟମ ଲାଗୁ ହୁଏ ନାହିଁ । ଧର୍ମ ଶାସ୍ତ୍ରର ବ୍ୟବସ୍ଥାରେ ସେତେବେଳେ ସେମାନଙ୍କର ସର୍ବୋଚ୍ଚ ଶାସନକର୍ତ୍ତା ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କୁ କିପରି ପାପୁଣ୍ୟର ସମ୍ବନ୍ଧ ଲାଗୁ ହୋଇପାରିବ !!!

ଯେଉଁ କୃଷ୍ଣଙ୍କର ଚିନ୍ମୟ ନାମ, ଗୁଣ, ଲୀଳା ଶ୍ରବଣ କରି ମନୁଷ୍ୟ ବୈଷ୍ଣବତ୍ୱ ଲାଭ କରେ, ଯାହାଙ୍କ ଚିନ୍ମୟ ରୂପ ଧ୍ୟାନ କରି ଯୋଗୀ ସଂସାର ବନ୍ଧନ ମୁକ୍ତ ହୁଏ ପୁଣି ମୁନି ଋଷିମାନେ ଆତ୍ମାରାମ ଓ ଆପ୍ତକାମ ସ୍ଥିତି ପ୍ରାପ୍ତ ହୁଅନ୍ତି ସେଇ ଶ୍ରୀକୃଷ୍ଣ ମନୁଷ୍ୟ ଧର୍ମ ପାଳିବାକୁ ବାଧ ହେବେ କେମିତି ? ଗୀତାର ଅନ୍ତିମ ଉପଦେଶରେ ସେଇ ଶ୍ରୀକୃଷ୍ଣ ସ୍ୱଧର୍ମ ତ୍ୟାଗ କଥା କହିଛନ୍ତି । ଏକଥା ଜଣେ କୃଷ୍ଣ ଭକ୍ତ ଆଦୌ ଭୁଲିଯିବା ଉଚିତ ନୁହେଁ ।

ପ୍ରଶ୍ନ-୬୨ : ଶ୍ରୀକୃଷ୍ଣ ମନୁଷ୍ୟ ଦେହ ଧାରଣ କରିଥିବା ବେଳେ ମନୁଷ୍ୟ ଧର୍ମ ନ ମାନିବା ଅପରାଧ ନୁହେଁ କି ?

**ଗୋପୀନାଂ ତତ୍ ପତିନାଂ ଚ ସର୍ବେଷାଂ ଏବ ଦେହିନାମ୍ ।**
**ଯୋଽନ୍ତଃ ଚରତି ସୋଽଧ୍ୟକ୍ଷଃ କ୍ରୀଡ଼ନେନ-ଇହ ଦେହଭାକ୍ ॥୩୬॥**

ଉ. ଠାକୁରଜୀଙ୍କ ପାଇଁ ତାହା ଆଦୌ ଅପରାଧ ନୁହେଁ । ଗୋପୀମାନଙ୍କର ସଂସାରି ପତି ଗୋପାଳଗଣ । ଗୋପୀ, ଗୋପାଳଙ୍କ ସହିତ ଅନ୍ୟ ସମସ୍ତ ଦେହଧାରୀମାନେ ଗୋଟିଏ ଗୋଟିଏ ପଞ୍ଚଭୌତିକ ଦେହ ଧରିଥାନ୍ତି କରିଥିବା ପାପ-ପୁଣ୍ୟ ଉଭୟ ଫଳରୁ ମୁକ୍ତ ହେବାକୁ । ସେମାନଙ୍କ ଅନ୍ତଃକରଣରେ ରହି ସେଇ

ଭଗବାନ ବସି ପାପ ପୁଣ୍ୟ ହିସାବ ରଖୁଥାଆନ୍ତି । ସାଧୁସନ୍ଥଙ୍କୁ ସଂସାରକୁ ଅଣାଇ ମାର୍ଗ ଦର୍ଶନ କରାନ୍ତି । ସାଧୁ-ଅସାଧୁ, ବଦ୍ଧଜୀବ ଓ ମୁକ୍ତ ଜୀବ ସମସ୍ତଙ୍କର ଅଧ୍ୟକ୍ଷ ହୋଇ ଶ୍ରୀକୃଷ୍ଣ କିନ୍ତୁ ପଞ୍ଚଭୌତିକ ଶରୀର ଧରି (ଦେହଭାକ୍) ଆସନ୍ତି ନାହିଁ ପାପ-ପୁଣ୍ୟ ଫଳ ଭୋଗିବାକୁ । ତାଙ୍କର ଦେହ ଚିନ୍ମୟ ଦେହ । ସେ ଆସନ୍ତି କେବଳ ତାଙ୍କ ଦିବ୍ୟ ଲୀଳା ପ୍ରକଟ କରାଇବାକୁ । ସାଙ୍ଗରେ ଆଣିଥାନ୍ତି ଦିବ୍ୟ ବୃନ୍ଦାବନ ଧାମ, ଯମୁନା ନଦୀ, ଗୋବର୍ଦ୍ଧନ ପର୍ବତ ଓ ଅସଂଖ୍ୟ ନିତ୍ୟ ଲୀଳା ପରିକରମାନଙ୍କୁ ।

ପ୍ରଶ୍ନ-୬୩: ଚିନ୍ମୟ ବିଗ୍ରହଧାରୀ ଶ୍ରୀକୃଷ୍ଣ ନିତ୍ୟ ଗୋଲକରୁ ମୃତ୍ୟୁଲୋକକୁ ମଣିଷ ଶରୀର ଧରି ଆସିବାର ରହସ୍ୟମୟ କାରଣଟି ତେବେ କ'ଣ ହୋଇପାରେ ?

**ଅନୁଗ୍ରହାୟ ଭୂତାନାଂ ମାନୁଷଂ ଦେହଂ ଆସ୍ଥିତଃ ।**
**ଭଜତେ ତାଦୃଶୀଃ କ୍ରୀଡ଼ା ଯାଃ ଶ୍ରୁତ୍ୱା ତତ୍‌ପରୋ ଭବେତ୍ ॥୩୭॥**

ଉ. ମୁଖ୍ୟ କାରଣଟି ହେଲା ଯେ ତାଙ୍କ ଭକ୍ତକୁ କୃପା କରିବା (ଅନୁଗ୍ରହାୟ) । ଦୁଷ୍ଟ ଦଳନ, ସନ୍ଥ ପାଳନ, ଧର୍ମ ସଂସ୍ଥାପନ ଇତ୍ୟାଦି ସବୁ ଗୌଣ କାରଣ । ମନୁଷ୍ୟ କରୁଥିବା କାର୍ଯ୍ୟ କର୍ମ ଅଟେ । ପ୍ରକୃତି ସ୍ୱତଃ କରୁଥିବା କର୍ମ କ୍ରିୟା ଅଟେ । ଯଥା-ଶ୍ୱାସ କ୍ରିୟା, ରକ୍ତ ସଞ୍ଚାଳନ କ୍ରିୟା, ରେଚନ କ୍ରିୟା ଇତ୍ୟାଦି । ମହାପୁରୁଷ ଓ ଭଗବାନ କରୁଥିବା କର୍ମକୁ ଲୀଳା କୁହାଯାଏ । ସେ ଏଭଳି ଲୀଳା କରନ୍ତି ଯାହାକୁ ଶ୍ରବଣ, କୀର୍ତ୍ତନ, ମନନ କଲେ ଶ୍ରୀକୃଷ୍ଣଙ୍କଠାରେ ଆପେ ଆପେ କୃଷ୍ଣ ଭକ୍ତି ଉତ୍ପନ୍ନ ହେବ(ତତ୍ ପରୋ ଭବେତ୍) । ଭକ୍ତ ସହଜରେ ଠାକୁରଜୀଙ୍କର ଶରଣାଗତ ହୋଇପାରିବ । ପ୍ରେମ ରସରେ ବୁଡ଼ବ୍ କି ଲଗାଇବ ।

ପ୍ରଶ୍ନ-୬୪: ବ୍ରଜାଙ୍ଗନାମାନେ ନିଶାର୍ଦ୍ଧରେ ପିତା, ପତି ଓ ସ୍ୱଜନଙ୍କୁ ଛାଡ଼ି ରାସଲୀଳାରେ ଯୋଗ ଦେଇ ମହାରାସ ଶେଷରେ ନିଜ ନିଜ ଗୃହକୁ ବାହୁଡ଼ି ଆସନ୍ତେ ଗୋପାଳମାନେ ନିଶ୍ଚୟ କ୍ରୋଧ ଅଗ୍ନିରେ ଜଳି ଯାଇଥିବେ ?

**ନ-ଅସୂୟନ୍ ଖଳୁ କୃଷ୍ଣାୟ ମୋହିତାଃ ତସ୍ୟ ମାୟୟା ।**
**ମନ୍ୟମାନାଃ ସ୍ୱ ପାର୍ଶ୍ୱସ୍ଥାନ୍ ସ୍ୱାନ୍ ସ୍ୱାନ୍ ଦାରାନ୍ ବ୍ରଜ-ଓକସଃ ॥୩୮॥**

ଉ. ସେମାନେ ଆଦୌ କ୍ରୋଧ ପ୍ରକାଶ କରିନଥିଲେ । କାରଣ ସେମାନେ ଜାଣିଥିଲେ ଯେ ଗୋପୀମାନେ ଭଗବାନ କୃଷ୍ଣଙ୍କୁ ଭଜ ଯାଆନ୍ତି । କୃଷ୍ଣଙ୍କ ଚରିତ୍ର ଅଦ୍ଭୁତ, ବିସ୍ମୟକର ଓ ନିଷ୍କଳଙ୍କ । ଶ୍ରୀକୃଷ୍ଣଙ୍କର ଶକ୍ତି ଯୋଗମାୟା (ତସ୍ୟ ମାୟୟା) ଗୋପାଳମାନଙ୍କ ମନ ବୁଦ୍ଧି ଆଦିକୁ ସେତେବେଳକୁ ନିର୍ମଳ କରିସାରିଥିଲେ । ସୁତରାଂ

ଗୋପାଳମାନେ ସକାଳେ ଦେଖନ୍ତି ଯେ ଗୋପୀମାନଙ୍କ ସ୍ଥୁଳ ଦେହ ସବୁ ଆଦୌ ଅନ୍ତର୍ଦ୍ଧାନ ହୋଇନାହାନ୍ତି । ସେ ସବୁ ସେମାନଙ୍କ ନିଜ ନିଜ ପାଖରେ (ସ୍ୱାନ, ସ୍ୱାନ୍, ସ୍ୱ ପାର୍ଶ୍ୱସ୍ଥାନ) ପଡ଼ି ରହିଛନ୍ତି । ଏହା ତ ଯୋଗମାୟା ଶକ୍ତିର କମାଲ । ଗୋପୀମାନଙ୍କର ସୂକ୍ଷ୍ମ ଦିବ୍ୟ ଦେହଟିମାନ ରାସ ଲୀଳାରେ ଅଂଶଗ୍ରହଣ କରିଥିଲେ । ସୁତରାଂ ଗୋପାଳମାନେ ଗୋପୀ କିମ୍ବା ଗୋବିନ୍ଦ କାହାରି ଦୋଷ ଦର୍ଶନ(ନ-ଅସୂୟନ) କଲେ ନାହିଁ ।

ଇତି ମଧ୍ୟରେ ଏକ ବ୍ରହ୍ମରାତ୍ର(ଚାରିଶତ ବତିଶକୋଟି ମାନବ ବର୍ଷ) ବିତି ସାରିଥିଲା । ଗୋପାଙ୍ଗନାମାନଙ୍କୁ ବୁଝାସୁଝା କରି ଗୋବିନ୍ଦ ନିଜ ନିଜ ଗୃହକୁ ପଠାଇ ଦେଇଥିଲେ । ପୁନର୍ବାର ଏକ ବ୍ରହ୍ମ ଅହୋରାତ୍ର(ଆଠଶହ ଚଉଷଠୀ କୋଟି ବର୍ଷ) ପର୍ଯ୍ୟନ୍ତ ସେମାନଙ୍କୁ ଅପେକ୍ଷା କରିବାକୁ ପଡ଼ିବ ଆଉଥରେ ଏହି ରାସକ୍ରୀଡ଼ାର ସୁଯୋଗ ନେବା ପାଇଁ । ଅତଏବ ଏ ଲୀଳା ଏକ ସାମାନ୍ୟ ସ୍ତ୍ରୀ-ପୁରୁଷ ମିଳନ, ନୃତ୍ୟ ସଙ୍ଗୀତ-ବାଦ୍ୟ, ଗାଉଣା ବାଜଣାର ଆସର ନୁହେଁ । ଏହା ଏକ ଅସାମାନ୍ୟ, ଅଲୌକିକ ଦିବ୍ୟ, ଚିନ୍ମୟ ଜୀବ-ଶିବ ମିଳନ କାମ ବିଜୟ ଲୀଳା (ବିକ୍ରୀଡ଼ିତଂ) । ଯେଉଁ ଲୀଳାର ପଠନ, ପାଠନ, ଶ୍ରବଣ, କୀର୍ତ୍ତନ, ଅଭିନୟ ସ୍ମରଣ ଆଦିରେ ବଦ୍ଧ ଜୀବର କାମ ଆସକ୍ତି ବିନଷ୍ଟ ହୁଏ । ଶ୍ରୀକୃଷ୍ଣ ଭକ୍ତିର ଶେଷ ଫଳ ହେଲା ଏଥିରେ ଶ୍ରୀକୃଷ୍ଣ ପ୍ରେମ ରସ ଆସ୍ୱାଦନର ସୁଯୋଗ ମିଳେ ପ୍ରତିଟି ବୈଷ୍ଣବକୁ ଯୁଗ ଯୁଗ ଲାଗି ଓ ଜନ୍ମ-ଜନ୍ମାନ୍ତର ଲାଗି ।

ପ୍ରଶ୍ନ-୬୫: ରାସ ପଞ୍ଚାଧ୍ୟାୟୀର ଉପସଂହାର ଶ୍ଳୋକରେ ଏ ଦିବ୍ୟ ଲୀଳାର ଶ୍ରବଣ-କୀର୍ତ୍ତନର ମହାତ୍ମ୍ୟ କିପରି ଉଲ୍ଲେଖ କରାଯାଇଛି ?

**ବିକ୍ରୀଡ଼ିତଂ ବଜ୍ର ବଧୂଭିଃ ଇଦଂ ଚ ବିଷ୍ଣୋଃ**

**ଶ୍ରଦ୍ଧା-ଅନ୍ୱିତୋଽନୁଶୃଣୁୟାତ୍ ଅଥ ବର୍ଣ୍ଣୟେତ୍ ଯଃ ।**

**ଭକ୍ତି ପରାଂ ଭଗବନ୍ତି ପ୍ରତିଲଭ୍ୟ କାମଂ**

**ହୃଦ୍‌ରୋଗଂ ଆଶୁ-ଅପହିନୋତି-ଅଚିରେଣ ଧୀରଃ ॥୪୦॥**

ଉ. କୌଣସି ତତ୍ତ୍ୱ ଜ୍ଞାନୀ ବା ଭକ୍ତ(ଧୀର)ପୁରୁଷ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଏହାର ଶ୍ରବଣ କୀର୍ତ୍ତନ କଲେ ତାଙ୍କର ସଂସାର ସୁଖ ଭୋଗ ଲାଳସା ରୂପୀ କାମ ଭାବ ସମୂଳେ ନଷ୍ଟ ହୁଏ ଯାହାର ଅନ୍ୟ ନାମ ହୃଦ୍‌ରୋଗ ନିବୃତ୍ତି । ଦିବ୍ୟ କୃଷ୍ଣ ଭକ୍ତି ହୃଦୟରେ ଉଦ୍ରେକ ହେବ । ଫଳରେ ସେ କୃଷ୍ଣ ଓ କୃଷ୍ଣ ଭକ୍ତ ସେବା ଉନ୍ମୁଖ ହେବ ।

# ଅଥ ୩୪ଶ ଅଧ୍ୟାୟଃ

## (ଅଜଗର କବଳରୁ ନନ୍ଦ ଓ ଶଙ୍ଖଚୂଡ଼ କବଳରୁ ଗୋପୀଙ୍କ ଉଦ୍ଧାର)

ପ୍ରଶ୍ନ-୬୬: ଭାଗବତଙ୍କ ମତରେ ବିଷ୍ଣୁ ପୂଜାଠାରୁ ବୈଷ୍ଣବ ପୂଜାର ମାହାତ୍ମ୍ୟ ଅଧିକ । ନନ୍ଦ ମହାରାଜା ଭଗବାନ କୃଷ୍ଣଙ୍କର ପିତା । ନନ୍ଦ ବାତ୍ସଲ୍ୟ ରସ ରସିକ । ଅତଏବ ବୈଷ୍ଣବ । ତାଙ୍କ ନିଜ ଗୃହରେ ଜନ୍ମିତ ଓ ଲାଳିତ ପାଳିତ ଶ୍ରୀକୃଷ୍ଣ । ତଥାପି ସେ ପରମ ବୈଷ୍ଣବ ଶ୍ରୀଶିବ ଦର୍ଶନରେ ସପ୍ରଜା ଓ ସପରିବାର ବାହାରିଲେ କାହିଁକି ?

ଶ୍ରୀଶୁକ ଉବାଚ

**ଏକଦା ଦେବ ଯାତ୍ରାୟାଂ ଗୋପାଳା ଜାତକୌତୁକାଃ ।**
**ଅନୋଭିଃ ଅନୋଡୁତ୍ ଯୁକ୍ତୈଃ ପ୍ରୟଯୁଃ ତେଽମ୍ବିକାବନମ୍ ॥୧॥**

ଉ. ସେଦିନ ତିଥି ମହାଶିବରାତ୍ରୀ (ଏକଦା) । ସେ ତିଥିରେ ଶିବଙ୍କ ଲାଗି ଉପବାସ କରି ଶିବ ପୂଜନର କି ମହାତ୍ମ୍ୟ (ଜାତକୌତୁକାଃ) ଏକଥା ବୁଝାଇବେ ସେମାନଙ୍କୁ । ମଥୁରା ରାଜ୍ୟରେ ଅମ୍ବିକା ବନରେ ଶିବ ପାର୍ବତୀଙ୍କ ଭବ୍ୟ ମନ୍ଦିର ବିଦ୍ୟମାନ । ପଟୁଆର କରି ନନ୍ଦରାଜା ଗାଡ଼ିରେ କୃଷ୍ଣ ବଳରାମ ଓ ଯଶୋଦା ରୋହିଣୀ ଆଦିଙ୍କୁ ବସାଇ ପ୍ରଜାମାନଙ୍କୁ ସାଙ୍ଗରେ ଧରି ଜାଗର ଜାଳିବାକୁ ପହଞ୍ଚିଗଲେ ।

ନିକଟସ୍ଥିତ ସରସ୍ୱତୀ ନଦୀରେ ରାଜା ନନ୍ଦ ସ୍ନାନ କଲେ । ମହାର୍ଘ ପୂଜା ସମ୍ଭାର ନେଇ ଭଗବାନ ଶଙ୍କର ପାର୍ବତୀଙ୍କୁ ଅର୍ଚ୍ଚନା କଲେ । ସମସ୍ତଙ୍କ ଲାଗି ଆଶିର୍ବାଦ ଭିକ୍ଷା କଲେ । ତୀର୍ଥସ୍ଥାନ ବୋଲି ସେଠାରେ ବ୍ରାହ୍ମଣ ବୈଷ୍ଣବଙ୍କୁ ଅନ୍ନଦାନ, ବସ୍ତ୍ରଦାନ, ଗୋଦାନ ଓ ସ୍ୱର୍ଣ୍ଣଦାନ ଆଦି କଲେ । ଦିନସାରା ନନ୍ଦଜୀ ଉପବାସ କରିଥିଲେ । ସେ ସ୍ଥାନଟି ଜଙ୍ଗଲ ଘେରା ଥିଲା । ମଧ୍ୟ ରାତ୍ର ପର୍ଯ୍ୟନ୍ତ ଉଜାଗର ରହି ରାତ୍ର ଶେଷ ପ୍ରହରରେ ନିଦ୍ରାଦେବୀଙ୍କ କୋଳରେ ସମସ୍ତେ ଆଶ୍ରୟ ନେଲେ ।

ପ୍ରଶ୍ନ-୬୭: ରାଜା ନନ୍ଦଙ୍କ ନିଦ୍ରିତ ଅବସ୍ଥାରେ କି ଅଘଟଣ ଘଟିଲା ?

**କଶ୍ଚିତ୍ ମହାନ୍ ଅହିଃ ତସ୍ମିନ୍ ବିପିନେଽତି ବୁଭୁକ୍ଷିତଃ ।**
**ଯଦୃଚ୍ଛୟା-ଆଗତୋ ନନ୍ଦଂ ଶୟାନଂ ଉରଗୋଽଗ୍ରସିତ୍ ॥୫॥**

ଉ. ହଠାତ୍ (ଯଦୃଚ୍ଛୟା) ମସ୍ତବଡ଼ ଭୋକିଲା ଅଜଗର ସର୍ପଟିଏ ବଣ ମଧ୍ୟରୁ ଚାଲି ଆସିଲା । ଶୋଇଥିବା ନନ୍ଦ ରାଜାଙ୍କୁ ପାଦଆଡୁ ଗ୍ରାସ କରିବାରେ ଲାଗିଲା । ନନ୍ଦଜୀଙ୍କର ନିଦ୍ରା ଭଗ୍ନ ହେଲା । ସେ ଅତ୍ୟନ୍ତ ବ୍ୟାକୁଳରେ ଉଚ୍ଚ ସ୍ୱରରେ ଡ଼ାକ

ଛାଡ଼ିଲେ, ''ହେ କୃଷ୍ଣ, ହେ କୃଷ୍ଣ, ଏହି ବିରାଟ ସର୍ପ ମୋତେ ଗ୍ରାସ କରୁଛି । ମୁଁ ତୁମର ଶରଣାଗତ (ପ୍ରପନ୍ନଂ) । ମୋତେ ରକ୍ଷା କର । ରକ୍ଷା କର ।'' ଶୋଇଥିବା ଗୋପାଳଗଣ ସଙ୍ଗେ ସଙ୍ଗେ ଉଠି ପଡ଼ିଲେ । ଜଳନ୍ତା ନିଆଁ ଖୁଣ୍ଟା ଧରି ଧାଇଁଗଲେ । ସେଥିରେ ସାପକୁ ପିଟି ପକାଇଲେ । ସାପ କିନ୍ତୁ ନନ୍ଦଙ୍କୁ ଆଦୌ ଛାଡୁନଥାଏ । ଶେଷରେ ଗୋବିନ୍ଦ ଯାଇ ପହଞ୍ଚିଲେ । ସେ ତ ଭକ୍ତ ବତ୍ସଳ ଭଗବାନ । ତାଙ୍କୁ କାଉଁରୀ ବିଦ୍ୟା ଜଣା । ସେ କିଛି ନ କରି ନିଜ ଚରଣ କମଳକୁ ସ୍ପର୍ଶ କରାଇ ଦେଲେ ସର୍ପକୁ ।

ପ୍ରଶ୍ନ-୬୮: ଅଜଗର ସର୍ପ ପରା ବହୁଦିନରୁ ନ ଖାଇ କ୍ଷୁଧାର୍ତ୍ତ ଥିଲା । ସେ କଣ ଗୋବିନ୍ଦଙ୍କୁ ମଧ ଗ୍ରାସ କରି ପକାଇଲା କି ?

**ସ ବୈ ଭଗବତଃ ଶ୍ରୀମତ୍ ପାଦ ସ୍ପର୍ଶ ହତ-ଅଶୁଭଃ ।**
**ଭେଜେ ସର୍ପ ବପୁଃ ହିତ୍ୱା ରୂପଂ ବିଦ୍ୟାଧର ଅର୍ଚ୍ଚିତମ୍ ॥୯॥**

ଉ.ଅବଶ୍ୟ ଗ୍ରାସ କରିଥିଲା ନନ୍ଦରାଜାଙ୍କ ଦୁଇ ଗୋଡ଼କୁ କିନ୍ତୁ କି ଆଶ୍ଚର୍ଯ୍ୟର କଥା ! ! ! ଭଗବାନ କୃଷ୍ଣଙ୍କର ଦିବ୍ୟ ଚରଣ କମଳ ସ୍ପର୍ଶ ପାଇ ସେ ସର୍ପଟିର ସକଳ ପାପ (ଅଶୁଭଃ) ବିନଷ୍ଟ (ହତ) ହୋଇଗଲା । ସେ ସର୍ପ ଶରୀର ତ୍ୟାଗ କରି (ହିତ୍ୱା) ପୂଜାର ଯୋଗ୍ୟ ବିଦ୍ୟାଧର ରୂପ ଧାରଣ କଲା (ଭେଜେ) । ଠାକୁରଜୀଙ୍କ ପାଦ ତଳେ ମସ୍ତକ ନୁଆଁଇ ଦଣ୍ଡବତ ପ୍ରଣାମ କଲା । ଭଗବାନ ତାଙ୍କୁ ତାଙ୍କର ପରିଚୟ ପଚାରିଲେ । ସମସ୍ତଙ୍କ ସମକ୍ଷରେ ସେ ଉତ୍ତର ଦେଲେ, ''ହେ ପ୍ରଭୋ, ମୁଁ ପୂର୍ବ ଜନ୍ମର ସେଇ ସୁଦର୍ଶନ ନାମକ ବିଦ୍ୟାଧର । ମୋର ନିବାସ ସ୍ଥାନ ଇନ୍ଦ୍ରପୁରୀ ସ୍ୱର୍ଗ । ଥରେ ମୁଁ ଅଙ୍ଗିରା ଋଷିଙ୍କ ଶିଷ୍ୟମାନଙ୍କ ସମକ୍ଷରେ ନିଜର ରୂପ ଓ ସୌନ୍ଦର୍ଯ୍ୟ ଗର୍ବରେ ସେମାନଙ୍କ ରୂପର ଉପହାସ କରିଥିଲି । ସେମାନେ ସର୍ପ ଯୋନି ପ୍ରାପ୍ତ ହୁଅ ଓ ମର୍ତ୍ତ୍ୟକୁ ଯାଅ ବୋଲି ଅଭିଶାପ ଦେଲେ । ତେଣୁ ମୋର ଏ ଅବସ୍ଥା ହୋଇଥିଲା । ମୁଁ କିନ୍ତୁ ଏବେ ଭାବୁଛି ତାହା ସେମାନଙ୍କର ଅଭିଶାପ ନଥିଲା । ଥିଲା ମୋ ପ୍ରତି ଏକ ଅହୈତୁକ ବରଦାନ । ଯାହା ପାଇଁ ମୁଁ ଆପଣଙ୍କର ଦିବ୍ୟ କୃପା ପ୍ରାପ୍ତ ହେଲି । ଦର୍ଶନ ଲାଭ କରି କୃତ କୃତ୍ୟ ହେଲି । ମୋତେ ଆଶିର୍ବାଦ ସହ ମୋ ନିଜ ସ୍ଥାନକୁ ଯିବାକୁ ଆଦେଶ କରନ୍ତୁ ।''

ଲୀଳାମୟ ଠାକୁରଜୀଙ୍କର ଅନୁମତି ପ୍ରାପ୍ତ ହେଲେ ସେ ବିଦ୍ୟାଧର । ଭଗବାନଙ୍କୁ ସଭକ୍ତିକ ପ୍ରଣାମ କଲେ । ତିନି ଥର ପରିକ୍ରମା କରି ସ୍ୱର୍ଗଲୋକ

ଫେରିଗଲେ । ରାଜା ନନ୍ଦ ପ୍ରାଣ ସଙ୍କଟରୁ ରକ୍ଷା ପାଇଗଲେ । ଗୋପାଳଗଣ, ନନ୍ଦ ସୁନନ୍ଦ ସମସ୍ତେ ଆଭାସ ପାଇଲେ ଆମ କହ୍ନେଇ ଖାଲି ଅଦ୍ଭୁତ ଶକ୍ତିମାନ ନୁହେଁ ଜଣେ ସଫଳ ଯାଦୁକର । ତା ଚରଣ କମଳ ହିଁ ଯାଦୁ ବିଦ୍ୟାର କାଉଁରୀକାଠି । କୃଷ୍ଣଙ୍କ ଲୀଳା ଗାନ କରି କରି ବ୍ରଜବାସୀମାନେ ନନ୍ଦଗାଉଁ ଫେରି ଆସିଲେ ।

ପ୍ରଶ୍ନ-୬୯ : ଆଉ ଦିନକର କଥା । ସେଦିନ ଥାଏ ଫାଲଗୁନ ମାସର ପବିତ୍ର ହୋଲି ପୂର୍ଣ୍ଣିମା । ସଂଧ୍ୟାରେ ପୂର୍ଣ୍ଣଚନ୍ଦ୍ର ଉଦୟ ହେଲେ ପୂର୍ବ ଆକାଶରେ । କୃଷ୍ଣ ବଳରାମ ବନ ବିହାର କରୁଥାନ୍ତି ଗୋପୀ ଗୋପାଳଙ୍କୁ ଧରି । ଯୋଗମାୟାଙ୍କ ନିର୍ଦ୍ଦେଶରେ ବଂଶୀଧାରୀ ଦିବ୍ୟ ବଂଶୀ ବାଦନ କଲେ । ତରୁ, ତୃଣ, ଗୁଳ୍ମ, ପଶୁ, ପକ୍ଷୀ, ନଦୀ, ପର୍ବତ ଚର ଓ ଅଚର ସମସ୍ତେ ପୁଲକିତ ହେଲେ । ସର୍ବାଧିକ ପ୍ରେମ ରସ ପାନ କଲେ ଗୋପିକାମାନେ । ଏପରିକି ଅନେକ ଗୋପୀ ମୂର୍ଚ୍ଛିତ ହୋଇ ଭୂଇଁରେ ଲୋଟି ପଡ଼ିଲେ ।

ଇତି ଅବସରରେ କୁବେର ରାଜାଙ୍କ ଅନୁଚର ଶଙ୍ଖଚୂଡ଼ ନାମକ ଯକ୍ଷ ଲୀଳାରେ ବାଧା ପହୁଞ୍ଚାଇଲା । ସେ ଗୋପୀମାନଙ୍କୁ ଭୟଭୀତ କରାଇ ଉତ୍ତର ଦିଗସ୍ଥିତ କୁବେରପୁରୀ ଆଡ଼କୁ ଘଉଡ଼ାଇବାରେ ଲାଗିଲା । ଗୋପୀମାନେ ହେ କୃଷ୍ଣ, ହେ ବଳରାମ ବୋଲି ଚିତ୍କାର ଛାଡ଼ିଲେ । ସଙ୍ଗେ ସଙ୍ଗେ ଗୋବିନ୍ଦ ଦୌଡ଼ିଲେ । ଶଙ୍ଖଚୂଡ଼କୁ ମୃତ୍ୟୁଦଣ୍ଡ ଦେଇ ଗୋପୀମାନଙ୍କୁ ସଙ୍କଟରୁ ଉଦ୍ଧାର କଲେ । ପ୍ରତ୍ୟେକ ଯକ୍ଷମାନଙ୍କ ମସ୍ତକରେ ମଣିଥାଏ । ସେ ମଣିଟିର କି ଅବସ୍ଥା ହେଲା ସେତେବେଳେ ?

**ଶଙ୍ଖଚୂଡ଼ଂ ନିହତ୍ୟ-ଏବଂ ମଣିଂ ଆଦାୟ ଭାସ୍ୱରମ୍ ।**
**ଅଗ୍ରଜାୟ-ଅଦଦାତ୍ ପ୍ରୀତ୍ୟା ପଶ୍ୟନ୍ତୀନାଂ ଚ ଯୋଷିତାମ୍ ॥୩୨॥**

ଉ. ଅତ୍ୟନ୍ତ ଉଜ୍ଜ୍ୱଳ (ଭାସ୍ୱରଂ) ମଣିଟିକୁ ଭଗବାନ ଗୋପୀମାନଙ୍କ ସମ୍ମୁଖରେ (ପଶ୍ୟନ୍ତୀନାଂ ଚ ଯୋଷିତାଂ) ଭାଇ ବଳରାମଙ୍କୁ ପ୍ରେମର ସଙ୍କେତରୂପେ (ପ୍ରୀତ୍ୟା) ପ୍ରଦାନ କରିଥିଲେ । ବୃନ୍ଦାବନର ରାଧାକୁଣ୍ଡର ଏକ ମାଇଲ୍ ପୂର୍ବରେ ଏହି ସ୍ଥାନ ଶ୍ରୀଲଗମୋହନ କୁଣ୍ଡ ନାମରେ ଅବସ୍ଥିତ ଥିବା ଦର୍ଶନୀୟ ।

# ଅଥ ୩୫ଶ ଅଧ୍ୟାୟଃ

## ଯୁଗଳ ଗୀତ (ଗୋପୀମାନଙ୍କ ବିରହ ରସ ଆସ୍ୱାଦନ ଲୀଳା)

ପ୍ରଶ୍ନ-୭୦: ରାସଲୀଳାରେ କୃଷ୍ଣ ପ୍ରେମର ସ୍ୱାଦୁ ଚାଖିଲା ପରେ କୃଷ୍ଣ ଦିନବେଳା ଗୋଚାରଣ ଲାଗି ବନ ଗମନ କରନ୍ତେ (ବନଂ ଯାତେ) ଗୋପୀ ମାନଙ୍କ ଦିନ(ବାସରାନ୍) କିପରି କଟୁଥିଲା ?

ଶ୍ରୀଶୁକ ଉବାଚ

**ଗୋପ୍ୟଃ କୃଷ୍ଣେବନଂ ଯାତେ ତଂ ଅନୁଦ୍ରୁତ ଚେତସଃ ।**
**କୃଷ୍ଣଲୀଳାଃ ପ୍ରଗାୟନ୍ତ୍ୟୋ ନିନ୍ୟୁଃ ଦୁଃଖେନ ବାସରାନ୍ ॥୧॥**

ଉ.ଗୋପୀମାନଙ୍କ ମତରେ କୃଷ୍ଣ ମିଳନ ସୁଖଠାରୁ କୃଷ୍ଣ ବିରହ ଜନିତ ଦୁଃଖ ମଧ୍ୟ ଶତଗୁଣେ ପ୍ରେମାନନ୍ଦ ପ୍ରଦାୟକ । ବହୁ ପୂର୍ବରୁ ଏ ରହସ୍ୟ ଠାକୁରଜୀ ତାଙ୍କୁ ସ୍ପଷ୍ଟ କରି ବୁଝାଇ ଦେଇଛନ୍ତି । ସୁତରାଂ ଗୋବିନ୍ଦ ଗୋଚାରଣ ଲାଗି ଯିବାବେଳେ ଗୋପୀମାନେ ସିନା ନିଜ ନିଜ ଘରେ ରହୁଥିଲେ, ମନଟି ମାନ କିନ୍ତୁ ତାଙ୍କ ସଙ୍ଗେ ପଠାଇ ଦେଉଥିଲେ । ଅନ୍ୟ ବାକ୍ୟରେ ସକଳ ଗୋପୀ କୃଷ୍ଣ ନାମ, ରୂପ, ଲୀଳା, ଗୁଣ ଧ୍ୟାନ ଗାନ (ପ୍ରଗାୟନ୍ତୋ) ଦିନ ସାରୁଥିଲେ(ନିନ୍ୟୁଃ) ।

ପ୍ରଶ୍ନ-୭୧: ସ୍ଥୁଳ ଦୃଷ୍ଟିରେ ଠାକୁରଜୀ ଗୋପୀମାନଙ୍କ ଠାରୁ ଦୂରକୁ ଯାଆନ୍ତି । ମୋହନ ବଂଶୀସ୍ୱନ କିନ୍ତୁ ପ୍ରତ୍ୟେକ ଗୋପୀଙ୍କ କାନରେ ନିତ୍ୟ ଶୁଭେ । ସେ ବଂଶୀସ୍ୱନ ବୃକ୍ଷଲତାଙ୍କୁ ମଧ୍ୟ ପୁଷ୍ପିତ ପଲ୍ଲବିତ କରୁଥାଏ । ପଶୁ ପକ୍ଷୀ ମାନଙ୍କୁ ନିଜ ନିଜ ଖାଦ୍ୟ ଗ୍ରହଣ କରାଇ ଦିଏନା । ବରଂ ମୌନ ରହି କୃଷ୍ଣ ଧ୍ୟାନ କରିବାକୁ ପରାମର୍ଶ ଦେଉଥାଏ । ଏ ସବୁ ଲୀଳା ସିନା ଚେତନ ଜୀବମାନଙ୍କର ବର୍ଣ୍ଣନା । ଜଡ଼ ବନଭୂମି, ନଦୀ, ପର୍ବତ, ପାଷାଣ ଓ ବାୟୁ ଆଦି ବଂଶୀସ୍ୱନରେ କ'ଣ ପ୍ରଭାବିତ ହେଉଥିଲେ ?

ଗୋପୀ ଉବାଚ

**ତର୍ହି ଭଗ୍ନଗତୟଃ ସରିତୋ ବୈ**
**ତତ୍ ପଦ-ଅମ୍ବୁଜ ରଜୋଽନିଳ ନୀତମ୍ ।**
**ସ୍ପୃହୟତୀ ବୟଂ ଇବ-ଅବହୁ ପୁଣ୍ୟାଃ**
**ପ୍ରେମ ବେପିତ ଭୁଜାଃ ସ୍ତିମିତ-ଆପଃ ॥୭॥**

ଉ. ନିଶ୍ଚୟ ପ୍ରଭାବିତ ହେଉଥିଲେ । ସେତେବେଳେ (ତର୍ହି) ଯମୁନା ନଦୀ (ସରିତୋ) ନିଶ୍ଚିତ ରୂପେ (ବୈ) ନିମ୍ନକୁ ବହିବା ବନ୍ଦ କରି ଦେଉଥିଲା (ଭଗ୍ନ

ଗତୟଃ) । ଜଡ଼ ଜଳ ସେ ବଂଶୀ ଧ୍ୱନିରେ ଚେତନ ହୋଇ ଯାଉଥିଲା । ସେ ଅପେକ୍ଷା କରୁଥିଲା ସେତେବେଳର ଭାଗ୍ୟବାନ ଶୀତଳ ବାୟୁ ଯମୁନା ଜଳକୁ ପ୍ରଦାନ କରିବା ପାଇଁ ବହି ଆଣୁଥିବା କୃଷ୍ଣ ପଦ ରଜକୁ ପାଇ ଧନ୍ୟ ହେବ ବୋଲି । ଯମୁନା ଜଳରେ ଯେଉଁ ତରଙ୍ଗ ଉଠୁଥିଲା ଶୁକଦେବଙ୍କ ମତରେ ତାହା ଯମୁନା ନଦୀର କର ପଲ୍ଲବ ଅଟେ । ସତେ ଯେମିତି ଯମୁନା ସେ କୃଷ୍ଣ ପଦରଜ ପ୍ରାପ୍ତ ଆଶାରେ ତାର ତରଙ୍ଗ ରୂପୀ ବେପୁଥଗ୍ରସ୍ତ ଥର ଥର, କମ୍ପମାନ କର ଅଞ୍ଜଳି ପ୍ରସାରଣ କରିଛି କି ଆଉ !!!

ପ୍ରଶ୍ନ-୭୨ : ମୋହନ ବଂଶୀର ଦିବ୍ୟ ସ୍ୱରର (କ୍ୱଣିତ ବେଣୁ ରବ) ପ୍ରଭାବ ସବୁଠାରୁ ବେଶୀ କାହାକୁ ପ୍ରଭାବିତ କରୁଥିଲା ?

**କ୍ୱଣିତ ବେଣୁରବ ବଞ୍ଚିତ ଚିତ୍ତାଃ**
**କୃଷ୍ଣଂ ଅନ୍ୱସତ କୃଷ୍ଣ ଗୃହିଣ୍ୟଃ ।**
**ଗୁଣ ଗଣ-ଅର୍ଣ୍ଣଂ ଅନୁଗତ୍ୟ ହରିଣ୍ୟୋ**
**ଗୋପିକା ଇବ ବିମୁକ୍ତ ଗୃହ-ଆଶାଃ ॥୧୯॥**

ଉ.ସବୁଠାରୁ ବେଶୀ ପ୍ରଭାବିତ ହେଉଥିଲେ ବୃନ୍ଦାବନରେ ବିଚରଣ କରୁଥିବା କୃଷ୍ଣସାର ମୃଗୁଣୀମାନେ (କୃଷ୍ଣ ଗୃହିଣ୍ୟଃ) । ସାଧାରଣ ଲୋକଙ୍କୁ ବଂଶୀସ୍ୱନ ଆକର୍ଷଣ କରିପାରେନା । କାରଣ ସେମାନେ ଗୃହସୁଖ ଲାଳସାଯୁକ୍ତ (ଗୃହ-ଆଶାଃ) ବୋଲି । ଗୋପୀ ଗଣ ବେଣୁ ଧ୍ୱନିରେ ଆକର୍ଷିତ ହେବାର ଏକମାତ୍ର କାରଣ ହେଲା ସେମାନଙ୍କ ଚିତ୍ତ ଶୟନେ, ସ୍ୱପନେ ଓ ଜାଗରଣେ କୃଷ୍ଣ ନାମ, ଲୀଳା କୀର୍ତ୍ତନ ଧ୍ୟାନରେ ଲାଗିଥାଏ । ଆଜି କୃଷ୍ଣସାର ମୃଗୁଣୀମାନେ ମଧ୍ୟ ନିଜ ନିଜ ପତି ମିଳନ ସୁଖ ଲାଳସା ତ୍ୟାଗ କରି ମୂରଲୀ ଧ୍ୱନି ଶ୍ରବଣରେ ଚିତ୍ତ ସମର୍ପଣ କରିଛନ୍ତି । ଏପରିକି ସେମାନେ ଗୋବତ୍ସ ଗୋପାଳଙ୍କୁ ଆଦୌ ଭୟ ନକରି ଲୀଳାମୟଙ୍କ ନିକଟରେ ବସି ପଡୁଛନ୍ତି(ଅନ୍ୱସତ) ଲୀଳା ସହଚର ଭାବରେ ନାମ ଲେଖାଇବା ଆଶାରେ ।

ପ୍ରଶ୍ନ-୭୩: ଗୋପୀମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ବିବାହିତା । ସନ୍ତାନ, ସନ୍ତତି ଓ ପତି ସ୍ନେହ ଘେରା ପକ୍‌କା ଗୃହିଣୀ । ସେମାନେ ଦିନସାରା ଗୃହକର୍ମମାନ କରୁଥିବାର ଆଶା କରାଯାଏ । କୃଷ୍ଣଙ୍କର କେଉଁ ଯାଦୁକରି ଆକର୍ଷଣ ତାଙ୍କ ମନଟି ମାନଙ୍କୁ ସଂସାରରୁ ଟାଣି ନେଇ କୃଷ୍ଣଙ୍କଠାରେ ଲଗାଇ ରଖୁଥିଲା ?

ଶ୍ରୀଶୁକ ଉବାଚ

**ଏବଂ ବ୍ରଜସ୍ତ୍ରିୟୋ ରାଜନ୍ କୃଷ୍ଣ ଲୀଳା-ଅନୁଗାୟତୀଃ ।**
**ରେମିରେଽହଃସୁ ତତ୍ ଚିତ୍ତାଃ ତତ୍ ମନସ୍କା ମହୋଦୟାଃ । ॥୨୬॥**

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ଉ. ତାହା ଅନ୍ୟ କିଛି ନୁହେଁ କେବଳ ଲୀଳାମୟ କୃଷ୍ଣଙ୍କର ଦିବ୍ୟ ଲୀଳା ସ୍ମରଣ ଓ ଧ୍ୟାନ । ସେତିକି ମାତ୍ର କରି ଅସଂଖ୍ୟ ଗୋପୀ ସେମାନଙ୍କର ମନ, ବୁଦ୍ଧି, ଚିତ୍ତ, ଅହଂକାରକୁ ସମର୍ପଣ କରି ଦିନସାରା ଆନନ୍ଦ ଲୁଟୁଥିଲେ(ରେମିରେ ଅହଃସୁ) ।

## ଅଥ ୩୬ଶ ଅଧ୍ୟାୟଃ

### (ବୃଷଭାସୁର ଅରିଷ୍ଟ ଉଦ୍ଧାର ଓ ଅକ୍ରୂରଙ୍କ ବ୍ରଜ ଆଗମନ)

ପ୍ରଶ୍ନ-୭୪: ରାଜା କଂସ ଦେଖିବାକୁ ଠିକ୍ ମଣିଷ ଭଳି । ତାଙ୍କର ଆଚରଣ କିନ୍ତୁ ଅଧର୍ମ ଆଧାରିତ । ଧାର୍ମିକ ବୈଷ୍ଣବ ଉଗ୍ରସେନଙ୍କୁ ସିଂହାସନରୁ ତଡ଼ି ଦେଇ ସେ ଏବେ ରାଜା । ଗୋ, ବ୍ରାହ୍ମଣ, ବୈଷ୍ଣବଙ୍କୁ ପୀଡ଼ା ଦେଉଛନ୍ତି । ଇଷ୍ଟ ଅର୍ଥ କାମ୍ୟ । ଇଷ୍ଟ ମନୁଷ୍ୟର ପୂଜନୀୟ । ବୃଷଭ ଧର୍ମର ପ୍ରତୀକ ଷଣ୍ଢ ଯେ କି ମହାଦେବଙ୍କର ବାହନ । ଅରିଷ୍ଟ ଯାହା ଇଷ୍ଟ ନୁହେଁ ବର୍ଜନୀୟ । ବୃଷଭ ଓ ଅରିଷ୍ଟ ଦୁଇ ଶବ୍ଦ ସହିତ ଅସୁର ଶବ୍ଦ ଯୋଡ଼ା ଯିବା ରହସ୍ୟମୟ ମନେ ହୁଏ । ରାଜାଙ୍କର ଆଚରଣ ଧର୍ମ ବିହୀନ ହେବା ହିଁ ଅରିଷ୍ଟ ବୃଷଭାସୁର ବା ଅଶାସ୍ତ୍ରୀୟ ବିଧିରେ ଧର୍ମ ଆଚରଣ । କଂସ ଦ୍ୱାରା ପ୍ରେରିତ ଏହି ଅସୁର ପ୍ରବେଶ କରିଛି ଧର୍ମ ରକ୍ଷକ ଭଗବାନଙ୍କର ଲୀଳା ଭୂମିରେ । କେତେବେଳେ କିପରି ସେ ଅରିଷ୍ଟ ଅସୁର ଉତ୍ପାତ ଆରମ୍ଭ କରିଦେଲା ?

ଶ୍ରୀ ବାଦରାୟଣିଃ ଉବାଚ

**ଅଥ ତର୍ହି ଗତୋ ଗୋଷ୍ଠଂ ଅରିଷ୍ଟୋ ବୃଷଭ-ଅସୁରଃ ।**
**ମହୀଂ ମହାକକୁତ୍‌କାୟଃ କମ୍ପୟନ୍ ଖୁର ବିକ୍ଷତାମ୍ ॥୧॥**

ଉ. ଗୋଧୂଳି ସମୟରେ ଗୋଗୋଷ୍ଠ ଧରି ଭଗବାନ ଗୃହ ଅଭିମୁଖେ ଫେରୁଥାନ୍ତି । ଅରିଷ୍ଟ ଆସିଛି ଏକ ବିରାଟ କାୟ ବୃଷଭ ଶରୀର ଧରି । ପିଠିରେ ତାର ବିରାଟ କକୁଦ । ନିଜ ପଛ ଦୁଇ ପାଦରେ ସେ ଭୂମିକୁ ବିଦାରି ପକାଉଥାଏ । ବିଶାଳ ବପୁକୁ କମ୍ପମାନ କରି ଗର୍ଜନ ସହିତ ଲାଞ୍ଜ ଉପରକୁ ଉଠାଇ ଗୋପୀ ଗୋପାଳ ଓ ଗାଈ ଗୋରୁଙ୍କୁ ଭୟ ଦେଖାଇଲା । ସେ ଭୀଷଣ ଗର୍ଜନରେ କେତେ ଗାଈ ଓ ଗୋପୀମାନଙ୍କର ଅକାଳ ଗର୍ଭପାତ ହେଲା । ଗୋପୀ ଗୋପାଳମାନେ ଭୟ ପାଇଲେ । କରୁଣ ସ୍ୱରରେ ଠାକୁରଜୀଙ୍କ ଶରଣାପନ୍ନ ହୋଇ ପ୍ରାଣ ରକ୍ଷା ଲାଗି ଚିତ୍କାର କଲେ ।

ଭକ୍ତ ବତ୍ସଳ ଭଗବାନ ଅବିଳମ୍ବେ ପହଞ୍ଚିଲେ ଅସୁର ପାଖରେ । ବୃଷଭର ଦୁଇ ଶିଙ୍ଗକୁ ଉପାଡ଼ି ତାକୁ ପିଟି ପିଟି ପ୍ରାଣହୀନ କଲେ । ଭଗବାନଙ୍କ ହସ୍ତରେ ମରିଥିବାରୁ ସଦ୍‌ଗତି ହେଲା ବୃଷଭ ଅସୁରର ।

ପ୍ରଶ୍ନ-୭୫ : ଅରିଷ୍ଟ ମୃତ୍ୟୁରେ ଦେବର୍ଷି ନାରଦ ଦେଖିଲେ ଯେ କଂସ ଅସୁରର ପାପ ଘଡ଼ା ପୂରିଗଲାଣି । ତାକୁ ଶୀଘ୍ର ଉଦ୍ଧାର କରିବାକୁ ହେବ । ଯଦି ସେ ଆଉ ଅଧିକ ଦିନ ବଞ୍ଚି ରହେ ତେବେ ପୁଣି ଭୟଙ୍କର ମହାପାପ କରି ବସିବ । ସୁତରାଂ ଦେବଦର୍ଶନ ନାରଦ କଂସକୁ ତୁରନ୍ତ ଉଦ୍ଧାର କରିବାକୁ କି ଉପାୟ କଲେ ?

**ଅରିଷ୍ଟେ ନିହତେ ଦୈତ୍ୟେ କୃଷ୍ଣେନ-ଅଦ୍ଭୁତ କର୍ମଣା ।**
**କଂସାୟ-ଅଥ-ଆହ ଭଗବାନ୍ ନାରଦୋ ଦେବଦର୍ଶନଃ ॥୧୬॥**

ଉ.ଦେବର୍ଷି ନାରଦ କଂସ ରାଜ ସଭାରେ ପ୍ରକଟ ହେଲେ । କଂସକୁ ଅସଲି ରହସ୍ୟଟି ଖୋଲି କହିଲେ । ଦେବକୀଙ୍କର ଅଷ୍ଟମ ଗର୍ଭର ସନ୍ତାନ ପ୍ରକୃତରେ କନ୍ୟା ନଥିଲା । ସେ ନନ୍ଦ ଯଶୋଦାଙ୍କର କନ୍ୟା ଯାହାକୁ କଂସ ମାରିବାକୁ ଏତେ ସବୁ ଚେଷ୍ଟା କରିଥିଲା । ବାସ୍ତବରେ କୃଷ୍ଣ ବସୁଦେବଙ୍କ ପୁତ୍ର । ଭୟରେ ବସୁଦେବ କୃଷ୍ଣଙ୍କୁ ନେଇ ନନ୍ଦ ଘରେ ଛାଡ଼ି ଆସିଛନ୍ତି । ବଳରାମ ମଧ୍ୟ ବସୁଦେବଙ୍କ ପୁତ୍ର ଯାହାକୁ ରୋହିଣୀ ନନ୍ଦ ଘରେ ରହି ପାଳନ ପୋଷଣ କରୁଛନ୍ତି । ସେଇ ଦୁହେଁ କଂସ ପ୍ରେରିତ ସମସ୍ତ ଅସୁରଙ୍କୁ ମାରିଛନ୍ତି । ଭବିଷ୍ୟତରେ କଂସକୁ ମଧ୍ୟ ମାରିବେ ।

ପ୍ରଶ୍ନ-୭୬: କଂସ ମରଣ ଭୟରେ କମ୍ପମାନ ହେଲା । ଖଣ୍ଡା ଧରି ବସୁଦେବଙ୍କୁ ମାରିଗୋଡ଼ାଇଲା । ଦେବର୍ଷି କିନ୍ତୁ କଂସକୁ ସମ୍ଭାଳିନେଲେ । ବୁଝାଇ ସୁଝାଇ ଅସୁର ରାଜଙ୍କୁ ଥଣ୍ଡା କଲେ । କଂସ ତେବେ ବସୁଦେବଙ୍କୁ ଜୀବନରେ ନମାରି କଲା କ'ଣ ?

**ନିବାରିତୋ ନାରଦେନ ତତ୍‌ସୁତୌ ମୃତ୍ୟୁଂ ଆତ୍ମନଃ ।**
**ଜ୍ଞାତ୍ୱା ଲୌହ ମୟୈଃ ପାଶୈଃ ବବନ୍ଧ ସହ ଭାର୍ଯ୍ୟୟା ॥୧୯॥**

ଉ. କଂସ ଜାଣିଥିଲା ଯେ ବସୁଦେବ କଂସକୁ ମାରିବେ ନାହିଁ ମାରିବ ତାଙ୍କ ପୁତ୍ର କୃଷ୍ଣ ବଳରାମ । ସୁତରାଂ କଂସ ବସୁଦେବଙ୍କୁ ନ ମାରି ଲୌହ ଶିକୁଳିରେ (ଲୌହ ମୟୈଃ) ବାନ୍ଧି ପକାଇଲା (ବବନ୍ଧ) । ହାତ, ପାଦ ଓ କଟି ତିନି ତିନି ଜାଗାରେ ଲୁହା ଶିକୁଳି ଲଗାଇ ବନ୍ଦୀ ଗୃହରେ ରଖିନେଲା । ଭଉଣୀ ଦେବକୀଙ୍କୁ ମଧ୍ୟ ତାଙ୍କ ସହ କାରାଗୃହରେ ବନ୍ଦୀ କରି ରଖିଲା ।

କଂସ ତାର ମନ୍ତ୍ରୀ ଚାଣୁର, ମୁଷ୍ଟିକ, ଶଲ୍ଲ ଓ ତୋଷଳ ଇତ୍ୟାଦିଙ୍କୁ ସଭାରେ ବସାଇ ମନ୍ତ୍ରଣା କଲା । ଷଡ଼ଯନ୍ତ୍ରରେ ସ୍ଥିର ହେଲା ଯେ ନିଜ ଆୟୁଷ ବୃଦ୍ଧି କରି ଶତ୍ରୁ ଆୟୁଷ ହାନୀ କରିବାକୁ ଏକ ଧନୁର୍ଯଜ୍ଞ କରାଯିବ । ଭଗବାନ ଶିବଙ୍କୁ ପଶୁବଳି ଦେଇ ପ୍ରସନ୍ନ କରାଯିବ । କୃଷ୍ଣ ବଳରାମଙ୍କୁ ମନ୍ତ୍ରୀ ଅକ୍ରୁରଙ୍କୁ ପଠାଇ ଯଜ୍ଞ ଦର୍ଶନ ସୁଆଙ୍ଗ ଅନୁଷ୍ଠାନ ହେବ । କୃଷ୍ଣ ବଳରାମ ଆସିବା ବେଳେ ଦୁହିଁଙ୍କୁ କୁବଳୟା ହସ୍ତୀ ଚଢ଼ାଇ ମରାଯିବ । ସେଥିରେ ନ ମଲେ ଚାଣୁର, ମୁଷ୍ଟିକ ଆଦି ଅଷ୍ଟମଲ୍ଲଙ୍କ ଦ୍ୱାରା ମଲ୍ଲଯୁଦ୍ଧ କରାଇ ମାରି ଦିଆଯିବ । ତେଣିକି କଂସ ନିଷ୍କଣ୍ଟକ ରାଜ୍ୟ ଭୋଗ କରିବ ଓ ସାରା ବିଶ୍ୱର ମରଣବିଜୟୀ ଏକଚ୍ଛତ୍ର ଅଧିପତି ସମ୍ରାଟ ବୋଲାଇବ । ଏହା ପୂର୍ବରୁ କେଶୀ ଅସୁରକୁ ପଠାଇ ଦୁଇ ଭାଇଙ୍କୁ ମାରିବା ବନ୍ଦୋବସ୍ତ କରାଗଲା ।

ପ୍ରଶ୍ନ-୭୭: କଂସ ରାଜାଙ୍କର ଏଭଳି ଜଘନ୍ୟ ପ୍ରସ୍ତାବରେ ମନ୍ତ୍ରୀ ଅକ୍ରୁର କ'ଣ ସମ୍ମତ ହେଲେ ?

ଅକ୍ରୁର ଉବାଚ

**ମନୋରଥାନ୍ କରୋତି ଉଚ୍ଚୈଃ ଜନୋ ଦୈବହତାନ୍ ଅପି ।**
**ଯୁଜ୍ୟତେ ହର୍ଷ ଶୋକାଭ୍ୟାଂ ତଥାପି ଆଜ୍ଞାଂ କରୋମି ତେ ॥୩୯॥**

ଉ. ମନ୍ତ୍ରୀ ଅକ୍ରୁର ଜାଣନ୍ତି ଯେ କଂସ ମହାନ୍ ଦୁଷ୍ଟ ରାଜା । ସେ କଂସର ଆଜ୍ଞାକୁ ଆଦୌ ଅବଜ୍ଞା କରିନାହାନ୍ତି । ବରଂ ଦ୍ୱିଅର୍ଥ ବୋଧକ ଉତ୍ତର ଦେଇ ରାଜାଙ୍କୁ ମରଣକୁ ସ୍ୱୟଂ ଆମନ୍ତ୍ରଣ କରିବା ନିହାତି ବୋକାମି ବୋଲି ଚେତାବନୀ ଶୁଣାଇ ଦେଇଛନ୍ତି । କର୍ମର ପ୍ରେରଣା ଓ ଶୁଭ ଅଶୁଭ ଉଭୟ ପ୍ରକାର କର୍ମ ଫଳ ଜୀବକୁ ପ୍ରାରବ୍ଧରୁ ମିଳେ । ସ୍ୱାର୍ଥପର ଲୋକ ଧର୍ମ ନ ମାନି ମନମାନି କର୍ମ କଲେ ଓଲଟ ଫଳ ଭୋଗିବାକୁ ବାଧ୍ୟ ହୁଏ ।

ଅକ୍ରୁର ନିଜେ ଜଣେ ପରମ ବୈଷ୍ଣବ । ସେ ଉତ୍ତମ ରୂପେ ଜାଣନ୍ତି ଏବଂ ଦୃଢ଼ ବିଶ୍ୱାସ କରନ୍ତି ଯେ ଶ୍ରୀକୃଷ୍ଣ ଷୋଳକଳା ଭଗବାନ ନାରାୟଣ । କଂସ ତାଙ୍କ ହାତରେ କେବଳ ମରିବ ଏକଥା ପୂର୍ବରୁ ଦୈବବାଣୀ ହୋଇଥିବା ମଧ୍ୟ ସେ ଜାଣନ୍ତି । ଅତଏବ କୃଷ୍ଣ ବଳରାମଙ୍କୁ କଂସ ଦରବାରକୁ ଆଣିବାକୁ ସେ ଲେଶ ମାତ୍ର ଭୟ କରିନାହାନ୍ତି । ବରଂ ଏହି ସୁଯୋଗରେ ସେ କୃଷ୍ଣବଳରାମଙ୍କ ଲୀଳାରେ ଭାଗୀଦାର ହେବେ ଓ ଶ୍ରୀକୃଷ୍ଣଙ୍କର ଚରଣ କମଳ ଦର୍ଶନ କରିପାରିବେ । ରଥଚଢ଼ି ମଥୁରାରୁ ଗଲାବେଳେ ବ୍ରଜଭୂମିରେ ସେ କଥା ଚିନ୍ତନ କରି କରି ସେ ଆନନ୍ଦରେ ଅଧୀର ହୋଇ ପଡ଼ିଛନ୍ତି ।

# ୩୦. ପ୍ରେମରସ ପ୍ରକରଣ ସାର
## (ଅଧ୍ୟାୟ ୨୭ଶ-୩୬ଶ)

ଭୋଜନରେ ଛଅ ପ୍ରକାର ରସ ଇନ୍ଦ୍ରିୟ ସୁଖ ଲାଗି ବ୍ୟବସ୍ଥିତ । କାବ୍ୟରେ ମଧ୍ୟ ନଅ ପ୍ରକାର ରସ ମନ ମସ୍ତିଷ୍କର କସରତ ଓ ଶାନ୍ତି ଲାଗି ବିଧାନ ହୋଇଛି । କୃଷ୍ଣ ପ୍ରେମ ଲୀଳାରେ କିନ୍ତୁ ଅଧିକ ଅନ୍ୟ ଏକ ପ୍ରେମ ରସକୁ ମିଶାଇ ଦଶ ରସ ଦ୍ୱାରା କାବ୍ୟର ପରିପ୍ରକାଶ ହୋଇଛି ଏହି ଶ୍ରୀମଦ୍ଭାଗବତ ମହାଗ୍ରନ୍ଥରେ । କାବ୍ୟ ରସରେ ଶୃଙ୍ଗାର ରସକୁ ଶ୍ରେଷ୍ଠ ରସ ସ୍ଥାନ ମିଳିଲା ବେଳେ ଭାଗବତରେ କିନ୍ତୁ ଦିବ୍ୟ ପ୍ରେମରସ ସର୍ବୋଚ୍ଚ ସିଂହାସନ ଆରୁଢ଼ ହୋଇଛନ୍ତି । ତତ୍ତ୍ୱବେତ୍ତାମାନେ ଏହି ପ୍ରେମ ରସକୁ ଉଜ୍ଜ୍ୱଳ ଉନ୍ନତ ରସ ନାମ ଦେଇଛନ୍ତି । ଏ ରସର ଅଧିକାରୀ ଯେତିକି ବିରଳ ତାହାଠାରୁ ଆହୁରି ଅଧିକ ବିରଳ ରସ ବିତରଣକାରୀ । ଏପରିକି ଭଗବାନଙ୍କ ସବୁ ଅବତାରରେ ଏହାର ବିତରଣ ସମ୍ଭବ ହୋଇପାରେନା । ଏଥିପାଇଁ ସ୍ୱୟଂ ଗୋଲୋକ ବିହାରୀ କୃଷ୍ଣଙ୍କୁ ସ୍ୱଦେହରେ ଓହ୍ଲାଇ ଆସିବାକୁ ପଡ଼େ ନିଜ ସ୍ୱଜନ ପାର୍ଷଦମାନଙ୍କ ସହିତ । ଦଶମ ସ୍କନ୍ଧରେ ନଅ ଅଧ୍ୟାୟରେ ଏ ପ୍ରେମ ରସ ବର୍ଣ୍ଣିତ ହୋଇଛନ୍ତି । ଏହି ସ୍କନ୍ଧର ପ୍ରଥମ ସତେଇଶ ଅଧ୍ୟାୟ କେବଳ ଭୂମିକା ପ୍ରସ୍ତୁତିରେ ଖର୍ଚ୍ଚ ହୋଇଛନ୍ତି ପ୍ରେମ ରସ ପରିବେଷଣ ନିମିତ୍ତ । ଏହା ପ୍ରେମରସର ଆରୋହ ନାମରେ ବିଦିତ । ପୁଣି ଶେଷ ଚଉବନ ଅଧ୍ୟାୟର ବ୍ୟବସ୍ଥା କରାଯାଇଛି ଅବରୋହଣ ନିମିତ୍ତ ଶେଷ ରସ ଶାନ୍ତିରେ ପହଞ୍ଚିବାକୁ । କେହି ଜ୍ଞାନାଭିମାନୀ ପଣ୍ଡିତ ଏହି ନଅ ଅଧ୍ୟାୟ ମଧ୍ୟରେ ଥିବା ରାସ ପଞ୍ଚାଧ୍ୟାୟୀକୁ କାମ ରସର ବର୍ଣ୍ଣନା କହି ହୁଏତ ନାସିକା କୁଞ୍ଚନ କରିପାରନ୍ତି । ବାସ୍ତବରେ ତତ୍ତ୍ୱଦର୍ଶୀ ଭକ୍ତମାନଙ୍କ ନିମିତ୍ତ ଏହା ଭାଗବତରେ ପଞ୍ଚପ୍ରାଣ ଭାବରେ ସ୍ୱୀକୃତ । ଏହା କୃଷ୍ଣଙ୍କର କାମ ଲୀଳା ନୁହେଁ । ଭଗବାନଙ୍କର କନ୍ଦର୍ପ ଦର୍ପ ଦଳନ ଲୀଳା ବା କାମ ବିଜୟ ଲୀଳା । କାଳେ କିଏ ଭୁଲ ବୁଝିବ ବୋଲି ଏ ଲୀଳା ଆରମ୍ଭରେ ଶ୍ରୀଲ ବ୍ୟାସଦେବଙ୍କ ଦ୍ୱାରା ଭଗବାନ ଶବ୍ଦ ବ୍ୟବହୃତ ହୋଇଛି ।

ପ୍ରେମରସର ପରିବେଷଣର ପ୍ରସ୍ତୁତି ଲାଗି ଭଗବାନ ସ୍ୱପ୍ରକୃତିରେ ଅଂଶ ଅଗ୍ନି ପାନ, ମୃଦ୍ ଭକ୍ଷଣ, କାଳୀୟ ଦଳନ ଛଳରେ ଜଳର, ସ୍ଥଳର ଓ ଆକାଶ ତତ୍ତ୍ୱର ଶୁଦ୍ଧିକରଣ କରିଛନ୍ତି ସେମାନଙ୍କୁ ପ୍ରେମ ରସର ଅନୁକୂଳ କରିବା ଲକ୍ଷ୍ୟରେ ।

ସର୍ବ ପ୍ରଥମେ ବରୁଣଲୋକ ବିଜୟ କରିଛନ୍ତି ପିତା ନନ୍ଦ ରାଜାଙ୍କ ଏକାଦଶୀ ଉପବାସ ଅନ୍ତେ ନିଶିଥରେ ଯମୁନା ସ୍ନାନ ବେଳେ । ଗୋପାଳ ବାଳକଙ୍କୁ ଧରି ଗୋବିନ୍ଦ ପହଞ୍ଚିଛନ୍ତି ବରୁଣ ପୁରରେ । ବରୁଣ ଦେବ ସାଦର ପାଦପୂଜା କରିଛନ୍ତି ଭଗବାନ କୃଷ୍ଣଙ୍କୁ ନିଜ ସିଂହାସନରେ ବସାଇ । ଗୋପାଳବାଳକମାନେ ମଧ ଗୋବିନ୍ଦଙ୍କ ଲୁଚାଇ ରଖାଇଥିବା ଐଶ୍ୱର୍ଯ୍ୟ ଲୀଳା ଦର୍ଶନ କରି କୃଷ୍ଣପ୍ରେମ ରସାପ୍ଲୁତ ହୋଇଛନ୍ତି ।

ଯୋଗମାୟାଙ୍କ ନିର୍ଦ୍ଦେଶରେ ଠାକୁରଜୀ ନିଜ ଧାମ ବୃନ୍ଦାବନରେ ପ୍ରେମ ସନ୍ନ୍ୟାସିନୀମାନଙ୍କ ସହିତ ମହାରାସର ଆୟୋଜନ କରିଛନ୍ତି । ସ୍ଥାନ ଆଜିର ଯମୁନା ତଟ ରମଣ ରେତି ନାମକ ଦିବ୍ୟ କ୍ଷେତ୍ର । ସମୟ ଆଶ୍ୱିନ ମାସ ପୂର୍ଣ୍ଣିମା ତିଥି । ଠାକୁରଜୀଙ୍କ ବଂଶୀବାଦନ ସ୍ଥଳି ଆଜିର ବଂଶୀବଟ ନାମକ ବୃନ୍ଦାବନର ପ୍ରସିଦ୍ଧ ତୀର୍ଥସ୍ଥାନ । ଯୋଗମାୟାଙ୍କ ନିର୍ଦ୍ଦେଶରେ ଜଳ, ସ୍ଥଳ ଆକାଶ ସବୁ ଭୌତିକ ରୂପ ତ୍ୟାଗ କରି ଚିନ୍ମୟ ରୂପ ଧାରଣ କରିଛନ୍ତି । ଚିନ୍ମୟ ଚନ୍ଦ୍ର ବା ଆଧାତ୍ମିକ ଚନ୍ଦ୍ରଙ୍କର ଉଦୟ ହୁଅନ୍ତେ ଭୌତିକ ଚନ୍ଦ୍ର ମ୍ଳାନ ହୋଇଯାଇଛନ୍ତି । ସମସ୍ତ ବନରାଜି ଛଅ ଋତୁରେ ଫୁଟୁଥିବା ସବୁ ପ୍ରକାରର ଦିବ୍ୟ ପତ୍ର ଫୁଲ ଫଳ ଆଦିରେ ଶୋଭାୟମାନ ହୋଇଛନ୍ତି । ଗୋବିନ୍ଦଙ୍କ ଦିବ୍ୟ ମୁରଲୀ ଦୂତିର ଭୂମିକା ଗ୍ରହଣ କରିଛନ୍ତି । ବୃନ୍ଦାବନର ଗୃହେ ଗୃହେ ନିମନ୍ତ୍ରଣ କରି ଆଣିଛନ୍ତି କେବଳ ମହାରାସର ଅଧିକାରିଣୀ ଗୋପ ଲଳନାମାନଙ୍କୁ ।

ସଂସାରର ସମସ୍ତ ଲୌକିକ କର୍ମ, ସଂପର୍କ ଭୁଲି ଅଧିକାରିଣୀ ଗୋପାଙ୍ଗନାମାନେ ଅଗଣିତ ସଂଖ୍ୟାରେ ପହଞ୍ଚିଯାଇଛନ୍ତି ଦିବ୍ୟ କ୍ରୀଡ଼ାସ୍ଥଳୀରେ । ଅତ୍ୟନ୍ତ ମଧୁର କୋମଳ ସ୍ୱରରେ ଗୋବିନ୍ଦ ସ୍ୱାଗତ କରିଛନ୍ତି ଗୋପୀମାନଙ୍କୁ । ବରସାନା ନନ୍ଦଗାଁଓର କୁଶଳ ମଙ୍ଗଳ ପଚାରିଛନ୍ତି । ସେଠାକୁ ଆସିବାର କାରଣ ପଚାରିଛନ୍ତି । ପୁଣି ନିଜ ନିଜ ଘରକୁ ଫେରି ସ୍ୱଧର୍ମ ପାଳନ କରିବାର ଉପଦେଶ ମଧ ଦେଇଛନ୍ତି । ଗୋପୀମାନେ ଉତ୍ତରରେ ସେମାନଙ୍କର ପରିଚୟ ଗୃହସ୍ଥଧର୍ମସ୍ଥିତ ଗୃହିଣୀ ବୋଲି ନଦେଇ ସ୍ପଷ୍ଟ ଜଣେଇ ଦେଇଛନ୍ତି ସେମାନେ ସ୍ୱଧର୍ମ ତ୍ୟାଗୀ ସନ୍ନ୍ୟାସିନୀ ବୋଲି । ଶେଷରେ ତର୍କ ଯୁଦ୍ଧରେ ଭଗବାନ ଶ୍ରୀକୃଷ୍ଣ ବେଦ ଋଚାରୂପୀ ଗୋପୀମାନଙ୍କ ପାଖରେ ହାରିଯାଇଛନ୍ତି । ଶେଷରେ ରାସ ଲୀଳାର ଶୁଭ ଆରମ୍ଭ ହୋଇଛି ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ରାସଲୀଳା ଆରମ୍ଭ ହେଉ ହେଉ କାମଦେବ ଆକାଶ ମାର୍ଗରେ ଦେଖାଦେଇଛନ୍ତି । ସ୍ତ୍ରୀ ପୁରୁଷଙ୍କ ମିଳନ ହେଲେ ଉଭୟଙ୍କୁ କାମ ପୀଡ଼ା ଦେବା ଦାୟିତ୍ୱ ତାଙ୍କ ହାତରେ ଦେବରାଜ ଇନ୍ଦ୍ର ଦେଇଛନ୍ତି । ଇନ୍ଦ୍ରଙ୍କ ଇନ୍ଦ୍ର ଶ୍ରୀକୃଷ୍ଣ କିନ୍ତୁ ଏ କଥା ମାନିବାକୁ ନାରାଜ । ସେ ନିଜ ଯୋଗମାୟାଙ୍କ ଦ୍ୱାରା କନ୍ଦର୍ପଙ୍କୁ ଆକାଶରେ ସ୍ତମ୍ଭିତ କରି ଦିଅନ୍ତେ ଗୋପୀମାନଙ୍କ ଦୃଷ୍ଟି କୃଷ୍ଣ ଦୃଷ୍ଟି ବଦଳରେ ଆତ୍ମଦୃଷ୍ଟି ହୋଇଗଲା । ସେମାନେ ନିଜ ନିଜର ସୌଭାଗ୍ୟର ପ୍ରଶଂସା କଲେ ଓ ସୂକ୍ଷ୍ମ ଅହଂକାର ବା ଅଭିମାନ ଜାଲରେ ପଡ଼ିଗଲେ । ଏବେ ସେମାନଙ୍କ ଅହଂକାର(ମାନ) ଦୂର କରିବା ଠାକୁରଜୀଙ୍କ ଦାୟିତ୍ୱ । ସୁତରାଂ ସେ ରାଧାରାଣୀଙ୍କୁ ଧରି ଅଲକ୍ଷିତ ବା ଅଦୃଶ୍ୟ ହୋଇଗଲେ ।

ଶ୍ରୀକୃଷ୍ଣଙ୍କ ଅଦର୍ଶନରେ ଧର୍ମ ଅର୍ଥ କାମ ମୋକ୍ଷ ଦଉଡ଼ି କଟା ଗୋପୀମାନେ ଏବେ ପଥହରା । ନିରାଶ୍ରୟା । ଅତ୍ୟନ୍ତ ବ୍ୟାକୁଳ ହୋଇ ଯମୁନା ପୁଳିନ ନିକଟସ୍ଥ ବନ ଉପବନରେ ଅନ୍ଦିକନ୍ଦି ଖୋଜି ବୁଲିଲେ ସମସ୍ତେ ପ୍ରିୟତମ ଶ୍ରୀକୃଷ୍ଣଙ୍କୁ । ତାଙ୍କ ନାମ ଗୁଣ ଗାଇ ଗାଇ ବୃକ୍ଷଲତା ପଶୁ ପକ୍ଷୀଙ୍କୁ ତାଙ୍କ ଠିକଣା ପଚାରି ବସିଲେ । ଶେଷରେ ଶ୍ରୀରାଧାଙ୍କୁ ପାଇଲେ । ତାଙ୍କଠାରୁ ଜାଣିଲେ ଖୋଜିଲେ ସେ କାହୁଁ ମିଳିବେ ? ବରଂ ସମସ୍ତେ ଏକ ସ୍ଥାନରେ ବସି ତାଙ୍କ ଲୀଳା ଅଭିନୟ କରି ଗୁଣ ଗାଇ କରୁଣ କ୍ରନ୍ଦନ କରିବାକୁ ହେବ । କୃଷ୍ଣ ଭାବନାରେ ତନ୍ମୟ, ତତ୍‌ଲୀନ, ତଦ୍‌ଗତ, ତଦ୍‌ଭାବ ଭାବିତ ହୋଇ ସେମାନେ ସୁପ୍ରସିଦ୍ଧ ଗୋପୀଗୀତ ଗାନ କରିଛନ୍ତି ୧୯ଶ୍ଳୋକରେ ୧୯ଜଣ ଗୋପାଙ୍ଗନା । ସେମାନେ ନିଜ ନିଜ ଯୋଗ୍ୟତା ଅନୁଯାୟୀ ପ୍ରେମରସର ୧୧ସ୍ତର ମଧ୍ୟରୁ ପ୍ରଣୟ, ସ୍ନେହ, ମାନ, ରାଗ, ଅନୁରାଗ, ଭାବ, ମହାଭାବ, ଅଧିରୂଢ଼ ମହାଭାବ, ମୋଦନ, ମାଦନ ଓ ମଦନାଖ୍ୟ ମହାଭାବ ମଧ୍ୟରୁ କୌଣସି ନା କୌଣସି ସ୍ତରରେ ପହଞ୍ଚିଯାଇଛନ୍ତି ।

କୃଷ୍ଣ ବିରହ ଜନିତ କରୁଣ ବିଳାପରେ ଗୋପ ଲଳନାମାନଙ୍କର ଅଜାଣତରେ ଗର୍ବ, ଅହଂକାର, ମାନ ସବୁ ନଷ୍ଟ ହୋଇ ନିଶ୍ଚିହ୍ନ ହୋଇଯାଇଛି । ଗୋବିନ୍ଦ ଏଥର ଦର୍ଶନ ଦେଇଛନ୍ତି ସେମାନଙ୍କୁ । ଗୋପୀ ଗୋପୀନାଥଙ୍କର ପୁନର୍ମିଳନ ପରେ ପ୍ରଶ୍ନୋତ୍ତର ପର୍ଯ୍ୟାୟରେ ପହଞ୍ଚିଛି ଲୀଳା । ଗୋପୀମାନଙ୍କର ଅନ୍ତର୍ଦ୍ଧାନ ହେବାର ରହସ୍ୟ ସମ୍ବନ୍ଧିତ ପ୍ରଶ୍ନର ସୁନ୍ଦର ମନୋଜ୍ଞ ଉତ୍ତର ଦେଇଛନ୍ତି ଭଗବାନ ସେହି ରାସଲୀଳାସ୍ଥଳୀରେ । ଏବେ ମହାରାସର ଶୁଭଶଙ୍ଖ ବା ବିଗୁଲ ବାଜିଛି । ସେହି ଗୋପୀମଣ୍ଡଳୀ ମଧ୍ୟରେ ରାମ ଅବତାର କାଳର ଅନେକ ଋଷି ରୂପା ଗୋପୀଥିଲେ । ଅନେକ ଜନକ ପୁରୀର

ଓ ଅଯୋଧ୍ୟାପୁରୀର ସାଧନ ସିଦ୍ଧା ଗୋପୀ ମଧ୍ୟ ଥିଲେ । ସେମାନେ ଶ୍ରୀରାମଙ୍କ ଅଲୌକିକ ସୌନ୍ଦର୍ଯ୍ୟରେ ମୋହିତ ହୋଇ କାମ ଭାବ ଭାବିତ ହୋଇ ନିରାଶ ହୋଇଥିଲେ । ସେତେବେଳେ ସେମାନଙ୍କ ଦୀର୍ଘ ଦିନର ତପସ୍ୟା ଆଜି ଫଳପ୍ରଦ ହୋଇଛି । ଭଗବାନ ପ୍ରତ୍ୟେକ ଗୋପୀ ପାଖରେ ଗୋଟିଏ ଗୋଟିଏ କୃଷ୍ଣ ହୋଇ ପ୍ରକଟ ହୋଇଛନ୍ତି । ସେମାନଙ୍କ ଦେହର ୧୪ସ୍ଥାନରେ( ୫ କର୍ମେନ୍ଦ୍ରିୟ, ୫ ଜ୍ଞାନେନ୍ଦ୍ରିୟ, ମନ, ବୁଦ୍ଧି, ଚିତ୍ତ ଓ ଅହଂକାର) ଲୁଚିଥିବା କାମକୁ ସେ ଦିବ୍ୟ ଚିନ୍ମୟ ବାତାବରଣରେ ଖୋଲି ଦେଇଛନ୍ତି । ଭାଗବତଙ୍କ ଭାଷାରେ ସେଥିପାଇଁ ଭଗବାନଙ୍କୁ ବାହୁ ପ୍ରସାର, ପରିଚୟ, ଅଳକ, ଉରୁ, ନୀବୀ, ସ୍ତନ, ଆଲଭନ, ନଖାଗ୍ରପାତ, କ୍ଷେଳି, ଅବଲୋକ, ସ୍ମିତହାସ୍ୟ ଇତ୍ୟାଦିର ପ୍ରୟୋଗ କରିବାକୁ ପଡ଼ିଛି । ଗୋପୀମାନଙ୍କର ବାହୁ, ହସ୍ତ ଆଦି ଅଙ୍ଗ ପ୍ରତ୍ୟଙ୍ଗକୁ ଚିପୁଡ଼ି ଚିପୁଡ଼ି ମୋଡ଼ି, ମୋଡ଼ି ଭିଡ଼ା ଓଟରା କରି କାମ ବାସନା ସବୁକୁ ଚେରମୂଳ ସହ ଉପାଡ଼ି ଫିଙ୍ଗି ଦେଇଛନ୍ତି ଭଗବାନ ।

ଉପର ଲିଖିତ ବର୍ଣ୍ଣନା କୌଣସି ଭୌତିକ ଶରୀର ସମ୍ବନ୍ଧିତ ନୁହେଁ । ଗୋବିନ୍ଦଙ୍କ ଭଳି ଗୋପୀମାନଙ୍କର ଶରୀର ମଧ୍ୟ ଦିବ୍ୟ ଚିନ୍ମୟ ହୋଇଯାଇଛି । ଏହା ଭୌତିକ ରାସ ଲୀଳା ହୋଇଥିଲେ ଉଭୟ ପକ୍ଷ କାମାସକ୍ତ ହୋଇ ବିପର୍ଯ୍ୟୟ ଭୋଗିଥାଆନ୍ତେ । ଏବେ ସେମାନେ ବରଂ ଦିବ୍ୟ ପ୍ରେମସାଗରରେ ବୁଡ଼ି ଥଳ କୂଳ ପାଇ ନାହାନ୍ତି କୃଷ୍ଣପ୍ରେମ ରସ ସମୁଦ୍ରର । ପରେ ପରେ ଜଳ ବିହାର ବନ ବିହାର ଆଦିର ପ୍ରେମ ରସ ଆସ୍ୱାଦନ କରିଛନ୍ତି ବ୍ରଜଗୋପିକାମାନେ । ଏକ ବ୍ରହ୍ମରାତ୍ରୀ ପର୍ଯ୍ୟନ୍ତ ରାସକ୍ରୀଡ଼ାକୁ ଯୋଗମାୟା ଭୌତିକ ଜଗତର ଏକ ରାତ୍ରି ମଧ୍ୟରେ ସୀମିତ କରି ରଖିଦେଇଛନ୍ତି । ରାସଲୀଳାର ପରି ସମାପ୍ତିରେ ଗୋପୀମାନଙ୍କ ପାଖରେ ଗୋବିନ୍ଦ ନିଜ ଋଣ ସ୍ୱୀକାର କରିଛନ୍ତି । ତାଙ୍କ ନିର୍ଦ୍ଦେଶରେ ନିଜର ଅନିଚ୍ଛା ସତ୍ତ୍ୱେ ଗୋପୀମାନେ ନିଜ ନିଜ ଗୃହକୁ ଫେରିଯାଇଛନ୍ତି । ଗୃହସ୍ଥାଶ୍ରମ ଭଗବାନଙ୍କର ଏକ ସୁନ୍ଦର ମନ୍ଦିର । ଭକ୍ତିମାର୍ଗ ସେ ମନ୍ଦିରର ଚୂଡ଼ା, ଗୋବିନ୍ଦ ପ୍ରେମ ପତାକାର ସ୍ତମ୍ଭ, ଗୋପୀମାନେ ସ୍ୱୟଂ ସେ ପ୍ରେମର ପତାକା ଓ କୃଷ୍ଣ ପ୍ରେମ ରସ ହିଁ ସେ ପତାକାକୁ ଆସ ଆସ ବୋଲି ଡ଼ାକ ପକାଉଥିବା ପବନ ବୋଲି ଜଗତ ଜାଣିବାକୁ ପାଇଲା । ନହେଲେ କାହିଁକି ପାଞ୍ଚ ହଜାର ବର୍ଷ ପରେ କୃଷ୍ଣ ଓ କୃଷ୍ଣ ଭକ୍ତମାନେ ଜନ୍ମ ଜନ୍ମାନ୍ତର ଧରି କୃଷ୍ଣଲୀଳା ଶ୍ରବଣ କୀର୍ତ୍ତନ କରୁଥାଆନ୍ତେ ? ଭଗବାନଙ୍କୁ ପୁଣି ଏକ ସୁନ୍ଦର ବିରଳ ଉପାଧି ମିଳିଲା ମନ୍ମଥମନ୍ମଥ ବୋଲି । ମାୟାବଦ୍ଧ ଜୀବର ମନକୁ କନ୍ଦର୍ପ ଦେବତା ମଥନ କରନ୍ତି ବୋଲି ସେ

ମନ୍ମଥ । ମନ୍ମଥଙ୍କ ମନକୁ ଶ୍ରୀକୃଷ୍ଣ ମଧ୍ୟ ନିଜର ପ୍ରେମରସର ସ୍ୱାଦ ଚଖାଇ ମଥନ କରିଦେଲେ । ଫଳରେ ମନ୍ମଥ ଭାବିଲେ ଅନ୍ୟର ମନକୁ ମଥନ କରି ତା ମନରେ କାମ ପୀଡ଼ା ଉଦ୍ରେକ କରି ମୁଁ ବୀର ବୋଲାଇ କି ଲାଭ ପାଉଛି ? ମୁଁ ଯଦି କନ୍ଦର୍ପ ଦେବତା ନହୋଇ ବୃନ୍ଦାବନର ଗୋପୀଟିଏ ହୋଇଥାନ୍ତି ମୋ ଜନ୍ମ ଧନ୍ୟ ହୋଇଯାଇ ଥାଆନ୍ତା !!! ଏ କନ୍ଦର୍ପ ଦର୍ପ ଦଳନ ଲୀଳାରେ ଜିଣିଲେ ଗୋପୀନାଥ ଓ ଗୋପୀ ଉଭୟେ । ହାରମାନିଲେ ସ୍ୱୟଂ କନ୍ଦର୍ପ ଦେବତା ସେମାନଙ୍କ ହୃଦୟରେ କାମ ପୀଡ଼ା ଉତ୍ପନ୍ନ କରି ନପାରି । ଭକ୍ତମାନେ କହିଲେ ଠାକୁରଜୀଙ୍କୁ ବ୍ରହ୍ମାଦି ଜୟ ସଂରୂଢ଼ ଦର୍ପ-କନ୍ଦର୍ପ-ଦର୍ପହା ।

ପରବର୍ତ୍ତୀ ଅଧ୍ୟାୟରେ ଗୋପୀ ଗୋପାଳଙ୍କର ଶିବ ବିଷ୍ଣୁ ମଧ୍ୟରେ ଅଭେଦ ଦୃଷ୍ଟି ଓ ଭେଦଦୃଷ୍ଟିର ମଧୁର ସମନ୍ୱୟ ବର୍ଣ୍ଣିତ ହୋଇଛି ସେଇ ପ୍ରେମ ରସ ମାଧ୍ୟମରେ । ଶଙ୍ଖଚୂଡ଼ ଆକ୍ରମଣରୁ ଗୋପୀଙ୍କ ଉଦ୍ଧାର ଓ ଅଜଗର ସର୍ପ କବଳରୁ ନନ୍ଦଙ୍କ ଉଦ୍ଧାର ମଧ୍ୟ ନିଜେ ଗୋବିନ୍ଦ କରାଇଛନ୍ତି । ଅମ୍ବିକା ବନକୁ ନନ୍ଦ ଆସିଥିଲେ ଶିବ ପୂଜନ ଲାଗି ମହାଶିବ ରାତ୍ରୀରେ । ଉଦ୍ଧାର ହେଲେ କିନ୍ତୁ ବିଷ୍ଣୁ (କୃଷ୍ଣ)ଙ୍କ ହସ୍ତରେ । ପରେ ପରେ ଯୁଗଳ ଗୀତ ପର୍ଯ୍ୟାୟରେ ୨୪ଜଣ ଗୋପୀଙ୍କର କୃଷ୍ଣଲୀଳା ସ୍ମରଣ ବର୍ଣ୍ଣିତ ହୋଇଛି କୃଷ୍ଣ ପ୍ରେମ ରସକୁ ବିରହର ଉଚ୍ଚତମ ଶୃଙ୍ଗରେ ପହଞ୍ଚାଇବା ଲକ୍ଷ୍ୟରେ । ଠାକୁରଜୀ ଗୋଚାରଣ କରି ଗଲାବେଳେ ଗୋପୀମାନେ ରସମୟ କୃଷ୍ଣକଥା କୃଷ୍ଣଲୀଳା ମନେ ପକାଇ ଦିନ ସାରିବା କଳିଯୁଗୀ ମନୁଷ୍ୟ ପାଇଁ ଏକ ମହାନ ଆଦର୍ଶ ହୋଇ ରହିଯାଇଛି । ଶେଷରେ ଅରିଷ୍ଟାସୁର(ଅସୁର ଆକ୍ରାନ୍ତ ଧର୍ମରୁ ରକ୍ଷା କରିବା) ଉଦ୍ଧାର ଲୀଳାରେ ପ୍ରେମ ରସ ପରିବେଷଣର ଇତି ଘଟିଛି । ବୃନ୍ଦାବନ ଲୀଳା ସମାପନ କରିବା ନିମିତ୍ତ ନାରଦଙ୍କ ସଙ୍କେତରେ କଂସ ରାଜା ଅକ୍ରୂରଙ୍କୁ ପ୍ରେରଣ କରିଛନ୍ତି ନନ୍ଦ ଗାଁଓଁରୁ ରାମ ଗୋବିନ୍ଦଙ୍କୁ ମଥୁରା ଆଣିବା ନିମିତ୍ତ ସୁବର୍ଣ୍ଣ ରଥ ପଠାଇ । ଅତଏବ ପରବର୍ତ୍ତୀ ନଅ ଅଧ୍ୟାୟରେ ବର୍ଣ୍ଣିତ ହେବାକୁ ଯାଉଛି ଭୟାନକ ରସ ।

# ପ୍ରକରଣ ୩୧ ଭୟାନକ ରସ

## (ଅଧ୍ୟାୟ ୩୭ଶ-୪୫ଶ)

## ଅଥ ୩୭ଶ ଅଧ୍ୟାୟଃ

### (କେଶୀ ଅସୁର ଓ ବ୍ୟୋମ ଅସୁର ଦ୍ୱୟଙ୍କ ଉଦ୍ଧାର)

ପ୍ରଶ୍ନ-୭୮: ଧର୍ମ ସମ୍ବନ୍ଧରେ ଅଶାସ୍ତ୍ରୀୟ ଆଚରଣ ହିଁ ଅରିଷ୍ଟ ଅସୁର । ଧର୍ମ ସମ୍ବନ୍ଧରେ ଅଶାସ୍ତ୍ରୀୟ ବା ମନମାନି ଅର୍ଥ ପ୍ରତିପାଦନକୁ କେଶୀ ଅସୁର କୁହାଯାଏ । ପଶୁମାନଙ୍କ ମଧ୍ୟରେ ଅଶ୍ୱ ଅଧିକ ବେଗଗାମୀ ବା ଚଞ୍ଚଳ । ତେଣୁ ଶାସ୍ତ୍ରମାନଙ୍କରେ ଅଶ୍ୱକୁ ମନର ପ୍ରତୀକ ଧରାଯାଏ । କଂସ ଧନୁର୍ଯଜ୍ଞ କରି ନିଜର ଆୟୁଷ ବୃଦ୍ଧି ସହିତ ଶତ୍ରୁଙ୍କ ଆୟୁଷ ହାନୀ ଲାଗି ଆୟୋଜନ କଲା । ଏଥିରେ ରୁଦ୍ର ଭଗବାନଙ୍କୁ ଜୀବନ୍ତ ପଶୁବଳି ଦେଇ ପ୍ରସନ୍ନ କରିବାକୁ ହୁଏ । ସୁତରାଂ କଂସ କୃଷ୍ଣଙ୍କୁ ହତ୍ୟା କରିବାକୁ ଜଣେ ଅସୁରକୁ ଅଶ୍ୱରୂପରେ ପଠାଇଛି । ନାମ ତାର କେଶୀ । ସେ ଭୟଙ୍କର ଅସୁର ବ୍ରଜ ମଣ୍ଡଳରେ ଆସି ଠାକୁରଜୀଙ୍କୁ ଆକ୍ରମଣ କରିଛି । କେଶୀ ଓ କୃଷ୍ଣଙ୍କର ଲଢ଼େଇ ଲୀଳା ଦର୍ଶନ କରିବାକୁ ସ୍ୱର୍ଗ ଦେବତାମାନେ ବିମାନ ଚଢ଼ି ଆକାଶରେ ଧାଡ଼ି ବାନ୍ଧି ଥାଆନ୍ତି । ସେତେବେଳେ କେଶୀ ଦୈତ୍ୟର ବେକ ପାଖ କେଶ ଏତେ ଯୋରରେ କମ୍ପମାନ ହେଲା ଯେ ସେ ପବନରେ ଦେବତାମାନଙ୍କ ବିମାନ ଗୁଡ଼ିକ ଇତସ୍ତତଃ ହେଲା । ଠାକୁରଜୀ ସଙ୍ଗେ ସଙ୍ଗେ କେଶୀର ଦୁଇ ପଛ ଗୋଡ଼କୁ ଧରି ବୁଲାଇ ବୁଲାଇ ଫିଙ୍ଗି ଦେଲେ । ତଥାପି ଅସୁରର ପ୍ରାଣ ଛାଡ଼ିଲା ନାହିଁ । ସେ ଉଠି ପଡ଼ି ପୁନର୍ବାର ଆକ୍ରମଣ କରିବାକୁ ଉଦ୍ୟମ କଲା । ଏଥର ଭଗବାନ ତାଙ୍କ ବାମ ହସ୍ତକୁ ତା ପାଟିରେ ଭରତି କରିଦେଲେ । କ୍ରମେ କ୍ରମେ ସେ ହସ୍ତ ତାତିଲା ଲୁହା ଭଳି ହୋଇଗଲା ଏବଂ କାୟା ବିସ୍ତାର କଲା । ଏଥର କେଶୀ କଲବଲ ହୋଇ ପୈତୃକ ପ୍ରାଣଟି ହରାଇ ବସିଲା । ତଥାପି ମଧ୍ୟ ଅସୁର ସାଯୁଜ୍ୟ ମୁକ୍ତିର ଅଧିକାରୀ ହେଲା । ସେ ସ୍ଥାନଟି ଯମୁନା କୂଳରେ କେଶୀ ଘାଟ ନାମରେ ଏବେ ବି ବିଦ୍ୟମାନ । କେଶୀ ଉଦ୍ଧାର ଲୀଳାରେ ଦେବତାମାନେ ଖୁସି ହୋଇ ପୁଷ୍ପବର୍ଷଣ କଲେ । ଏ ଲୀଳା ଶେଷରେ ଦେବର୍ଷି ନାରଦ ସେଠାରେ ପ୍ରକଟ ହୋଇ ଲୀଳାମୟ କୃଷ୍ଣଙ୍କୁ କିଭଳି ସ୍ତୁତି କଲେ ?

ଶ୍ରୀ ଶୁକ ଉବାଚ

**ତ୍ୱଂ ଆତ୍ମା ସର୍ବ ଭୂତାନାଂ ଏକୋ ଜ୍ୟୋତିଃ ଇବ-ଏଧସାମ୍ ।**
**ଗୂଢ଼ୋ ଗୁହ-ଆଶୟଃ ସାକ୍ଷୀ ମହାପୁରୁଷ ଈଶ୍ୱରଃ ॥୧୧॥**

ଉ. ନାରଦଜୀ କହିଲେ, ''ହେ କୃଷ୍ଣ, ଜୀବମାନେ ସବୁ ଆତ୍ମା । ଆପଣ କିନ୍ତୁ ସେ ଆତ୍ମାମାନଙ୍କର ସାର ଆତ୍ମା ବା ପରମାତ୍ମା । କାଠ ମଧ୍ୟରେ (ଏଧସାଂ) ଅଗ୍ନି (ଜ୍ୟୋତି) ଲୁଚି ରହିବା ଭଳି ସକଳ ଘଟରେ ଆପଣ ପ୍ରତ୍ୟେକ ଜୀବ ସହ ସାକ୍ଷୀ ରୂପରେ ବିଦ୍ୟମାନ ରହିଛନ୍ତି ଗୁପ୍ତ ରୂପରେ (ଗୂଢ଼ୋ) । ଆପଣ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ଆଦି ଈଶ୍ୱରଙ୍କର ମଧ୍ୟ ଈଶ୍ୱର ବା ପରମେଶ୍ୱର ।

ଯେଉଁ ପ୍ରବଳ ପରାକ୍ରମୀ କେଶୀ ଅସୁରର ଭୟରେ ଦେବତାମାନେ ମଧ୍ୟ ସ୍ୱର୍ଗ ଛାଡ଼ି ବଣ ପାହାଡ଼ରେ ଲୁଚି ରହୁଥିଲେ ଆପଣ ତାକୁ ବିନା ଅସ୍ତ୍ରରେ ଉଦ୍ଧାର କରିଛନ୍ତି ଅବଲୀଳା କ୍ରମେ । ଆଉ ଦୁଇଦିନ ପରେ କଂସ ସଭାରେ ଚାଣୁର, ମୁଷ୍ଟିକ ଆଦି ଅଷ୍ଟମଲ୍ଲଙ୍କ ସହିତ ଆପଣ ଲଢ଼େଇ ମୁଁ ଦେଖିବାକୁ ଆତୁର । କୁବଳୟା ଉଦ୍ଧାର, କାଳଯବନ, ମୁର, ନରକ ଓ ଶଙ୍ଖାସୁର ଉଦ୍ଧାର ଲୀଳା ପୁଣି ଗୋଟିକ ପରେ ଗୋଟିଏ ଦେଖିବାର ସୌଭାଗ୍ୟପ୍ରାପ୍ତ ହେବି ।'' ଏଭଳି ସୁନ୍ଦର ସ୍ତୁତି କରି ଦେବର୍ଷି ଅପ୍ରକଟ ହୋଇଗଲେ ।

ପ୍ରଶ୍ନ-୭୯: କଂସ ଉଦ୍ଧାର ସମୟ ଉପଗତ ହେଲାଣି । ଧର୍ମ ଉପରେ କଂସର ଶେଷ ଆକ୍ରମଣ ଅଶାସ୍ତ୍ରୀୟ ଉପାୟରେ ଜଡ଼ ସମାଧି ପ୍ରାପ୍ତି ବା ଶୂନ୍ୟ(ବ୍ୟୋମ) ସମାଧି । ଏଭଳି ସମାଧି ମଧ୍ୟ ଜନ କଲ୍ୟାଣକର ନୁହେଁ । ଏହା ଅଧ୍ୟାତ୍ମ ବିଦ୍ୟାରେ ଅସୁରର ଆକ୍ରମଣ ମାତ୍ର । ସାଧକ ସମାଧିରୁ ଉଠି ଅବଶ୍ୟ ଅନେକ ବିଭୂତିର ଅଧିକାରୀ ହେବ । ବୁଦ୍ଧି ଅଶୁଦ୍ଧ ଥିବାରୁ ସିଦ୍ଧି ଗୁଡ଼ିକର ଦୁରୁପଯୋଗ କରି ଜନ ସମାଜକୁ ଡ଼ରେଇବ । ସୃଷ୍ଟିର ଅକଲ୍ୟାଣ କରିବ । ସେଇ ତ କୃଷ୍ଣ ଲୀଳାରେ ବ୍ୟୋମାସୁର ଉପାଖ୍ୟାନ ଲୀଳା ମଧ୍ୟରେ । ଏହି ବ୍ୟୋମାସୁରର ପରିଚୟ ତେବେ କ'ଣ ?

**ମୟପୁତ୍ରୋ ମହାମାୟୋ ବ୍ୟୋମୋ ଗୋପାଳ ବେଶ ଧୃକ୍ ।**
**ମେଷାୟିତାନ-ଅପୋବାହ ପ୍ରାୟଃ ଚୋରାୟିତୋ ବହୂନ୍ ॥୨୮॥**

ଉ. ପାତାଳପୁର ମୟ ଦୈତ୍ୟ ଯାଦୁବିଦ୍ୟାରେ ଅତି ପ୍ରବୀଣ ଓ ଜଣାଶୁଣା । ମୟର ଅତ୍ୟନ୍ତ ଶକ୍ତିଶାଳୀ ପୁତ୍ର ଏହି ବ୍ୟୋମାସୁର । ଅନେକ ସିଦ୍ଧିର ଅପପ୍ରୟୋଗ କର୍ତ୍ତା ସେ । କାରଣ ତାର ବୁଦ୍ଧି ଆସୁରୀ । ସେ ଠାକୁରଙ୍କୀଙ୍କୁ ଠକିବାକୁ ଗୋପାଳ

ବେଶ ପକାଇ ଆସିଲା । ଯାଦୁଗରଙ୍କର ଦର୍ଶକଙ୍କୁ ଠକିବା ଏକ ବଡ଼ ବାହାଦୂରୀ । ସେଦିନ କୃଷ୍ଣ-ବଳରାମ ଗୋପାଳ ବାଳକମାନଙ୍କ ସହିତ ଚୋର ପୋଲିସ ଖେଳ ଖେଳୁଥାନ୍ତି । ସେ ଗୋଟିଏ ଛଦ୍ମ ଗୋପାଳ ବାଳକ ସାଜି ଦଳରେ ମିଶିଗଲା । ଖେଳରେ ଖେଳରେ ବାଳକ ମାନଙ୍କୁ ଗୋଟି ଗୋଟି କରି ବୋହି ନେଇ ଏକ ପର୍ବତ ଗୁମ୍ଫାରେ ପଥର ଆଉଜାଇ ରଖିଦେଉଥାଏ । ଶେଷକୁ ଆଉ ଚାରି ପାଞ୍ଚ ଜଣ ରହିଲେ କୃଷ୍ଣ ବଳରାମଙ୍କୁ ମିଶାଇ । ବ୍ରଜମଣ୍ଡଳ ପରିକ୍ରମା ବେଳେ ଏହି ବ୍ୟୋମାସୁର ଗୁମ୍ଫା ଦର୍ଶନୀୟ । ବ୍ରଜମଣ୍ଡଳ ପରିକ୍ରମା ବେଳେ ଏହି ବ୍ୟୋମାସୁର ଗୁମ୍ଫା ଦର୍ଶନୀୟ ।

ପ୍ରଶ୍ନ-୮୦: ଲୀଳାମୟ ଠାକୁର ସର୍ବାନ୍ତର୍ଯ୍ୟାମୀ । ଖେଳରେ ଗୋପାଳ ବାଳକ ମାନଙ୍କ ଅନ୍ତର୍ଦ୍ଧାନ ହେବା ରହସ୍ୟ ଅବଗତ ହୋଇ କି ପ୍ରତିବିଧାନ କଲେ ?

**ତଂ ନିଗୃହ୍ୟ-ଅଚ୍ୟୁତୋ ଦୋର୍ଭ୍ୟାଂ ପାତୟିତ୍ୱା ମହୀତଳେ ।**
**ପଶ୍ୟତାଂ ଦିବି ଦେବାନାଂ ପଶୁମାରଂ ଅମାରୟତ୍ ॥୩୨॥**

ଉ. ଶ୍ରୀକୃଷ୍ଣ ଭକ୍ତବତ୍ସଳ ଭଗବାନ (ଅଚ୍ୟୁତ) । ବଦ୍ଧ ଜୀବକୁ ଉଦ୍ଧାର କରିବା କାଇଦା ତାଙ୍କୁ ଭଲ ଭାବରେ ଜଣା । ଦେବତାମାନେ ବ୍ୟୋମାସୁର ଓ କୃଷ୍ଣ ଉଭୟଙ୍କୁ ଆକାଶରେ (ଦିବି ଦେବାନାଂ) ଦେଖୁଥାନ୍ତି (ପଶ୍ୟତାଂ) । ଦୁଇ ହାତରେ ବ୍ୟୋମା ସୁରକୁ ଠାକୁରଜୀ ଧରି ପକାଇ ତଳେ କଚାଡ଼ି ଦେଲେ । ବଳି ପଶୁକୁ(ପଶୁମାରଂ) ଘାତକ ବଳି ପକାଇବା ଭଳି ତା ଦେହକୁ ଦୁଇଖଣ୍ଡ କଲେ କିନ୍ତୁ ଆତ୍ମାକୁ ସାଯୁଜ୍ୟ ମୁକ୍ତି ପ୍ରଦାନ କଲେ । ସବୁଆଡ଼େ ଜୟଭକ୍ତ ବତ୍ସଳ ଭଗବାନ ବୋଲି ହୁରି ପଡ଼ିଲା ।

## ଅଥ ୩୮ଶ ଅଧ୍ୟାୟଃ

### (କଂସଙ୍କର ମନ୍ତ୍ରୀ ଅକ୍ରୁରଙ୍କର ବ୍ରଜ ଆଗମନ)

ପ୍ରଶ୍ନ-୮୧: ମହାବଳଶାଳୀ କଂସ ଅସୁର ଯେତେ ଯେତେ ମହାବଳବାନ ଅସୁରମାନଙ୍କୁ ବାଳକ କୃଷ୍ଣଙ୍କୁ ହତ୍ୟା କରିବାକୁ ପଠାଇଲେ ସେମାନେ ସମସ୍ତେ ପ୍ରାଣ ହରାଇଲେ । ଠାକୁରଜୀ ବିନା କୌଣସି ଅସ୍ତ୍ରରେ ବିନା କ୍ଲେଶରେ ସମସ୍ତଙ୍କୁ ଉଦ୍ଧାର କଲେ । ଶେଷ ଅସୁର କେଶୀ ଓ ବ୍ୟୋମ ନିହତ ହେବା ଖବର ପାଇବା ପରେ କଂସ ଚିନ୍ତା କଲେ ଏବେ କୃଷ୍ଣଙ୍କୁ ମଥୁରା ଡ଼କାଇ ଆଣି ନିଜେ ମଲ୍ଲଙ୍କ ଦ୍ୱାରା ମରାଇବେ

କିମ୍ବା ସ୍ୱହସ୍ତରେ ମାରିବେ । କୃଷ୍ଣ ବଳରାମଙ୍କୁ କଳେ ବଳେ କୌଶଳେ ମଥୁରା ଆଣିବା ପାଇଁ ମନ୍ତ୍ରୀ ଅକ୍ରୁରଙ୍କୁ ଆଦେଶ ଦେଲେ । ଅକ୍ରୁରଜୀ ସେ ସମୟର ଜଣେ ପରମ ବୈଷ୍ଣବ । ସେ ଏଭଳି ନିଷ୍ଠୁର କାର୍ଯ୍ୟ କରିବାକୁ କ'ଣ ସମ୍ମତ ହୋଇଗଲେ ?

**ଶ୍ରୀଶୁକ ଉବାଚ**

**ଅକ୍ରୁରୋଽପି ଚ ତାଂ ରାତ୍ରିଃ ମଧୁପୁର୍ଯ୍ୟାଂ ମହାମତିଃ ।**
**ଉଷିତ୍ୱା ରଥଂ ଆସ୍ଥାୟ ପ୍ରୟଯୌ ନନ୍ଦ ଗୋକୁଳମ୍ ॥୧॥**

ଉ. ଅକ୍ରୁରଜୀ ଶ୍ରୀକୃଷ୍ଣଙ୍କର କଂସ ପ୍ରେରିତ ସକଳ ଅସୁରଙ୍କ ନିହତ ହେବା ଖବର ରଖୁଥାଆନ୍ତି । ତାଙ୍କର ଦୃଢ଼ ବିଶ୍ୱାସ ହୋଇସାରିଥାଏ ଯେ ଶ୍ରୀକୃଷ୍ଣ ସ୍ୱୟଂ ପରମ ବ୍ରହ୍ମ ଭଗବାନ । କଂସ ରାଜା ତାଙ୍କୁ ଡ଼କାଇ ମାରିବା ଯୋଜନା କେବଳ ନିଜ ମୃତ୍ୟୁକୁ ତରବରରେ ଆମନ୍ତ୍ରଣ କରିବା । ସୁତରାଂ ଏ ଦୂତ ପଣିଆ ପାଇଁ ସେ ଆଦୌ ସଂକୋଚ କରି ନାହାନ୍ତି । ବରଂ ଏ ଅବସରରେ ଆଗୁଆ କୃଷ୍ଣ ଦର୍ଶନ ଲାଳସାରେ ସେ ବ୍ୟଗ୍ର ହୋଇ ଉଠିଛନ୍ତି । କୌଣସି ପ୍ରକାରେ ସେ ରାତ୍ରିଟି ମଥୁରାରେ (ମଧୁପୁର୍ଯ୍ୟାଂ) ବିତାଇ ସାରି ରଥ ସଜାଡ଼ି ନନ୍ଦଗାଓ (ନନ୍ଦ ଗୋକୁଳଂ) ଅଭିମୁଖେ ବାହାରି ପଡ଼ିଛନ୍ତି ।

ପ୍ରଶ୍ନ-୮୨ : ମନ୍ତ୍ରୀ ଅକ୍ରୁର ସୁବର୍ଣ୍ଣ ରଥରେ ବସି ଆନନ୍ଦରେ ନନ୍ଦଗାଓଁ ଯିବା ବେଳେ ମନେ ମନେ କ'ଣ ସବୁ ଚିନ୍ତନ କଲେ ?

**କିଂ ମୟା-ଆଚରିତଂ ଭଦ୍ରଂ କିଂ ତପ୍ତଂ ପରମଂ ତପଃ ।**
**କିଂ ବା-ଅଥ-ଅପି-ଅର୍ହତେ ଦତ୍ତଂ ଯତ୍ ଦ୍ରକ୍ଷାମି-ଅଦ୍ୟ କେଶବମ୍ ॥୩॥**

ଉ. ସେ ଚିନ୍ତନ କଲେ, "ମୁଁ କେଉଁ ଜନ୍ମରେ କି ପୁଣ୍ୟ କର୍ମ (ଭଦ୍ରଂ) କରିଥିଲି କେଜାଣି, କି ପରମ ତପସ୍ୟା କରିଥିଲି (ତପ୍ତଂ), କି ପୂଜନ କରିଥିଲ (ଅର୍ହତେ) ବା କି ମହାନ୍ ଦାନ କରିଥିଲି (ଦତ୍ତଂ) ଯେ ମୁଁ ଆଜି ବ୍ରହ୍ମା-ବିଷ୍ଣୁ-ଶଙ୍କରଙ୍କ ପୂଜନୀୟ ଧ୍ୟେୟଙ୍କୁ (କେଶବମ୍) ଦର୍ଶନ କରିବା ସୌଭାଗ୍ୟ ଲାଭ କଲି ।" ସେ ପୁଣି ଭାବୁଥିଲେ ଶୂଦ୍ରକୂଳରେ ଜନ୍ମିତ ଲୋକଟିଏ ଯେପରି ବେଦ ପଢ଼ିବା ବିଡ଼ମ୍ବନା ଠିକ୍ ସେଇମିତି ତାଙ୍କ ଭଳି ବିଷୟୀ କଂସ ଅସୁର ଦରବାରର ବୋଲକରା ରାଜକର୍ମଚାରୀଟିଏ ବିଚରା ଭଗବାନଙ୍କ ଦର୍ଶନ କରିବା ଅସମ୍ଭବ କଳ୍ପନା ବିଳାସ ମାତ୍ର ।

ସେ ପୁଣି ଭାବି ଚାଲିଲେ ତାଙ୍କ ଜନ୍ମ ସଫଳ ହୋଇଛି । ସେ ଆଜି କୋଟି ବ୍ରହ୍ମାଣ୍ଡ ଠାକୁରଜୀଙ୍କର ଦର୍ଶନ ପ୍ରାପ୍ତ ହେବେ । ଏହାକୁ ସେ କଂସ ରାଜାଙ୍କ କୃପା ବୋଲି ମାନୁଛନ୍ତି । କାରଣ ଜନ୍ମ ଜନ୍ମ ଧରି ମୁନି ଋଷିମାନେ ଯେଉଁ ଠାକୁରଙ୍କ ଚରଣ କମଳ ଦର୍ଶନ ଲାଗି ଚେଷ୍ଟା ଜାରି ରଖିଥାଆନ୍ତି, ଆଶା ବାନ୍ଧି ବସିଥାଆନ୍ତି ସେଇ ଦିବ୍ୟ

ଚରଣ କମଳ ଦ୍ୱୟକୁ ସେ ନିଜ ଚର୍ମ ଚକ୍ଷୁରେ ସାକ୍ଷାତ୍ ଦର୍ଶନ କରିବେ କୃତ୍ୟ କୃତ୍ୟ ହେବେ । ବାଇଶଟି ଶ୍ଳୋକ ମାଧ୍ୟମରେ ଶୁକଦେବ ପରମହଂସ ତାଙ୍କର ଏହି ଶ୍ରୀକୃଷ୍ଣ ଚିନ୍ତନକୁ ଶବ୍ଦ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । ଅକ୍ରୂର ପ୍ରଭୁଙ୍କ ଚରଣ ଚିହ୍ନ ଦର୍ଶନ କରିଥିବା ସ୍ଥାନଟି ଏବେ ମଥୁରା ବୃନ୍ଦାବନ ରାସ୍ତାକଡ଼ରେ ମନ୍ଦିର ଆକାରରେ ଚିହ୍ନିତ ହୋଇଛି ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କ ଦ୍ୱାରା ।

ପ୍ରଶ୍ନ-୮୩: ଶ୍ୱଫଲ୍‌କଙ୍କ ପୁତ୍ର ଅକ୍ରୂର ମାର୍ଗରେ (ଅଧ୍ୱନି) କୃଷ୍ଣ ଚିନ୍ତନ କରି କରି ଏକାକୀ ରଥ ଚଳାଇବା ବେଳେ କଅଣ ବାଟ ଭୁଲିଗଲେ କି ?

**ଇତି ସଂଚିନ୍ତୟନ୍ କୃଷ୍ଣଂ ଶ୍ୱଫଲ୍‌କ ତନୟୋଽଧ୍ୱନି ।**
**ରଥେନ ଗୋକୁଳଂ ପ୍ରାପ୍ତଃ ସୂର୍ଯ୍ୟଃ ଚ-ଅସ୍ତଗିରିଂ ନୃପ ||୨୪||**

ଉ. ନା, ନା ସେ ଠିକ୍ ଯାଗାରେ ପହଞ୍ଚିଲେ (ଗୋକୁଳଂ ପ୍ରାପ୍ତଃ) ସେତେବେଳକୁ ସୂର୍ଯ୍ୟ ପଶ୍ଚିମ ଦିଗରେ ଅସ୍ତାଚଳକୁ ଯାଉଥାନ୍ତି । ମନେ ହେଲା ସତେ ଯେମିତି ଅକ୍ରୂର  କୃଷ୍ଣ ଦର୍ଶନ କାମନାରେ ଯାଉଥିବାରୁ ସ୍ୱୟଂ କୃଷ୍ଣ ତାଙ୍କର ରଥ ବାହିବା କାମ କରୁଥିଲେ କି ଆଉ ! !

ପ୍ରଶ୍ନ-୮୪: ଅକ୍ରୁରଜୀ ଠିକ୍ ଗୋଷ୍ଠ ବାହୁଡ଼ା ସମୟରେ ନନ୍ଦଗାଁରେ ପହଞ୍ଚିଗଲେ । କୃଷ୍ଣ ବଳରାମଙ୍କ ଦର୍ଶନ ପ୍ରାପ୍ତ ହୋଇ ସେ ଠାକୁରଜୀଙ୍କୁ କ'ଣ ସବୁ ନିଜର ସୁଖ ଦୁଃଖ କଥା କହିଲେ ?

**ଭଗବତ୍ ଦର୍ଶନ-ଆହ୍ଲାଦ ବାଷ୍ପ ପୁର୍ଯ୍ୟାକୁଳ-ଈକ୍ଷଣଃ ।**
**ପୁଲକ-ଆଚିତ-ଅଙ୍ଗ ଔତ୍‌କଣ୍ଠ୍ୟାତ୍ ସ୍ୱ-ଆଖ୍ୟାନେ ନ-ଅଶକତ୍ ନୃପ ||୩୫||**

ଉ. ସେ ସବୁ କହିବାକୁ ଅକ୍ରୂରଙ୍କୁ ସୁଯୋଗ କାହିଁ ? କେତେ ଜନ୍ମ ସାଧନା ଓ ଗୁରୁ ଭଗବାନଙ୍କ ଅହୈତୁକୀ କୃପାରୁ ଭକ୍ତ ଭଗବାନଙ୍କ ମିଳନ ହୋଇଛି । ଭଗବତ ଦର୍ଶନ ଜନିତ ଆନନ୍ଦ (ଆହ୍ଲାଦ)ରେ ତାଙ୍କ କଣ୍ଠ ଗଦ୍‌ଗଦ୍ ହୋଇଯାଇଛି । ସମଗ୍ର ଶରୀର ଲୋମ ପୁଲକରେ ଭରିଯାଇଛି ଓ ତାଙ୍କ କଣ ମଧ୍ୟ ବାଷ୍ପ ଆକୁଳିତ ହୋଇ ସଂପୂର୍ଣ୍ଣ ରୁଦ୍ଧ ହୋଇଯାଇଛି । ସୁତରାଂ ସେ ଗଲାବେଳେ ବାଟରେ ଯାହାସବୁ ଭାବି ଭାବି ଯାଇଥିଲେ ସେ ସବୁ ଖୋଲି କହିବାରେ (ସ୍ୱ-ଆଖ୍ୟାନେ) ଅସମର୍ଥ ହେଲେ (ନ ଅଶକତ୍) । ରାମ-ଗୋବିନ୍ଦ ପିତୃବ୍ୟ ଅକ୍ରୂରଙ୍କୁ ଦୂରରୁ ଚିହ୍ନିପାରି ପାଛୋଟି ନେଇଛନ୍ତି । ସ୍ୱାଗତ ସତ୍କାର କରି ସମୁଚିତ ଆତିଥ୍ୟ ପ୍ରଦାନ କରିଛନ୍ତି ।

# ଅଥ ୩୯ଶ ଅଧ୍ୟାୟଃ

## (ଅକ୍ରୂରଙ୍କ ରଥରେ ରାମ ଗୋବିନ୍ଦଙ୍କ ମଥୁରା ବିଜୟ)

ପ୍ରଶ୍ନ-୮୫: ପରମ ହରିଭକ୍ତ ଅକ୍ରୂରଜୀ ନନ୍ଦ ଆଳୟରେ ଅତ୍ୟନ୍ତ ସମ୍ମାନ ସହକାରେ ରାତ୍ରିଟି ବିଶ୍ରାମ କଲେ । ନିଦ୍ରା ପୂର୍ବରୁ ଭଗବାନ ଅକ୍ରୂରଙ୍କୁ ମଥୁରାପୁରୀର କୁଶଳ ମଙ୍ଗଳ ପଚାରିଲେ । ଭଗବାନ କହିଲେ, 'ହେ, ସୌମ୍ୟ, ଆହା କି ଦୁଃଖର କଥା । ମୋ ଜନ୍ମ ହେତୁ ମୋ ନିରପରାଧ ପିତା ମାତା ବସୁଦେବ ଓ ଦେବକୀ ଦୁହେଁ କେତେ କଷ୍ଟ ଭୋଗ କଲେ ! ! ତାଙ୍କର ଛଅ ସନ୍ତାନଙ୍କୁ ଜନ୍ମ ହେଉ ହେଉ କଂସ ମାମୁଁ ମାରିଦେଲେ । ମୋ ଅପାରଗତା ହେତୁ ସେମାନେ ଆଜି ମଧ୍ୟ ବନ୍ଦୀ ଜୀବନ କାଟୁଛନ୍ତି । ଏବେ କୁହନ୍ତୁ ଦାଦା ଆପଣଙ୍କର ଏଠାକୁ ଆଗମନର କାରଣ ।'' କିଭଳି ଶବ୍ଦ ଦ୍ୱାରା ଭକ୍ତରାଜ ଅକ୍ରୂର ଭଗବାନଙ୍କୁ ତାଙ୍କ ଆସିବା କାରଣ ପ୍ରକାଶ କଲେ ?

**ଶ୍ରୀଶୁକ ଉବାଚ**

**ଯତ୍ ସନ୍ଦେଶୋ ଯତ୍ ଅର୍ଥଂ ବା ଦୂତଃ ସଂପ୍ରେଷିତଃ ସ୍ୱୟମ୍ ।**
**ଯତ୍ ଉକ୍ତଂନାରଦେନ-ଅସ୍ୟ ସ୍ୱ ଜନ୍ମ-ଆନକ ଦୁନ୍ଦୁଭେଃ ॥୯॥**

ଉ. ସଂପୂର୍ଣ୍ଣ ସତ୍ୟ କଥାଟି ସେ ସଂପୂର୍ଣ୍ଣ ନିର୍ଭୟରେ ପ୍ରକାଶ କରି କହିଲେ, ''ହେ, ଭଗବନ, ଏବେ ମଧ୍ୟ ଦୁଷ୍ଟ କଂସ ତୁମ ପିତାଙ୍କୁ ଶତ୍ରୁ ଭଳି ବ୍ୟବହାର କରୁଛି । ବାରମ୍ବାର ହତ୍ୟା କରିବା ଧମକ ଦେଉଛି । ଆପଣ (ରାମ-ଗୋବିନ୍ଦ) ଦୁହିଁଙ୍କୁ ଧନୁର୍ଯଜ୍ଞରେ ମାରିବା ଯୋଜନା କରିଛି । ଆପଣଙ୍କୁ ନେବାକୁ ମୋତେ ଦୂତ କରି ପ୍ରେରଣ କରିଛି (ସଂପ୍ରେଷିତଃ) । ମୁଁ ଏ କଥା ଜାଣି ମଧ୍ୟ ଆପଣଙ୍କୁ ନେବାକୁ ଆସିଛି । ଦେବର୍ଷି ନାରଦ ଇତି ମଧ୍ୟରେ କଂସଙ୍କୁ କହି ଦେଇଛନ୍ତି ଯେ କୃଷ୍ଣ ବଳରାମ ନନ୍ଦ ଗୃହରେ ବଢୁଥିଲେ ମଧ୍ୟ ବସୁଦେବଙ୍କ (ଆନକ ଦୁନ୍ଦୁଭେଃ) ଔରଷ ଜାତ ପୁତ୍ର । ସେ କାଳେ ଦୈବୀବାଣୀ ଅନୁସାରେ ଆପଣଙ୍କ ଦ୍ୱାରା ମରିଯିବ ଏ ଭୟରେ ଆପଣଙ୍କୁ ମାରିବା ଯୋଜନା କରିଛି ।'' ଏ କଥା ଶ୍ରବଣ କରି କୃଷ୍ଣ ବଳରାମ ଖୁବ୍ ହସିଲେ । ମାମୁଁ ଘରକୁ ଯିବାକୁ ଦୁହେଁ ଆଗ୍ରହୀ ବୋଲି ରାଜା ନନ୍ଦଙ୍କୁ ମଧ୍ୟ ଜଣାଇଦେଲେ । ନନ୍ଦଜୀ ସହଜେ ଅତ୍ୟନ୍ତ ସରଳ ବୈଷ୍ଣବ ଭକ୍ତ । କଂସଙ୍କର ଫନ୍ଦି ଫିକର କଥା କାହୁଁ

ଜାଣନ୍ତେ । ତୁରନ୍ତ ଅନେକ ବଳଦଗାଡ଼ି ସଜ କରାଇଲେ । ପରଦିନ ସକାଳୁ ଦୁଧ, ଦହି, ଛେନା ସଙ୍ଗରେ ଧରି ମଥୁରା ଯିବାର ବନ୍ଦୋବସ୍ତ କଲେ ।

ଗୋପୀ ଗୋପାଳମାନେ ଏ ସମ୍ବାଦ ଶୁଣି ମନ ଦୁଃଖ କଲେ । କେଉଁ ଗୋପୀର ମୁହଁ ଶୁଖିଗଲା । ବସ୍ତ୍ର ଅଳଙ୍କାର, ଜୁଡ଼ା ଆଦି ଶିଥିଳ ହୋଇଗଲା । ଅନ୍ୟ କେହି ଗୋପୀ ଗଭୀର କୃଷ୍ଣ ଧ୍ୟାନରେ ପୂର୍ଣ୍ଣ ସମାଧିସ୍ଥ ହୋଇଗଲେ । କେହି କେହି ଏ କଥା ଶୁଣୁ ଶୁଣୁ ଚେତା ହରାଇଲେ । ଦଳେ ଗୋପାଙ୍ଗନା ଏକାଠି ବସି ବିଧାତା ବ୍ରହ୍ମାଙ୍କୁ ଗାଳି ଦେଲେ । ନିର୍ଦ୍ଦୟ ବୋଲି କହିଲେ । ଦେହଧାରୀ ମାନଙ୍କୁ ମିଳନ ସୁଖ ଦେଇ ପରେ ପରେ ବିରହ ଦୁଃଖ ଦେବା କେଉଁ ଅକଲର କଥା । ଏହା ତ ଚରମ ଅସାଧୁ କାର୍ଯ୍ୟ । ଅନେକ ଗୋପୀ ଅକ୍ରୂରଙ୍କୁ ମଧ୍ୟ ଗାଳିଦେଲେ । କହିଲେ ଯେ ଏହାଙ୍କ ନାମ କେବଳ ଅକ୍ରୂର । କାମ କିନ୍ତୁ ଅତ୍ୟନ୍ତ କ୍ରୂର । କୃଷ୍ଣଙ୍କୁ ଆମଠାରୁ ଦୂରକୁ ନେବା ଅର୍ଥ ଆମ ନୟନ ପିତୁଳାକୁ ଆମ ନୟନରୁ କାଢ଼ି ନେଇଯିବା ।

ଅନ୍ୟ ପକ୍ଷରେ ଗୋପୀମାନେ ମଥୁରା ନାରୀମାନଙ୍କ ଭାଗ୍ୟର ପ୍ରଶଂସା କଲେ । ଆସନ୍ତାକାଲି ସୂର୍ଯ୍ୟ ଉଇଁଲେ ସେମାନଙ୍କ ଲାଗି କେବଳ ମଙ୍ଗଳମୟ ମୁହୂର୍ତ୍ତ ଆସିବନି ବରଂ ରସମୟ ଶ୍ରୀକୃଷ୍ଣଙ୍କର ସ୍ମିତ ହାସ୍ୟ ରୂପକ ଅମୃତ ପାନ ସୁଯୋଗ ଆଣିଦେବ । ମଥୁରା ନାରୀମାନେ ମଧୁର କଥା କହି କୃଷ୍ଣଙ୍କ ମନ ମୋହିନେବେ । ଆମ କୃଷ୍ଣଙ୍କୁ ତ ନିତି ନୂଆ ନୂଆ ପ୍ରେମିକା ଦରକାର । ଆମ କୃଷ୍ଣ ସେମାନଙ୍କ ବୋଲରେ ପଡ଼ି ପରାଧୀନ ବୋଲକରା ହୋଇଯିବେ । ଆମ ଭଳି ଗାଉଁଲି ଗୋପାଳୁଣୀ ମାନଙ୍କୁ କାହିଁକି ମନେ ପକାଇବେ ? ସକାଳେ ଗୋପୀମାନେ ଦେଖିଲେ କୃଷ୍ଣ ଯାଇ ରଥ ଉପରେ ବସିପଡ଼ିଲେଣି । ଜଣେ ଗୋପୀ ଅନ୍ୟ ଜଣେ ସଖୀକୁ ମୁହଁ ଛିଞ୍ଚାଡ଼ି କହିଲା, ‘‘ସଖୀ, ଦେଖତ ଏ କୃଷ୍ଣ କେଡ଼େ ନିଷ୍ଠୁର ହୃଦୟ । ଦେଖ, ଦେଖ, ଏ ମୂର୍ଖ ଗୋପାଳମାନେ ମଧ୍ୟ ମଥୁରା ଯିବାକୁ ତରତର ହେଉଛନ୍ତି । ଦୈବ ମଧ୍ୟ ଆମ ମନର ପ୍ରତିକୂଳ । ଦାଉ ସାଧୁଛି ଆମ ଉପରେ । ଆଜି ସମସ୍ତଙ୍କ ବୁଦ୍ଧି ଓଲଟ ପରା ! !’’

ସେମାନେ ଚିନ୍ତନ କଲେ ମହାରାସ ବେଳେ ବ୍ରହ୍ମରାତ୍ରି ମଧ୍ୟ କ୍ଷଣକ ଭଳି କଟିଗଲା । କୃଷ୍ଣ ସଙ୍ଗରେ ମିଳନ ବେଳା ବୋଲି । ଏବେ କୃଷ୍ଣ ବିରହରେ କ୍ଷଣକ ମଧ୍ୟ ଆମକୁ କୋଟି ଯୁଗ ଭଳି ଲାଗିବ । ପ୍ରିୟତମଙ୍କ ବିରହ ଭାବନାରେ ସମସ୍ତେ ଆକଣ୍ଠ ବୁଡ଼ିଗଲେ । ଲାଜ ଶରମ ସବୁ ଭୁଲି ସମସ୍ତଙ୍କ ସାମନାରେ ହେ ଗୋବିନ୍ଦ, ଦାମୋଦର ଓ ମାଧବ ବୋଲି ସୁସ୍ୱରରେ ରୋଦନ କରିବାରେ ଲାଗିଲେ ।

ପ୍ରଶ୍ନ-୮୬: ଗୋପୀମାନଙ୍କର ବ୍ୟାକୁଳ କ୍ରନ୍ଦନ ଅକ୍ରୂରଙ୍କୁ ଆଦୌ ପ୍ରଭାବିତ

କରିପାରିଲାନି । ସୂର୍ଯ୍ୟ ଉଦୟ ହେଉ ହେଉ ସେ ସଂଧ୍ୟା ବନ୍ଦନା ଆଦି କର୍ମ ଶେଷ କଲେ । ଗୋପାଙ୍ଗନାମାନଙ୍କୁ କୌଣସି ଆଶ୍ୱାସନା ବାଣୀ ନ ଶୁଣାଇ ରଥ ଚଳାଇବାକୁ ଆରମ୍ଭ କରିଦେଲେ । ରାଜା ନନ୍ଦ ରଥ ଆଗେ ଆଗେ ଚାଲିଲେ । ଗୋପାଳମାନେ ପଛେ ପଛେ ଚାଲୁଥାନ୍ତି । ଦୁଗ୍ଧ, ଦହି ଭରା ଗାଡ଼ି ଗୁଡ଼ିକ ସାଥେ ସାଥେ । ଗୋପୀମାନେ କିଛି ବାଟ ରଥ ପଛେ ପଛେ ଗଲେ । ଶେଷରେ ଚିତ୍ର ପ୍ରତିମା ଭଳି (ଲେଖ୍ୟାନି ଇବ) ଗୋଟେ ସ୍ଥାନରେ ଠିଆ ହୋଇ ରହିଗଲେ । ସମସ୍ତଙ୍କର ଆଖି ଅକ୍ରୂରଙ୍କ ରଥ ଉପରେ । ଏହି ସମୟରେ ଠାକୁରଜୀ ଜଣେ ଦୂତ ହାତରେ ଖବର ପଠାଇଲେ ଗୋପୀମାନଙ୍କ ପାଖକୁ ଯେ, ''ହେ ଗୋପୀଗଣ, ମୁଁ ସବୁଦିନ ଲାଗି ତୁମକୁ ଛାଡ଼ି ଯାଉନାହିଁ । ରାଜ କାର୍ଯ୍ୟ ସାରି ନିଶ୍ଚୟ ଆସିବି (ଆୟାସ୍ୟେ) ।'' ଗୋପାଙ୍ଗନାମାନେ ଅକ୍ରୂରଙ୍କ ରଥ ପତାକାକୁ କେତେବେଳ ପର୍ଯ୍ୟନ୍ତ ଚାହିଁ ରହିଲେ ?

**ଯାବତ୍ ଆଲକ୍ଷ୍ୟତେ କେତୁଃ ଯାବତ୍ ରେଣୂ ରଥସ୍ୟ ଚ ।**
**ଅନୁପ୍ରସ୍ଥାପିତ-ଆତ୍ମାନୋ ଲେଖ୍ୟାନି-ଇବ-ଉପଲକ୍ଷିତାଃ ।।୩୬।।**

ଉ.ରଥର ପତାକା ଓ ରଥ ଚକରୁ ଉଡୁଥିବା ଧୂଳି ଦୃଶ୍ୟ ହେଉଥିବା ପର୍ଯ୍ୟନ୍ତ । ଶେଷରେ ନିରାଶ ହୋଇ ନିଜ ନିଜ ଗୃହକୁ ଫେରିଗଲେ । ଅତ୍ୟନ୍ତ ଶୋକ ମଗ୍ନ ହୋଇ ଠାକୁଜୀଙ୍କ ଲୀଳା ସ୍ମରଣ, ଶ୍ରବଣ, କୀର୍ତ୍ତନ କରି କରି ଦିନ ସାରିଲେ ।

ଏଣେ ଅକ୍ରୂରଙ୍କ ରଥ ପବନ ବେଗରେ ଚାଲୁଥାଏ । ରଥ ପହଞ୍ଚିଲା ମଥୁରା ସନ୍ନିକଟ ଯମୁନାକୂଳସ୍ଥିତ ଅକ୍ରୂର ଘାଟରେ । ଏହା ଏକ ପାପ ନାଶିନୀ ଠାକୁରଜୀଙ୍କ କୃପାପ୍ରାପ୍ତ ଲୀଳାସ୍ଥଳୀ । ସୁତରାଂ ପାପ ନାଶିନୀ ଏହାର ଜଳରାଶି । ସୂର୍ଯ୍ୟ ଦେବ ଅସ୍ତ ହେଉଥାନ୍ତି । ଅକ୍ରୂର ବୈଦିକ ମନ୍ତ୍ର ଜପି ଜପି ରାମ ଗୋବିନ୍ଦଙ୍କୁ ରଥରେ ବସାଇ ସ୍ନାନ କଲେ ଯମୁନା ଜଳରେ । ଜଳ ମଗ୍ନ ହୋଇ ଅକ୍ରୂର ଦର୍ଶନ କଲେ ଜଳ ମଧ୍ୟରେ ରାମ ଗୋବିନ୍ଦଙ୍କୁ । ସେଠାରେ ଠାକୁରଜୀ ମହାବିଷ୍ଣୁ ରୂପରେ ଥାଆନ୍ତି । ବଳରାମ ଅନନ୍ତରୂପରେ ତାଙ୍କ ସେବା କରୁଥାନ୍ତି ଅନନ୍ତଶଯ୍ୟା ରୂପ ଧାରଣ କରି । ନାରଦ, ପ୍ରହ୍ଲାଦ, ସନକାଦି ଅଗଣିତ ଦିବ୍ୟ ପାର୍ଷଦ ତାଙ୍କୁ ଘେରି ରହିଥାନ୍ତି । ଚାରି ବେଦ ଦ୍ୱାରା ତାଙ୍କୁ ସ୍ତୁତି କରାଯାଉଥାଏ । ଅକ୍ରୂର ଉପରକୁ ଉଠି ଦେଖିଲେ ସେ ଦୁହେଁ ରଥରେ ମଧ୍ୟ ବିରାଜମାନ । ପୁଣି ଜଳରେ ବୁଡ଼ି ଦେଖିଲେ ଦୁହିଁଙ୍କର ସେଇ ପୂର୍ବରୂପ ଲାବଣ୍ୟକୁ । ମହାଭାଗବତ ଅକ୍ରୂର ବନ୍ଦନା ଭକ୍ତିର ଆଚାର୍ଯ୍ୟ । ସେ ବୁଝିଗଲେ ଏସବୁ ଭଗବାନଙ୍କର ଅଲୌକିକ ଲୀଳା ମାତ୍ର । ସେ ସେ ସମୟରେ ଯେଉଁ ସ୍ତୁତି କରିଥିଲେ ତାହା ୩୦ଶ୍ଳୋକରେ ବର୍ଣ୍ଣିତ ପରବର୍ତ୍ତୀ ଅଧ୍ୟାୟର ବିଷୟବସ୍ତୁ ।

।। ଅପଣ୍ଡିତ ଦାମୋଦର ବଳିୟାରସିଂହ ।।

# ଅଥ ୪୦ଶ ଅଧ୍ୟାୟଃ

## (ବନ୍ଦନ ଭକ୍ତିର ଆଚର୍ଯ୍ୟ ଅକ୍ରୂରଙ୍କ ଶ୍ରୀକୃଷ୍ଣ ସ୍ତୁତି)

ପ୍ରଶ୍ନ-୮୭: ପ୍ରଥମ ସ୍କନ୍ଧରେ କୁନ୍ତୀ ସ୍ତୁତି ଓ ଭୀଷ୍ମ ସ୍ତୁତି, ଚତୁର୍ଥ ସ୍କନ୍ଧରେ ଧ୍ରୁବ ସ୍ତୁତି, ଷଷ୍ଠ ସ୍କନ୍ଧରେ ଗଜେନ୍ଦ୍ର ସ୍ତୁତି ପରେ ସପ୍ତମ ସ୍କନ୍ଧରେ ପ୍ରହ୍ଲାଦ ସ୍ତୁତି ଭାଗବତ ଗ୍ରନ୍ଥର ଅମୂଲ୍ୟ ସଂପଦ । ଏ ସମସ୍ତ ସ୍ତୁତିଙ୍କୁ ପଛରେ ପକାଇ ଦଶମ ସ୍କନ୍ଧର ଏହି ଅଧ୍ୟାୟର ଅକ୍ରୂର ସ୍ତୁତି ଅକ୍ରୂରଙ୍କୁ ନବଧା ଭକ୍ତିର ପରାକାଷ୍ଠାର ଚରମ ସୋପାନରେ ପହଞ୍ଚାଇଛି ବନ୍ଦନ ଭକ୍ତିର ଆଚାର୍ଯ୍ୟ ପଦରେ ପ୍ରତିଷ୍ଠିତ କରାଇ । ମୋଟ ତିରିଶିଟି ଶ୍ଳୋକରେ ଏହା କୀର୍ତ୍ତିତ ହୋଇଛି । ଅକ୍ରୂର ପ୍ରଥମେ କାଳିନ୍ଦୀ ହ୍ରଦରେ ବୁଡ଼ି ଅନନ୍ତ ଶୟନରେ ଦର୍ଶନ କରିଛନ୍ତି କୃଷ୍ଣ ବଳରାମଙ୍କୁ । ଉପରକୁ ଉଠି ତାଙ୍କ ରଥ ଉପରେ ଦୁହିଁଙ୍କୁ ଦର୍ଶନ କରି ଭକ୍ତି ଗଦ୍ ଗଦ୍ କଣ୍ଠରେ କିଭଳି ଶବ୍ଦରେ ସ୍ତୁତିର ମଙ୍ଗଳାଚରଣ କଲେ ?

ଅକ୍ରୂର ଉବାଚ

**ନତୋଽସ୍ମି-ଅହଂ ତ୍ୱା-ଅଖିଳ ହେତୁ ହେତୁଂ**
**ନାରାୟଣଂ ପୁରୁଷଂ ଆଦ୍ୟଂ ଅବ୍ୟୟଂ ।**
**ଯତ୍ ନାଭିଜାତ-ଅରବିନ୍ଦ କୋଷାତ୍**
**ବ୍ରହ୍ମା-ଆବିରାସୀତ୍ ଯତ ଏଷ ଲୋକଃ ॥୧॥**

ଉ. ଭକ୍ତଶ୍ରେଷ୍ଠ ଅକ୍ରୂର କହୁଛନ୍ତି, ''ହେ, ନରରୂପୀ ନାରାୟଣ, ମୁଁ ଆପଣଙ୍କୁ ବିନମ୍ର ପ୍ରଣାମ ଜଣାଉଛି । ଆପଣ ହିଁ ସୃଷ୍ଟିର ଆଦି ପୁରୁଷ, ଅବ୍ୟୟ ପରମାତ୍ମା । ଆପଣଙ୍କ ନାଭି ପଦ୍ମରୁ ଦିବ୍ୟ କମଳ କୋଷ ସହିତ ପଦ୍ମଭବ ବ୍ରହ୍ମାଙ୍କ ଜନ୍ମ । ପୁଣି ସେଇ ବ୍ରହ୍ମାଜୀଙ୍କଠାରୁ ଏ ସ୍ଥୁଳ, ସୂକ୍ଷ୍ମ ଓ କାରଣ ରୂପରେ ଦୃଶ୍ୟ ଅଦୃଶ୍ୟ ରୂପକ ବିଶ୍ୱ ବ୍ରହ୍ମାଣ୍ଡର ଜନ୍ମ । ଆପଣ ସକଳ ସୃଷ୍ଟିର ନିମିତ୍ତ ଓ ଉପାଦାନ କାରଣ ମାନଙ୍କର ମଧ୍ୟ କାରଣ । ଅତଏବ ପରମ କାରଣ ।''

ପ୍ରଶ୍ନ-୮୮: ଅକ୍ରୂରଜୀ କହିଲେ, ହେ, ଭଗବାନ, ''ଚବିଶ ତତ୍ତ୍ୱ ବିଶିଷ୍ଟ ମହାପ୍ରକୃତି, ମାୟା ବା ଅଜ ଆପଣଙ୍କଠାରୁ ଜାତ । ସେମାନଙ୍କର ଅଧିଷ୍ଠାତୃ ଦେବଗଣ

ଇନ୍ଦ୍ର, ବରୁଣ, କୁବେର, ସୂର୍ଯ୍ୟ, ଚନ୍ଦ୍ର ଆଦି ସମସ୍ତେ ଆପଣଙ୍କ ଅଭିନ୍ନ ଅଙ୍ଗ ସ୍ୱରୂପ । ଅଜ ବା ମାୟା ଆପଣଙ୍କୁ ଜାଣନ୍ତି ନାହିଁ । ପୁଣି ଅଜ ବା ବ୍ରହ୍ମା ମଧ୍ୟ ଆପଣଙ୍କର ଦିବ୍ୟ ସ୍ୱରୂପକୁ ଜାଣି ପାରନ୍ତି ନାହିଁ ।

ବୈଦିକ କର୍ମ ଆଶ୍ରୟରେ କର୍ମମାର୍ଗୀ ମନୁଷ୍ୟ ଆପଣଙ୍କୁ ଜନ୍ମ ଜନ୍ମ ଧରି (ଓଁ) ବ୍ରହ୍ମ ରୂପରେ ନିର୍ଗୁଣ ନିରାକାର ଉପାସନା କରେ । ଜ୍ଞାନକାଣ୍ଡ ଆଶ୍ରୟରେ ଜ୍ଞାନ ମାର୍ଗୀ ମଧ୍ୟ ପରମାତ୍ମା ରୂପରେ ଆପଣଙ୍କର ସଗୁଣ ନିରାକାର ଉପାସନା କରିଥାଏ । ଯୋଗମାର୍ଗୀ ସାଧକ ପୁଣି ଆପଣଙ୍କୁ ନାରାୟଣ ରୂପରେ ସଗୁଣ ସାକାର ଉପାସନା କରୁଥାଏ । ଏମାନେ ସମସ୍ତେ ଯଥା କ୍ରମେ ସ୍ୱର୍ଗ ସୁଖ, ମୁକ୍ତି ସୁଖ ଓ ସିଦ୍ଧି ସୁଖ ପ୍ରାପ୍ତ ହୁଅନ୍ତି । କାରଣ ଏମାନେ ସମସ୍ତେ ସକାମ ଭକ୍ତ । ନିଷ୍କାମ ଶୁଦ୍ଧ ଭକ୍ତମାନେ କେବଳ ଆପଣଙ୍କୁ କୃଷ୍ଣ ରୂପରେ ସଗୁଣ ସାକାର ଉପାସନା କରି ପାଞ୍ଚମୁକ୍ତିକୁ ତୁଚ୍ଛ କରି ଜୀବନ୍ମୁକ୍ତିର ଆନନ୍ଦ ଆସ୍ୱାଦନ କରିପାରନ୍ତି । ସଂସାରରେ ପୁଣି କେହି କେହି ଆପଣଙ୍କୁ ଶିବ ରୂପରେ ଉପାସନା କରି ବୈଷ୍ଣବ ସେବା ଦ୍ୱାରା ଆପଣଙ୍କ ପ୍ରେମ ରସ ପାନର ଅଧିକାରୀ ହୁଅନ୍ତି । କୀଟ ଠାରୁ ବ୍ରହ୍ମା ପର୍ଯ୍ୟନ୍ତ ସକଳ ଜୀବ ଜଗତ ସ୍ଥାବର ହେଉ ବା ଜଙ୍ଗମ ହେଉ ସମସ୍ତେ ସତ୍ତ୍ୱ, ରଜ ଓ ତମୋଗୁଣର ମାୟା ଦଉଡ଼ିରେ ବନ୍ଧା । ସମୁଦ୍ରରେ ଜଳଚର ଜୀବଟିଏ ଅବା ପୃଥିବୀ ଉପରେ ଉଦୁମ୍ବର ଫଳରେ କୀଟଟିଏ ଭଳି ସକଳ ପ୍ରାଣୀଗଣ ଆପଣଙ୍କ ବିରାଟ ଶରୀରର କେଉଁ ଏକ କଣରେ ପଡ଼ିଥାନ୍ତି ।''

କର୍ମକାଣ୍ଡରୁ କର୍ମଯୋଗ, ଜ୍ଞାନ କାଣ୍ଡରୁ ଜ୍ଞାନ ଯୋଗ ଓ ଉପାସନା କାଣ୍ଡରୁ ନିଷ୍କାମ ଉପାସନା ଯୋଗ ଶିଖାଇବାକୁ ଆପଣ ଚାରି ଯୁଗରେ ଅନେକ ଅବତାର ନିଅନ୍ତି । କର୍ମ, ଜ୍ଞାନ, ଧ୍ୟାନ ଆଦି ବଦ୍ଧ ଜୀବକୁ ବିଷୟ ବାସନାରୁ ମୁକ୍ତ କରିବାରେ ଅସମର୍ଥ ବୋଲି ଅକ୍ରୂରଜୀ କାହିଁକି ଶ୍ରୀକୃଷ୍ଣଙ୍କୁ କହିଲେ ?

**ଭଗବନ୍ ଜୀବ ଲୋକୋଽୟଂ ମୋହିତଃ ତବ ମାୟୟା ।**
**ଅହଂ ମମ-ଇତି-ଅସଦ୍‌ଗ୍ରାହୋ ଭ୍ରାମ୍ୟତେ କର୍ମ ବର୍ତ୍ମସୁ ॥୨୩॥**

ଉ. ବିଷୟୀ ଜୀବ ଚତୁର୍ଦ୍ଦଶ ଭୁବନର ଯେଉଁ କୋଣରେ ରହିଲେ ମଧ୍ୟ ଭଗବାନଙ୍କ ଦୈବୀ ମାୟା ଅଧୀନସ୍ଥ ରହିବାକୁ ବାଧ୍ୟ (ମୋହିତ ତବ ମାୟୟା) । ଭକ୍ତି ଶୂନ୍ୟ କର୍ମ, ଜ୍ଞାନ, ଧ୍ୟାନ ଦ୍ୱାରା ସାଧନା କର୍ମ କରି କରି (କର୍ମ ବର୍ତ୍ମସୁ) କେବଳ ଭ୍ରମିତ ହୁଏ (ଭ୍ରାମ୍ୟତେ) ମୁଁ, ମୋର (ଅହଂ-ମମ)ଏହି ଦୁଇ ଅଦୃଶ୍ୟ ଦଉଡ଼ିରେ ପରସ୍ତ ପରସ୍ତ ବନ୍ଧା ହୁଏ । ଜନ୍ମ-ଜନ୍ମାନ୍ତର କର୍ମ କରି ମଧ୍ୟ ମୁକୁଳିବାର ଉପାୟ

ପାଏନା ବିଚରା । ମୁକ୍ତିର ଉପାୟ ଖୋଜିବା ଦାୟିତ୍ୱ ଜୀବର ଭଗବାନଙ୍କର ନୁହେଁ ।

ପ୍ରଶ୍ନ-୮୯ : ଯଦି ଜୀବ ମାୟା ଜାଲରେ ପଡ଼ି ଜାଣିପାରେନା ଯେ ସେ ଦୁଃଖ କାହିଁକି ଭୋଗୁଛି ତେବେ ଅକ୍ରୂରଜୀ କ'ଣ ଏ ଦୁର୍ଦ୍ଦଶାରୁ ନିଜେ ମୁକ୍ତ ଥିଲେ କି ?

**ଅହଂ ଚ ଆତ୍ମା-ଆତ୍ମଜ-ଆଗାର ଦାର-ଅର୍ଥ ସ୍ୱଜନ-ଆଦିଷୁ ।**
**ଭ୍ରମାମି ସ୍ୱପ୍ନ କଳ୍ପେଷୁ ମୂଢ଼ଃ ସତ୍ୟଧିୟା ବିଭୋ ॥୨୪॥**

ଉ. ଅକ୍ରୂର ନିବେଦନ କରୁଛନ୍ତି, ''ହେ ବିଭୋ, ମୁଁ ମଧ ଦେହ, ଗୃହ, ପତ୍ନୀ, ଧନ, ବନ୍ଧୁ ଆଦିଙ୍କଠାରୁ ସୁଖ ପ୍ରାପ୍ତି ଆଶା କରି ଗୃହ ଜଞ୍ଜାଳରେ ବନ୍ଧନଗ୍ରସ୍ତ । ମୁଁ ଘୋର ମୂର୍ଖ (ମୂଢ଼ଃ) । ଆପଣଙ୍କ ସ୍ୱରୂପ ସତ୍ୟକୁ ଭୁଲି ମାୟା, ମୃଗତୃଷ୍ଣା, ମରୀଚିକା ପଛରେ ଧାବମାନ (ଭ୍ରମାମି) । ପୂର୍ବ ଜନ୍ମର କୃତ ବୈଷ୍ଣବ ସେବାର ଫଳ ଏବେ ମୋତେ ମିଳୁଛି । ବସୁଦେବ ଦେବକୀ, ଉଗ୍ରସେନଙ୍କ ଭଳି ପରମ ବୈଷ୍ଣବମାନଙ୍କ ଦର୍ଶନ ଏବଂ ସତ୍‌ସଙ୍ଗ ହେତୁ ମୋର ହୃଦୟରେ ଦିବ୍ୟ ପ୍ରେମ ଭକ୍ତିର ଉଦୟ ହୋଇଛି । ଏବେ ଆପଣଙ୍କର ନିରନ୍ତର ସ୍ମରଣ କରି ମୁଁ ମାୟାତୀତ ହୋଇପାରିଛି ।''

ପ୍ରଶ୍ନ-୯୦ : ଧନ, ଦାରା ସୁତ ଇତ୍ୟାଦିଙ୍କୁ ଅସତ୍ୟ ମନେ କରିବାର କାରଣ କଅଣ ହୋଇପାରେ ବୋଲି ଅକ୍ରୂରଜୀ ଠାକୁରଙ୍କୁ କହିଛନ୍ତି ?

**ଅନିତ୍ୟ-ଆତ୍ମ ଦୁଃଖେଷୁ ବିପର୍ଯ୍ୟୟ ମତିଃ ହି-ଅହମ୍ ।**
**ଦ୍ୱନ୍ଦୋ-ଆରାମଃ ତମୋ ବିଷ୍ଣୋ ନ ଜାନେ ତ୍ୱା-ଆତ୍ମନଃ ପ୍ରିୟମ୍ ॥୨୫॥**

ଉ.ଅସଲ କାରଣଟି ହେଲା ମନୁଷ୍ୟର ବୁଦ୍ଧିର (ମତିଃ) ବିପର୍ଯ୍ୟୟ । ଅନିତ୍ୟ ଅସାର ଦେହକୁ ନିତ୍ୟ ଅବିନଶ୍ୱର ମାନିବା, ଦେହକୁ ଆତ୍ମା ମାନିବା ଓ ଦୁଃଖକୁ ସୁଖ ମାନିବାକୁ ଶାସ୍ତ୍ରରେ ଦ୍ୱନ୍ଦୋ-ଆରାମ କୁହାଯାଏ । ଏହା ହିଁ ବିଷୟ ଉନ୍ମୁଖ ଜୀବର ଭ୍ରମ ବା ବିପର୍ଯ୍ୟୟ । ମହାମାୟା ମହାରାଣୀଙ୍କର ତମୋଗୁଣର ଅକାଟ୍ୟ ପ୍ରଭାବ । ଏ ବୁଦ୍ଧି ବିପର୍ଯ୍ୟୟର କାରଣ ମଧ ଏଠାରେ ସୂଚେଇ ଦିଆଯାଇଛି । ସେଇଟି ହେଲା ଭଗବାନ କେବଳ ତାର ନିଜର । ପିତା, ପୁତ୍ର, ପତ୍ନୀ ଆଦି ଅନ୍ୟ କେହି ବି ନିଜର ଆତ୍ମୀୟ ନୁହନ୍ତି (ଆତ୍ମନଃ ପ୍ରିୟମ୍) ।

ପ୍ରଶ୍ନ-୯୧ : ସମଗ୍ର ଜୀବ ଜଗତରେ ମନୁଷ୍ୟ ହିଁ କେବଳ ସର୍ବଶ୍ରେଷ୍ଠ ଚତୁର ପ୍ରାଣୀ । ଏପରିକି ଦେବତା ଓ ଅସୁର ଯୋନିଠାରୁ ମଧ ମନୁଷ୍ୟର ବୁଦ୍ଧି ଶ୍ରେଷ୍ଠତର । କାରଣ ବୁଦ୍ଧି ଶ୍ରଦ୍ଧା ବିଶ୍ୱାସ ଯୁକ୍ତ ହେଲେ ମନୁଷ୍ୟ କେବଳ ଅସୁର, ଦେବତାଙ୍କ ଭଳି ଭୋଗମୁଖୀ ନ ହୋଇ ବିବେକୀ ସାଧକ ଭାବରେ ଗଣ୍ୟ ହୁଏ । ତେବେ ତାର ମଧ

ବେଳେ ବେଳେ ଏଭଳି ବୁଦ୍ଧି ବିପର୍ଯ୍ୟୟ ହେବାର କାରଣ କଅଣ ହୋଇପାରେ ?

**ନ-ଉତ୍ସହେଽହଂ କୃପଣଧୀଃ କାମକର୍ମ ହତଂ ମନଃ ।**
**ରୋଦ୍ଧୁଂ ପ୍ରମାଥିଭିଃ ଚ-ଅକ୍ଷୈଃ ହ୍ରିୟମାଣଂ ଇତଃ ତତଃ ॥୨୭॥**

ଉ. ଅକ୍ରୂରଜୀ ଏଠାରେ ଦର୍ଶାଇଛନ୍ତି, ''ହେ ପ୍ରଭୋ, ମୋର ବୁଦ୍ଧି କୁଣ୍ଠିତ (ନ-ଉତ୍ସହେ) । ମୁଁ ଅଳ୍ପ ବୁଦ୍ଧିଆ ପ୍ରାଣୀଟିଏ (କୃପଣଧୀଃ) । ସଂସାରର ଲୋଭନୀୟ ବିଷୟ ଚାକଚକ୍ୟରେ ମୋ ମନ ସ୍ୱତଃ ଆକର୍ଷିତ ହେଉଛି । ଚକ୍ଷୁ, କର୍ଣ୍ଣ, ନାସା ଇତ୍ୟାଦି ଇନ୍ଦ୍ରିୟମାନେ ନିଜ ନିଜ ଆଡ଼କୁ ଘୋଷାରିବାରୁ ସେମାନଙ୍କୁ ଏଥିରୁ ଅଟକେଇବାକୁ (ରୋଦ୍ଧୁଂ) ମୋର ଚଞ୍ଚଳ ମନ(ଇତଃ ତତଃ) ବାରମ୍ବାର ବିଚଳିତ ହେଉଛି (ହ୍ରିୟମାଣଃ) । ମୋ ଭକ୍ତି ସାଧନା ଓ ଆପଣଙ୍କ କୃପା ମୋ ମନକୁ ଆଗୁଳି ରଖିପାରିଛନ୍ତି ।''

ପ୍ରଶ୍ନ-୯୨ : ମନୁଷ୍ୟର ମନ ଅମାନିଆ ପ୍ରମାଥି ବଳବାନ୍ ଏକଥା ସକଳ ସନ୍ଥ ଓ ଗ୍ରନ୍ଥ ସ୍ୱୀକାର କରନ୍ତି । ମନକୁ ସଜାଡ଼ିବାର କେଉଁ ସରଳ ଉପାୟଟି ଅଧ୍ୟାୟର ଉପସଂହାର ବେଳେ ଭକ୍ତ ଅକ୍ରୂରଜୀ ଆମ ସମ୍ମୁଖରେ ରଖିଗଲେ ?

**ନମସ୍ତେ ବାସୁଦେବାୟ ସର୍ବଭୂତ କ୍ଷୟାୟ ଚ ।**
**ହୃଷୀକେଶ ନମଃତୁଭ୍ୟଂ ପ୍ରପନ୍ନଂ ପାହି ମାଂ ପ୍ରଭୋ ॥୩୦॥**

ଉ. ଉପାୟଟି ଅତ୍ୟନ୍ତ ସରଳ । ମାୟାରୁ ମୁକ୍ତି ଚାହୁଁଥିବା ଜୀବ କର୍ମ, ଜ୍ଞାନ, ଧ୍ୟାନ, ଭକ୍ତି ଆଦି ପୁରୁଷାର୍ଥର ଅହଂକାର ତ୍ୟାଗ କରି ବାସୁଦେବ ଶ୍ରୀକୃଷ୍ଣଙ୍କର ଶରଣାପନ୍ନ (ପ୍ରପନ୍ନଂ) ହେଉ । ବାସ୍ ବଲ୍ ଏବେ ତାଙ୍କ କୋର୍ଟରେ । ତେଣିକି ସବୁ କାମ ସେ କରିବେ । ମନୁଷ୍ୟ ଆଖି ବୁଜି ବୈଷ୍ଣବ ସେବାରେ କାୟ, ମନୋ, ବାକ୍ୟକୁ ବାଜି ଲଗାଇ ଦେଉ । ଆମେ ପଡ଼ିଗଲେ ସେ ନିଜେ ଉଠେଇ ଧରିବେ । ତାଙ୍କ ଭକ୍ତର ପାପ ପୁଣ୍ୟର ଖାତା (ଲେଖା)କୁ ସେ ଚିରି ଫିଙ୍ଗିଦେବେ । ଏହା ହିଁ ଅକ୍ରୂରଜୀଙ୍କର ସଂସାର ପାଇଁ ଏକ ଅଦ୍ଭୁତ ଆବିଷ୍କାର ।

## ଅଥ ୪୧ଶ ଅଧ୍ୟାୟଃ

### (କୃଷ୍ଣ ବଳରାମଙ୍କ ମଥୁରା ପ୍ରବେଶ)

ପ୍ରଶ୍ନ-୯୩: ଯମୁନା ଜଳରେ ସ୍ନାନ କରିବାବେଳେ ଅକ୍ରୂରଜୀ ଠାକୁରଜୀଙ୍କ ଐଶ୍ୱର୍ଯ୍ୟ ଦର୍ଶନ କରି ଆନନ୍ଦରେ ବିଭୋର ହେଲେ । ତିରିଶ ଶ୍ଳୋକରେ ଲମ୍ବା ଚୌଡ଼ା ସ୍ତୁତି କଲେ । ଏବେ ଶ୍ରୀକୃଷ୍ଣ ନିଜର ଐଶ୍ୱର୍ଯ୍ୟ ଶକ୍ତିର ଲାଇନ୍ କାଟିଦେଲେ ସ୍ୱିଚ୍ ଅଫ୍ କରିଦେଇ । ମାଧୁର୍ଯ୍ୟ ପ୍ରେମ ଦାନ କରିବେ ଭକ୍ତ ରାଜ ଅକ୍ରୂରଙ୍କୁ । ସେ ରଥ ପାଖରେ ପହଞ୍ଚନ୍ତେ ଭଗବାନ ପଚାରିଲେ ପ୍ରିୟ ଚାଚାଙ୍କୁ କିଛି ଦେଖିଥିବା ଆଶ୍ଚର୍ଯ୍ୟ ଘଟଣା ବିଷୟରେ । କାରଣ ତାଙ୍କ ସନ୍ଧ୍ୟା ବନ୍ଦନରେ ଭଗବାନ ଅସ୍ୱାଭିକ ବିଳମ୍ବ ହେବା ଲକ୍ଷ୍ୟ କରିଛନ୍ତି । ଅକ୍ରୂର ଅତ୍ୟନ୍ତ ସରଳ ଭାବରେ ଉତ୍ତର ଦେଇଛନ୍ତି ଯେ କୃଷ୍ଣ ବଳରାମଙ୍କ କୃପାରୁ ତାଙ୍କ ଦୁର୍ଲଭ ଦର୍ଶନ ପ୍ରାପ୍ତି ପରେ ଆଉ ସଂସାରରେ କିଛି ଆଶ୍ଚର୍ଯ୍ୟ ବୋଲି ରହିପାରେ ନା !; ବୁଝିଗଲେ ଭଗବାନ ସବୁ କଥା ଅକ୍ରୂରଙ୍କର ସଂକ୍ଷିପ୍ତ ଉତ୍ତରରେ । ସମଝଦାରକୋ ଇସାରା କାଫି ! !

ଏବେ ଅକ୍ରୂରଜୀ ଖୁବ୍ ଜୋରରେ ରଥ ଚଳାଇଲେ । ପୂର୍ବରୁ ରାଜା ନନ୍ଦ ଗୋପାଳ ବାଳକଙ୍କୁ ସାଙ୍ଗରେ ଦୁଧ, ଦହି ଗାଡ଼ି ସବୁକୁ ଧରି ମଥୁରା ପହଞ୍ଚି ସାରିଥାନ୍ତି । କୃଷ୍ଣ ବଳରାମଙ୍କୁ ଦେଖି (ବସୁଦେବ ସୁତୌ ବୀକ୍ଷ) ମଥୁରା ଦାଣ୍ଡରେ (ମାର୍ଗେ) ମଥୁରା ବାସୀମାନେ କଂସଙ୍କର କୃଷ୍ଣ ହତ୍ୟା ଷଡ଼ଯନ୍ତ୍ର କଥା ଭାବି ଦୁଃଖ କଲେ କି ?

**ଶ୍ରୀଶୁକ ଉବାଚ**

**ମାର୍ଗେ ଗ୍ରାମଜନା ରାଜନ୍ ତତ୍ର ତତ୍ର-ଉପସଙ୍ଗତାଃ ।**
**ବସୁଦେବ ସୁତୌ ବୀକ୍ଷ ପ୍ରୀତା ଦୃଷ୍ଟିଂ ନ ଚ-ଆଦଦୁଃ ॥୭॥**

ଉ. ଦୁଃଖିତ ହେବାକୁ ସେମାନଙ୍କୁ (ଗ୍ରାମଜନା) ଆଦୌ ଅବସର ମିଳିଲା ନାହିଁ । ସେମାନେ ସକଳ କାମ ଧନ୍ଦା ତ୍ୟାଗ କରି ଦୁଇ ଭାଇଙ୍କୁ ଦର୍ଶନ କରିବାକୁ (ତତ୍ର ତତ୍ର) ରଥ ଚାରିପାଖରେ ରୁଣ୍ଡ ହେବାର ଲାଗିଲେ (ଉପ ସଙ୍ଗତା) । ମଥୁରା ନରନାରୀ କିଛି ସାମାନ୍ୟ ସ୍ତ୍ରୀପୁରୁଷ ନଥିଲେ । ପୂର୍ବ ଜନ୍ମର ସେହି ଅଯୋଧ୍ୟାବାସୀ ଓ ମିଥିଳା ବାସୀ ଏବେ ନୂଆ ନୂଆ ଦେହ ଧରିଥିଲେ କୃଷ୍ଣଙ୍କୁ ଦର୍ଶନ କରି ନିଜ ନିଜ ଜନ୍ମ ସାର୍ଥକ କରିବେ ବୋଲି । ସୁତରାଂ ସେମାନେ ଠାକୁରଜୀଙ୍କୁ ଦର୍ଶନ କରୁ କରୁ

(ବୀକ୍ଷ) ଆଉ ନିଜ ନିଜ ଚକ୍ଷୁକୁ ଅନ୍ୟ ଆଡ଼େ ହଟେଇ ପାରିଲେ ନାହିଁ (ଦୃଷ୍ଟିଂ ଚ ନ-ଆଦଦୁଃ) । ସେମାନଙ୍କର ପୂର୍ବ ଜନ୍ମର ହରିଦର୍ଶନ ଲାଳସା (ପ୍ରୀତା) ହୃଦୟ ମଧ୍ୟରେ ଅଙ୍କୁରିତ ହୋଇସାରିଥିଲା । ଏବେ କେବଳ ସେମାନେ ନିଜ ନିଜର ଜନ୍ମ ସାର୍ଥକ କରିବାର ପୂର୍ଣ୍ଣ ଅବସର ପାଇଗଲେ ।

ପ୍ରଶ୍ନ-୯୪: ମଥୁରାରେ ପହଞ୍ଚି ପ୍ରଥମେ କଂସ ଦୂତ ଅକ୍ରୂରଜୀ ରାମ ଗୋବିନ୍ଦ ଦୁଇ ଭାଇଙ୍କୁ ନିମନ୍ତ୍ରଣ ଜଣାଇଲେ ନିଜ ଗୃହ ଅଙ୍ଗନକୁ ପବିତ୍ର କରାଇବା ନିମିତ୍ତ । ଠାକୁରଜୀ କିନ୍ତୁ ତାଙ୍କୁ ବିନମ୍ର ସହକାରେ ପ୍ରଥମେ ରାଜ କାର୍ଯ୍ୟ ପରେ ନିଜ କାର୍ଯ୍ୟ କର୍ତ୍ତବ୍ୟ କହି ରାଜାଙ୍କ ପାଖକୁ ରଥ ନେଇଯିବାକୁ କହିଲେ । ଭାଉଇଙ୍କ ସହ ନିଜେ କିନ୍ତୁ ଚାଲି ଚାଲି ମଥୁରା ଦାଣ୍ଡର ଶୋଭାବୃଦ୍ଧି କଲେ । ଅକ୍ରୂରଜୀ ରାଜ ନବରରେ ପହଞ୍ଚି କଂସଙ୍କୁ ଦୁଇ ଭାଇଙ୍କ ଆଗମନ ବାର୍ତ୍ତା ଜଣାଇ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ରାମ ଗୋବିନ୍ଦ ଦୁହେଁ ମଥୁରା ବିଜୟ କଲାବେଳକୁ ଠିକ୍ ସନ୍ଧ୍ୟା ସମୟ ହୋଇଥାଏ । ତାଙ୍କ ଦର୍ଶନରେ ଉତ୍ସୁକ ହୋଇ ମଥୁରା ନାରୀମାନେ ନିଜ ନିଜ ପ୍ରାସାଦର ମଣ୍ଡପ ବା ଛାଜା ଉପରେ ଗୁଣ୍ଡ ହେଲେ । କାହାରି ନିଜ ନିଜର ବସ୍ତ୍ର ଆଭୂଷଣ ଉପରେ ନଜର ନଥାଏ । କେହି କେହି ବସନ ଭୂଷଣ ସବୁ ଓଲଟ ପାଲଟ କରି ପିନ୍ଧି ଧାଇଁଗଲେ କୃଷ୍ଣ ଦର୍ଶନ ଲାଗି । କିଏ ଗୋଟିଏ ନୂପୁର ପିନ୍ଧି ଯାଇଛି । କିଏ ପୁଣି ଗୋଟିଏ ଚକ୍ଷୁରେ ଅଞ୍ଜନ ଲଗାଇ ଧାଇଁଛି । କିଏ ଖାଇବା ଅଧାରୁ ଉଠି ଯାଇଛି । ପୁଣି କିଏ ଖାଇ ସାରି ମୁହଁ ନ ଧୋଇ ଦଉଡ଼ି ଯାଇଛି । ଏଭଳି ଅଭୂତ ପୂର୍ବ ବ୍ୟାକୁଳତାର କେବଳ ଗୋଟିଏ କାରଣ ଥିଲା । ସେମାନେ ମଥୁରାରେ ଥାଇ ମଧ ଗୋପୀ ଗୋପୀନାଥଙ୍କ ଆଲୌକିକ ଲୀଳା ସବୁ ଶ୍ରବଣ କରିଥିଲେ ମଧ୍ୟ ଗୋପୀନାଥଙ୍କ ଦର୍ଶନ କରିନଥିଲେ ଏ ପର୍ଯ୍ୟନ୍ତ । ସେଥିପାଇଁ ସେମାନଙ୍କ ଅମାନିଆ ମନ ସବୁକୁ ମନମୋହନ ଆଗରୁ ଚୋରାଇ ନେଇଥିଲେ । ସେମାନେ ଖୁସିରେ ଦୁଆର ମୁହଁରେ ପୂର୍ଣ୍ଣ କୁମ୍ଭ ସ୍ଥାପନ କଲେ । ଉପରକୁ ଯାଇ କେହି କେହି ବାଲ୍‌କୋନି ଉପରୁ ସୁନ୍ଦର ସୁଗନ୍ଧିତ ପୁଷ୍ପ ବର୍ଷଣ କଲେ । ମଙ୍ଗଳଗୀତ ଗାନ କଲେ । ଦଧି, ଅକ୍ଷତ, ଦୂବ, ଲାଜା, ଖଇ ଇତ୍ୟାଦି ଦୁଇ ଭାଇଙ୍କ ଉପରେ ବର୍ଷା କରି ସୁସ୍ୱାଗତ କଲେ ମଥୁରା ନଗରୀକୁ ।

ମଥୁରା ରାଜ୍ୟରେ ହରି ଭକ୍ତମାନେ ଥାଆନ୍ତି । ଅନେକ ଅଭକ୍ତମାନେ ମଧ ଥାଆନ୍ତି । ଠିକ୍ ସେଇ ସମୟରେ ଠାକୁରଜୀ (ଗଦାଗ୍ରଜ) ଭକ୍ତମାନଙ୍କୁ ଅଭୟ ଦାନ କରିବାକୁ ଓ ଅଭକ୍ତ ମାନଙ୍କୁ ଭୟଭୀତ କରାଇବାକୁ କି ନାଟକୀୟ ଅଲୌକିକ ଲୀଳାର ଶୁଭାରମ୍ଭ କଲେ ?

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

**ରଜକଂ କଟିତ୍ ଆୟାନ୍ତଂ ରଙ୍ଗକାରଂ ଗଦା-ଅଗ୍ରଜଃ ।**
**ଦୃଷ୍ଟ୍ୱା ଅଯାଚତ୍ ବାସାଂସି ଧୌତାନି-ଅତି-ଉତ୍ତମାନି ଚ ॥୩୨॥**

ଉ. ଭଗବାନଙ୍କର ମନେ ପଡ଼ିଯାଇଛି ଶ୍ରୀରାମ ଅବତାର କାଳର ରଜକଙ୍କର ସୀତାଙ୍କ ଲାଞ୍ଛନ କାହାଣୀ । ଆଜି ସେଇ ରଜକ କଂସଙ୍କ ଧୋବା କାମ କରୁଛନ୍ତି । ମଥୁରା ଲୀଳା ଆରମ୍ଭରେ ସେ ଠାକୁରଜୀଙ୍କ ସାମନାରେ । ଭଗବାନ ରଜକଙ୍କୁ ବସ୍ତ୍ର ମାଗିଛନ୍ତି (ଅଯାଚତ୍ ବାସାଂସି) । ତାଙ୍କର ରାଜକୀୟ ପୋଷାକ (ଧୌତାନି-ଅତି-ଉତ୍ତମାନି) ଦରକାର ପଡ଼ିଛି କଂସର ରାଜ ଦରବାର ଯିବାକୁ । ଲୀଳାର ସଂଳାପ (ଡ଼ାଇଲଗ୍) ଅନୁସାରେ ରଜକ କଂସ ରାଜାଙ୍କ ପୋଷାକ ଦେବାକୁ ନାସ୍ତିବାଣୀ ଶୁଣାଇଛି । ବରଂ ବନଚର ଗାଉଁଲି ଗଉଡ଼ ଇତ୍ୟାଦି କହି ଉପହାସ କରିଛି । ଭଗବାନ ଏକା ଚାପଡ଼ାରେ ରଜକଙ୍କର ମୁଣ୍ଡ ଗଣ୍ଡି ଅଲଗା କରି ଦେଇଛନ୍ତି । ଏ ଘଟଣାରେ ଭକ୍ତମାନେ ଯେତିକି ଆନନ୍ଦିତ ହୋଇଛନ୍ତି କଂସ ଅନୁଚର ଅଭକ୍ତମାନେ ସେତିକି ଭୟଭୀତ ହୋଇଛନ୍ତି । ଏ ଖବର ରାଜା କଂସ ଦରବାର ପର୍ଯ୍ୟନ୍ତ ମଧ୍ୟ ପହଞ୍ଚି ଯାଇଛି ।

ପ୍ରଶ୍ନ-୯୫: ରଜକ ଉଦ୍ଧାର ଲୀଳା ପରେ ଠାକୁରଜୀ ରଜକ ଗଣ୍ଠିଲିରୁ ବାଛି ବାଛି କିଛି ବେଶ ପୋଷାକ ପିନ୍ଧିଛନ୍ତି ଓ ଅଗ୍ରଜ ବଳରାମଙ୍କୁ ଓ ଗୋପାଳ ବାଳକମାନଙ୍କୁ ମଧ୍ୟ ପିନ୍ଧାଇଛନ୍ତି । କୃଷ୍ଣ ବଳରାମ ଉଭୟଙ୍କୁ ରାଜାଙ୍କ ମାପର ପୋଷାକ ମାନୁ ନଥାଏ । ଠିକ୍ ଏହି ସମୟରେ ଜଣେ ଦରଜୀ ଆସି ଯାଇଛନ୍ତି । ସେ ପୋଷାକ ସବୁକୁ କାଟି କୁଟି ସେମାନଙ୍କୁ ମାନିବା ଭଳି ସଜବାଜ କରିଦେଇଛନ୍ତି । ଦରଜୀ ଉପରେ ପ୍ରସନ୍ନ ହୋଇ ଭଗବାନ ତାଙ୍କୁ ବଳ, ଐଶ୍ୱର୍ଯ୍ୟ ଭକ୍ତି ଇତ୍ୟାଦି ବୃଦ୍ଧି ଲାଗି ଆଶୀର୍ବାଦ କରିଛନ୍ତି । ଦୁଇ ଠାକୁର ପୋଷାକ ପିନ୍ଧିବା ପରେ ବେକରେ ଫୁଲମାଳର କିଛି ପ୍ରବନ୍ଧ ହେଲାକି ସେତେବେଳେ ?

**ତତଃ ସୁଦାମ୍ନୋ ଭବନଂ ମାଳାକାରସ୍ୟ ଜଗ୍ମତୁଃ ।**
**ତୌ ଦୃଷ୍ଟ୍ୱା ସ ସମୁତ୍ଥାୟ ନନାମ ଶିରସା ଭୁବି ॥୪୩॥**

ଉ.ଲୀଳାରେ ଭଗବାନ ଭକ୍ତକୁ ଚିହ୍ନିବାକୁ ଡ଼େରି କରନ୍ତି କି ? ପାଖରେ ଥିବା ଏକ ମାଳାକାର ଘରକୁ ସେ ବିନା ଡ଼ାକରାରେ ପହଞ୍ଚି ଯାଇଛନ୍ତି । ନାଁ ତାଙ୍କର ସୁଦାମା ମାଳୀ । ମହା ଆନନ୍ଦରେ ଆସନ, ପାଦ୍ୟ, ଅର୍ଘ୍ୟ, ପୂଜନ ଦ୍ରବ୍ୟ, ଆଦି ଧରି ମାଳୀ ସୁଦାମା ସତ୍କାର କରିଛନ୍ତି ଦୁଇ ଭାଇଙ୍କର । ସୁନ୍ଦର ଫୁଲ ମାଳା ଦୁଇଟି ଗଳାରେ ହାର କରି ଲମ୍ବାଇ ଦେଇ ପାଦତଳେ ପ୍ରଣତି ଜଣାଇଛନ୍ତି ।

ପ୍ରଶ୍ନ-୯୬: ଶ୍ରୀଠାକୁରଙ୍କୀ ମାଳା ପାଇ ସୁଦାମାଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇଛନ୍ତି । ଭକ୍ତକୁ ବର ଯାଚିବାରୁ ଭକ୍ତଶ୍ରେଷ୍ଠ ସୁଦାମା କିଭଳି ଶବ୍ଦରେ ତାଙ୍କର ସ୍ତୁତି କଲେ ?

**ନ ହି ବାଂ ବିଷମା ଦୃଷ୍ଟିଃ ସୁହୃଦୋଃ ଜଗତ-ଆତ୍ମନୋଃ ।**
**ସମୟୋଃ ସର୍ବ ଭୂତେଷୁ ଭଜନ୍ତଂ ଭଜତୋଃ ଅପି ।।୪୭।।**

ଉ.ସୁଦାମା ମାଳାକାର ଅତ୍ୟନ୍ତ ଭକ୍ତି ଗଦ୍ ଗଦ୍ ସ୍ୱରରେ କହି ଉଠିଛନ୍ତି । ‘‘ହେ ଜଗତ ଆଧାର ପ୍ରଭୋ, ଆପଣଙ୍କର ଶତ୍ରୁ ମିତ୍ର ବୋଲି ବିଷମ ଦୃଷ୍ଟି ତ ନଥାଏ । ଆପଣ ସବୁରି ସୁହୃଦ । ବିଶ୍ୱବ୍ରହ୍ମାଣ୍ଡର ସକଳ ପ୍ରାଣୀ ଗଣଙ୍କର ଆତ୍ମାମାନଙ୍କର ଆତ୍ମା ପରମାତ୍ମା । ଅତଏବ ଜୀବ ନ ମାଗିଲେ ମଧ୍ୟ ମାୟିକ କୃପା ସେ ସାରା ଜୀବନ ଅନ୍ନ, ବସ୍ତ୍ର, ବାସ, ପୁତ୍ର, ପତି, ପତ୍ନୀ, ପିତା ଇତ୍ୟାଦି ଆକାରରେ ପାଇଥାଏ । କିନ୍ତୁ ଆପଣଙ୍କର ସ୍ୱତନ୍ତ୍ର କୃପା କେବଳ ଅଳ୍ପ କେତେକ ମୁଷ୍ଟିମେୟ ଶରଣାଗତ ଭକ୍ତ ପାଇଥାଆନ୍ତି । ଆପଣ ଲୀଳା ମାଧ୍ୟମରେ ସେଇମାନଙ୍କ ଘରକୁ ଧାଇଁ ଆସନ୍ତି ପ୍ରେମ ଦାନ କରିବାକୁ (ଭଜନ୍ତଂ ଭଜତୋଃ ଅପି) ହୁଏତ ମୁଁ ସେଇଭଳି ଜଣେ ସୌଭାଗ୍ୟବାନ କ୍ଷୁଦ୍ର ଜୀବ ଯେ ଆଜି ଆପଣଙ୍କର ଅଲୌକିକ କୃପାର ଅଧିକାରୀ ।’’

## ଅଥ ୪୨ଶ ଅଧ୍ୟାୟଃ

### (କୁବ୍‌ଜା ପ୍ରତି କୃପା ଓ ଧନୁଭଙ୍ଗ ଲୀଳା)

ପ୍ରଶ୍ନ-୯୭: ସୁଦାମା ମାଳୀଙ୍କ ଘରୁ ବାହାରି ଠାକୁରଙ୍କୀ ମଥୁରା ରାଜ ପଥ ଉପରେ ଚାଲିଲେ । ଭାବିଲେ କିଛି ତନ୍ତ୍ର ମନ୍ତ୍ରର ଯାଦୁ ଦେଖାଇ ମଥୁରାବାସୀଙ୍କ ମନୋରଞ୍ଜନ କରିବେ । ଅନେକ ସମୟରେ ଲୋକମାନେ ଯାଦୁ ଟୋନା ଦେଖି ଶୀଘ୍ର ମୋହିତ ହୋଇଯାଆନ୍ତି ।

ମଥୁରା ଧାମର ରାଜରାସ୍ତାରେ ପ୍ରଥମେ ସେ ଭେଟିଛନ୍ତି କୁବ୍‌ଜାକୁ । ଏ କୁବ୍‌ଜା ରାମ ଅବତାର କାଳର ସେଇ ସୂର୍ପଣଖା । ରାମଙ୍କୁ ସେ ସୁନ୍ଦର ରୂପରେ ମୋହିତ କରିବାକୁ ଚେଷ୍ଟା କରିଥିଲା । ମର୍ଯ୍ୟାଦାପୁରୁଷୋତ୍ତମ ଶ୍ରୀରାମ ସେତେବେଳେ କଥା ଦେଇଥିଲେ କୃଷ୍ଣ ଜନ୍ମରେ ତାଙ୍କୁ ଅଙ୍ଗ ସଙ୍ଗ ଦେବେ ବୋଲି । ଠାକୁରଙ୍କୀ କୁବ୍‌ଜାର କ’ଣ ସବୁ ଦେଖି ତାକୁ ଏବେ ଚିହ୍ନିପାରିଲେ ?

ସୈରିନ୍ଧ୍ରୀ ଉବାଚ

**ରୂପ ପେଶଳ ମାଧୁର୍ଯ୍ୟ ହସିତ-ଆଳାପ ବୀକ୍ଷିତୈଃ ।**
**ଧର୍ଷିତ-ଆତ୍ମା ଦଦୌ ସାନ୍ଦ୍ରଂ ଉଭୟୋଃ ଅନୁଲେପନମ୍ ॥୪॥**

ଉ. କୁବ୍‌ଜା ନିଜର ରୂପ, ଆକର୍ଷଣ(ପେଶଳ), ମିଠାସ୍(ମାଧୁର୍ଯ୍ୟ) ମନ୍ଦ ମନ୍ଦ ହସ, କଥାବାର୍ତ୍ତା (ଆଳାପ), ତୀକ୍ଷ୍ଣ କଟାକ୍ଷ (ବୀକ୍ଷିତୈଃ) ଇତ୍ୟାଦି ଦ୍ୱାରା ଠାକୁରଜୀଙ୍କ ଆଡ଼କୁ ସ୍ୱତଃ ଟାଣି ହୋଇଗଲା (ଧର୍ଷିତା ଆତ୍ମା) । ଠାକୁରଜୀ ଗନ୍ଧ ଚନ୍ଦନ ମାଗୁ ନ ମାଗୁଣୁ ଦୁଇ ଭାଇଙ୍କୁ ସେ ଅବିଳମ୍ବେ ପ୍ରଦାନ କରିଦେଲା । ଭକ୍ତ ଓ ଭଗବାନ ଉଭୟେ ଉଭୟଙ୍କୁ ଅବିଳମ୍ବେ ସଂପୂର୍ଣ୍ଣ ଚିହ୍ନି ପକାଇଲେ । କୁବ୍‌ଜା ଦୁଇ ଭାଇଙ୍କୁ କଂସରାଜାଙ୍କର ମହାର୍ଘ ପୂଜା ସାମଗ୍ରୀରେ ସଜାଇଦେଲା ।

ପ୍ରଶ୍ନ-୯୮: କୃଷ୍ଣଙ୍କ ଦେହରେ ହଳଦିଆ ଚନ୍ଦନ ଓ ବଳରାମଙ୍କ ଦେହରେ ନୀଳରଙ୍ଗର ଅଙ୍ଗରାଗ ଅତ୍ୟନ୍ତ ଶୋଭାୟମାନ ହେଲା । ଠାକୁରଜୀ ଜୀବର ଜାଣତରେ ହେଉ ବା ଅଜାଣତରେ ହେଉ ଭଗବାନଙ୍କୁ ପ୍ରସନ୍ନ କରିପାରିଲେ ତୁରନ୍ତ କୃପା କରିଥାନ୍ତି । ଚନ୍ଦନ ଟିକକ ପାଇ ଲୀଳାମୟକୃଷ୍ଣ ତାକୁ କିଭଳି କୃପା କରିଥିଲେ ?

**ପ୍ରସନ୍ନୋ ଭଗବାନ୍ କୁବ୍‌ଜାଂ ତ୍ରିବକ୍ରାଂ ରୁଚିର-ଆନନାମ୍ ।**
**ଋଜ୍ୱୀଂ କର୍ତ୍ତୁଂ ମନଃ ଚକ୍ରେ ଦର୍ଶୟନ୍ ଦର୍ଶନେ ଫଳମ୍ ॥୬॥**

ଉ. କୁବ୍‌ଜାର ଅନ୍ୟ ଦୁଇଟି ନାମ ତ୍ରିବକ୍ରା ଓ ସୈରିନ୍ଧ୍ରୀ । ତାର ସୁନ୍ଦର ବଦନ ଦର୍ଶନ କରି ଦର୍ଶନର ଫଳ ସ୍ୱରୂପ ତାର ପିଠିର କୁଜକୁ (କୁବ୍‌ଡ଼ା) ସିଧା ବା ସଳଖ କରିବାକୁ (ଋଜ୍ୱୀଂ କର୍ତ୍ତୁଂ) ସ୍ଥିର କଲେ (ମନଃ ଚକ୍ରେ) । ଜୀବ ମାତ୍ରକେ ଗୋଟିଏ ଗୋଟିଏ କୁବ୍‌ଜା । ସେ ନାରୀ ହେଉ ବା ପୁରୁଷ ହେଉ । ଦାନବ, ମାନବ ବା ଦେବତା ଯାହା ବି ହେଉ । ଅକର୍ମ-ଅଜ୍ଞାନ-ଅଭକ୍ତି ତିନି ଗଣ୍ଠିରେ ବନ୍ଧା ହୋଇଥିବା ପ୍ରାଣୀ । ଆମ ସମସ୍ତଙ୍କ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀର ଏଇ ତିନି ଗଣ୍ଠି ଫିଟେ କୃଷ୍ଣ କୃପାରୁ । କୃଷ୍ଣ କୃପା ହୁଏ ଜୀବନରେ କୃଷ୍ଣଙ୍କୁ ଓ କୃଷ୍ଣ ଭକ୍ତଙ୍କୁ ପ୍ରସନ୍ନ କରିପାରିଲେ ।

ପ୍ରଶ୍ନ-୯୯: ପ୍ରତିଟି ଜୀବ କାମ ଦଉଡ଼ିରେ ବନ୍ଧା । ଆଜି କୃଷ୍ଣ ଲୀଳା କାଳରେ ସୈରିନ୍ଧ୍ରୀ କୃଷ୍ଣ ଦର୍ଶନରେ ଅତୀବ କାମ ପୀଡ଼ିତା । ପୂର୍ବେ ରାବଣର ଭଗିନୀ ସୂର୍ପଣଖା ଜନ୍ମରେ ରାମଙ୍କ ରୂପ ଦର୍ଶନରେ ସେହିପରି କାମ ପୀଡ଼ା ଅନୁଭବ କରି ବିବାହ ହେବାକୁ ପ୍ରାର୍ଥନା କରିଥିଲା । ଏବେ ସେଇ କୁବ୍‌ଜା କୃଷ୍ଣଙ୍କ ଅଙ୍ଗସଙ୍ଗ ପ୍ରାପ୍ତି ଲାଗି ନିଜ ଗୃହକୁ ନିମନ୍ତ୍ରଣ କରିଛି । ଭଗବାନ ପ୍ରତିଶ୍ରୁତି ଦେଇଛନ୍ତି କଂସ ଉଦ୍ଧାର

ପରେ ନିଶ୍ଚୟ ସେ ତାର କାମନାକୁ ପୂରଣ କରିବେ ବୋଲି । ତା ମଧ୍ୟ କରି ଦେଖାଇଛନ୍ତି । ମଥୁରା ବିଜୟ ଲୀଳାରେ ଲୀଳାମୟ କୃଷ୍ଣଙ୍କ ଅପରୂପ ସୌନ୍ଦର୍ଯ୍ୟରେ ଅନ୍ୟ ନାରୀମାନେ ମୋହିତ ହେଲେନି କେମିତି ?

ଶ୍ରୀଶୁକ ଉବାଚ

**ତତ୍ ଦର୍ଶନ ସ୍ମର କ୍ଷୋଭାତ୍ ଆତ୍ମାନଂ ନ-ଅବିଦନ୍ ସ୍ତ୍ରିୟଃ ।**
**ବିସ୍ରସ୍ତ ବାସଃ କବର ବଳୟା ଲେଖ୍ୟମୂର୍ତ୍ତୟଃ ॥୧୪॥**

ଉ. ସମସ୍ତେ ବିଲ୍‌କୁଲ କାମ ପୀଡ଼ାରେ (ସ୍ମର କ୍ଷୋଭାତ୍) ମୋହିତ ହୋଇଯାଇଛନ୍ତି । ଏପରିକି ସେମାନେ ନିଜ ନିଜକୁ ଭୁଲି ଯାଇଛନ୍ତି (ନ-ଅବିଦନ୍) । ସେମାନଙ୍କର ପିନ୍ଧା ବସ୍ତ୍ର ଅଳଙ୍କାର, ଜୁଡ଼ା କେଶ ବନ୍ଧନ (କବର), କଙ୍କନ (ବଳୟା) ସବୁ ଶିଥିଳ ପଡ଼ି ଯାଇଛନ୍ତି । ସେମାନେ ସବୁ କାନ୍ଥରେ ଲିଖିତ ଚିତ୍ର ପ୍ରତିମା ଭଳି ସଚଳ ବିଗ୍ରହରୁ ଅଚଳ ମୂର୍ତ୍ତି ହୋଇଯାଇଛନ୍ତି । କୃଷ୍ଣ ଦର୍ଶନରେ କୃଷ୍ଣ ଭକ୍ତ ମାୟିକ ସଂସାରକୁ କେମିତି ଅବା କାନିରେ ବାନ୍ଧି ରଖିପାରନ୍ତା । ! !

ପ୍ରଶ୍ନ-୧୦୦: ଶ୍ରୀକୃଷ୍ଣ ଚାଲିଲେ ସିଧାସଳଖ ଧନୁ ରଖାଯାଇଥିବା ଯଜ୍ଞଶାଳାକୁ । ସାଙ୍ଗରେ ଛାଇ ପରି ଲାଗିଥାନ୍ତି ବଳରାମଜୀ । କେତେବେଳେ କେଉଁ ଅଘଟଣର ସାମନା କରିବାକୁ ପଡ଼ିପାରେ । ଶୁକଦେବଙ୍କ ମତରେ ସେ ଧନୁ ଏକ ସାମାନ୍ୟ ଧନୁ ନଥିଲା । ଦେବରାଜ ଇନ୍ଦ୍ରଙ୍କ ଧନୁ ଭଳି ଏକ ଦିବ୍ୟ ଧନୁଥିଲା । ସେ ଏକ ଚିନ୍ମୟ ଧନୁ । ପୂଜା ପାଠ ମନ୍ତ୍ର ସାହାଯ୍ୟରେ ସେ ଧନୁକୁ ସନ୍ତୁଷ୍ଟ କରିପାରିଲେ ଶତ୍ରୁର ଆୟୁଷ କ୍ଷୟ କରି ଯଯମାନଙ୍କର ଆୟୁଷ ସେ ବୃଦ୍ଧି କରିପାରେ । ସେ ଧନୁକୁ ଜଗିବା ଲାଗି କଂସ ରାଜା ନିଯୁକ୍ତ କରିଥିଲେ ଚଉଦ ହଜାର ସୈନ୍ୟ ସାମନ୍ତ । ସେ ପରିସ୍ଥିତିରେ ଭଗବାନ ହେଳାରେ ହେଳାରେ ବିନା କଷ୍ଟରେ ସେ ଧନୁକୁ କିପରି ଭାଙ୍ଗି ପାରିଲେ ?

**ଧନୁଷୋ ଭଜ୍ୟମାନସ୍ୟ ଶବ୍ଦଃ ଖଂ ରୋଦସୀ ଦିଶଃ ।**
**ପୁରୟାମାସ ଯଂ ଶ୍ରୁତ୍ୱା କଂସଃ ତ୍ରାସଂ ଉପାଗମତ୍ ॥୧୮॥**

ଉ. ଭଗବାନ ଭାଙ୍ଗିଲେ ପରା । ଧନୁ ଯେମିତି ସାମାନ୍ୟ ଧନୁ ନୁହେଁ । ଭଗବାନ ମଧ୍ୟ ସେମିତି ସାଧାରଣ ଜୀବ ନୁହନ୍ତି । ସେ ଧନୁ ଭଙ୍ଗା ଶବ୍ଦରେ ଆକାଶରେ (ଖଂ) ଦଶ ଦିଗ ଭୟଙ୍କର ଶବ୍ଦରେ ଭରିଗଲା (ପୁରୟାମାସ) । ଖାଲି ସେତିକି ନୁହେଁ, ମହାବୀର ଜରାସନ୍ଧଙ୍କ ଜାମାତା କଂସ ମଧ୍ୟ ସେ ଶବ୍ଦରେ ଆତଙ୍କିତ ହେଲେ । କାରଣ କଂସ ଜାଣିଥିଲେ ସେ ଧନୁ ଭାଙ୍ଗିବା ଲୋକ ହାତରେ କେବଳ ତାଙ୍କର ମୃତ୍ୟୁ ହେବ ।

ଧନୁ ଭଙ୍ଗାଯିବା ବେଳେ ଉପସ୍ଥିତ କଂସ ସୈନ୍ୟ ଗଣ ଗୋଳମାଳ କରନ୍ତେ କୃଷ୍ଣ ବଳରାମ ଦୁଇ ଭାଇ ଦୁଇ ଖଣ୍ଡ ଭଙ୍ଗା ଧନୁ ଧରି ସେମାନଙ୍କୁ ଗୋଟି ଗୋଟି ପିଟି ପିଟି ଯମପୁର ପଠାଇଦେଲେ ।

ପ୍ରଶ୍ନ-୧୦୧ : ଧନୁ ଭଗ୍ନ ଲୀଳା ଦର୍ଶନ କରି ମଥୁରା ନରନାରୀ ବୁଝିଗଲେ ଯେ ରାମ ଗୋବିନ୍ଦ ଦୁଇଭାଇ ସାମାନ୍ୟ ପୁରୁଷ ନୁହନ୍ତି । ଏମାନେ ନିଶ୍ଚୟ ଦେବପୁରୁଷ । କୃଷ୍ଣ ବଳରାମ ଗୋପାଳମାନଙ୍କୁ ଧରି ତାଙ୍କ ପାଇଁ ଉଦ୍ଦିଷ୍ଟ ବିଶ୍ରାମସ୍ଥଳକୁ ଚାଲିଗଲେ । ପରଦିନର ମାମୁଁଙ୍କର କାର୍ଯ୍ୟକ୍ରମକୁ ଅପେକ୍ଷା କରି ରହିଲେ । ତେଣେ ରାଜ ମହଲରେ କଂସ ରାଜାଙ୍କୁ ରାତି ସାରା ନିଦ ହେଉ ନଥାଏ । ନାନା ଦୁଃସ୍ୱପ୍ନ ଅପଶକୁନ ଦେଖୁଥାନ୍ତି ସେ । ତଥାପି ସେ କି ଛାଡ଼ିବା ଲୋକ ! ! ପୂର୍ଣ୍ଣପ୍ରାଣରେ ଆୟୋଜନ କଲେ ଆସନ୍ତାକାଲିର ମଲ୍ଲଯୁଦ୍ଧ । ରଙ୍ଗଶାଳାର ମୁଖ୍ୟ ଦ୍ୱାରରେ ନିଯୁକ୍ତ କଲେ କୁବଳୟାପୀଡ଼ ହସ୍ତୀ ସହିତ ଏକ ସୁଯୋଗ୍ୟ ମାହୁନ୍ତ । ଉଦ୍ଦେଶ୍ୟ ରଙ୍ଗଶାଳାରେ ପ୍ରବେଶ ପୂର୍ବରୁ ଏହି ଦଶହଜାର ହାତୀର ବଳ ଥିବା କୁବଳୟା ପୀଡ଼ ଦ୍ୱାରା ଦୁଇ ଭଣଜାଙ୍କୁ ଜୀବନରେ ମାରିଦେବା । ରାଜା କଂସଙ୍କର ଅଧୀନରେ ଅନେକ ବଳବାନ୍ ମଲ୍ଲମାନେ ନିଯୁକ୍ତ ଥିଲେ । କେଉଁ କେଉଁ ଅଷ୍ଟମଲ୍ଲଙ୍କୁ କୃଷ୍ଣ ବଳରାମଙ୍କ ସହ ଯୁଦ୍ଧ କରିବାକୁ ସୁଯୋଗ ମିଳିଲା ?

**ଚାଣୂରୋ ମୁଷ୍ଟିକଃ କୂଟଃ ଶଲଃ ତୋଷଲ ଏବ ଚ ।**
**ତେ ଆସେଦୁଃ ଉପସ୍ଥାନଃ ବଲଗୁ ବାଦ୍ୟ ପ୍ରହର୍ଷିତାଃ ॥୩୭॥**

ଉ.ବଛା ବଛା ପହଲୱାନ ଚାଣୁର, ମୁଷ୍ଟିକ, କୂଟ, ଶଲ ଓ ତୋଷଳ ଇତ୍ୟାଦି ଆସନ ଜମାଇ ବସିଗଲେ (ଆସେଦୁଃ) । ରଙ୍ଗଶାଳାରେ ସେତେବେଳେ ମନମୋହକ (ବଲଗୁ) ସଙ୍ଗୀତ ବାଦ୍ୟ ସେମାନଙ୍କୁ ଯୁଦ୍ଧ କରିବାକୁ ପ୍ରେରଣା ଯୋଗାଉଥିଲା । ସେମାନେ ସମସ୍ତେ ହସ ଖୁସିରେ (ପ୍ରହର୍ଷିତାଃ) ମଲ୍ଲଯୁଦ୍ଧ କରି ଭବାନଙ୍କ ହାତରେ ପ୍ରାଣ ଦେବାକୁ ତୟାର ! !

# ଅଥ ୪୩ଶ ଅଧ୍ୟାୟଃ

## (କୁବଳୟା ପୀଡ଼ ଉଦ୍ଧାର ଓ କୃଷ୍ଣବଳରାମଙ୍କ ରଙ୍ଗଶାଳା ପ୍ରବେଶ)

ପ୍ରଶ୍ନ-୧୦୨ : ପରଦିନ ପ୍ରତ୍ୟୁଷରେ ଭଗବାନ ଶୁଣିଲେ କଂସଙ୍କ ରଙ୍ଗଶାଳାରେ ମଲ୍ଲଯୁଦ୍ଧ ବାଦ୍ୟ ଓ ସଙ୍ଗୀତ । ଏଥର ସେ ନିଶ୍ଚିତ ହେଲେ ଯେ ମାମୁଁଙ୍କ ଆୟୁଷ ପୂରି ଆସୁଚି । ତୁରନ୍ତ ଉଦ୍ଧାର କରିବା ଦରକାର । ଭାଇ ବଳରାମଙ୍କୁ ଧରି ପହଞ୍ଚିଗଲେ ରଙ୍ଗଶାଳା ପାଖରେ । ଦେଖିଲେ ମୁଖ୍ୟଦ୍ୱାରରେ ଏକ ହଜାର ହାତୀର ବଳଯୁକ୍ତ କୁବଳୟାପୀଡ଼ ହାତୀ ମାହୁନ୍ତ ସହ ବିଦ୍ୟମାନ । ଏହି ହାତୀ ସତ୍ୟଯୁଗର ରାଜା ବଳିଙ୍କ ପୁତ୍ର ମହାବଳଶାଳୀ ମନ୍ଦମତି । ଥରେ ରଙ୍ଗନାଥ ମନ୍ଦିରକୁ ଯାଇ ଭକ୍ତମାନଙ୍କୁ ସେ ଦଳି ପକାଉଥିଲା । ଜରାଜୀର୍ଣ୍ଣ ତ୍ରିତ ମୁନି ତାର ଉତ୍ପାତରେ ଆହତ ହୋଇ ଶାପ ଦେଲେ । ତେଣୁ ସେ ହାତୀ ଜନ୍ମ ପାଇ ବିନ୍ଧ୍ୟ ପର୍ବତରେ ବୁଲୁଥିଲା । ମଗଧରାଜ ଜରାସନ୍ଧ ତାଙ୍କୁ ଧରି ଆଣି ପାଳିଥିଲେ । କଂସକୁ ଜୋଇଁ କଲାବେଳେ ଝିଅ ସାଙ୍ଗରେ ଯୌତୁକ ଦେଇଥିଲେ । ଠାକୁରଜୀଙ୍କ ହାତରେ ମରି ସେ ମୁକ୍ତ ହେବାକୁ ଅପେକ୍ଷା କରିଥିଲା । ତାଙ୍କୁ ଦେଖି ତୁରନ୍ତ ଦୁଇ ଭାଇ ଗାମୁଛାରେ ନିଜ ନିଜ ଅଣ୍ଟାକୁ ବାନ୍ଧି ଦେଲେ । ନିଜର ଲମ୍ବ କେଶକୁ ପଛପଟେ ସଯତ୍ନରେ ବାନ୍ଧିନେଲେ । ମାହୁନ୍ତକୁ ଅନୁରୋଧ କଲେ ରାସ୍ତାରୁ ହଟିଯିବା ଲାଗି । କାରଣ ତାଙ୍କୁ ମାମୁଁଙ୍କ ନିମନ୍ତ୍ରଣ ରକ୍ଷା କରିବାକୁ ହେବ । ମାହୁନ୍ତ କିନ୍ତୁ କି ମାନିବା ଲୋକ । ଓଲଟି ସେ ଅଙ୍କୁଶ ମାରି ହାତୀକୁ ଲଗାଇଲା ଆକ୍ରମଣ କରି ଠାକୁରଜୀଙ୍କ ପ୍ରାଣ ନେବାକୁ । ଭଗବାନ ସୁନ୍ଦର ଖେଳ ଖେଳିଲେ ଦୁହିଁଙ୍କ ସହ । କେତେବେଳେ ହାତୀର କୋଳ ତଳେ ଲୁଚି ଯାଆନ୍ତି । ପୁଣି କେତେବେଳେ ବାମ ବା ଦକ୍ଷିଣ ପଟକୁ ଡ଼ିଆଁଟେ ମାରି ଦିଅନ୍ତି । ହାତୀର ବଳସିନା ବେଶୀ । ବୁଦ୍ଧି କେତେ ବିଚରାର !! ଡ଼ିଆଁ ଡ଼େଇଁ କରୁ କରୁ ମୁହଁ ମାଡ଼ି ମାହୁନ୍ତ ସହ ତଳେ ପଡ଼ିଗଲା । ଏହି ଅବସରରେ ଭଗବାନ କ'ଣ ନୀରବ ଦ୍ରଷ୍ଟା ସାଜିଲେ ?

ଶ୍ରୀଶୁକ ଉବାଚ

**ପତିତସ୍ୟ ପଦ-ଆକ୍ରମ୍ୟ ମୃଗେନ୍ଦ୍ର ଇବ ଲୀଳୟା ।**
**ଦନ୍ତଂ ଉତ୍ପାଟ୍ୟ ତେନ-ଇଭଂ ହସ୍ତିପାନ୍ ଚ-ଅହନତ୍ ହରିଃ ॥୧୪॥**

ଉ. ନା ନା ସେ କଥା ଆଦୌ କଲେନି । ନିଜ ଦେଖିଲା କାମ ପାଇଁ ସୁଯୋଗ ଉଣ୍ଟୁଥିଲେ ସେ । ଏବେ ପରିସ୍ଥିତିର ପୁରା ଫାଇଦା ଉଠାଇଲେ । ନିଜ ଚରଣ କମଳ ହସ୍ତୀ ମସ୍ତକରେ ରଖି ଦୁଇ ହାତରେ ହସ୍ତୀର ଦୁଇ ଦାନ୍ତକୁ ଉପାଡ଼ି

ଦେଲେ । ମନେହେଲା ସତେ ଯେମିତି ସିଂହ (ମୃଗେନ୍ଦ୍ର)ଟିଏ ନିଜ ଶିକାରକୁ ଖେଳରେ ଖେଳରେ ବିଦାରି ପକାଇଛି କି ! ! ସେଇ ଉପୁଡ଼ା ଦାନ୍ତଟିଏ ଧରି ପିଟି ପିଟି ହାତୀ ଓ ତାର ମାହୁନ୍ତକୁ (ହସ୍ତିପାନ୍) ଉଦ୍ଧାର କଲେ (ଅହନତ୍) ।

ପ୍ରଶ୍ନ-୧୦୩: ତଦନନ୍ତର ଠାକୁରଜୀ ହସ୍ତୀର ଅନ୍ୟ ଦନ୍ତଟିକୁ ଭାଇ ବଳରାମଜୀଙ୍କୁ ଧରାଇଦେଲେ । ଦୁଇ ଭାଇ ଦୁଇ ହସ୍ତୀ ଦାନ୍ତକୁ କାନ୍ଧରେ ପକାଇ କଂସଙ୍କ ରଙ୍ଗଶାଳାରେ ହାଜର ହେଲେ । ମୁଖ୍ୟ ଦର୍ଶକ ଭାବରେ ମାମୁଁ କଂସ ଉଚ୍ଚ ମଞ୍ଚ ଆସନରେ ବସିଥାନ୍ତି । ପାତ୍ର, ମନ୍ତ୍ରୀ, ପ୍ରଜା ବର୍ଗର ମଥୁରା ନରନାରୀ ରସରାଜ ଭଗବାନ କୃଷ୍ଣଙ୍କୁ ଦର୍ଶନ କରି କି କି ରସ ପ୍ରାପ୍ତ ହେଲେ ସେତେବେଳେ ?

**ମଲ୍ଲାନାଂ ଅଶନି ନୃଣାଂ ନରବରଃ ସ୍ତ୍ରୀଣାଂ ସ୍ମରୋ ମୂର୍ତ୍ତିମାନ୍**
**ଗୋପାନାଂ ସ୍ୱଜନୋଽସତାଂ କ୍ଷିତିଭୁଜାଂ ଶାସ୍ତା ସ୍ୱପିତ୍ରୋଃ ଶିଶୁ ।**
**ମୃତ୍ୟୁଃ ଭୋଜପତେଃ ବିରାଟ୍ ଅବିଦୁଷାଂ ତତ୍ତ୍ୱଂପରଂ ଯୋଗିନାମ୍**
**ବୃଷ୍ଣିନାଂ ପରଦେବତା-ଇତି ବିଦିତୋ ରଙ୍ଗଂ ଗତଃ ସାଗ୍ରଜଃ ॥୧୭॥**

ଉ. ରଙ୍ଗ ସଭାରେ ବଳରାମଙ୍କ ସହିତ (ସାଗ୍ରଜଃ) ଠାକୁରଜୀ ସତରେ ରସିକେନ୍ଦ୍ର ମୌଳି, ରସରାଜ ପଦକ ସାର୍ଥକ କଲେ । ସହଜେ ତ ସେ ରସିକ ଶେଖର । ମନୁଷ୍ୟର ସୁଖାଦ୍ୟରେ ଥାଏ ଷଡ଼ରସ । ରସାଳ କାବ୍ୟରେ ଥାଏ ନବ ରସ । ଏ ସ୍ଥଳରେ ଲୀଳାମୟ କୃଷ୍ଣ ରସିକ ଚୂଡ଼ାମଣି ରୂପରେ ଉଭା ହୋଇ ବୀର, ଶୃଙ୍ଗାର, ଶାନ୍ତ ଇତ୍ୟାଦି ନବରସ ସହିତ ଅତି ଦୁର୍ଲ୍ଲଭ ତାଙ୍କ ଭକ୍ତ ପାଇଁ ସାଇତା ପ୍ରେମରସକୁ ମଧ୍ୟ ପରିବେଷଣ କରିଦେଲେ ।

୧. ମଲ୍ଲମାନଙ୍କୁ ବଜ୍ର (ଅଶନି) ଭଳି ଦର୍ଶନ ଦେଇ ରୌଦ୍ର ରସ ପରିବେଷଣ କଲେ । ୨. ସାଧାରଣ ନରମାନଙ୍କୁ (ନୃଣାଂ) ନରୋତ୍ତମ (ନରବର) ରୂପ ଦର୍ଶାଇ ଅଦ୍ଭୁତ ରସ ଦାନ କଲେ । ୩. କାମୁକ ନର ନାରୀଙ୍କୁ ମୂର୍ତ୍ତିମାନ କାମଦେବ (ସ୍ମରୋ) ରୂପ ଦେଖାଇ ଶୃଙ୍ଗାରରସ ପ୍ରଦାନ କଲେ । ୪. ଗୋପାଳ ମାନଙ୍କୁ ପିତା-ପୁତ୍ର-ସଖା ଆଦି ରୂପରେ ଦିଶି ହାସ୍ୟ ରସର ଉଦ୍ରେକ କଲେ । ୫. ଦୁଷ୍ଟ ପ୍ରଜାଙ୍କୁ (ଅସତାଂ) ଦଣ୍ଡଧାରୀ ଭୂମିକାରେ (କ୍ଷିତିଭୁଜାଂ ଶାସ୍ତା) ଦର୍ଶନ ଦେଇ ବୀର ରସ ପରିବେଷଣ କଲେ । ୬. ନିଜ ପିତାମାତାଙ୍କୁ ଶିଶୁ ରୂପେ ଦର୍ଶନ ଦାନ କରି କରୁଣ ରସର ଉଦ୍ରେକ କଲେ । ୭. ମାମୁଁ କଂସଙ୍କୁ (ଭୋଜପତେଃ) ସାକ୍ଷାତ୍ ଯମ ଦେବତା (ମୃତ୍ୟୁଃ) ରୂପେ ଦର୍ଶନ ଦେଇ ଭୟ ରସ ପ୍ରଦାନ କଲେ । ୮.ଅଜ୍ଞାନୀ ପ୍ରଜାଜନଙ୍କୁ (ଅବିଦୁଷାଂ) ଜ୍ଞାନ

ପ୍ରଦାନ କାରୀ ବିରାଟ ରୂପ ଦର୍ଶନ କରାଇ ବିଭତ୍ସ ରସ ପରିବେଷଣ କଲେ । ୯. ସଭାରେ ଉପସ୍ଥିତ ତତ୍ତ୍ୱଜ୍ଞାନୀ ସାଧୁସନ୍ଥ ଏବଂ ଯୋଗୀମାନଙ୍କୁ ତତ୍ତ୍ୱ ଭାବରେ ଦର୍ଶନ ଦେଇ ଶାନ୍ତ ରସର ସ୍ୱାଦ ଚଖାଇଲେ । ୧୦.ଶେଷରେ ବୃଷ୍ଣିବଂଶୀ ଭକ୍ତମାନଙ୍କ ହୃଦୟରେ ଦେବତାମାନଙ୍କ ଦେବତା (ପରଦେବତା) ଲୀଳାମୟ ମନମୋହନ କୋଟି କନ୍ଦର୍ପ ଦର୍ପ ଦଳୀୟାନ ଅସଲି କୃଷ୍ଣ ରୂପରେ ଦର୍ଶନ ଦେଇ କୃଷ୍ଣଜନ୍ମର ଅସଲି କାରଣ ଜଣାଇଦେଲେ ସେମାନଙ୍କ ହୃଦୟରେ ପ୍ରେମରସର ସଞ୍ଚାର କରି ।

ପ୍ରଶ୍ନ-୧୦୪: ଲୌକିକ ଅଲୌକିକ ଦୁଇ ରୂପରେ କଂସଙ୍କ ରାଜ ସଭାରେ ଭଗବାନ ଦର୍ଶନ ଦେଲେ । ଦର୍ଶକ ଭୂମିକାରେ ବସି ଭକ୍ତମାନେ ସେ ରସ ସବୁ ଗ୍ରହଣ କଲେ କେମିତି ?

**ପିବନ୍ତ ଇବ ଚକ୍ଷୁର୍ଭ୍ୟାଂ ଲିହନ୍ତ ଇବ ଜିହ୍ୱୟା ।**
**ଜିଘ୍ରନ୍ତ ଇବ ନାସାଭ୍ୟାଂ ଶ୍ଲିଷ୍ୟନ୍ତ ଇବ ବାହୁଭିଃ ॥୨୧॥**

ଉ. ଭଗବାନ ଭକ୍ତକୁ ଦଶ ଦଶଟା ଇନ୍ଦ୍ରିୟ ଦେବାର କାରଣ ଏବେ ଜଣାଗଲା ମାନବ ସମାଜକୁ । ସେତେବେଳେ ମନେ ହେଉଥିଲା ସତେ ଯେପରି ଭକ୍ତମାନେ ନିଜ ନିଜ ଚକ୍ଷୁ ଦ୍ୱାରା ଠାକୁରଜୀଙ୍କ ସୌନ୍ଦର୍ଯ୍ୟ ରସକୁ ପାନ କରୁଛନ୍ତି କି ଆଉ !! ତାଙ୍କର ସୁକୋମଳ ଅଙ୍ଗସବୁକୁ ନିଜ ନିଜର ଜିହ୍ୱାଦ୍ୱାରା ଲେହନ କରୁଛନ୍ତି କି ! ନାସା ରନ୍ଧ୍ରଦ୍ୱାରା କୃଷ୍ଣଙ୍କର ଅଙ୍ଗର ଦିବ୍ୟ ସୁବାସକୁ ଶୁଙ୍ଘିବାରେ ବ୍ୟସ୍ତ କି !! ନିଜ ନିଜର ଦୁଇ ବାହୁରେ କୃଷ୍ଣଙ୍କୁ ଆଲିଙ୍ଗନ କରିବାରେ ମଜ୍ଜିଗଲେ କି !!! ପରସ୍ପର ମଧ୍ୟରେ ସେମାନେ କୃଷ୍ଣଙ୍କ ନାମ, ରୂପ, ଲୀଳା, ଗୁଣ, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, ସୌକୁମାର୍ଯ୍ୟ ଓ ଔଦାର୍ଯ୍ୟ ଆଦିର ପ୍ରଶଂସା କରିବାରେ ଲାଗିଗଲେ ।

କୃଷ୍ଣ ବଳରାମ ଦେଖିଲେ ସେ ଦୁହିଁଙ୍କ ସହିତ ଲଢ଼ିବା ଲାଗି ଚାଣୁର, ମୁଷ୍ଟିକ, ଶଳ ଓ ତୋଷଳ ଆଦି ମହା ମହା ବଳବାନ୍ ଭୀଷଣକାୟ ମଲ୍ଲବୀରମାନେ ଦେହରେ ପ୍ରଚୁର ତେଲ ମାଲିସ କରି ଆଗରୁ ପ୍ରସ୍ତୁତ ରହିଛନ୍ତି । ଠାକୁରଜୀ ଚାଣୁରକୁ ଆହ୍ୱାନ କଲେ ନିଜ ସହ ଲଢ଼େଇ କରିବାକୁ । ମୁଷ୍ଟିକଙ୍କୁ ପଠାଇଦେଲେ ବଳରାମଙ୍କ ପାଖକୁ ଦେଖିଲା କାମ କରିବାକୁ । ପରେ ପରେ ଅନ୍ୟ ମଲ୍ଲମାନଙ୍କ ସହ ଲଢ଼େଇ ହେବ ବୋଲି ନିଷ୍ପତ୍ତି ହେଲା । ମହାରାଜ କଂସ ପ୍ରସ୍ତାବକୁ ମଧ ସହର୍ଷ ଅନୁମୋଦନ କଲେ ।

# ଅଥ ୪୪ଶ ଅଧ୍ୟାୟଃ

## (ଚାଣୁର ମୁଷ୍ଟିକ ଆଦି ଅଷ୍ଟମଲ୍ଲଙ୍କ ସହିତ କଂସଙ୍କ ଉଦ୍ଧାର)

ପ୍ରଶ୍ନ-୧୦୫: କଂସଙ୍କ ରଙ୍ଗଶାଳାରେ ମଲ୍ଲକୁସ୍ତୀ ଆରମ୍ଭ ହୋଇଗଲା । ମୁଠି ସହ ମୁଠି, ଜଙ୍ଘ ସହ ଜଙ୍ଘ, ଶିର ସହିତ ଶିର ଓ ଛାତିକୁ ଛାତି ମିଶାଇ ଭିଡ଼ିଗଲେ ଦୁଇ ଯୋଡ଼ା ଯୋଦ୍ଧା । ଦର୍ଶକଗଣ ଆଦୌ ଉପଭୋଗ କରିପାରୁ ନଥାନ୍ତି ଏ ଯୁଦ୍ଧକୁ । ଚାଣୁର ଓ ମୁଷ୍ଟିକ ଦୁହେଁ ପର୍ବତ ଭଳି ଦୁଇଜଣ ମହାବଳଶାଳୀ ଯୋଦ୍ଧା । ରାମ ଗୋବିନ୍ଦ ଦୁହେଁ ଦେଖିବାକୁ ସୁକୁମାର ବାଳକ ଯୋଡ଼ିଏ । ସମସ୍ତେ ଭାବୁଥାନ୍ତି ଏହା ନିଶ୍ଚୟ କଂସଙ୍କର ଆୟୋଜିତ ଷଡ଼ଯନ୍ତ୍ର ଜନିତ ଅଧର୍ମ, ଅନ୍ୟାୟ ଯୁଦ୍ଧ । ଦର୍ଶକମାନେ ଏହା ଦେଖିବାକୁ ନିଜର ସୌଭାଗ୍ୟ କିମ୍ବା ପୁଣ୍ୟବଳ ବୋଲି ମନେ କଲେ କି ?

ଶ୍ରୀଶୁକ ଉବାଚ

**ନ ସଭାଂ ପ୍ରବିଶେତ୍ ପ୍ରାଜ୍ଞଃ ସଭ୍ୟ ଦୋଷାନ୍ ଅନୁସ୍ମରନ୍ ।**
**ଅବ୍ରୁବନ୍ ବିବ୍ରୁବନ୍ ଅଜ୍ଞୋ ନରଃ କିଲ୍‌ବିଷଂ ଅଶ୍ନୁତେ ||୧୦||**

ଉ. ବିଲ୍‌କୁଲ୍ ପୁଣ୍ୟ ମନେ କଲେ ନାହିଁ । ବରଂ ସେମାନେ ଏ ସଭାରେ ରହିବାକୁ ପାପଭାଗୀ ହେବା (କିଲ୍‌ବିଷଂ ଅଶ୍ନୁତେ) ମନେକଲେ । ଶାସ୍ତ୍ରରେ ନିର୍ଦ୍ଦେଶ ଅଛି, ଯେଉଁ ସଭାରେ (ସଭ୍ୟ) ଅନ୍ୟାୟ, ଅଧର୍ମ କାର୍ଯ୍ୟ ହେଉଥିବ (ଦୋଷାନ୍ ଅନୁସ୍ମରନ୍) ଧାର୍ମିକ ବା ଚତୁର (ପ୍ରାଜ୍ଞ) ଲୋକ ସେଠାରେ ରହିବା ଅନୁଚିତ୍ (ନ ପ୍ରବିଶେତ୍) । ସେ ପରିସ୍ଥିତିରେ କିଛି ନ କହି ନୀରବ ରହିବା (ଅବ୍ରୁବନ୍) ଯେତିକି ପାପ ଅଧର୍ମ-ଧର୍ମ ଇତି କହି ସେସବୁକୁ ଦେଖିବା ସହିଯିବା ମଧ୍ୟ ତତୋଽଧିକ ପାପ ।

ପ୍ରଶ୍ନ-୧୦୬: କୃଷ୍ଣ ବଳରାମଙ୍କ ଦୁଃସାହସିକ ବୀରତ୍ୱପୂର୍ଣ୍ଣ ଲଢ଼େଇ ଦର୍ଶନ କରି ସଭାରେ ଉପସ୍ଥିତ ଦର୍ଶକମାନେ ଦୁହିଁଙ୍କୁ ସାକ୍ଷାତ ଭଗବାନଙ୍କ ଅବତାର ବୋଲି ନିଶ୍ଚୟ କଲେ । ପୁଣି ଚିନ୍ତନ କଲେ ମଥୁରା ମଣ୍ଡଳ ଅନ୍ତର୍ଗତ ବ୍ରଜଭୂମି କେଡ଼େ ପବିତ୍ର ସତେ । ସେଠାରେ ନରଲୀଳା କଲେ ନାରାୟଣ । ବ୍ରହ୍ମା, ଶଙ୍କର, ନାରଦ ଆଦି ଯାହାଙ୍କ ଚରଣ ପୂଜନ କରନ୍ତି ସେ ଗୋପୀ ଗୋପାଳମାନଙ୍କୁ କେତେ ଦିବ୍ୟ ରସ

ପାନ କରାଇ ନଥିବେ । ସେମାନଙ୍କର କେତେ କେତେ ଜନ୍ମର ତପସ୍ୟାର ଫଳ ମିଳିଲା ଅକ୍ଳେଶରେ । ଗୋପାଙ୍ଗନାମାନଙ୍କର କେଉଁ କେଉଁ କର୍ମକୁ ବିଚାରକୁ ନେଇ ସେମାନେ ଧନ୍ୟ ଧନ୍ୟ ବୋଲି କହିଲେ ?

**ଯା ଦୋହନେଽବହନନେ ମଥନ-ଉପଲେପ**
**ପ୍ରେଙ୍ଖେ-ଙ୍ଖନ-ଅର୍ଭ-ରୁଦିତୋକ୍ଷଣ ମାର୍ଜନ-ଆଦୌ ।**
**ଗାୟନ୍ତି ଚ-ଏନଂ ଅନୁରକ୍ତ ଧିୟୋଽଶ୍ରୁକଣ୍ଠ୍ୟୋ**
**ଧନ୍ୟା ବ୍ରଜସ୍ତ୍ରିୟ ଉରୁକ୍ରମ ଚିତ୍ତଯାନାଃ ॥୧୫॥**

ଉ. ଗୋପୀମାନେ (ବ୍ରଜସ୍ତ୍ରିୟଃ) ଶ୍ରୀକୃଷ୍ଣଙ୍କର ଜନ୍ମ-ଜନ୍ମାନ୍ତରର ନିଷ୍କାମ ଭକ୍ତ । ସେମାନେ ଠାକୁରଜୀଙ୍କୁ ଜନ୍ମରୁ ଦର୍ଶନ କରୁ କରୁ ତାଙ୍କ ପ୍ରତି ଆକୃଷ୍ଟ ହୋଇଗଲେ । କେହି କେହି ଅନ୍ୟତ୍ର ବିବାହ କରି ଛୁଆ ପିଲାଙ୍କ ମାଆ ମଧ୍ୟ ହୋଇଗଲେ । ସକଳ ଘର କରଣା କର୍ମ କଲେ । ମନ କିନ୍ତୁ ଦେଇ ନଥିଲେ କାହାକୁ । ନା ପତି, ପୁତ୍ରଙ୍କୁ ନା ଧନ, ସଂପତ୍ତି ଆଦି ସଂସାର ବୈଭବକୁ । ମନ ଦେଇଥିଲେ ଠାକୁରଜୀଙ୍କୁ (ଉରୁକ୍ରମ ଚିତ୍ତ ଯାନାଃ) ।

ଗୋ ଦୋହନ କଲାବେଳେ, ଧାନ କୁଟିବା ବେଳେ (ଅବହନନେ) ଦହି ମନ୍ଥନ କାଳରେ (ମଥନ), ଗୃହ ଅଗଣା ଲିପିବା ବେଳେ (ଉପଲେପ), ପିଲାମାନଙ୍କ ଝୁଲା (ପ୍ରେଙ୍ଖେ) ଝୁଲାଇବା ବେଳେ (ଙ୍ଖନ), କାନ୍ଦିବା ପିଲାକୁ କାଖେଇ କୁଣ୍ଢେଇ ଚୁପ୍ କରାଇବା ବେଳେ (ଅର୍ଭ-ରୁଦିତକ୍ଷଣ), ବାସନ କୁସନ ମାଜିବା ବେଳେ କିମ୍ବା ଗୃହ ଅଙ୍ଗନ ଆଦି ପରିଷ୍କାର କରିବା ବେଳେ (ମାର୍ଜନ-ଆଦୌ) କୃଷ୍ଣଙ୍କ ନାମ, ଗୁଣ, ଲୀଳା ଆଦି ସ୍ମରଣ କରି ସକଳ ସମୟରେ କୃଷ୍ଣପ୍ରେମରେ ମନକୁ (ଅନୁରକ୍ତ ଧିୟ) ବୁଡ଼େଇ ରଖିପାରିଥିଲେ । ସେଥିଲାଗି ସିନା ଗୋପଲଳନାମାନେ ଏତେ ସୌଭାଗ୍ୟଶାଳିନୀ (ଧନ୍ୟାଃ) ।

ପ୍ରଶ୍ନ-୧୦୭: ଦ୍ୱନ୍ଦ୍ୱ ଯୁଦ୍ଧରେ ଶେଷରେ ଦୁଷ୍ଟ ମଲ୍ଲବୀର ଚାଣୁର ଓ ମୁଷ୍ଟିକ ବୀର ଗତିକୁ ପ୍ରାପ୍ତ ହେଲେ । ପରେ ପରେ କୂଟ, ଶଲ ଓ ତୋଷଳ ମଧ୍ୟ ନିଜ ନିଜର ପୈତୃକ ପ୍ରାଣଟି ମାନ ହରାଇ ବସିଲେ । ବଡ଼ ବଡ଼ ଯୋଦ୍ଧାମାନଙ୍କର ଏ ଅବସ୍ଥା ଦେଖି ଅନ୍ୟ ବୀରମାନେ ନିଜ ନିଜ ପ୍ରାଣ ବଞ୍ଚାଇବା ପାଇଁ ଏଣେ ତେଣେ ପଳାୟନ କଲେ । ରାମ ଗୋବିନ୍ଦଙ୍କ ସାହାସ ବଳ ଓ ଯୁଦ୍ଧରେ ବିଜୟ ଦେଖି ସାଧୁ, ସନ୍ଥ,

ବ୍ରାହ୍ମଣ ଓ ବୈଷ୍ଣବମାନେ ସାଧୁ ସାଧୁ ରଡ଼ି ଛାଡ଼ିଲେ । ଯୁଦ୍ଧ ବାଦ୍ୟ ବାଜିବା ବନ୍ଦ ହେଲା । କୃଷ୍ଣ ବଳରାମଙ୍କ ଜୟ ଧ୍ୱନିରେ ଗଗନ ପବନ ମୁଖରିତ ହେଲା । ସେଭଳି ଓଲଟ ପରିସ୍ଥିତିରେ ମହାରାଜ କଂସ କ'ଣ କ୍ରିୟା ପ୍ରତିକ୍ରିୟା କରିବସିଲେ ?

**ନିଃସାରୟତ ଦୁର୍ବୃତ୍ତୌ ବସୁଦେବ-ଆତ୍ମଜୌ ପୁରାତ୍ ।**
**ଧନଂ ହରତ ଗୋପାନାଂ ନନ୍ଦଂ ବଧ୍ନୀତ ଦୁର୍ମତିମ୍ ॥୩୨॥**

ଉ. ରାଜା କଂସଙ୍କର ପ୍ରଳାପ ଆରମ୍ଭ ହୋଇଗଲା । ସେ କହିଲେ, ''ଆରେ, କିଏ ଅଛରେ ? ଏ ରାମ ଗୋବିନ୍ଦ ଦୁହେଁ ଦୁଇଟା ଦୁର୍ବୃତ୍ତ । ଏମାନେ ବସୁଦେବଙ୍କର ପୁତ୍ର ନିଶ୍ଚୟ । ଏ ଦୁହିଁଙ୍କୁ ମଥୁରା ନଗରୀରୁ (ପୁରାତ) ନିଷ୍କାସିତ କର (ନିଃସାରୟତ) । ନନ୍ଦଗାଁଉରୁ ଆସିଥିବା ଗୋପାଳମାନଙ୍କ ଧନ, ସଂପତ୍ତି ଲୁଟି ନିଅ ।

ରାଜାନନ୍ଦ ଏକ ମୂର୍ଖ ଓ ଦୁଷ୍ଟ ରାଜା (ଦୁର୍ମତି) । ତାଙ୍କୁ ତୁରନ୍ତ ହତ୍ୟା କରାଯାଉ । ଧାଇଁ ଯାଅ ବନ୍ଦୀଶାଳାକୁ । ଦେବକୀ ବସୁଦେବ ଉଭୟଙ୍କର ପ୍ରାଣ ନାଶ କର । ସେମାନେ ଶତ୍ରୁପକ୍ଷ ସମର୍ଥନକାରୀ । ଷଡ଼ଯନ୍ତ୍ର ରଚନାକାରୀ ।'' ତଦନନ୍ତର ଠାକୁରଜୀ ହିରୋ ଷ୍ଟାଇଲରେ କୁଦାଟେ ମାରିଦେଲେ । ଏକାଥରକେ ଯାଇ ମଞ୍ଚ ଆସୀନ କଂସ ପାଖରେ ପହଞ୍ଚିଗଲେ । କଂସ କେତେ ଚେଷ୍ଟା କଲା ଠାକୁରଜୀଙ୍କୁ ଧରି ପକାଇ ନିଜେ ମାରିଦେବାକୁ । ଚିନ୍ମୟ ଭଗବାନଙ୍କୁ ମୃଣ୍ମୟ ଦେହୀ କଂସ ଧରିପାରିବ କେମିତି ? ମାରିବ କେମିତି ? ତାର ସକଳ ଚେଷ୍ଟା ବିଫଳ ହେଲା । ଭଗବାନ ଏବେ କଂସର କେଶକୁ ଧରି ପକାଇଲେ । କଂସର ଶିରସ୍ଥିତ ସ୍ୱର୍ଣ୍ଣ ମୁକୁଟକୁ ତଳକୁ ଧକ୍କା ମାରି ଫିଙ୍ଗି ଦେଲେ । କଂସକୁ ମଞ୍ଚ ଉପରୁ ଟେକି ତଳକୁ ପକାଇଦେଲେ । ନିଜେ ଡ଼େଇଁ ପଡ଼ି ତା ବକ୍ଷ ଉପରେ ଏକ ଚରଣ କମଳକୁ ଚାପି ଧରିଲେ ।

ରାଜା କଂସଙ୍କର ଏହା ଆଦୌ ଦୁର୍ଭାଗ୍ୟ ନୁହେଁ । ବରଂ ଏହା ତାଙ୍କର ପରମ ସୌଭାଗ୍ୟ । ସେ ଶୟନେ, ସ୍ୱପନେ, ଜାଗରଣେ ଲୀଳାମୟ କୃଷ୍ଣଙ୍କ ଚିନ୍ତନ କରୁଥିଲେ ନିଜ ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ମାଧ୍ୟମରେ । ଭଗବାନଙ୍କୁ ପ୍ରାପ୍ତ ହେବା ଲାଗି ଜୀବର ତ ସେତିକି କରିବା ଦରକାର । ଅତଏବ ରାଜା କଂସ ସେତେବେଳେ ଚତୁର୍ଭୁଜ ନାରାୟଣ ମୂର୍ତ୍ତି ଦର୍ଶନ କରି ସାରୁପ୍ୟ ମୁକ୍ତି ପ୍ରାପ୍ତ ହେଲେ । ଭୟରେ କୃଷ୍ଣ ଚିନ୍ତନ କଲେ ଜଣେ ଦୁଷ୍ଟ ମନୁଷ୍ୟ ମଧ୍ୟ ମୁକ୍ତିର ଅଧିକାରୀ ଏକଥା ଶିଖାଇ ଦେଇଗଲେ କଂସ ପରପିଢ଼ିର ଜନମାନସକୁ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ପ୍ରଶ୍ନ-୧୦୮ : କଂସଙ୍କର ଶରୀର ନିଷ୍ପ୍ରାଣ ହୁଅନ୍ତେ ତାଙ୍କର କଙ୍କ, ନ୍ୟଗ୍ରୋଧ ଆଦି ଅନ୍ୟ ଆଠ ଭାଇ ମଧ୍ୟ ଅଣ୍ଟା ଭିଡ଼ିଲେ ଦୁଇ ଭାଇଙ୍କ ସହିତ ମରଣାନ୍ତକ ଲଢ଼େଇ କରିବାକୁ । ଶେଷରେ ବଳରାମଜୀଙ୍କ ହସ୍ତରେ ସେମାନେ (ଅସ୍ତି ଓ ପ୍ରାପ୍ତି) ସଦ୍‌ଗତି ପ୍ରାପ୍ତ ହେଲେ । ଅସ୍ତି, ପ୍ରାପ୍ତି କଂସଙ୍କର ଦୁଇ ପତ୍ନୀ ବୀର ଜରାସନ୍ଧଙ୍କର ଦୁଇ ଝିଅ । କଂସଙ୍କର ଅନ୍ୟ ଭାଇମାନଙ୍କ ବିଧବା ପତ୍ନୀଙ୍କ ସହ ସେମାନେ (ଅସ୍ତି ଓ ପ୍ରାପ୍ତି) କାନ୍ଦି କାନ୍ଦି ଆସି ଯୁଦ୍ଧ ଭୂମିରେ ପହଞ୍ଚିଲେ । ସମସ୍ତଙ୍କର କରୁଣ କ୍ରନ୍ଦନ ଓ ଅଶ୍ରୁ ମୋଚନରେ ରାଜସଭାର ପରିସ୍ଥିତି ଅତ୍ୟନ୍ତ ଶୋକାକୁଳ ହେଲା । ସାଧୁ ସନ୍ଥମାନେ ରାଜାଙ୍କର ଦୁଇ ପତ୍ନୀମାନଙ୍କୁ ଶାନ୍ତ୍ୱନା ଦେବାରେ ଲାଗିଗଲେ । ସମସ୍ତେ ଏବେ ବୁଝିଗଲେ ଜୀବମାତ୍ରେ କୃଷ୍ଣଙ୍କର ଅନୁଶାସନର ଅଧୀନ । ଶ୍ରୀକୃଷ୍ଣ ହିଁ ସକଳ ଜୀବଙ୍କର ଜନ୍ମଦାତା, ଜୀବନଦାତା ଓ ମରଣଦାତା ମଧ୍ୟ । ମୃତ ବୀରମାନଙ୍କର ଶବ ସଂସ୍କାର ଅନୁଷ୍ଠାନ ସମୁଚିତ ବ୍ୟବସ୍ଥା କଲେ ଠାକୁରଜୀ । ସେସବୁ ଅନ୍ତ୍ୟେଷ୍ଟି ବ୍ୟବସ୍ଥା କରିସାରି କୃଷ୍ଣ ବଳରାମ ଆଉ କ'ଣ ସବୁ କଲେ ?

**ମାତରଂ ପିତରଂ ଚ-ଏବ ମୋଚୟିତ୍ୱା-ଅଥ ବନ୍ଧନାତ୍ ।**
**କୃଷ୍ଣରାମୌ ବବନ୍ଦାତେ ଶିରସା-ଆସ୍ପୃଶ୍ୟ ପାଦୟୋଃ ।।୫୦।।**

ଉ. ଦୁଇ ଭାଇ ସଙ୍ଗେ ସଙ୍ଗେ ଧାଇଁଗଲେ କଂସର ବନ୍ଦୀଶାଳାକୁ । ଦେବକୀ ବସୁଦେବଙ୍କୁ ତୁରନ୍ତ ବନ୍ଧନମୁକ୍ତ କଲେ । ଦୁହିଁଙ୍କର ପାଦ ସ୍ପର୍ଶ କଲେ । ଭୂଇଁରେ ମସ୍ତକ ଲଗାଇ ସଭକ୍ତିକ ପ୍ରଣାମ କଲେ (ବବନ୍ଦାତେ) । ଦେବକୀ ବସୁଦେବ ସବୁକଥା ଶୁଣି ଦୁଇ ପୁତ୍ରଙ୍କ ଅଲୌକିକ ମାହାତ୍ମ୍ୟ ବୁଝିଗଲେ । ଜାଣିଲେ ଏ ଦୁହେଁ ସ୍ୱୟଂ ଭଗବାନ । ପୁତ୍ର ହେବାର ନାଟକ କରୁଛନ୍ତି । ସୁତରାଂ ସେ ଦୁହେଁ ପୁତ୍ର ଦ୍ୱୟଙ୍କୁ ଆଶୀର୍ବାଦ ଦେବେ କ'ଣ ଅପରାଧ ହେବା ଭୟରେ ଆଲିଙ୍ଗନ ମଧ୍ୟ କରିପାରିଲେନି । କେବଳ ନୀରବ ଦ୍ରଷ୍ଟା ସାଜିଲେ । ନିଜ ନିଜ ସୌଭାଗ୍ୟର ପ୍ରଶଂସା କଲେ ମନେ ମନେ ।

**ଇତି ଶ୍ରୀମଦ୍ ଭାଗବତେ ମହାମୁନି କୃତେ ମହାପୁରାଣେ ବୟାସିକ୍ୟାଂ**
**ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଦଶମ ସ୍କନ୍ଧେ**
**ଚତୁଃଚତ୍ୱାରିଂଶୋଽଧ୍ୟାୟଃ ।**
**। ।ହରିଃ ଓଁ ତତ୍‌ସତ୍ । ।**
**ଶ୍ରୀକୃଷ୍ଣାର୍ପଣ ଅସ୍ତୁ**

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

## ୨୨ଶ ନକ୍ଷତ୍ର- ଶ୍ରବଣା

## ଅଥ ୪୫ଶ ଅଧ୍ୟାୟଃ

## (ଗୁରୁକୁଳରେ କୃଷ୍ଣ ବଳରାମ ଓ ଅଲୌକିକ ଗୁରୁଦକ୍ଷିଣା)

ପ୍ରଶ୍ନ-୧ : ଦେବକୀ ବସୁଦେବ କୃଷ୍ଣ ବଳରାମଙ୍କୁ ନାରାୟଣ (ପୁରୁଷୋତ୍ତମ) ବୋଲି ଚିହ୍ନି ଯାଆନ୍ତେ (ଉପଲବ୍ଧ ଅର୍ଥୌ) କ'ଣ ସେମାନେ ପୁଅ ଦୁହିଁଙ୍କୁ ସାରା ଜୀବନ ଖାଲି ସ୍ତବ, ସ୍ତୁତି, ପ୍ରାର୍ଥନା, ବନ୍ଦନା କରି ଆରତି ଉତାରିଲେ ?

ଶ୍ରୀଶୁକ ଉବାଚ

**ପିତରୌ ଉପଲବ୍ଧ-ଅର୍ଥୌ ବିଦିତ୍ୱା ପୁରୁଷୋତ୍ତମଃ ।**
**ମା ଭୂତ୍ ଇତି ନିଜାଂ ମାୟାଂ ତତାନ ଜନମୋହିନୀମ୍ ॥୧॥**

ଉ. ଠାକୁରଜୀ ସେ ସୁଯୋଗ ତାଙ୍କୁ ଆଦୌ ଦେଲେନି । ତାଙ୍କର ଲୀଳା ହେବ କେମିତି ? ଗୋଲୋକରେ ତାଙ୍କୁ ମିଳୁନଥିବା ବାତ୍ସଲ୍ୟ ପ୍ରେମ ମିଳିବ କେଉଁଠୁ ? ରସମୟ କୃଷ୍ଣ ଅବତାର ଲୀଳା ସ୍ୱାଦହୀନ ହୋଇଯିବ ଯେ !! ତେଣୁ ସେ ନିଜ ବିଷ୍ଣୁମାୟା ପ୍ରୟୋଗ କଲେ (ତତାନ) । ପିତା ମାତାଙ୍କ ମନ ବୁଦ୍ଧି ଆଦିକୁ ପ୍ରେମ ଆଚ୍ଛନ୍ନ କରିଦେଲେ । ଯୋଗମାୟାଙ୍କୁ ଆଦେଶ ଦେଲେ ଦୁହିଁଙ୍କୁ ଏପରି ଭାବିବା ପାଇଁ ସୁଯୋଗ ଦିଆଯିବା ଅନୁଚିତ (ମା ଭୂତ୍ ଇତି) ।

ଏଣିକି ରାମ ଗୋବିନ୍ଦ ଦେବକୀ ବସୁଦେବଙ୍କୁ 'ହେ ମାତ', 'ହେ ପିତା' ଆଦି ସମ୍ବୋଧନ କଲେ । ସେ ଭଳି ମଧୁର ବ୍ୟବହାର ମଧ୍ୟ ଦେଖାଇଲେ । ସେମାନଙ୍କର ସମୁଚିତ ଆଦର, ସତ୍କାର ଓ ସେବା ଆଦି କରି ଚାଲିଲେ ।

ପ୍ରଶ୍ନ-୨: କୃଷ୍ଣ ବଳରାମ ନିଜ ପିତାମାତାଙ୍କୁ ବିଗତ ଏଗାର ବର୍ଷ ଧରି ସେବା କରିବା ସୁଯୋଗ ନ ପାଇଥିବାରୁ କିଭଳି ଶବ୍ଦରେ କ୍ଷମା ଯାଚନା କଲେ ?

**ନ ଲବ୍ଧୋ ଦୈବ ହତୟୋଃ ବାସୋ ନୌ ଭବତ୍ ଅନ୍ତିକେ ।**
**ଯାଂ ବାଳାଃ ପିତୃଗେହସ୍ଥା ବିନ୍ଦନ୍ତେ ଲାଳିତା ମୁଦମ୍ ॥୪॥**

ଉ. ଦୁଇ ଭାଇ କହିଲେ, ''ସଂସାରରେ ସନ୍ତାନ ଜନ୍ମ ନେଲେ ପିଲାଦିନେ

ପିତା ମାତାଙ୍କ ପାଖେ ପାଖେ ନିଜ ଘରେ ରହେ । ବାତ୍ସଲ୍ୟ ରସ ପିତାମାତାଙ୍କୁ ଦିଏ । ତାଙ୍କ ସେବା କରି ଅଫୁରନ୍ତ ଆନନ୍ଦ ପାଏ । ଅଥଚ ଆମର ଭାଗ୍ୟଦୋଷରୁ(ଦୈବ ହତୟୋଃ) ଆପଣ ଦୁହେଁ ବନ୍ଦୀ ଘରେ ରହିଲେ । ଆମେ ଦୁହେଁ ଦୂରରେ ରହିଲୁ । ସନ୍ତାନ ନିଜ ପିତା ମାତାଙ୍କ ପାଖରେ ଜନ୍ମଜାତ ଋଣୀ । ସେ ଋଣ କିଛି ସାମାନ୍ୟ ଋଣ ନୁହେଁ । ଶହେ ବର୍ଷ ପିତାମାତାଙ୍କ ସେବା କରି ସେଥିରେ କେହି ଉଋଣ (ଋଣମୁକ୍ତ) ହୋଇପାରେନା । ସେ ଋଣ ଶୁଝି ନ ପାରିଲେ ଯମଲୋକ ଯିବାକୁ ହୁଏ । ସେଠାରେ ଯମଦୂତମାନେ ତା ନିଜ ଯାତନା ଦେହରୁ ମାଂସ କାଟି ତାକୁ ଖାଇବାକୁ ଦିଅନ୍ତି । ପିତାମାତାଙ୍କ ସେବା କରିବାକୁ ବିମୁଖ ମନୁଷ୍ୟ ବଞ୍ଚିଥିଲେ ମଧ୍ୟ ଏକ ଶବ ପଦବାଚ୍ୟ । ଆମକୁ ନିଜ ଗୁଣେ କ୍ଷମା କରିଦିଅନ୍ତୁ । ଆମେ ଦୁହେଁ ମନୁଷ୍ୟ ଜନ୍ମ ପାଇଛୁ । କଂସ ରାଜା ହେଲେ ବି ରାକ୍ଷସ । ସେତେବେଳକୁ ତାଙ୍କ ଆୟୁଷ ବି ପୁରି ନଥିଲା । ତାଙ୍କ ଭୟରେ ଆମେ ଆପଣଙ୍କ ପାଖରେ ରହି ପାରିଲୁନି । କାରଣ କଂସ ଆପଣ ଦୁହିଁଙ୍କୁ ଅଧିକ ଯନ୍ତ୍ରଣା ଦେଇ କଲବଲ କରିଥାଆନ୍ତା ।''

ପ୍ରଶ୍ନ-୩: ଦୁଇ ପୁତ୍ରଙ୍କ ବିନୀତ କାକୁତି ମିନତି ଶ୍ରବଣ କରି ଦେବକୀ ବସୁଦେବ କଅଣ କଲେ ?

**ଇତି ମାୟା ମନୁଷ୍ୟସ୍ୟ ହରେଃ ବିଶ୍ୱାତ୍ମନୋ ଗିରା ।**
**ମୋହିତୌ ଅଙ୍କଂ ଆରୋପ୍ୟ ପରିଷ୍ୱଜ୍ୟ ଆପତୁଃ ମୁଦମ୍ ॥୧୧॥**

ଉ. ଭଗବାନଙ୍କ ମୋହିନୀ ମାୟା ତା କାମ ଦେଖାଇଲା । ପିତାମାତା ଦୁହେଁ ଭୁଲିଗଲେ ଶ୍ରୀକୃଷ୍ଣ ବଳରାମ ନାରାୟଣଙ୍କର ଅବତାର ବୋଲି । ଭଗବାନଙ୍କ କାକୁତି ମିନତି ବାକ୍ୟ ହିଁ ତ ମୋହିନୀ ମାୟା କାମ କଲା । ଦୁହେଁ ଏଥର ତରବର ହୋଇ କୋଳରେ ବସାଇଲେ ଦୁଇ ଭାଇଙ୍କୁ । ଦୃଢ଼ ଆଲିଙ୍ଗନ କରି (ପରିଷ୍ୱଜ୍ୟ) ଭରପୂର ଆନନ୍ଦ (ମୁଦଂ) ପ୍ରାପ୍ତ ହେଲେ (ଆପତୁଃ) । ପୁତ୍ର ସ୍ନେହରେ ବାନ୍ଧି ହୋଇ ଗଲେ ଦୁହେଁ । ଅତ୍ୟଧିକ ଅପତ୍ୟ ସ୍ନେହରେ ଦୁହିଁଙ୍କର କଣ୍ଠ ରୁଦ୍ଧ ହୋଇଗଲା ।

ପ୍ରଶ୍ନ-୪: ମଥୁରା ବିଜୟ ପରେ ଠାକୁରଜୀଙ୍କର ଜୟ ଜୟକାର ସତ୍ତ୍ୱେ ସେ ରାଜ ସିଂହାସନରେ ବସି ଗଲେ ନାହିଁ । ମାତାମହ ଉଗ୍ରସେନଙ୍କୁ ରାଜପୋଷି ବା ଅଭିଷେକ କରାଇଲେ । ଅସଲି କାରଣ ହେଲା ଯଦୁବଂଶୀମାନେ ରାଜା ହୋଇପାରିବେ ନାହିଁ ବୋଲି ଯଯାତିଙ୍କର ଶାପ ଅଛି । ପୁଣି ସେ ରାଜାଙ୍କର ସେବକ ହୋଇ ରହିଲେ ମନୁଷ୍ୟ କ'ଣ ଦେବୀ ଦେବତାମାନେ ମଧ୍ୟ ଉଗ୍ରସେନଙ୍କ ଶାସନ ମାନି ଚଳିବେ ।

ଭଗବାନ ଭକ୍ତଙ୍କୁ ଉଚ୍ଚ ଆସନ ଦେବାରେ ଭକ୍ତ ଭଗବାନ ଦୁହେଁ ଆନନ୍ଦ ପାଆନ୍ତି । କୃଷ୍ଣ ବଳରାମ ଦୁହେଁ ଏଣିକି ନନ୍ଦ ରାଜାଙ୍କୁ କିଭଳି ପ୍ରବୋଧନା ଦେଇ ନନ୍ଦଗାଓଁଙ୍କୁ ପଠେଇଲେ ?

**ସ ପିତା ସା ଚ ଜନନୀ ଯୌ ପୁଷ୍ଣୀତାଂ ସ୍ୱପୁତ୍ରବତ୍ ।**
**ଶିଶୂନ୍ ବନ୍ଧୁଭିଃ ଉତ୍ସୃଷ୍ଟାନ୍ ଅକଳ୍ପୈଃ ପୋଷଣ ରକ୍ଷଣେ ।।୨୨।।**

ଉ. ଭଗବାନ ମଧୁର ବାଣୀରେ ବୁଝାଇଦେଲେ ଯେ କେହି ସନ୍ତାନ ଜନ୍ମ କରିଦେଲେ ପିତାମାତା ହୋଇଯାଏନା । ବରଂ ଜନ୍ମ ନ କରିଥିଲେ ଅନ୍ୟର ପାଳନ ପୋଷଣ ଅସମର୍ଥତା (ଅକଳ୍ପୈଃ) ହେତୁ ପରିତ୍ୟକ୍ତ (ଉତ୍ସୃଷ୍ଟାନ୍) ସନ୍ତାନକୁ ପାଳନ ପୋଷଣ କରିଥିବା ପୁରୁଷ ଓ ନାରୀ ତାର ଅସଲି ପିତା ଓ ମାତା । ଅନ୍ୟବାକ୍ୟରେ ରାଜା ନନ୍ଦଙ୍କୁ ଖୋଲି କହିଲେ ''ପିତାଜୀ ଆମେ ଦୁହେଁ ଆପଣ ଦୁହିଁଙ୍କ ପାଖରେ ଅଧିକ ଋଣୀ ରହିଗଲୁ । ଆପଣ ଏଥର ନନ୍ଦଗାଓଁ ଫେରି ଯାଆନ୍ତୁ ମା'ଙ୍କ ପାଖକୁ ।''

ପ୍ରଶ୍ନ-୫: ବସୁଦେବ ଦୁଇ ପୁତ୍ରଙ୍କର ବିଧି ପୂର୍ବକ ଦ୍ୱିଜାତି ସଂସ୍କାର କରାଇଲେ । ପୁତ୍ର ଜନ୍ମବେଳେ କରିଥିବା ଗୋଦାନ ସଂକଳ୍ପ ମନେ ପଡ଼ିଲା । ସଙ୍ଗେ ସଙ୍ଗେ ବ୍ରାହ୍ମଣମାନଙ୍କୁ ଡ଼କାଇ ଦଶହଜାର ସବତ୍ସା ଧେନୁ ଦାନ କଲେ । ଗର୍ଗ ଆଚାର୍ଯ୍ୟ ଗାୟତ୍ରୀ ମନ୍ତ୍ର ଦୀକ୍ଷା ଦେଲେ ଦୁଇ ଭାଇଙ୍କୁ । ସେତେବେଳକୁ କାଶୀ ପଣ୍ଡିତ ସାନ୍ଦିପନୀ ଆଚାର୍ଯ୍ୟ ଅବନ୍ତୀ ନଗରର ଉଜ୍ଜୟିନୀରେ ଗୁରୁକୁଳ ଖୋଲି ଥାଆନ୍ତି । ବସୁଦେବଙ୍କ ଆଦେଶରେ ଦୁଇ ଭାଇ ସେଇ ଗୁରୁକୁଳରେ ପହଞ୍ଚିଲେ ବିଦ୍ୟା ଅଧ୍ୟୟନ ଲାଗି । ଗୁଜୁରାଟ ରାଜ୍ୟର ପୋର ବନ୍ଦର ନିବାସୀ ସୁଦାମା ବ୍ରାହ୍ମଣ ମଧ୍ୟ ପାଠପଢ଼ା ସାଥି ରୂପେ ସେମାନଙ୍କ ସହିତ ଯୋଗଦେଲେ । କୃଷ୍ଣ ବଳରାମ ସେଠାରେ କି କି ବିଦ୍ୟାସବୁ ଅଧ୍ୟୟନ କଲେ ?

**ସ ରହସ୍ୟଂ ଧନୁର୍ବେଦଂ ଧର୍ମାନ୍ ନ୍ୟାୟ ପଥାନ୍ ତଥା ।**
**ତଥା ଚ-ଆନ୍ୱୀକ୍ଷିକୀଂ ବିଦ୍ୟାଂ ରାଜନୀତିଂ ଚ ଷଟ୍‌ବିଧାମ୍ ।।୩୪।।**

ଉ. ଯେ ସର୍ବଦା ସବୁ ଜାଣନ୍ତି ବା ସର୍ବଜ୍ଞ ସେଇ ତ ଭଗବାନ । କୃଷ୍ଣ ସ୍ୱୟଂ ଭଗବାନ ହୋଇ ନରଲୀଳା କରୁଛନ୍ତି । ତାଙ୍କର ପାଠ ପଢ଼ିବା କି ଦରକାର ? ଚଉଷଠୀ ଦିନରେ ଶିଖିଗଲେ ଚଉଷଠୀ ବିଦ୍ୟା । ସେ ସବୁ ମଧ୍ୟରେ ମୁଖ୍ୟତଃ ଧନୁର୍ବିଦ୍ୟାର ଗୁପ୍ତ ରହସ୍ୟ, ଧର୍ମ ରହସ୍ୟ, ଶାସନ ପ୍ରଣାଳୀ (ନ୍ୟାୟ ପଥାନ୍), ଅଧ୍ୟାତ୍ମ୍ୟବିଦ୍ୟା (ଆନ୍ୱୀକ୍ଷିକୀଂ)

ଓ ସାଂଖ୍ୟ, ଯୋଗ, ନ୍ୟାୟ, ବୈଶେଷିକ, କର୍ମ ମୀମାଂସା ଓ ବେଦାନ୍ତ ରହସ୍ୟ (ଷଟ୍ ଦର୍ଶନ) ମୁଖ୍ୟ ଥିଲା ।

ପ୍ରଶ୍ନ-୬: ଦାନ ସହିତ (ଅହଂକାର ରୂପୀ) ଦକ୍ଷିଣା ନଦେଲେ ଦାନ ବିଫଳ ହୁଏ । ବିଦ୍ୟା ଅଧ୍ୟୟନ କରି ଉଚିତ ଗୁରୁ ଦକ୍ଷିଣା ଦେଇ ନ ପାରିଲେ ବିଦ୍ୟା ମଧ୍ୟ ଜୀବନରେ କଲ୍ୟାଣକର ହୁଏ ନାହିଁ । ସାନ୍ଦିପନୀ ପତ୍ନୀଙ୍କ ସହ ପରାମର୍ଶ କଲେ । ଦୁହେଁ ବିଚାରକଲେ ଦୁଇ ଶିଷ୍ୟ ସାମାନ୍ୟ ନୁହନ୍ତି ଅଲୌକିକ । ଅତଏବ ଅଲୌକିକ ଦକ୍ଷିଣା ମାଗି ବସିଲେ । ପ୍ରଭାସ ତୀର୍ଥରେ ସ୍ନାନ କରୁଥିବା ବେଳେ ତାଙ୍କ ପୁତ୍ର ସମୁଦ୍ର ଜଳରେ ବୁଡ଼ି ମରିଥିଲା । ସେଇ ପୁତ୍ରକୁ ସ୍ୱଦେହରେ ଫେରିବାକୁ ଦକ୍ଷିଣା ଦିଅ ବୋଲି କହିଲେ । ଦୁଇଜଣ ଯାକ ଶିଷ୍ୟ ଗୁରୁ ଆଜ୍ଞା ଶିରୋଧାର୍ଯ୍ୟ କଲେ ।

ବେଗଗାମୀ ରଥରେ ବସି ଦୁଇ ଭାଇ ଉଜ୍ଜୟିନୀରୁ ଗଲେ ପ୍ରଭାସ ତୀର୍ଥ । ସାଗରଙ୍କୁ ପ୍ରାର୍ଥନା କଲେ ନିଜ ଗୁରୁପୁତ୍ରକୁ ଫେରାଇଦେବାକୁ । ସାଗର ରାଜ ବିନୀତ ହୋଇ କହିଲେ, 'ଭଗବନ୍, ସେ ପୁତ୍ରକୁ ମୁଁ ନେଇନାହିଁ । ମୋ ଭିତରେ ଥିବା ଦିତିପୁତ୍ର ପଞ୍ଚଜନ୍ୟ ଦୈତ୍ୟ ନେଇ ଯାଇଛି ।' ଭଗବାନ୍ ସମୁଦ୍ରରେ ପଶିଗଲେ । ପଞ୍ଚଜନ୍ୟକୁ ମାରିଦେଲେ । ଗୁରୁପୁତ୍ରକୁ କିନ୍ତୁ ପାଇଲେ ନାହିଁ । ପଞ୍ଚଜନ୍ୟ ଦୈତ୍ୟ ଜୟ ବିଜୟଙ୍କ ଭଳି ଏକ ଅଭିଶାପଗ୍ରସ୍ତ ଦୈତ୍ୟ ଥିଲା । ତାଙ୍କୁ ନିଜ ପ୍ରିୟ ଶଙ୍ଖ ଭାବରେ ଭଗବାନ ନିଜ କର କମଳରେ ଧାରଣ କଲେ । ଦୁଇ ଭାଇ ଚାଲିଲେ ସଂଯମନୀ ପୁର । ଭେଟିବାକୁ ଚାହିଁଲେ ସେଠାର ରାଜା ଯମ ଓ ତାଙ୍କ ମନ୍ତ୍ରୀ ଚିତ୍ରଗୁପ୍ତଙ୍କୁ । ଭଗବାନ ତୁରନ୍ତ ପଞ୍ଚଜନ୍ୟ ଶଙ୍ଖ ବାଦନ କଲେ । କମ୍ପମାନ ହେଲା ଯମ ଭୁବନ । ଜନ୍ତୁପତି ଯମରାଜା ଆସି ସଭକ୍ତିକ ପ୍ରଣାମ କଲେ କୃଷ୍ଣ ବଳରାମଙ୍କୁ । ଆସିବାର କାରଣ ଜିଜ୍ଞାସା କଲେ । କିଭଳି ଦୃପ୍ତ କଣ୍ଠରେ ଭଗବାନ ଯମ ଦେବତାଙ୍କୁ ତାଙ୍କର ଆଗମନର କାରଣ କହିଲେ ?

**ଶ୍ରୀ ଭଗବାନ ଉବାଚ**

**ଗୁରୁପୁତ୍ରଂ ଇହ-ଆନୀତଂ ନିଜ କର୍ମ ନିବନ୍ଧନମ୍ ।**
**ଆନୟସ୍ୱ ମହାରାଜ ମତ୍‌ଶାସନ ପୁରସ୍କୃତଃ ॥୪୫॥**

ଉ. ଭଗବାନ କହିଲେ, 'ହେ ମହାରାଜ ଯମ, ଆପଣ ଅବଶ୍ୟ ମୋର ଅଭୁକ୍ତ କର୍ମଫଳ ବନ୍ଧନ ଯୁକ୍ତ ଜୀବମାନଙ୍କର ରାଜା । ଏ କଥା ସତ । ମୋ ଭକ୍ତମାନେ

କିନ୍ତୁ ଆପଣଙ୍କ ଶାସନର ଊର୍ଦ୍ଧ୍ୱରେ । ମୋ ଗୁରୁପୁତ୍ରଙ୍କୁ ମୋତେ ଆଣି ଦିଅ (ଆନୟସ୍ୱ) । ଏହା ମୋର ଆଦେଶ (ମତ୍ ଶାସନ) । ଅବିଳମ୍ବେ ପାଳନ କର(ପୁରସ୍କୃତଃ) ।

ରାଜା ଯମ ଯେ ଆଜ୍ଞା କହି ଗୁରୁପୁତ୍ରଙ୍କୁ ଠାକୁରଜୀଙ୍କୁ ଫେରାଇ ଦେଲେ । ତାଙ୍କୁ ଦର୍ଶନ ଦେଇଥିବାରୁ କୃତଜ୍ଞତା ଜ୍ଞାପନ କଲେ । ବେଗବାନ ରଥ ଚଢ଼ି ଦୁଇ ଭାଇ ଗୁରୁଙ୍କ ଆଶ୍ରମରେ ପହଞ୍ଚିଲେ । ଗୁରୁ ପୁତ୍ରକୁ ଦକ୍ଷିଣା ରୂପେ ପ୍ରଦାନ କରି ପୁଣି କିଛି ବର ମାଗିବାକୁ ପ୍ରାର୍ଥନା କଲେ ।

ପ୍ରଶ୍ନ-୭: ଆଚାର୍ଯ୍ୟ ସନ୍ଦିପନୀ ଠାକୁରଜୀଙ୍କୁ ତାଙ୍କର ଆଉ କିଛି ମାଗିବାକୁ ନାହିଁ ବୋଲି କାହିଁକି କହିଲେ ?

ଗୁରୁଃ ଉବାଚ

**ସମ୍ୟକ୍ ସଂପାଦିତୋ ବତ୍ସ ଭବଦ୍‌ଭ୍ୟାଂ ଗୁରୁ ନିଷ୍କ୍ରିୟଃ ।**
**କୋ ନୁ ଯୁଷ୍ମଦ୍ ବିଧୋ ଗୁରୋଃ କାମାନାଂ ଅବଶିଷ୍ୟତେ ।।୪୭।।**

ଉ. ଗୁରୁଦେବ କହିଲେ, ''ବତ୍ସ, ଢ଼େର ଦକ୍ଷିଣା ପାଇଗଲି । ତୁମ ଭଳି ଶିଷ୍ୟ ରୂପେ ଭଗବାନଙ୍କୁ ପାଇଗଲେ ଆଉ କ'ଣ ପାଇବାକୁ କାହାର କିଛି ବାକି ରହେ କି ?'' ଦୁଇ ଭାଇ ରଥରେ ବସି ଫେରି ଆସିଲେ ମଥୁରା ।

# ୩୧. ଭୟାନକ ରସ ପ୍ରକରଣ ସାର

## (ଅଧ୍ୟାୟ ୩୭ଶ-୪୫ଶ)

ଭୌତିକ ଜଗତରେ କାହାରିକୁ ଭୟ କରିବା କାପୁରୁଷତାର ଲକ୍ଷଣ । ଏହା ନିନ୍ଦନୀୟ ମଧ୍ୟ । ଭାଗବତଙ୍କର ଭୟାନକ ରସ ଏକ ଦିବ୍ୟ ରସ । କୃଷ୍ଣଙ୍କୁ ଭୟ କରି ଚିତ୍ତ ତନ୍ମୟ କରିବା ଏକ ବନ୍ଦନୀୟ କର୍ମ ଭାବରେ ସାବ୍ୟସ୍ତ ହୋଇଛି ଏଠାରେ । ଭୟାନକ ରସର ଜୀବନ୍ତ ପ୍ରତୀକ ସ୍ୱୟଂ ଅତ୍ୟାଚାରୀ ଦାନବ ଶ୍ରେଷ୍ଠ କଂସ । କୃଷ୍ଣଙ୍କ ଭୟରେ ତାର ଚିତ୍ତ କୃଷ୍ଣ ତନ୍ମୟ । ସେ ସର୍ବତ୍ର କୃଷ୍ଣ ଦର୍ଶନ କରୁଛି । ବିଚରା ଖାଦ୍ୟ ଖାଇପାରୁନି । ବିଛଣା ଗଦି ଉପରେ ଶୋଇ ପାରୁନି । ସିଂହାସନରେ ବସି ପାରୁନି । କୃଷ୍ଣ ଭୟରେ ସେ ଅତ୍ର ତତ୍ର ସର୍ବତ୍ର କୃଷ୍ଣ ଦର୍ଶନ କରୁଛି । ନିଜେ କୃଷ୍ଣଙ୍କ ସାମନା କରିବା ପୂର୍ବରୁ କେଶୀ ଅସୁରକୁ ପଠାଇଛି ନିଜର ଭଣଜା ସେଇ କୃଷ୍ଣଙ୍କୁ ଜୀବନରେ ମାରି କୃଷ୍ଣ ଭୟ ଦୂର କରିବାକୁ । ଶାସନ ବ୍ୟବସ୍ଥାରେ ଶାସ୍ତ୍ର ଯେତେବେଳେ ଅସୁର

ବୁଦ୍ଧିରେ ଆକ୍ରାନ୍ତ ହୁଏ ତାର ନାମ କେଶୀ ଅସୁର । ଧ୍ୟାନ ବେଳେ ମନ ଆକାଶ(ବ୍ୟୋମ)ରେ କୃତ୍ରିମତା ପ୍ରବେଶ କଲେ କୃଷ୍ଣ ଧ୍ୟାନ ନ ହେବା ହିଁ ଅସୁର ଆକ୍ରାନ୍ତ ସମାଧି ଯାହାର ଅନ୍ୟନାମ ବ୍ୟୋମାସୁର । ଲୀଳାରେ ଉଭୟ ଭୟ ସଂକେତ ବହନକାରୀ ଅସୁରଙ୍କୁ ଉଦ୍ଧାର କରିଛନ୍ତି ଭବ ଭୟ ବିନାଶକ ଶ୍ରୀଗୋବିନ୍ଦ ।

କଂସ ନାରଦଙ୍କ ଉପଦେଶରେ ଅକ୍ରୁରଙ୍କୁ ପଠାଇଛନ୍ତି ନନ୍ଦଗାଁ ଆୟୋଜିତ ଧନୁଯାତ୍ରା ଦର୍ଶନ ନିମନ୍ତେ କୃଷ୍ଣ ବଳରାମ ଦୁଇ ଭଣଜାଙ୍କୁ ନିମନ୍ତ୍ରଣ କରିବାକୁ । ଧନୁର୍ଯଜ୍ଞ କରାଯାଏ ଶତ୍ରୁର ଆୟୁଷ ହରଣ କରି ନିଜର ଆୟୁଷ ବୃଦ୍ଧି କରିବା ଲକ୍ଷ୍ୟରେ । କଂସ ଦୂତ ଅକ୍ରୁରଜୀ ଜଣେ ପରମ ଭଗବତ ଭକ୍ତ । କଂସର ନିଷ୍ଠୁର ଆଦେଶ ଶ୍ରବଣରେ ଭକ୍ତର ଭଗବତ ଦର୍ଶନ ଲାଳସା ଜାଗ୍ରତ ହୋଇଛି । ସେ ମହା ଆନନ୍ଦରେ ସୁବର୍ଣ୍ଣ ରଥ ନେଇ ମଥୁରାରୁ ନନ୍ଦଗାଁ ପହଞ୍ଚିଛନ୍ତି । ବାଟରେ ବାଲି ଉପରେ ଶ୍ୟାମ ସୁନ୍ଦରଙ୍କର ଚରଣ କମଳ ଚିହ୍ନ ଦର୍ଶନରେ ଆତ୍ମହରା ହୋଇଛନ୍ତି । ନନ୍ଦଗାଁରେ ନନ୍ଦ ଯଶୋଦାଙ୍କୁ ତାଙ୍କର ଆଗମନର କାରଣ କହିଛନ୍ତି । ଦୁଇ ପୁତ୍ରଙ୍କର ମଥୁରା ଗମନ କାରଣ ଜାଣି ପିତାମାତା ଉଭୟେ ଭୟ ପାଇଛନ୍ତି । ମାଧୁର୍ଯ୍ୟ ରସ ପ୍ରାବଲ୍ୟ ହେତୁ ଦୁଇ ପୁଅ ସାକ୍ଷାତ ଭଗବାନ ବୋଲି ତାଙ୍କର ସ୍ମରଣ ହେଉନାହିଁ । ଭଗବାନଙ୍କର ପିତାମାତାଙ୍କୁ ମଧ୍ୟ ଏହି ଦିବ୍ୟ ଭୟାନକ ରସ ଆକ୍ରମଣ କରିବା କିଛି ସାମାନ୍ୟ କଥା ନୁହେଁ । ତଥାପି କଂସ ଭୟରେ ନନ୍ଦରାଜା ଅନେକ ଗୋପାଳଙ୍କୁ ସାଙ୍ଗରେ ଧରି ନିଜେ ମଥୁରା ପହଞ୍ଚିଛନ୍ତି । ମଥୁରାରେ ବୁଲୁ ବୁଲୁ ସନ୍ଧ୍ୟାବେଳେ ଭୟର ପ୍ରତୀକ ଧନୁକୁ ଖେଳରେ ଖେଳରେ ଭଗବାନ ଭାଙ୍ଗି ଦେଇଛନ୍ତି । କଂସ ଜାଣିଥିଲେ ଯେ ଧନୁକୁ ଭାଙ୍ଗିବା ଲୋକ ହାତରେ ତାଙ୍କର ପ୍ରାଣଯିବ ବୋଲି । ଏବେ ରାଜା କଂସ କେବଳ କୃଷ୍ଣ ଭୟ ନୁହେଁ ମୃତ୍ୟୁର ମହା ଭୟରେ ଆତଙ୍କିତ ହୋଇପଡ଼ିଛନ୍ତି ।

ପରଦିନ ସକାଳେ କୁବଳୟା ପୀଡ଼ ହସ୍ତୀ ବଧ ଓ ଅଷ୍ଟମଲ୍ଲଙ୍କ ସହିତ ଭୟାନକ ମଲ୍ଲକୁସ୍ତି ଲଢ଼େଇରେ ସମଗ୍ର କଂସ ରାଜସଭା ଭୟାନକ ରସରେ ବୁଡି ଯାଇଛି । ଭକ୍ତ ଭୟହାରୀ ଭଗବାନ କଂସକୁ ଅବଲୀଳା କ୍ରମେ ଉଦ୍ଧାର କରି ମଥୁରାର ପ୍ରଜାମାନଙ୍କୁ ଭୟମୁକ୍ତ କରିଛନ୍ତି । କଂସ ପିତା ଉଗ୍ରସେନଙ୍କୁ ସିଂହାସନରେ ବସାଇ ନିଜେ ନିଜକୁ ତାଙ୍କ ପ୍ରଜା ବୋଲି ଘୋଷଣା କରିଛନ୍ତି । ଭବିଷ୍ୟତରେ କୌଣସି ଭୟାନକ ରସ ଆସିଲେ ସେ ସେମାନଙ୍କୁ ସୁରକ୍ଷା ଦେବେ ଏହି ଲକ୍ଷ୍ୟ ରହିଲା କୃଷ୍ଣ ବଳରାମଙ୍କର । ଭୟାନକ ରସ ପ୍ରକରଣର ଅନ୍ତିମ ଅଧ୍ୟାୟ ଧନ୍ୟ ହୋଇଛି ଠାକୁରଙ୍କ

ଯମପୁର ବିଜୟ ଲୀଳା ମାଧ୍ୟମରେ । ଭୟାନକ ରସର ସାକ୍ଷାତ ଦେବତା ଯମରାଜ । କି ପଶୁ, ପକ୍ଷୀ, ମନୁଷ୍ୟ, ଅସୁର, ରାକ୍ଷସ, ଇନ୍ଦ୍ର, ଚନ୍ଦ୍ର, ବ୍ରହ୍ମାଦି ଯାହାକୁ ମରଣ ଭୟ ଅଛି ସେଇତ ଯମଦେବତା । ସନ୍ଦିପନୀ ଆଚାର୍ଯ୍ୟଙ୍କ ଗୃହରେ କୃଷ୍ଣ ବଳରାମ ବ୍ରହ୍ମ ବିଦ୍ୟା ଅଧ୍ୟୟନ କରି ଦକ୍ଷିଣା ଦେବାର ଅଭିଳାଷା ପ୍ରକଟ କରିଛନ୍ତି । ଗୁରୁ ମାତା ମାଗିଛନ୍ତି ଅଦ୍ଭୁତ ଦକ୍ଷିଣା । ସେ ଜାଣି ପାରିଛନ୍ତି ଏମାନେ କୌଣସି ସାଧାରଣ ଶିଷ୍ୟ ନୁହନ୍ତି । ସୁତରାଂ ଅସାଧାରଣ, ଅଲୌକିକ ଚିଜ ମାଗି ବସିଲେ ସେ ।

ପୂର୍ବେ ଆରବ ସାଗର କୂଳରେ ସ୍ନାନବେଳେ ତାଙ୍କ ପୁତ୍ର ମୃତ୍ୟୁ ମୁଖରେ ପଡ଼ିଛି । ସେ ଚାହିଁଛନ୍ତି ସେଇ ପୁତ୍ରକୁ ଜୀବନ୍ତ ଅବସ୍ଥାରେ ଦର୍ଶନ କରିବେ ବୋଲି । ଭଗବାନ ତ ଯମରାଜାଙ୍କର ମଧ୍ୟ ଯମ । ସେ ପ୍ରଥମେ ସମୁଦ୍ରରେ ପ୍ରବେଶ କରି ପଞ୍ଚଜନ୍ୟ ରାକ୍ଷସକୁ ବଧ କରି ଶଙ୍ଖଟିକୁ ପାଇଛନ୍ତି ମହାଭାରତ ଯୁଦ୍ଧରେ ବାଦନ କରିବେ ବୋଲି । ପାଇ ନାହାନ୍ତି ମୃତ ଗୁରୁପୁତ୍ରଙ୍କୁ । ସଙ୍ଗେ ସଙ୍ଗେ ପହଞ୍ଚିଛନ୍ତି ଯମପୁରର ରାଜଧାନୀ ସଂଜୀବନୀ ପୁରରେ । ଯମ ରାଜା ତାଙ୍କ ଦରବାରରେ ପାଦପୂଜନ କରିଛନ୍ତି କୃଷ୍ଣ ବଳରାମଙ୍କର । ଗୁରୁପୁତ୍ରଙ୍କୁ ସଶରୀରରେ ସଜୀବନରେ ଅର୍ପଣ କରିଛନ୍ତି ଠାକୁରଜୀଙ୍କୁ । ଠାକୁରଜୀ ଗୁରୁ-ଗୁରୁମାଙ୍କୁ ଗୁରୁ ପୁତ୍ରଙ୍କୁ ପ୍ରଦାନ କରି ଦକ୍ଷିଣା ଦେବା ପର୍ବ ସମାପନ କରିଛନ୍ତି । ସଂସାରକୁ ଏକ ମହାନ ଶିକ୍ଷା ମିଳିଲା ଯେ କୃଷ୍ଣଙ୍କୁ ଭୟ କରି ଚିତ୍ତ ତନ୍ମୟ କରିପାରିଲେ କଂସଭଳି ରାକ୍ଷସଟିଏ ମଧ୍ୟ ପାଇପାରେ କୃଷ୍ଣ କୃପା ସାଯୁଜ୍ୟ ମୁକ୍ତି ଭାବରେ । କୃଷ୍ଣଙ୍କୁ ପ୍ରେମରସ ମାଧ୍ୟମରେ ଧ୍ୟାନ କଲେ ମନୁଷ୍ୟ ଗଣାଯାଏ ଅକିଞ୍ଚନ ବୈଷ୍ଣବ ନାମରେ । ତାଙ୍କୁ ସ୍ୱୟଂ ଭୟ ମଧ୍ୟ ଭୟ କରନ୍ତି । ସେଥିପାଇଁ ସିନା ଧର୍ମ ଶାସ୍ତ୍ରମାନଙ୍କରେ ବିଷ୍ଣୁଭକ୍ତଙ୍କ ଲାଗି ଯମ ଦଣ୍ଡ ବିଧାନ ବ୍ୟବସ୍ଥା ନାହିଁ । ଭୟାନକ ରସର ଭବ୍ୟ ସମାପ୍ତି ପରେ ଭଗବାନଙ୍କର ଦିବ୍ୟ ବୀର ରସର ପରିବେଷଣ ହେବ ପରବର୍ତ୍ତୀ ପ୍ରକରଣରେ ୯ଅଧ୍ୟାୟରେ ତାଙ୍କ ଦିବ୍ୟ ଲୀଳା ମାଧ୍ୟମରେ ।

# ପ୍ରକରଣ-୩୨ ବୀରରସ

## (ଅଧ୍ୟାୟ ୪୬ଶ-୫୫ ମ)

## ଅଥ ୪୬ଶ ଅଧ୍ୟାୟଃ

## (କୃଷ୍ଣଙ୍କର ପ୍ରେମ ଦୂତ ଉଦ୍ଧବଙ୍କର ବୃନ୍ଦାବନ ଯାତ୍ରା)

ପ୍ରଶ୍ନ-୮: ଗୋପୀ ଗୋପୀନାଥଙ୍କ ଏଗାର ବର୍ଷର ମିଳନ ଲୀଳା ଶେଷ ହୋଇଛି । ଆରମ୍ଭ ହୋଇଛି ବିରହ ଲୀଳା । ବ୍ରଜବାସୀମାନେ ବିରହ ଅଗ୍ନିରେ ଜଳୁଥାଆନ୍ତି । ଗୋପୀନାଥ ଚାହିଁଥିଲେ ପ୍ରିୟ ବ୍ରଜବାସୀମାନଙ୍କୁ ମଥୁରାରେ ରଖିବା ବନ୍ଦୋବସ୍ତ କରିପାରିଥାଆନ୍ତେ । ସେ କଥା କରି ନାହାନ୍ତି ସେ । କାରଣ ମଥୁରା ବୃନ୍ଦାବନ ମଧ୍ୟରେ ଭୌଗୋଳିକ ଦୂରତା ମାତ୍ର ଚଉଦ କିଲୋମିଟର କିନ୍ତୁ ଆଧ୍ୟାତ୍ମିକ ରସ ବିଭାଜନକାରୀ ଦୂରତା କେତେ କୋଟି କୋଟି କିଲୋମିଟର । ବୃନ୍ଦାବନର ରସ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ରସ ସମନ୍ୱିତ ଖାଣ୍ଟି ମାଧୁର୍ଯ୍ୟ ରସ ପ୍ରାୟତଃ ଐଶ୍ୱର୍ଯ୍ୟ ବିମୁଖ । ଅନ୍ୟପକ୍ଷରେ ମଥୁରା ରସ ଐଶ୍ୱର୍ଯ୍ୟମୂଳକ ମାଧୁର୍ଯ୍ୟ ରସ । ଏପରିକି ମଥୁରା ନାରୀମାନେ ମଧ୍ୟ ଐଶ୍ୱର୍ଯ୍ୟ ଲୋଭୀ । ଏଠାକୁ ଖାଣ୍ଟି ମାଧୁର୍ଯ୍ୟ ରସ ସାଧକ ଆସିଲେ ବିଚରା ଛଟପଟ ହୋଇଯିବ । କିରକିରା ହୋଇଯିବ ତା ରସ ଆସ୍ୱାଦନ ପ୍ରକ୍ରିୟା । ଉଦ୍ଧବଙ୍କର କେଉଁ କେଉଁ ଗୁଣ ଦେଖି ଭଗବାନ ତାଙ୍କୁ ବୃନ୍ଦାବନ ପ୍ରେରଣ କଲେ ବ୍ରଜବାସୀଙ୍କର କୃଷ୍ଣ ବିରହ ଜ୍ୱାଳାକୁ ଶାନ୍ତ କରିବା ପାଇଁ ?

**ଶ୍ରୀଶୁକ ଉବାଚ**

**ବୃଷ୍ଣୀନାଂ ପ୍ରବରୋ ମନ୍ତ୍ରୀ କୃଷ୍ଣସ୍ୟ ଦୟିତଃ ସଖା ।**
**ଶିଷ୍ୟୋ ବୃହସ୍ପତେଃ ସାକ୍ଷାତ୍ ଉଦ୍ଧବୋ ବୁଦ୍ଧିସତ୍ତମଃ ॥୧॥**

ଉ. ଉଦ୍ଧବ ଥିଲେ ବୃଷ୍ଣିମାନଙ୍କ ମଧ୍ୟରେ ଜଣେ ଶ୍ରେଷ୍ଠ (ପ୍ରବରୋ) ମନ୍ତ୍ରଣାଦାତା, କୃଷ୍ଣଙ୍କର ଅତ୍ୟନ୍ତ ପ୍ରିୟ ସଖା, ଦେବଗୁରୁ ବୃହସ୍ପତିଙ୍କର ପ୍ରିୟ ଶିଷ୍ୟ ଓ ଶୁଦ୍ଧ ଅନ୍ତଃକରଣ ବିଶିଷ୍ଟ (ବୁଦ୍ଧି ସତ୍ତମଃ) ସାଧକ । ଶାସ୍ତ୍ର ଜ୍ଞାନରେ ଅତ୍ୟନ୍ତ ଧୁରୀଣ ଶାସ୍ତ୍ରବିତ୍, ବେଦଜ୍ଞ ପଣ୍ଡିତ । ତଥାପି ନିରହଂକାରୀ ହୋଇନଥିବାରୁ ତତ୍ତ୍ୱ ଜ୍ଞାନର ଅଭାବ ଥିଲା ତାଙ୍କ୍ ଠାରେ । ଜ୍ଞାନ ଅହଂକାରୀ ଉଦ୍ଧବଜୀ ଆଦୌ ପ୍ରେମ ରାଜ୍ୟର

ଅଧିକାରୀ ଶିଷ୍ୟ ନଥିଲେ । ଏଣେ ଭଗବାନ ସ୍ୱୟଂ ପ୍ରେମର ଭିକାରୀ । ସେ ଦୁଧ, ଲହୁଣୀ ଛଳରେ ପ୍ରେମ ଟିକକ ପାଇଁ ହାତ ପତାନ୍ତି ଗୋପୀମାନଙ୍କ ପାଖରେ । ସୁତରାଂ ପ୍ରେମ ଧନରେ କାଙ୍ଗାଳ କୃଷ୍ଣ ଉଦ୍ଧବଙ୍କୁ ଦେଇପାରିଲେନି ପ୍ରେମ । ଗୋପୀମାନଙ୍କ ପାଖକୁ ପଠାଇଲେ ପ୍ରେମ ବିଦ୍ୟାଳୟରେ ନାମ ଲେଖାଇବାକୁ । ପୁଣି ଏକାଦଶ ସ୍କନ୍ଧରେ ଆଉ ଥରେ ତତ୍ତ୍ୱଜ୍ଞାନ ପାଠ ପଢ଼ାଇବେ ଉଦ୍ଧବଙ୍କୁ ସେ ନିଜେ ।

ପ୍ରଶ୍ନ-୯: ଠାକୁରଜୀ ନିଜ ବେକର ଫୁଲମାଳ ପ୍ରେମଦୂତ ଉଦ୍ଧବଜୀଙ୍କୁ ପିନ୍ଧାଇଦେଲେ । ଉଦ୍ଧବଙ୍କୁ ବସନ, ଭୂଷଣ, ଅଳଂକାରରେ ନିଜ ହାତରେ ସଜାଇ ଦେଲେ । ରଥରେ ବସାଇ ତାଙ୍କୁ ବୃନ୍ଦାବନକୁ ବାଟେଇବାକୁ ଗଲେ ମଧ । ତାଙ୍କୁ କି କାର୍ଯ୍ୟଭାର ଅର୍ପଣ କଲେ କୃଷ୍ଣ ସେତେବେଳେ ?

**ମୟି ତାଃ ପ୍ରେୟସାଂ ପ୍ରେଷ୍ଠେ  ଦୂରସ୍ଥେ ଗୋକୁଳ ସ୍ତ୍ରିୟଃ ।**
**ସ୍ମରନ୍ତ୍ୟୋଽଙ୍ଗ ବିମୁହ୍ୟନ୍ତି  ବିରହ-ଉତ୍କଣ୍ଠ ବିହ୍ୱଳାଃ ॥୫॥**

ଉ. ଭଗବାନ କହିଲେ, 'ପ୍ରିୟ ଉଦ୍ଧବ (ଅଙ୍ଗ), ବ୍ରଜବାସୀମାନେ ବିଶେଷତଃ ଗୋପୀମାନେ ମୋର ପ୍ରିୟତମ ଆତ୍ମାଠାରୁ ମଧ ଅଧିକ ପ୍ରିୟତର (ପ୍ରେୟସାଂ ପ୍ରେଷ୍ଠେ) । ସେମାନଙ୍କଠାରୁ ମୁଁ ଦୂରକୁ ଚାଲି ଆସିଛି । ମୋ ବିରହରେ ସେମାନେ ମୋ ରୂପ, ଗୁଣ, ଲୀଳା ଆଦି ସ୍ମରଣ କରି ତୀବ୍ର ବିରହ ଜ୍ୱାଳା ପୀଡ଼ିତା ଓ ବିମୋହିତା । ମୋ ପାଇଁ ଏଇ ଗୋଟିଏ କାମ କରିଦିଅ । ସେମାନଙ୍କୁ ତୁମ ବିଦ୍ୱତା, ପାଣ୍ଡିତ୍ୟ ବଳରେ ବୁଝାଇଦିଅ ମାୟାମୟ ସଂସାରରେ କେହି କାହାର ନୁହେଁ । ସେମାନଙ୍କୁ ମୋତେ ଭୁଲିଯିବାକୁ ଉପଦେଶ ଦିଅ ।'

ପ୍ରଶ୍ନ-୧୦: ଉଦ୍ଧବ ସୂର୍ଯ୍ୟାସ୍ତ ସମୟରେ ପହଞ୍ଚିଗଲେ ନନ୍ଦଗାଁ । ଗୋପାଳମାନେ ଗାଈ ବାଛୁରୀମେଳରେ ହସି ଖେଳି ଫେରୁଥାନ୍ତି । ସହଜେ ତ ଗୋଠ ବାହୁଡ଼ା ବେଳ । ଦୁଗ୍ଧ ଭାରରେ ଗାଈମାନଙ୍କ ସ୍ତନ ଅବନତ । ଗାଈ, ବାଛୁରୀ ସମସ୍ତେ ଘର ମୁହାଁ । ଗୋପୀମାନେ ଧୂପ, ଦୀପ, ଫୁଲମାଳ ଧରି ସ୍ୱାଗତ କରୁଛନ୍ତି ଗୋଧନରୂପୀ ଶ୍ରୀକୃଷ୍ଣଙ୍କୁ । ଉଦ୍ଧବ ପହଞ୍ଚିଲେ ନନ୍ଦଙ୍କ ପ୍ରାସାଦ ସମ୍ମୁଖରେ । ରାଜା ନନ୍ଦ ସ୍ୱୟଂ ଘରୁ ବାହାରି ଆସି(ସମାଗମ୍ୟ) ଉଦ୍ଧବଙ୍କୁ କିଭଳି ସ୍ୱାଗତ କଲେ ?

**ତଂ ଆଗତଂ ସମାଗମ୍ୟ  କୃଷ୍ଣସ୍ୟ-ଅନୁଚରଂ ପ୍ରିୟମ୍ ।**
**ନନ୍ଦଃ ପ୍ରୀତଃ ପରିଷ୍ୱଜ୍ୟ  ବାସୁଦେବ ଧିୟ-ଅର୍ଚ୍ଚୟତ୍ ॥୧୪॥**

ଉ. ରାଜା ନନ୍ଦ ଜାଣିଥିଲେ ଯେ ଉଦ୍ଧବ କୃଷ୍ଣଙ୍କ ପ୍ରିୟ ସଖା (ଅନୁଚର) ବୋଲି । ବହୁତ ଖୁସୀରେ ତାଙ୍କୁ ଆଲିଙ୍ଗନ (ପରିଷ୍ୱଜ୍ୟ) କଲେ । ତାଙ୍କୁ କୃଷ୍ଣ (ବାସୁଦେବ) ଜ୍ଞାନରେ (ଧିୟ) ସାଦର ସତ୍କାର (ଅର୍ଚ୍ଚୟତ୍) ଆଦି କଲେ । ଉତ୍ତମ

କୋଟିର ମିଷ୍ଟାନ୍ନ ଆଦି ପ୍ରସ୍ତୁତ କରି ଭୋଜନ କରାଇଲେ । ତାଙ୍କ ପାଇଁ ନରମ ଶଯ୍ୟାର ବନ୍ଦୋବସ୍ତ କଲେ । ଥକାନ ଦୂର ହେଲା ପରେ (ଗତଶ୍ରମଂ) ହାତ, ପାଦ ଆଉଁସି ଦେଇ ମଥୁରାରେ ଥିବା ପ୍ରିୟଜନମାନଙ୍କର କୁଶଳ ମଙ୍ଗଳ ପୁଚ୍ଛା କଲେ । ପଚାରି ବସିଲେ ଯେ ସତରେ କ'ଣ କୃଷ୍ଣ ତାର ପିତା, ମାତା, ସଖା, ଗୋପୀ, ଗୋପାଳ, ଗୋ, ବତ୍ସା, ଯମୁନା ନଦୀ ଗୋବର୍ଦ୍ଧନ ଗିରି ଓ ବୃନ୍ଦାବନ ଇତ୍ୟାଦି ମନେ ପକାଏ ? 'ପୁଣି ଆସିବି ବୋଲି' ଦେଇଥିବା କଥା କ'ଣ ସେ ପାଳନ କରିବ ? ଆମେ କିନ୍ତୁ କେହି ତା କଥା ଭୁଲି ପାରୁନାହୁଁ । ନଦୀ, ବନ, ଗିରି, ଗୁମ୍ଫା, ସରୋବର ଆଦି ଦେଖିଲେ ଆମେ ସବୁ କୃଷ୍ଣଙ୍କୁ ସର୍ବଦା ଦର୍ଶନ କରୁଛୁ । ଆମ ମନ କୃଷ୍ଣ ତନ୍ମୟ ହୋଇଯାଉଛି ।

ପ୍ରଶ୍ନ-୧୧ : ନନ୍ଦ ଉଦ୍ଧବ ସମ୍ବାଦବେଳେ ମା'ଯଶୋଦାଙ୍କର କି କ୍ରିୟା ପ୍ରତିକ୍ରିୟା ହେଲା ?

**ଯଶୋଦା ବର୍ଣ୍ଣ୍ୟମାନାନି ପୁତ୍ରସ୍ୟ ଚରିତାନି ଚ ।**
**ଶୃଣ୍ୱନ୍ତୀ-ଅଶ୍ରୂଣି-ଅବସ୍ରାକ୍ଷୀତ୍ ସ୍ନେହ ସ୍ନୁତ ପୟୋଧରା ॥୨୮॥**

ଉ. କୃଷ୍ଣ କଥା ଶ୍ରବଣରେ ମାଆ ଯଶୋଦାଙ୍କର ଅଚିନ୍ତ୍ୟ, ଅଦ୍ଭୁତ ପ୍ରତିକ୍ରିୟା ଦର୍ଶନ କଲେ ଉଦ୍ଧବ । ମାଆଙ୍କ ସ୍ତନରୁ ଅବିରତ ଦୁଗ୍ଧ ସ୍ରାବ ହେଲା । ଦୁଇ ଚକ୍ଷୁରୁ ଅଶ୍ରାନ୍ତ ଅଶ୍ରୁଧାରା ବହି ଚାଲିଲା (ଅବସ୍ରାକ୍ଷୀତ) । ସ୍ନେହମୟୀ ଜନନୀର ଜନ୍ମ ସାର୍ଥକ ହେଲା ତାଙ୍କର । କୃଷ୍ଣ କଥା ଶ୍ରବଣର ମାହାତ୍ମ୍ୟ ସେ ସଂସାରକୁ ଜଣାଇ ଦେଇଗଲେ । ଧନ୍ୟ କୃଷ୍ଣ ! ଧନ୍ୟ ତୁମ ଭକ୍ତିମତୀ ଜନନୀ ! ! ଧନ୍ୟ ତୁମ ମାନଙ୍କର ନରଲୀଳା ! !

ପ୍ରଶ୍ନ-୧୨ : କୃଷ୍ଣ ପ୍ରେମର ଶକ୍ତି ସ୍ୱଚକ୍ଷୁରେ ଦର୍ଶନ କରି ଉଦ୍ଧବ କଅଣ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ କି ?

**ଉଦ୍ଧବ ଉବାଚ**

**ନ ମାତା ନ ପିତା ତସ୍ୟ ନ ଭାର୍ଯ୍ୟା ନ ସୁତ-ଆଦୟଃ ।**
**ନ-ଆତ୍ମୀୟୋ ନ ପରଃ ଚ-ଅପି ନ ଦେହୋ ଜନ୍ମ ଏବ ଚ ॥୩୮॥**

ଉ. ସେ ସବୁ କିଛି ବୁଝିଲେ ନି ଉଦ୍ଧବ । ସେ ତ ସହଜେ ଶୁଷ୍କ ଶାସ୍ତ୍ର ପଣ୍ଡିତ । ଚାରି ବେଦମର୍ମଜ୍ଞ ପ୍ରକାଣ୍ଡ ଜ୍ଞାନୀ । କୃଷ୍ଣ ପ୍ରେମ ରାଜ୍ୟ କିନ୍ତୁ ଏକ ଆର୍ଦ୍ର ସରୋବର । ଜ୍ଞାନ ପ୍ରେମ ଉଭୟେ ଈଶ୍ୱରଙ୍କର ରାଜ୍ୟ କିନ୍ତୁ ଉଭୟର ସୀମା ସରହଦ ଇଲାକା ଭିନ୍ନଭିନ୍ନ । ଉଦ୍ଧବ ନନ୍ଦ ଯଶୋଦାଙ୍କ ଆଗରେ ଖୋଲି ବସିଲେ ତାଙ୍କର ଜ୍ଞାନର ପେଟରା । କହିଲେ, ''ହେ ରାଜା ନନ୍ଦ, ହେ ରାଣୀ ଯଶୋଦା, କୃଷ୍ଣଙ୍କୁ ଏଗାର ବର୍ଷ କୋଳେଇ କାଖେଇ ସାନରୁ ବଡ଼ କଲ ସତ । ହେଲେ ତାଙ୍କୁ ଚିହ୍ନିପାରିଲନି । ସେଥିପାଇଁ

ଦୁଃଖ ପାଉଛ ତୁମେ ଦୁହେଁ । କୃଷ୍ଣ ସ୍ୱୟଂ ଭଗବାନ । ଭଗବାନଙ୍କର ପିତା, ମାତା, ପୁତ୍ର, ଭାର୍ଯ୍ୟା, ଶତ୍ରୁ ଓ ମିତ୍ର ଇତ୍ୟାଦି ନଥାନ୍ତି । ତାଙ୍କର ଦେହ ଭାବ, ଜନ୍ମ, ମରଣ ଇତ୍ୟାଦି ଆସିବ କୁଆଡୁ ? ସେ ନିର୍ଗୁଣ । ପୁଣି ସଗୁଣ ହୋଇ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ଆଦି ବୋଲାନ୍ତି । କୃଷ୍ଣ ବଳରାମ ତୁମର ପୁତ୍ର ନୁହନ୍ତି । ଅତଏବ ଭୁଲି ଯାଅ ସେମାନଙ୍କୁ । ତୁମର ସବୁ ଦୁଃଖର ଅନ୍ତ ହେବ । ପରମ କଲ୍ୟାଣ ହେବ । ସୁଖ ସାଗରରେ ବିହାର କରିବ । ଏଇ କଥା ତୁମମାନଙ୍କୁ ବୁଝାଇବାକୁ କୃଷ୍ଣ ମୋତେ ପଠାଇଛନ୍ତି ।''

ନନ୍ଦ ଯଶୋଦାଙ୍କ କୃଷ୍ଣ ପ୍ରେମ ପାଖରେ କିନ୍ତୁ ଉଦ୍ଧବଙ୍କ ଜ୍ଞାନ ହାର ମାନିଲା । ରାଜା ନନ୍ଦ କହିଲେ, ''ହେ ଉଦ୍ଧବ, ମୁଁ ଭାବିଥିଲି ତୁମେ ଦି ଅକ୍ଷର ପାଠ ପଢ଼ିଛ । କୃଷ୍ଣଙ୍କୁ ଚିହ୍ନିଥିବ ବୋଲି । ଏବେ ଦେଖୁଛି ତୁମେ କାଣ୍ଡ ଜ୍ଞାନ ଶୂନ୍ୟ ଏକ ମହାମୂର୍ଖ ମାତ୍ର । ଆମ ପୁଅକୁ ତୁମେ ଭଗବାନ କେମିତି କହୁଛ ? ଭଗବାନ କ'ଣ କେବେ ମିଛ କହନ୍ତି । ଆମ କୃଷ୍ଣ କଞ୍ଚା ମିଛ କହିବାରେ ଓସ୍ତାଦ୍ । ଆହୁରି ଶୁଣିବ ଉଦ୍ଧବ ଭଗବାନଙ୍କୁ କ'ଣ କେବେ ଭୋକ ହୁଏ ? କୃଷ୍ଣଙ୍କୁ ଭୋକ ଶୋଷ ହୁଏ ତ । ଖାଦ୍ୟ ଦେଉ ଦେଉ ତର ସହେନି । ହାଣ୍ଡି, ମାଠିଆ ଭାଙ୍ଗି ପକାଏ । ଭଗବାନ ପରା ନିତ୍ୟ ଆନନ୍ଦମୟ । ସେ କାନ୍ଦିବେ କାହିଁକି ? କୃଷ୍ଣ କିନ୍ତୁ ଲୁହ ବୁହାଇ କଇଁ କଇଁ କାନ୍ଦିବା ଆମେ ସ୍ୱଚକ୍ଷୁରେ ଦେଖିଛୁ । ତୁମେ ତାକୁ କେମିତି କହୁଛ ଭଗବାନ ସେ ?''

ହଁ ଆଉ ଗୋଟେ କଥା ଶୁଣ ଉଦ୍ଧବ । ତୁମେ ପୁଣି କହୁଛ କାହିଁକି କୃଷ୍ଣ ପାଇଁ ଶୋକ କରୁଛ ? ତା ପାଇଁ ଦୁଃଖ କରିବା ଅନୁଚିତ । ମୁଁ ଭାବିଥିଲି କୃଷ୍ଣକୁ ହରାଇ ମୁଁ ଲୁହା ଛୁଞ୍ଚିଟିଏ ହରାଇଛି । ଏବେ ତୁମେ କହୁଛ ସେ ସାମାନ୍ୟ ସଂସାରୀ ପୁଅ ନୁହଁ । ସାକ୍ଷାତ୍ ଭଗବାନ । ତାହାହେଲେ ମୁଁ ବୁଝିଲି ସତରେ ହୀରା ଛୁଞ୍ଚିଟିଏ ହରାଇବସିଛି । ଅତଏବ ଏକଥା ବୁଝିଲା ପରେ ମୋ ଦୁଃଖ କମିବ ନା ବଢ଼ିବ ? ନନ୍ଦ ଯଶୋଦାଙ୍କର କୃଷ୍ଣପ୍ରେମ ଜୁଆରରେ ଉଦ୍ଧବଙ୍କ ଜ୍ଞାନ ପେଟି କାହିଁ କୁଆଡ଼େ ଭାସିଗଲା । ସେ ଏବେ ନିର୍ବାକ, ନିଷ୍ପନ୍ଦ ଓ ନିରୁତ୍ତର । ତିନିହେଁ ଅପେକ୍ଷା କଲେ ପରଦିନ ସୂର୍ଯ୍ୟୋଦୟକୁ ।

# ଅଥ ୪୭ମ ଅଧ୍ୟାୟଃ

## (ଭ୍ରମର ଗୀତ-ଉଦ୍ଧବ ସନ୍ଦେଶ)

ପ୍ରଶ୍ନ-୧୩: ନନ୍ଦ ଯଶୋଦା ଓ ଉଦ୍ଧବଙ୍କ ସହ କୃଷ୍ଣ କଥା ଆଲୋଚନା କରୁ କରୁ ରାତି ଶେଷ ହୋଇଛି । ନନ୍ଦ ଗାଁରେ ନୂତନ ସୂର୍ଯ୍ୟ ଉଦୟ ହୋଇଛନ୍ତି । ଗୋପ ଲଳନାମାନେ ପ୍ରତ୍ୟୁଷରୁ ଯମୁନା ନଦୀରେ ସ୍ନାନ ସାରି ଗୃହକୁ ଫେରୁଛନ୍ତି । ଦେଖୁଛନ୍ତି ନନ୍ଦ ରାଜାଙ୍କ ପ୍ରାସାଦ ଆଗରେ ଉଦ୍ଧବଙ୍କ ସହିତ ଏକ ସୁନ୍ଦର ରଥ । ଉଦ୍ଧବଙ୍କର କି କି ବେଶ ଶୃଙ୍ଗାର ଦର୍ଶନ କରି (ବୀକ୍ଷ) ଗୋପୀମାନେ ତାଙ୍କୁ ପ୍ରଥମେ କୃଷ୍ଣ ହୋଇଥିବେ ବୋଲି ମନେ କଲେ ?

ଶ୍ରୀ ଶୁକ ଉବାଚ

**ତଂ ବୀକ୍ଷ କୃଷ୍ଣ-ଅନୁଚରଂ ବ୍ରଜସ୍ତ୍ରିୟଃ**
**ପ୍ରଲମ୍ବବାହୁଂ ନବକଞ୍ଜ ଲୋଚନମ୍ ।**
**ପୀତାମ୍ବରଂ ପୁଷ୍କର ମାଳିନଂ ଲସତ୍**
**ମୁଖାରବିନ୍ଦଂ ପରିମୃଷ୍ଟ କୁଣ୍ଡଳମ୍ ।।୧।।**

ଉ. ଉଦ୍ଧବଙ୍କର ଆଜାନୁଲମ୍ବିତ ବାହୁ, ସଦ୍ୟ ପ୍ରସ୍ଫୁଟିତ କମଳ ସଦୃଶ ଚକ୍ଷୁ, ପୀତବସ୍ତ୍ର, ଗଳାରେ ପଦ୍ମପୁଷ୍ପର ମାଳ, କମଳ ସଦୃଶ ମୁଖ ଓ କର୍ଣ୍ଣରେ ଶୋଭାୟମାନ ଉଜ୍ଜ୍ୱଳ ସ୍ୱର୍ଣ୍ଣକୁଣ୍ଡଳ ସବୁ ଗୋପୀନାଥଙ୍କର ପ୍ରିୟ ଶୃଙ୍ଗାର ସଂକେତ । ତେଣୁ ଗୋପାଙ୍ଗନାମାନେ ତାଙ୍କୁ ପ୍ରଥମେ କୃଷ୍ଣ ଭାବନା କରି ପରେ ପରେ କୃଷ୍ଣଙ୍କର ସଖା, ଦାସ କିମ୍ବା ଦୂତ (ଅନୁଚର) ବୋଲି ବୁଝିନେଲେ । ଭାବିଲେ କୃଷ୍ଣ ତାଙ୍କର ପ୍ରିୟ ପାର୍ଷଦ ଉଦ୍ଧବଙ୍କୁ ନିଜ ପିତାମାତାଙ୍କ କୁଶଳ ମଙ୍ଗଳ ବୁଝିବା ପାଇଁ ବୋଧେ ପଠାଇଥିବେ । ସନ୍ନ୍ୟାସୀମାନେ ତ ପୁଣି ନିଜ ପିତାମାତାଙ୍କୁ ଭୁଲି ପାରନ୍ତି ନାହିଁ । ଗୋବିନ୍ଦଙ୍କ ସେଇ ଅବସ୍ଥା ହୋଇଥିବ ।

ପ୍ରଶ୍ନ-୧୪: ଗୋପୀମାନେ ବିଚାର କଲେ ସଂସାରର ସକଳ ସମ୍ବନ୍ଧ ସ୍ୱାର୍ଥ ପ୍ରଣୋଦିତ । ପୁରୁଷ ସ୍ତ୍ରୀ ସଂପର୍କ, ଫୁଲ ଭ୍ରମର ସମ୍ବନ୍ଧ, ଧନିକ ବ୍ୟକ୍ତି ସହିତ ଗଣିକାର

ସଂପର୍କ ଭଳି ରାଜା ପ୍ରଜାର ଭଲ ପାଇବା ଠିକ୍ ଏକା ପ୍ରକାରର । ଗୁରୁ ଶିଷ୍ୟ ଓ ଯଯମାନ ପୁରୋହିତଙ୍କ ପ୍ରେମ ସମ୍ବନ୍ଧ ମଧ୍ୟ ଏହି ଶ୍ରେଣୀର । ଭୌତିକ ସଂସାରରେ ମନୁଷ୍ୟ ଏକ ସାମାଜିକ ପ୍ରାଣୀ ଭାବରେ ଅନେକ ସମ୍ବନ୍ଧରେ ବନ୍ଧା ହେବାକୁ ବାଧ୍ୟ । ତେବେ ପଶୁ ପକ୍ଷୀ ମାନଙ୍କର ସମ୍ବନ୍ଧ କ'ଣ ସ୍ୱାର୍ଥ ମୂଳକ କି ?

**ଖଗା ବୀତଫଳଂ ବୃକ୍ଷଂ ଭୁକ୍ତ୍ୱା ଚ-ଅତିଥୟୋ ଗୃହମ୍ ।**
**ଦଗ୍ଧଂ ମୃଗାଃ ତଥା-ଅରଣ୍ୟଂ ଜାରୋ ଭୁକ୍ତ୍ୱା ରତାଂ ସ୍ତ୍ରିୟମ୍ ।।୮।।**

ଉ. ଏ ବିଷୟରେ ଅସଂଖ୍ୟ ଉଦାହରଣ ମଧ୍ୟରୁ ଆହୁରି ଚାରିଟିର ଉଲ୍ଲେଖ କରିଛନ୍ତି ଗୋପୀମାନେ । ବୃକ୍ଷକୁ ଭଲ ପାଆନ୍ତି ପକ୍ଷୀମାନେ ଯଦି ବୃକ୍ଷରେ ତାଙ୍କ ପାଇଁ ଫଳଥାଏ । ଫଳ ସରିଗଲେ ଛାଡ଼ି ପଳାନ୍ତି । ଅତିଥିମାନେ ଗୃହକୁ ଆସନ୍ତି ନିଜ ସ୍ୱାର୍ଥ ସିଦ୍ଧି ଲାଗି । ଭୋଜନ କରିସାରିଲେ ଯିବାକୁ ତରତର ହୁଅନ୍ତି । ଅରଣ୍ୟରେ ଡ଼ାଳପତ୍ର ଥିଲେ ହରିଣମାନେ ଖୁସିରେ ଅରଣ୍ୟକୁ ନିଜର ଭାବୁଥାନ୍ତି । ଅଗ୍ନିରେ ସେହି ସେହି ବୃକ୍ଷଲତା ଜଳିଗଲେ ତାକୁ ଛାଡ଼ି ଅନ୍ୟ ଅରଣ୍ୟକୁ ଚାଲିଯାଆନ୍ତି । ଠିକ୍ ସେହି ନ୍ୟାୟରେ ଅସତୀ ନାରୀ ଓ ଜାରପତିଙ୍କର ସମ୍ବନ୍ଧ ମଧ୍ୟ କେବଳ ସ୍ୱାର୍ଥ ଉପରେ ପ୍ରତିଷ୍ଠିତ । ଏଠାରେ ଗୋପଲଳନାମାନେ ବ୍ୟଙ୍ଗ ରସରେ ଗୋପୀ ଗୋପୀନାଥ ଅଲୌକିକ ପ୍ରେମମୟ ସମ୍ବନ୍ଧକୁ ମଧ୍ୟ ପ୍ରଚ୍ଛନ୍ନ ସଙ୍କେତ କରିଛନ୍ତି ।

ପ୍ରଶ୍ନ-୧୫: ବ୍ରଜମଣ୍ଡଳରେ ଥିବା ଗୋପ ଲଳନାମାନେ ପ୍ରାୟତଃ ସମସ୍ତେ ବିବାହ କରିଥିଲେ । ଅନେକ ସନ୍ତାନ ସନ୍ତତିଙ୍କର ମା'ମଧ୍ୟ ହୋଇଗଲେ । କିନ୍ତୁ ମନ ତାଙ୍କର ଘର ସଂସାରରେ ଲାଗୁ ନଥିଲା । ସେ ମନ ଦେଇଥିଲେ ମନମୋହନ କୃଷ୍ଣଙ୍କୁ । କୃଷ୍ଣ ଦୂତ ଉଦ୍ଧବଙ୍କୁ ଦେଖୁ ଦେଖୁ କୃଷ୍ଣ ଲୀଳାରେ ସେମାନେ କାହିଁକି ବୁଡ଼ିଗଲେ ।

**କାଚିତ୍ ମଧୁକରଂ ଦୃଷ୍ଟ୍ୱା ଧ୍ୟାୟନ୍ତୀ କୃଷ୍ଣ ସଙ୍ଗମମ୍ ।**
**ପ୍ରିୟ ପ୍ରସ୍ଥାପିତଂ ଦୂତଂ କଳ୍ପୟିତ୍ୱା-ଇଦଂ ଅବ୍ରବୀତ୍ ।।୧୧।।**

ଉ. ଗୋପୀଶ୍ରେଷ୍ଠା ଶ୍ରୀରାଧା (କାଚିତ୍) କୃଷ୍ଣ ଧ୍ୟାନ କରୁ କରୁ ଦେଖିଲେ ପାଖରେ କଳା ରଙ୍ଗର ଭ୍ରମରଟିଏ (ମଧୁକରଂ) । ଭାବିଲେ ଭ୍ରମରର ଅନ୍ୟନାମ ମଧୁପ । ଆମ କୃଷ୍ଣ ମଧ୍ୟ ପ୍ରେମରସପାନକାରୀ ମଧୁପ ବା ଭ୍ରମର । ଏବେ ମଥୁରା ରାଜ୍ୟର ଅଧିପତି ବା ମଧୁପତି । ଆମେ ଗୋପୀମାନେ ଓ ମଥୁରା ନାରୀମାନେ ସମସ୍ତେ ଭିନ୍ନ ଭିନ୍ନ ରକମର ପୁଷ୍ପ । ଏ ଭ୍ରମରର ମୁଖରେ ଓ ପାଦରେ ପୁଷ୍ପରେଣୁ ଦୃଶ୍ୟମାନ । ଏ ତେବେ ଆମ କୃଷ୍ଣଙ୍କ ପ୍ରତିନିଧି ବା ପ୍ରେମ ଦୂତ ବ୍ୟତୀତ ଅନ୍ୟ କେହି

ନୁହେଁ । ପାଖରେ ଦଣ୍ଡାୟମାନ ଉଦ୍ଧବ କୃଷ୍ଣଙ୍କ ଶୃଙ୍ଗାର ଧାରଣ କରି ଦୂତ ରୂପରେ ବିଦ୍ୟମାନ ଥିବା କଥାକୁ ଏ ଭାବନା ସଙ୍କେତ କରୁଛି ।

ପ୍ରଶ୍ନ-୧୬: ପରବର୍ତ୍ତୀ ଦଶ ଶ୍ଳୋକରେ ଶ୍ରୀରାଧା ରାଣୀଙ୍କ ଗଭୀର ଦିବ୍ୟ କୃଷ୍ଣପ୍ରେମ ଭାବନାକୁ ବ୍ୟକ୍ତ କରିବାକୁ ପରୀକ୍ଷିତଙ୍କୁ କହୁଛନ୍ତି ବକ୍ତା ଶୁକଦେବଜୀ । ଏହା ହିଁ ଭାଗବତ ଗ୍ରନ୍ଥଙ୍କର ପ୍ରସିଦ୍ଧ ଭ୍ରମର ଗୀତ ଯାହା ପ୍ରଜଳ୍ପ, ପରିଜଳ୍ପ, ଉଜ୍ଜଳ୍ପ, ସଂଜଳ୍ପ, ଅବଜଳ୍ପ, ଅଭିଜଳ୍ପ, ଅଜଳ୍ପ, ପ୍ରତିଜଳ୍ପ ଓ ଚିତ୍ରଜଳ୍ପ ନାମରେ ନାମିତ । ପ୍ରଥମ ଶ୍ଳୋକ ପ୍ରଜଳ୍ପ ମାଧ୍ୟମରେ ଶ୍ରୀମତୀ ବୃଷଭାନୁ ନନ୍ଦିନୀ କିଭଳି ଶାଣିତ ବ୍ୟଙ୍ଗ ଶବ୍ଦ ଜାଲରେ ନିଜ ମନୋଭାବକୁ ବ୍ୟକ୍ତ କରିଛନ୍ତି ?

ଗୋପୀ ଉବାଚ

**ମଧୁପ କିତବ ବନ୍ଧୋ ମା ସ୍ପୃଶ-ଅଙ୍ଘ୍ରିଂ ସପତ୍ନ୍ୟାଃ**
**କୁଚ ବିଲୁଳିତ ମାଳା କୁଙ୍କୁମ ଶ୍ମଶ୍ରୁଭିଃ ନଃ ।**
**ବହତୁ ମଧୁପତିଃ ତତ୍ ମାନିନୀନାଂ ପ୍ରସାଦଂ**
**ଯତ୍ ଭରସି ବିଡ଼ମ୍ବ୍ୟଂ ଯସ୍ୟ ଦୂତଃ ତ୍ୱଂ ଇଦୃକ୍ ॥୧୨॥**

ଉ. ସଂସ୍କୃତ ବ୍ୟାକରଣର ବ୍ୟାଜସ୍ତୁତି ଅଳଙ୍କାରର ଏହା ଏକ ସୁନ୍ଦର ଦୃଷ୍ଟାନ୍ତ । ଉପରୁ ଦେଖିଲେ ଜଣାଯାଏ ଏହା କୃଷ୍ଣଙ୍କୁ ନିନ୍ଦା କରିବାକୁ କୁହାଯାଇଛି କିନ୍ତୁ ବାସ୍ତବରେ ଏହା ତାଙ୍କର ପ୍ରଶଂସା (ସ୍ତୁତି) ଲାଗି ଅଭିପ୍ରେତ । ଶ୍ରୀମତୀ ଭ୍ରମର ବା ଉଦ୍ଧବଙ୍କୁ ଲକ୍ଷ୍ୟ କରି କହୁଛନ୍ତି, ''ହେ, କୃଷ୍ଣ ଦୂତ, ତୁମେ ଜଣେ କପଟୀ ମିତ୍ର (କିତବ ବନ୍ଧୋ) । କୃଷ୍ଣ ଆମକୁ ତ୍ୟାଗ କରି ମଥୁରା ନାରୀଙ୍କର (ସପତ୍ନ୍ୟାଃ) ଅଙ୍ଗ ସଙ୍ଗ କରୁଛନ୍ତି । ସେମାନଙ୍କର ଦେହର ଅଙ୍ଗରାଗ, ବକ୍ଷସ୍ଥିତ ଫୁଲମାଳ, କୁଙ୍କୁମର ସଙ୍କେତ ତୁମ ଠାରେ ଆମେ ଲକ୍ଷ୍ୟ କରୁଛୁ । କୃଷ୍ଣଙ୍କ ସହିତ ଅଙ୍ଗସଙ୍ଗ କରିବା କାରଣରୁ ଏସବୁ ଆମର ସପତ୍ନୀ ସଦୃଶ ।'' ଏହା ପ୍ରେମିକ ଶ୍ରେଷ୍ଠ କୃଷ୍ଣଙ୍କ ପ୍ରତି ଦ୍ୱେଷ, ଅଭିମାନର ସୂଚକ ଓ ମଥୁରାନାରୀଙ୍କ ପ୍ରତି ଈର୍ଷାର ଦ୍ୟୋତକ । ଗୋପାଙ୍ଗନାମାନେ ସାମୂହିକ ଭାବରେ (ନଃ) ମଧୁପକୁ ସେମାନଙ୍କ ଚରଣ ସ୍ପର୍ଶ କରିବାକୁ ମନା କରୁଛନ୍ତି (ମା ସ୍ପୃଶ-ଅଙ୍ଘ୍ରିଂ) । କୃଷ୍ଣ ଦୂତଙ୍କୁ ମଥୁରା ଫେରିଯିବାକୁ ନିବେଦନ କରୁଛନ୍ତି । କୃଷ୍ଣ ଲୀଳା ରସ ସ୍ମୃତି ଚାରଣ ନ କରାଇବାକୁ ପ୍ରାର୍ଥନା କରୁଛନ୍ତି । ବାସ୍ତବରେ କିନ୍ତୁ ସେମାନେ ସେଇ କୃଷ୍ଣ ଲୀଳା ବାହୁନି ବାହୁନି କାନ୍ଦିବାରେ ଦିବ୍ୟ ଅତିଦିବ୍ୟ ଆନନ୍ଦ ପାଉଛନ୍ତି ।

ପ୍ରଶ୍ନ-୧୭: ଶ୍ରୀକୃଷ୍ଣଙ୍କର ପ୍ରେମ ଦୂତ ଉଦ୍ଧବଜୀ ଗୋପୀମାନଙ୍କୁ ସାନ୍ତ୍ୱନା ଦେବା ପାଇଁ ନିଜର ଜ୍ଞାନର ପୁଟୁଳି ଖୋଲି କ'ଣ ସବୁ କହିଲେ ?

ଉଦ୍ଧବ ଉବାଚ

**ଅହୋ ଯୂୟଂ ସ୍ମ ପୂର୍ଣ୍ଣ-ଅର୍ଥା ଭବତ୍ୟୋ ଲୋକ ପୂଜିତାଃ ।**
**ବାସୁଦେବେ ଭଗବତି ଯାସାଂଇତି-ଅର୍ପିତଂ ମନଃ ॥୨୩॥**

ଉ. କହିଲେ, ‘‘ହେ ବ୍ରଜାଙ୍ଗନାଗଣ, ନିଃସନ୍ଦେହ(ଅହୋ) ତୁମେସବୁ ଗୋପୀମାନେ ମହା ଭାଗ୍ୟବତୀ । ତୁମ ମନୁଷ୍ୟ ଦେହ ଧାରଣ ସଂପୂର୍ଣ୍ଣ ସଫଳ ହୋଇଛି । ତୁମେ ବାସୁଦେବ ଭଗବାନ କୃଷ୍ଣଙ୍କୁ ତୁମର ମୂଲ୍ୟବାନ ମନଟିମାନ ଅର୍ପଣ କରିପାରିଛ । ସୁତରାଂ ତୁମେ କାଳେ କାଳେ ଜଗତ୍‌ବନ୍ଦ୍ୟା ହୋଇ ରହିବ । ପୂଜା ପାଇବ ।’’

ପ୍ରଶ୍ନ-୧୮ : ବୈଦିକ ସାହିତ୍ୟରେ ଦାନ, ବ୍ରତ, ତପ, ହୋମ, ଜପ, ସ୍ୱାଧ୍ୟାୟ ଇତ୍ୟାଦି ସକଳ ଶ୍ରେୟ ସାଧନାର ଫଳକୁ କୃଷ୍ଣଭକ୍ତି ପ୍ରାପ୍ତି ବୋଲି କୁହାଯାଇଛି ଅବଶ୍ୟ । ତେବେ ଗୋପୀମାନଙ୍କର କେଉଁ ବିଶେଷ ସାଧନା ଯୋଗୁଁ ସେମାନଙ୍କର ସୌଭାଗ୍ୟକୁ (ଦିଷ୍ଟ୍ୟା) ପ୍ରଶଂସା କଲେ ମହାଜ୍ଞାନୀ ଉଦ୍ଧବ ?

**ଦିଷ୍ଟ୍ୟା ପୁତ୍ରାନ୍ ପତୀନ୍ ଦେହାନ୍ ସ୍ୱଜନାନ୍ ଭବନାନି ଚ ।**
**ହିତ୍ୱା ବୃଣୀତ ଯୂୟଂ ଯତ୍ କୃଷ୍ଣ-ଆଖ୍ୟଂ ପୁରୁଷଂ ପରମ୍ ॥୨୬॥**

ଉ. ଉପର ବର୍ଣ୍ଣିତ ସାଧନା ଗୁଡ଼ିକ ସନ୍ନ୍ୟାସୀମାନେ ଦେହ ଗୃହ ଆସକ୍ତି ତ୍ୟାଗ କରି ସାଧନା କରିଥାଆନ୍ତି । ନଚେତ ଦେହ, ଗୃହ ସଂସାରର ଆସକ୍ତି ସନ୍ନ୍ୟାସୀଙ୍କୁ ପଳ ପଳ କରି ଘୋଷାରିଥାଏ । ସାଧକ ସେହି ଆସକ୍ତି ଓ ଅହଂକାର କବଳରେ ପଡ଼ି ତ୍ରାହି ତ୍ରାହି ରଡ଼ି ଛାଡ଼ିବାକୁ ବାଧ । ଗୋପ ଲଳନାମାନେ ପତି, ପୁତ୍ର, ବନ୍ଧୁ, ଦେହ, ଗୃହ(ଭବନାନି) ସବୁର ଆସକ୍ତି ତ୍ୟାଗ କରି ଗୋଟାସୁଦ୍ଧା ଗୃହରେ ଥାଇ ଗୃହିଣୀ ବୋଲାଇ ପରମ ପୁରୁଷ ଶ୍ରୀକୃଷ୍ଣ ପ୍ରେମ ପ୍ରାପ୍ତ ହେବା କ’ଣ କମ୍ ଗୌରବର କଥା ।

ପ୍ରଶ୍ନ-୧୯ : ନନ୍ଦଗାଓଁରେ କୃଷ୍ଣଙ୍କ ବିରହରେ ମଧ୍ୟ କୃଷ୍ଣଭକ୍ତ ହୃଦୟରେ କୃଷ୍ଣପ୍ରେମ ଲବାଲବ୍ ଭରି ରହିଥିବା ଦେଖି ଉଦ୍ଧବ ଆଶ୍ଚର୍ଯ୍ୟ ସାଗରରେ ବୁଡି ଯାଇଛନ୍ତି । ବର୍ତ୍ତମାନ ସେ ନିଜର ପ୍ରଭୁ ଓ ଗୋପୀମାନଙ୍କ ପ୍ରେମିକ କୃଷ୍ଣଙ୍କ ସନ୍ଦେଶ ପତ୍ର ପଢ଼ିବାକୁ ନିବେଦନ କରିଛନ୍ତି । ଭଗବାନ ନଅ ଶ୍ଳୋକରେ (୨୯ଶ-୩୭ଶ)ପ୍ରେମ ସନ୍ଦେଶ ପଠାଇଛନ୍ତି । ଗୋପୀମାନେ ଯେହେତୁ ଟିପ ଦେଉଥିବା ନିରକ୍ଷର ଭଟ୍ଟାଚାର୍ଯ୍ୟ ତାଙ୍କୁ ଚିଠିଟିଏ ମଧ୍ୟ ପଢ଼ି ଆସେନା । ସେଭଳି ପରିସ୍ଥିତିରେ ପଡ଼ି ଉଦ୍ଧବ ଚିଠିଟି (ଲିଖିତ କି ମୌଖିକ ପଣ୍ଡିତ ମାନଙ୍କର ବିବାଦୀୟ) ପଢ଼ି କ’ଣ ବୁଝାଇଲେ ଗୋପୀମାନଙ୍କୁ ଚିଠିର ଅର୍ଥ ?

ଶ୍ରୀ ଭଗବାନ ଉବାଚ

**ଭବତୀନାଂ ବିୟୋଗୋ ମେ ନ ହି ସର୍ବ-ଆତ୍ମନାଂ କ୍ୱଚିତ ।**
**ଯଥା ଭୂତାନି ଭୂତେଷୁ ଖଂ ବାୟୁ-ଅଗ୍ନିଃ ଜଳଂ ମହୀ ।**
**ତଥା-ଅହଂ ଚ ମନଃ ପ୍ରାଣ ଭୂତ-ଇନ୍ଦ୍ରିୟ ଗୁଣ-ଆଶ୍ରୟଃ ।।୨୯।।**

ଉ. ଭଗବାନ ପ୍ରେମର ଭାଷାରେ ଭାବପୂର୍ଣ୍ଣ ସନ୍ଦେଶ ପଠାଇଛନ୍ତି । ଉଦ୍ଧବଙ୍କୁ ପ୍ରେମ ଜଗତର ଭାଷା ପଇଟିଲାନି । ଚଷୁକୁଟା ଶବ୍ଦ ଅର୍ଥ ବୁଝାଇଲେ ଗୋପୀଙ୍କୁ । ଜୀବମାନଙ୍କ ଭୌତିକ ଦେହ, ମନ, ବୁଦ୍ଧି ସବୁ ତ୍ରିଗୁଣାତ୍ମିକ ପ୍ରକୃତିରେ ଗଢ଼ା । ପ୍ରକୃତିକୁ ଛାଡ଼ି ଜୀବମାନେ ରହିବା ଅସମ୍ଭବ । ସେହି ନ୍ୟାୟରେ ଗୋପୀମାନଙ୍କର ମନ, ବୁଦ୍ଧି ଆଦି ସବୁ ନିଜ ମଧ୍ୟରେ କୃଷ୍ଣ ସ୍ୱୟଂ ବିରାଜମାନ । ସେମାନେ କୃଷ୍ଣ ବିୟୋଗିନୀ ହେବେ କେମିତି ? କିଟିମିଟିଆ ଅଡୁଆ ଅର୍ଥ ଶ୍ରବଣ କରୁ କରୁ ହସ ମାଡୁଥାଏ ଗୋପୀଗଣଙ୍କୁ । ଗୋପୀଙ୍କୁ ଛାଡ଼ି ଗୋବିନ୍ଦ ବିରହପୀଡ଼ା ପାଉଛନ୍ତି ଏତିକି ଜାଣିବା କୃଷ୍ଣ ପ୍ରେମିକାଙ୍କ ପାଇଁ ଯଥେଷ୍ଟ । କ'ଣ ମିଳିବ ଏତେ ସେତେ ବର୍ଣ୍ଣନାରୁ ।

ପ୍ରଶ୍ନ-୨୦: ଉଦ୍ଧବ ଜ୍ଞାନମାର୍ଗୀ ସାଧକ । ଜ୍ଞାନୀମାନଙ୍କର ଉର୍ବର ମସ୍ତିଷ୍କ ସର୍ବଦା ଆତ୍ମା କୈନ୍ଦ୍ରିକ । ଉଦ୍ଧବ ଆତ୍ମା ବିଷୟରେ କୃଷ୍ଣ ପ୍ରେମିକାମାନଙ୍କ ପାଖରେ କି ବ୍ୟାଖ୍ୟାନ କଲେ ?

**ଆତ୍ମା ଜ୍ଞାନମୟଃ ଶୁଦ୍ଧୋ ବ୍ୟତିରିକ୍ତୋଽଗୁଣ-ଅନ୍ୱୟଃ ।**
**ସୁଷୁପ୍ତି ସ୍ୱପ୍ନ ଜାଗ୍ରଦ୍‌ଭିଃ ମାୟା ବୃତ୍ତିଭିଃ ଈୟତେ ।।୩୧।।**

ଉ. ଉଦ୍ଧବ ବୁଝାଇଲେ ଯେ ଆତ୍ମା ଜ୍ଞାନ ସ୍ୱରୂପ ଓ ଶୁଦ୍ଧ । ଦେହଠାରୁ ପୃଥକ୍ (ଈୟତେ) ହୁଏ ସୁଷୁପ୍ତି, ସ୍ୱପ୍ନ ଓ ଜାଗ୍ରତ ଚେତନର ତିନି ଅବସ୍ଥାରେ । ନିଦ୍ରାରୁ ଉଠିଲେ ଜଣେ ଯେପରି ସ୍ୱପ୍ନର ଅନୁଭବକୁ ମିଥ୍ୟା ଭାବୁଥାଏ କିନ୍ତୁ ବାସ୍ତବରେ ତାହା ମିଥ୍ୟା ନୁହେଁ । ଆତ୍ମାଙ୍କର ତାହା ଏକ ସ୍ୱତନ୍ତ୍ର ସତ୍ୟ ଅନୁଭବ ମାତ୍ର ।

ସଂସାରର ସକଳ ନଦ ନଦୀ ଶେଷରେ ନିଜ ନାମ ରୂପକୁ ହରାଇ ଆନନ୍ଦ ପ୍ରାପ୍ତ ହୁଅନ୍ତି ସମୁଦ୍ରରେ ମିଶିଲେ । ସେହି ନ୍ୟାୟରେ ବୈଦିକ, ଯୋଗ, ସାଂଖ୍ୟ ଶାସ୍ତ୍ର ଆଦି ସକଳ ସାଧନା ଟାଣନ୍ତି ସାଧକଙ୍କୁ ଏହି ଆତ୍ମାଙ୍କୁ (କୃଷ୍ଣଙ୍କୁ) ଅନୁଭବ କରିବାକୁ ।

ପ୍ରଶ୍ନ-୨୧: ପ୍ରେମାସ୍ପଦ ଠାରୁ ଦୂରତା କମ ରହିଲେ ପ୍ରେମିକା ଆନନ୍ଦିତ ହୁଅନ୍ତି । ଏ ସ୍ଥଳରେ ଭଗବାନ ଭକ୍ତ ଗୋପୀ ଗୋପାଳମାନଙ୍କଠାରୁ ଦୂରକୁ ଯିବାରେ ପ୍ରେମର ମାତ୍ରା କମିଯିବା ଅସମ୍ଭବ ବୋଲି ଠାକୁରଜୀ କେମିତି ସାବ୍ୟସ୍ତ କଲେ ?

**ଯତ୍ ତୁ-ଅହଂ ଭବତୀନାଂ ବୈ ଦୂରେ ବର୍ତ୍ତେ ପ୍ରିୟୋ ଦୃଶାମ୍ ।**
**ମନସଃ ସନ୍ନିକର୍ଷ-ଅର୍ଥଂ ମତ୍ ଅନୁଧ୍ୟାନ କାମ୍ୟୟ ॥୩୪॥**

ଉ. ଭଗବାନ ଦୂରରେ ରହିବା ବିଷୟରେ ସଫେଇ ଦେଇ କହୁଛନ୍ତି, ''ହେ ଗୋପାଙ୍ଗନା ଗଣ, ମୁଁ ତୁମମାନଙ୍କ ଠାରୁ (ଭବତୀନାଂ) ଦୂରକୁ ଆସିବା ଓ ତୁମମାନଙ୍କୁ ପାଖକୁ ନ ଆଣିବାର ଅସଲି କାରଣଟି ଶୁଣ । ତୁମମାନଙ୍କର ନିର୍ମଳ ମନକୁ ଆହୁରି ଅଧିକରୁ ଅଧିକ ଆକର୍ଷଣ କରିବା ମୋର ଉଦ୍ଦେଶ୍ୟ । ତୁମମାନେ ଜାଣି ରଖ ଯେ ପ୍ରିୟ ବସ୍ତୁ ପାଖରେ ଥିଲେ ଖାଲି ଆଖିରେ ଥାଆନ୍ତି ସିନା ହୃଦୟରେ ନ ଥାଆନ୍ତି । ଅଥଚ ସେଇ ବସ୍ତୁ ଦୂରରେ ରହିଲେ ମନରେ, ହୃଦୟରେ ସେ ବିଷୟର ସ୍ମୃତି ଚାରଣରେ ନିତ୍ୟ ନିରନ୍ତର ଭାବନା ହେଉଥାଏ । ମୁଁ ତୁମଠାରୁ ଭୌଗୋଳିକ ଜ୍ଞାନରେ ଦୂରରେ ଥିଲେ ମଧ୍ୟ ଆଧ୍ୟାତ୍ମ୍ୟରେ ସଦା ସର୍ବଦା ତୁମ ପାଖେ ପାଖେ ଅଛି ।''

ପ୍ରଶ୍ନ-୨୨: ଭଗବାନ ଗୋପୀମାନଙ୍କୁ ଏ ବିଷୟରେ ସୁନ୍ଦର ଦୃଷ୍ଟାନ୍ତଟିଏ ମଧ୍ୟ ଦେଇଛନ୍ତି । ରାସଲୀଳା ସମୟରେ ଗୋପୀଟିଏ ନିଜ ପତିଙ୍କ ବାରଣ ହେତୁ ଆସିପାରିଲେନି । କୃଷ୍ଣ ଧ୍ୟାନ କରି କରି ନିଜ ଦେହ ତ୍ୟାଗ କରିଦେଲେ । ତାଙ୍କର ଆଧ୍ୟାତ୍ମ ଦେହ କଅଣ ଆସି ରାସକ୍ରୀଡ଼ା ଭୂମିରେ ହାଜର ହୋଇଥିଲା କି ?

**ଯା ମୟା କ୍ରୀଡ଼ିତା ରାତ୍ର୍ୟାଂ ବନେଽସ୍ମିନ୍ ବ୍ରଜ ଆସ୍ଥିତାଃ ।**
**ଅବଲବ୍ଧ ରାସାଃ କଲ୍ୟାଣ୍ୟୋ ମାଂ ଆପୁଃ ମଦ୍‌ବୀର୍ଯ୍ୟ ଚିନ୍ତୟା ॥୩୭॥**

ଉ. ହଁ ତୁରନ୍ତ ହାଜର ହୋଇଗଲା । ସେ ଗୋପୀ ରାସଲୀଳାର ଭରପୂର ଆନନ୍ଦ ପ୍ରାପ୍ତ ହୋଇଥିଲେ (ଆପୁଃ) । ଆଦୌ ଲୀଳା ପ୍ରବେଶରୁ ବଞ୍ଚିତ ହେଲେନି (ଅବଲବ୍ଧ ରାସାଃ) । ଏ ଅଦ୍ଭୁତ ଘଟଣା ଗୋପୀମାନଙ୍କୁ ମଧ୍ୟ ଜଣାଥିଲା । ସେମାନେ ବୁଝିଗଲେ କୃଷ୍ଣଙ୍କ ଲୀଳାର ମାହାତ୍ମ୍ୟ ଚିନ୍ତନରେ(ମଦ୍ ବୀର୍ଯ୍ୟ ଚିନ୍ତୟା) କିସ ପୁଣି ଦେଖା ନଯାଏ ।

ଗୋପାଙ୍ଗନାମାନେ କୃଷ୍ଣ ଲୀଳା ସ୍ମରଣ କରି ବର୍ତ୍ତମାନ ଅତୀବ ପ୍ରସନ୍ନ ହୋଇଗଲେ । କହିଲେ, ''ଉଦ୍ଧବ, ବଡ଼ ଭାଗ୍ୟର କଥା ଯେ ଦୁଷ୍ଟ କଂସର ମୃତ୍ୟୁ ହୋଇଛି । ମଥୁରାବାସୀ ଖୁସିରେ ରହିବେଣି । ଚତୁର ମଥୁରା ରମଣୀମାନେ କୃଷ୍ଣ ପ୍ରେମରେ ଉବୁଟୁବୁ ହେଉଥିବେ । କୃଷ୍ଣ ତ ରତି ପଣ୍ଡିତ । ସେମାନଙ୍କ କଥାରେ କୃଷ୍ଣ କାହିଁକି ଅବା ବାନ୍ଧି ହୋଇଯାଇ ନ ଥିବେ । ସର୍ବଦା ନ ହେଲେ ମଧ୍ୟ କୃଷ୍ଣ କ'ଣ ଆମ କଥା କେବେ ବା କେବଳ କେମିତି ମନେ ପକାନ୍ତି ? ଅପାସୋରା ରାସକ୍ରୀଡ଼ା ସ୍ମରଣ କରନ୍ତି କି ସେ ? ସେ ଏବେ ବିବାହ କରିବେ । ଏବେ ସେ ଲକ୍ଷ୍ମୀପତି ନାରାୟଣ,

ପରମ ପୁରୁଷ ଆପ୍ତକାମ, ଆତ୍ମାରାମ ଓ ପୂର୍ଣ୍ଣକାମ । ଆମ ପାଖକୁ କାହିଁକି ଆଉ ଆସିବେ ?''

ପ୍ରଶ୍ନ-୨୩: ଶ୍ରୀକୃଷ୍ଣ ରସମୟ ଠାକୁର । ରସିକ ଶେଖର । ତାଙ୍କ ବାଙ୍କ ଚାହାଣୀ, ତ୍ରିଭଙ୍ଗୀ ଠାଣି, ମୋହନ ରୂପ, ମଧୁର ବଚନ ସବୁ ରସମୟ । ଲୀଳା କଥା କହିବା କିସ ? ବୃନ୍ଦାବନର ଏ ବନଭୂମି, ଯମୁନା ନଦୀ, ଗୋବର୍ଦ୍ଧନ ପର୍ବତ, ବୃକ୍ଷ, ଲତା, ପଶୁ, ପକ୍ଷୀ ଓ ବୃନ୍ଦାବନର ରଜ କଣ ମଧ୍ୟ ତାଙ୍କ ଠାରୁ ରସ ଲୁଟୁଥିଲେ । ଗୋବିନ୍ଦ ସିନା ଦୂରେଇ ଯାଇଛନ୍ତି ହେଲେ ତାଙ୍କ ଲୀଳା ସ୍ମରଣ କରି ଗୋପାଙ୍ଗନାମାନେ ସମସ୍ତେ ଏବେ ମଧ୍ୟ ଆନନ୍ଦିତ । ଗୋପୀମାନେ କୃଷ୍ଣଙ୍କୁ ବରଂ ଛାଡ଼ି ରହିପାରିବେ ମାତ୍ର କୃଷ୍ଣ କଥା, କୃଷ୍ଣ ଲୀଳା ଭୁଲିରହିବା ଅସମ୍ଭବ ବୋଲି ସେମାନେ କାହିଁକି ଉଦ୍ଧବଙ୍କୁ କହିଲେ ?

ଗୋପ୍ୟ ଉଚୁଃ

**ଗତ୍ୟା ଲଳିତ-ଉଦାର ହାସ ଲୀଳା-ଅବଲୋକନୈଃ ।**
**ମାଧ୍ୱା ଗିରା ହୃତଧିୟଃ କଥଂ ତଂ ବିସ୍ମରାମହେ ॥୫୧॥**

ଉ. ଗୋପ ଲଳନାମାନେ କହିଲେ, ''ଉଦ୍ଧବଜୀ ! କୃଷ୍ଣ ତାଙ୍କର ମଧୁର ଢ଼ଙ୍ଗ ଆକର୍ଷକ ଓ ଉଦାର ସ୍ମିତ ହସ, ଚପଳ ଚିତ୍‌ବନ (ଅବଲୋକନୈଃ) ମଧୁର ବାଣୀ ବିଳାସ (ମାଧ୍ୱା ଗିରା) ଆମ ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ସବୁକୁ ଚୋରାଇ ନେଇଛନ୍ତି । ସୁତରାଂ ଆମେ କୃଷ୍ଣ କଥା ଓ କୃଷ୍ଣ ଲୀଳା ସବୁକୁ ଭୁଲିପାରିବୁ କିପରି ?''

ପରିଶେଷରେ କୃଷ୍ଣ ଲୀଳା ସ୍ମରଣରେ ଗୋପୀମାନଙ୍କ ବିରହ ଜ୍ୱର ପ୍ରଶମିତ ହୁଅନ୍ତେ ସେମାନେ କୃଷ୍ଣ ଦୂତ ଉଦ୍ଧବଜୀଙ୍କର ପୂଜନ କଲେ । ଭାବିଲେ ଉଦ୍ଧବ ନିଶ୍ଚୟ କୃଷ୍ଣଙ୍କର ଏକ ଅଭିନ୍ନ ଅଂଶ । ଉଦ୍ଧବ ଏଣିକି କେବଳ କୃଷ୍ଣ କଥା ଶ୍ରବଣ କୀର୍ତ୍ତନ କଲେ । ଆଠଦିନ ପାଇଁ ଆସି ଆଠମାସ କାଳ ରହିଗଲେ ବୃନ୍ଦାବନରେ । କୃଷ୍ଣଲୀଳାରେ ମଜ୍ଜନ କରିବାରୁ ବ୍ରଜବାସୀ ଓ ଉଦ୍ଧବଜୀଙ୍କର ସମୟ କ୍ଷଣକ ଭଳି କଟିଗଲା । ଉଦ୍ଧବଙ୍କ ରହିବା ସ୍ଥାନ ଆଜିର ବ୍ରଜମଣ୍ଡଳ ଧାମର ଉଦ୍ଧବ କିଆରୀ ଅଟେ ।

ପ୍ରଶ୍ନ-୨୪: ଗୋପୀମାନଙ୍କ ସହ ଦୀର୍ଘ ସତ୍‌ସଙ୍ଗ ପରେ ଉଦ୍ଧବ ଅନୁଭବ କଲେ ଶୁଷ୍କ ତତ୍ତ୍ୱ ଜ୍ଞାନ ଓ ଆର୍ଦ୍ର ପ୍ରେମ ମଧ୍ୟରେ ପାର୍ଥକ୍ୟ । ଗୋପୀମାନଙ୍କ କୃଷ୍ଣ ପ୍ରେମରେ ମୁଗ୍ଧ ହୋଇ ଉଦ୍ଧବ ସେମାନଙ୍କ ପାଦ ତଳେ ମୁଣ୍ଡ ନୁଆଁଇ ବାରମ୍ବାର ପ୍ରଣାମ କଲେ । ଔଷଧର ଗୁଣ ନ ଜାଣି ବିଧିମାନି ଔଷଧ ସେବନ କଲେ ରୋଗୀ ବ୍ୟାଧିମୁକ୍ତ ହୁଏ । ଈଶ୍ୱରଙ୍କ ବିଷୟରେ ତତ୍ତ୍ୱଜ୍ଞାନ ନଜାଣି ମଧ୍ୟ ଜଣେ କୃଷ୍ଣପ୍ରେମୀ

ବୋଲରେ ପଡ଼ି କୃଷ୍ଣଙ୍କୁ ପ୍ରେମ କଲେ ସାଧକ ହୁଏ କୃତାର୍ଥ । ଜୀବନ ତାର ଧନ୍ୟ ହୁଏ । ଐଶ୍ୱର୍ଯ୍ୟ ଲୋଭୀ ବୈକୁଣ୍ଠବାସୀ, ଦେବୀ, ଦେବତା ଏପରିକି ମହାଲକ୍ଷ୍ମୀ ମଧ୍ୟ ଏ କୃଷ୍ଣପ୍ରେମର ଟେର ପାଇ ପାରନ୍ତି ନାହିଁ । ବ୍ରହ୍ମା, ଶଙ୍କର, ଇନ୍ଦ୍ର, ଚନ୍ଦ୍ର ଆଦି ଦେବତା ମଧ୍ୟ ଏ ପ୍ରେମର ଲାଳସା ରଖନ୍ତି । ଉଦ୍ଧବ ନିଜେ ବୃନ୍ଦାବନରେ ଲତା ଗୁଳ୍ମ ଜନ୍ମ ପ୍ରାପ୍ତିର କାମନା କରିବା କଥା କିଭଳି ଶବ୍ଦରେ ପ୍ରକାଶ କଲେ ?

ଉଦ୍ଧବ ଉବାଚ

**ବନ୍ଦେ ନନ୍ଦ ବ୍ରଜସ୍ତ୍ରୀଣାଂ ପାଦରେଣୁଂ ଅଭୀକ୍ଷ୍ଣଶଃ ।**
**ଯାସାଂ ହରି କଥା-ଉଦ୍‌ଗୀତଂ ପୁନାତି ଭୁବନ ତ୍ରୟମ୍ ॥୬୩॥**

ଉ. ବ୍ରଜଗୋପୀମାନଙ୍କ କୃଷ୍ଣ ପ୍ରେମ ପାଖରେ ଉଦ୍ଧବ ଯେଭଳି ନତମସ୍ତକ ହୋଇଛନ୍ତି-ଦ୍ୱାରକାଲୀଳାରେ ରୁକ୍ମିଣୀ, ସତ୍ୟଭାମା ଆଦି ଅଷ୍ଟପାଟବଂଶୀଙ୍କୁ ସେଭଳି ସମ୍ମାନ ଦେଖାଇ ନାହାନ୍ତି । କୃଷ୍ଣ ପ୍ରେମରେ ଆର୍ଦ୍ର ହେଲା ପରେ ଏବେ ଉଦ୍ଧବ ସଜହେଲେ ମଥୁରା ଫେରିବା ନିମିତ୍ତ ।

ପ୍ରଶ୍ନ-୨୫: କୃଷ୍ଣଙ୍କ ପ୍ରେମଦୂତ ଉଦ୍ଧବ ଯାଇଥିଲେ ବ୍ରଜବାସୀଙ୍କୁ ବେଦାନ୍ତ ଜ୍ଞାନ ପ୍ରଦାନ କରିବାକୁ । ଫେରିଲେ କିନ୍ତୁ ଗୋପୀ ପ୍ରେମରେ ଗୋଟା ସୁଦ୍ଧା ଜୁଡୁବୁଡୁ ଓଦା ହୋଇ । କଥା କଥାକେ ଗୋପୀପ୍ରେମର ପ୍ରଶଂସା ମୁଖର ସେ । ବ୍ରଜବାସୀମାନେ ଅନେକ ଉପାୟନ ପଠାଇଛନ୍ତି ତାଙ୍କ ହାତରେ । ତଥାପି ଉଦ୍ଧବ ଗୋପୀମାନଙ୍କର କେଉଁ କଥାକୁ ଭୁଲି ନପାରି ବାରମ୍ବାର ସ୍ମରଣ କରୁଥିଲେ ?

ଶ୍ରୀଶୁକ ଉବାଚ

**କର୍ମଭିଃ ଭ୍ରାମ୍ୟମାଣାନାଂ ଯତ୍ର କ୍ୱ-ଅପି-ଈଶ୍ୱର-ଇଛୟା ।**
**ମଙ୍ଗଳ-ଆଚରିତୈଃ ଦାନୈଃ ରତିଃ ନଃ କୃଷ୍ଣ ଈଶ୍ୱରେ ॥୬୭॥**

ଉ. ଗୋପୀମାନେ ଆଦୌ ମୁକ୍ତି ଇଛା କରୁନାହାନ୍ତି । ସେମାନେ କୃତ କର୍ମଫଳକୁ ଜନ୍ମ-ଜନ୍ମାନ୍ତର ଭୋଗ କରିବାକୁ(ଭ୍ରାମ୍ୟ ମାଣାନାଂ) ତିଆର । ଈଶ୍ୱର ଇଛାରେ ଯେଉଁ ଜନ୍ମ ମିଳୁ ପଛକେ ସେମାନଙ୍କର ପରବାୟ ନାହିଁ । ତାଙ୍କର ସକଳ ପୁଣ୍ୟ କର୍ମ, ଦାନ ଓ ପ୍ରେମ କେବଳ କୃଷ୍ଣଙ୍କୁ ପ୍ରସନ୍ନ କରିବାକୁ ଅନୁଷ୍ଠିତ ହେଉଥାଉ ଏତିକି ସେମାନଙ୍କର ଅନ୍ତିମ କାମନା ବୋଲି ଉଦ୍‌ଘୋଷ କରିଛନ୍ତି ସେମାନେ ।

ଉଦ୍ଧବ ମଥୁରା ପହଞ୍ଚିବା ପରେ ଉପଢ଼ୌକନ ଗୁଡ଼ିକୁ କୃଷ୍ଣ ବଳରାମଙ୍କୁ ସମର୍ପଣ କରିଛନ୍ତି । ତାଙ୍କ ପାଦ ତଳେ ବିନମ୍ର ପ୍ରଣତି ଜଣାଇଛନ୍ତି ।

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

# ଅଥ ୪୮ମ ଅଧ୍ୟାୟଃ

## (କୁବ୍‌ଜା ଓ ଅକ୍ରୂରଙ୍କ ଗୃହରେ ଶ୍ରୀକୃଷ୍ଣ)

ପ୍ରଶ୍ନ-୨୬: ଉଦ୍ଧବ ମଥୁରାରେ ପହଞ୍ଚି ଠାକୁରଜୀଙ୍କୁ କହିଲେ, ''ହେ କୃଷ୍ଣ, ତୁମେ ଏତେ ନିଷ୍ଠୁର । ତୁମ ବିରହରେ ତେଣେ ଗୋପୀମାନେ କାନ୍ଦି କାନ୍ଦି ଭୂଇଁରେ ଲୋଟୁଛନ୍ତି । ତୁମେ ତୁରନ୍ତ ଚାଲି ଯାଅ ବ୍ରଜଧାମ । ସେମାନେ ତୁମ ସାନିଧ୍ୟରେ ବିରହ ଦୁଃଖରୁ ନିବୃତ୍ତ ହୁଅନ୍ତୁ । ସଂସାରରେ ଗୁରୁ ସିନା ଅନ୍ତର୍ଯ୍ୟାମୀ । କୃଷ୍ଣ କିନ୍ତୁ ସର୍ବ ଅନ୍ତର୍ଯ୍ୟାମୀ । ଭଗବାନ କ'ଣ କହି ଉଦ୍ଧବଙ୍କ ମୁହଁ ବନ୍ଦ କରିଦେଲେ ?

ଶ୍ରୀଶୁକ ଉବାଚ

**ଅଥ ବିଜ୍ଞାୟ ଭଗବାନ୍ ସର୍ବ-ଆତ୍ମା ସର୍ବଦର୍ଶନଃ ।**
**ସୈରିନ୍ଧ୍ର୍ୟାଃ କାମ ତପ୍ତାୟାଃ ପ୍ରିୟଂ ଇଚ୍ଛନ୍ ଗୃହଂ ଯଯୌ ।।୧।।**

ଉ. ଠାକୁରଜୀ କହିଲେ, ''ଉଦ୍ଧବ, ଗୋପୀମାନେ ମୋର ଆତ୍ମାକୁ ଭଲ ପାଉଥିଲେ । ମଥୁରାରେ ଦେଖ, କୁବ୍‌ଜା ମୋ ଦେହ ସଂଯୋଗ ନ ପାଇ କାମ ପୀଡ଼ିତା । ସେଇ ରାମୟଣ ଯୁଗର ସୂର୍ପଣଖା ଏଯାଏଁ ମୋ ପିଛା ଛାଡୁନି । ଚାଲ ପ୍ରଥମେ ତା ଆଶା, ବାଞ୍ଛା ପୂରଣ କରିବା ।'' ଉଦ୍ଧବକୁ ସାଙ୍ଗରେ ଧରି ପହଞ୍ଚିଗଲେ କୁବୁଜା ଗୃହରେ । ଆନନ୍ଦରେ ନାଚି ଉଠିଲା ବିଚାରୀ କୃଷ୍ଣ ଦର୍ଶନ କରି । ସ୍ୱାଗତ ସମ୍ଭାଷଣ କରି ସୁସଜ୍ଜିତ ପଲଙ୍କରେ ଠାକୁରଜୀଙ୍କୁ ବସାଇଲା । ଉଦ୍ଧବଜୀଙ୍କୁ ମଧ୍ୟ ଉପଯୁକ୍ତ ମହାମୂଲ୍ୟ ଆସନ ଦେଲା ବସିବାକୁ । ସେ କିନ୍ତୁ ଆସନଟିକୁ କେବଳ ସ୍ପର୍ଶ କରିଦେଇ ଭୂଇଁରେ ବସିଗଲେ ।

ପ୍ରଶ୍ନ-୨୭: ବର୍ତ୍ତମାନ ଭଗବାନ ସେଇ ସୈରିନ୍ଧ୍ରୀଙ୍କୁ ବା କୁବ୍‌ଜାଙ୍କୁ ସ୍ନେହରେ ବାହାର ପାଖକୁ ଡ଼ାକିଲେ । ତାର ମନୋଭାବ ଜାଣି ଆଲିଙ୍ଗନ ତାକୁ କଲେ । ତା ଅଙ୍ଗ ପ୍ରତ୍ୟେଙ୍ଗକୁ ଚିପି ଚିପି ସେଥିରେ ଛପିଥିବା କାମ ବାସନା ସବୁକୁ ବାହାର କରିଦେଲେ । ସେ ଏବେ କାମମୁକ୍ତା ଓ ଦିବ୍ୟ କୃଷ୍ଣପ୍ରେମ ଲାଳସୀ । ବକ୍ତାଶ୍ରେଷ୍ଠ ଶୁକଦେବଜୀ କାହିଁକି ତ୍ରିବକ୍ରାକୁ ହୀନବୁଦ୍ଧି (କୁମନୀଷା)ବୋଲି କହିଲେ ?

**ଦୁରାରାଧ୍ୟଂ ସମାରାଧ୍ୟ ବିଷ୍ଣୁଂ ସର୍ବ-ଈଶ୍ୱର-ଈଶ୍ୱରମ୍ ।**
**ଯୋ ବୃଣୀତେ ମନୋଗ୍ରାହ୍ୟଂ ଅସତ୍ ତ୍ୱାତ୍ କୁମନୀଷା-ଅସୌ ॥୧୧॥**

ଉ. ଶୁକଦେବଜୀ ଭଲ ଭାବରେ ଜାଣନ୍ତି କୁବ୍‌ଜା କାମମୁକ୍ତ ହେବା ଠାକୁରଜୀଙ୍କର କମ୍ କୃପା ନୁହେଁ । ତଥାପି ସେ ପରୀକ୍ଷିତ ରାଜାଙ୍କୁ ରୋକ ଠୋକ୍ ଶୁଣାଇଦେଲେ .କୃଷ୍ଣଭକ୍ତ ସାଧକ କିନ୍ତୁ କୌଣସି ପରିସ୍ଥିତିରେ ଭଗବାନଙ୍କ ଦେହ ଭୋଗ କରିବାକୁ ନ ଚାହୁଁ । କୁବ୍‌ଜାର ଅନ୍ତଃକରଣରେ ସାମାନ୍ୟ ମଳିନତା ଥିଲା ବୋଲି ସେ ଉଦ୍ଧାର ପାଇଗଲା । ସାମାନ୍ୟ ମନୁଷ୍ୟ ସେଭଳି କାମନା କରିବା ଅର୍ଥ 'ଆ ବଳଦ ମତେ ବିନ୍ଧ' କହି ବିପଦକୁ ଆମନ୍ତ୍ରଣ କରିବା । ସାଧୁ ସାବଧାନ ! !

ପ୍ରଶ୍ନ-୨୮: ଆଉ ଦିନକର କଥା । ବଳରାମ ଓ ଉଦ୍ଧବଙ୍କୁ ସାଙ୍ଗରେ ଧରି ଶ୍ରୀକୃଷ୍ଣ ପହଞ୍ଚିଲେ ମହାମନ୍ତ୍ରୀ ଅକ୍ରୂରଙ୍କ ଗୃହରେ । ଦୂରରୁ ତିନିଜଣଙ୍କୁ ଦର୍ଶନ କରି ଅକ୍ରୂର ପରମ ଆନନ୍ଦିତ ହେଲେ । ସେ ତୁରନ୍ତ ସେମାନଙ୍କର ଚରଣ ପ୍ରକ୍ଷ୍ୟାଳନ କଲେ । ଧୌତ ଜଳକୁ ମସ୍ତକରେ ସକୁଟୁମ୍ବେ ଗ୍ରହଣ କଲେ । ଠାକୁରଜୀଙ୍କ ପଦ କମଳକୁ କୋଳରେ ରଖି ସମ୍ବାହନ କଲେ । ସେ ବାସ୍ତବରେ ଅସୁର କଂସ ଦରବାରରେ ଥିଲେ ଜଣେ ପକ୍‌କା ବୈଷ୍ଣବ । ସୁତରାଂ କୃଷ୍ଣ ବଳରାମଙ୍କୁ ଚିହ୍ନିପାରି କି ସ୍ତୁତି ଆରମ୍ଭ କଲେ ?

**ଯୁବାଂ ପ୍ରଧାନ ପୁରୁଷୌ ଜଗତ୍ ହେତୁ ଜଗତ୍ ମୟୌ ।**
**ଭବତ୍‌ଭ୍ୟାଂ ନ ବିନା କିଂଚିତ୍ ପରଂ ଅସ୍ତି ନ ଚ-ଅପରମ୍ ॥୧୮॥**

ଉ. ଅକ୍ରୂର କହିଲେ, ''ହେ ରାମଗୋବିନ୍ଦ, ଆପଣ ଦୁହେଁ ସ୍ୱୟଂ ପ୍ରକୃତି(ପ୍ରଧାନ) ଓ ଆତ୍ମା (ପୁରୁଷ) । ଏ ଦୃଶ୍ୟମାନ ସଂସାର ଆପଣଙ୍କର ଶରୀର (ଜଗତ୍‌ମୟ) । ପୁଣି ଆପଣ ସଂସାରର ସର୍ବନିୟନ୍ତା ଏବଂ ସ୍ରଷ୍ଟା ମଧ୍ୟ । ଆପଣଙ୍କଠାରୁ ସୂକ୍ଷ୍ମ, ଶ୍ରେଷ୍ଠତର ଅନ୍ୟ କିଛି ନାହିଁ, ନ ଥିଲା ଓ ନୋହିବ । ପରବର୍ତ୍ତୀ ଏଗାର ଶ୍ଳୋକରେ ଅକ୍ରୂରଙ୍କ ସୁନ୍ଦର ସ୍ତୁତି ବର୍ଣ୍ଣିତ । ଭାଗବତ ଗ୍ରନ୍ଥ ପୃଷ୍ଠାରେ ଅକ୍ରୂରସ୍ତୁତି ଏକ ଅତ୍ୟନ୍ତ ଭବ୍ୟ ସ୍ତୁତି ।

ପ୍ରଶ୍ନ-୨୯: ମନ ମୁଗ୍‌ଧକର ଅକ୍ରୂର ସ୍ତୁତିରେ ଭଗବାନ ପ୍ରସନ୍ନ ହୋଇ ତାଙ୍କୁ ଜଣେ ପରମ ବୈଷ୍ଣବ ବୋଲି ସ୍ୱୀକାର କରିଛନ୍ତି କି ଭଳି ଶବ୍ଦ ପ୍ରୟୋଗ କରି ?

**ଶ୍ରୀ ଭଗବାନ ଉବାଚ**

**ନ ହି-ଅପ୍‌ମୟାନି ତୀର୍ଥାନି ନ ଦେବା ମୃତ୍ ଶିଳାମୟାଃ ।**
**ତେ ପୁନନ୍ତି-ଉରୁ କାଳେନ ଦର୍ଶନାତ୍ ଏବ ସାଧବଃ ॥୩୧॥**

ଉ. ଭଗବାନ କହିଲେ, ''ଅକ୍ରୁର, ନଦୀ ଓ ଜଳାଶୟ ଜଳ ତୀର୍ଥ । ଈଶ୍ୱରଙ୍କ ସହିତ ଭକ୍ତମାନଙ୍କର ଲୀଳା ଧାମ ସବୁ ସ୍ଥଳ ତୀର୍ଥ । ସେଠାରେ ପୂଜିତ ଦେବୀ, ଦେବତା, ମାଟି, ପଥର ସବୁ ଦର୍ଶକଙ୍କୁ ପୂଜକଙ୍କୁ ପବିତ୍ର କରନ୍ତି ସତ । ସେମାନଙ୍କର କୃପା ବହୁକାଳ ସେବା ପରେ ମିଳିଥାଏ । ମାତ୍ର ତୁମ ଭଳି ବୈଷ୍ଣବଙ୍କ ଦର୍ଶନ ମାତ୍ରକେ ସାଧକ ଧର୍ମ-ଅର୍ଥ-କାମ-ମୋକ୍ଷ ଆଦି ଚତୁର୍ବର୍ଗ ଫଳ ସହିତ ପଞ୍ଚମ ପୁରୁଷାର୍ଥ ଜୀବନମୁକ୍ତିର ଅଧିକାରୀ ହୋଇଯାଏ । ଶେଷରେ ଠାକୁରଜୀ ଅକ୍ରୁରଜୀଙ୍କୁ ହସ୍ତିନା ପଠାଇବାକୁ ବ୍ୟବସ୍ଥା କରିଛନ୍ତି । ଉଦ୍ଦେଶ୍ୟ କୃଷ୍ଣ ଭକ୍ତ ପାଣ୍ଡବମାନଙ୍କର ସୁଖ-ଦୁଃଖ, କୁଶଳ-ମଙ୍ଗଳ ଜାଣିବା ତାଙ୍କର ଦରକାର ।

# ଅଥ ୪୯ମ ଅଧ୍ୟାୟଃ

## (ମନ୍ତ୍ରୀ ଅକ୍ରୁରଙ୍କର ହସ୍ତିନାପୁର ଯାତ୍ରା)

ପ୍ରଶ୍ନ-୩୦: ଶ୍ରୀକୃଷ୍ଣ ଅବତାର କେବଳ ଦୁଷ୍ଟଦଳନ, ସନ୍ଥପାଳନ ଓ ଧର୍ମ ସଂସ୍ଥାପନ ଲାଗି ନୁହେଁ । ବରଂ ନିଜ ଭକ୍ତମାନଙ୍କୁ ପ୍ରେମଦାନ ଥିଲା ତାଙ୍କର ମୂଳ ଲକ୍ଷ୍ୟ । ପାଣ୍ଡବମାନଙ୍କ ଠାରୁ ଭଗବାନଙ୍କର ଆଉ ବଡ଼ ଭକ୍ତ ଅବା କାହାକୁ ସେ ଯୁଗର ଇତିହାସ ମନେ ରଖିଛି ? ସୁତରାଂ କଂସ ବଧ ପରେ ତାଙ୍କର ପିତା ଉଗ୍ରସେନଙ୍କୁ ସିଂହାସନରେ ବସାଇ ସାରି ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ମନେ ପକାଇଛନ୍ତି । ତାଙ୍କର ପରମ ବୈଷ୍ଣବ ମହାମନ୍ତ୍ରୀ ଅକ୍ରୁର ଠାକୁରଜୀଙ୍କ ଦୂତ ରୂପରେ ଆସି ହସ୍ତିନାପୁରରେ ପହଞ୍ଚି କେଉଁମାନଙ୍କୁ ଭେଟିଛନ୍ତି ?

ଶ୍ରୀଶୁକ ଉବାଚ

**ସ ଗତ୍ୱା ହସ୍ତିନାପୁରଂ ପୌରବେନ୍ଦ୍ର ଯଶୋଽଙ୍କିତମ୍ ।**
**ଦଦର୍ଶ ତତ୍ର-ଅମ୍ବିକେୟଂ ସଭୀଷ୍ମଂ ବିଦୁରଂ ପୃଥାମ୍ ॥୧॥**

ଉ. ପୁରୁବଂଶର ସ୍ୱନାମଧନ୍ୟ ରାଜମାନଙ୍କର କୀର୍ତ୍ତି ସଗର୍ବେ ଘୋଷଣା କରୁଥିଲା ସେତେବେଳର ହସ୍ତିନାନଗରୀ । ଅମ୍ବିକା ପୁତ୍ର ଧୃତରାଷ୍ଟ୍ର ରାଜା, ପିତାମହ ଭୀଷ୍ମଦେବ, ମନ୍ତ୍ରୀ ବିଦୁର ଓ ପାଣ୍ଡବ ମାତା କୁନ୍ତୀ(ପୃଥାଂ)ଙ୍କୁ ସେ ଭେଟିଲେ । ପରେ ପରେ ବାହ୍ଲିକ ପୁତ୍ର ସୋମଦତ୍ତ, ଭରଦ୍ୱାଜ ପୁତ୍ର ଦ୍ରୋଣ, ଅଶ୍ୱତ୍ଥାମା ସହିତ ଦୁର୍ଯ୍ୟୋଧନ, ଦୁଃଶାସନ ଆଦି କୌରବ ଗଣଙ୍କୁ ମଧ୍ୟ ଭେଟିଥିଲେ ।

ପ୍ରଶ୍ନ-୩୧: ହସ୍ତିନାବାସୀମାନଙ୍କର ଚରିତ୍ର ଗୁଡ଼ିକ ଅନୁଶୀଳନ କରିବାକୁ ଅକ୍ରୂର ଚାରି ଛଅ ମାସ ରହିଗଲେ । ପାଣ୍ଡବମାନଙ୍କ ବିଷୟରେ ଅକ୍ରୂର କ'ଣ ଜାଣିବାକୁ ପାଇଲେ ?

**ତେଜ ଓଜୋ ବଳଂ ବୀର୍ଯ୍ୟଂ ପ୍ରଶ୍ରୟ-ଆଦୀନ୍ ଚ ସଦ୍‌ଗୁଣାନ୍ ।**
**ପ୍ରଜା-ଅନୁରାଗଂ ପାର୍ଥେଷୁ ନ ସହଦ୍‌ଭିଃ ଚିକୀର୍ଷିତମ୍ ।।୫।।**

ଉ. ସେମାନଙ୍କ ଇନ୍ଦ୍ରିୟ ବଳ, ମନର ବଳ (ଓଜୋ), ଦେହର ବଳ, ରଣକୌଶଳର ବାହାଦୂରୀ (ବୀର୍ଯ୍ୟଂ), ଈଶ୍ୱର ଶରଣାଗତି ମୂଳକ ଦୀନତା (ପ୍ରଶ୍ରୟ) ଇତ୍ୟାଦି ସଦ୍‌ଗୁଣ ଦେଖି ଅଭିଭୂତ ହେଲେ ଅକ୍ରୂର । ସର୍ବୋପରି ଯୁଧିଷ୍ଠିରଙ୍କର ପ୍ରଜାପାଳନ ଓ ସହିଷ୍ଣୁତା ଥିଲା ଅତ୍ୟନ୍ତ ପ୍ରଶଂସନୀୟ ।

ପ୍ରଶ୍ନ-୩୨: ଧୃତରାଷ୍ଟ୍ରଙ୍କ ପୁତ୍ର (ଧାର୍ତ୍ତରାଷ୍ଟ୍ରୈଃ)ଙ୍କ ଦ୍ୱାରା ପାଣ୍ଡବ ମାନଙ୍କ ଜତୁଗୃହ ଦାହ, ବିଷ ଲଡୁ ଖୋଇବା ଇତ୍ୟାଦି ଅକ୍ରୂରଙ୍କୁ କିଏ କିଏ ସବୁ କହିଲେ ?

**କୃତଂ ଚ ଧାର୍ତ୍ତରାଷ୍ଟ୍ରୈଃ ଯତ୍ ଗରଦାନ-ଆଦି-ଅପେଶଳମ୍ ।**
**ଆଚଖ୍ୟୌ ସର୍ବଂ ଏବ-ଅସ୍ମୈ ପୃଥା ବିଦୁର ଏବ ଚ ।।୬।।**

ଉ. ଧୃତରାଷ୍ଟ୍ର ଓ ତାଙ୍କ ପୁତ୍ର କୌରବ ମାନଙ୍କର ସକଳ ଅଶୋଭନୀୟ କାର୍ଯ୍ୟକଳାପ ବିଷୟରେ ବିଦୁର ଓ କୁନ୍ତୀ ଗୋଟି ଗୋଟି କରି କହିଲେ(ଆଚଖ୍ୟୌ) ।

ପ୍ରଶ୍ନ-୩୩: କୁନ୍ତୀଦେବୀ ସୁନ୍ଦର ଅବସର ପାଇ କୃଷ୍ଣଙ୍କ କୃପା ଭିକ୍ଷା କରିବାକୁ କିଭଳି ଶବ୍ଦ ପ୍ରୟୋଗ କରି ଜଣାଇଛନ୍ତି ପାଣ୍ଡବ ମାନଙ୍କର ଦୁରବସ୍ଥା ?

**ସାପନ୍ନ ମଧ୍ୟେ ଶୋଚନ୍ତୀଂ ବୃକାନାଂ ହରିଣୀଂ ଇବ ।**
**ସାନ୍ତ୍ୱୟିଷ୍ୟତି ମାଂ ବାକ୍ୟୈଃ ପିତୃହୀନାନ୍ ଚ ବାଳକାନ୍ ।।୧୦।।**

ଉ. ମା'ହରିଣୀଟିଏ ଗଧିଆ ହାବୁଡ଼ରେ ପଡ଼ିଲେ ନିଜ ହରିଣ ଶାବକମାନଙ୍କୁ ରକ୍ଷା କରିବାକୁ ଈଶ୍ୱରଙ୍କ ସହାୟତା ଲାଗି ଶୂନ୍ୟକୁ ଚାହିଁରହେ । ଠିକ୍ ସେହିଭଳି ସପତ୍ନୀ ପୁତ୍ର ଦୁଷ୍ଟ କୌରବମାନଙ୍କ ଦୌରାତ୍ମ୍ୟ ସହିବାକୁ ପଡୁଛି ତାଙ୍କୁ । କୁନ୍ତୀ ନିବେଦନ କରୁଛନ୍ତି, "ହେ, ଅକ୍ରୂରଜୀ, ସତେ କଣ ଭକ୍ତ ବତ୍ସଳ ଭଗବାନ କୃଷ୍ଣ ପିତୃହୀନ ପାଣ୍ଡବମାନଙ୍କୁ ରକ୍ଷା କରିବାକୁ ଇଚ୍ଛା କରିବେ ? ମୋତେ ସାନ୍ତ୍ୱନା ଦେବାକୁ କେବେ କଅଣ ହସ୍ତିନା ଆସିବେ ?"

ପ୍ରଶ୍ନ-୩୪: କୁନ୍ତୀଙ୍କ ମୁଖରୁ ଶ୍ରୀକୃଷ୍ଣ ଶରଣାଗତି ମୂଳକ ସ୍ତୁତି ଶ୍ରବଣ କରି ଅକ୍ରୂରଙ୍କ ହୃଦୟ ତରଳି ଯାଇଛି । ସେ ତୁରନ୍ତ ଯାଇ ରାଜା ଧୃତରାଷ୍ଟ୍ରଙ୍କୁ ଦେଖା କରିଛନ୍ତି । ଭଗବାନ କୃଷ୍ଣଙ୍କ ପ୍ରେରିତ ଦୂତ ବୋଲି ସେ ନିଜର ପରିଚୟ ଦେଇଛନ୍ତି ।

ନିଜର ଭ୍ରାତୁଃ-ପୁତ୍ରମାନଙ୍କ ପ୍ରତି କରାଯାଉଥିବା କପଟ ବ୍ୟବହାର ବିଶେଷ ଭାବେ ଉଲ୍ଲେଖ କରିଛନ୍ତି । ଧର୍ମ ଉପଦେଶ ବାଢ଼ିଛନ୍ତି ରାଜାଙ୍କ ପାଖରେ । ଧର୍ମରେ ଚଳିଲେ ସିଂହାସନ ଭୋଗ କରି ଯଶ ଅର୍ଜନ କରାଯାଇପାରେ ଓ ଅଧର୍ମ ଆଚରଣ କଲେ ଅପଯଶ ଓ ନରକ ଯନ୍ତ୍ରଣା ଭୋଗର ଭୟ ଦେଖାଇଛନ୍ତି । ଏ ବିଷୟଟିକୁ ବୁଝାଇବାକୁ ଯାଇ କେଉଁ ଦାର୍ଶନିକ ସିଦ୍ଧାନ୍ତ ଅକ୍ରୂରଜୀ ଶୁଣାଇଛନ୍ତି ରାଜାଙ୍କୁ ?

ଅକ୍ରୂର ଉବାଚ

**ଏକଃ ପ୍ରସୂୟତେ ଜନ୍ତୁଃ ଏକ ଏବ ପ୍ରଲୀୟତେ ।**
**ଏକୋଽନୁଭୁଙ୍କ୍ତେ ସୁକୃତଂ ଏକ ଏବ ଚ ଦୃଷ୍କୃତମ୍ ॥୨୧॥**

ଉ. ସଂସାରରେ ଜୀବ ଜନ୍ମ ହୁଏ ଏକାକୀ । ମରେ ମଧ୍ୟ ଏକାକୀ । ପୁଣ୍ୟ (ସୁକୃତଂ) ଓ ପାପ (ଦୁଷ୍କୃତଂ) ଅର୍ଜନ କରେ ଏକାକୀ । ଉଭୟର ଫଳକୁ ମଧ୍ୟ ସେ ଏକଲା ଭୋଗିବାକୁ ବାଧ୍ୟ । ପାପ ପ୍ରଚୋଦିତ ଶାସନ କଲେ, ପାପ ଧନ ଅର୍ଜନ କଲେ ପୁତ୍ର, କନ୍ୟା ସିନା ସେ ସୁଖ ଭୋଗନ୍ତି କିନ୍ତୁ ପାପର ଫଳ ଭୋଗିବାକୁ ପଡ଼େନା ସେମାନଙ୍କୁ । ବରଂ ସେଇ ହତଭାଗ୍ୟ ପିତା ସେ ଦଣ୍ଡ ଭୋଗିଥାଏ ।

ପ୍ରଶ୍ନ-୩୫: ଶେଷରେ ଅକ୍ରୂରଜୀ ରାଜାଙ୍କୁ କେଉଁ ଅମୂଲ୍ୟ ଧର୍ମ ଉପଦେଶ ଶୁଣାଇଲେ ?

**ତସ୍ମାତ୍ ଲୋକଂ ଇମଂ ରାଜନ୍ ସ୍ୱପ୍ନମାୟା ମନୋରଥମ୍ ।**
**ବୀକ୍ଷ-ଆୟମ୍ୟ-ଆତ୍ମନା-ଆତ୍ମାନଂ ସମଃ ଶାନ୍ତୋ ଭବ ପ୍ରଭୋ ॥୨୫॥**

ଉ. ଭୋଗ ଦୃଷ୍ଟିରେ ସଂସାର ସୁନ୍ଦର, ଲୋଭନୀୟ ନିଶ୍ଚୟ । ତଥାପି ମାୟାମୟ । ଧନ ଦାରା ସୁତଙ୍କ ସଂପର୍କ ଅଳିକ ବା କ୍ଷଣିକ । କହିଲେ, "ହେ, ରାଜନ୍, ଭଗବାନଙ୍କ କୃପାକୁ ଭରସା କରି ସତ୍‌ସଙ୍ଗ ଦ୍ୱାରା ମନବୁଦ୍ଧିକୁ ସଂଯମ କର (ଆୟମ୍ୟ ଆତ୍ମନା ଆତ୍ମାନଂ) । ଧର୍ମ ମାର୍ଗରେ ଚାଲ ଜୀବନର ଶ୍ରେୟ ଲକ୍ଷ୍ୟ ନିଶ୍ଚୟ ପ୍ରାପ୍ତ ହେବ (ସମଃ ଶାନ୍ତଂ ଭବ) ।"

ପ୍ରଶ୍ନ-୩୬: ଏତେ ସୁନ୍ଦର ଉପଦେଶର କି ପ୍ରଭାବ ପଡ଼ିଲା ଅତ୍ୟଧିକ ପୁତ୍ର ମୋହରେ ବନ୍ଧା ରାଜାଙ୍କ ଉପରେ ?

ଧୃତରାଷ୍ଟ୍ର ଉବାଚ

**ଯଥା ବଦତି କଲ୍ୟାଣୀଂ ବାଚଂ ଦାନପତେ ଭବାନ୍ ।**
**ତଥା-ଅନୟା ନ ତପ୍ୟାମି ମର୍ତ୍ତ୍ୟଃ ପ୍ରାପ୍ୟ ଯଥା-ଅମୃତମ୍ ॥୨୬॥**

ଉ. କେବଳ ବାହାରକୁ ଦେଖାଇହେବାକୁ ରାଜା ଅକ୍ରୂରଙ୍କ ଉପଦେଶର

ପ୍ରଶଂସା ମାତ୍ର କଲେ । କହିଲେ, ''ସୁନ୍ଦର କଲ୍ୟାଣକାରୀ କଥା କହୁଛ ଅକ୍ରୂର (ଦାନପତେ) ।'' ମରଣଶୀଳ ମନୁଷ୍ୟ ଅମୃତ ପିଇବା ବେଳେ ଅଧିକ ପିଇବାକୁ ଯେଭଳି ମନା କରିପାରେନା ସେହି ନ୍ୟାୟରେ ଉପଦେଶ ଶୁଣିବାକୁ ଭଲ ବୋଲି ମଧ୍ୟ କହିଲେ । ରାଜା କେବଳ ବାହାରେ ଅନ୍ଧ ନଥିଲେ ଭିତରେ ମଧ୍ୟ ଅନ୍ଧ ଥିଲେ ।

ପ୍ରଶ୍ନ-୩୭: ଉପଦେଶକୁ ପାଳନ କରିବାକୁ ପ୍ରତିଶ୍ରୁତି ଦେଲେ କି ରାଜା ?

**ତଥାପି ସୂନୃତା ସୌମ୍ୟ ହୃଦି ନ ସ୍ଥିୟତେ ଚଳେ ।**
**ପୁତ୍ର-ଅନୁରାଗ ବିଷମେ ବିଦ୍ୟୁତ୍ ସୌଦାମିନୀ ଯଥା ॥୨୭॥**

ଉ. ଆକାଶରେ ମେଘରେ (ସୌଦାମିନୀ) ବିଜୁଳି ଦେଖାଦିଏ ସତ କିନ୍ତୁ କ୍ଷଣକ ଲାଗି । ବେଶୀ ସମୟ ରହିପାରେ ନା । ଠିକ୍ ସେହିଭଳି ଅକ୍ରୂରଙ୍କ (ସୌମ୍ୟ) ଉପଦେଶ ଲୋଭନୀୟ କଲ୍ୟାଣକର(ସୂନୃତା) ହେଲେ ମଧ୍ୟ ରାଜାଙ୍କ ଅନ୍ତଃକରଣରେ ସାଇତା ହୋଇ ରହିବା ଅସମ୍ଭବ । କାରଣ ହେଲା ତାଙ୍କ ମନବୁଦ୍ଧି ଉଭୟ ପୁତ୍ର ମୋହ ରୂପ ଆସକ୍ତି ବାଦଲ ଆକ୍ରାନ୍ତ । କାରଣ ରାଜା ଗୋଟିଏ ଫ୍ୟୁଜ୍ ବଲବ୍ ! ! !

ପ୍ରଶ୍ନ-୩୮: ରାଜା ଧୃତରାଷ୍ଟ୍ର ଭଲ ଭାବରେ ଜାଣିଥିଲେ ଯେ ସ୍ୱୟଂ ଭଗବାନ ନାରାୟଣ ଦୁଷ୍ଟ ଦଳନ, ସନ୍ଥ ପାଳନ ଓ ଧର୍ମ ସଂସ୍ଥାପନ ଲାଗି ଯଦୁ ବଂଶରେ ଅବତୀର୍ଣ୍ଣ ହୋଇଛନ୍ତି । ତଥାପି ରାଜା କାହିଁକି ଧର୍ମ ବିମୁଖ ହେଲେ ?

**ଈଶ୍ୱରସ୍ୟ ବିଧିଂ କୋ ନୁ ବିଧୁନୋତି-ଅନ୍ୟଥା ପୁମାନ୍ ।**
**ଭୂମେଃ ଭାର-ଅବତାରାୟ ଯୋଽବତୀର୍ଣ୍ଣୋ ଯଦୋଃ କୁଳେ ॥୨୮॥**

ଉ. ରାଜାଙ୍କର ଉଇଣ୍ଡୋ ଡ୍ରେସିଂ ଚରମ ସୀମାରେ ପହଞ୍ଚିଲା । ସେ କହିଲେ, ''ଈଶ୍ୱରଙ୍କ ଇଛା କେଉଁ ଜୀବ ଲଙ୍ଘନ କରିପାରିବ (ବିଧୁନୋତି-ଅନ୍ୟଥା) ?'' ଭାଗ୍ୟ ତୁଷ୍ଟିକୁ ଦ୍ୱାହି ଦେଇ କହି ଦେଲେ, ''ଯାହା ଭାଗ୍ୟରେ ଥିବ ଭୋଗିବି । ମୋ ଭାଗ୍ୟ ମୋତେ ଏହା କରାଉଛି । ମୁଁ ଜାଣୁଛି ଧର୍ମ କଅଣ ଓ ଅଧର୍ମ କଅଣ ଉଭୟ । ହେଲେ ମୁଁ ନିଜେ ସେ ସବୁ ପାଳନ କରିବାରେ ଅସହାୟ ନାଚାର । ମୋ ଦୁଷ୍ଟ ପୁଅ ମୋ କଥା ମାନିଲେ କିଛି ହେଲେ କରିପାରନ୍ତି ।''

କଳିଯୁଗରେ ବିଷୟୀଜୀବ ମାତ୍ରକେ ଜଣେ ଜଣେ ଧୃତରାଷ୍ଟ୍ର । ଅକ୍ରୂରଙ୍କ ସତ୍ସଙ୍ଗ, ସଞ୍ଜୟଙ୍କ ଯୁଦ୍ଧ ଭୂମିର ଲାଇଭଟେଲିକାଷ୍ଟ ଦେଖି ଶୁଣି ମଧ୍ୟ ସେ ନିଜକୁ ବଦଳାଇ ପାରେନା । ଭଗବାନ କୃଷ୍ଣଙ୍କୁ ମହାଭାରତ ଯୁଦ୍ଧର ନାଟକ କରିବାକୁ ପଡ଼େ ।

ମଥୁରା ଲୀଳା ଶେଷ ହୋଇ ଆସୁଛି । ଏଣିକି ଦ୍ୱାରକା ଲୀଳାରେ ମନୁଷ୍ୟର ପଚାଶ ବର୍ଷରେ ଭାଗବତଙ୍କର ପଚାଶତମ ଅଧ୍ୟାୟର ସୂକ୍ଷ୍ମ ଶରୀର ସଜାଡ଼ିବାର ସାଧନା ଦେଖିବାକୁ ମିଳିବ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

# ଅଥ ୫୦ମ ଅଧ୍ୟାୟଃ

## (ଜରାସନ୍ଧଙ୍କର ମଥୁରା ଆକ୍ରମଣ ଓ କୃଷ୍ଣଙ୍କର ଦ୍ୱାରକାପୁରୀ ନିର୍ମାଣ)

ପ୍ରଶ୍ନ-୩୯ : ଅତ୍ୟାଚାରୀ କଂସ ବଧ ପରେ ତାଙ୍କର ଦୁଇପତ୍ନୀ ଅସ୍ତି ଓ ପ୍ରାପ୍ତି ମଥୁରା ଛାଡ଼ିଲେ । ନିଜ ପିତା ଜରାସନ୍ଧଙ୍କ ଘରେ ପହଞ୍ଚିଲେ । ଜରାସନ୍ଧଙ୍କ ଆଗରେ ନିଜର ବୈଧବ୍ୟ ଦୁଃଖ ଜଣାଇଲେ । ସବୁ କଥା ଶୁଣିସାରି ଜରାସନ୍ଧ କ୍ରୋଧରେ କି ପ୍ରତିଜ୍ଞା କଲେ ?

**ଶ୍ରୀଶୁକ ଉବାଚ**

**ସ ତତ୍ ଅପ୍ରିୟଂ ଆକର୍ଣ୍ଣ୍ୟ ଶୋକ-ଅମର୍ଷ ଯୁତୋ ନୃପ ।**
**ଅଯାଦବୀଂ ମହୀଂ କର୍ତ୍ତୁଂ ଚକ୍ରେ ପରମମ୍ ଉଦ୍ୟମମ୍ ॥୩॥**

ଉ. ସେ ତାଙ୍କର ଦୁଇ କନ୍ୟାଙ୍କ ଦୁଃଖ ଶୋକର କାରଣ କୃଷ୍ଣ ବୋଲି ଭାବିଲେ । ପୃଥିବୀକୁ କୃଷ୍ଣଙ୍କ ସମେତ ଯାଦବ ବଂଶକୁ ସମୂଳେ ଧ୍ୱଂସ କରିବାକୁ (ଅଯାଦବୀଂ ମହୀଂ କର୍ତ୍ତୁଂ) ପଣ କଲେ । ସେଥିପାଇଁ ତତ୍କ୍ଷଣାତ୍ ସକ୍ରୀୟ ଉଦ୍ୟମ ମଧ୍ୟ ଆରମ୍ଭ କରିଦେଲେ ।

ପ୍ରଶ୍ନ-୪୦ : ଜରାସନ୍ଧ ସଙ୍ଗେ ସଙ୍ଗେ ଦଳ ବଳ ଧରି ମଥୁରା ପୁରୀ ଆକ୍ରମଣ କଲେ । ଘମାଘୋଟ ଲଢ଼େଇ ହେଲା । ଜରାସନ୍ଧଙ୍କ ସକଳ ସୈନ୍ୟ ବୀରଗତିକୁ ପ୍ରାପ୍ତ ହେଲେ । ଜରାସନ୍ଧଙ୍କୁ ବଳରାମଜୀ ବନ୍ଦୀକଲେ । ଠାକୁରଜୀ କିନ୍ତୁ ବଡ଼ ଭାଇଙ୍କୁ ବୁଝାଇ ଜରାସନ୍ଧଙ୍କୁ ମୁକ୍ତ କରିଦେଲେ । ଯାହାଦ୍ୱାରା ସେ ପୁଣି ଥରକୁ ଥର ଅନେକ ଦୁଷ୍ଟ ଅସୁରଙ୍କୁ ଏକାଠି କରି ଯୁଦ୍ଧ କରିବାକୁ ଆସିବ ଏବଂ ସମସ୍ତଙ୍କୁ ମରାଇ ଚାଲିବ । ନଚେତ କୃଷ୍ଣ ବଳରାମଙ୍କୁ ଖୋଜି ଖୋଜି ଅସୁର ମାରିବାକୁ ପଡ଼ିବ । ଜରାସନ୍ଧ ପୁଣି ଥରେ ଆକ୍ରମଣ କଲେ । ଭଗବାନ ଏବେ ଅସୁର ମାରଣ ସଂକଳ୍ପ କଲେ । ସେ ଲୀଳାମୟ । ପୁଣି ଇଚ୍ଛାମୟ । ସଙ୍ଗେ ସଙ୍ଗେ ଆକାଶରୁ ସାରଥୀ, ଅସ୍ତ୍ରଶସ୍ତ୍ର, ଶାରଙ୍ଗ ଧନୁ, ଯୁଦ୍ଧ ପୋଷାକ ଆଦି ପହଞ୍ଚିଲା । ସେ ସବୁର ସଦୁପଯୋଗ କରି ଦୁଇ ଭାଇ

ଜରାସନ୍ଧଙ୍କ ଆକ୍ରମଣର ପ୍ରତିରୋଧ କଲେ । ଜରାସନ୍ଧ କିପରି ସାମନା କଲେ ବଳରାମଜୀଙ୍କର ଗଦାଯୁଦ୍ଧ ଲାଗି ଆହ୍ୱାନ କରି ?

**ତବ ରାମ ଯଦି ଶ୍ରଦ୍ଧା ଯୁଦ୍ଧ୍ୟସ୍ୱ ଧୈର୍ଯ୍ୟଂ ଉଦ୍‌ବହ ।**
**ହିତ୍ୱା ବା ମତ୍ ଶରୈଃ ଛିନ୍ନଂ ଦେହଂ ସ୍ୱଃ ଯାହି ମାଂ ଜହି ।।୧୮।।**

ଉ. ଜରାସନ୍ଧ କହିଲେ, ''ହେ ବଳରାମ, ଆସ ମୋ ସହ ଲଢ଼ । ମୋତେ ବଧ କର । ନଚେତ୍ ମୋ ଶରରେ ନିଜେ ମରି ସ୍ୱର୍ଗପ୍ରାପ୍ତ ହୁଅ ।'' ସମଗ୍ର ମଥୁରାପୁର ଏକ ରଣାଙ୍ଗନରେ ପରିଣତ ହେଲା । ଭଗବାନଙ୍କ ଶାର୍ଙ୍ଗଧନୁର ଟଙ୍କାର ସ୍ୱରରେ ଅନେକ ଅସୁର ମୂର୍ଚ୍ଛାଗଲେ କିମ୍ୱା ପ୍ରାଣତ୍ୟାଗ କଲେ । ଦିବ୍ୟ ଶର ପ୍ରହାରରେ ହାତୀମାନଙ୍କ ମସ୍ତକ ଛିଣ୍ଡି ପଡ଼ିଲା । ଅଶ୍ୱମାନେ ତଳେ ପଡ଼ି ଛଟପଟ ହେଲେ । ପଦାତୀମାନଙ୍କ ଛିନ୍ନ ହସ୍ତ, ଚରଣ, ମସ୍ତକରେ ସମଗ୍ର ମଥୁରା ମଣ୍ଡଳ ଭରିଗଲା । ରକ୍ତନଦୀ ବହି ଯମୁନା ଜଳରେ ମିଶିଲା । ଜରାସନ୍ଧଙ୍କର ସମସ୍ତ ସୈନ୍ୟ ମଲେ । ସେ ନିଜେ କିନ୍ତୁ ବଞ୍ଚିଗଲେ । ମଗଧ ଫେରିଗଲେ । ପୁଣି ଯୁଦ୍ଧ ପାଇଁ ସୈନ୍ୟ ଯୋଗାଡ଼ କଲେ ।

ପ୍ରଶ୍ନ-୪୧ : ବାରମ୍ୱାର ଯୁଦ୍ଧରେ ପରାସ୍ତ ହୋଇ ବୃହଦ୍‌ରଥଙ୍କ ପୁତ୍ର ଜରାସନ୍ଧ ଅଧିକ ଶକ୍ତି ସଂଗ୍ରହ ଲାଗି ତପସ୍ୟା କରିବାକୁ ବାହାରିଲେ କେତେ ଥର ଯୁଦ୍ଧ କରିବା ପରେ ?

**ଏବଂ ସପ୍ତଦଶ କୃତ୍ୱଃ ତାବତି-ଅକ୍ଷୌହିଣୀ ବଳଃ ।**
**ଯୁଯୁଧେ ମାଗଧୋ ରାଜା ଯଦୁଭିଃ କୃଷ୍ଣ ପାଳିତୈଃ ।।୪୧।।**

ଉ. ସତର ଥର ଯୁଦ୍ଧ କଲେ ଜରାସନ୍ଧ । ସେତେବେଳକୁ ଥରକେ ଏକ ଅକ୍ଷୌହିଣୀ ଲେଖାଏଁ ସୈନ୍ୟ ସାମନ୍ତ ମରୁଥାନ୍ତି ।

ପ୍ରଶ୍ନ-୪୨ : ପରିଶେଷରେ ନାରଦଜୀଙ୍କ ପ୍ରେରଣାରେ କାଳ ଯବନ ନାମକ ଜଣେ ଦୁର୍ଦ୍ଧର୍ଷ ଯୋଦ୍ଧା ମଧ୍ୟ ଜରାସନ୍ଧଙ୍କ ସହ ମିଶି ମଥୁରାପୁରୀ ଘେରାଉ କଲେ ତିନିକୋଟି ସୈନ୍ୟ ଧରି । ଠାକୁରଜୀ ତ ଲୀଳାମୟ । ବିଚିତ୍ର ତାଙ୍କ ଯୁଦ୍ଧ କରିବା ଢ଼ଙ୍ଗ । ସେତେବେଳେ ଠାକୁରଜୀ ଆଦୌ ଯୁଦ୍ଧ ନକରି ପଶ୍ଚିମ ଦିଗକୁ ଦୌଡ଼ି ପଳାୟନ କଲେ । ଦ୍ୱାରକା ନିକଟରେ ସମୁଦ୍ର କୂଳରେ ପହଞ୍ଚି ସେ ମଥୁରାବାସୀଙ୍କୁ ସୁରକ୍ଷା ଦେବା ଲାଗି କି ଅଦ୍ଭୁତ ଉପାୟ କଲେ ?

**ଇତି ସମନ୍ତ୍ୟ ଭଗବାନ୍ ଦୁର୍ଗଂ ଦ୍ୱାଦଶ ଯୋଜନମ୍ ।**
**ଅନ୍ତଃ ସମୁଦ୍ରେ ନଗରଂ କୃଷ୍ଣ-ଅଦ୍ଭୁତଂ ଅଚୀକରତ୍ ।।୪୯।।**

ଉ. ବଳରାମଙ୍କ ସହିତ ବିଚାର ବିମର୍ଷ କରି(ସମନ୍ତ୍ୟ) ଆରବ ସାଗର

ଅଭେଦ୍ୟ ଦୁର୍ଗ ନିର୍ମାଣ କଲେ (ଅଟୀକରତ୍) ଦେବ ଶିଳ୍ପୀ ବିଶ୍ୱକର୍ମାଙ୍କୁ ଡ଼କାଇ । ସମୁଦ୍ରରେ ପୂର୍ବରୁ ବୁଡ଼ି ରହିଥିବା ସ୍ଥାନ ଉପରକୁ ଉଠାଇ ଦିଅନ୍ତେ ସଙ୍ଗେ ସଙ୍ଗେ ସୁନାର ଦ୍ୱାରକା ନିର୍ମାଣ ଆରମ୍ଭ ହେଲା ଓ ତତ୍‌କ୍ଷଣାତ୍ ବିଶାଳ ନଗରୀ ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହେଲା । ଶ୍ରୀକୃଷ୍ଣଙ୍କ ଯୋଗଶକ୍ତି ବଳରେ ସମଗ୍ର ଦ୍ୱାରକାବାସୀଙ୍କୁ ସେଇ ନଗରକୁ ସ୍ଥାନାନ୍ତରିତ କରାଗଲା । ହଠାତ୍ ନିଦ୍ରାରୁ ଉଠି ଦେଖନ୍ତି ସେମାନେ ଆଉ ମଥୁରାରେ ନାହାନ୍ତି । ଅଛନ୍ତି ଦିବ୍ୟ ଦ୍ୱାରକା ନଗରୀରେ ଯେ ଯାହା ମହଲ ମଧ୍ୟରେ ।

ଆଧୁନିକ ଭାରତର ଇତିହାସକାରମାନେ କିନ୍ତୁ କୃଷ୍ଣଙ୍କ ଲୀଳା ବୁଝି ନପାରି ଠାକୁରଜୀଙ୍କୁ ଏକ ନୂଆ ଉପାଧି ଦେଲେ-ରଣଛୋଡ଼ ରାୟ । ଯୁଦ୍ଧଭୂମିରୁ ଭୟରେ ପଳାୟନ କରିଥିବା ଜଣେ ସମର୍ଥବାନ ପୁରୁଷ(ରାୟ) ବା ରାଜା କିଙ୍ଗ ମେକର । ସେଇ ରଣଛୋଡ଼ ରାୟଜୀ ମନ୍ଦିର ଗୁଜୁରାଟର ଡ଼ାକୋରଠାରେ ବିଦ୍ୟମାନ ।

# ଅଥ ୫୧ମ ଅଧ୍ୟାୟଃ

## (ଯବନ ରାଜା କାଳଯବନ ଓ ବୈଷ୍ଣବ ରାଜା ମୁଚୁକୁନ୍ଦ ଉଦ୍ଧାର)

ପ୍ରଶ୍ନ-୪୩: ନିଜର ଅଲୌକିକ ଯୋଗ ଶକ୍ତି ବଳରେ ଭଗବାନ ଶ୍ରୀକୃଷ୍ଣ ମଥୁରାବାସୀଙ୍କୁ ଦ୍ୱାରକାରେ ଥଇଥାନ କଲେ । କାଳ ଯବନ ତାଙ୍କ ପିଛା ଛାଡୁ ନଥାଏ । ସେ ଏକ ଗୁମ୍ଫାରେ ପଶିଗଲେ । ଗୁମ୍ଫାରେ ଜଣେ ରାଜା ମୁଚୁକୁନ୍ଦ କ୍ଳାନ୍ତ ହୋଇ ଶୋଇଥାନ୍ତି । ଠାକୁରଜୀ ତାଙ୍କ ଉପରେ ନିଜ ପୀତାମ୍ବର ଘୋଡ଼େଇ ଦେଇ ଲୁଚିଗଲେ । କାଳ ଯବନ ଗୁମ୍ଫାରେ ପହଞ୍ଚି ଦେଖିଲା ପୀତାମ୍ବର ଘୋଡ଼ା ମାନବ ଦେହକୁ । ପ୍ରମାଦରେ ତାଙ୍କୁ କୃଷ୍ଣ ଭାବନା କରି କ୍ରୋଧରେ ସେ ପଦ ପ୍ରହାର କଲା ସେ ଶୋଇଥିବା ରାଜାଙ୍କୁ । ନିଜର ନିଦ୍ରାଭଙ୍ଗ ହୁଅନ୍ତେ ସେ ରାଜା କ୍ରୋଧଯୁକ୍ତ ଆଖିରେ କାଳ ଯବନଙ୍କୁ ଦେଖନ୍ତେ କି ବିଚିତ୍ର ଘଟଣା ଘଟିଲା ?

**ଶ୍ରୀ ଶୁକ ଉବାଚ**

**ସ ତାବତ୍ ତସ୍ୟ ରୁଷ୍ଟସ୍ୟ ଦୃଷ୍ଟିପାତେନ ଭାରତ ।**
**ଦେହଜେନ-ଅଗ୍ନିନା ଦଗ୍‌ଧୋ ଭସ୍ମସାତ୍ ଅଭବତ୍ କ୍ଷଣାତ୍ ।।୧୨।।**

ଉ. ରାଜାଙ୍କ କ୍ରୋଧିତ (ରୁଷ୍ଟସ୍ୟ) ନେତ୍ରରୁ ପ୍ରଚଣ୍ଡ ଅଗ୍ନି ଉତ୍ପନ୍ନ ହେଲା । ସେଇ ଅଗ୍ନି ଜ୍ୱାଳାରେ କାଳଯବନ ସଂପୂର୍ଣ୍ଣ ଦଗ୍‌ଧ ହୋଇଗଲା । ହେଲେ ମୁଚୁକୁନ୍ଦଙ୍କର କିଛି ହେଲା ନାହିଁ । ସେ ଉଠି ଠାକୁରଜୀଙ୍କ ସମକ୍ଷରେ ହାତଯୋଡ଼ି ଠିଆ ହେଲେ ।

ପ୍ରଶ୍ନ-୪୪: ରାଜା ମୁଚୁକୁନ୍ଦଙ୍କର ଅଦ୍ଭୁତ ଶକ୍ତି କଥା ଶୁଣି ରାଜା ପରୀକ୍ଷିତ ଆଶ୍ଚର୍ଯ୍ୟ ହେବା ସ୍ୱାଭାବିକ । ରାଜା ତାଙ୍କର ସବିଶେଷ ପରିଚୟ ପଚାରିଛନ୍ତି ଶ୍ରୀଶୁକଦେବଙ୍କୁ । ଉତ୍ତରରେ ଶୁକଦେବ ଶୁଣାଇଛନ୍ତି ରାଜାଙ୍କ ଅଭୁତପୂର୍ବ ପରାକ୍ରମ ଓ ରାଜ୍ୟ ଜୟ ନିଶା । ଏକଦା ସେ ସ୍ୱର୍ଗ ଯାଇଥିଲେ ଦେବତାମାନଙ୍କୁ ଯୁଦ୍ଧରେ ସହାୟତା କରିବାକୁ । ସେତେବେଳେ ଦେବତାମାନେ ଦୈତ୍ୟମାନଙ୍କ ସହ ଲଢ଼ିବାରେ ଅସମର୍ଥ ଥିଲେ । ଯୁଦ୍ଧରେ ଯଥୋଚିତ ସାହାଯ୍ୟ କରିଥିବାରୁ ଦେବତାମାନେ ତାଙ୍କୁ ବର ଯାଚିଛନ୍ତି ।  ମୁଚୁକୁନ୍ଦ ଅତ୍ୟନ୍ତ କ୍ଳାନ୍ତ ଶ୍ରାନ୍ତ ଥିବାରୁ ନିଶ୍ଚିନ୍ତରେ ଶୋଇବା ବରଟିଏ ମାଗିଥିଲେ । ଦେବତାମାନେ ଖୁସିରେ ତଥାସ୍ତୁ କହିଲେ । ସର୍ତ୍ତ ରହିଲା ଯେ ତାଙ୍କ ନିଦ୍ରାଭଙ୍ଗର କାରଣ ଯେ ହେବ ତା ଉପରେ ରାଜାଙ୍କ ଦୃଷ୍ଟି ପଡ଼ିଲେ ସେ ଭସ୍ମ ହୋଇଯିବ । ଠାକୁରଜୀ ସର୍ବଅନ୍ତର୍ଯାମୀ । ଏକଥା ଜାଣି ସେ ନିଜର ପୀତାମ୍ବରଟିକୁ ରାଜାଙ୍କ ଉପରେ ଘୋଡ଼ାଇ ଦେଇ ନିଜେ ଲୁଚିଯାଇଥିଲେ । ମୁଚୁକୁନ୍ଦ ଅଜାଣତରେ ହେଉ ପଛକେ ଭଗବାନଙ୍କୁ ଏକ ଆସନ୍ନ ବିପଦରୁ ଉଦ୍ଧାର କରିଛନ୍ତି । ଭଗବାନ କ'ଣ ତାଙ୍କର କିଛି ପ୍ରତି ଉପକାର କରି ତାଙ୍କ ଋଣ ଶୁଝିପାରିଲେ ?

**ଯବନେ ଭସ୍ମସାତ୍ ନୀତେ          ଭଗବାନ୍ ସାତ୍ୱତ-ଋଷିଭଃ ।**
**ଆତ୍ମାନଂ ଦର୍ଶୟାମାସ          ମୁଚୁକୁନ୍ଦାୟ ଧୀମତେ ।।୨୩।।**

ଉ. ଭଗବାନ ଭକ୍ତ ବତ୍ସଳ (ସାତ୍ୱତ-ଋଷଭ) । ସେ ରାଜାଙ୍କ ଉପରେ ଅଜସ୍ର କୃପା ବର୍ଷା କଲେ । ତାଙ୍କୁ ଚତୁର୍ଭୁଜ ନାରାୟଣ ରୂପରେ ଦର୍ଶନ ଦେଲେ । ତାଙ୍କ ମାନବ ଜନ୍ମକୁ କୃତାର୍ଥ କଲେ । ରାଜା ଚିହ୍ନିପାରିଲେ ଭଗବାନଙ୍କୁ । ପ୍ରଥମେ ନିଜର ପରିଚୟ ପ୍ରଦାନ କଲେ । ପରେ ପରେ ଭଗବାନଙ୍କୁ ପରିଚୟ ମଧ୍ୟ ମାଗିଲେ ।

ପ୍ରଶ୍ନ-୪୫: ଶ୍ରୀ କୃଷ୍ଣ ନିଜ ପରିଚୟ ଦେଲେ । ମହା ଆନନ୍ଦରେ ରାଜା ନିର୍ମଳ ହୃଦୟରେ ତାଙ୍କୁ ସ୍ତୁତି କରିଛନ୍ତି । ଏବେ ନିଜର ରାଜ୍ୟ ଜୟ ଇଚ୍ଛାକୁ ଧିକ୍କାର କରିଛନ୍ତି । ସେ ଭଗବାନଙ୍କ କୃପା ଶକ୍ତି ବଳରୁ ମାୟାମୁକ୍ତ ହୋଇସାରିଛନ୍ତି । ଅତଏବ ତାଙ୍କ ଶରଣାଗତି ସ୍ୱୀକାର କରିବାକୁ ସେ ଭଗବାନଙ୍କୁ ନିବେଦନ  କରିଛନ୍ତି । ଭଗବାନ କ'ଣ ରାଜାଙ୍କୁ ଅନ୍ୟ କିଛି ପରୀକ୍ଷା ନକରି ଭକ୍ତ ବୋଲି ଗ୍ରହଣ କରିନେଲେ ?

**ଶ୍ରୀ ଭଗବାନ ଉବାଚ**

**ଜନ୍ମନି ଅନ୍ତରେ ରାଜନ୍          ସର୍ବଭୂତ ସୁହୃତ୍ତମଃ ।**
**ଭୂତ୍ୱା ଦ୍ୱିଜବରଃ ତ୍ୱଂ ବୈ          ମାଂ ଉପୈଷ୍ୟସି କେବଳମ୍ ।।୬୪।।**

ଉ. ଏକ ସର୍ତ୍ତ ସହିତ ମୁଚୁକୁନ୍ଦଙ୍କୁ ଗ୍ରହଣ କଲେ ଭଗବାନ। କହିଲେ, "ମୁଚୁକୁନ୍ଦ, ତୁମେ ରାଜା ହୋଇ ଅନେକ ନିରୀହ ପଶୁବଧ କରିଛ। ଆଉ ଗୋଟିଏ ଜନ୍ମରେ ବ୍ରାହ୍ମଣ ବର୍ଣ୍ଣରେ ଜନ୍ମନେଇ ତାର ପ୍ରାୟଶ୍ଚିତ କରି ମୋତେ ପ୍ରାପ୍ତ ହେବ (ଉପୈଷ୍ୟସି)।"

ସତକୁ ସତ ସେଇ ମୁଚୁକୁନ୍ଦ ପରବର୍ତ୍ତୀ ଜନ୍ମରେ କଳିଯୁଗରେ ଭକ୍ତ ନରସିଂହ ମେହେଙ୍ଗା ହୋଇ ଗୁଜୁରାଟ ପ୍ରଦେଶରେ ଜୁନାଗଡ଼ ଠାରେ ଜନ୍ମନେଇ ଅନେକ ଦିବ୍ୟ ଲୀଳା କରିଥିଲେ।

# ଅଥ ୫୨ମ ଅଧ୍ୟାୟଃ

## (ବଳରାମଙ୍କର ବିବାହ ଓ ରକ୍ମିଣୀ ସନ୍ଦେଶ)

ପ୍ରଶ୍ନ-୪୬: ଜରାସନ୍ଧଙ୍କୁ ଉଦ୍ଧାର କରି ଓ ଭକ୍ତ ମୁଚୁକୁନ୍ଦଙ୍କୁ ବଦ୍ରିକା ଧାମରେ ତପସ୍ୟା କରିବାକୁ ଉପଦେଶ ଦେଇ ଶ୍ରୀକୃଷ୍ଣ ଦ୍ୱାରକାରେ ପହଞ୍ଚିଲେ। ଦେଖିଲେ ତେଇଶି ଅକ୍ଷୌହଣୀ ସୈନ୍ୟ ସହିତ ଜରାସନ୍ଧ ଆସି ଦ୍ୱାରକାରେ ହାଜର। ଭଗବାନ ତ ବଡ଼ କୌତୁକୀ। ସେ ଆଦୌ ଯୁଦ୍ଧ ନକରି ଭାଇଙ୍କୁ ନେଇ ପ୍ରବର୍ଷଣ ପର୍ବତରେ (ବର୍ତ୍ତମାନର ଗୁଜୁରାଟ ରାଜ୍ୟର ଗିର୍‌ନାର୍ ପର୍ବତରେ) ଚଢ଼ିଗଲେ। ଜରାସନ୍ଧ ଚତୁର୍ଦ୍ଦିଗରୁ ସେ ପର୍ବତକୁ ଘେରି ଯାଇ ନିମ୍ନରୁ ଅଗ୍ନି ସଂଯୋଗ କରିଦେଲା। ସାରା ପର୍ବତ ଜଳି ଯାଆନ୍ତେ ଜରାସନ୍ଧ କୃଷ୍ଣ ବଳରାମଙ୍କୁ ମୃତ ଘୋଷଣା କଲେ। ମଗଧ ଫେରିଗଲେ।

ଯାହାର ଜନ୍ମ ନାହିଁ ସେ ମରିବ କିପରି? ଦୁଇ ଭାଇ ପର୍ବତ ପୃଷ୍ଠରୁ ଲମ୍ଫ ଦେଇ ପହଞ୍ଚିଗଲେ ଦ୍ୱାରକା। ଆନର୍ତ୍ତ ଦେଶର ରାଜା ରୈବତ। ତାଙ୍କ ଝିଅ ରେବତୀ ଲାଗି ଉପଯୁକ୍ତ ବର ନ ପାଇ ସେ ବ୍ରହ୍ମାଙ୍କ ପାଖକୁ ଯାଇଥିଲେ। ତାଙ୍କ (ବ୍ରହ୍ମଣା) ପରାମର୍ଶରେ (ଚୋଦିତଃ) ସେ କାହା ହସ୍ତରେ ନିଜ କନ୍ୟା ସମର୍ପଣ କରିଥିଲେ?

**ଶ୍ରୀ ଶୁକ ଉବାଚ**

**ଆନର୍ତ୍ତ-ଅଧିପତିଃ ଶ୍ରୀମାନ୍ ରୈବତୋ ରେବତୀଂ ସୁତାମ୍।**
**ବ୍ରହ୍ମଣା ଚୋଦିତଃ ପ୍ରାଦାତ୍ ବଳାୟିତେ ପୁରା-ଉଦିତମ୍॥୧୫॥**

ଉ. ଶ୍ରୀ ଶୁକ ଦେବଜୀ କହିଲେ, 'ହେ ରାଜନ୍ ଏକଥା ମୁଁ ପୂର୍ବେ ନବମ ସ୍କନ୍ଧରେ କହିଛି (ପୁରା-ଉଦିତଂ) ଯେ ରୈବତ ତାଙ୍କ କନ୍ୟାଙ୍କୁ ଶ୍ରୀବଳରାମଙ୍କୁ (ବଳାୟିତେ) ପ୍ରଦାନ କରିଥିଲେ ।'

ପ୍ରଶ୍ନ-୪୭: ବଡ଼ ଭାଇଙ୍କ ବିବାହ ପରେ ଶ୍ରୀକୃଷ୍ଣଙ୍କ ବିବାହ ଲାଗି ଲାଇନ୍ କ୍ଲିଅର ହୋଇଗଲା । ସେତେବେଳେ ଦ୍ୱାରକା ରାଜ୍ୟ ଗୁଜୁରାଟରେ ଥାଏ । ପୁଣି ମହାରାଷ୍ଟ୍ରରେ ଏକ ଅତ୍ୟନ୍ତ ସମୃଦ୍ଧିଶାଳୀ ରାଜ୍ୟ ଥାଏ ବିଦର୍ଭ । ରାଜାଙ୍କ ନାମ ଭୀଷ୍ମକ । ରୁକ୍ମୀ, ରୁକ୍ମ ରଥ, ରୁକ୍ମ ବାହୁ, ରୁକ୍ମ କେଶ ଓ ରୁକ୍ମମାଳୀ ନାମରେ ପାଞ୍ଚ ପୁତ୍ର ଓ ଏକମାତ୍ର କନ୍ୟା ରୁକ୍ମିଣୀ ନାମରେ ଥାଆନ୍ତି ରାଜାଙ୍କର । ରାଜା ଭୀଷ୍ମକ ଚାହୁଁଥିଲେ କନ୍ୟାଟିକୁ ଶ୍ରୀକୃଷ୍ଣଙ୍କୁ ଅର୍ପଣ କରି ନିଶ୍ଚିତ ହେବାକୁ । ନାରଦଜୀଙ୍କଠାରୁ ଶ୍ରୀକୃଷ୍ଣଙ୍କ ରୂପ, ଗୁଣ, ବିଭୂତି ଆଦି ଶ୍ରବଣ କରି ରୁକ୍ମିଣୀ ମଧ୍ୟ ମନେ ମନେ ବରଣ କରିସାରିଥାନ୍ତି ଠାକୁରଜୀଙ୍କୁ । ଏ ବିବାହରେ କଣ୍ଟା ସାଜିଲେ ଭୀଷ୍ମକଙ୍କ ଜ୍ୟେଷ୍ଠ ପୁତ୍ର ରୁକ୍ମୀ । ସେ ଜିଦ୍ ଧରିଲେ ନିଜ ବନ୍ଧୁ ଶିଶୁପାଳଙ୍କୁ ଭିଣୋଇ କରିବାକୁ । ଶ୍ରୀକୃଷ୍ଣ ରୁକ୍ମିଣୀଙ୍କଠାରେ କେଉଁ କେଉଁ ଗୁଣଶୀଳ ସବୁ ଥିବାର ଜାଣି ଉଦ୍‌ବାହ କରିବାକୁ ମନରେ ସ୍ଥିର କଲେ (ସମୁଦ୍‌ବୋଢୁଂ ମନୋ ଦଧେ) ।

**ତା ବୁଦ୍ଧି ଲକ୍ଷଣ-ଔଦାର୍ଯ୍ୟ ରୂପଶୀଳ ଗୁଣ-ଆଶ୍ରୟାମ୍ ।**
**କୃଷ୍ଣଃ ଚ ସଦୃଶୀଂ ଭାର୍ଯ୍ୟାଂ ସମୁଦ୍ ବୋଢୁଂ ମନୋ ଦଧେ ॥୨୪॥**

ଉ. ଠାକୁରଜୀ ଜାଣିଲେ ଏ ରୁକ୍ମିଣୀ ମର୍ତ୍ତ୍ୟଲୋକର କୌଣସି ମାନବୀ ନୁହନ୍ତି । ସେ ସ୍ୱୟଂ ମହାଲକ୍ଷ୍ମୀ ସ୍ୱରୂପା । ତାଙ୍କର ବୁଦ୍ଧି, ଶରୀରର ଶୁଭ ଚିହ୍ନ (ଲକ୍ଷଣ), ଉଦାରତା, ଅସାମାନ୍ୟ ରୂପ, ଉଚିତ ବ୍ୟବହାର (ଶୀଳ) ସହିତ ଅନେକ ଦିବ୍ୟ ଗୁଣ ଠାକୁରଜୀଙ୍କୁ ମଧ୍ୟ ମୋହିତ କରିଦେଲା । ଅତଏବ ସେ ଠିକ୍ କଲେ ରୁକ୍ମିଣୀ ତାଙ୍କର ଧର୍ମପତ୍ନୀ ହେବାର ଯୋଗ୍ୟା ବୋଲି ।

ପ୍ରଶ୍ନ-୪୮: ରୁକ୍ମିଣୀଙ୍କ ତରଫରୁ ପ୍ରଥମେ କାର୍ଯ୍ୟ ଆରମ୍ଭ ହେଲା । ସାତଟି ଶ୍ଳୋକରେ ପ୍ରେମ ପତ୍ରଟିଏ (ଲିଖିତ ହେଉ କି ବାଣୀରେ ହେଉ) ପଠାଇଲେ ଠାକୁରଜୀଙ୍କ ପାଖକୁ ଜଣେ ବିଶ୍ୱସ୍ତ ବ୍ରାହ୍ମଣଙ୍କ ହସ୍ତରେ ଦ୍ୱାରକା । ତାହା ଥିଲା ପୁରାପୁରି ଖୋଲା ସନ୍ଦେଶ । ଶରଣାଗତିର ସାତ ପାହାଚ ଜୀବର ଭଗବାନଙ୍କ କୃପାପ୍ରାପ୍ତି ଲାଗି । ନୀତି ଦୃଷ୍ଟିରୁ ବିବାହ ପ୍ରସ୍ତାବ କନ୍ୟାପିତା କିମ୍ବା କନ୍ୟା ଭ୍ରାତା ପଠାଇବା କଥା । ସ୍ୱୟଂ କନ୍ୟା କାହିଁକି ଆଠପ୍ରକାର ବୈଦିକ ଲୌକିକ ବିବାହ ମଧ୍ୟରୁ ରାକ୍ଷସ ବିବାହ କରିବାକୁ ପ୍ରସ୍ତାବ ଦେଲେ ?

**ବନ୍ଧୁନାଂ ଇଛତାଂ ଦାତୁଂ  କୃଷ୍ଣାୟ ଭଗିନୀଂ ନୃପ ।**
**ତତୋ ନିବାର୍ଯ୍ୟ କୃଷ୍ଣଦ୍ୱିଟ୍  ରୁକ୍ମୀ ଚୈଦ୍ୟଂ ଅମନ୍ୟତ୍ ॥୨୫॥**

ଉ. ପରିବାରର ସମସ୍ତଙ୍କର (ବନ୍ଧୁନାଂ) ଇଛା ଶ୍ରୀକୃଷ୍ଣଙ୍କୁ କନ୍ୟା ଦେବାକୁ । ଯେହେତୁ କୃଷ୍ଣ ସ୍ୱୟଂ ଭଗବାନ ଓ ଭାଇ ରୁକ୍ମୀ କୃଷ୍ଣ ଦ୍ୱେଷୀ (କୃଷ୍ଣ ଦ୍ୱିଟ୍) । ନିଜର ବଡ଼ ଭାଇ ରୁକ୍ମୀ ଏ ବିବାହର ସଂପୂର୍ଣ୍ଣ ବିରୋଧୀ । ସେ ଆଉ ଜଣେ କୃଷ୍ଣଦ୍ୱେଷୀ ଚୈଦ୍ୟର ରାଜକୁମାର ଶିଶୁପାଳକୁ ପରିବାରର ଅନ୍ୟ ସମସ୍ତଙ୍କ ଇଛା ବିରୁଦ୍ଧରେ ଭଉଣୀକୁ ବିବାହ ଦେବାକୁ ଚାହୁଁଛନ୍ତି (ଅମନ୍ୟତ) । ଅନ୍ୟ କୌଣସି ଉପାୟ ନଦେଖି ସ୍ୱୟଂ ରୁକ୍ମିଣୀଙ୍କୁ ଏ କାଣ୍ଡ କରିବାକୁ ପଡ଼ିଲା ।

ପ୍ରଶ୍ନ-୪୯ : ରାକ୍ଷସ ବିବାହ ପ୍ରସ୍ତାବରେ ଶ୍ରୀକୃଷ୍ଣ ରାଜି ହେବା ପୂର୍ବରୁ ସେ ବ୍ରାହ୍ମଣଙ୍କୁ ଏକାନ୍ତ ସ୍ଥାନରେ ରାଜ୍ୟର କୁଶଳ ମଙ୍ଗଳ ପଚାରିବା ନିହାତି ଆବଶ୍ୟକ । ନଚେତ ନିନ୍ଦା ଅପବାଦ ମୁଣ୍ଡରେ ବୋହିବାକୁ ପଡ଼ିପାରେ । ଠାକୁରଜୀଙ୍କ (ପରମେଷ୍ଠିନା) ପ୍ରଶ୍ନର କି ଉତ୍ତର ଦେଲେ ଭୂସୁର ବ୍ରାହ୍ମଣ ଦେବତା ସେତେବେଳେ ?

**ଏବଂ ସଂପୃଷ୍ଟ ସଂପ୍ରଶ୍ନୋ  ବ୍ରାହ୍ମଣଃ ପରମେଷ୍ଠିନା ।**
**ଲୀଳା ଗୃହୀତ ଦେହେନ  ତସ୍ମୈ ସର୍ବଂ ଅବର୍ଣ୍ଣୟତ୍ ॥୩୬॥**

ଉ. ବ୍ରାହ୍ମଣ ଜାଣିଗଲେ ଏ ସ୍ୱୟଂ ଭଗବାନ । ଦିବ୍ୟ ଲୀଳା କରୁଛନ୍ତି ଲୋକ ଶିକ୍ଷା ଲାଗି । ସର୍ବଜ୍ଞ ହୋଇ ମଧ ମୋଠାରୁ କଥା ଆଦାୟ କରିବାକୁ ଇଛୁକ । ସୁତରାଂ କିଛି କପଟ ନକରି ରୁକ୍ମିଙ୍କର ହରି ବିଦ୍ୱେଷୀ କାର୍ଯ୍ୟକଳାପ, ସ୍ୱଭାବ ଆଦି ଆମୂଳଚୂଳ ବର୍ଣ୍ଣନ କରିଗଲେ ଓ ବିବାହ ପ୍ରସ୍ତାବକୁ ନିଃସଙ୍କୋଚରେ ଉପସ୍ଥାପନ କଲେ ।

ପ୍ରଶ୍ନ-୫୦ : ବ୍ରାହ୍ମଣ ଦେଖିଲେ ଯେ ମାମଲା ବଡ଼ ହାଇ ପ୍ରୋଫାଇଲ ଲେଭେଲର । ନାରାୟଣ-ମହାଲକ୍ଷ୍ମୀଙ୍କ ଗୁପ୍ତ ସନ୍ଦେଶ ଯଦୁପତି (ଯଦୁଦେବ) କୃଷ୍ଣଙ୍କୁ ଦେଇସାରିବା ପରେ କିଛି ପ୍ରତ୍ୟୁତ୍ତର ଆଶା କଲେ କି ?

ବ୍ରାହ୍ମଣ ଉବାଚ

**ଇତି ଏତେ ଗୁହ୍ୟ ସନ୍ଦେଶା  ଯଦୁଦେବ ମୟା-ଆହୃତାଃ ।**
**ବିମୃଶ୍ୟ କର୍ତ୍ତୁଂ ଯତ୍ ଚ-ଅତ୍ର  କ୍ରିୟତାଂ ତଦନନ୍ତରମ୍ ॥୪୪॥**

ଉ. ଆଦୌ ଆଶା କଲେ ନାହିଁ । ଏତିକି କହିଲେ, "ହେ, ଯଦୁପତି, ଆପଣ ଏଣିକି ଉପଯୁକ୍ତ ବିଚାର କରି (ବିମୃଶ୍ୟ) ତୁରନ୍ତ କାର୍ଯ୍ୟାନୁଷ୍ଠାନ କରନ୍ତୁ ।" ବେଳଥାଉ ଥାଉ ବନ୍ଧ ବାନ୍ଧିବାକୁ କହି ବ୍ରାହ୍ମଣ ନିଜେ ବିଦର୍ଭ ଫେରିବାକୁ ବାହାରିଲେ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

# ଅଥ ୫୩ମ ଅଧ୍ୟାୟଃ

## (ଶ୍ରୀକୃଷ୍ଣଙ୍କ ଦ୍ୱାରା ବିଦର୍ଭ ରାଜନନ୍ଦିନୀ ରୁକ୍ମିଣୀଙ୍କର ଅପହରଣ)

ପ୍ରଶ୍ନ-୫୧ : ବିଦର୍ଭ ରାଜ୍ୟର ରାଜା ଭୀଷ୍ମକ । ରାଜଧାନୀ କୁଣ୍ଡିନପୁର । ରାଜକୁମାରୀ ରୁକ୍ମିଣୀଙ୍କ ସହିତ ଶିଶୁପାଳଙ୍କ ବିବାହ ଲଗ୍ନ ମାତ୍ର ଆଉ ତିନି ଦିନ ବାକି ଥାଏ । ଏତେ ସବୁ କଥା ଠାକୁରଙ୍କୀ ଶୁଣିବା ପରେ ଦୂତରୂପୀ ବ୍ରାହ୍ମଣଙ୍କୁ କ'ଣ କହିଥିଲେ ?

ଶ୍ରୀ ଭଗବାନ ଉବାଚ

**ତଥା-ଅହଂ ଅପି ଚିନ୍ତିତୋ ନିଦ୍ରାଂ ଚ ନ ଲେଭେ ନିଶି ।**
**ବେଦ-ଅହଂ ରୁକ୍ମିଣା ଦ୍ୱେଷାତ୍ ମମ ଉଦ୍‌ବାହୋ ନିବାରିତଃ ॥୨॥**

ଉ. ଭଗବାନ କହିଲେ, "ବ୍ରାହ୍ମଣ ଦେବତା, ରୁକ୍ମିଣୀଙ୍କ ମନ ଯେତିକି ମାତ୍ରାରେ ଲାଗିଛି, ମୋ ମନ ମଧ (ତାଙ୍କ ସଂପୂର୍ଣ୍ଣ ଶରଣାଗତ ହେତୁ) ତାଙ୍କ ଠାରେ ଲାଗିଛି । ଏପରିକି ମୁଁ ରାତ୍ରିରେ ଶାନ୍ତିରେ ଶୋଇ ବି ପାରୁନି । ଏକଥା ମଧ ମୁଁ ଜାଣିଛି ଯେ ତାଙ୍କ ବଡ଼ ଭାଇ ରୁକ୍ମୀ ଏ ବିବାହ (ଉଦ୍‌ବାହୋ) ଚାହୁଁନାହାନ୍ତି (ନିବାରିତଃ) ।

ପ୍ରଶ୍ନ-୫୨ : ଭଗବାନ ବ୍ରାହ୍ମଣଙ୍କୁ ପୁରସ୍କାର ସହିତ ବିଦାୟ ଦେଲେ । ସାରଥି ଦାରୁକଙ୍କୁ ଡ଼ାକି ନନ୍ଦିଘୋଷ ରଥ ସଜ କରାଇଲେ । ସଙ୍ଗେ ସଙ୍ଗେ କୁଣ୍ଡିନପୁର ଯାତ୍ରା କଲେ । ବଳରାମଙ୍କୀ ଏ ଖବର ଶୁଣି ଗଣ୍ଡଗୋଳ ଆଶଙ୍କା କଲେ । ପ୍ରଭୁତ ସୈନ୍ୟ ସାମନ୍ତ ଧରି ସେ କୃଷ୍ଣଙ୍କର ପଛେ ପଛେ ଚାଲିଲେ ।

ରାଜା ଭୀଷ୍ମକ ରାଜଧାନୀକୁ ବୋହୂଟିଏ ଭଳି ସଜାଇବାରେ ଲାଗିଥାନ୍ତି । ଅନ୍ୟ ପକ୍ଷରେ ଚେଦିରାଜ୍ୟର ରାଜା ଦମଘୋଷ ନିଜ ପୁତ୍ର ଶିଶୁପାଳଙ୍କୁ ଧରି ପହଞ୍ଚିଗଲେ କୁଣ୍ଡିନପୁର । ରୁକ୍ମୀ କେଉଁ କେଉଁ କୃଷ୍ଣ ବିରୋଧି ରାଜାମାନଙ୍କୁ ନିମନ୍ତ୍ରଣ କରି କୁଣ୍ଡିନ ପୁରରେ ଠୁଳ କରିଥିଲେ ସେତେବେଳେ ?

ଶ୍ରୀ ଶୁକ ଉବାଚ

**ତତ୍ର ଶାଲ୍ୱୋ ଜରାସନ୍ଧୋ ଦନ୍ତବକ୍ରୋ ବିଦୂରଥଃ ।**
**ଆଜଗ୍ମୁଃ ଚୈଦ୍ୟ ପକ୍ଷୀୟାଃ ପୌଣ୍ଡ୍ରକ-ଆଦ୍ୟାଃ ସହସ୍ରଶଃ ॥୧୭॥**

ଉ. ରୁକ୍ମୀଙ୍କ ନିମନ୍ତ୍ରଣ ପାଇଁ ହଜାର ହଜାର ରାଜା ମହାରାଜାଙ୍କ ମଧ୍ୟରେ ମୁଖ୍ୟତଃ କୃଷ୍ଣ ବିଦ୍ୱେଷୀ ଶାଲ୍ୱ, ଜରାସନ୍ଧ, ଦନ୍ତବକ୍ର, ବିଦୂରଥ, ପୌଣ୍ଡ୍ରକ ଆଦି ଚେଦିରାଜାଙ୍କ ପକ୍ଷ ନେବା ପାଇଁ ଭିଡ଼ ଜମାଇଲେ ।

ପ୍ରଶ୍ନ-୫୩: ପୁରୋହିତଙ୍କ ଫେରିବା ଦେଖି ରୁକ୍ମିଣୀ ଅତ୍ୟନ୍ତ ଆନନ୍ଦିତ ହେଲେ । ତାଙ୍କ ଉପକାର ପାଇଁ ଉପଯୁକ୍ତ ପୁରସ୍କାରଟିଏ ଦେଇ ନପାରି ସଭକ୍ତିକ ନମସ୍କାରଟିଏ କଲେ । ରାଜା ଭୀଷ୍ମକ କୃଷ୍ଣ ବଳରାମଙ୍କ କୁଣ୍ଡିନପୁର ପହଞ୍ଚିବା ଜାଣି କିଭଳି ସହର୍ଷ ସ୍ୱାଗତ କଲେ ଦୁହିଁଙ୍କୁ ?

**ପ୍ରାପ୍ତୌ ଶ୍ରୁତ୍ୱା ସ୍ୱଦୁହିତୁଃ ଉଦ୍‌ବାହ ପ୍ରେକ୍ଷଣ-ଉତ୍ସୁକୌ ।**
**ଅଭ୍ୟଯାତ୍ ତୂର୍ଯ୍ୟ ଘୋଷେଣ ରାମକୃଷ୍ଣୌ ସମର୍ହଣୈଃ ॥୩୨॥**

ଉ. ରାଜାଙ୍କର ଏକମାତ୍ର ଅଲିଅଳି କନ୍ୟାର ବିବାହ ଉତ୍ସବରେ ଯୋଗଦେବାକୁ ଆସିଛନ୍ତି ସ୍ୱୟଂ ଭଗବାନ । ଏକଥା ଶୁଣୁ ଶୁଣୁ ରାଜା ବାଜା ବଜେଇ ମଧୁପର୍କ, ବସ୍ତ୍ର, ଚନ୍ଦନ ଆଦି ସହ କୁଳ ପୁରୋହିତଙ୍କୁ ନେଇ ସ୍ୱାଗତ କଲେ ଓ ପୂଜା କଲେ ଦୁଇ ଭାଇଙ୍କୁ । ଦୁଇ ଭାଇଙ୍କ ଆଗମନରେ ସମଗ୍ର ବିଦର୍ଭପୁରୀ ପ୍ରଜାଗଣ ଆନନ୍ଦରେ ନାଚିଗଲେ । ସେମାନେ ମଧ୍ୟ ସମସ୍ତେ କାମନା କରୁଥିଲେ ଯେ ଆମ ରାଜକୁମାରୀ ହେଲେ ଦ୍ୱାରକାଧୀଶ କୃଷ୍ଣଙ୍କୁ ବିବାହ କରନ୍ତେ ।

ପ୍ରଶ୍ନ-୫୪: ବିବାହ ଶୁଭଲଗ୍ନ ଉପସ୍ଥିତ ହେଲା । ଜଗତ୍‌ମାତା ରୁକ୍ମିଣୀ କୁଳ ପରମ୍ପରା ଅନୁସାରେ କଡ଼ା ପହରା ସହିତ ସଖୀମାନଙ୍କ ଗହଣରେ ଅମ୍ବିକା ମନ୍ଦିର ପହଞ୍ଚିଲେ । ବାରମ୍ବାର (ଅଭୀକ୍ଷ୍ଣଂ) ନମସ୍କାର କଲେ ଶ୍ରୀ ଗଣେଶଜୀଙ୍କ ସହିତ (ସ୍ୱ ସନ୍ତାନଯୁତାଂ) ମା ଅମ୍ବିକା (ଶିବାଂ) ଙ୍କୁ । ମା'ରୁକ୍ମିଣୀ କ'ଣ ସବୁ ପ୍ରାର୍ଥନା କଲେ ନିଜର କୁଳଦେବୀଙ୍କୁ ?

**ନମସ୍ୟେ ତ୍ୱା-ଅମ୍ବିକେଽଭୀକ୍ଷ୍ଣଂ ସ୍ୱସନ୍ତାନ ଯୁତାଂ ଶିବାମ୍ ।**
**ଭୂୟାତ୍ ପତିଃ ମେ ଭଗବାନ୍ କୃଷ୍ଣଃ ତତ୍ ଅନୁମୋଦତାମ୍ ॥୪୬॥**

ଉ. ସେ ଅନ୍ୟ କିଛି ନ ମାଗି ସିଧାସଳଖ ମାଗିଲେ ଯେ ଭଗବାନ ଶ୍ରୀକୃଷ୍ଣ

କେବଳ ତାଙ୍କର ପତି ହୁଅନ୍ତୁ। ଦେବୀଙ୍କ ଗଳାରୁ ପୁଷ୍ପହାର ଛିଣ୍ଡି ତଳେ ପଡ଼ିଲା। ପ୍ରସାଦ ରୂପରେ ରକ୍ମିଣୀ ତାକୁ ଗ୍ରହଣ କରିନେଲେ। ପୂଜା ନିବେଦନ ପର୍ବ ଶେଷହେଲା। ମା ଜଗଦମ୍ବାଙ୍କ ଆଶୀର୍ବାଦରେ ରକ୍ମିଣୀଙ୍କର ଦେହରୁ ଦିବ୍ୟ ତେଜ ନିର୍ଗତ ହେବାରେ ଲାଗିଲା। ତାଙ୍କ ଅପରୂପ ସୌନ୍ଦର୍ଯ୍ୟକୁ ଯେଉଁ ଅଙ୍ଗରକ୍ଷକ, ସୈନ୍ୟ ସାମନ୍ତ କାମ ଦୃଷ୍ଟିରେ ଚାହିଁଲେ ସମସ୍ତେ ଚେତା ହରାଇ ଭୂଇଁଲେ ଲୋଟିଲେ। ଏହି ସୁବର୍ଣ୍ଣ ସୁଯୋଗ ଅପେକ୍ଷାରେ ଥିଲେ ଠାକୁରଜୀ। ସଙ୍ଗେ ସଙ୍ଗେ ସେ ଗରୁଡ଼ ଧ୍ୱଜ ରଥ ଆରୋହଣ କରି ପହଞ୍ଚିଗଲେ ମନ୍ଦିର ଦ୍ୱାରଦେଶରେ। ରକ୍ମିଣୀ ହସ୍ତ ପ୍ରସାରଣ କରନ୍ତେ ସ୍ମିତ ହାସ୍ୟ କରି ଉଠାଇ ନେଲେ ରଥ ଉପରକୁ। ରଥ ଚାଲିଲା ଦ୍ୱାରକା ରାସ୍ତାରେ। ନେଲା ନେଲା ବୋଲି ହୁରି ପଡ଼ିଲା। ରକ୍ମୀ, ଶିଶୁପାଳ, ଜରାସନ୍ଧ, ଶାଲ୍ୱ ଆଦି ସମସ୍ତେ ମିଳିତ ଆକ୍ରମଣ କଲେ। ଶ୍ରୀକୃଷ୍ଣଙ୍କର ପଥ ଓଗାଳିଲେ। ଘମାଘୋଟ ଯୁଦ୍ଧ ହେଲା କୃଷ୍ଣ ବଳରାମଙ୍କ ସହ। ଶେଷରେ କୃଷ୍ଣଦ୍ୱେଷୀ ମାନେ ସମସ୍ତେ ପରାସ୍ତ ଓ ଲଜ୍ଜିତ ହେଲେ।

## ଅଥ ୫୪ମ ଅଧ୍ୟାୟଃ

### (ରକ୍ମିଣୀ ଉଦ୍‌ବାହ ପ୍ରସଙ୍ଗ)

ପ୍ରଶ୍ନ-୫୫: ନନ୍ଦିଘୋଷ ରଥରେ ମା' ରକ୍ମିଣୀଙ୍କୁ ବସାଇ ଭଗବାନ ଦ୍ୱାରକା ଅଭିମୁଖେ ରଥ ଦୌଡ଼ାଇଲେ। ଜରାସନ୍ଧ, ଶିଶୁପାଳ, ଶାଲ୍ୱ ଆଦି ସମସ୍ତେ ପଛପଟେ ଆକ୍ରମଣ କରୁଥାନ୍ତି। ବଳରାମଜୀଙ୍କ ଯୁଦ୍ଧକୌଶଳ ପାଖରେ ସମସ୍ତେ ହାରମାନିଲେ। ମାନିଲେନି କେବଳ ଜଣେ। ସେ କୃଷ୍ଣଦ୍ୱେଷୀ ଜଣକ ଅତ୍ୟନ୍ତ କ୍ରୋଧୀ ରକ୍ମୀ। ରାଜା ଜରାସନ୍ଧ ରକ୍ମୀଙ୍କୁ ସେତେବେଳେ ଶାନ୍ତ୍ୱନାବାଣୀ ଶୁଣାଇ କେଉଁ ଦର୍ଶନ ଶାସ୍ତ୍ର ବୁଝାଇଲେ ?

ଶ୍ରୀ ଶୁକ ଉବାଚ

**ଭୋ ଭୋଃ ପୁରୁଷ ଶାର୍ଦ୍ଦୁଳ ଦୌର୍ମନସ୍ୟଂ ଇଦଂ ତ୍ୟଜ।**
**ନ ପ୍ରିୟ-ଅପ୍ରିୟୟୋ ରାଜନ୍ ନିଷ୍ଠା ଦେହିଷୁ ଦୃଶ୍ୟତେ ॥୧୧॥**

ଉ. ଜରାସନ୍ଧ କହିଲେ, ''ହେ ରକ୍ମୀ, ଶିଶୁପାଳ ଦୁର୍ବଳ ରାଜା। ପରାଜୟରେ ତାର ମନ ଦୁଃଖ ହେବା ସ୍ୱାଭାବିକ। ତୁମେ ରକ୍ମୀ କିନ୍ତୁ ପୁରୁଷ ସିଂହ। ତୁମେ ଦେହ

ନୁହ (ଦେହୀ) ଆତ୍ମା । ଆତ୍ମାଙ୍କର ସୁଖ-ଦୁଃଖ ମାନସିକ ଦୌର୍ବଲ୍ୟତା ଭଲ ମନ୍ଦ (ପ୍ରିୟ-ଅପ୍ରିୟ) ଆସିବ କେଉଁଠୁ? ଜୀବର ହାର ଜିତ ସୁଖ-ଦୁଃଖ ସବୁ ଈଶ୍ୱରଙ୍କ ହସ୍ତରେ ଥାଏ । ସେ ସମସ୍ତଙ୍କୁ କାଠ କଣ୍ଢେଇ ଭଳି ନଚାନ୍ତି । ତୁମେ ଈଶ୍ୱରଙ୍କ ଇଚ୍ଛାକୁ ମାନି ନିଅ । ସମ୍ମାନ ଦିଅ । ଏବଂ ଶାନ୍ତ ହୋଇଯାଅ ।''

ପ୍ରଶ୍ନ-୫୬: ଜରାସନ୍ଧ କଥାଟିକୁ ପ୍ରାଞ୍ଜଳ କରିବାକୁ ଯାଇ ନିଜର ହାରଜିତର ଦୃଷ୍ଟାନ୍ତ ମଧ୍ୟ ରଖିଲେ । ସେଇ କୃଷ୍ଣଙ୍କ ସହିତ (ଶୌରୈଃ) ସତର ଥର (ସପ୍ତଦଶ) ଯୁଦ୍ଧ (ସଂଯୁଗାନି) କରି ସେ ନିଜେ ପରାସ୍ତ ହୋଇଛନ୍ତି । କାରଣ ସେତେବେଳେ ସ୍ୱୟଂ କାଳ ତାଙ୍କର ପ୍ରତିକୂଳ ଥିଲା । ଅଷ୍ଟାଦଶ ଥର ତେଇଶି ଅକ୍ଷୌହିଣୀ ସୈନ୍ୟବଳ ନେଇ ତାଙ୍କର ମଥୁରା ଆକ୍ରମଣ ଫଳ କ'ଣ ହେଲା ବୋଲି ସେ କହିଲେ ?

**ଶୌରୈଃ ସପ୍ତଦଶ-ଅହଂ ବୈ ସଂଯୁଗାନି ପରାଜିତଃ ।**
**ତ୍ରୟୋବିଂଶତିଭିଃ ସୈନ୍ୟୈଃ ଜିଗ୍ୟେ ଏକଂ ଅହଂ ପରମ୍ ॥୧୩॥**

ଉ. ଜରାସନ୍ଧ ସଗର୍ବରେ ଡ଼ିଗ୍ ହାଙ୍କିଲେ । କହିଲେ, ''ରୁକ୍ମୀ, ମୁଁ ଜିଣିଲି (ଜିଗ୍ୟେ) ନା ।'' କାଳେ କିଏ ଏ କଥାକୁ ଉପହାସ କରିଦେବ ତେଣୁ ଭଗବାନଙ୍କର ରଣଛୋଡ଼ ଉପାଧି କଥା ରୁକ୍ମୀକୁ ମନେ ପକାଇଦେଲେ । କୃଷ୍ଣ ତାଙ୍କ ଭୟରେ ମଥୁରା ଛାଡ଼ି ପଳାଇଛନ୍ତି ଓ ତାଙ୍କୁ ଲୁଚି ସୁଦୂର ଦ୍ୱାରକାରେ ଡ଼େରା ପକାଇ ରହିଛନ୍ତି ।

ପ୍ରଶ୍ନ-୫୭: ଶେଷରେ ଜରାସନ୍ଧ ଆଦି ରାଜାମାନେ ନିଜ ନିଜ ସୈନ୍ୟ ସାମନ୍ତ ନେଇ ନିଜ ନିଜ ରାଜ୍ୟକୁ ଫେରିଗଲେ । ଫେରିଲେନି ଏକା ରୁକ୍ମୀ । ନନ୍ଦିଘୋଷର ପିଛା କଲେ । ଅଜସ୍ର ବାଣ ବର୍ଷା କରି ଚାଲିଲେ । ଭଗବାନ କାହିଁ ଅବା ଛାଡ଼ନ୍ତେ । ମୌକା ଦେଖି ତାଙ୍କୁ ବନ୍ଦୀ କଲେ । ରୁକ୍ମିଣୀଙ୍କ ଅନୁରୋଧରେ ତାଙ୍କୁ ହତ୍ୟା କଲେ ନାହିଁ । ପରେ ପରେ ପହଞ୍ଚିଗଲେ ଭାଇ ସଂକର୍ଷଣ । ସେ ରୁକ୍ମୀଙ୍କୁ ଦୟାକଲେ । ଓଲଟି ସାନ ଭାଇକୁ ଖରି ଖୋଟି ଦିପଦ ଶୁଣାଇଲେ କ'ଣ କହି ?

**ବନ୍ଧୁଃ ବଧ-ଅର୍ହ ଦୋଷୋଽପି ନ ବନ୍ଧୋଃ ବଧଂ ଅର୍ହତି ।**
**ତ୍ୟାଜ୍ୟଃ ସ୍ୱେନ-ଏବ ଦୋଷେଣ ହତଃ କିଂ ହନ୍ୟତେ ପୁନଃ ॥୩୯॥**

ଉ. ବଡ଼ ଠାକୁର କହିଲେ, ''ହେ କୃଷ୍ଣ, ରୁକ୍ମିଣୀଙ୍କ ହସ୍ତ ଧରିବା ପରଠାରୁ ରୁକ୍ମୀ ଆମ୍ଭର ସପ୍ତପୁରୁଷର ବନ୍ଧୁ ସମ୍ବନ୍ଧୀ ହୋଇ ସାରିଲେଣି । ଶାସ୍ତ୍ର ନିୟମରେ ସମ୍ବନ୍ଧୀ ଲୋକ ବଧ ଯୋଗ୍ୟ ଦୋଷ କଲେ ମଧ୍ୟ ତାକୁ ପ୍ରାଣରେ ବଧ କରିବା ଅନୁଚିତ । ବରଂ ଅପମାନ ଦେଇ ଗୃହରୁ ବା ରାଜ୍ୟରୁ ନିକାଲି ଦେବା ତାଙ୍କ ପାଇଁ ମୃତ୍ୟୁଦଣ୍ଡ ହେବ ।''

ପ୍ରଶ୍ନ-୫୮ : ସଂକର୍ଷଣ ଦେବ ସେ ପରିସ୍ଥିତିରେ ରୁକ୍ମିଣୀ ନିଜର ଭାଇଙ୍କ ପ୍ରାଣ ରକ୍ଷା କରିଥିବାରୁ ତାଙ୍କୁ ପ୍ରଶଂସା କଲେ କି ?

**ଆତ୍ମ ମୋହୋ ନୃଣାଂ ଏଷ କଳ୍ପତେ ଦେବ ମାୟୟା ।**
**ସୁହୃତ୍ ଦୁହୃଦ୍ ଉଦାସୀନ ଇତି ଦେହ-ଆତ୍ମ ମାନିନାମ୍ ॥୪୩॥**

ଉ. ଆଦୌ ପ୍ରଶଂସା କଲେନି । ରୁକ୍ମିଣୀଙ୍କର ନିଜ ଭାଇ ପ୍ରତି ଥିବା ଦୋଷ ଦୁର୍ବଳତାକୁ ମଧ ପଦାରେ ପକାଇଦେଲେ । ପରମେଶ୍ୱରଙ୍କ ଅଚିନ୍ତ୍ୟ ମାୟାଶକ୍ତି ଅଧୀନରେ ରହି ସକଳ ଜୀବ ନିଜ ନିଜ ମନ, ବୁଦ୍ଧି, ଚିତ୍ତ ଦ୍ୱାରା କାମ କରନ୍ତି । ନିଜକୁ ଆତ୍ମା ନ ମାନି ଦେହ ମାନନ୍ତି । ସୁତରାଂ ଦେହ ସମ୍ବନ୍ଧୀ ଲୋକଙ୍କ ପ୍ରତି ଆସକ୍ତି (ମୋହ)ର ଶିକାର ହୁଅନ୍ତି । ରୁକ୍ମୀ ଭଗବତ ବିଦ୍ୱେଷୀ । ଅତଏବ ସେ ସର୍ବଥା ଦଣ୍ଡନୀୟ । ସ୍ୱୟଂ ଭଗବାନ କୃଷ୍ଣ ଯେତେବେଳେ ଦଣ୍ଡ ବିଧାନ କରିବାକୁ ଯାଉଛନ୍ତି ସେଥିରେ ବୁଝିଶୁଝି ହସ୍ତକ୍ଷେପ ନ କରିବା କଥା ।''

ପ୍ରଶ୍ନ-୫୯ : ରୁକ୍ମିଣୀଙ୍କର ଅଯଥା ଶୋକ ମୋହର କାରଣ ଅଜ୍ଞାନତା ଥିଲା । ବଳଦେବ ରୁକ୍ମିଣୀଙ୍କୁ ଭଦ୍ରେ, କଲ୍ୟାଣୀ, ପବିତ୍ରେ (ଶୁଚିସ୍ମିତେ) ଇତ୍ୟାଦି କହି ଦେହ ଆତ୍ମ୍ୟବୁଦ୍ଧି ରୂପ ଅଜ୍ଞାନତାରୁ ମୁକ୍ତିର କେଉଁ ଉପାୟ ବତାଇଦେଲେ ?

**ତସ୍ମାତ୍ ଅଜ୍ଞାନଜଂ ଶୋକଂ ଆତ୍ମଶୋଷ ବିମୋହନମ୍ ।**
**ତତ୍ତ୍ୱଜ୍ଞାନେନ ନିର୍ହୃତ୍ୟ ସ୍ୱସ୍ଥା ଭବ ଶୁଚିସ୍ମିତେ ॥୪୯॥**

ଉ. ସିଧାସଳଖ ବତାଇ ଦେଲେ ଯେ ଜୀବ କୃଷ୍ଣ ତତ୍ତ୍ୱ ଜାଣିଥିଲେ ତାର ସକଳ ଅଜ୍ଞାନତା, ମୋହ ଦୂରହେବ (ନିହୃତ୍ୟ) । ସଂକ୍ଷେପରେ କହିଲେ ବୁଝାଯିବ ଯେ କୃଷ୍ଣଙ୍କୁ ଜାଣିବା କେବଳ ଜ୍ଞାନ ଆଉ ସବୁ ଅଜ୍ଞାନ ।

ପ୍ରଶ୍ନ-୬୦ : ରାଜକୁମାର ରୁକ୍ମୀ ପ୍ରତିଜ୍ଞା କଲେ ଯେ କୃଷ୍ଣଙ୍କ ଠାରୁ କଳେ ବଳେ କୌଶଳେ ଭଉଣୀଙ୍କୁ ଛଡ଼ାଇ ନ ଆଣିବା ଯାଏ ସେ ଆଉ କୁଣ୍ଡିନପୁର ଫେରିବନି । ସେ ସେହି ସ୍ଥାନରେ ଭୋଜକଟ ନାମକ ନୂତନ ନଗର ସ୍ଥାପନ କରି ରହିଗଲେ । ରୁକ୍ମିଣୀଙ୍କୁ ଧରି ଦୁଇ ଭାଇ ଦ୍ୱାରକାରେ ପହଞ୍ଚନ୍ତେ ଏକ ମହା ଉତ୍ସବର ପାଳନ ହେଲା । ଦ୍ୱାରକାବାସୀମାନେ (ପୁର ଓକସାମ୍) ରୁକ୍ମିଣୀ କୃଷ୍ଣଙ୍କ ମିଳନକୁ କ'ଣ କହି ସ୍ୱାଗତ କଲେ ?

**ଦ୍ୱାରକାୟାଂ ଅଭୂତ୍ ରାଜନ୍ ମହାମୋଦଃ ପୁର-ଓକସାମ୍ ।**
**ରୁକ୍ମିଣ୍ୟା ରମୟା-ଉପେତଂ ଦୃଷ୍ଟ୍ୱା କୃଷ୍ଣଂ ଶ୍ରିୟଃ ପତିମ୍ ॥୬୦॥**

ଉ. ସେମାନେ ସମସ୍ତେ କୃଷ୍ଣ ଭକ୍ତ ଥିଲେ । କୃଷ୍ଣ ଏବଂ ନାରାୟଣଙ୍କୁ ଅଭିନ୍ନ ମାନୁଥିଲେ । ରକ୍ମିଣୀଙ୍କ ତେଜ, ଶ୍ରୀ ଆଦି ଦର୍ଶନ କରି ତାଙ୍କୁ ମହାଲକ୍ଷ୍ମୀ ବୋଲି ଚିହ୍ନିଗଲେ । ସୁତରାଂ ଦ୍ୱାରକାରେ ଲକ୍ଷ୍ମୀ-ନାରାୟଣଙ୍କ ମିଳନ ହେଲା ବୋଲି କହି ଉଭୟଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା କରିଥିଲେ ।

ପ୍ରସଙ୍ଗଟିର ସାରାଂଶ ହେଲା ଯେ ବିବାହ ପ୍ରସ୍ତାବ ରକ୍ମିଣୀ ପ୍ରଥମେ ଦେଇଥିଲେ । ଜୀବ ମାତ୍ରକେ ଆମେ ସବୁ ପ୍ରକୃତିଙ୍କ ଅଂଶ । ଆମକୁ ଉଦ୍ଧାର କରିବାକୁ ପ୍ରଥମେ ପ୍ରାର୍ଥନା କରିବାକୁ ପଡ଼ିବ । ତେବେ ସିନା ଭଗବାନ ହାତ ଧରି ଉଠାଇ ନେବେ । ଶରଣ ଦେବେ । ଈଶ୍ୱର ପ୍ରାପ୍ତିର ସକଳ ବାଧା ବିଘ୍ନ ଦୂର କରିବା ଦାୟିତ୍ୱ ସେ ନେବେ । ଆମେ କିନ୍ତୁ ଚିତ୍କାର କରିବା ତ୍ରାହି ମାଂ ମଧୁସୂଦନ । ବାସ୍ ସେତିକି ।

# ୩୨.ବୀରରସ ପ୍ରକରଣ ସାର
# (ଅଧ୍ୟାୟ-୪୬ଶ-୫୪ଶ)

ବୀର ରସର ସଞ୍ଚାର କୌଣସି ଏକ ଭୟାନକ ଯୁଦ୍ଧର ଅପେକ୍ଷା ରଖେ । ଏହା ଆଧ୍ୟାତ୍ମିକ, ବୌଦ୍ଧିକ, ମାନସିକ ବା ଶାରୀରିକ ଯାହା ବି ହେଉ । ଭାଗବତ ଏହି ରସ ପ୍ରକରଣର ନଅ ଅଧ୍ୟାୟରେ ଚାରି ପ୍ରକାରର ବୀର ରସରେ ରସାଣିତ ହୋଇଛନ୍ତି ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା ମାଧ୍ୟମରେ ।

ପ୍ରକରଣର ପ୍ରଥମ ଅଧ୍ୟାୟରେ ମହାନ ଆଧ୍ୟାତ୍ମ ଜ୍ଞାନୀ ଉଦ୍ଧବଙ୍କ ସହ ତାଙ୍କ ଲୀଳା ବର୍ଣ୍ଣିତ ହୋଇଛି । ଉଦ୍ଧବ କେବଳ ଜଣେ ସାମାନ୍ୟ ବୃଷ୍ଣିବଂଶୀ ବୀର ନଥିଲେ । ସେ ଉଗ୍ରସେନଙ୍କ ଦରବାରରେ ଜଣେ ଶ୍ରେଷ୍ଠ ମନ୍ତ୍ରୀ, କୃଷ୍ଣଙ୍କର ଜଣେ ପ୍ରିୟ ସଖା, ଦେବଗୁରୁ ବୃହସ୍ପତିଙ୍କ ଶିଷ୍ୟ ଥିଲେ । ପୁଣି ବୁଦ୍ଧି ସତ୍ତମ ବା ଶୁଦ୍ଧ ଅନ୍ତଃକରଣ ବିଶିଷ୍ଟ ଜ୍ଞାନୀ ମଧ୍ୟ ଥିଲେ । ଧନ ଥିବା ଲୋକକୁ ଧନୀ, ଜ୍ଞାନ ଥିବା ଲୋକକୁ ଜ୍ଞାନୀ ଓ ପ୍ରେମ ଥିବା ଲୋକକୁ ପ୍ରେମୀ କୁହାଯାଏ । ଭଗବାନ ଦେଖିଲେ ଯେ ଉଦ୍ଧବ ପ୍ରେମ ଧନ ସଂଗ୍ରହର ଜଣେ ବିରଳ ସତ୍‌ପାତ୍ର । ଗୋଟିଏ ଦୋଷ କିନ୍ତୁ ଥିଲା ଉଦ୍ଧବଙ୍କର । ଜ୍ଞାନର ଅହଂକାରର କଣ୍ଟା । ସେଥିପାଇଁ ଭଗବାନ ନିଜେ ତାଙ୍କୁ ପ୍ରେମ ଦେବାରେ ନିଜକୁ ଅକ୍ଷମ ମନେ କଲେ । କାରଣ ସେ ନିଜ ଜଣେ ପ୍ରେମର ଭିକାରୀ । ଗୋପୀଙ୍କୁ ଦୁଗ୍ଧ ସର, ଦହି, ଲବଣୀ ମାଗୁଥିଲେ କେବଳ ପ୍ରେମ ମାଗିବା ଛଳରେ ପ୍ରେମ କାଙ୍ଗାଳ

ହୋଇ । ଗୋପୀମାନେ ସେତେବେଳେ ପ୍ରକୃତରେ କୃଷ୍ଣ ପ୍ରେମ ଧନର ସୌଦାଗର ଥିଲେ । ସେଇ ଚିନ୍ମୟ ପ୍ରେମକୁ ଲୁଚାଇବାକୁ ଯାଇ କୃଷ୍ଣ ବିରହ ରୂପକ କରୁଣ କ୍ରନ୍ଦନ ବେଦନା ଆକାରରେ ଗୋପୀମାନେ ପ୍ରକଟ କରୁଥାଆନ୍ତି । ଭଗବାନ ଗୋପୀ ସନ୍ଦେଶ ନାମରେ ୯ଶ୍ଳୋକ ବିଶିଷ୍ଟ ଚିଠି ପଠାଇଛନ୍ତି ଉଦ୍ଧବଙ୍କ ହସ୍ତରେ ନିଜର ପ୍ରେମ ଦୂତ ରୂପେ । ଉଦ୍ଦେଶ୍ୟ ଥାଏ ଉଦ୍ଧବ ବୃନ୍ଦାବନରେ ସେମାନଙ୍କୁ କୃଷ୍ଣଙ୍କୁ କରୁଥିବା ପ୍ରେମକୁ ଭୁଲିଯିବାକୁ ପ୍ରବର୍ତ୍ତାଇବେ ଚିଠିର ଅର୍ଥ ବୁଝାଇ ।

ସୁନ୍ଦର ବେଶଭୂଷା ଧାରଣ କରି ଉଦ୍ଧବଜୀ ରଥ ଚଢ଼ି ପହଞ୍ଚିଗଲେ ବୃନ୍ଦାବନ । ଉଦ୍ଧବଜୀ ବେଦଜ୍ଞ ପଣ୍ଡିତ ବା ଜ୍ଞାନୀ ଥିଲେ । ଅଦ୍ୱୈତ ଜ୍ଞାନରେ ଧୁରନ୍ଧର ବିଦ୍ୱାନ ବୀର । ହେଲେ ଦ୍ୱୈତ ଜ୍ଞାନରେ ଅତ୍ୟନ୍ତ ଦୁର୍ବଳ କାପୁରୁଷ । ଜ୍ଞାନୀମାନେ ସିନା ଦୋଷଜ୍ଞ, ଭକ୍ତମାନେ କିନ୍ତୁ ଗୁଣଜ୍ଞ । ଆଜିର ବୃନ୍ଦାବନରେ ଜ୍ଞାନ ଗୁଦୁଡ଼ି ନାମକ ସ୍ଥାନରେ ଉଦ୍ଧବଜୀ ଭେଟିଛନ୍ତି ଗୋପୀମାନଙ୍କୁ । ଖୋଲିଛନ୍ତି ଭଗବାନଙ୍କର ଅନନ୍ତ ଅସୀମ, ସର୍ବବ୍ୟାପକତା, ସର୍ବସମର୍ଥତା ବିଷୟକ ଜ୍ଞାନ ପେଡ଼ି ତାଙ୍କର ଅଦ୍ୱୈତ ଜ୍ଞାନ ଆଶ୍ରୟରେ । ଗୋପୀମାନଙ୍କୁ ଉପଦେଶ ଦେଉଛନ୍ତି ଓଁକାର ଧ୍ୟାନ କରି ମନକୁ ସ୍ଥିର କରିବାକୁ ଫଳରେ ସହଜରେ ମନରୁ କୃଷ୍ଣ ଭୁଲି ହୋଇଯିବେ । ଫଳ କିନ୍ତୁ ହୋଇଛି ସଂପୂର୍ଣ୍ଣ ଓଲଟ । ଗୋପୀମାନେ  ନିଜର ଜାଦୁକରି ସ୍ପର୍ଶ ଦର୍ଶନ ଆଦି ଦ୍ୱାରା ବୁଝେଇ ପାରିଛନ୍ତି ଉଦ୍ଧବଙ୍କୁ ଯେ ଏବେ ସେ ମଥୁରାରେ ଛାଡ଼ି ଆସିଥିବା ନନ୍ଦ ନନ୍ଦନ କୃଷ୍ଣ ହିଁ ଜଗଦାତ୍ମା, ଜଗଦାଧାର, ଲୀଳା ତନୁଧାରୀ ସ୍ୱୟଂ ଷୋଳକଳା ଭଗବାନ । ତାଙ୍କ ଦିବ୍ୟ ଲୀଳା ହେତୁ ବୃନ୍ଦାବନର ବୃକ୍ଷ, ଲତା, ନଦୀ, ପର୍ବତ, ଗାଈ, ଗୋରୁ, ଜଳ, ସ୍ଥଳ ଆକାଶ ଆଜି ସବୁ କୃଷ୍ଣମୟ । ଜଡ଼ଚେତନ, ସ୍ଥାବର ଜଙ୍ଗମ ସକଳ କୃଷ୍ଣ ଚେତନଶୀଳ ।

ଦଶ ଶ୍ଳୋକୀ ଭ୍ରମର ଗୀତାରେ ଗୋପୀମାନେ ମହାଜ୍ଞାନୀ ଉଦ୍ଧବଙ୍କର ଶୁଷ୍କ ହୃଦୟରେ ଶୁଦ୍ଧ ଭଗବଦୀୟ ପ୍ରେମର ସଞ୍ଚାର କରିପାରିଛନ୍ତି ଦିବ୍ୟ ସତ୍‌ସଙ୍ଗ ପ୍ରଦାନ କରି । ଉଦ୍ଧବଙ୍କର ଜ୍ଞାନର ଅହଂକାର ପତାକା ତଳେ ଛିଣ୍ଡି ପଡ଼ିଛି ଅତ୍ୟନ୍ତ ଦୟନୀୟ ଅବସ୍ଥାରେ । ସେ ଏବେ କୃଷ୍ଣପ୍ରେମ ରସ ପ୍ରାପ୍ତ ମହାବୀର ବୋଲାଇଛନ୍ତି । ନଅଶ୍ଳୋକୀ ଉଦ୍ଧବ ସନ୍ଦେଶ ରୂପକ ପ୍ରେମ ସନ୍ଦେଶ ଶୁଣାଇଛନ୍ତି ଗୋପୀମାନଙ୍କୁ । ଗୋପୀମାନେ ଶୁଣୁ ଶୁଣୁ ବୁଝିଗଲେ ଚିଠିର ସନ୍ଦେଶର ମର୍ମ । ଉଦ୍ଧବ ବଡ଼ କଷ୍ଟରେ ସ୍ୱୀକାର କଲେ ନିଖିଳ ସୃଷ୍ଟିରେ ଗୋପୀଜନ୍ମ କେବଳ ସାର୍ଥକ । ବ୍ରହ୍ମା, ଶଙ୍କର, ଇନ୍ଦ୍ର, ଚନ୍ଦ୍ର ଆଦି

ଦେବତା ଜନ୍ମରେ କି ଲାଭ ? ଦୀର୍ଘ ଆଠମାସ ପରେ ପ୍ରେମ ରସରେ ଜୁଡୁବୁଡୁ ହୋଇ ମଥୁରା ପହଞ୍ଚିଛନ୍ତି ଉଦ୍ଧବ । ଗୋପୀ ବିରହ ରୂପ ପ୍ରେମରସର ମାହାତ୍ମ୍ୟ ବର୍ଣ୍ଣନ କରିଛନ୍ତି ଠାକୁରଜୀଙ୍କ ଆଗରେ । ଠାକୁରଙ୍କ ଇଛା ପୂରଣ ହୋଇଛି ଆଜି ।

ବୌଦ୍ଧିକ ବୀରରସ ପ୍ରସଙ୍ଗରେ ନାୟିକା ରାମାୟଣ ଯୁଗର ରାକ୍ଷସ ରାଜ ରାବଣଙ୍କ ଭଉଣୀ ସେହି ସୂର୍ପଣଖା ଯେ କୃଷ୍ଣ ଲୀଳାରେ ତିନି କୁଜ ଧରି ତ୍ରିବକ୍ରା ନାମରେ ଅଭିନୟ କରିଛନ୍ତି । ଭଗବାନ କାମ ଶରପ୍ରପୀଡ଼ିତା କାପୁରୁଷା ସୈରିନ୍ଧ୍ରୀ ପ୍ରତି କୃପା କରି ତାର ବୁଦ୍ଧିକୁ ଶୁଦ୍ଧ କରି ଦେଇଛନ୍ତି । ସେ କୃତ୍ୟ କୃତ୍ୟତା ସ୍ୱୀକାର କରିଛି ଭଗବାନଙ୍କ ପାଖରେ । ଏବେ ସେ କାମ ଦେବ ବିଜୟିନୀ କୃଷ୍ଣ ପ୍ରେମିକା ବୀରାଙ୍ଗନା ।

ପରବର୍ତ୍ତୀ ଦୁଇ ଅଧ୍ୟାୟରେ ମହାବୀର ଅକ୍ରୂରଙ୍କୁ ପ୍ରେରଣ କରିଛନ୍ତି ଭଗବାନ ହସ୍ତିନାପୁର ରାଜା ଧୃତରାଷ୍ଟ୍ରଙ୍କ ଅଶୁଦ୍ଧ ମନକୁ ଶୁଦ୍ଧ କରିବା ନିମିତ୍ତ । କୃଷ୍ଣଭକ୍ତ ପାଣ୍ଡବ ପାଞ୍ଚ ଭାଇଙ୍କୁ ଦ୍ୱେଷ କଲେ ରାଜା ଜଘନ୍ୟ ପୁତ୍ରମୋହର ଶିକାର ହେବେ । ମହାନ ବିପଦରେ ପଡ଼ି ନିଜ ବଂଶ ନାଶର କାରଣ ହୋଇପାରନ୍ତି ଭବିଷ୍ୟତରେ ସେ କିନ୍ତୁ ରାଜା ଧୃତରାଷ୍ଟ୍ର ଅକ୍ରୂରଙ୍କ ଉପଦେଶ ଗ୍ରହଣ କରିବାରେ ଅସମର୍ଥ । ନିର୍ମଳ କୃଷ୍ଣ ଭକ୍ତିର ଭୟଙ୍କର ଅପାତ୍ର ସେ । ଭଗବାନଙ୍କ ସକଳ ଚେଷ୍ଟା ବ୍ୟର୍ଥ ହୋଇଯାଇଛି । କାରଣ ରାଜା କେବଳ ବାହାରେ ଅନ୍ଧ ନଥିଲେ, ଭିତରେ ମଧ୍ୟ ଅନ୍ଧ ଥିଲେ ବୋଲି ।

ପୁଣି ଦୁଇ ଅଧ୍ୟାୟରେ କୃଷ୍ଣ ବଳରାମ ମହାବୀର ଜରାସନ୍ଧଙ୍କ ସହ ସତର ଥର ଯୁଦ୍ଧ କରିଛନ୍ତି । ସବୁ ଯୁଦ୍ଧରେ ଜୟଲାଭ କରିଛନ୍ତି ଭଗବାନ ମଥୁରାରେ ଥିବାବେଳେ । ଅସଲି ମଜା ହୋଇଛି ଶେଷଥର ଯୁଦ୍ଧରେ । ଭଗବାନ ଆଦୌ ଯୁଦ୍ଧ ନକରି ମଥୁରା ତ୍ୟାଗ କରି ଦ୍ୱାରକା ପଳାଇଛନ୍ତି । ଦ୍ୱାରକାରେ ଦୁର୍ଗ ନିର୍ମାଣ କରି ମଥୁରାର ପ୍ରଜାମାନଙ୍କୁ ସ୍ଥାନାନ୍ତର କରିଛନ୍ତି । ତାଙ୍କୁ ସୁନ୍ଦର ଉପାଧିଟିଏ ମିଳିଛି ରଣଛୋଡ଼ ରାୟ । ତଥାପି ଭଗବାନ ଖୁସି ଯେ ସେ ସିନା ହାରିଛନ୍ତି ଯୁଦ୍ଧରେ, ତାଙ୍କ ସନ୍ତାନ ଜରାସନ୍ଧ ଜିଣିଛି ପୂର୍ବ ସର୍ତ୍ତ ଅନୁଯାୟୀ ହଜାର ହଜାର ବୈଦିକ ବ୍ରାହ୍ମଣମାନଙ୍କର ଜୀବନ ରକ୍ଷା ହୋଇଛି ବୋଲି । ଏଠାରେ ଅସଲି ବୀର ରସର ସଂକେତ ଦେଲେ ଭଗବାନ । ଜଣେ ଯୋଦ୍ଧା ଅସଲି ଯୁଦ୍ଧରେ ହାରି ମଧ୍ୟ ଜିଣିବାର ସ୍ୱାଦ ଅନୁଭବ କରିବା ଦିବ୍ୟ ବୀରରସର ପରିଚାୟକ ନୁହେଁ କି ?

ମାନ୍ଧାତା ପୁତ୍ର ମୁଚୁକୁନ୍ଦ ଦେବତାମାନଙ୍କୁ ଯୁଦ୍ଧରେ ସାହାଯ୍ୟ କରି ବରପ୍ରାପ୍ତ ହୋଇଥିଲେ କୌଣସି ଏକ ସ୍ଥାନରେ ନିର୍ବିଘ୍ନରେ ଶୋଇବେ ବୋଲି । ଯେ ତାଙ୍କୁ

ନିଦରୁ ଉଠାଇ ଦର୍ଶନ କରିବ ସେ ତାଙ୍କ ନେତ୍ର ଅଗ୍ନିରେ ଜଳି ମରିବ । ଏକଥା ଜଣାଥିଲା ସର୍ବଅନ୍ତର୍ଯ୍ୟାମୀ ଭଗବାନଙ୍କୁ । କାଳଯବନ ରାକ୍ଷସ ଆକ୍ରମଣକୁ ଠିକଣା ବାଟରେ ଲଗାଇଛନ୍ତି ସେ । ସେ ଧାଇଁ ଧାଇଁ ପହଞ୍ଚିଛନ୍ତି ସେଇ ଅନ୍ଧାରି ଗୁମ୍ଫାରେ ଯେଉଁଠି ମୁଚୁକୁନ୍ଦ ଶୋଇଥିଲେ । ତାଙ୍କ ଉପରେ ନିଜର ପୀତାମ୍ବର ଘୋଡ଼େଇ ଦେଇ ଲୁଚି ରହିଛନ୍ତି କାଳଯବନକୁ ଅପେକ୍ଷା କରି । ଠିକ୍ ସମୟରେ ପହଞ୍ଚିଛି ସେ ରାକ୍ଷସ । ପାଦ ପ୍ରହାର କରିଛି ମୁଚୁକୁନ୍ଦଙ୍କ ବକ୍ଷରେ ଶ୍ରୀକୃଷ୍ଣ ବୋଲି ଭାବିନେଇ । ଫଳରେ ନିଜେ ଭସ୍ମ ଗଦ୍‌ଦାଟିଏ ହୋଇଯାଇଛି । ଏହାକୁ ଲୋକେ କୁହନ୍ତି ପରକାନ୍ଧରେ ବନ୍ଧୁକ ରଖି ଶିକାର କରିବା ହିଁ ବୀର ରସରେ ରଣ କୌଶଳ ମିଶ୍ରଣର ବାସ୍ତବିକ କାଇଦା ।

ଶେଷ ତିନି ଅଧ୍ୟାୟରେ ଠାକୁରଜୀ ତାଙ୍କର ପ୍ରଥମ ସଂପୂର୍ଣ୍ଣ ଶରଣାଗତ ଭକ୍ତ ରୁକ୍ମିଣୀଙ୍କୁ କୃପା କରିଛନ୍ତି ନିଜର ବୀର ରସର ଉତ୍ତୁଙ୍ଗ ଶୃଙ୍ଗ ଆରୋହଣ କରି । ରୁକ୍ମିଣୀଙ୍କ ସର୍ବସ୍ୱ ସମର୍ପଣ ମୂଳକ ପ୍ରେମ ଚିଠି ତାଙ୍କ ପ୍ରେରିତ ବ୍ରାହ୍ମଣ ହସ୍ତରୁ ପ୍ରାପ୍ତ ହୋଇଛନ୍ତି । ପରିସ୍ଥିତିର ଗମ୍ଭୀରତା ବିଚାର କରି ବିନା କାଳବିଳମ୍ବରେ ପହଞ୍ଚିଛନ୍ତି କୁଣ୍ଡିନପୁର । ବିଦର୍ଭ ରାଜ୍ୟର ରାଜଧାନୀ କୁଣ୍ଡିନପୁରରେ ରାଜକୁମାରୀ ରୁକ୍ମିଣୀଙ୍କର ବିବାହର ଭବ୍ୟ ଆୟୋଜନ । ବର ଚେଦି ରାଜ୍ୟ ନରେଶ ଶିଶୁପାଳ । ବରବେଶରେ ବସିଥାନ୍ତି ଶିଶୁପାଳ ନିଜର ବନ୍ଧୁ ଜରାସନ୍ଧ ଶାଲ୍ୱ ଇତ୍ୟାଦି ବରଯାତ୍ରୀଙ୍କ ସହିତ । ବିବାହ ବେଳା ଉପସ୍ଥିତ । ରୁକ୍ମିଣୀ ନିଜ ସଖୀମାନଙ୍କ ଗହଣରେ କଡ଼ା ସୁରକ୍ଷା ବଳୟ ମଧ୍ୟରେ ଇଷ୍ଟଦେବୀ ପୂଜନଲାଗି ପହଞ୍ଚିଛନ୍ତି ଦେବୀ ମନ୍ଦିର । ପୂଜା କରି ଦେବୀଙ୍କୁ ସେ ପ୍ରସନ୍ନ କରିଛନ୍ତି । ଶ୍ରୀକୃଷ୍ଣଙ୍କୁ ବର ରୂପରେ ପ୍ରାପ୍ତହେବେ ବୋଲି ପ୍ରାର୍ଥନା କରିଛନ୍ତି । ସେତିକିବେଳେ ଛପି ରହିଥିବା ଭଗବାନ ହରଣ କରି ଆଣିଛନ୍ତି ବିଦର୍ଭ ନନ୍ଦିନୀ ରୁକ୍ମିଣୀଙ୍କୁ । ଉପସ୍ଥିତ ରାଜାଗଣ ନେଲା ଦେଲା ବୋଲି ହୁରି ଛାଡ଼ିଛନ୍ତି । ସେମାନେ କୃଷ୍ଣଙ୍କୁ ଆକ୍ରମଣ କରି ସମସ୍ତେ ନିର୍ଲଜ ଭାବରେ ପରାସ୍ତ ହୋଇଛନ୍ତି । ଭଗବାନଙ୍କର ଏ ବିବାହକୁ ରାକ୍ଷସ ବିବାହ କୁହାଯାଏ ଶାସ୍ତ୍ରରେ । ବୀରରସ ତଥାପି ଭଗବାନଙ୍କ ସମ୍ବନ୍ଧିତ ହୋଇଥିବାରୁ ନିନ୍ଦନୀୟ ନ ହୋଇ ବନ୍ଦନୀୟ ବୋଲି ଭାଗବତ ତିନି ଅଧ୍ୟାୟରେ ଏହାର ବିଶେଷ କୀର୍ତ୍ତନ କରିଛନ୍ତି । ପରବର୍ତ୍ତୀ ନଅ ଅଧ୍ୟାୟରେ ଦିବ୍ୟ ଶୃଙ୍ଗାର ରସର ବର୍ଣ୍ଣନା ହେବ ।

# ପ୍ରକରଣ-୩୩ ଶୃଙ୍ଗାର ରସ

## (ଅଧ୍ୟାୟ ୫୫ମ-୬୩ମ)

## ଅଥ ୫୫ମ ଅଧ୍ୟାୟଃ

### (ପ୍ରଦ୍ୟୁମ୍ନ ଚରିତ ଓ ସମ୍ବରାସୁର ଉଦ୍ଧାର କଥା)

ପ୍ରଶ୍ନ-୬୧ : ବ୍ରହ୍ମାବରରେ ତାରକ ଅସୁର ବଳୀୟାନ ହେଲା । ଇନ୍ଦ୍ର ଚନ୍ଦ୍ର ମାନିଲା ନାହିଁ । ଧରାକୁ ସରା ମନେ କଲା । ଦେବତାମାନେ ପୀଡ଼ାରେ ତ୍ରାହି ତ୍ରାହି ଡ଼ାକିଲେ । ଜାଣିଲେ ତାରକ ଶିବ ବୀର୍ଯ୍ୟରେ ଜାତ ସନ୍ତାନ ହସ୍ତରେ ମରିବ । ସେତେବେଳକୁ ଦକ୍ଷ ଯଜ୍ଞରେ ସତୀ ପ୍ରାଣ ତ୍ୟାଗ କରିଥାନ୍ତି । ଶିବ ସଂପୂର୍ଣ୍ଣ ଧ୍ୟାନସ୍ଥ । ଧ୍ୟାନ ଭାଙ୍ଗିବାକୁ କନ୍ଦର୍ପଙ୍କୁ ପଠାଇଲେ ଇନ୍ଦ୍ରଦେବ । ଶିବ କୋପ ଅଗ୍ନିରେ କାମଦେବ ନିଜେ ଜଳିଗଲେ । ତାଙ୍କ ପତ୍ନୀ ରତିଙ୍କ ପ୍ରାର୍ଥନା ବୁଝିଲେ ଶଙ୍କରଜୀ । ଆଦେଶ ଦେଲେ ସୁନ୍ଦରୀଟିଏ ହୋଇ ଶମ୍ବରାସୁର ଘରେ ରନ୍ଧନ କ୍ରିୟା କର । କୃଷ୍ଣଙ୍କ ପୁତ୍ର ରୂପେ ରୁକ୍ମିଣୀଙ୍କ ଗର୍ଭରେ (ବୈଦର୍ଭ୍ୟା) ଜନ୍ମ ନେବେ ତୁମ ପତି କନ୍ଦର୍ପ । ସେତେବେଳେ କାମଦେବଙ୍କର କ'ଣ ନାମ ରଖାଯିବ ?

ଶ୍ରୀ ଶୁକ ଉବାଚ

**ସ ଏବ ଜାତୋ ବୈଦର୍ଭ୍ୟାଂ କୃଷ୍ଣ ବୀର୍ଯ୍ୟ ସମୁଦ୍‌ଭବଃ ।**
**ପ୍ରଦ୍ୟୁମ୍ନ ଇତି ବିଖ୍ୟାତଃ ସର୍ବତୋଽନବମଃ ପିତୁଃ ॥୨॥**

ଉ. ପ୍ରଦ୍ୟୁମ୍ନ ନାମରେ ସେ ପ୍ରସିଦ୍ଧ ହେବେ । ସେ ପୁଣି ପିତା ଭଗବାନ ଶ୍ରୀକୃଷ୍ଣଙ୍କଠାରୁ ରୂପ, ଗୁଣ, ବିଦ୍ୟା, ତେଜ ଇତ୍ୟାଦିରେ ଆଦୌ ନିକୃଷ୍ଟ ବା କମ (ଅନବମଃ) ହେବେ ନାହିଁ ।

ପ୍ରଶ୍ନ-୬୨ : ପ୍ରଦ୍ୟୁମ୍ନ ଦଶ ଦିନର ଶିଶୁ ଥିବାବେଳେ ନାରଦଙ୍କ ମନ୍ତ୍ରଣାରେ ଶମ୍ବର ଦ୍ୱାରକାପୁରୀରୁ ତାଙ୍କୁ ଉଠେଇ ନେଲେ । ସମୁଦ୍ରରେ ଫିଙ୍ଗି ଦେଲେ କାରଣ ବଡ଼ ହୋଇଥିଲେ ସେ ତାଙ୍କର ମୃତ୍ୟୁର କାରଣ ହୋଇଥାନ୍ତେ । ସୌଭାଗ୍ୟକୁ ଏକ ବିରାଟକାୟ ସମୁଦ୍ର ମତ୍ସ୍ୟ ସେହି ଶିଶୁକୁ ଗିଳିଦେଲା । ଜଣେ କୈବର୍ତ୍ତ ସେ ମାଛକୁ

ଧରି ରାଜା ଶମ୍ବରାସୁରଙ୍କୁ ଭେଟି ଦେଲା । ମାୟାବତୀ ନାମକ ଦାସୀ(ପୂର୍ବଜନ୍ମର ରତି) ଶିଶକୁ ଜୀବନ୍ତ ଦେଖି ତାର ଲାଳନ ପାଳନ କଲେ । ଅଳ୍ପ ଦିନରେ ଯୋଗ ବିଦ୍ୟା ବଳରେ ମାୟାବତୀ ପ୍ରଦ୍ୟୁମ୍ନଙ୍କୁ କାହିଁକି ସୁନ୍ଦର ଯୁବକରେ ପରିଣତ କରିଦେଲେ ?

ରତି ଉବାଚ

**ପ୍ରଭାଷ୍ୟ-ଏବଂ ଦଦୌ ବିଦ୍ୟାଂ ପ୍ରଦ୍ୟୁମ୍ନାୟ ମହାତ୍ମନେ ।**
**ମାୟାବତୀ ମହାମାୟାଂ ସର୍ବମାୟା ବିନାଶିନୀମ୍ ।।୧୬।।**

ଉ. ପ୍ରଦ୍ୟୁମ୍ନ କୌଣସି ସାମାନ୍ୟ ଶିଶୁ ନଥିଲେ । ସେ କନ୍ଦର୍ପ ଦେବତା ହୋଇ ମଧ୍ୟ ଶିବଙ୍କ ବରରେ ମନୁଷ୍ୟ ଶରୀର ଧରିଥିଲେ । ଶ୍ରୀକୃଷ୍ଣଙ୍କ ପୁତ୍ର ହୋଇଥିଲେ । ନାରଦଜୀଙ୍କଠାରୁ ସେମାନେ ପତି-ପତ୍ନୀ ବୋଲି ନିଜ ନିଜର ପରିଚୟ ପାଇଗଲେ । ମାୟାବତୀ ତାଙ୍କୁ ପ୍ରବଳ ପରାକ୍ରମୀ ମୋହିନୀ ମାୟା ବିଦ୍ୟା ଶିକ୍ଷା ଦେଲେ । ସେହି ବିଦ୍ୟାବଳରେ ବୀର ପ୍ରଦ୍ୟୁମ୍ନ ସମ୍ମୁଖ ଯୁଦ୍ଧରେ ଶମ୍ବରଙ୍କ ମସ୍ତକ ଛେଦନ କଲେ । ମାୟାବତୀଙ୍କୁ ଧରି ଉଡ଼ନ୍ ଖଟୋଲାରେ ପହଞ୍ଚିଲେ ଦ୍ୱାରକାପୁରୀ ।

ପ୍ରଶ୍ନ-୬୩: ପ୍ରଦ୍ୟୁମ୍ନଙ୍କର ଅପରୂପ ସୌନ୍ଦର୍ଯ୍ୟ ଦର୍ଶନରେ ଏପରିକି କୃଷ୍ଣ ପତ୍ନୀମାନଙ୍କର ମନରେ କାମ ଭାବର ଉଦ୍ରେକ ହେଲା । ରକ୍ମିଣୀଙ୍କ ବକ୍ଷରୁ ବାତ୍ସଲ୍ୟ ଭାବର ଆତିଶଯ୍ୟରେ ଦୁଗ୍ଧ କ୍ଷରଣ ହେଲା । ଅନ୍ତଃପୁରରେ ହଇଚଇ ପଡ଼ିଗଲା । କିଏ ସେ ଏ ସୁଦର୍ଶନ ଯୁବକ । ସପତ୍ନୀକ ଆସି ଭଗବାନ ଶ୍ରୀକୃଷ୍ଣଙ୍କ ଅନ୍ତଃପୁରରେ ହାଜର । ପହଞ୍ଚିଗଲେ ବ୍ରହ୍ମର୍ଷି ନାରଦ ବୀଣା ବାଦନ କରି । ଜଣାଇଦେଲେ ପ୍ରସଙ୍ଗର ସକଳ ରହସ୍ୟ ଆମୂଳଚୂଳ । ଦ୍ୱାରକାବାସୀ ମାନେ କଥାଟିକୁ କିଭଳି ଗ୍ରହଣ କଲେ ?

ଶ୍ରୀ ଶୁକ ଉବାଚ

**ନଷ୍ଟଂ ପ୍ରଦ୍ୟୁମ୍ନଂ ଆୟାତଂ ଆକର୍ଣ୍ଣ୍ୟ ଦ୍ୱାରକା-ଓକସଃ ।**
**ଅହୋ ମୃତ ଇବ-ଆୟାତୋ ବାଲୋ ଦିଷ୍ଟ୍ୟା-ଇତି ହ-ଅବ୍ରୁବନ୍ ।।୩୯।।**

ଉ. ସମସ୍ତେ ଭୂରି ଭୂରି ପ୍ରଶଂସା କଲେ ଦୁହିଁଙ୍କର ଭାଗ୍ୟକୁ । ପୂର୍ବଜନ୍ମର ସୌଭାଗ୍ୟରୁ ମୃତ୍ୟୁ କୋଳରୁ ଫେରି ଆସିବା ପୁଣି କୃଷ୍ଣଲୀଳାରେ ଭାଗନେବା କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ।

# ଅଥ ୫୬ମ ଅଧ୍ୟାୟଃ

## (ସ୍ୟମନ୍ତକ ମଣି କଥା ଓ ଜାମ୍ବବତୀ ସତ୍ୟଭାମାଙ୍କ ବିବାହ)

ପ୍ରଶ୍ନ-୬୪: ଉଗ୍ରସେନଙ୍କ ରାଜ୍ୟରେ ସତ୍ରାଜିତ ଜଣେ କରଦ ରାଜା ଥିଲେ । ସେ ସୂର୍ଯ୍ୟ ଦେବତାଙ୍କୁ କଠିନ ତପସ୍ୟା କରି ପ୍ରସନ୍ନ କଲେ । ଅତି ମୂଲ୍ୟବାନ ସ୍ୟମନ୍ତକମଣି ପ୍ରାପ୍ତ ହେଲେ । ସେ ମଣି ଥିଲା ଏକ ଦୁର୍ଲ୍ଲଭ ସ୍ୱର୍ଣମଣି । ପ୍ରତି ଦିନ ସ୍ୱର୍ଶ ଦ୍ୱାରା ସେଥିରୁ ପ୍ରାୟ ସତସ୍ତରୀ କିଲୋଗ୍ରାମ ସୁନା ମିଳୁଥିଲା । ପୁଣି ମଣି ରହୁଥିବା ସ୍ଥାନରେ ସର୍ପ ଭୟ, ଦୁର୍ଭିକ୍ଷ, ମାନସିକ ଓ ଶାରୀରିକ ବ୍ୟାଧି ଭୟ ରହୁ ନଥିଲା । ଏକଥା ଜାଣି ଭଗବାନ କୃଷ୍ଣ ସତ୍ରାଜିତଙ୍କୁ ସେ ମଣିଟିକୁ ରାଜକୋଷରେ ଜମା କରି ନିଶ୍ଚିନ୍ତ ରହିବାକୁ କହିଥିଲେ । ସତ୍ରାଜିତ ଲୋଭୀ ଲୋକ । ତପସ୍ୟାର ଫଳ ସେ ହାତ ଛଡ଼ା କରିବାକୁ ଚାହିଁଲେ ନାହିଁ ।

ଦିନକର ଘଟଣା । ସତ୍ରାଜିତଙ୍କର ଭାଇ ପ୍ରସେନଜିତ ସେ ମଣିକୁ ଗଳାରେ ପିନ୍ଧି ବଣକୁ ଗଲେ ମୃଗୟାରେ । ସିଂହ (କେଶରୀ) କବଳରେ ପଡ଼ି ତାଙ୍କ ଜୀବନ ଗଲା ହେଲେ ମଣିର କି ଅବସ୍ଥା ହେଲା ?

ଶ୍ରୀ ଶୁକ ଉବାଚ

**ପ୍ରସେନଂ ସହୟଂ ହତ୍ୱା ମଣିଂ ଆଚ୍ଛିଦ୍ୟ କେଶରୀ ।**
**ଗିରିଂ ବିଶନ୍ ଜାମ୍ବବତୀ ନିହତୋ ମଣିଂ ଇଛତା ॥୧୪॥**

ଉ. ପ୍ରସେନଙ୍କ ପ୍ରିୟ ପୈତୃକ ପ୍ରାଣ ଚାଲିଗଲା । ତାଙ୍କ ଚଢ଼ିଥିବା ଘୋଡ଼ାର ମଧ୍ୟ (ସହୟଂ) ପ୍ରାଣଗଲା । ସିଂହ ମଣିଟିକୁ ଧରି ଗିରି ଗୁହାରେ ପହଞ୍ଚିବା ବେଳକୁ ଦୈବାତ ରାମାୟଣ ଯୁଗର ଜାମ୍ବବାନଙ୍କ ହାବୁଡ଼ରେ ପଡ଼ିଲେ । ଏତେ ଉଜ୍ଜ୍ୱଳ ଅଲୌକିକ ମଣିର ପ୍ରଭାକୁ ଦେଖି ଭଲ୍ଲୁକ ରାଜ ଜାମ୍ବବାନ ସିଂହଙ୍କୁ ହତ୍ୟା କଲେ । ମଣିଟିକୁ ଘରକୁ ନେଇ ଝିଅ ଜାମ୍ବବତୀଙ୍କୁ ଖେଳିବାକୁ ଦେଲେ ।

ପ୍ରଶ୍ନ-୬୫: ପ୍ରସେନ ମୃଗୟାରୁ ନ ଫେରନ୍ତେ ସତ୍ରାଜିତ କୃଷ୍ଣଙ୍କ ଉପରେ ଦୋଷ ଆରୋପଣ କଲେ । ଦ୍ୱାରକାରେ ଭଗବାନଙ୍କ ନାମରେ ମିଥ୍ୟା କଳଙ୍କ ଲାଗିଲା ।

ଠାକୁରଜୀ କେତେଜଣ ଲୋକଙ୍କୁ ଧରି ମଣି ଖୋଜିଗଲେ ବଣକୁ । ଦେଖିଲେ ପ୍ରସେନ, ଅଶ୍ୱ ଓ ସିଂହର ମୃତ ଦେହ । ପାଖରେ ଥାଏ ଏକ ଭଲ୍ଲୁକର ପାଦଚିହ୍ନ । ନଥାଏ କିନ୍ତୁ ସେଇ ମଣି । ଲୋକମାନଙ୍କୁ ଗୁହା ଦ୍ୱାରରେ ଅପେକ୍ଷା କରିବାକୁ କହି ସେ ଭାଲୁ ପାଦ ଚିହ୍ନର ପିଛା କରି ପଶିଲେ ଗୁମ୍ଫା ମଧ୍ୟରେ । ଦେଖିଲେ ଜାମ୍ବବାନଙ୍କର ପାଳିତା କନ୍ୟା ସୁନ୍ଦରୀ ଝିଅ ଜାମ୍ବବତୀ ମଣି ଧରି ଖେଳୁଛି । ଝିଅର ଚିତ୍କାର ଶୁଣି ଜାମ୍ବବାନ ସେ ସ୍ଥାନରେ ପହଞ୍ଚିଲେ । ସେ ମଣି ଦେବାକୁ ଅମଙ୍ଗ ହେଲେ । ଉଭୟଙ୍କ ମଧ୍ୟରେ ଲଢ଼େଇ ହେଲା । ନିରବଚ୍ଛିନ୍ନ ଅଠେଇଶ ଦିନ ଅଠେଇଶ ରାତି ଲଢ଼େଇ ଶେଷରେ ଜାମ୍ବବାନ ହାରିଗଲେ । ଶରଣ ପଶନ୍ତେ ଭଗବାନ ଶ୍ରୀରାମ ରୂପ ଦର୍ଶନ କରାଇଲେ । ପ୍ରଭୁ ଭକ୍ତ ଜାମ୍ବବାନ ନିଜ ପ୍ରଭୁଙ୍କୁ ଚିହ୍ନିପାରି କିଭଳି ସ୍ତୁତି କଲେ ?

**ଜାନେ ତ୍ୱାଂ ସର୍ବଭୂତାନାଂ ପ୍ରାଣ ଓଜଃ ସହୋ ବଲମ୍ ।**
**ବିଷ୍ଣୁଂ ପୁରାଣ ପୁରୁଷଂ ପ୍ରଭବିଷ୍ଣୁଂ ଅଧୀଶ୍ୱରମ୍ ॥୨୬॥**

ଉ. ଜାମ୍ବବାନ କହିଲେ, ''ପ୍ରଭୋ, ମୁଁ ଚିହ୍ନିଗଲି ଆପଣଙ୍କୁ । ଆପଣ ସେଇ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ । ସକଳ ପ୍ରାଣୀଙ୍କର ପ୍ରାଣ, ଇନ୍ଦ୍ରିୟ ବଳ (ଓଜଃ), ମାନସିକ ବଳ (ଅହୋ) ଓ ଶାରୀରିକ ବଳ (ବଳଂ) । ଆପଣ ସ୍ୱୟଂ ବିଷ୍ଣୁ, ସୃଷ୍ଟିର ଆଦି ପୁରୁଷ, ସର୍ବଶକ୍ତିମାନ (ପ୍ରଭବିଷ୍ଣୁଂ) ଓ ସର୍ବନିୟନ୍ତା (ଅଧୀଶ୍ୱରମ୍) । ଆପଣଙ୍କୁ ନମସ୍କାର ।''

ପ୍ରଶ୍ନ-*୬୬*: ସହାସ୍ୟ ବଦନରେ ପ୍ରଭୁ ଜାମ୍ବବାନଙ୍କୁ ଆଶୀର୍ବାଦ କଲେ । ମଣି ବିଷୟକ କଥା ସବୁ କହିଲେ । ଜାମ୍ବବାନ ଅତି ପ୍ରସନ୍ନ ହୋଇ ମଣି ସହିତ କନ୍ୟା ରତ୍ନକୁ ଶ୍ରୀକୃଷ୍ଣଙ୍କ ହସ୍ତରେ ଅର୍ପଣ କଲେ । କନ୍ୟାରତ୍ନ ସହ ମହାର୍ଘମଣି ଧରି ଦ୍ୱାରକାରେ ପହଞ୍ଚିଲେ ଭଗବାନ । ବଡ଼ିଆ ମହୋତ୍ସବ ପାଳନ ହେଲା । ରାଜ ସଭାକୁ ସତ୍ରାଜିତଙ୍କୁ ଡ଼କାଇ ଭଗବାନ ସମସ୍ତ ବୃତ୍ତାନ୍ତ କହିଲେ । ମଣିକୁ ତାଙ୍କୁ ଫେରାଇଦେଲ । ନିଜକୁ ଦୋଷୀ ଭାବି ସତ୍ରାଜିତ ଅନେକ ପଶ୍ଚାତ୍‌ତାପ କଲେ । ଶେଷରେ ପ୍ରାୟଶ୍ଚିତ ସ୍ୱରୂପ ମଣି ସହିତ ନିଜ କନ୍ୟା ସତ୍ୟଭାମାଙ୍କୁ ମଧ୍ୟ କୃଷ୍ଣଙ୍କୁ ସମର୍ପଣ କରିଦେଲେ । ଭଗବାନ କ'ଣ ଏବେ ମଣିକୁ ନିଜ ପାଖରେ ରଖିଲେ ?

**ଭଗବାନ୍-ଆହ ନ ମଣିଂ ପ୍ରତି-ଇଚ୍ଛାମଃ ବୟଂ ନୃପ ।**
**ତବ-ଆସ୍ତାଂ ଦେବ ଭକ୍ତସ୍ୟ ବୟଂ ଚ ଫଳ ଭାଗିନଃ ॥୪୫॥**

ଉ. ନା ରଖିଲେନି । କହିଲେ, ''ହେ ରାଜା, ମୁଁ ମଣି ଆଉ ନେବି ନାହିଁ । ଥରେ ଏ ମଣି ପାଇଁ କଳଙ୍କ ମୁଣ୍ଡେଇଛି । ଏବେ ନେଲେ ଆହୁରି ବିପଦରେ ପଡ଼ିବି ।

ଘରକୁ ନେଲେ ରକ୍ମିଣୀ କହିବେ ମୋତେ ଦିଅ । ମୁଁ ବଡ଼ ରାଣୀ । ସତ୍ୟଭାମା କହିବେ ମୋତେ ଦିଅ । ମୋ ବାପ ସଂପତ୍ତି । ବାପାଙ୍କ ତପସ୍ୟାର ଫଳ । ଜାମ୍ବବତୀ କହିବେ ମୋତେ ଦିଅ ମୋ ବାପା ସିଂହକୁ ମାରି ମଣି ହାତେଇଥିଲେ । ଭାଇ ବଳରାମ କହିବେ ମୁଁ ବଡ଼ଭାଇ । ସବୁ ମୂଲ୍ୟବାନ ସଂପତ୍ତିର ମାଲିକ ମୁଁ । ଅତଏବ ଆପଣଙ୍କ ପାଖରେ (ତବ) ମଣି ଥାଉ (ଆସ୍ତାଂ) । ଆପଣ ନିତ୍ୟ ପୂଜା ପାଠ କରନ୍ତୁ । ମାତ୍ର ପ୍ରତିଦିନ ଫଳତକ (ସୁନାତକ) ଆମ ଘରକୁ ପଠାଇ ଦେଉଥିବେ (ଫଳ ଭାଗିନଃ) ।

ଭଗବାନ ଜୀବକୁ କେବଳ ଏଇ କଥା ଶିକ୍ଷା ଦେବାକୁ ଅବତାର ହୋଇଛନ୍ତି । ଜୀବ ସକଳ କର୍ମ କରୁ । କର୍ମର ଫଳକୁ କିନ୍ତୁ ତାଙ୍କୁ ସମର୍ପଣ କରିଦେଉ । କେହି କେହି ଏ ଶ୍ଳୋକରେ ଅର୍ଥ କରନ୍ତି ସେ ଫଳ ତ ପାଇସାରିଲେଣି(ଫଳ ଭାଗିନଃ) । ମଣିରେ ଆଉ କି ପ୍ରୟୋଜନ ? ସତ୍ୟଭାମା ରୂପୀ କନ୍ୟା କ'ଣ କୌଣସି ରତ୍ନଠାରୁ ଊଣା କି ? ଉଭୟ ଅର୍ଥକୁ ଗ୍ରହଣ କରାଯାଉ ।

# ଅଥ ୫୭ମ ଅଧ୍ୟାୟଃ

## (ସ୍ୟମନ୍ତକ ମଣି ଉଦ୍ଧାର ପରେ ଅକ୍ରୂରଙ୍କର ମଣିଲୋଭ କଳଙ୍କ)

**ପ୍ରଶ୍ନ-୬୭:** ଇତି ଅବସରରେ କୃଷ୍ଣ ବଳରାମ ଜାଣିପାରିଲେ ଯେ କୁନ୍ତୀଙ୍କ ସହିତ ପାଞ୍ଚ ପାଣ୍ଡବ ଜତୁଗୃହରେ ପ୍ରାଣ ହରାଇଛନ୍ତି । ବନ୍ଧୁ ସନ୍ଧୋଳିବାକୁ ଗଲେ ଦୁଇ ଭାଇ ହସ୍ତିନାପୁର । କୃଷ୍ଣ ବଳରାମଙ୍କ ଅନୁପସ୍ଥିତିରେ ଦ୍ୱାରକାରେ ହେଲା ଅରାଜକତା । ଅକ୍ରୂର ଓ କୃତବର୍ମାଙ୍କ ବୋଲରେ ପଡ଼ି ଶୋଇଥିବା ଅବସ୍ଥାରେ ଶତଧନ୍ୱା ହତ୍ୟାକଲେ ସତ୍ରାଜିତଙ୍କୁ । ହତ୍ୟାର କାରଣ ମହାର୍ଘ ମଣିର ଲୋଭ । ଏ ଜଘନ୍ୟ କାଣ୍ଡ ଦେଖି ସତ୍ୟଭାମା ଭାଙ୍ଗିପଡ଼ିଲେ । ରଥ ଚଢ଼ି ଧାଇଁଲେ ହସ୍ତିନା । ଜଣାଇଲେ ନିଜର ଦୁଃଖ କୃଷ୍ଣ ବଳରାମଙ୍କୁ । ସେମାନେ ଦ୍ୱାରକାରେ ପହଞ୍ଚିବାରେ ଏଣେ ଭୟ ପାଇଲେ ଶତଧନ୍ୱା । ଅକ୍ରୂର ଓ କୃତବର୍ମାଙ୍କୁ ସାହାଯ୍ୟ ମାଗିଲେ । ଉଭୟେ ଜାଣନ୍ତି ଦୁଇ ଭାଇଙ୍କ ବଳବୀର୍ଯ୍ୟ । ସୁତରାଂ ରୋକଠୋକ ମନା କରିଦେଲେ ଦୁହେଁ । ଶତଧନ୍ୱା ମଣିକୁ ଅକ୍ରୂରଙ୍କୁ ଦେଇ ଅଶ୍ୱ ପିଠିରେ ରାଜ୍ୟ ଛାଡ଼ି ପଳାୟନ କଲେ । କୃଷ୍ଣ ବଳରାମ ଦୁଇ

ଭାଇ ଅଶ୍ୱ ଚଢ଼ି ଶତଧନ୍ୱାଙ୍କର ଅନୁଗମନ କଲେ । ମିଥିଳା ରାଜ୍ୟ ପାଖାପାଖି ଶତଧନ୍ୱାଙ୍କୁ ଚକ୍ରରେ ମସ୍ତକ କାଟି ହତ୍ୟା କଲେ । ମଣି କିନ୍ତୁ ପାଇଲେ ନାହିଁ । ବଳରାମ ରହିଗଲେ ମିଥିଳା ରାଜ୍ୟରେ ଜନକଙ୍କ ସହ ସତ୍‌ସଙ୍ଗ କରିବାକୁ । ଭଗବାନ ଦ୍ୱାରକା ଫେରି ଆସି କ'ଣ କଲେ ?

ଶ୍ରୀ ବାଦରାୟଣି ଉବାଚ

**ତତଃ ସ କାରୟାମାସ କ୍ରିୟା ବନ୍ଧୋଃ ହତସ୍ୟ ବୈ ।**
**ସାକଂ ସୁହୃଦ୍‌ଭିଃ ଭଗବାନ୍ ଯା ଯାଃ ସ୍ୟୁ ସାମ୍ପରାୟିକୀ ॥୨୮॥**

ଉ. ନିଜ ଶ୍ୱଶୁର ସତ୍ରାଜିତଙ୍କର ଦାହ ସଂସ୍କାର କରାଇଲେ । ଲୌକିକ ପରମ୍ପରାକୁ ଠିକ୍ ଠିକ୍ ମାନିନେଇ ଯାହା ଯାହା କରିବା କଥା ସେ ସବୁ କଲେ ।

ପ୍ରଶ୍ନ-୬୮ : ଭଗବାନ ସର୍ବ ଅନ୍ତର୍ଯ୍ୟାମୀ । ତାଙ୍କ ଭୟରେ ଅକ୍ରୂର ଓ କୃତବର୍ମା ଦ୍ୱାରକା ଛାଡ଼ି କାଶୀ ପଳାଇଥିଲେ । ଅକ୍ରୂର ସେଠାରେ ମଣିରୁ ଉତ୍ପନ୍ନ ସୁନା ସବୁ ଦାନ କରୁଥିବା ଖବର ଶ୍ରୀକୃଷ୍ଣ ପାଇଲେ । କୌଶଳ କରି ଅକ୍ରୂରଙ୍କୁ ଦ୍ୱାରକା ଅଣାଇଲେ । ସିଧା ସଳଖ କହିଲେ ଯେ ମଣି ତାଙ୍କ ପାଖରେ ଅଛି । ଅକ୍ରୂର ମଧ ତାଙ୍କର ବିଶ୍ୱସନୀୟ ପାତ୍ର (ସୁବ୍ରତ) । ମଣିକୁ ସୁରକ୍ଷା ଦେବା ଭଳି ଶକ୍ତିର ମଧ ସେ ଅଧିକାରୀ (ଦୁର୍ଦ୍ଧର) । ମଣି ତାଙ୍କ ପାଖରେ ଥାଉ (ତ୍ୱୟି-ଆସ୍ତାଂ) । ଶେଷରେ ସେଇ ମଣିକୁ ଥରେ ଦେଖିବା ପାଇଁ ଓ ରାଜ୍ୟବାସୀଙ୍କୁ ଦେଖାଇବା ପାଇଁ ତାଙ୍କୁ କଅଣ କହିଲେ ?

**ତଥା-ଅପି ଦୁର୍ଦ୍ଧରଃ ତୁ-ଅନ୍ୟୈଃ ତ୍ୱୟି-ଆସ୍ତାଂ ସୁବ୍ରତେ ମଣିଃ ।**
**କିନ୍ତୁ ମାଂ ଅଗ୍ରଜଃ ସମ୍ୟକ୍ ନ ପ୍ରତ୍ୟେତି ମଣିଂ ପ୍ରତି ॥୩୮॥**

ଉ. ଭଗବାନ କହିଲେ, ''ଅକ୍ରୂର, ମୋ ଅଗ୍ରଜ ବଳରାମ ମୋତେ ବିଶ୍ୱାସ କରୁନାହାନ୍ତି । ଭାବୁଛନ୍ତି କୃଷ୍ଣ (ମାଂ) ସ୍ୱୟଂ ମଣି ଲୁଚେଇ ଦେଇ ନଥିବ କାହିଁକି ।''

ପ୍ରଶ୍ନ-୬୯ : ଅକ୍ରୂର ବୁଝିଗଲେ ସବୁକଥା । ରାଜ୍ୟବାସୀଙ୍କ (ଜ୍ଞାତିଭ୍ୟୋ) ମନରୁ (ଆତ୍ମନଃ) କୃଷ୍ଣ ମଣି ଚୋର କଳଙ୍କ (ରଜ) ଯାହା ଗଣେଶ ଚତୁର୍ଥୀରେ ଚନ୍ଦ୍ରଦର୍ଶନ ହେତୁ ଲାଗିଥିଲା ତାକୁ ଧୋଇ ଦେବାକୁ (ବିମୃଜ୍ୟ) ସେ କ'ଣ କଲେ ?

**ସ୍ୟମନ୍ତକଂ ଦର୍ଶୟିତ୍ୱା ଜ୍ଞାତିଭ୍ୟୋ ରଜ ଆତ୍ମନଃ ।**
**ବିମୃଜ୍ୟ ମଣିନା ଭୂୟଃ ତସ୍ମୈ ପ୍ରତ୍ୟର୍ପୟତ୍ ପ୍ରଭୁଃ ॥୪୧॥**

ଉ. ଏବେ ଅକ୍ରୂର ସ୍ୟମନ୍ତକ ମଣିକୁ ସର୍ବସାଧାରଣଙ୍କୁ ଦେଖାଇ ଭଗବାନଙ୍କ ହସ୍ତରେ ସମର୍ପଣ କଲେ । ଭାବିଲେ ସେ ଦାୟିତ୍ୱ ମୁକ୍ତ ହେଲେ କିନ୍ତୁ ଠାକୁରଜୀ ପୁଣି

ମଣିଟିକୁ ଅକ୍ରୂରଙ୍କୁ ସମର୍ପଣ କରିଦେଲେ । ଏ ଘଟଣାରେ ଭକ୍ତ ଅକ୍ରୂରଙ୍କ ବଦନାମ ହେଲା । କିଛି ହେଲେ ସୁନାମ ମିଳିଲାନି । ଜଗତ ଜାଣିଲା ଯେ ଭଗବାନ ଯାହାକୁ କୃପା କରନ୍ତି ତାକୁ ଧନ ଦଉଲତ ଦିଅନ୍ତି ନାହିଁ । ନିଜର ପ୍ରେମ ଦିଅନ୍ତି ।

# ଅଥ ୫୮ମ ଅଧ୍ୟାୟଃ

## (କାଳିନ୍ଦୀ, ମିତ୍ରବିନ୍ଦା, ନାଗ୍ନଜିତୀ, ଭଦ୍ରା ଓ ଲକ୍ଷ୍ମଣା ଉଦ୍‌ବାହ)

ପ୍ରଶ୍ନ-୭୦: ପାଣ୍ଡବମାନେ କୃଷ୍ଣାବତାର କାଳରେ ତାଙ୍କର ଅତି ପ୍ରିୟ ଭକ୍ତ ଥିଲେ । ପାଣ୍ଡବମାନେ ଜତୁଗୃହରେ ଜଳି ନଯାଇ ବଞ୍ଚିଛନ୍ତି ଜାଣିବାପରେ ଭଗବାନ ଶ୍ରୀକୃଷ୍ଣ ପହଞ୍ଚିଲେ ହସ୍ତିନାପୁରରେ । ଦିନକର କଥା । ଅର୍ଜୁନଙ୍କୁ ସାଙ୍ଗରେ ଧରି ରଥ ନେଇ ଯମୁନା କୂଳ ଆଡ଼େ ଠାକୁରଜୀ ବୁଲି ବାହାରିଲେ । ହଠାତ୍ ଦୃଶ୍ୟ ହେଲେ ତପସ୍ୟାରତ ଧ୍ୟାନମଗ୍ନା ଜଣେ ସୁନ୍ଦରୀ ନାରୀ । ଭଗବାନ ଦୂରରେ ରହି ସଖାଙ୍କୁ ପଠାଇଲେ ତାଙ୍କ ପରିଚୟ ଜାଣିବାକୁ । ଅର୍ଜୁନ ତାଙ୍କ ପାଖରେ ପହଞ୍ଚି ଯୁବତୀଙ୍କର ପରିଚୟ ପଚାରିଲେ । ଉତ୍ତରରେ ସେ ସୁନ୍ଦରୀ କ'ଣ ସବୁ କହିଲେ ?

କାଳିନ୍ଦୀ ଉବାଚ

**ଅହଂ ଦେବସ୍ୟ ସବିତୁଃ ଦୁହିତା ପତିଂ ଇଚ୍ଛତୀ ।**
**ବିଷ୍ଣୁଂ ବରେଣ୍ୟଂ ବରଦଂ ତପଃ ପରମଂ ଆସ୍ଥିତଃ ॥୨୦॥**

ଉ. ନିଜ ପରିଚୟ ଦେବାକୁ ଯାଇ କହିଲେ, ''ମୁଁ ସୂର୍ଯ୍ୟଦେବଙ୍କ (ସବିତୁଃ) ପାଳିତା କନ୍ୟା । ନାମ ମୋର କାଳିନ୍ଦୀ । ସ୍ଥୂଳ ଦେହରେ ମୁଁ ଏହି ଯମୁନା ନଦୀ । ସୂକ୍ଷ୍ମ ଦେହରେ ଏଇ ଆପଣଙ୍କ ଦେଖୁଥିବା ନାରୀଟିଏ । ପିତାଙ୍କ ନିର୍ଦ୍ଦେଶରେ କଠୋର ତପସ୍ୟା କରୁଛି । ସଂସାରର ଶ୍ରେଷ୍ଠ ଦେବତା ବିଷ୍ଣୁଙ୍କୁ ବର ରୂପେ ପାଇବା ଇଚ୍ଛାରେ । ମୁଁ ଅନ୍ୟ କୌଣସି ଲୌକିକ ମାନବ ବା ଦେବତାଙ୍କୁ ସେବା କରିବାରେ ଅନାଗ୍ରହୀ ।''

ପ୍ରଶ୍ନ-୭୧: କାଳିନ୍ଦୀଙ୍କ ପ୍ରତିଜ୍ଞା କଥା ବୀର ଅର୍ଜୁନ (ଗୁଡ଼ାକେଶ) ଜଣାଇଲେ ଠାକୁରଜୀଙ୍କୁ (ବାସୁଦେବାୟ) ସେ ତ ସବୁକଥା ଜାଣନ୍ତି(ତତ୍ ବିଦ୍ୱାନ୍) । ନିଜର ସ୍ୱରୂପ ଦର୍ଶାଇ କାଳିନ୍ଦୀଙ୍କ ପାଇଁ କି ବର ଯାଚିଲେ ?

**ତଥା-ଅବଦତ୍ ଗୁଡ଼ାକେଶୋ ବାସୁଦେବାୟ ସୋଽପି ତାମ୍ ।**
**ରଥଂ ଆରୋପ୍ୟ ତତ୍‌ବିଦ୍ୱାନ୍ ଧର୍ମରାଜଂ ଉପାଗତମ୍ ॥୨୩॥**

ଉ. ଅନ୍ୟ ବର ଯାଚିବେ କ'ଣ । ନିଜକୁ ଦେଇ ଦେଲେ ଭକ୍ତକୁ (ତାମ୍) । ବିନା ବାକ୍ୟ ବ୍ୟୟରେ ତାଙ୍କୁ ସ୍ୱୀକାର କଲେ ଚତୁର୍ଥ ପତ୍ନୀ ରୂପେ । ଦୁଇ ଭକ୍ତଙ୍କୁ ରଥରେ ବସାଇ ସେ ରାଜା ଯୁଧିଷ୍ଠିରଙ୍କ (ଧର୍ମରାଜ) ପାଖରେ ପହଞ୍ଚିଗଲେ ।

ପ୍ରଶ୍ନ-୭୨: ଭଗବାନ ପାଣ୍ଡବମାନଙ୍କ ପାଇଁ ସ୍ୱତନ୍ତ୍ର ରାଜଧାନୀ ଇନ୍ଦ୍ରପ୍ରସ୍ଥ ପ୍ରସ୍ତୁତିରେ ସାହାଯ୍ୟ କଲେ । ଅର୍ଜୁନଙ୍କ ଦ୍ୱାରା ଖାଣ୍ଡବବନ ଦହନ କରାଇଲେ । ଅଗ୍ନି ଦେବତା ତ୍ରେତୟା ଯୁଗରେ ଅସଂଖ୍ୟ ଯଜ୍ଞ ହବି ଖାଇ ଲୁଦୁବୁଦୁ ବ୍ୟାଧି ଭୋଗୁଥିଲେ । ଏବେ ଅନେକ ଔଷଧୀୟ ବୃକ୍ଷ, ଜଡ଼ି ବୁଟି ଖାଇ ବ୍ୟାଧି ମୁକ୍ତ ହେଲେ । ସେଇ ଅଗ୍ନିଦେବତା ପାର୍ଥଙ୍କୁ ବର ଯାଚିଲେ । ଗାଣ୍ଡିବ ଧନୁ, ଅକ୍ଷୟ ତୂଣୀର, କପିଧ୍ୱଜ ରଥ ସହିତ ଅଭେଦ୍ୟ କବଚ ପ୍ରଦାନ କଲେ । ମୟଦାନବଙ୍କୁ ସେ ବନ ଅଗ୍ନିରୁ ଉଦ୍ଧାର କଲେ ଠାକୁରଜୀ । ମୟ ଦାନବ ପ୍ରସନ୍ନ ହୋଇ ପାଣ୍ଡବମାନଙ୍କ ନିମନ୍ତେ ଅଲୌକିକ ସଭାଗୃହ ସହିତ ରାଜପ୍ରସାଦ, ସୁନ୍ଦର ନଗରୀ ଇତ୍ୟାଦି ମୁହୂର୍ତ୍ତକରେ ନିର୍ମାଣ କରିଦେଲେ ।

ଭଗବାନ୍ ଦ୍ୱାରକା ଫେରି ଜାଣିଲେ ଅବନ୍ତୀ ରାଜକୁମାରୀ ମିତ୍ରବିନ୍ଦା ତାଙ୍କ ନିଜର ମନ ପ୍ରାଣ ଦେବାକୁ ଚାହୁଁଛନ୍ତି । ତାଙ୍କର ସ୍ୱୟମ୍ବର ହେଉଛି । ତାଙ୍କର ଦୁଇ ଭାଇ ବିନ୍ଦ ଓ ଅନୁବିନ୍ଦ ଦୁର୍ଯ୍ୟୋଧନଙ୍କର ମିତ୍ର ପୁଣି କୃଷ୍ଣ ବିରୋଧୀ ହୋଇଥିବାରୁ କୃଷ୍ଣଙ୍କ ସହ ତାଙ୍କ ବିବାହରେ କଣ୍ଟକ ସାଜିଛନ୍ତି । ଠାକୁରଜୀ ନିଜ ପିଉସୀ ଝିଅ ଭଉଣୀ କୃଷ୍ଣପ୍ରେମ ପୀପାସୁ ମିତ୍ରବିନ୍ଦାଙ୍କ ପାଇଁ କି ବ୍ୟବସ୍ଥା କଲେ ?

ଶ୍ରୀ ଶୁକ ଉବାଚ

**ରାଜାଧିଦେବ୍ୟାଃ ତନୟାଂ ମିତ୍ରବିନ୍ଦାଂ ପିତୃଷ୍ୱସୁଃ ।**
**ପ୍ରସହ୍ୟ ହୃତବାନ୍ କୃଷ୍ଣୋ ରାଜନ୍ ରାଜ୍ଞାଂ ପ୍ରପଶ୍ୟତାମ୍ ॥୩୧॥**

ଉ. ମହାରାଣୀ ରାଜାଧିଦେବୀଙ୍କ କନ୍ୟା ଥିଲେ ମିତ୍ରବିନ୍ଦା । ସ୍ୱୟମ୍ବର ମଧ୍ୟରେ ଉପସ୍ଥିତ ସମସ୍ତ ରାଜାଙ୍କ ଦେଖୁଥିବାବେଳେ (ପ୍ରପଶ୍ୟତାଂ) ଶ୍ରୀକୃଷ୍ଣ ତାଙ୍କୁ ବଳପୂର୍ବକ (ପ୍ରସହ୍ୟ) ହରଣ କରି ଆଣିଲେ । ତାଙ୍କୁ ପଞ୍ଚମ ପାଟରାଣୀର ମର୍ଯ୍ୟାଦା ଦେଲେ ।

ପ୍ରଶ୍ନ-୭୩: କୋଶଳ ଦେଶର ରାଜା ନଗ୍ନଜିତ ଜଣେ ପରମ ବୈଷ୍ଣବ ରାଜା ଥିଲେ । ତାଙ୍କର ଅପୂର୍ବ ଦିବ୍ୟସୁନ୍ଦରୀ ପାଳିତା କନ୍ୟାଙ୍କ ନାମ ନାଗ୍ନଜିତୀ । ସେ ଏକ ଅତ୍ୟନ୍ତ କଠିନ ଓ ବିଚିତ୍ର ସ୍ୱୟମ୍ବର ପ୍ରତିଜ୍ଞା କରିଥିଲେ ନିଜର କନ୍ୟା ଲାଗି ।

ସାତଟି ଅତ୍ୟନ୍ତ ବଳଶାଳୀ ବୃଷଭଙ୍କୁ ଏକତ୍ର କରି ଯେ ବାନ୍ଧି ପାରିବ ସେ କନ୍ୟାରତ୍ନ ପ୍ରାପ୍ତ ହେବ । ଫଳ ହେଲା ଓଲଟା । ଅନେକ ରାଜକୁମାର ଅଣ୍ଟା ଭିଡ଼ିଲେ ମଧ୍ୟ । କନ୍ୟାରତ୍ନ ପ୍ରାପ୍ତ କରିବେ କ'ଣ ନିଜ ନିଜର ପୈତୃକ ପ୍ରାଣକୁ ସ୍ୱାହା କରିବସିଲେ । ଶେଷରେ ଶ୍ରୀକୃଷ୍ଣ (ଶୌରିଃ) ପହଞ୍ଚି ଗଲେ ସ୍ୱୟମ୍ବରରେ । ଏ ଅସାଧ୍ୟ କର୍ମରେ ସେ କ'ଣ କୃତକାର୍ଯ୍ୟ ହେଲେ କି ?

ଶ୍ରୀ ଶୁକ ଉବାଚ

**ବଦ୍‌ଧ୍ୱା ତାନ୍ ଦାମଭିଃ ଶୌରିଃ ଭଗ୍ନ ଦର୍ପାନ୍ ହତ-ଓଜସଃ ।**
**ବ୍ୟକର୍ଷତ୍ ଲୀଳୟା ବଦ୍ଧାନ୍ ବାଲୋ ଦାରୁମୟାନ୍ ଯଥା ॥୪୬॥**

ଉ. ଭଗବାନଙ୍କ ପାଇଁ କେଉଁ କାର୍ଯ୍ୟ ଅବା ଅସାଧ୍ୟ । ତାଙ୍କ ଦର୍ଶନରେ ବୃଷଭ ମାନେ ବଳଶୂନ୍ୟ ହୋଇଗଲେ, ସେମାନଙ୍କ ନିଜ ନିଜର ପରାକ୍ରମ ହରାଇ ବସିଲେ (ହତ-ଓଜସଃ) । ପିଲାଟିଏ କାଠର ଶଗଡ଼ ଗାଡ଼ିରେ ଯୋଚା କାଠ ବଳଦଙ୍କୁ ଟାଣିବା ଭଳି ଭଗବାନ ଖେଳରେ ଖେଳରେ (ଲୀଳୟା) ସାତ ବଳଦଙ୍କୁ ବାନ୍ଧି ଆଣି ରାଜାଙ୍କ ହାତରେ ଧରେଇ ଦେଲେ । ଅସଂଖ୍ୟ ଦାସ, ଦାସୀ, ରଥ, ହାତୀ, ଘୋଡ଼ା ଆଦି ବିପୁଳ ଯୌତୁକ ପ୍ରାପ୍ତ ହେଲେ ଭଗବାନ । ଷଷ୍ଠ ପାଟରାଣୀ ହେଲେ ନାଗ୍ନଜିତୀ ।

ପ୍ରଶ୍ନ-୭୪: ସପ୍ତମ ପାଟରାଣୀ ଭଦ୍ରାଙ୍କୁ ଶ୍ରୀକୃଷ୍ଣ କେଉଁଠୁ କିପରି ପ୍ରାପ୍ତ ହେଲେ ?

**ଶ୍ରୁତକୀର୍ତ୍ତେଃ ସୂତାଂ ଭଦ୍ରାଂ ଉପଯେମେ ପିତୃଷ୍ୱସୁଃ ।**
**କୈକେୟୀଂ ଭ୍ରାତୃଭିଃ ଦତ୍ତାଂ କୃଷ୍ଣଃ ସନ୍ତର୍ଦନ-ଆଦିଭିଃ ॥୫୬॥**

ଉ. କୈକେୟ ରାଜ୍ୟର ରାଜକୁମାରୀ ଭଦ୍ରା ସ୍ୱୟଂ କୃଷ୍ଣ ଭକ୍ତ । ମା ଶ୍ରୁତକୀର୍ତ୍ତି କୃଷ୍ଣଙ୍କର ପିଉସୀ ନାନୀ ମଧ୍ୟ କୃଷ୍ଣ ଭକ୍ତ । ଭାଇ ସନ୍ତର୍ଦନ କୃଷ୍ଣ ଭକ୍ତ ଥିବାରୁ ମହା ଆନନ୍ଦରେ ଠାକୁରଜୀଙ୍କ ହସ୍ତରେ ଦେଇଦେଲେ ଶ୍ରୀକୃଷ୍ଣଙ୍କୁ । ଭଗବାନଙ୍କୁ ବିନା ପରିଶ୍ରମରେ ସେ କନ୍ୟାରତ୍ନ ପ୍ରାପ୍ତ ହୋଇଗଲା ।

ପ୍ରଶ୍ନ-୭୫: ମଦ୍ରଦେଶର ରାଜାଙ୍କ ଅସାମାନ୍ୟା ସୁନ୍ଦରୀ ପାଳିତା କନ୍ୟା ଥିଲେ ଲକ୍ଷ୍ମଣା । ନାମ ଯେମିତି ସ୍ୱଭାବ, ଚରିତ୍ର, ମଧ୍ୟ ସେମିତି ଶୁଭ ଲକ୍ଷଣଯୁକ୍ତ । ଆଜନ୍ମ କୃଷ୍ଣଗତ ପ୍ରାଣା ସେ । ସର୍ବଅନ୍ତର୍ଯ୍ୟାମୀ ଭଗବାନ ତାଙ୍କ ସ୍ୱୟମ୍ବରକୁ କ'ଣ ଅସଂଖ୍ୟ ଯାଦବ ସେନା ନେଇ ଯାଇଥିଲେ ତାଙ୍କୁ ହରଣ କରିବାକୁ ।

**ସୁତାଂ ଚ ମଦ୍ର-ଅଧିପତେଃ ଲକ୍ଷ୍ମଣାଂ ଲକ୍ଷଣୈଃ ଯୁତାମ୍ ।**
**ସ୍ୱୟମ୍ବରେ ଜହାର-ଏକଃ ସ ସୁପର୍ଣ୍ଣଃ ସୁଧାଂ-ଇବ ॥୫୭॥**

ଉ. ଆଦୌ ନୁହେଁ । ବିନା ସୈନ୍ୟ ବାହିନୀ ସାହାଯ୍ୟରେ ଏକାକୀ (ଏକଂ) ହରଣ ନାଟକ (ଜହାର) କଲେ ଭଗବାନ । ପୂର୍ବେ ପକ୍ଷୀରାଜ ଗରୁଡ଼ ଯେମିତି ଦେବତାଙ୍କ ଅମୃତକୁ ବଳପୂର୍ବକ ହରଣ କରିଥିଲେ ଠିକ୍ ସେଇମିତି କଲେ ଶ୍ରୀକୃଷ୍ଣ । ଏବେ ଅଷ୍ଟମ ପାଟରାଣୀ ଭାବରେ ମର୍ଯ୍ୟାଦା ପାଇଲେ ଲକ୍ଷ୍ମଣା । ପରବର୍ତ୍ତୀ ଅଧ୍ୟାୟରେ ଆଲୋଚିତ ହେବ ଷୋଳ ହଜାର ଏକ ଶହ କୃଷ୍ଣ ରାଣୀଙ୍କ ବିବାହ ପ୍ରସଙ୍ଗ ।

## ଅଥ ୫୯ମ ଅଧ୍ୟାୟଃ

### (ମୁରାସୁର, ନରକାସୁର ଉଦ୍ଧାର ଓ ପାରିଜାତ ହରଣ)

ପ୍ରଶ୍ନ-୭୬: ନରକାସୁରର ଅନ୍ୟ ଏକ ନାମ ଭୌମାସୁର । ସେ ଭଗବାନଙ୍କ ଶ୍ୱେତ ବରାହ କଳ୍ପ ଅବତାର ବେଳେ ପୃଥିବୀମାତା (ଭୂମି)ଙ୍କ ଗର୍ଭରୁ ଜନ୍ମ ନେଇଥିଲେ । ଦୀର୍ଘ କାଳ ତପସ୍ୟା ପରେ ଆଧୁନିକ ଆସାମ ରାଜ୍ୟରେ ବଣ ପାହାଡ଼ ଘେରା ଅଭେଦ୍ୟ ଦୁର୍ଗ ନିର୍ମାଣ କରି ରହୁଥିଲେ । ମୁର ନାମକ ଏକ ଶକ୍ତିଶାଳୀ ଅସୁରକୁ ଦୁର୍ଗ ରକ୍ଷା ଦାୟିତ୍ୱ ଦେଇଥିଲେ ।

ଆଜିର ଭୋଗବାଦୀ ଲୋକ ହିଁ ଏହି ଭୌମାସୁର ପ୍ରତୀକ । ସେ ଅହଂକାରୀ ହୋଇ ତପସ୍ୟା ଦ୍ୱାରା ପ୍ରାପ୍ତ ଅମାପ ଶକ୍ତିର ଦୁରୁପଯୋଗ କଲା । ଇନ୍ଦ୍ରଙ୍କ ସ୍ୱର୍ଗ ରାଜ୍ୟ ଆକ୍ରମଣ କଲା । ବରୁଣଙ୍କ ଛତ୍ର ଓ ଦେବମାତା ଅଦିତିଙ୍କ କୁଣ୍ଡଳ ଛଡ଼େଇ ନେଲା । ଅପ୍ସରାମାନଙ୍କ କ୍ରୀଡ଼ାକ୍ଷେତ୍ର ମଣି ପର୍ବତ ଦଖଲ କଲା । ଦେବରାଜ ଇନ୍ଦ୍ର ମଧ୍ୟ ଭୟ ପାଇଲେ । ଭଗବାନ ଶ୍ରୀକୃଷ୍ଣଙ୍କୁ ଜଣାଇଲେ କିଛି ପ୍ରତିକାର କରିବାକୁ । ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ ସାଙ୍ଗରେ ଧରି ଗରୁଡ଼ ପୃଷ୍ଠରେ ଗଲେ ନରକାସୁରର ଦୁର୍ଗ ପ୍ରାଗ୍‌ଜ୍ୟୋତିଷପୁର । ଦୁର୍ଗ ଦ୍ୱାରରେ ପହଞ୍ଚି ପାଞ୍ଚଜନ୍ୟ ଶଙ୍ଖ ବାଦନ କଲେ । ମୁରାସୁର ପ୍ରବଳ ବିରୋଧ କଲା । ଯୁଦ୍ଧ ଡ଼ାକରା ଦେଲା । ଭଗବାନ ଚକ୍ରରେ ତାର ମସ୍ତକ

ଛେଦନ କଲେ । ପରେ ପରେ ତାର ସାତ ପୁଅଙ୍କୁ ମଧ୍ୟ ମାରି ଉଦ୍ଧାର କଲେ ।

ଶେଷରେ ହସ୍ତୀ ପିଠିରେ ବସି ନରକାସୁର ତାଙ୍କ ପାଖକୁ ଆସିଲେ । ଭଗବାନଙ୍କୁ ଯୁଦ୍ଧ ଡ଼ାକରା ଦେଲେ । ଭଗବାନ ଅକ୍ଲେଶରେ ସୁଦର୍ଶନ ଚକ୍ର ଦ୍ୱାରା ତାର ଗଳା କାଟି ଦେଲେ । ନରକାସୁରର ମାତା ଭୂଦେବୀ ସତେବେଳେ ସ୍ଥୁଳ ଶରୀରେ ଥାଆନ୍ତି । ସେ ପ୍ରଭୁଙ୍କୁ ଚିହ୍ନିପାରି କିଭଳି ସ୍ତୁତି କଲେ ଓ ତାଙ୍କୁ ପ୍ରସନ୍ନ କଲେ ?

**ଶ୍ରୀ ଶୁକ ଉବାଚ**

**ନମୋ ଭଗବତେ ତୁଭ୍ୟଂ ବାସୁଦେବାୟ ବିଷ୍ଣବେ ।**
**ପୁରୁଷାୟ-ଆଦି ବୀଜାୟ ପୂର୍ଣ୍ଣବୋଧାୟ ତେ ନମଃ ॥୨୭॥**

ଉ. ସେ ଜାଣିଥିଲେ ସ୍ୱୟଂ ବିଷ୍ଣୁ ହିଁ ଏବେ ବସୁଦେବଙ୍କ ପୁତ୍ର ରୂପରେ ଲୀଳା କରୁଛନ୍ତି । ମନୁଷ୍ୟ ହେଲେ ମଧ୍ୟ ସେ ଆଦିପୁରୁଷ, ସୃଷ୍ଟିର କାରଣ ସ୍ୱରୂପ, ସର୍ବଜ୍ଞ (ପୂର୍ଣ୍ଣବୋଧାୟ) ମଧ୍ୟ । ତାଙ୍କୁ ବିନୀତ ସ୍ତୁତି ଦ୍ୱାରା ପ୍ରସନ୍ନ କଲେ ।

ପ୍ରଶ୍ନ-୭୭: ଠାକୁରଜୀ ସଂଗ୍ରହ କଲେ ବରୁଣଙ୍କ ଛତ୍ର ଓ ଅଦିତିଙ୍କ କୁଣ୍ଡଳ । ନରକାସୁରର ପୁତ୍ର ଭଗଦତ୍ତଙ୍କୁ ସସମ୍ମାନେ ସିଂହାସନରେ ବସାଇଲେ । ଦୁର୍ଗ ମଧ୍ୟସ୍ଥିତ ବନ୍ଦୀଶାଳାରେ ପହଞ୍ଚି ଦେଖିଲେ ଷୋଳହଜାର ଏକଶତ ରାଜକନ୍ୟାଙ୍କୁ । ସେମାନେ ସମସ୍ତେ ଶ୍ରୀକୃଷ୍ଣଙ୍କ ରୂପ ଦର୍ଶନ କରୁ କରୁ ବିମୋହିତ ହୋଇଗଲେ । ମନ, ପ୍ରାଣ, ଚିତ୍ତ ସବୁକୁ ସମର୍ପଣ କରିଦେଲେ ଠାକୁରଜୀଙ୍କ ପଦତଳେ । କାରଣ ପିତାଙ୍କ ଘରେ ସେମାନଙ୍କୁ ସ୍ଥାନ ତ ମିଳିବନି ପୁଣି ପତ୍ନୀ ରୂପରେ କେହି ଗ୍ରହଣ କରିବେନି ସେମାନଙ୍କୁ । ସୁତରାଂ ଭଗବାନ ପତ୍ନୀରୂପେ ସ୍ୱୀକାର କରି ସମସ୍ତଙ୍କୁ ପଠାଇଦେଲେ ଦ୍ୱାରକା । ସମସ୍ତଙ୍କ ସହିତ ଦ୍ୱାରକାରେ ବିବାହ କରିବାର ବନ୍ଦୋବସ୍ତ କରାଇଦେଲେ ମଧ୍ୟ ।

ଛତ୍ର ଓ କୁଣ୍ଡଳ ଫେରାଇବା ପାଇଁ ଭଗବାନ ପହଞ୍ଚିଲେ ସ୍ୱର୍ଗ ରାଜ୍ୟରେ ଇନ୍ଦ୍ରଙ୍କ ରାଜପ୍ରାସାଦରେ । ଲୀଳାମୟ ଭଗବାନଙ୍କୁ ସ୍ୱାଗତ କଲେ ଦେବରାଜ ଇନ୍ଦ୍ର । ଛତ୍ର, କୁଣ୍ଡଳ ପାଇ ନିଜକୁ ଧନ୍ୟ ମନେ କଲେ । ଫେରିବାବେଳେ ସତ୍ୟଭାମାଙ୍କ ଅନୁରୋଧରେ ନନ୍ଦନ ବନରୁ ପାରିଜାତ ବୃକ୍ଷ ଉପାଡ଼ି ଗରୁଡ଼ ପିଠିରେ ରଖିଦେଲେ । ଇନ୍ଦ୍ରଙ୍କ ଅନୁଚରମାନେ ଏହାର ଦୃଢ଼ ପ୍ରତିବାଦ କଲେ । ଇନ୍ଦ୍ର ମଧ୍ୟ ଅଣ୍ଟା ଭିଡ଼ିଲେ ଯୁଦ୍ଧ ପାଇଁ । ଠାକୁରଜୀ ନିମିଷକ ମଧ୍ୟରେ ଇନ୍ଦ୍ରଙ୍କୁ ପରାସ୍ତ କରି ପହଞ୍ଚିଲେ ଦ୍ୱାରକା । ପାରିଜାତ ବୃକ୍ଷଟିକୁ ସତ୍ୟଭାମାଙ୍କ ମହଲ ଅଗଣାରେ ରୋପଣ କଲେ କାହିଁକି ?

**ସ୍ଥାପିତଃ ସତ୍ୟଭାମାୟା ଗୃହ-ଉଦ୍ୟାନ-ଉପଶୋଭନେ ।**
**ଅନ୍ୱଗୁଃ ଭ୍ରମରାଃ ସ୍ୱର୍ଗାତ୍ ତତ୍ ଗନ୍ଧ-ଆସବ ଲମ୍ପଟାଃ ।।୪୦।।**

ଉ. ବୃକ୍ଷଟିର ଶୋଭା ଅଲୌକିକ (ଉପଶୋଭନ) ଥିଲା । ତାର ସୁଗନ୍ଧ ଏଭଳି ମନ ମୋହକ ଥିଲା ଯେ ସ୍ୱର୍ଗର ଭ୍ରମରମାନେ ସେ ଗନ୍ଧ ଓ ରସ ଲୋଭରେ (ଲମ୍ପଟାଃ) ମର୍ତ୍ତ୍ୟଲୋକର ଦ୍ୱାରକା ପର୍ଯ୍ୟନ୍ତ ପିଛା କରିଥିଲେ । ପାଟରାଣୀ ସତ୍ୟଭାମାଙ୍କ ପାଇଁ ସେ ବୃକ୍ଷଟି ଏକ ଷ୍ଟାଟସ୍ ସିମ୍ବଲ ବା ପ୍ରେଷ୍ଟିଜ୍ ଇସୁ ଥିଲା ।

ଭଗବାନ ଶ୍ରୀକୃଷ୍ଣ ଓ ସତ୍ୟଭାମା ଦ୍ୱାରକାରେ ପହଞ୍ଚିବା ବେଳକୁ ଷୋଳ ହଜାର ଏକଶହ ବେଦୀ ସଜା ସରିଥାଏ । ସେତିକି ସଂଖ୍ୟକ ଅଲଗା ଅଲଗା ରାଣୀ ମହଲ ନିର୍ମାଣ ଓ ସାଜ ସଜା ମଧ୍ୟ ଶେଷ । ଏକ ସଙ୍ଗେ ଠାକୁରଜୀ ସେତିକି ସଂଖ୍ୟକ ସ୍ଥୂଳ ରୂପରେ ପ୍ରକଟ କଲେ ନିଜ ଦେହରୁ । ଅଲଗା ଅଲଗା ବେଦୀରେ ବସି ରାଣୀମାନଙ୍କ ସହ ତାଙ୍କ ବିବାହ ମଧ୍ୟ ହେଲା । ସମସ୍ତଙ୍କ ଗୃହକୁ ଠାକୁରଜୀ ଅଲଗା ଅଲଗା ରଙ୍ଗରେ ଢ଼ଙ୍ଗରେ ବିଜେ କଲେ । ଏ ଅଲୌକିକ କାରବାର ଦେଖି କୃଷ୍ଣ ପତ୍ନୀମାନେ ବୁଝିଗଲେ ଏବେ ବସୁଦେବ ନନ୍ଦନ ଶ୍ରୀକୃଷ୍ଣଙ୍କ ଅସଲି ପରିଚୟ । ତେଣୁ ଅନେକ ଦାସଦାସୀ ପୋଇଲି ପରିବାରୀ କୃଷ୍ଣ ସେବା ପାଇଁ ନିଯୁକ୍ତ ଥିଲେ ମଧ୍ୟ ସେମାନେ ସମସ୍ତେ ନିଜ ନିଜ ହସ୍ତରେ ଭଗବାନଙ୍କର ଚରଣ କମଳ ଧୌତ କରିବା, ସ୍ନାନ, ଭୋଜନ, ପାନ, ଆଲଟ ଚାମର ସେବା ଆଦି ନିଜ ନିଜ ହସ୍ତରେ କରିବା ସୁଯୋଗକୁ ହାତଛଡ଼ା କରୁନଥିଲେ । ଧନ୍ୟ କହିବା ସେ କୃଷ୍ଣଙ୍କୁ ଓ ସେ କୃଷ୍ଣ ଲୀଳା ସହିତ ସେ କୃଷ୍ଣ ଶରଣାଗତ ଭକ୍ତଗଣଙ୍କୁ ।

ଏକ ଲକ୍ଷ ବେଦ ମନ୍ତ୍ରମାନଙ୍କ ମଧ୍ୟରୁ ଷୋଳ ହଜାର ମନ୍ତ୍ର ବ୍ରହ୍ମଚାରୀ ମାନଙ୍କ ପାଇଁ, ଅଶୀ ହଜାର ମନ୍ତ୍ର ଗୃହସ୍ଥାଶ୍ରମୀ ପାଇଁ ଓ ଚାରି ହଜାର ମନ୍ତ୍ର ବାନପ୍ରସ୍ଥୀ ପାଇଁ ଉଦ୍ଦିଷ୍ଟ । ବେଦଙ୍କ ନିର୍ଦ୍ଦେଶରେ ବ୍ରହ୍ମଚାରୀ ଆଶ୍ରମକୁ ଡ଼େଇଁ ଜଣେ ସିଧା ସଳଖ ଗୃହସ୍ଥାଶ୍ରମ କରିବା ଅନୁଚିତ । ଏହା ଭୌମାସୁରର ପ୍ରବୃତ୍ତି । ଷୋଳ ହଜାର ମନ୍ତ୍ର ଆତ୍ମକ । ଷୋଳ ହଜାର ଜନ୍ମଜାତ ବନ୍ଦିନୀ କନ୍ୟା ମାନେ ଥରେ କୃଷ୍ଣାଭିମୁଖୀ ହେଲେ ତେଣିକି ଶ୍ରୀକୃଷ୍ଣ ସେମାନଙ୍କୁ ଉଦ୍ଧାର କରନ୍ତି ଓ କୃଷ୍ଣ ପ୍ରେମ ଦାନ କରନ୍ତି । ବଳିପଡ଼େ ବିଚରା ଭୋଗବାଦୀ ଭୌମାସୁର । ଏହା ହିଁ ଶ୍ରୀକୃଷ୍ଣ ଲୀଳାରେ ଅତୀବ ସୁନ୍ଦର ଆଦର୍ଶ ଗୃହସ୍ଥାଶ୍ରମ ।

# ଅଥ ୬୦ମ ଅଧ୍ୟାୟଃ

## (ରୁକ୍ମିଣୀଙ୍କ ସହ ଭଗବାନଙ୍କର ପରିହାସ ଲୀଳା)

ପ୍ରଶ୍ନ-୬୮ : ଭଗବାନଙ୍କ ଗୃହସ୍ଥାଶ୍ରମ କେତେ ରସାପ୍ଲୁତ ଥିଲା ତାହାର ଏକ ସୁନ୍ଦର ବର୍ଣ୍ଣନା ଭାଗବତରେ ଦୃଷ୍ଟ ହୁଏ । ରୁକ୍ମିଣୀଙ୍କ ବିବାହ ବେଳକୁ ପିତା ଭୀଷ୍ମକ ଅନେକ ମୂଲ୍ୟବାନ ଯୌତୁକ ପଠାଇଥିଲେ । ସେ ସବୁ ତାଙ୍କ ମହଲରେ ଶୋଭା ପାଉଥିଲା । ଦିନେ ପ୍ରଭୁ ପଲଙ୍କରେ ଶୟନ କରିବା ନାଟକ କରୁଥିଲେ । ମା'ପାଖରେ ବସି ଆଲଟ କରୁଥାନ୍ତି । ଭାବିଲେ ମୁଁ କେତେ ଦାମିକା ଯୌତୁକ ଆଣିଛି । ମୋ ସ୍ୱାମୀ ଶୋଇଥିବା ସୁନା ପଲଙ୍କ ମୋ ବାପ ଘର ସମ୍ପତ୍ତି । ଏ ସୁବର୍ଣ୍ଣ ରତ୍ନ ଜଡ଼ିତ ପଙ୍ଖାଟି ମଧ୍ୟ ଯୌତୁକ ଦ୍ରବ୍ୟ । ଇମିତି କେତ କ'ଣ ଭାବି ଚାଲିଥାନ୍ତି ।

ଭଗବାନଙ୍କ ନାମ ଗର୍ବ ଗଞ୍ଜନ ନରହରି । ଗର୍ବ ନ ସହନ୍ତି କାହାରି । ସେଥିପାଇଁ ରୁକ୍ମିଣୀଙ୍କ ମହଲରେ ଭଗବାନ କି ଲୀଳା କଲେ ?

ଶ୍ରୀ ଭଗବାନ ଉବାଚ

**ରାଜପୁତ୍ର-ଇପ୍‌ସିତା ଭୂପୈଃ ଲୋକପାଳ ବିଭୂତିଭିଃ ।**
**ମହାନୁଭାବୈଃ ଶ୍ରୀମଦ୍‌ଭିଃ ରୂପ-ଔଦାର୍ଯ୍ୟ ବଳ-ଉର୍ଜିତୈଃ ॥୧୦॥**

ଉ. ଭଗବାନ ତୁରନ୍ତ ଉଠି ବସିଲେ । କହିଲେ, ''ହେ, ବିଦର୍ଭ ରାଜ କୁମାରୀ, ତୁମକୁ ସେତେବେଳେ କେତେ ବଡ଼ ବଡ଼ ଇନ୍ଦ୍ରାଦି ଲୋକପାଳଙ୍କ ସଦୃଶ ଐଶ୍ୱର୍ଯ୍ୟଶାଳୀ ରାଜା ମହାରାଜା ମାନେ(ଭୂପୈଃ) ରାଣୀ କରିବାକୁ ଚାହୁଁଥିଲେ (ଇପ୍‌ସିତା) । ସେମାନେ ସତରେ କେତେ ଶକ୍ତିଶଳୀ, ସୌନ୍ଦର୍ଯ୍ୟ, ରୂପ, ଉଦାରତାଯୁକ୍ତ ନଥିଲେ ।

ସେମାନଙ୍କ ମଧ୍ୟରେ କନ୍ଦର୍ପ ଭଳି ସୁନ୍ଦର ଚେଦିରାଜ ଶିଶୁପାଳ ମଧ୍ୟ ଥିଲେ । ତାଙ୍କ ତୁଳନାରେ ମୁଁ କେଉଁ ଲେଖାରେ ଗଣା । ଦ୍ୱାରକାର ରାଜା ଉଗ୍ରସେନ । ମୁଁ ତାଙ୍କ ରାଜଦରବାରରେ ଜଣେ କର୍ମଚାରୀ ମାତ୍ର । ଜଣେ ଅକିଞ୍ଚନ । କିଛି ସରଳ, ନିରୀହ ସାଧୁ ସନ୍ଥ ମୋତେ ଅକିଞ୍ଚଙ୍କ ବିତ୍ତ ବୋଲି ଅବଶ୍ୟ କହନ୍ତି । ମୁଁ ସେମାନଙ୍କ ପାଇଁ ମଧ୍ୟ ପ୍ରିୟ । କାରଣ ସେମାନେ ମୋଠାରୁ କିଛି ଆଶା କରିନଥାନ୍ତି । ଧନ,

ସଂପତ୍ତି ମାଗିଲେ ମଧ୍ୟ ମୁଁ ସେମାନଙ୍କୁ ଦିଏ ନାହିଁ । ଅତଏବ ମୁଁ ମନେ କରୁଛି ଏବେ ଯେ ମୋତେ ବରଣ କରି ତୁମେ ଭୁଲ କରିଛ । ମୁଁ ତୁମ ଲାଗି ଆଦୌ ଉପଯୁକ୍ତ ସମାସ୍କନ୍ଧ ପାତ୍ର ନୁହେ । ତୁମେ ରାଜି ହେଲେ ଠିକଣା ପାତ୍ର ହସ୍ତରେ ମୁଁ ଅର୍ପଣ କରିଦେବି ତୁମକୁ ।''

ପ୍ରଶ୍ନ-୭୯ : ଶ୍ରୀକୃଷ୍ଣ ଏଭଳି ଶାଣିତ ବା ଧାରୁଆ ବ୍ୟଙ୍ଗ ଅସ୍ତ୍ର କ'ଣ ଅବିରାମ ପ୍ରହାର କରିଚାଲିଲେ ?

ଶ୍ରୀ ଶୁକ ଉବାଚ

**ଏତାବତ୍ ଉକ୍ତ୍ୱା ଭଗବାନ୍ ଆତ୍ମାନଂ ବଲ୍ଲଭାଂ ଇବ ।**
**ମନ୍ୟମାନାଂ ଅବିଶ୍ଳେଷାତ୍ ତତ୍ ଦର୍ପଘ୍ନ ଉପାରମତ୍ ॥୨୧॥**

ଉ. ରୁକ୍ମିଣୀ ପ୍ରଭୁଙ୍କର ଅର୍ଦ୍ଧାଙ୍ଗିନୀ ଥିଲେ । ସେ ଭଗବାନଙ୍କର କେବେ ବି ସଙ୍ଗଛଡ଼ା (ଅବିଶ୍ଳେଷାତ୍) ହେଉ ନଥିଲେ । ପତ୍ନୀଙ୍କ (ବଲ୍ଲଭାଂ) ବିଷୟରେ ସବୁ ଜଣାଥିଲା ଭଗବାନଙ୍କୁ । ସେତିକି ବ୍ୟଙ୍ଗ ବଚନ ଦ୍ୱାରା ସେ ପ୍ରିୟତମାଙ୍କର ଗର୍ବ ଅହଂକାର ଚୂର ଚୂର (ଘ୍ନ) କରିନେଇ ହଠାତ୍ ଚୁପ୍ ହୋଇଗଲେ (ଉପାରମତ୍) ।

ପ୍ରଶ୍ନ-୮୦ : ଶ୍ରୀକୃଷ୍ଣଙ୍କ ବଚନ ବାଣରେ ମା'ରୁକ୍ମିଣୀଙ୍କ ଯୌତୁକ ଅହଂକାରର ଦୁର୍ଗ ଭାଙ୍ଗି ପଡ଼ିଲା । ସେ ଜୀବନରେ କେବେ ବି ଏଭଳି ଅପ୍ରିୟ କଥା ଶୁଣି ନଥିଲେ । ଦେହ ତାଙ୍କର ଥରି ଉଠିଲା । ସେ ଠିଆ ହୋଇ ନଖରେ ଭୂଇଁରେ ଗାର ଟାଣୁଥିଲେ । ନେତ୍ରର ଅଶ୍ରୁ ଜଳରେ ତାଙ୍କ କୁଚ କୁଙ୍କୁମ ଧୋଇଗଲା । ବାକ୍ ରୁଦ୍ଧ ହେଲେ ସେ । ଦୁଃଖ, ଶୋକ ଓ ଭୟରେ ପୀଡ଼ିତା ହେଲେ । ହାତରୁ ପଙ୍ଖା ଖସି ପଡ଼ିଲା । ସେ ମୂର୍ଚ୍ଛିତ ହୋଇ ଉପୁଡ଼ି ପଡୁଥିବା କଦଳୀ ଗଛ ଭଳି ତଳେ ଲୋଟି ପଡ଼ିଲେ । କୃଷ୍ଣ ତ ପ୍ରେମମୟ ଠାକୁର । କରୁଣାର୍ଦ୍ର ଚିତ୍ତରେ ଧରି ନେଲେ ପ୍ରିୟତମାଙ୍କୁ । ଦୁଇ ହାତ ବଦଳରେ ଚତୁର୍ଭୁଜରେ ସମ୍ଭାଳିବାକୁ ଚେଷ୍ଟା କଲେ । ଦୁଇ ହାତରେ ଅସଜଡ଼ା କେଶକୁ ସଜାଡ଼ି ଦେଉଥାନ୍ତି । ଅନ୍ୟ ଦୁଇ ହାତରେ ପତ୍ନୀଙ୍କର ବଦନ କମଳରୁ ଅଶ୍ରୁ ପୋଛିଲା ବେଳେ ଭଗବାନ କି ସାନ୍ତ୍ୱନାବାଣୀ ଶୁଣାଇ କ୍ଷମା ମାଗିଲେ ?

ଶ୍ରୀ ଭଗବାନ ଉବାଚ

**ମା ମା ବୈଦର୍ଭୀ-ଅସୂୟେଥା ଜାନେ ତ୍ୱାଂ ମତ୍ପରାୟଣାମ୍ ।**
**ତ୍ୱତ୍ ବଚଃ ଶ୍ରୋତୁ କାମେନ କ୍ଷ୍ୱେଲ୍ୟା-ଆଚରିତଂ ଅଙ୍ଗନେ ॥୨୯॥**

ଉ. କହିଲେ, ''ହେ ସୁନ୍ଦରୀ (ଅଙ୍ଗନେ), ତୁମେ ସାମାନ୍ୟ ନାରୀ ନୁହଁ ।

ବିଦର୍ଭ ରାଜକୁମାରୀ ପୁଣି ମୋର ଏକାନ୍ତ ଭକ୍ତ (ମତ୍ ପରାୟଣାଂ) । ତୁମେ ତ କେବେ ବି କ୍ରୋଧ କରନା । କ୍ରୋଧରେ ତମେ କେମିତି ବ୍ୟବହାର କରିପାର ବୋଲି ଭାବି ମୁଁ କୌତୁକରେ (କ୍ଷେଲ୍ୟା) ଏଭଳି ଅଡୁଆ କଥା କହିଦେଲି । ମୋ ଦୋଷ ଧର ନାହିଁ (ଅସୂୟେଥା) । କ୍ଷମା କରିଦିଅ ।''

ପ୍ରଶ୍ନ-୮୧ : ସଂସାରୀ ଜୀବନରେ ଗୃହସ୍ଥାଶ୍ରମରେ ପତି-ପତ୍ନୀ ନିତି ଲଢ଼େଇ ଝଗଡ଼ା କରନ୍ତି । ପୁଣି ମିଶନ୍ତି । କଥା କଟା-କଟି, ରାଗ-ରଷା ହେବା ନିତିଦିନିଆ କଥା । ସତ କହିଲେ ଉଠାଣି ଗଡ଼ାଣିଯୁକ୍ତ ଗୃହସ୍ଥ ଜୀବନରେ ସେଇତକ ଅସଲି ମସଲା ବା ଅଭଙ୍ଗା ପ୍ରେମର ଅସଲି ସ୍ୱାଦ(ପରମୋ ଲାଭୋ) ବୋଲି କାହିଁକି କହିଲେ ?

**ଅୟଂ ହି ପରମୋ ଲାଭୋ ଗୃହେଷୁ ଗୃହମେଧିନାମ୍ ।**
**ଯତ୍ ନର୍ମୈଃଈୟତେ ଯାମଃ ପ୍ରିୟୟା ଭୀରୁ ଭାମିନି ॥୩୧॥**

ଉ. ଆଦର୍ଶ ଗୃହସ୍ଥାଶ୍ରମରେ ପତି-ପତ୍ନୀ ଏହିଭଳି ଥଟ୍ଟା ପରିହାସ (ନର୍ମୈଃ) ରେ ଦାମ୍ପତ୍ୟ ଜୀବନ କଟାନ୍ତି (ଈୟତେ ଯାମଃ) । ଦାମ୍ପତ୍ୟ କଳହ କେବଳ ବହ୍ୱାରମ୍ଭେ ଲଘୁ କ୍ରିୟା ।

ପ୍ରଶ୍ନ-୮୨ : ମା ରକ୍ମିଣୀ ବର୍ତ୍ତମାନ ପ୍ରକୃତିସ୍ଥ ହେଲେ । କହିଲେ, ''ହେ ସର୍ବଶକ୍ତିମାନ ପ୍ରଭୋ, ଆପଣ ସତ କହିଛନ୍ତି । ଆମ ଯୋଡ଼ି ଆଦୌ ସମାସ୍କନ୍ଧ ନୁହେଁ । କାହିଁ ଆପଣଙ୍କ ସ୍ଥାନ । ବ୍ରହ୍ମା, ଶଙ୍କର, ଇନ୍ଦ୍ରାଦି ଦେବଗଣ ଆପଣଙ୍କ ଚରଣ କମଳ ଧ୍ୟାନ କରୁଛନ୍ତି । ମୁଁ ମର୍ତ୍ତ୍ୟଲୋକର ଜଣେ ସାମାନ୍ୟ ରାଜକନ୍ୟା । ମୁନୀନ୍ଦ୍ର ଯୋଗୀନ୍ଦ୍ରମାନେ ଆପଣଙ୍କ ଦର୍ଶନ ପାଇଁ ବ୍ୟାକୁଳ । ତଥାପି ସେମାନଙ୍କ ପାଇଁ ଆପଣଙ୍କର ଅଲୌକିକ ଲୀଳା ସବୁ ଅବୁଝା । ସମସ୍ତଙ୍କର ପ୍ରାପ୍ତିର ଲକ୍ଷ୍ୟ ଆପଣ । ଆପଣ ନିଷ୍କିଞ୍ଚନ ଅବଶ୍ୟ । କାରଣ ଆପଣ ଯଜ୍ଞ ଭାଗ ନିଜେ ଗ୍ରହଣ କରନ୍ତି ନାହିଁ । ଦେବତାମାନଙ୍କ ଜରିଆରେ ପ୍ରାପ୍ତ ହୁଅନ୍ତି । ଆପଣ ନିଜେ ସବୁ କିଛି ହୋଇଛନ୍ତି । କୌଣସି ଜୀବ, ଜଡ଼ ବସ୍ତୁ ପଦାର୍ଥ ଆପଣଙ୍କଠାରୁ ତତ୍ତ୍ୱତଃ ଭିନ୍ନ ନୁହନ୍ତି । ଆପଣଙ୍କ ଆଶ୍ରୟ ତ୍ୟାଗ କରି ଅନ୍ୟ କାହାକୁ ମୁଁ ଆଶ୍ରୟ କରିବା ପ୍ରଶ୍ନ ଉଠୁନାହିଁ । ମୁଁ ଜନ୍ମ ଜନ୍ମାନ୍ତରର ସେବିକା ଆପଣଙ୍କର ।''

ରକ୍ମିଣୀଙ୍କ କଠିନ ବାଚନିକ ପରୀକ୍ଷା ଶେଷ ହେଲା । ସେ ପରୀକ୍ଷାରେ କୃତକାର୍ଯ୍ୟ ହେଲେ ବୋଲି ଭଗବାନ କିଛି ପ୍ରମାଣ ଦେଲେ କି ?

**ଯେ ମାଂ ଭଜନ୍ତି ଦାମ୍ପତ୍ୟେ ତପସା ବ୍ରତ ଚର୍ଯ୍ୟୟା ।**
**କାମ-ଆତ୍ମାନୋଽପବର୍ଗ-ଈଶଂ ମୋହିତା ମମ ମାୟୟା ॥୫୨॥**

॥ ଅପଣ୍ଡିତ ଦାମୋଦର ବଳିୟାରସିଂହ ॥

ଉ. ଶ୍ରୀକୃଷ୍ଣ ସିଧା ସଳଖ ଜଣାଇ କହିଲେ, ‘‘ଧର୍ମ-ଅର୍ଥ-କାମ ମୋକ୍ଷ (ଅପବର୍ଗ) ଓ ପ୍ରାପ୍ତି ପାଇଁ ଯେଉଁ ନାରୀମାନେ ତପସ୍ୟା ଓ ବ୍ରତ କରନ୍ତି ଓ ମୋ ଭଜନ କରନ୍ତି ସେ ମୋ ମାୟା ଜାଲରେ ପଡ଼ିଯାଆନ୍ତି ସେମାନେ ସମସ୍ତେ ହତ ଭାଗ୍ୟ। ତୁମେ ମୋର ନିଷ୍କାମ ଭକ୍ତି କରୁଛ। ତେଣୁ ତୁମେ ନିଶ୍ଚୟ ସୌଭାଗ୍ୟଶାଳିନୀ।’’

ଏହିଭଳି କୌତୁକପୂର୍ଣ୍ଣ ଗୃହସ୍ଥାଶ୍ରମ ଲୀଳା କରି ଲୀଳାମୟ ଠାକୁରଜୀ ଶହେ ବର୍ଷର ଦ୍ୱାରକାଲୀଳା ଅଭିନୟ କରିଗଲେ।

# ଅଥ ୬୧ମ ଅଧ୍ୟାୟଃ

## (ବଳରାମଙ୍କ ଦ୍ୱାରା ରୁକ୍ମୀ ବଧ ପ୍ରସଙ୍ଗ)

ପ୍ରଶ୍ନ-୮୩: ଠାକୁରଜୀ ଅଜନ୍ମା କିନ୍ତୁ ଭକ୍ତକୁ ଆନନ୍ଦ ଦେବାକୁ ଅନେକ ଜନ୍ମ ସ୍ୱୀକାର କରନ୍ତି। ଭକ୍ତଙ୍କୁ ଆନନ୍ଦ ଦେବାକୁ ଷୋଳ ହଜାର ଏକଶତ ଆଠ ପତ୍ନୀ କଲେଣି। ତାଙ୍କର ଗୃହସ୍ଥାଶ୍ରମ ପୁଣି ଅଦ୍ଭୁତ। ପ୍ରତ୍ୟେକ ରାଣୀ ପାଟରାଣୀଙ୍କର ଦଶ ଦଶ ପୁତ୍ର ଓ ଏକ ଏକ କନ୍ୟା। ତଥାପି ସେ ଅଖଣ୍ଡ ବ୍ରହ୍ମଚାରୀ ହେଲେ କେମିତି ?

**ଶ୍ରୀ ଶୁକ ଉବାଚ**

**ଗୃହାତ୍ ଅନପଗଂ ବୀକ୍ଷ୍ୟ ରାଜପୁତ୍ର୍ୟୋଽଚ୍ୟୁତଂ ସ୍ଥିତମ୍ ।**
**ପ୍ରେଷ୍ଠଂ ନ୍ୟମଂସତ ସ୍ୱଂ ସ୍ୱଂ ନ ତତ୍‌ତୁ ଅବିଦଃ ସ୍ତ୍ରିୟଃ ॥୨॥**

ଉ. ଦେଖାଗଲା ଠାକୁରଜୀ କୌଣସି ରାଣୀଙ୍କ ବିନା ଅନୁମତିରେ ଗୃହ ବାହାରକୁ ଯାଉନାହାନ୍ତି (ଅନପଗଂ ବୀକ୍ଷ୍ୟ)। ସମସ୍ତେ ଭାବୁଥାନ୍ତି ସେ ଗୋଟା ସୁଦ୍ଧା କେବଳ ମୋର (ପ୍ରେଷ୍ଠଂ)। ହେଲେ ସେ କାହାରି ବଶରେ ନଥାନ୍ତି। କୃଷ୍ଣଙ୍କ କମଳ ବଦନ, କମଳ ନେତ୍ର, ବିସ୍ତୃତ ବକ୍ଷ ଆଦିର ମୋହିନୀ ମାୟାରେ ସମସ୍ତେ ସଂପୂର୍ଣ୍ଣ ବିମୋହିତା। ତାଙ୍କର ଅଚିନ୍ତ୍ୟ ଲୀଳାରେ କେହି ଜଣେ ହେଲେ ରାଣୀ ପାଟରାଣୀ ତାଙ୍କ ମନ କିମ୍ବା ହୃଦୟ ଜିଣି ପାରିନଥିଲେ (ତତ୍ ତୁ ଅବିଦଃ)। ଏହା ହିଁ ପୃଥିବୀର ଅଷ୍ଟମ ଆଶ୍ଚର୍ଯ୍ୟ।

ପ୍ରଶ୍ନ-୮୪: ରୁକ୍ମିଣୀଙ୍କର ଜ୍ୟେଷ୍ଠପୁତ୍ର ପ୍ରଦ୍ୟୁମ୍ନ ବିବାହ କରିସାରିଥାନ୍ତି। ଦିନେ ସେ ଭୋଜକଟରେ ତାଙ୍କ ମାମୁଁ ରୁକ୍ମୀ ନିଜ କନ୍ୟାର ସ୍ୱୟମ୍ବର କରୁଥିବା କଥା

ଶୁଣିଲେ । ଏକାକୀ ରଥ ଚଢ଼ି (ଏକ ରଥୋ) ପହଞ୍ଚିଲେ ସେ ସ୍ୱୟମ୍ବର ସ୍ଥଳରେ । ଅନ୍ୟ ରାଜାମାନେ (ରାଜ୍ଞଃ) ତାଙ୍କୁ ଈର୍ଷ୍ୟାରେ ଲଢ଼େଇ କରିବାକୁ ଘେରିଗଲେ (ବୃତଃ) କାରଣ ରାଜକୁମାରୀ ରୁକ୍ମବତୀ ତାଙ୍କ ଗଳାରେ ବରଣମାଳା ଲମ୍ବାଇ ଦେଲେ । ଏତେ ରାଜା ଓ ରାଜକୁମାରୀଙ୍କ ମଧ୍ୟରୁ ପ୍ରଦ୍ୟୁମ୍ନଙ୍କୁ ରାଜକୁମାରୀ କାହିଁକି ବରଣ କଲେ ?

**ବୃତଃ ସ୍ୱୟମ୍ବରେ ସାକ୍ଷାତ୍ ଅନଙ୍ଗୋଽଙ୍ଗ ଯୁତଃ ତୟା ।**
**ରାଜ୍ଞଃ ସମେତାନ୍ ନିର୍ଜିତ୍ୟ ଜହାର-ଏକରଥୋ ଯୁଦ୍ଧି ॥୨୨॥**

ଉ. ପ୍ରଦ୍ୟୁମ୍ନ ସ୍ୱୟଂ କନ୍ଦର୍ପଙ୍କ ଅବତାର (ଅନଙ୍ଗୋଽଙ୍ଗ ଯୁତଃ) ଥିଲେ । ପୁଣି ରୂପ ମାଧୁର୍ଯ୍ୟର ଗନ୍ତାଘର ଶ୍ରୀକୃଷ୍ଣଙ୍କର ପୁତ୍ର । ରୁକ୍ମବତୀ କିଛି ସାମାନ୍ୟ ଯୁବତୀ ନଥିଲେ । କୃଷ୍ଣ ଲୀଳାରେ ଭାଗ ନେବାକୁ ତାଙ୍କର ଜନ୍ମ । ତେଣୁ ସେ ବିନା ସଂକୋଚରେ ପ୍ରଦ୍ୟୁମ୍ନଙ୍କୁ ବାଛିନେଲେ । ରାଜାମାନଙ୍କ ସହ ପ୍ରଦ୍ୟୁମ୍ନଙ୍କର ଘମାଘୋଟ ଲଢ଼େଇ(ଯୁଦ୍ଧ) ହେଲା । ତଥାପି ସମସ୍ତ ରାଜାଙ୍କୁ ସେ ଏକାକୀ ପରାସ୍ତ କରି(ନିର୍ଜିତ୍ୟ) ରୁକ୍ମବତୀଙ୍କୁ ହରଣ କରିନେଲେ(ଜହାର) ।

ପ୍ରଶ୍ନ-୮୫: ରୁକ୍ମୀଙ୍କର ରୋଚନା ନାମରେ ଗୋଟିଏ ନାତୁଣୀ ଥିଲା । କୃଷ୍ଣଙ୍କ ସହିତ ଶତ୍ରୁତାକୁ ଭୁଲି ରୁକ୍ମୀ ନିଜ ଭଉଣୀକୁ ଖୁସି କରିବାକୁ ଚାହିଁଲେ । ରୋଚନାକୁ ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧଙ୍କର ହସ୍ତରେ ସମର୍ପଣ କରିଦେଲେ । ବିବାହ ଅବସରରେ ମହା ଆନନ୍ଦରେ ପଶା ଖେଳିବାକୁ ଆହ୍ୱାନ କଲେ ବଳରାମଜୀଙ୍କୁ । ଭାବିଥିଲେ ଗୋ ପାଳକ ପଶା ଖେଳରେ ହାରିଯିବେ ନିଶ୍ଚୟ । ଖେଳ ଆରମ୍ଭ ହେଲା । ବାଜି ରହିଲା ପ୍ରଥମେ ଶହେ ସ୍ୱର୍ଣ୍ଣମୁଦ୍ରା । ବଳରାମ ହାରିଗଲେ । ରୁକ୍ମୀ ଖୁସିରେ କହିଲେ ପୁଣି ଖେଳିବା । ଏଥର ହଜାରେ ସ୍ୱର୍ଣ୍ଣମୁଦ୍ରା ବାଜି ରହିଲା । ରୁକ୍ମୀ ଜିଣିଲେ । ପରେ ପୁଣି ଦଶହଜାର ମୁଦ୍ରା ଜିଣିଗଲେ । ଶେଷରେ ବାଜି ରହିଲା ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା । ବଳରାମଜୀ ହଁ ମାରିଦେଲେ । ଖେଳରେ ଜିଣିଲେ ମଧ୍ୟ । ରୁକ୍ମୀ ଗୋଳିଆ କଥା କାଢ଼ିଲେ । ଦାବି କଲେ ସେ ଜିଣିଛନ୍ତି । କଥା ହେଲା ସାକ୍ଷୀମାନଙ୍କ ନିଷ୍ପତ୍ତି ମାନିବାକୁ ପଡ଼ିବ । ଆକାଶବାଣୀ ହେଲା ଯେ ବଳରାମ ଜିଣିଛନ୍ତି । ଶୂନ୍ୟବାଣୀ କଥା ମାନିଲେନି ରୁକ୍ମୀ । ଅଯଥା ତର୍କ ବଢ଼ିଲା । ହାତାହାତି ହେଲେ ଦୁହେଁ । ବଳରାମଜୀ(ବଳୟୋ) ଗଦା ପାହାରରେ ରୁକ୍ମୀଙ୍କୁ ହତ୍ୟାକଲେ । ଦୌଡ଼ି ଆସିଲେ ରୁକ୍ମିଣୀ । ମୁଣ୍ଡ କଚାଡ଼ି କାନ୍ଦିଲେ । ଏବେ ଶ୍ରୀକୃଷ୍ଣ (ହରିଃ) ସେଠାରେ ପହଞ୍ଚି କ'ଣ କଲେ ?

**ନିହତେ ରୁକ୍ମିଣୀ ଶ୍ୟାଳେ ନ-ଅବ୍ରବୀତ୍ ସାଧୁ-ଅସାଧୁ ବା ।**
**ରୁକ୍ମିଣୀ ବଳୟୋ ରାଜନ୍ ସ୍ନେହ ଭଙ୍ଗ ଭୟାତ୍ ହରିଃ ।।୩୯।।**

ଉ. ଗୋଟେ ପଟେ ପତ୍ନୀ ରୁକ୍ମିଣୀ ଅନ୍ୟ ପଟେ ଭାଇ ବଳରାମ । ଜଣକ ପକ୍ଷ ନେଲେ ଅନ୍ୟ ଜଣେ ମନ ଉଣା କରିବେ । ସୁତରାଂ ସେ ଚୁପ୍ ରହିବା ପସନ୍ଦ କଲେ । କୃଷ୍ଣ ଲୀଳାରେ ମଣିଷ ଜାତି ପାଇଁ ଏହା ଏକ ମହାନ୍ ଶିକ୍ଷା । ଭାଇ ଅବସ୍ଥା ଦେଖି ବ୍ୟବସ୍ଥା କର । ନହେଲେ ପରେ ହଟହଟା ହେବ ।

# ଅଥ ୬୨ମ ଅଧ୍ୟାୟଃ

## (ଉଷା ଅନିରୁଦ୍ଧ ମିଳନ)

ପ୍ରଶ୍ନ-୮୬: ବିରୋଚନ ପୁତ୍ର ବଳିଙ୍କର ଶହେ ପୁତ୍ର ଥିଲେ । ଜ୍ୟେଷ୍ଠ ଓ ଶ୍ରେଷ୍ଠ ପୁତ୍ର ବାଣ । ଅସୁର କୁଳରେ ଜନ୍ମିଥିବାରୁ ତାଙ୍କ ନାମ ବାଣାସୁର । ପିତା ବଳି ବିଷ୍ଣୁଭକ୍ତ ଥିଲେ । ବିଷ୍ଣୁଙ୍କୁ ସକଳ ସଂପତ୍ତି ସହିତ ସ୍ୱ ବା ସର୍ବସ୍ୱ ଦାନ କଲାପରେ ପିତା ବଳିଙ୍କୁ ସେ ନାଗପାଶ ବନ୍ଧନରେ ବାନ୍ଧିଥିଲେ । ଏକଥା ବାଣ ସ୍ୱଚକ୍ଷୁରେ ଦେଖିଛନ୍ତି । ତେଣୁ ସେ ଶିବ ଭକ୍ତ ହେବାକୁ ପସନ୍ଦ କଲେ । ଶଙ୍କରଜୀ ଆଶୁତୋଷ । ଭୋଳେ ବାବାଙ୍କୁ ଥରେ ତାଙ୍କ ବରରେ ପ୍ରାପ୍ତ ହଜାର ହାତରେ ବାଜା ବଜାଇ ପ୍ରସନ୍ନ କରିଦେଲେ । ଦେବ ଦେବ ମହାଦେବ (ସର୍ବଭୂତ-ଈଶଃ) ପୁଣି ବର ଯାଚିବାରୁ ଚତୁର ବାଣ କ'ଣ ଏପରି ବର ମାଗିଲେ ଯେ ଶଙ୍କର ଭଗବାନ ଅଡୁଆରେ ପଡ଼ିଗଲେ(ଛନ୍ଦୟାମାସ) ?

ଶ୍ରୀ ଶୁକ ଉବାଚ

**ଭଗବାନ୍ ସର୍ବ ଭୂତ-ଈଶଃ ଶରଣ୍ୟୋ ଭକ୍ତ ବତ୍ସଳଃ ।**
**ବରେଣ ଛନ୍ଦୟାଂ ଆସ ସ ତଂ ବବ୍ରେ ପୁର-ଅଧିପମ୍ ।।୩।।**

ଉ. ସେ ଶରଣ ବତ୍ସଳ । ଭଗବାନ ଦେଶୀ ଗଣ୍ଠିଆକୁ ଭକ୍ତ କଟିକି ଗଣ୍ଠିଆ । ବାଣ କହିଲେ, ''ମୋ ବାପାଙ୍କ ପାଖରେ ତାଙ୍କ ପ୍ରଭୁ ବିଷ୍ଣୁ ଚୌକିଦାର ହୋଇଥିଲେ । ଆପଣ ମୋର ସର୍ବସ୍ୱ । ମୋର କଲ୍ୟାଣ କରିବାକୁ ଇଚ୍ଛା ଥିଲେ ଆପଣ ମଧ୍ୟ ଶୋଣିତପୁର ନଗରୀରେ ଚୌକିଦାରୀ କରନ୍ତୁ । କେହି ବୁରା ନଜର ପକାଇଲେ

ତାହା ସହ ଯୁଦ୍ଧ କରିବାକୁ ପ୍ରସ୍ତୁତ ରୁହନ୍ତୁ । ସେହି ଦିନଠାରୁ ଭଗବାନ ଡ୍ୟୁଟିରେ ଯୋଗଦେଲେ । ବାଣାସୁରଙ୍କ ଟେନସନ୍ ଗଲା ।

ପ୍ରଶ୍ନ-୮୭: ବାଣାସୁରଙ୍କର ଅଲିଅଳି କନ୍ୟାର ନାମ ଉଷା । ରୂପ, ଗୁଣ, ଶୀଳ କୌଣସି ଗୁଣରେ ଊଣା ନୁହେଁ ସେ । ମନ୍ତ୍ରୀ କୁଭାଣ୍ଡଙ୍କର କନ୍ୟା ଚିତ୍ରଲେଖା ତାଙ୍କର ପ୍ରିୟ ସଖୀ । ଅନେକ ଯୋଗବିଦ୍ୟା ପ୍ରବୀଣା । ବହୁତ ବଡ଼ ବଡ଼ ସିଦ୍ଧିର ଅଧିକାରୀଣୀ ମଧ । ଦିନକର କଥା ଉଷା ସ୍ୱପ୍ନ ଦେଖିଲେ ଜଣେ ଦିବ୍ୟ ପୁରୁଷ ତାଙ୍କୁ ଆଲିଙ୍ଗନ କରୁଛନ୍ତି । ସେ ହାତ ବଢ଼ାଇଲା ମାତ୍ରେ ଅଦୃଶ୍ୟ ହୋଇ ଯାଉଛନ୍ତି । ସଖୀ ଚିତ୍ରଲେଖା ସମ୍ମୁଖରେ ପ୍ରକାଶ କଲେ ସବୁ କଥା । ସେ ଦିବ୍ୟ ପୁରୁଷ ବିନା ତାଙ୍କର ବଞ୍ଚିବା ଅସମ୍ଭବ ବୋଲି କହିଲେ । ଚିତ୍ରଲେଖା ତାଙ୍କ ଦୁଃଖ (ବ୍ୟସନଂ)ରେ କି ସାନ୍ତ୍ୱନା ବାଣୀ ଶୁଣାଇଲେ ଉଷାଙ୍କୁ ?

**ଚିତ୍ରଲେଖା ଉବାଚ**

**ବ୍ୟସନଂ ତେଽପକର୍ଷାମି ତ୍ରିଲୋକ୍ୟାଂ ଯଦି ଭାବ୍ୟତେ ।**
**ତଂ ଆନିଷ୍ୟେ ବରଂ ଯଃ ତେ ମନୋହର୍ତ୍ତା ତଂ ଆଦିଶ ॥୧୬॥**

ଉ. ଅଭୟବାଣୀ ଶୁଣାଇ ଚିତ୍ରଲେଖା କହିଲେ, ''ରାଜକୁମାରୀ, ତିନିଲୋକରେ ସେ ଯୁବକ ଯେଉଁଠାରେ ଥିଲେ ମଧ ମୁଁ ତାଙ୍କୁ ତୁମ ପାଖକୁ ଘେନି ଆସିବି(ଆନିଷ୍ୟେ) । ଆଦେଶ କରନ୍ତୁ ତ ।'' ସଙ୍ଗେ ସଙ୍ଗେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଲୋକର ସବୁଠୁ ବେଶୀ ସୁନ୍ଦର, ସୁନ୍ଦର ପୁରୁଷଙ୍କ ଚିତ୍ର ତିଆରି କରାଇ ଦେଖାଇଲେ । ଶେଷରେ କୃଷ୍ଣଙ୍କ ଚିତ୍ର, ପ୍ରଦ୍ୟୁମ୍ନଙ୍କ ଚିତ୍ର ତିଆରି କରାଇ ଦେଖାଇଲେ । ଏଥର ଉଷା ଲାଜେଇ ଗଲା । ଅନିରୁଦ୍ଧଙ୍କ ଚିତ୍ର ଲେଖୁ ଲେଖୁ ସେ ଚିତ୍କାର କରି ଉଠିଲା ଯେ ସେଇ ସେଇ ପୁରୁଷ ମୋତେ ସ୍ୱପ୍ନରେ ଦର୍ଶନ ଦେଉଛନ୍ତି ।

ପ୍ରଶ୍ନ-୮୮: ଯୋଗିନୀ ଚିତ୍ରଲେଖା ତତ୍କ୍ଷଣାତ୍ ଯୋଗ ବଳରେ ପହଞ୍ଚିଗଲା ଦ୍ୱାରକା । ରାଣୀହଂସପୁରରେ ଶୟନ କରିଥାନ୍ତି ଅନିରୁଦ୍ଧ । ପଲଙ୍କ ସହିତ ଉଠାଇ ଆଣି ହାଜର କଲା ସଖୀ ଉଷାଙ୍କ ନିକଟରେ । ନିଭୃତ ରାଜ ପ୍ରାସାଦରେ ଉଷା-ଅନିରୁଦ୍ଧଙ୍କ ମିଳନ ହେଲା । ଦିନ ଗଡ଼ିଚାଲିଲା ତା ବାଟରେ । ଉଷାଙ୍କ ଦେହରେ ସଖୀମାନେ କାମ ଭୋଗର ଚିହ୍ନମାନ ଦେଖି ରାଜାଙ୍କ ଆଗରେ ପ୍ରକଟ କଲେ । ବାଣାସୁର ସରଜମିନ ତଦନ୍ତରେ ଜାଣିଲେ କଥା ବିଲକୁଲ ସତ୍ୟ । ସେ କ'ଣ ଆକ୍ରମଣ କଲେ ଯଦୁବଂଶୀ ଅନିରୁଦ୍ଧଙ୍କୁ(ଯଦୁ-ଉଦ୍‌ବହମ୍) ?

**ତତଃ ପ୍ରବ୍ୟଥିତୋ ବାଣୋ ଦୁହିତୁଃ ଶ୍ରୁତଦୂଷଣଃ ।**
**ତ୍ୱରିତଃ କନ୍ୟକା-ଆଗାରଂ ପ୍ରାପ୍ତୋଽଦ୍ରାକ୍ଷୀତ୍ ଯଦୁ-ଉଦ୍‌ବହମ୍ ॥୨୮॥**

ଉ. ଅତ୍ୟନ୍ତ କ୍ଷୁବ୍‌ଧ ହେଲେ ରାଜା ବାଣ । ଭୟଙ୍କର ଯୁଦ୍ଧ ହେଲା ଉଭୟଙ୍କ ମଧ୍ୟରେ । ରାଜା ନାଗ ପାଶରେ ବାନ୍ଧି ଅନିରୁଦ୍ଧଙ୍କୁ ବନ୍ଦୀ ଘରେ ରଖିନେଲେ । ଉଷାଙ୍କ କରୁଣ ଚିତ୍କାର ଶୁଣିଲେନି ପିତା । ଶୁଣିଲେ କିନ୍ତୁ ପରମ ପିତା ଶ୍ରୀକୃଷ୍ଣ ।

# ଅଥ ୬୩ମ ଅଧ୍ୟାୟଃ

## (ହରିହର ଯୁଦ୍ଧ ଓ ବାଣାସୁର ପରାଜୟ)

ପ୍ରଶ୍ନ-୮୯ : ଶୋଣିତପୁରରେ ଅନିରୁଦ୍ଧ ଚାରିମାସ ରହିଗଲେ । ନାରଦ ମୁନି ଦ୍ୱାରକାରେ ଜଣାଇଦେଲେ ଯେ ଅନିରୁଦ୍ଧ ବାଣାସୁର କାରାଗାରରେ ବନ୍ଦୀ ହୋଇଛନ୍ତି । କାହିଁକି ବନ୍ଦୀ ହୋଇଛନ୍ତି, ବାଣାସୁର ସହିତ ଯୁଦ୍ଧ କରି ହାରିଛନ୍ତି ଏକଥା ମଧ୍ୟ କହିଦେଲେ । ଯଦୁ ବଂଶୀମାନେ ଏହି ଚରମ ଅପମାନ କିପରି ସହ୍ୟ କରିପାରିଲେ ?

ଶ୍ରୀ ଶୁକ ଉବାଚ

**ପ୍ରଦ୍ୟୁମ୍ନ ଯୁଯୁଧାନଃ ଚ ଗଦଃ ସାମ୍ବୋଽଥ ସାରଣଃ ।**
**ନନ୍ଦ-ଉପନନ୍ଦ ଭଦ୍ର-ଆଦ୍ୟା ରାମ କୃଷ୍ଣ-ଅନୁବର୍ତ୍ତିନଃ ॥୩॥**

ଉ. କୃଷ୍ଣ ବଳରେ ସେମାନେ ଏବେ ବଳୀୟାନ । ଧରାକୁ ସରା ମାନୁଥାନ୍ତି ସେମାନେ । କୃଷ୍ଣ-ବଳରାମଙ୍କୁ ଆଗୁସାର କରି ମହାବୀର ପ୍ରଦ୍ୟୁମ୍ନ, ଯୁଯୁଧାନ, ଗଦ, ଶାମ୍ବ, ସାରଣ, ନନ୍ଦ, ଉପନନ୍ଦ ଓ ଭଦ୍ର ଆଦି କି ଯୁବକ କି ବୃଦ୍ଧ ସମସ୍ତେ ଯୁଦ୍ଧକୁ ଡ଼େଇଁ ପଡ଼ିଲେ । ବାର ଅକ୍ଷୌହଣୀ ସୈନ୍ୟ ସହ ବାଣାସୁରଙ୍କ ରାଜଧାନୀକୁ ଘେରିଗଲେ ।

ଶଙ୍କରଜୀ ନଗରୀ ରକ୍ଷଣ ଦାୟିତ୍ୱରେ ଥିଲେ । ସେ ମଧ୍ୟ ନିଜ ପୁତ୍ର ଓ ଶିବ ଅନୁଚରମାନଙ୍କୁ ଧରି ରଣ ହୁଙ୍କାର ଛାଡ଼ିଲେ । ଭୟଙ୍କର ଯୁଦ୍ଧରେ ଗଗନ ପବନ ସହିତ ତିନିଲୋକ କମ୍ପି ଉଠିଲା । ବଳରାମଙ୍କ ସହ କୁଭାଣ୍ଡ, ବାଣପୁତ୍ରଙ୍କ ସହ ଶାମ୍ବ, ବାଣଙ୍କ ସହ ସାତ୍ୟକି, ପ୍ରଦ୍ୟୁମ୍ନଙ୍କ ସହ କାର୍ତ୍ତିକେୟ ଓ ହରିଙ୍କ ସହ ହର ଯୁଦ୍ଧରେ ମାତିଗଲେ । ବ୍ରହ୍ମାସ୍ତ୍ରକୁ ବ୍ରହ୍ମାସ୍ତ୍ର, ବାୟୁ ଅସ୍ତ୍ରକୁ ପର୍ବତ ଅସ୍ତ୍ର, ଆଗ୍ନେୟ ଅସ୍ତ୍ରକୁ ମେଘ

ଅସ୍ତ୍ର ପୁଣି ପାଶୁପତ ଅସ୍ତ୍ରକୁ ନାରାୟଣ ଅସ୍ତ୍ର ପ୍ରୟୋଗ ହେଲା । ସ୍ୱର୍ଗରେ ଦେବତା, ଗନ୍ଧର୍ବ ଓ ଅପ୍‌ସରା ଗଣ ଦର୍ଶନ କଲେ ଏ ଦୃଶ୍ୟ ।

ପ୍ରଶ୍ନ-୯୦: ମହାଦେବ ଶିବଙ୍କ ପ୍ରତି ଠାକୁରଜୀ ଜୃମ୍ଭଣାସ୍ତ୍ର ପ୍ରୟୋଗ କଲେ । ଏଥର ଶଙ୍କରଜୀ ଚେତା ହରାଇଲେ । ପ୍ରଦ୍ୟୁମ୍ନଙ୍କ ଠାରୁ ଯୁଦ୍ଧରେ ହାରି କାର୍ତ୍ତିକେୟ ଯୁଦ୍ଧଭୂମି ଛାଡ଼ି ପଳାୟନ କଲେ । ବାଣାସୁର କୃଷ୍ଣଙ୍କୁ ଆକ୍ରମଣ କଲେ । ବାଣଙ୍କ ସାରଥି ଓ ଅଶ୍ୱକୁ ପ୍ରଥମେ ବଧ କଲେ ଭଗବାନ । ପରେ ପରେ ଶ୍ରୀକୃଷ୍ଣଙ୍କ ନାରାୟଣ ଅସ୍ତ୍ରରେ ରାଜା ବାଣ ପ୍ରାଣ ହରାଇଲେ କି ?

**ତତ୍‌ମାତା କୋଟରା ନାମ ନଗ୍ନା ମୁକ୍ତ ଶିରୋରୁହା ।**
**ପୁରୋଽବତସ୍ଥେ କୃଷ୍ଣସ୍ୟ ପୁତ୍ର ପ୍ରାଣ ରିରକ୍ଷୟା ।।୨୦।।**

ଉ. ବାଣଙ୍କ ମାଆ କୋଟରା । ପୁତ୍ରର ଜୀବନ ରକ୍ଷା (ପ୍ରାଣ ରିରକ୍ଷୟା) ଲାଗି ସେ ଏକ ଅଭିନବ ଉପାୟ ପାଞ୍ଚିଲେ । ନିଜେ ସଂପୂର୍ଣ୍ଣ ଉଲଗ୍ନ ଓ ମୁକ୍ତ କେଶୀ (ଶିରୋରୋହା) ହୋଇ ଯୁଦ୍ଧ ଭୂମିରେ ଶ୍ରୀକୃଷ୍ଣଙ୍କ ସାମନାରେ ଠିଆ ହୋଇଗଲେ (ଅବତସ୍ଥେ) । ଲାଜରେ ଭଗବାନ ପଛକୁ ମୁହଁ ବୁଲାଇଦେଲେ । ଏହି ଅବସରରେ ବାଣ ଖସି ପଳାଇଲେ । ସେତେବେଳକୁ ବାଣ ନିଜର ହଜାର ହସ୍ତ ମଧ୍ୟରୁ ଚାରୋଟି ହସ୍ତ ଛାଡ଼ି ଅନ୍ୟ ସବୁ ହସ୍ତ କୃଷ୍ଣଙ୍କ ସହ ଯୁଦ୍ଧରେ ହରାଇ ସାରିଥିଲେ ।

ପ୍ରଶ୍ନ-୯୧: ଅନ୍ୟ ଉପାୟ ନ ଦେଖି ଶଙ୍କରଜୀ ଶିବଜ୍ୱର ଅସ୍ତ୍ର ପୟୋଗ କଲେ । ଭଗବାନ ଏଥରକ ବିଷ୍ଣୁ ଜ୍ୱର ଅସ୍ତ୍ର ଛାଡ଼ିଲେ । ଶିବ ଓ ଶିବଜ୍ୱର ଉଭୟ ହାରି ଶରଣ ପଶିଲେ ଭଗବାନଙ୍କ ପଦତଳେ । ଉଭୟେ ସୁନ୍ଦର ସ୍ତୁତି କରି ଠାକୁରଜୀଙ୍କୁ ପ୍ରସନ୍ନ କଲେ । ନିଜ ଭକ୍ତ ବାଣାସୁରର ପ୍ରାଣ ଭିକ୍ଷା କଲେ । ଶ୍ରୀକୃଷ୍ଣ ସହାସ୍ୟ ବଦନରେ କେଉଁ ରହସ୍ୟଟି ପ୍ରକାଶ କଲେ ସେତେବେଳେ ?

**ଶ୍ରୀ ଭଗବାନ ଉବାଚ**

**ଅବଧ୍ୟୋଽୟଂ ମମ-ଅପି-ଏଷ ବୈରୋଚନି ସୁତଽସୁରଃ ।**
**ପ୍ରହ୍ଲାଦାୟ ବରୋ ଦତ୍ତୋ ନ ବଧ୍ୟୋ ମେ ତବ-ଅନ୍ୱୟଃ ।।୪୭।।**

ଉ. ଭଗବାନ କହିଲେ, ''ଶଙ୍କରଜୀ, ମନେ ପକାଅ ଦେଖି, ମୁଁ ନୃସିଂହ ଅବତାର ହୋଇଥିଲି । ତୁମ ଉପସ୍ଥିତିରେ ଭକ୍ତ ପ୍ରହ୍ଲାଦଙ୍କୁ କଥା ଦେଇଥିଲି ତୁମର ବଂଶ ଅସୁର ବଂଶରେ ଜାତ (ତବ-ଅନ୍ୱୟଃ) କାହାକୁ ହେଲେ ମଧ ବଧ କରିବି ନାହିଁ । ତେଣୁ ମୁଁ ବାଣଙ୍କର ସବୁ ହାତ କାଟି ଦେଇଛି ଚାରି ହାତ ଛାଡ଼ି । ପ୍ରାଣ

ନେଇନାହିଁ ।'' ସଂସାର ଶିକ୍ଷା କରୁ ଶିବ ଭଗବାନଙ୍କ ଶ୍ରେଷ୍ଠ ଭକ୍ତ । ପୁଣି ଶିବ ଭକ୍ତ ହୋଇ ବିଷ୍ଣୁ ଦ୍ୱେଷୀ ହେଲେ ଦଣ୍ଡନୀୟ । ଯଦୁ ପତି କୃଷ୍ଣ ଏବେ ପୁତ୍ର-କନ୍ୟାଙ୍କୁ ଧରି ସଦଳବଳେ ଦ୍ୱାରକା ଫେରିଗଲେ ।

## ୩୩.ଶୃଙ୍ଗାର ରସ ପ୍ରକରଣ ସାର
### (ଅଧ୍ୟାୟ ୫୪ମ-୬୩ମ)

କାବ୍ୟ ଜଗତରେ ନଅ ରସର ବର୍ଣ୍ଣନା ଥାଏ । ତନ୍ମଧ୍ୟରେ ଶୃଙ୍ଗାର ରସ ସାର । ଶୃଙ୍ଗାର ରସ କହିଲେ ଦୁଇ ଦେହର ମିଳନ ସମ୍ଭାବନା ଉପରେ ଆଧାରିତ ମନରେ ସଞ୍ଚାରିତ ଭାବନାକୁ ବୁଝାଏ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ ଇତ୍ୟାଦି ସକଳ କାଳ୍ପନିକ କାବ୍ୟର ଶୃଙ୍ଗାର ରସ ହିଁ ପ୍ରଧାନ ଉପଜୀବ୍ୟ ବସ୍ତୁ । ଭକ୍ତି ପ୍ରଧାନ କାବ୍ୟ କୁମାର ସମ୍ଭବ, ରାମାୟଣ, ମହାଭାରତ ଓ ଭାଗବତ ଇତ୍ୟାଦି କାବ୍ୟର ଶୃଙ୍ଗାର ରସ କିନ୍ତୁ ମନ ସଞ୍ଚାରିତ ଅଲୌକିକ ଶୃଙ୍ଗାର ରସ ନୁହେଁ । ବରଂ ସମସ୍ତେ ହୃଦୟ ସଞ୍ଚାରିତ ଶୃଙ୍ଗାର ରସର ଭାବ ଆଧାରିତ କାଳଜୟୀ କାବ୍ୟ ।

ଭାଗବତରେ ଦଶମ ରସ ପ୍ରକରଣରେ ଶ୍ରୀକୃଷ୍ଣଙ୍କର ପୁତ୍ର କନ୍ଦର୍ପ ରୂପୀ ପ୍ରଦ୍ୟୁମ୍ନଙ୍କ ରତିଦେବୀଙ୍କ ହରଣ, (ମାୟାବତୀ ନାମରେ ଅଭିନୟ କରୁଥିବା ରତି ଦେବୀଙ୍କ ମିଳନ) ପ୍ରସଙ୍ଗରୁ ଶୁଭାରମ୍ଭ କରାଯାଇଛି ଏ ଶୃଙ୍ଗାର ରସ ପରିବେଷଣ ।

ପୁଣି ସତ୍ରାଜିତଙ୍କ କନ୍ୟା ସତ୍ୟଭାମା, ଜାମ୍ବବାନଙ୍କ କନ୍ୟା ଜାମ୍ବବତୀଙ୍କ ସହିତ ଠାକୁରଜୀଙ୍କ ଦିବ୍ୟ ପ୍ରଣୟ ଲୀଳା ସ୍ୟମନ୍ତକ ମଣି ପ୍ରସଙ୍ଗକୁ ଆଧାର କରି ସୁନ୍ଦର ଭାବରେ ଶୃଙ୍ଗାର ରସରେ ବିଷୟ ବସ୍ତୁମାନ ରସାଣିତ ହୋଇଛି । ସୂର୍ଯ୍ୟଦେବଙ୍କ କନ୍ୟା କାଳିନ୍ଦୀ, ମିତ୍ରବିନ୍ଦା, ନାଗ୍ନଜିତା, ଭଦ୍ରା ଓ ଲକ୍ଷ୍ମଣାଙ୍କ ସହିତ ଭଗବାନଙ୍କ ଉଦ୍‌ବାହ ପ୍ରସଙ୍ଗ ମଧ୍ୟ ଶୃଙ୍ଗାର ରସ ଆଧାରରେ ପରିବେଷିତ ହୋଇଛି । ଦରକାର ପଡ଼ିଲେ ଭଗବାନ ତାଙ୍କ ଯୋଗମାୟାଙ୍କୁ ଆଶ୍ରୟ କରି ବୀରରସର ସଞ୍ଚାର କରିବାକୁ ଭୁଲି ନାହାନ୍ତି ।

ଶେଷରେ ଭୌମାସୁର ବା ନରକାସୁର ବନ୍ଦୀଗୃହରୁ ଷୋଳ ହଜାର ଏକ ଶତ କନ୍ୟାଙ୍କ ଉଦ୍ଧାର ଓ ସେମାନଙ୍କୁ ପତ୍ନୀରୂପେ ସ୍ୱୀକାର କରି ଆଶ୍ରୟ ପ୍ରଦାନ କରିବା ଶୃଙ୍ଗାର ରସ ଉପରେ ଆଧାରିତ ।

ଉପରୋକ୍ତ ସକଳ ପ୍ରଣୟ ଓ ବିବାହ ପ୍ରସଙ୍ଗ ଆଦୌ ମାନବିକ କାମ ବାସନା ଚରିତାର୍ଥ ମୂଳକ ଶୃଙ୍ଗାର ରସ ନୁହେଁ । ବରଂ ଶରଣାଗତ ଜୀବର କଲ୍ୟାଣ, ଆତ୍ମୋଦ୍ଧାର ଲକ୍ଷ୍ୟରେ ସକଳ ରସର ଗନ୍ତାଘର ମହାନାୟକ ଶ୍ରୀକୃଷ୍ଣଙ୍କର ଶୃଙ୍ଗାରରସ ପରିପକ୍ୱତା ଲାଭ ହୋଇଛି ବ୍ୟାସଦେବଙ୍କ ଲେଖନି ମୁନରେ ।

ଶ୍ରୀକୃଷ୍ଣଙ୍କ ଶୃଙ୍ଗାରରସ ଲୀଳା କାମ ବିକାଶ ନିମିତ୍ତ ନୁହେଁ । ବରଂ ଏସବୁ କାମ ବିଜୟ ଲୀଳା । ମା'ରୁକ୍ମିଣୀଙ୍କ ସହିତ ପରିହାସ ପ୍ରସଙ୍ଗରେ ଶୃଙ୍ଗାର ରସ ବର୍ଣ୍ଣନ ରସର ଅତ୍ୟୁଚ୍ଚ ଶୃଙ୍ଗକୁ ସ୍ପର୍ଶ କରିଛି କହିଲେ ଅତି ଉକ୍ତି ହେବ ନାହିଁ । କାରଣ ଶୃଙ୍ଗାର ରସ ସହିତ ହାସ୍ୟ ରସର ସୁନ୍ଦର ସମନ୍ୱୟ ହୋଇଛି ।

ରୁକ୍ମୀଙ୍କ କନ୍ୟାଙ୍କ ନାମ ରୁକ୍ମବତୀ । ପ୍ରଦ୍ୟୁମ୍ନଙ୍କ ସହିତ ରୁକ୍ମବତୀଙ୍କ ପରିଣୟ ହେବା ଓ ସେମାନଙ୍କ ପୁତ୍ର ଅନିରୁଦ୍ଧଙ୍କ ପ୍ରକଟ ହେବା ଦ୍ୱାରା ଶୃଙ୍ଗାର ରସର ଭବ୍ୟ ପରିପାକ ହୋଇଛି । ସେଇ ଅନିରୁଦ୍ଧ ପୁଣି ରୁକ୍ମିଣୀଙ୍କ ନାତୁଣୀ ରୋଚନାଙ୍କ ସହିତ ପ୍ରଣୟ ସୂତ୍ରରେ ବାନ୍ଧି ହୋଇଛନ୍ତି ।

ଶୃଙ୍ଗାର ରସ ପ୍ରକରଣ ସର୍ବୋଚ୍ଚ ଶିଖରରେ ପହଞ୍ଚିଛି ଯେତେବେଳେ ବାଣାସୁରଙ୍କ ପୁତ୍ରୀ ଊଷାଙ୍କ ସହିତ ଅନିରୁଦ୍ଧଙ୍କ ମିଳନ ବର୍ଣ୍ଣିତ ହୋଇଛି । କି ସୁନ୍ଦର ଶୃଙ୍ଗାର ରସ ଯାହାକୁ ଭକ୍ତକୁ ଆସ୍ୱାଦନ କରାଇବାକୁ ହରି-ହରଙ୍କ ଲଢ଼େଇ ହୋଇଛି । ଶୋଣିତପୁର ରାଜା ବାଣାସୁର ହାରିଛନ୍ତି ଯୁଦ୍ଧରେ ସତ । ତଥାପି ହରିହରଙ୍କ ମିଳନ କରାଇବାର ଶ୍ରେୟ ପ୍ରାପ୍ତ ହୋଇଛି ତାଙ୍କୁ । ଏହି ଅଲୌକିକ ଶୃଙ୍ଗାର ରସର ଅଦ୍ଭୁତ ବିଜୟ ଘଟିଛି ଅନିରୁଦ୍ଧଙ୍କ ନେତୃତ୍ୱରେ ଊଷାଙ୍କ ସହ ପରିଣୟ ପ୍ରସଙ୍ଗରେ ।

# ପ୍ରକରଣ ୩୪, ବିଭଙ୍ଗ ରସ

## (ଅଧ୍ୟାୟ ୬୪ମ -୭୨ମ)

## ଅଥ ୬୪ମ ଅଧ୍ୟାୟଃ

### (ଇକ୍ଷ୍ୱାକୁ ପୁତ୍ର ରାଜା ନୃଗଙ୍କର କୃକଳାସ ଯୋନିରୁ ଉଦ୍ଧାର)

ପ୍ରଶ୍ନ-୯୨ : ଦିନେ ଶାମ୍ବ, ପ୍ରଦ୍ୟୁମ୍ନ ଆଦି ଯଦୁବଂଶୀ କୁମାର ମାନେ ଦ୍ୱାରକାର ଏକ ଉପବନରେ କ୍ରୀଡ଼ା ବିନୋଦ କରୁଥିଲେ । ଖେଳୁ ଖେଳୁ ସେମାନଙ୍କୁ ତୃଷା ହେଲା । ଜଳ ଖୋଜୁ ଖୋଜୁ ସେମାନେ ଏକ ଜଳ ଶୂନ୍ୟ କୂପ ନିକଟରେ ପହଞ୍ଚି କ'ଣ ଦେଖି ଆଶ୍ଚର୍ଯ୍ୟ ହେଲେ ?

ଶ୍ରୀ ବାଦରାୟଣି ଉବାଚ

**କୃକଳାସଂ ଗିରି ନିଭଂ ବୀକ୍ଷ୍ୟ ବିସ୍ମିତ ମାନସାଃ ।**
**ତସ୍ୟ ଚ-ଉଦ୍ଧରଣେ ଯତ୍ନଂ ଚକ୍ରୁଃ ତେ କୃପୟା-ଅନ୍ୱିତାଃ ॥୩॥**

ଉ. ଦେଖିଲେ ଏକ ଅଦ୍ଭୁତ ଜୀବଟିଏ କୂପ ମଧ୍ୟରେ ପଡ଼ିଛି । ସେ ସବୁଜ ପର୍ବତ ଭଳି ଋତୁ ବଦଳିଲେ ବେଶ ବଦଳାଏ ବା ତା ନିଜ ରଙ୍ଗ ବଦଳାଇ ପାରେ(ଗିରି ନିଭଂ) । ସଂସ୍କୃତ ସାହିତ୍ୟରେ ତାକୁ କୃକଳାସ ଓ ଓଡ଼ିଆ ଭାଷାରେ ପୋହଳା ଏଣ୍ଡୁଅ କୁହାଯାଏ । ପିଲାମାନେ ଦୟା କରି ତାକୁ ଉପରକୁ ଉଠାଇବାକୁ ଚେଷ୍ଟା କଲେ । ସକଳ ଚେଷ୍ଟା ସତ୍ତ୍ୱେ ବିଫଳ ହେଲେ । କେହି ଜଣେ ଯାଇ ଭଗବାନଙ୍କୁ ଡ଼ାକି ଆଣି ଦେଖାଇଲେ । ସେମାନଙ୍କର ଉତ୍ସୁକତା ଦେଖି ଠାକୁରଜୀ ବାମ ହାତରେ ଅକ୍ଲେଶରେ ତାକୁ ଉପରକୁ ଉଠାଇ ଆଣିଲେ ।

ପ୍ରଶ୍ନ-୯୩: ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ପ୍ରଭୁଙ୍କ କରକମଳ ସ୍ପର୍ଶ ପାଇ ସେ ନିଜ ରୂପ ଛାଡ଼ି ଦେଲେ । ପୀତାମ୍ବର ପିନ୍ଧି, ମୁକୁଟ ଲଗେଇଥିବା ଏକ ବିଷ୍ଣୁ ପାର୍ଷଦ ରୂପରେ ସେ ସମସ୍ତଙ୍କୁ ଦର୍ଶନ ଦେଲେ । ଭଗବାନ ତ ସର୍ବଅନ୍ତର୍ଯ୍ୟାମୀ । ତଥାପି ତାଙ୍କୁ ନିଜର ପରିଚୟ ପଚାରିବାରୁ ସେ କ'ଣ କହିଲେ ?

ନୃଗ ଉବାଚ

**ନୃଗୋ ନାମ ନରେନ୍ଦ୍ରୋଽହଂ ଇକ୍ଷ୍ୱାକୁ ତନୟଃ ପ୍ରଭୋ ।**
**ଦାନିଷ୍ଣୁ-ଆଖ୍ୟାୟମାନେଷୁ ଯଦି ତେ କର୍ଣ୍ଣଂ ଅସ୍ପୃଶମ୍ ॥୧୦॥**

ଉ. ସେ ଦିବ୍ୟ ପୁରୁଷ କହିଲେ, 'ହେ, ପ୍ରଭୋ ମୁଁ ସୂର୍ଯ୍ୟବଂଶୀ ରାଜା ଇକ୍ଷ୍ୱାକୁଙ୍କର ପୁତ୍ର । ନାମ ମୋର ନୃଗ ରାଜା । ବନ୍ଦୀ ମାଗଧମାନେ ରାଜାଙ୍କ ଯଶଗାନ କଲାବେଳେ ମହାଦାନୀ ଭାବରେ ଆଜି ମଧ୍ୟ ମୋ ନାମ ଶୁଣାନ୍ତି । ହୁଏତ ଏ କଥା ଆପଣଙ୍କ କାନରେ ପଡ଼ିଥାଇ ପାରେ (କର୍ଣ୍ଣ ଅସ୍ପୃଶଂ) । ମୁଁ ରାଜା ଥିବାବେଳେ ଭୂଦାନ, ବସ୍ତ୍ର ଦାନ, କନ୍ୟା ଦାନ ଆଦି ସହିତ ଅସଂଖ୍ୟ ଗୋଦାନ ମଧ୍ୟ କରିଛି । ସେ ସବୁ ପୁଣି ସତ୍‌ପାତ୍ର ହସ୍ତରେ । ଜଣେ ପକ୍‌କା ବ୍ରାହ୍ମଣ ବୈଷ୍ଣବ ସେବକ ଥିଲି ମୁଁ । ତଥାପି ଏକ ବ୍ରାହ୍ମଣ ଅଭିଶାପର ଶିକାର ହେଲି । ଗୋଦାନ କଲାବେଳେ ଜଣକୁ ଦାନ କରିଥିବା ଗାଈ ମୋ ଗୋଶାଳାକୁ କୌଣସି କାରଣରୁ ଆସି ଯାଇଥିଲା । ମୁଁ ଏ କଥା ଜାଣି ନ ପାରି ତାକୁ ଆଉ ଜଣେ ବ୍ରାହ୍ମଣଙ୍କୁ ଦାନ କରିଥିଲି । ପ୍ରଥମ ବ୍ରାହ୍ମଣ ଦ୍ୱିତୀୟ ବ୍ରାହ୍ମଣଙ୍କୁ ଗାଈକୁ ନିଜର ବୋଲି ଦାବୀ କଲେ । ଦୁହିଁଙ୍କ କଳି ଝଗଡ଼ା ହେଲା । ମୋ ପାଖରେ ପହଞ୍ଚିଲେ ନିଷ୍ପତ୍ତି ଲାଗି । ମୁଁ ଉଭୟଙ୍କୁ ସେ ଗାଈ ବଦଳରେ ଲକ୍ଷେ ଲକ୍ଷେ ଉତ୍ତମ ଗାଈ ଦେବାକୁ ପ୍ରସ୍ତାବ ଦେଲି । ସେମାନେ ଏଥିରେ ରାଜି ହେଲେନି । ନିଜ ନିଜ ଦାବୀ ଅଡ଼ି ବସିଲେ । ହଠାତ୍ ମୁଁ କିଛି ନିଷ୍ପତ୍ତି କରି ପାରିନଥିଲି । ଅନେକ ସମୟ ବିତିଗଲା ସେମାନେ ଅସନ୍ତୁଷ୍ଟ ହୋଇ ମୋତେ ବ୍ରହ୍ମସ୍ୱ ଅପହର୍ତ୍ତା କହି ଅଭିଶାପ ଦେଇ ଚାଲିଗଲେ ।''

ପ୍ରଶ୍ନ-୯୪: ଇତି ମଧ୍ୟରେ ନୃଗ ରାଜାଙ୍କର ଆୟୁଷ ଶେଷ ହେଲା । ଦେହପାତ ହେଲା । ଯମଦୂତମାନେ ବ୍ରହ୍ମ ଅଭିଶାପ ଭୋଗ ପାଇଁ ତାଙ୍କୁ ଯମ ଦରବାରରେ ପହଞ୍ଚାଇଦେଲେ । ଯମରାଜା ପଚାରିଲେ ପାପ ଓ ପୁଣ୍ୟ ମଧ୍ୟରୁ କାହାର ଫଳ ପ୍ରଥମେ(ପୂର୍ବଂ) ଭୋଗ କରିବାକୁ । ନୃଗ ରାଜା କି ଉତ୍ତର ଦେଲେ ଯମରାଜଙ୍କୁ ?

**ପୂର୍ବଂ ଦେବ-ଅଶୁଭଂ ଭୁଞ୍ଜ ଇତି ପ୍ରାହ ପତ-ଇତି ସଃ ।**
**ତାବତ୍ ଅଦ୍ରାକ୍ଷଂ ଆତ୍ମାନଂ କୃକଳାସଂ ପତନ୍ ପ୍ରଭୋ ॥୨୪॥**

ଉ. ଯମରାଜାଙ୍କୁ (ଦେବଂ) ରାଜା ପ୍ରଥମେ ପାପ(ଅଶୁଭଂ) ଭୋଗିବେ ବୋଲି କହିଥିଲେ । ଯମରାଜ ଆଦେଶ ଦେଇ କହିଲେ, ''ଯାଅ ଭୋଗ କର (ଭୁଞ୍ଜ) । କୃକଳାସ ଯୋନି ପ୍ରାପ୍ତ ହୁଅ । ଦେଖୁଛନ୍ତି ପ୍ରଭୁ ସେହି ଦିନରୁ (ତାବତ୍) ମୁଁ ଏ ଦଶା ଭୋଗ କରୁଛି । ମୋର ଭାଗ୍ୟ ଭଲ ମୁଁ ବ୍ରାହ୍ମଣ ସେବକ ଥିଲି । ଦାନ ପୁଣ୍ୟର ଫଳ

ସ୍ୱରୂପ ଆଜି ଆପଣଙ୍କର ଦର୍ଶନ ସ୍ପର୍ଶ ପ୍ରାପ୍ତ ହେଲି ।''

ପ୍ରଶ୍ନ-୯୫: ରାଜା ନୃଗ ଶ୍ରୀକୃଷ୍ଣଙ୍କ ଚରଣ କମଳରେ ନତ ମସ୍ତକ ହୋଇ ସୁବର୍ଣ୍ଣ କିରୀଟକୁ ଭୂମି ସ୍ପର୍ଶ କରାଇ ସଭକ୍ତିକ ପ୍ରଣାମ ଜଣାଇଲେ । ଠାକୁରଜୀଙ୍କ ଆଜ୍ଞା ପ୍ରାପ୍ତ ହୋଇ ଦିବ୍ୟ ବିମାନ ଆରୋହଣ କରି ବୈକୁଣ୍ଠ ଗଲେ । ଘଟଣାଟି ଘଟିଗଲା ଯଦୁବଂଶୀ କୃଷ୍ଣ କୁମାର ମାନଙ୍କ ସମ୍ମୁଖରେ । ଏ ସବୁ ଲୀଳାମୟ କୃଷ୍ଣଙ୍କର ଅଲୌକିକ ନାଟକ ନିଜ ପିଲାମାନଙ୍କ ସହିତ ସକଳ ରାଜା ପ୍ରଜାଙ୍କୁ ଶିକ୍ଷା ଦେବା ଲାଗି । ସଂସାର କେବଳ ଜାଣେ ହଳାହଳ ବିଷ ପ୍ରାଣଘାତକ ବୋଲି । ଭଗବାନ ସଂସାରକୁ ତାହାଠାରୁ ଅନ୍ୟ କେଉଁ ବିଷ ଅଧିକ ଭୟଙ୍କର ବୋଲି କହିଲେ ?

ଶ୍ରୀ ଭଗବାନ ଉବାଚ

**ନ-ଅହଂ ହଳାହଳଂ ମନ୍ୟେ ବିଷଂ ଯସ୍ୟ ପ୍ରତିକ୍ରିୟା ।**
**ବ୍ରହ୍ମସ୍ୱଂ ହି ବିଷଂ ପ୍ରୋକ୍ତଂ ନ-ଅସ୍ୟ ପ୍ରତିବିଧିଃ ଭୁବି ॥୩୩॥**

ଉ. ଭଗବାନ ସମସ୍ତଙ୍କୁ ସତର୍କବାଣୀ ଶୁଣାଇ କହିଲେ, 'ପିଲାଏ, ହଳାହଳ ବିଷ ବଡ଼ ବିଷ ନୁହେଁ କାରଣ ତାକୁ କାଟିବାକୁ ଗଦ ବା ଔଷଧ (ପ୍ରତିକ୍ରିୟା) ଅଛି । ମାତ୍ର ବ୍ରାହ୍ମଣ ସଂପତ୍ତି ବା ଧନ ହରଣ ରୂପୀ ମହାବିଷର ଔଷଧ (ପ୍ରତିବିଧିଃ) ନାହିଁ । ଦୃଷ୍ଟାନ୍ତ ଦେଖିଲ ତ ମହାଦାନୀ ରାଜା ନୃଗଙ୍କର ଅବସ୍ଥା ।''

ପ୍ରଶ୍ନ-୯୬: ରାଜା ନୃଗ ଅଜାଣତରେ (ଦୁରନୁଜ୍ଞାତଂ) ବ୍ରାହ୍ମଣ ଅପରାଧୀ ହୋଇ ନୀଚ ଯୋନି ପ୍ରାପ୍ତ ହେଲେ । କିଛି ରାଜା ଓ ପ୍ରଜା ତ ପୁଣି ଜାଣି ଶୁଣି ଧନ ଲୋଭରେ ବଳାତ୍କାରେ ବ୍ରାହ୍ମଣ ଧନ ଅପହରଣ କରୁଛନ୍ତି । ସେମାନଙ୍କୁ ତେବେ କେଉଁ ଦଣ୍ଡ ଭୋଗିବାକୁ ପଡ଼ିବ ?

**ବ୍ରହ୍ମସ୍ୱଂ ଦୁରନୁଜ୍ଞାତଂ ଭୁକ୍ତଂ ହନ୍ତି ତ୍ରିପୁରୁଷମ୍ ।**
**ପ୍ରସହ୍ୟ ତୁ ବଳାତ୍ ଭୁକ୍ତଂ ଦଶପୂର୍ବାଂ ଦଶ-ଅପରାନ୍ ॥୩୪॥**

ଉ. ଅଜାଣତ ବ୍ରହ୍ମସ୍ୱ ଅପହରଣ ଲାଗି ନିଜକୁ ଏବଂ ପିତା ସହିତ ପୁତ୍ର ଏପରି ତିନିପୁରୁଷଙ୍କୁ ପାପ ଭୋଗିବାକୁ ପଡ଼େ (ଭୁକ୍ତଂ) । ଜବରଦସ୍ତ ହରଣ କରିଥିଲେ ନିଜ ସହିତ ପୂର୍ବତମ ଦଶ ପୁରୁଷ ଓ ପରବର୍ତ୍ତୀ ଦଶ ପୁରୁଷ ଏଭଳି ଏକୋଇଶ ପୁରୁଷଙ୍କୁ ପାପ ଫଳ ଭୋଗିବାକୁ ହେବ ।

ପ୍ରଶ୍ନ-୯୭: ଭଗବାନ ଚାହୁଁ ନଥିଲେ ତାଙ୍କ ଅନୁଶାସନରେ କେହି ରାଜା ଓ ତାଙ୍କ ବଂଶଜମାନେ ଏ ଘୋର ଅପରାଧ କରନ୍ତୁ । ବ୍ରାହ୍ମଣମାନଙ୍କୁ ଭଗବାନ ନିଜ ହସ୍ତରେ ପାଦ ଧୌତ କରି ନମସ୍କାର କରି ଆଦର ସତ୍କାର କରୁଥିଲେ ବୋଲି ଶାସ୍ତ୍ର

ପ୍ରମାଣ ଅଛି (ନମସ୍କୁରୁତ) । ତେବେ ବ୍ରାହ୍ମଣମାନେ ଯଦି ସ୍ୱୟଂ ଉଦ୍ଦଣ୍ଡ ହେବେ (କୃତ -ଆଗସଂଅପି) ତେବେ କ'ଣ କରିବାକୁ ହେବ ବୋଲି ଭଗବାନ୍ କହିଲେ ?

**ବିପ୍ରଂ କୃତ-ଆଗସଂ ଅପି ନ-ଏବ ଦ୍ରୁହ୍ୟତ ମାମକାଃ ।**
**ଘ୍ନନ୍ତଂ ବହୁ ଶପନ୍ତଂ ବା ନମସ୍କୁରୁତ ନିତ୍ୟଶଃ ॥୪୧॥**

ଉ. ଠାକୁରଙ୍କୀ ରୋକଠୋକ ଶୁଣାଇ ଦେଲେ ବିପ୍ର ଯେତେ ଦୋଷ କଲେ, ଅଭିଶାପ ଦେଲେ (ଶପନ୍ତଂ) ମଧ୍ୟ, "ହେ, ମୋର ପିଲାମାନେ (ମାମକାଃ) ମୋ ଭକ୍ତ ବା ରାଜାମାନେ, କେହି ହେଲେ ତାଙ୍କ ପ୍ରତି ଶତ୍ରୁତା ଆଚରଣ କରନାହିଁ (ନ ଦ୍ରୁହ୍ୟତ) । ବରଂ ନିତ୍ୟପ୍ରତି ସେମାନଙ୍କୁ ସପ୍ରେମ ଜୁହାର କରି ସେମାନଙ୍କର ଆଶୀର୍ବାଦ ଭିକ୍ଷା କର । ତୁମର ଅଶେଷ ମଙ୍ଗଳ ହେବ ।"

# ଅଥ ୬୫ତମ ଅଧ୍ୟାୟଃ

## (ବଳରାମଙ୍କର ବ୍ରଜମଣ୍ଡଳରେ ଦୁଇ ମାସ ରହଣୀ ଓ ଗୋପୀମାନଙ୍କ ସହ ଦିବ୍ୟରାସ କ୍ରୀଡ଼ା)

ପ୍ରଶ୍ନ-୯୮: ଦ୍ୱାରକାରେ ଥିବା ବେଳେ ଶ୍ରୀକୃଷ୍ଣ ଏକାଧିକ ଥର ବୃନ୍ଦାବନ ନନ୍ଦଗାଁଓ ଯିବା କଥା ବିଷ୍ଣୁପୁରାଣ ଓ ପଦ୍ମପୁରାଣ ଆଦିରେ ବର୍ଣ୍ଣିତ କିନ୍ତୁ ଏକଥା ଭାଗବତରେ ନାହିଁ । ବଳରାମଜୀଙ୍କର ବ୍ରଜ ବୃନ୍ଦାବନ ଯିବା କଥା କିନ୍ତୁ ଭାଗବତରେ ବିଶେଷ ଭାବରେ ବର୍ଣ୍ଣିତ । ରଥ ଚଢ଼ି ଅନନ୍ତଦେବ ଦିନେ ପହଞ୍ଚିଗଲେ ନନ୍ଦଗାଁଓ । ପିତାମାତାଙ୍କୁ ପ୍ରଣାମ, ସଖାମାନଙ୍କୁ ଆଲିଙ୍ଗନ ଓ କନିଷ୍ଠମାନଙ୍କୁ ଆଶିର୍ବାଦ କଲେ । ଖବର ପାଇ କୃଷ୍ଣଗତାପ୍ରାଣା ଗୋପଲଳନାଗଣ ତାଙ୍କ ପାଖରେ ପହଞ୍ଚିଗଲେ । ସାଦର (ଆଦୃତାଃ) ଦର୍ଶନ କରି (ସନ୍ଦର୍ଶନ) ସେମାନେ ବଳରାମଙ୍କୁ ହସି ହସି(ହସନ୍ତ୍ୟଃ) କ'ଣ ସବୁ ପଚାରିଲେ ?

ଶ୍ରୀ ଶୁକ ଉବାଚ

**ଗୋପ୍ୟୋ ହସନ୍ତ୍ୟଃ ପପ୍ରଚ୍ଛୁ ରାମ ସନ୍ଦର୍ଶନ-ଆଦୃତାଃ ।**
**କଚ୍ଚିତ୍ ଆସ୍ତେ ସୁଖଂ କୃଷ୍ଣଃ ପୁର ସ୍ତ୍ରୀ ଜନବଲ୍ଲଭଃ ॥୯॥**

ଉ. କହିଲେ, ''ଦ୍ୱାରକାପୁରୀ ସୁନ୍ଦରୀ ନାରୀମାନଙ୍କ ପ୍ରାଣପ୍ରିୟ କୃଷ୍ଣ କ'ଣ (କଚିତ୍) ସୁଖରେ ଅଛନ୍ତି ତ । ତାଙ୍କ ପାଇଁ ଆମେ ଦୁସ୍ତ୍ୟଜ ପରିବାର କୁଟୁମ୍ବ ସ୍ନେହ ଛାଡ଼ିଥିଲୁ । ସେ ଶେଷରେ ଆମକୁ ଛାଡ଼ି ପଳେଇଲେ ! ! କେବେ କେମିତି କ'ଣ ତାଙ୍କ ବାପା ମା'ଙ୍କ କଥା ଓ ଆମମାନଙ୍କ କଥା ମନେ ପକାନ୍ତି ? ଏକଥା ପ୍ରମାଣିତ ହୋଇଗଲା ଯେ ସେ ଜଣେ ଧୂର୍ତ୍ତ, ଠକ । ମଥୁରା ନାରୀମାନେ ଶିକ୍ଷିତା, ବିଦୁଷୀ । ସେମାନେ କେମିତି କୃଷ୍ଣ ପ୍ରେମରେ ବିଶ୍ୱାସ କରୁଛନ୍ତି । ହଁ ହଁ ତାଙ୍କ ମନ ମୋହନିଆ ଦରହସରେ ସମସ୍ତେ ମୋହିତ ହୋଇ ଯାଇଥିବେ ।''

ପ୍ରଶ୍ନ-୯୯ : ଜଣେ ଗୋପୀ କହିଲେ, ''କୃଷ୍ଣ କଥା କହିବା ବନ୍ଦ କର । କି ଲାଭ ସେ କଥା ପକାଇ ? ସେ ଯଦି ଆମକୁ ଛାଡ଼ି ସୁଖରେ ରହି ପାରୁଛନ୍ତି ଆମେ କାହିଁ ତାଙ୍କ କଥା ମନେ ନ ପକାଇ ରହିପାରିବାନି ?'' ଅନ୍ୟ ଗୋପୀମାନେ କ'ଣ ତାଙ୍କ କଥା ମାନି କୃଷ୍ଣ କଥା ଆଲୋଚନା ବନ୍ଦ କରିଦେଲେ ?

**ଇତି ପ୍ରହସିତଂ ଶୌରେଃ ଜଳ୍ପିତଂ ଚାରୁବୀକ୍ଷିତମ୍ ।**
**ଗତିଂ ପ୍ରେମ ପରିଷ୍ୱଙ୍ଗଂ ସ୍ମରନ୍ତ୍ୟୋ ରୁରୁଦୁଃ ସ୍ତ୍ରିୟଃ ॥୧୫॥**

ଉ. ଆଦୌ ବନ୍ଦ କଲେ ନାହିଁ । ଶ୍ରୀକୃଷ୍ଣଙ୍କର (ଶୌରେଃ) ପରିହା[illegible], ମନମୋହକ କଥା (ଜଳ୍ପିତଂ), ଚିତବନ୍ ସୁନ୍ଦର ବାଙ୍କ ଚାହାଣୀ (ଚାରୁ ବୀକ୍ଷିତଂ), ଢ଼ଳ ଢ଼ଳ ଚାଲି (ଗତିଂ) ଓ ତାଙ୍କର ପ୍ରେମପୂର୍ଣ୍ଣ ଆଲିଙ୍ଗନକୁ (ପରିଷ୍ୱଙ୍ଗଂ) ମନେ ପକାଇ କରୁଣ କ୍ରନ୍ଦନ କରି ପରିସ୍ଥିତିକୁ ଅତ୍ୟନ୍ତ ଗମ୍ଭୀର କରିଦେଲ ସେମାନେ (ସ୍ତ୍ରିୟଃ) ।

ପ୍ରଶ୍ନ-୧୦୦ : ବଳରାମଜୀ ଏବେ ପରିସ୍ଥିତିକୁ ସୁଧାରିବାକୁ ସୁନ୍ଦର ବ୍ୟବସ୍ଥା କରିଦେଲେ । ମହାରାସବେଳେ ଯେଉଁ ଗୋପ ବାଳିକାମାନେ ବୟସରେ ଅତି ସାନ ଥିଲେ ବା କୃଷ୍ଣଙ୍କ ରାସ ପରେ ଜନ୍ମ ନେଇଥିଲେ ଓ ରାସ ଲୀଳାରେ ଭାଗ ନେଇପାରିନଥିଲେ ସେମାନଙ୍କୁ ପାଖକୁ ଡ଼ାକିଲେ । ଯମୁନା କୂଳରେ ଏକ ସୁନ୍ଦର ସ୍ଥାନ ବାଛିଲେ । ବର୍ତ୍ତମାନ ସେ ସ୍ଥାନର ନାମ ରାମଘାଟ । ଅସଂଖ୍ୟ ଗୋପୀମାନଙ୍କ ସହ ବଡ଼ ଠାକୁର ଦିବ୍ୟ ରାସକ୍ରୀଡ଼ା ଆରମ୍ଭ ହେବା ଘୋଷଣା କରିଦେଲେ । ଆକାଶରେ ଥାଇ ଦେବତାମାନେ ପୁଷ୍ପ ବର୍ଷଣ କଲେ । ଗନ୍ଧର୍ବମାନେ ଦୁନ୍ଦୁଭି ବଜାଇଲେ । ନାଚ, ଗୀତ, ସଙ୍ଗୀତ, ବାଜା କେଉଁଥିରେ ଅଭାବ ହେଲାନି । ମୁନି ଋଷିମାନେ ବଳରାମଜୀଙ୍କ ରାସର ପ୍ରଶଂସା କଲେ । କାଳିନ୍ଦୀ ବା ଯମୁନା ନଦୀ କିନ୍ତୁ ଆସିବାକୁ ପ୍ରଥମେ ଅମଙ୍ଗ ହେଲେ । ହଳଧାରୀ ବଳରାମ ତେବେ ତାଙ୍କୁ କେମିତି ବାଟକୁ ଆଣିଲେ ?

ଶ୍ରୀ ବଳରାମ ଉବାଚ

**ପାପେ ତ୍ୱଂ ମାଂ ଅବଜ୍ଞାୟ ଯତ୍ ନ-ଆୟାସି ମୟା-ଆହୁତା ।**
**ନେଷ୍ୟେ ତ୍ୱାଂ ଲାଙ୍ଗଳ-ଅଗ୍ରେଣ ଶତଧା କାମ ଚାରିଣୀମ୍ ॥୨୬॥**

ଉ. କ୍ରୋଧରେ କମ୍ପି ଉଠିଲେ ହଳଧାରୀ । କହିଲେ, ''ହେ ପାପିନୀ, ଦୁଷ୍ଟା ଯମୁନେ, ତୁମେ କ'ଣ ଏହାକୁ କାମଲୀଳା ମନେ କଲକି (କାମ ଚାରିଣୀ) ? ମୋ ଡ଼ାକ ଶୁଣି ନ ଆସିଲେ ମୋ ଲଙ୍ଗଳ ମୁନରେ ତୁମକୁ ଅନେକ ଧାରରେ ବିଭକ୍ତ କରି ବିଦାରଣ କରିଦେବି । ତୁମକୁ ନିଶ୍ଚୟ ବଙ୍କା ଟଙ୍କା କରି ଜବରଦସ୍ତ ଟାଣି ଆଣିବ (ନେଷ୍ୟେ) । ସଙ୍ଗେ ସଙ୍ଗେ ଲଙ୍ଗଳକୁ ଯୋଗ ବଳରେ ଭୂମିରେ ଲଗାଇ ବଳ ପ୍ରୟୋଗ କଲେ । ଥରି ଉଠିଲା ସମଗ୍ର ପୃଥିବୀ । ଥରିଗଲେ ଯମୁନା । ଏଥର ଜାଣିଗଲେ ବଳରାମଙ୍କ ବଳକୁ । ଚିହ୍ନିଗଲେ ସେ ଅନନ୍ତ ନାଗଙ୍କୁ । ଯମୁନା ଧାଇଁ ଯାଇ ଶରଣ ପଶିଲେ । ଏବେ ସେ ଲୀଳାସ୍ଥାନରେ ବଳରାମ(ଦାଉଜୀ) ମନ୍ଦିର ବିଦ୍ୟମାନ । ନାମ ରହିଛି ଖେଞ୍ଚା ଦାଉଜୀ ।

ବର୍ତ୍ତମାନ ବୃନ୍ଦାବନର ମ୍ୟାପ୍‌ରେ ଯମୁନା ନଦୀଙ୍କର ଗତିପଥ ଦେଖିଲେ ପରିଷ୍କାର ଜଣାଯାଏ ଯେ ଯମୁନାଙ୍କର ସଳଖ ଧାରାକୁ ଏହି ରାସଲୀଳା ବକ୍ରଗତି କରାଇ ଦେଇଛି । ଅଖଣ୍ଡ ଆନନ୍ଦ ସରସ୍ୱତୀଙ୍କ ଆଶ୍ରମ ପାଖରେ ଠିଆ ହୋଇ ଯମୁନାଙ୍କୁ ଦର୍ଶନ କଲେ ଜଣାଯିବ ବାମ ପଟେ ଯମୁନା, ଦକ୍ଷିଣ ପଟେ ଯମୁନା ଓ ସାମନାରେ ଯମୁନା ନଦୀ । ସତେ ଯେମିତି ଯମୁନା ନଦୀ ଆଜି ମଧ ସାକ୍ଷୀ ଦେଉଛନ୍ତି ବଡ଼ ଠାକୁରଙ୍କର ସେ ଦିବ୍ୟ ରାସ ଲୀଳାର ।

# ଅଥ ୬୬ମ ଅଧ୍ୟାୟଃ

## (ଅଭକ୍ତ ପୌଣ୍ଡ୍ରକ ବାସୁଦେବ ଓ କାଶୀରାଜଙ୍କ ଉଦ୍ଧାର)

ପ୍ରଶ୍ନ- ୧ ୦ ୧ : କାଶୀ ବନାରସ ପାଖରେ କରୁଷ ନାମକ ଏକ ରାଜ୍ୟ ଥାଏ । ସେ ଦେଶରେ ପୌଣ୍ଡ୍ରକ ନାମରେ ଜଣେ ରାଜା ଥାଆନ୍ତି । ଭୟଙ୍କର କୁସଙ୍ଗ ଓ ଅହଂକାର ହେତୁ ସେ ନିଜକୁ ବାସୁଦେବ ବୋଲି କହି ବୁଲିଲେ । ଦୁଇଟା କାଠ ହାତ ତିଆରି କରି ବେଙ୍କରେ ଓହଳେଇ ଦେଲେ । ଗୋଟିଏ ହାତର ଲୁହାର ଚକଟିଏ ଅନ୍ୟଟିରେ ଶଙ୍ଖଟେ ଖଞ୍ଜିଥାନ୍ତି । ମସ୍ତକର ମୁକୁଟରେ ମୟୂରଚୂଳ ଖୋସି ନିଜକୁ ଅସଲି ବାସୁଦେବ ବୋଲି ରାଜ୍ୟରେ ଘୋଷଣା କଲେ । ଠାକୁରଙ୍କୀଙ୍କୁ ନକଲି ବାସୁଦେବ ବୋଲି ଚିଠି ଲେଖିଲେ ଦ୍ୱାରକା, ତାଙ୍କ ଠାରେ ଶରଣ ପଶିବାକୁ କିମ୍ବା ଯୁଦ୍ଧ କରିବାକୁ । ଉଗ୍ରସେନ ଆଦି ଚିଠି ପଢ଼ି ହସିଲେ ସମସ୍ତେ । ଭଗବାନ ଗରୁଡ଼ ପିଠିରେ ଚଢ଼ି କାଶୀରେ ପହଞ୍ଚିଲେ ଓ କରୁଷ ଉପରେ ଚଢ଼ାଉ କଲେ । ପୋଣ୍ଡ୍ରକ ତାଙ୍କ ବନ୍ଧୁ କାଶୀ ରାଜାଙ୍କୁ ସଙ୍ଗରେ ନେଇ ଯୁଦ୍ଧରେ ଭିଡ଼ିଗଲେ । ସାଙ୍ଗରେ ତିନି ଅକ୍ଷୌହିଣୀ ସୈନ୍ୟଙ୍କୁ ଦେଖି ଏକାକୀ ଭଗବାନ (ହରିଃ) ଡ଼ରିଯାଇଥିଲେ କି ଯୁଦ୍ଧ କରିବାକୁ ?

**ଶ୍ରୀ ଶୁକ ଉବାଚ**

**ଦୃଷ୍ଟ୍ୱା ତଂ ଆତ୍ମନଃ ତୁଲ୍ୟଂ ବେଷଂ କୃତ୍ରିମ-ଆସ୍ଥିତମ୍ ।**
**ଯଥା ନଟଂ ରଙ୍ଗ ଗତଂ ବିଜହାସ ଭୃଶଂ ହରିଃ ॥୧୫॥**

ଉ. ଆଦୌ ଡ଼ରିଲେ ନାହିଁ । ବରଂ ଖୁବ୍ ହସିଲେ(ଭୃଶଂ ବିଜହାସ) । ଦେଖିଲେ ତୁଚ୍ଛା ନକଲି(କୃତ୍ରିମ) ବାସୁଦେବ ବେଶଧାରୀ । ଦୁଇଟି ହାତ, ଶଙ୍ଖ, ଚକ୍ର ସହିତ ବାସୁଦେବ ପଦବୀ ମଧ୍ୟ ନକଲି । ମନେ ହେଲା ସତେ କି ପୌଣ୍ଡ୍ରକ ରାଜା ଯେପର (ଯଥା) ଦଣ୍ଡନାଚ କିମ୍ବା ଅପେରା ସୁଆଙ୍ଗରେ ଅଭିନୟ କରିବାକୁ ବାହାରିଛନ୍ତି ! ! !

ପ୍ରଶ୍ନ- ୧ ୦ ୨ : ପୌଣ୍ଡ୍ରକ ହଠାତ୍ ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କରିଦେଲେ ଗଦା, ପରିଘ, ଭାଲା ଇତ୍ୟାଦି ଦ୍ୱାରା । କାଶୀରାଜ ମଧ୍ୟ ଅସ୍ତ୍ର, ଶସ୍ତ୍ର ପ୍ରୟୋଗ କଲେ । ଭଗବାନ ଦେଖିଲେ କ୍ଷମା କରିବାକୁ ସମୟ କିମ୍ବା ଉପାୟ ମଧ୍ୟ ନାହିଁ । କେଉଁ କେଉଁ ଅସ୍ତ୍ର ଶସ୍ତ୍ର ଛାଡ଼ିଲେ ଭଗବାନ ଦୁଇ ଅଭକ୍ତ ବା କୃଷ୍ଣଦ୍ୱେଷୀ ଅଭକ୍ତଙ୍କୁ ଲକ୍ଷ୍ୟ କରି ?

ଶ୍ରୀ ଶୁକ ଉବାଚ

**ଇତି କ୍ଷିପ୍ତ୍ୱା ଶିତୈଃ ବାଣୈଃ ବିରଥୀକୃତ୍ୟ ପୌଣ୍ଡ୍ରକମ୍ ।**
**ଶିରୋଽବୃଶ୍ଚତ୍ ରଥ-ଅଙ୍ଗେନ ବଜ୍ରେଣ-ଇନ୍ଦ୍ରୋ ଯଥା ଗିରେଃ ।।୨୧।।**

ଉ. ଭଗବାନ ତୀକ୍ଷ୍ଣ ଶରରେ (ଶିତୈଃ ବାଣୈଃ) ତାଙ୍କ ରଥ ଭାଙ୍ଗି ପକାଇଲେ । ସୁଦର୍ଶନ ଚକ୍ରରେ (ରଥ-ଅଙ୍ଗେନ) ତାଙ୍କ ମସ୍ତକ ଛେଦନ କଲେ । ସତେ କି ଇନ୍ଦ୍ର ବଜ୍ରରେ ପର୍ବତକୁ ଦୁଇଖଣ୍ଡ କରିଦେଲେ । ପରେ ପରେ କାଶୀରାଜଙ୍କ ମସ୍ତକ ମଧ କଟିଗଲା ସେଇ ଚକ୍ରଙ୍କ ଦ୍ୱାରା । ନାରାୟଣ ହତ-ଅରି-ଗତି-ଦାୟକ । ଦୁଇ ଜଣ ରାଜା ସଦା ସର୍ବଦା ଦ୍ୱେଷ ଭାବରେ ହେଲେ ମଧ ସାରା ଜୀବନ କୃଷ୍ଣ ଚିନ୍ତନ କରୁଥିଲେ । ପ୍ରାଣଗଲା ବେଳେ ସମ୍ମୁଖରେ ତାଙ୍କୁ ଦର୍ଶନ କଲେ । ସୁତରାଂ ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହୋଇ ଧନ୍ୟ ହେଲେ ଉଭୟ ।

ପ୍ରଶ୍ନ-୧୦୩: ଠାକୁରଜୀ ଫେରିଗଲେ ଦ୍ୱାରକା । ରୁକ୍ମିଣୀଙ୍କ ସହିତ ପଶା ଖେଳରେ ବସିଗଲେ । ଏଣେ ସୁଦର୍ଶନ ଚକ୍ର ପୌଣ୍ଡ୍ରକଙ୍କ କଟାମୁଣ୍ଡ ନେଇ ପକାଇଲେ କରୁଷ ରାଜ ସଭାରେ । ରାଜକୁମାର ସୁଦକ୍ଷିଣ କ୍ରୋଧରେ ଅଗ୍ନିଶର୍ମା ହେଲେ । ସେ ଥିଲେ ପରମ ଶିବ ଭକ୍ତ କିନ୍ତୁ ବିଷ୍ଣୁଦ୍ୱେଷୀ । ପୁରୋହିତ ଡ଼କାଇ ଅଭିଚାର ପ୍ରୟୋଗ କଲେ । ଭୟଙ୍କର କୃତ୍ୟା (ଅସୁର) ଉତ୍ପନ୍ନ ହେଲା ଯଜ୍ଞ କୁଣ୍ଡରୁ । ଭଗବାନ ଶଙ୍କର ଆଶୀର୍ବାଦ କଲେ କୃତ୍ୟାକୁ ବ୍ରାହ୍ମଣ ଦ୍ରୋହୀକୁ ହତ୍ୟାକରିବାକୁ । ପୁରୋହିତ ଦେଖାଇଦେଲେ ଦ୍ୱାରକାକୁ ବାଟ । କୃତ୍ୟା ଦ୍ୱାରକାରେ ପହଞ୍ଚି ଭୟ ଦେଖାଇଲା ଯଦୁବଂଶୀମାନଙ୍କୁ । ଭଗବାନ (ବିଭୁଃ) କେଉଁ ଉପାୟରେ ସେମାନଙ୍କର ଭୟ ନିବାରଣ କଲେ ?

**ସର୍ବସ୍ୟ-ଅନ୍ତଃ ବହିଃ ସାକ୍ଷୀ କୃତ୍ୟାଂ ମାହେଶ୍ୱରୀଂ ବିଭୁଃ ।**
**ବିଜ୍ଞାୟ ତତ୍ ବିଘାତ-ଅର୍ଥଂ ପାର୍ଶ୍ୱସ୍ଥଂ ଚକ୍ରଂ ଆଦିଶତ୍ ।।୩୮।।**

ଉ. ସେ ସମସ୍ତ ଜଗତର ଜୀବମାନଙ୍କ ଅନ୍ତରରେ ଆତ୍ମା । ବାହାରେ ପରମାତ୍ମା । ସକଳ କର୍ମର ସାକ୍ଷୀ । ବୁଝିଗଲେ ଏ ଶିବଙ୍କ ଅସ୍ତ୍ର (ମାହେଶ୍ୱରୀଂ) । ପାଖରେ ଥିବା ସୁଦର୍ଶନ ଚକ୍ରକୁ ଆଦେଶ ଦେଇ ସେ କୃତ୍ୟାକୁ ଘଉଡ଼ାଇ ଦେଲେ । କୃତ୍ୟା ଯାଇ ସୁଦକ୍ଷିଣ, ପୁରୋହିତ ଆଦିଙ୍କୁ ବଧ କରି ସମଗ୍ର ରାଜ୍ୟ ଓ ରାଜ ସଭାରେ ତାଣ୍ଡବ କରି ଧ୍ୱଂସ କଲା । ଶିବ ଲିଙ୍ଗରେ ପ୍ରବେଶ କରି ଶାନ୍ତ ହୋଇଗଲା ।

# ଅଥ ୬୭ମ ଅଧ୍ୟାୟଃ

## (ବଳରାମଙ୍କ ଦ୍ୱାରା ନରକାସୁରର ସଖା ଦ୍ୱିବିଦ ବାନର ବଧ)

ପ୍ରଶ୍ନ-୧୦୪: ରାମାୟଣ ଲୀଳାରେ ସୁଗ୍ରୀବଙ୍କ ପାଖରେ ମନ୍ତ୍ରୀ ଥିଲେ ଏ ଦ୍ୱିବିଦ । ବାନର ଶବ୍ଦ ଦ୍ୱାରା ଜଣାଯାଏ ଯେ ଏହା ଆଜିର ଅଧାଗଢ଼ା ମାନବ, ଗରିଲା ବା ବଣ ମଣିଷ ଜାତିର ଏକ ପ୍ରାଣୀ । ସୀତାଙ୍କୁ ଖୋଜିବାକୁ ଲକ୍ଷ୍ମଣ ଲାଲ ମନେ ପକାଇଥିଲେ ସୁଗ୍ରୀବଙ୍କୁ ତାଙ୍କ ରାଜ ସଭାରେ । ଶ୍ରୀରାମ ସତରେ ଭଗବାନ କି ମଣିଷ ଏହି ସଂଶୟ ବା ଦ୍ୱିଧା(ଦ୍ୱିବିଦ) ଅଟେ । ସୁଗ୍ରୀବ କହିଲେ ''ସୀତା କିଏ ରାମ କିଏ ମୁଁ ଜାଣେନା ।'' ଲକ୍ଷ୍ମଣ ଧନୁରେ ଗୁଣ ଦିଅନ୍ତେ ସେ ଧନୁର ଟଙ୍କାର ଶୁଣି ସୁଗ୍ରୀବ ଓ ଦ୍ୱିବିଦ ଚମକି ପଡ଼ିଥିଲେ । ସେଇ ଲକ୍ଷ୍ମଣ ଏବେ କୃଷ୍ଣଲୀଳାରେ ବଳରାମ ରୂପେ ଅଭିନୟ କରୁଛନ୍ତି କି ଦ୍ୱିବିଦକୁ ଦଣ୍ଡଦେବାକୁ ?

ଶ୍ରୀ ଶୁକ ଉବାଚ

**ନରକସ୍ୟ ସଖା କଶ୍ଚିତ୍ ଦ୍ୱିବିଦୋ ନାମ ବାନରଃ ।**
**ସୁଗ୍ରୀବ ସଚିବଃ ସୋଽଥ ଭ୍ରାତା ମୈନ୍ଦସ୍ୟ ବୀର୍ଯ୍ୟବାନ୍ ॥୨॥**

ଉ. କଥାଟି ବିଲକୁଲ ଠିକ୍ । ସେ ଦିନର ସେହି ବାନର ଦ୍ୱିବିଦ ଓ ମୈନ୍ଦ ଦୁଇଜଣ ଅତ୍ୟନ୍ତ ପରାକ୍ରମଶାଳୀ ଗରିଲା ଥିଲେ ଆଜିର କୃଷ୍ଣ ଲୀଳାରେ ।

ପ୍ରଶ୍ନ-୧୦୫: ଥରେ ଭଗବାନ ଆନର୍ତ୍ତ ଦେଶରେ ପରିବାର ଘେନି ରହୁଥାନ୍ତି । ଦ୍ୱିବିଦ ବାନର ସ୍ୱଭାବରେ ଦୁଷ୍ଟ ବୁଦ୍ଧି ବାଲା ଥିଲା । ସମୁଦ୍ର ଜଳରେ ବୁଡ଼ି ଜଳଜନ୍ତୁଙ୍କୁ ପୀଡ଼ା ଦେଉଥିଲା । ବ୍ରାହ୍ମଣ ବୈଷ୍ଣବ ମାନଙ୍କୁ ଗୁମ୍ଫା ମଧ୍ୟରେ ବନ୍ଦୀ କରି ରଖୁଥିଲା । ମଳ ମୂତ୍ର ପକାଇ ଯଜ୍ଞ କୁଣ୍ଡକୁ ଦୂଷିତ କରୁଥିଲା ।

ଦିନେ ସେ ଭଗବାନଙ୍କ ରହୁଥିବା ରୈବତକ ଗିରିରେ ପହଞ୍ଚିଗଲା । ବନ ଉପବନ ବୃକ୍ଷ ଇତ୍ୟାଦିରେ ପଶି ଉଜାଡ଼ବସ୍ତ କଲା । ଏପରିକି ମହିଳାମାନଙ୍କୁ ମଧ୍ୟ ଦ୍ୱିବିଦ ଅପମାନିତ କଲା । ନିଜର ଗୁଦା (ଗୁପ୍ତାଙ୍ଗ) ପ୍ରଦର୍ଶନ କରାଇଲା । ବଡ଼ ଠାକୁର ଦେଖିଲେ ଏ ସହଜ ଜନ୍ତୁ ନୁହେଁ । ତତ୍‌କ୍ଷଣାତ୍ ସେ ନିଜ ଗଦା ଓ ମୂଷଳରେ

ପ୍ରହାର କଲେ । ମହା ପରାକ୍ରମୀ ଦ୍ୱିବିଦ ବିଫଳ ପ୍ରତିରୋଧ କଲା । ଶେଷରେ ବଳରାମ ଏକ ଶକ୍ତିଶାଳୀ ମୁଥ ମାରିଲେ ତା ମସ୍ତକ ଉପରେ । ଦ୍ୱିବିଦ ରକ୍ତବାନ୍ତି କଲା । ପ୍ରାଣ ହରାଇ କଚାଡ଼ି ହୋଇ ଧରାଶାୟୀ ହେଲା ଯାହା ଫଳରେ ରୈବତକ ପର୍ବତ କମ୍ପମାନ ହେଲା । ସ୍ୱର୍ଗରେ ଥାଇ (ଅମ୍ବରେ) ଦେବୀ ଦେବତାମାନେ କ'ଣ କଲେ ?

**ଜୟ ଶବ୍ଦୋ ନମଃ ଶବ୍ଦଃ ସାଧୁ ସାଧୁ-ଇତି ଚ-ଅମ୍ବରେ ।**
**ସୁର ସିଦ୍ଧ ମୁନି-ଇନ୍ଦ୍ରାଣାଂ ଆସୀତ୍ କୁସୁମ ବର୍ଷିଣାମ୍ ॥୨୭॥**

ଉ. ଇନ୍ଦ୍ରଙ୍କ ସହିତ ଦେବଗଣ, ସିଦ୍ଧଗଣ, ମୁନି ସମାଜ ଜୟ ଜୟକାର ଧ୍ୱନି କଲେ । ଦିବ୍ୟ କୁସୁମ ବର୍ଷଣ କରି ବଳରାମଙ୍କ ଠାରେ କୃତଜ୍ଞତା ଜଣାଇଲେ । ସମସ୍ତେ ତାଙ୍କୁ ସଭକ୍ତିକ ନମସ୍କାର କଲେ ।

# ଅଥ ୬୮ମ ଅଧ୍ୟାୟଃ

## (ଦୁର୍ଯ୍ୟୋଧନଙ୍କ କନ୍ୟା ଲକ୍ଷ୍ମଣାଙ୍କ ସହ ଶାମ୍ବଙ୍କ ବିବାହ)

ପ୍ରଶ୍ନ-୧୦୬: ଜାମ୍ବବତୀଙ୍କର ଜ୍ୟେଷ୍ଠ ପୁତ୍ର ଶାମ୍ବ । ବଳ ପରାକ୍ରମରେ ସେ ବାପା, ବଡ଼ ବାପା, ଅଜା (ଜାମ୍ବବାନ) ଙ୍କ ଠାରୁ କିଛି କମ ନୁହନ୍ତି । ସୁଭଦ୍ରା ହରଣ ଆଦି ଯଦୁବଂଶୀ କନ୍ୟାଙ୍କୁ କୁରୁବଂଶୀମାନଙ୍କ ଦ୍ୱାରା ଉଠାଇ ନେବାରେ ସେମାନେ ଅନେକ ଅପମାନିତ ହୋଇଛନ୍ତି । ତାର ପ୍ରତିଶୋଧ ନିମିତ୍ତ ସୁଯୋଗ ଅପେକ୍ଷାରେ ଥିଲେ । ଲକ୍ଷ୍ମଣାଙ୍କର ସ୍ୱୟମ୍ବର ସଭାରେ ହଠାତ୍ ପହଞ୍ଚିଗଲେ ଶାମ୍ବବୀର । ଶାମ୍ବ ଲକ୍ଷ୍ମଣାଙ୍କୁ ନିଜ ରଥରେ ଉଠାଇନେଲା ବେଳେ ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ, ଅଶ୍ୱତ୍‌ଥାମା ଆଦିଙ୍କର ପ୍ରତିରୋଧର ସମ୍ମୁଖୀନ ହେଲେ । ଅତି ଭୟଙ୍କର ଯୁଦ୍ଧ ହେଲା । ଶାମ୍ବ ପରାସ୍ତ ହେଲେ । ବନ୍ଦୀ ହୋଇ ହସ୍ତିନାରେ କାଳ କାଟିଲେ ।

ନାରଦଜୀ ଏ ଦୁଃସମ୍ବାଦ ଜଣାଇଲେ ବଳରାମଜୀଙ୍କୁ । ସେ ଶ୍ରୀକୃଷ୍ଣଙ୍କୁ କିଛି ନ ପଚାରି ବୟୋଜ୍ୟେଷ୍ଠ ପୁରୁଷ ଓ ପୁରୋହିତ ଇତ୍ୟାଦିଙ୍କୁ ହସ୍ତିନାକୁ ନେଇ କଥାର ସମାଧାନ ପାଇଁ ଚେଷ୍ଟା କଲେ । ଦୁର୍ଯ୍ୟୋଧନଙ୍କର ବଳରାମ ହେଉଛନ୍ତି ଗଦାଯୁଦ୍ଧର

ଗୁରୁ । ମହାମାନୀ ଦୁର୍ଯ୍ୟୋଧନ ତାଙ୍କୁ ସମ୍ମାନ କରିବା ତ ଦୂରର କଥା । ଓଲଟି ଖରି ଖୋଟି ଶୁଣାଇଲେ । ଅପମାନିତ ମଧ୍ୟ କଲେ । ବଳରାମଜୀ ଦେଖିଲେ ଏମାନେ ଧନ, ରାଜ ସିଂହାସନ ଦର୍ପରେ ଅହଂକାରୀ (ଉନ୍ମଦ୍ଧାଃ) ହୋଇଗଲାଣି । ସେ ସେହି ସେହି ବଦମାଶ(ଅସାଧବଃ)ଙ୍କୁ କିପରି ଉପଯୁକ୍ତ ଦଣ୍ଡ ଦେବାର ବ୍ୟବସ୍ଥା କଲେ ?

**ନୂନଂ ନାନା ମଦ-ଉନ୍ମଦ୍ଧାଃ ଶାନ୍ତିଂ ନ-ଇଚ୍ଛନ୍ତି-ଅସାଧବଃ ।**
**ତେଷାଂ ହି ପ୍ରଶମୋ ଦଣ୍ଡଃ ପଶୁନାଂ ଲଗୁଡ଼ୋ ଯଥା ॥୩୧॥**

ଉ. ପଶୁଟିଏ ଭଲ ମନ୍ଦ ବୁଝେନା । ଉତ୍ପାତ କଲେ ତାକୁ ଠେଙ୍ଗାରେ ପିଟି(ଲଗୁଡ଼ୋ) ବାଟକୁ ଆଣିବା ଭଳି ଉପାୟ କଲେ । ସିଧା ଆଙ୍ଗୁଳିରେ ଘିଅ ବାହାରେନା । ଘିଅ ତରଳେ ନିଆଁରେ । ସୁତରାଂ ଉତ୍ତମ ମଧ୍ୟମ ବ୍ୟବସ୍ଥା କଲେ ।

ପ୍ରଶ୍ନ-୧୦୭: ବଳରାମଜୀ ପ୍ରିୟ ଦିବ୍ୟ ହଳ ଅସ୍ତ୍ରକୁ ସ୍ମରଣ କଲେ । ଗଙ୍ଗା ନଦୀ କୂଳରେ ସେହି ସ୍ଥାନରେ ହଳକୁ ଧରି ହସ୍ତିନାପୁରକୁ (ଗଜ-ଆହ୍ୱୟଂ) ଲଙ୍ଗଳ ମୁନରେ ବିନ୍ଧ କରି କି ଭୟଙ୍କର ଅବସ୍ଥା ଉପୁଜାଇଲେ କୌରବମାନଙ୍କ ମନରେ ?

**ଲାଙ୍ଗଳ-ଅଗ୍ରେଣ ନଗରଂ ଉତ୍‌ବିଦାର୍ଯ୍ୟ ଗଜ-ଆହ୍ୱୟମ୍ ।**
**ବିଚକର୍ଷ ସ ଗଙ୍ଗାୟାଂ ପ୍ରହରିଷ୍ୟନ୍ ଅମର୍ଷିତଃ ॥୪୧॥**

ଉ. ଲଙ୍ଗଳକୁ କ୍ରୋଧରେ (ଅମର୍ଷିତଃ) ଟାଣି ଦିଅନ୍ତେ (ବିଚକର୍ଷ) ସମଗ୍ର ହସ୍ତିନା ନଗରୀରେ ଭୂମିକମ୍ପ ସୃଷ୍ଟି ହେଲା । ମନେ ହେଲା ସତେ କି ସମସ୍ତ ନଗରୀ ରାଜା ପ୍ରଜାଙ୍କ ସହିତ ଗଙ୍ଗା ନଦୀର ସଲିଳ ସମାଧି ନେବ ।

ପ୍ରଶ୍ନ-୧୦୮: ବର୍ତ୍ତମାନ ଦୁର୍ଯ୍ୟୋଧନ, କର୍ଣ୍ଣ, ଦ୍ରୋଣ, ଭୀଷ୍ମ ଆଦି ବୁଝିଗଲେ । ଅନନ୍ତ ନାଗଙ୍କର ଅବତାର ବଳରାମଜୀଙ୍କର ଅଲୌକିକ ଶକ୍ତିର ମହିମା । ବଳରାମଜୀଙ୍କ ପାଖକୁ ଯାଇ ସମସ୍ତ କୌରବ କୁଳ ହାତଯୋଡ଼ି ବିନମ୍ର ସ୍ତୁତି କରିବାରେ ଲାଗିଲେ । ବଡ଼ ଠାକୁର ଦେଖିଲେ କୌରବ କୁଳର ସମସ୍ତେ ତାଙ୍କର ଶରଣାଗତ ହେଲେଣି । କ୍ରୋଧ ଶାନ୍ତ କଲେ ସେ ।

ରୀତି ମତ ବୈଦିକ ବିବାହର ଆୟୋଜନ ହେଲା । ଅଲିଅଳି କନ୍ୟା ଲକ୍ଷ୍ମଣା ଶାମ୍ବଙ୍କ ବିବାହରେ କଅଣ ସବୁ ଯୌତୁକ (ପରିବର୍ହଃ) ଦେଲେ ଦୁର୍ଯ୍ୟୋଧନ ?

**ଦୁର୍ଯ୍ୟୋଧନଃ ପାରିବର୍ହଃ କୁଞ୍ଜରାନ୍ ଷଷ୍ଟି ହାୟନାନ୍ ।**
**ଦଦୌ ଚ ଦ୍ୱାଦଶ ଶତାନି ଅୟୁତାନି ତୁରଙ୍ଗମାନ୍ ॥୫୦॥**

ଉ. ବାଳକ ହସ୍ତୀ ନୁହନ୍ତି ବରଂ ଷାଠିଏ ବର୍ଷର ବୟସ୍କ ବଳବାନ ବାରଶହ ହସ୍ତୀ ସହିତ ଏକ ଲକ୍ଷ କୋଡ଼ିଏ ହଜାର ଅଶ୍ୱ ପ୍ରଦାନ କଲେ । ଛଅ ହଜାର ସୁସଜ୍ଜିତ ରଥ ଓ ଏକହଜାର ରତ୍ନହାର ପିନ୍ଧା ଦାସୀମାନଙ୍କୁ ସେବା ନିମନ୍ତେ ଦେଇଥିଲେ । ଏଇଥିରୁ ବୁଝାଯିବ ଅନ୍ୟାନ୍ୟ ଯୌତୁକ ସାମଗ୍ରୀର ପରିମାଣ ।

ଏବେ ବଳରାମଙ୍କ ବଳର ସୂଚନା ଦର୍ଶକ ମାନଙ୍କୁ ମିଳେ ହସ୍ତୀନାପୁର(ବର୍ତ୍ତମାନ କର୍ଣ୍ଣବାସ ନିକଟସ୍ଥ ପରୀକ୍ଷିତଗଡ଼) ଠାରେ ଯମୁନାକୂଳର ଦକ୍ଷିଣ ପାର୍ଶ୍ୱକୁ ଦେଖିଲେ ଯାହା ଗୋଟିଏ ପାଖକୁ ତେଢ଼ା ହୋଇ ଢ଼ଳି ରହିଛି ଯଦିଚ କାଳର କରାଳ ଗର୍ଭରେ ସେତେବେଳର ହସ୍ତିନାପୁର ଏବେ ବିଲୀନ ବା ଅଦୃଶ୍ୟ ହୋଇଯାଇଛି । ଆଜି ଆମେ ଦେଖୁଥିବା ଦିଲ୍ଲୀ ନଗରୀ ହସ୍ତିନାପୁର ନୁହେଁ ପାଣ୍ଡବମାନଙ୍କ ସ୍ଥାପିତ ଇନ୍ଦ୍ରପ୍ରସ୍ଥ ରାଜଧାନୀ ।

**ଇତି ଶ୍ରୀମଦ୍‌ଭାଗବତେ ମହାମୁନି କୃତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଦଶମ ସ୍କନ୍ଧେ**

**ଅଷ୍ଟଷଷ୍ଟିତମୋଽଧ୍ୟାୟଃ ।**

**। ।ହରିଃ ଓଁ ତତ୍‌ସତ୍ । ।**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ**

## ୨୩ଶନକ୍ଷତ୍ର-ଧନିଷ୍ଠା

## ଅଥ ୬୯ମ ଅଧ୍ୟାୟଃ

### (ଦେବର୍ଷି ନାରଦଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କ ଗୃହସ୍ଥାଶ୍ରମ ଦର୍ଶନ)

ପ୍ରଶ୍ନ-୧: ନରକ ଅସୁରଙ୍କ ବଧ ହେଲା । ତାଙ୍କ ବନ୍ଦୀଶାଳାରୁ ଷୋଳ ହଜାର ଏକଶହ ରାଜକୁମାରୀ ମୁକ୍ତ ହେଲେ । ସେମାନେ ସମସ୍ତେ (ବହ୍ୱିନାଂ) ଶ୍ରୀକୃଷ୍ଣଙ୍କୁ (ଏକେନ) ବିବାହ କରିବା (ଉଦ୍‌ବାହଂ) କଥା ନାରଦ ଶ୍ରବଣ କଲେ । କେଉଁ କାରଣରୁ ନାରଦଙ୍କର ଗୃହସ୍ଥାଶ୍ରମ ଦର୍ଶନ କରିବା ଲାଳସା (ଦିଦୃକ୍ଷୁଃ) ଜାଗ୍ରତ ହେଲା ?

**ଶ୍ରୀ ଶୁକ ଉବାଚ**

**ନରକଂ ନିହତଂ ଶ୍ରୁତ୍ୱା ତଥା-ଉଦ୍‌ବାହଂ ଚ ଯୋଷିତାମ୍ ।**
**କୃଷ୍ଣେନ୍ ଏକେନ ବହ୍ୱିନାଂ ତତ୍ ଦିଦୃକ୍ଷୁଃ ସ୍ମ ନାରଦ ॥୧॥**

ଉ. ଦେବର୍ଷି ଜାଣନ୍ତି ଶ୍ରୀକୃଷ୍ଣ ଯୋଗୀଶ୍ୱରମାନଙ୍କର ଈଶ୍ୱର । ନିଜ ଯୋଗ ଶକ୍ତି ବଳରେ ଏକ ସମୟରେ ନିଜକୁ ଷୋଳହଜାର ଏକ ଶହ ଅଂଶରେ ବିଭକ୍ତ କରି ପ୍ରତ୍ୟେକ ବେଦୀରେ ଏକ ସମୟରେ ବସିଯିବା ତାଙ୍କ ପକ୍ଷେ କିଛି ବିଚିତ୍ର କଥା ନୁହେଁ ସତ । ହେଲେ ସଂସାରରେ ଦୁଇ ତିନିଟି ପତ୍ନୀଥିବା ଗୃହସ୍ଥ ଲହୁଲୁହାଣ ହୁଅନ୍ତି ସଉତୁଣୀ ମାନଙ୍କ କଳି ଝଗଡ଼ା ନିଷ୍ପତ୍ତି କରୁ କରୁ । ନାରଦଜୀ ଚାହିଁଲେ ଜାଣିବାକୁ ଶ୍ରୀକୃଷ୍ଣଙ୍କ ଘରେ ଶାନ୍ତି, ଆନନ୍ଦ ପ୍ରାପ୍ତିର କୌଶଳ ।

ବାସ୍ତବରେ ସଂସାରରେ କନ୍ୟାମାନେ ବିବାହ କରିଥାନ୍ତି ନିଜେ ସୁଖରେ ରହିବାକୁ । କାହାକୁ ସେବା କରିବା (ତ୍ୟାଗ) ମୁଖ୍ୟ ଉଦ୍ଦେଶ୍ୟ ନଥାଏ ସେମାନଙ୍କର । ବରଂ ନିଜର ଭୋଗ ଇଛା ଥାଏ । ଦ୍ୱାରକାର ଏ କୃଷ୍ଣପତ୍ନୀ ମାନେ କିନ୍ତୁ ଓଲଟା ଆଗ୍ରହ ପ୍ରକାଶ କରିଥିଲେ ବିବାହ ବେଳେ । ଆମକୁ କୃଷ୍ଣ ସେବାର ସୁଯୋଗ ମିଳୁ । ବାସ ଏତିକି ବୁଝିଲେ ସବୁ ସଂଶୟ ତୁଟିଯିବ । ନିଜ ନିଜ ସ୍ୱାର୍ଥ ହାସଲ ବଦଳରେ ସେମାନେ କୃଷ୍ଣ ସେବାରେ ନିଜକୁ ହଜାଇ ଦେଇଥିଲେ । କଳି ଝଗଡ଼ା ହେବ କାହିଁକି ?

ପ୍ରଶ୍ନ-୨: ପ୍ରଥମେ ନାରଦଜୀ ରୁକ୍ମିଣୀଙ୍କ ମହଲରେ ପହଞ୍ଚିଲେ । ଶ୍ରୀକୃଷ୍ଣ

ଆସନରୁ ଉଠି ଦେବର୍ଷିଙ୍କୁ ପ୍ରଣାମ କଲେ। ନାରଦଙ୍କ ପଦ ପ୍ରକ୍ଷ୍ୟାଳନ କଲେ। ପଦଧୌତ ଜଳକୁ ନିଜ ମସ୍ତକରେ ଧାରଣ କଲେ। ଅତିଥି ସତ୍କାର କରିସାରି କୁଶଳ ମଙ୍ଗଳ ପଚାରିଲେ। ନାରଦ ସେଠାରୁ ବିଦାୟ ନେଇ ପହଞ୍ଚିଲେ ସତ୍ୟଭାମାଙ୍କ ମହଲରେ। ଦେଖିଲେ ସେଠାରେ ଶ୍ରୀକୃଷ୍ଣ ହୋମ କର୍ମରେ ବ୍ୟସ୍ତ!! ନମସ୍କାର କରି ପହଞ୍ଚିଲେ ଜାମ୍ବବତୀଙ୍କ ମହଲରେ। ସେ ମହଲରେ ଠାକୁରଜୀ ପିଲାମାନଙ୍କ ସଙ୍ଗେ ଖେଳ କୁଦରେ ମାତିଛନ୍ତି। କାଳିନ୍ଦୀଙ୍କ ମହଲରେ ଦେଖନ୍ତି ଶ୍ରୀକୃଷ୍ଣ ଅନ୍ନଦାନ, ଭୂଦାନ, ଗୋଦାନ ଆଦି କରୁଛନ୍ତି ବ୍ରାହ୍ମଣମାନଙ୍କୁ। ଚାଲିଲେ ନାଗ୍ନଜିତଙ୍କ ମହଲକୁ। ଭଗବାନ ସେଠାରେ ପଶାପାଲି ଧରି ଖେଳରେ ମଗ୍ନ। ଏହି ଭଳି ଅନେକ ଗୃହରେ ଦେଖିଲେ ଭଗବାନ ବିଚିତ୍ର ଲୀଳା ଖେଳାରେ ବ୍ୟସ୍ତ। ସବୁଠୁ ମଜା କଥା ହେଲା ରାଣୀମାନଙ୍କ ଯେ ସେବାରେ ନିଯୁକ୍ତ ହୋଇଛନ୍ତି ହଜାର ହଜାର ଦାସଦାସୀ। ମାତ୍ର ରାଣୀମାନେ କୃଷ୍ଣ ସେବା ନିଜ ହାତରେ କରୁଛନ୍ତି! ଏବେ ଦେବର୍ଷିଙ୍କ ଅକଲ ଗୁଡୁମ୍। ନିଜ ବୁଦ୍ଧି ଠିକ୍ କରିବାକୁ ନାରଦଜୀ ଏବେ କଲେ କଅଣ?

**ତତୋଽନ୍ୟତ୍ ଆବିଶତ୍ ଗେହଂ    କୃଷ୍ଣ ପତ୍ନ୍ୟାଃ ସ ନାରଦଃ।**
**ଯୋଗେଶ୍ୱର-ଈଶ୍ୱରସ୍ୟ-ଅଙ୍ଗ    ଯୋଗମାୟା ବିବିତ୍ସୟା ॥୧୯॥**

ଉ. ଶୁକଦେବଜୀ କହିଲେ, ''ହେ ପରୀକ୍ଷିତ (ଅଙ୍ଗ), ଯୋଗମାୟାଙ୍କ କାରସାଦୀ ବୁଝିବାକୁ (ବିବିତ୍ସୟା) ନାରଦଜୀ ସିନା ଯାଇଥିଲେ ହେଲେ ଫେରିଲେ କୃଷ୍ଣ ପ୍ରେମରେ ଗୋଟାସାରା ଜୁଡୁବୁଡୁ ହୋଇ। ଭଗବାନ ସିନା ସିଏ ଯେ ଭକ୍ତକୁ ଆନନ୍ଦ ଦେବାକୁ ବ୍ରତ କରିଥାନ୍ତି ଓ ଜନ୍ମ ହୋଇଥାନ୍ତି। ବିଦାୟ ବେଳାରେ ଭଗବାନ ଦେବର୍ଷିଙ୍କୁ କାନେ କାନେ କହି ଛାଡ଼ିଲେ ଯେ ଏ ସବୁ ରହସ୍ୟ କେବଳ ତୁମଭଳି କୃଷ୍ଣ ଭକ୍ତମାନଙ୍କର ବୁଦ୍ଧି ଗମ୍ୟ। ଜ୍ଞାନୀ, ମହାଜ୍ଞାନୀ କାହୁଁ ବୁଝିବେ ଏ ଭାବ ରାଜ୍ୟର ହାଲଚାଲ। ବୀଣା ବଜାଇ ନାରଦ ରାଧେ ରାଧେ ସ୍ୱର ଉଚ୍ଚାରଣ କଲେ। ଭକ୍ତ ଭଗବାନ ଏବେ ଉଭୟେ ଖୁସି।

# ଅଥ ୭୦ମ ଅଧ୍ୟାୟଃ

## (ଭଗବାନଙ୍କର ଆଦର୍ଶ ଗୃହସ୍ଥାଶ୍ରମ ଓ ତାଙ୍କର ଦିନଚର୍ଯ୍ୟା)

ପ୍ରଶ୍ନ-୩: ଦ୍ୱାରକା ଲୀଳା ଯୋଗମାୟାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚାଲୁଥାଏ । ଭଗବାନଙ୍କୁ ପାଇ ରାଣୀମାନେ ଦିନ କ'ଣ ରାତି କ'ଣ ଜାଣୁନଥାନ୍ତି । ସେ ଲୀଳାରେ ଶ୍ରୀକୃଷ୍ଣ ଜଣେ ଆଦର୍ଶ ଗୃହସ୍ଥ । ତାଙ୍କୁ ପୁଣି ଯଜ୍ଞ, ଦାନ, ତପସ୍ୟା, ସୁଧର୍ମା ସଭା ପରିଚାଳନା ଇତ୍ୟାଦି କରିବାକୁ ହେଉଥିଲା । ଗୃହସ୍ଥର ଦିନ ଆରମ୍ଭର ପ୍ରଥମ ବୈଦିକ କର୍ତ୍ତବ୍ୟ ବ୍ରାହ୍ମ ମୁହୂର୍ତ୍ତରୁ ଶଯ୍ୟା ତ୍ୟାଗ କରିବା । କୌଣସି ରାଣୀ (ମାଧବ୍ୟା) ଚାହୁଁ ନଥାନ୍ତି ଭଗବାନ ଜଲଦି ଉଠିପଡ଼ି ସ୍ନାନ କରନ୍ତୁ । ପ୍ରତ୍ୟୁଷ ସମୟ ଜାଣିବା କୁକୁଡ଼ା ରାବ ଶୁଣି ଶଯ୍ୟା ତ୍ୟାଗ କରିବା ଲାଗି ଯୋଗମାୟା କାହିଁକି ବ୍ୟବସ୍ଥା କରିଥିଲେ ?

**ଶ୍ରୀ ଶୁକ ଉବାଚ**

**ଅଥ-ଉଷସି-ଉପବୃତ୍ତାୟାଂ କୁକ୍କୁଟାନ୍ କୂଜତୋଽଶପନ୍ ।**
**ଗୃହୀତ କଣ୍ଠ୍ୟଃ ପତିଭିଃ ମାଧବ୍ୟୋ ବିରହ-ଆତୁରାଃ ॥୧॥**

ଉ. ବ୍ରାହ୍ମମୁହୂର୍ତ୍ତରେ (ଉଷସି-ଉପବୃତ୍ତାୟାଂ) ରାବ କରିବା କୁକୁଡ଼ାମାନଙ୍କର ସ୍ୱଭାବ । ଠାକୁରଜୀ ଶଯ୍ୟା ତ୍ୟାଗ କରନ୍ତେ ତାଙ୍କ ପତ୍ନୀମାନେ ବିରହ ଭୟରେ ବ୍ୟାକୁଳ ହୁଅନ୍ତି । ନିଜ ନିଜ ପତି (ସମସ୍ତଙ୍କ ପାଖରେ ସେଇ ଏକ କୃଷ୍ଣ ବହୁ ହୋଇ ଥାଆନ୍ତି ବୋଲି ପତିଭିଃ) ମାନଙ୍କ ଗଳାରେ ଓହଳି ପଡୁଥିଲେ ମିଳନର ବାଧକ ହେତୁ । ବିରକ୍ତ ହୋଇ ଅଭିଶାପ ଦେଉଥିଲେ (ଅଶପତ୍) କୁକୁଡ଼ାମାନଙ୍କୁ ।

ପ୍ରଶ୍ନ-୪: ଭଗବାନ ପ୍ରତ୍ୟହ ସ୍ନାନ କରନ୍ତି । ଶୌଚ ହୁଅନ୍ତି । ପବିତ୍ର ବସ୍ତ୍ର ପିନ୍ଧନ୍ତି । ଗାୟତ୍ରୀ ଜପନ୍ତି । ଋଷି, ବୃଦ୍ଧ, ପିତୃଗଣ ଓ ବ୍ରାହ୍ମଣଙ୍କୁ ପୂଜନ କରନ୍ତି । ଫୁଲମାଳ, ଚନ୍ଦନ ସହିତ ଭୂଦାନ, ଗୋଦାନ ଇତ୍ୟାଦି କର୍ମ କରନ୍ତି । ସୁଧର୍ମା ସଭାରେ ବିଜୟ କରନ୍ତି । ରାଜସଭା ଧର୍ମ ସଭା ହୋଇଯାଏ । ନ୍ୟାୟ ବିଚାର ସହିତ ପ୍ରଜାମାନଙ୍କ ସୁଖ ଦୁଃଖ ବିଚାର, ହାସ୍ୟରସ, ନୃତ୍ୟ, ଗୀତ, ବାଦ୍ୟ ଇତ୍ୟାଦି ଦ୍ୱାରା ରାଜା ପ୍ରଜା ସମସ୍ତଙ୍କର ମନୋରଞ୍ଜନ ବ୍ୟବସ୍ଥା ମଧ୍ୟ ହୁଏ । ଶ୍ରୀକୃଷ୍ଣଙ୍କ ସେବା ଅଭିଳାଷୀ ସକଳ ଦେବୀ ଦେବତା କିନ୍ତୁ ସ୍ୱୟଂ ଭଗବାନ ବ୍ରାହ୍ମଣ ସେବକ । ସେ ରାଜସଭାରେ ବ୍ରାହ୍ମଣମାନଙ୍କୁ କିଛି ସ୍ୱତନ୍ତ୍ର ଦାୟିତ୍ୱ ଦେଇଥିଲେ କି ?

**ତତ୍ର-ଆହୁଃ ବ୍ରାହ୍ମଣାଃ କେଚିତ୍ ଆସୀନା ବ୍ରହ୍ମବାଦିନଃ ।**
**ପୂର୍ବେଷାଂ ପୁଣ୍ୟ ଯଶସାଂ ରାଜ୍ଞାଂ ତ-ଅକଥତ୍ କଥାଃ ॥୨୧॥**

ଉ. ବଢ଼ିଆ କାମଟିଏ ମିଳିଥିଲା ସେମାନଙ୍କୁ । ସେମାନେ ଆଗ ଧାଡ଼ିରେ ବସି ଯାଆନ୍ତି । ଦ୍ୱାରକାବାସୀଙ୍କୁ ପୂର୍ବ ପୂର୍ବର ଆଦର୍ଶ ସୂର୍ଯ୍ୟବଂଶୀ, ଚନ୍ଦ୍ରବଂଶୀ, ଯଦୁବଂଶୀ ରାଜାମାନଙ୍କର ଓ ନିଷ୍କାମ ଭକ୍ତମାନଙ୍କର ଯଶ, କୀର୍ତ୍ତିଗାନ କରି ଶୁଣାନ୍ତି । ଭକ୍ତ ଭଗବାନ ନିଜର ଓ ନିଜ ବଂଶ ଗୌରବ ଗାଥା ଶ୍ରବଣରେ ଅତ୍ୟନ୍ତ ଖୁସି ହେଉଥାନ୍ତି ।

ପ୍ରଶ୍ନ-୫: ଦିନକର ଘଟଣା । ଜରାସନ୍ଧଙ୍କର ପ୍ରଜାପୀଡ଼ନ ସମାଚାର ପହଞ୍ଚିଲା ଯାଦବ ସଭାରେ । ସେତେବେଳେ ଜରାସନ୍ଧ ଜଣେ ମହାରାଜା ଥାଆନ୍ତି । ତାଙ୍କର ଅଧୀନସ୍ଥ ରାଜାମାନେ ତାଙ୍କ କଥାରେ(ନ୍ୟାୟ-ଅନ୍ୟାୟ ଯାହା ବି ହେଉ) ରାଜି ନହେଲେ ଜରାସନ୍ଧ ସେମାନଙ୍କୁ ବନ୍ଦୀ କରି ରଖୁଥିଲେ । କାଳକ୍ରମେ ବନ୍ଦୀ ରାଜାଙ୍କ ସଂଖ୍ୟା ବଢ଼ି ଚାଲିଲା । ହେଲା କୋଡ଼ିଏ ହଜାର ଆଠଶହ । ସେମାନେ ସମସ୍ତେ ଜରାସନ୍ଧଙ୍କ ରାଜ୍ୟର ରାଜଧାନୀ ଗିରିବ୍ରଜ ପୁରରେ(ଆଜିର ବିହାର ପ୍ରଦେଶର ରାଜଗିରି) ଥାଆନ୍ତି । ସେତେବେଳେ ଭଗବାନଙ୍କର କୃଷ୍ଣ ଅବତାର ସମୟ । ସେମାନେ ଏକ ରାଜଦୂତ ହସ୍ତରେ କୃଷ୍ଣଙ୍କ ପାଖକୁ କି ସମ୍ବାଦ ପଠାଇଲେ ?

**ରାଜାନଃ ଉଚୁଃ**

**କୃଷ୍ଣ କୃଷ୍ଣ-ଅପ୍ରମେୟ-ଆତ୍ମନ୍ ପ୍ରପନ୍ନ ଭୟଭଞ୍ଜନ ।**
**ବୟଂ ତ୍ୱାଂ ଶରଣଂ ଯାମୋ ଭବ ଭୀତାଃ ପୃଥକ୍‌ଧିୟଃ ॥୨୫॥**

ଉ. ସମ୍ବାଦରେ କହିଲେ, ''ହେ ଶରଣ ବତ୍ସଳ କୃଷ୍ଣ, ଅସୀମ ପ୍ରେମର ଆଧାର ପରମାତ୍ମା, ଆପଣ ଶରଣାଗତ (ପ୍ରପନ୍ନ) ଲୋକର ସଂସାର ଭୟ ନାଶ କରିଥାନ୍ତି । ଆମକୁ ରାଜା ଜରାସନ୍ଧ ଶତ୍ରୁ ମନେକରି ବନ୍ଦୀ କରିଛି । ପୀଡ଼ା ଦେଉଛି । ଆମେ ବେଦ ଅନୁଶାସିତ ରାଜାମାନେ ସମସ୍ତେ ଆପଣଙ୍କ ଶରଣାଗତ । ଆମକୁ ଉଦ୍ଧାର କରନ୍ତୁ ।''

ପ୍ରଶ୍ନ-୬: ରାଜଦୂତଙ୍କ କଥା ଶୁଣୁ ଶୁଣୁ ଦେବର୍ଷି ନାରଦ ଅକସ୍ମାତ୍ ଦ୍ୱାରକାର ଦେବସଭାରେ ପ୍ରକଟ ହୋଇଗଲେ । ମନ୍ତ୍ରୀ ଅକ୍ରୂର ଇତ୍ୟାଦିଙ୍କ ସହ ଭଗବାନ ପ୍ରଣାମ କଲେ ତାଙ୍କୁ । ସ୍ୱାଗତ କରି ଭକ୍ତ ନାରଦଜୀଙ୍କୁ କିଭଳି ସୃଷ୍ଟିର କୁଶଳ ମଙ୍ଗଳ ପଚାରିଲେ ଭଗବାନ ଶ୍ରୀକୃଷ୍ଣ ?

ଶ୍ରୀ ଭଗବାନ ଉବାଚ

**ନ ହି ତେ-ଅବିଦିତଂ କିଂଚିତ୍ ଲୋକେଷୁ-ଈଶ୍ୱର କର୍ତ୍ତୃଷୁ ।**
**ଅଥ ପୃଚ୍ଛାମହେ ଯୁଷ୍ମାନ୍ ପାଣ୍ଡବାନାଂ ଚିକୀର୍ଷିତମ୍ ॥୩୬॥**

ଉ. କହିଲେ, ''ନାରଦଜୀ ଈଶ୍ୱର ସୃଷ୍ଟିରେ ଏପରି କୌଣସି ଘଟଣା ନାହିଁ ଯାହା ତୁମକୁ ଅଜଣା । ଏବେ ଆମେ ପଚାରୁଛୁ ପରମ ଈଶ୍ୱର ଭକ୍ତ ପଞ୍ଚପାଣ୍ଡବଙ୍କ କଥା । ରାଜା ଯୁଧିଷ୍ଠିର କ'ଣ କରିବାକୁ ଇଚ୍ଛା କରୁଛନ୍ତି (ଚିକୀର୍ଷିତମ୍) ସେଇ ସମ୍ବାଦ ।''

ପ୍ରଶ୍ନ-୭: ଭଗବାନ ଇଚ୍ଛାମୟ, ଲୀଳାମୟ ଓ ସର୍ବଜ୍ଞ ମଧ୍ୟ । ଏକଥା ଜାଣି ଶୁଣି ମଧ୍ୟ ନାରଦଜୀ ଜଣାଇଲେ ଯୁଧିଷ୍ଠିର (ପାଣ୍ଡବଃ) ଯଜ୍ଞ ମାନଙ୍କ ମଧ୍ୟରେ ଶ୍ରେଷ୍ଠ (ମଖ-ଇନ୍ଦ୍ର) ରାଜସୂୟ ଯଜ୍ଞ କରିବା ଅଭିଳାଷୀ । ରାଜସୂୟ ଯଜ୍ଞ ଲାଗି ଠାକୁରଜୀଙ୍କ ଅନୁମତି(ଅନୁମୋଦତାଂ) ମିଳିଲେ ତାଙ୍କର କେଉଁ ଇଚ୍ଛା ପୂର୍ଣ୍ଣ ହେବ ?

ନାରଦ ଉବାଚ

**ଯକ୍ଷ୍ୟତି ତ୍ୱାଂ ମଖ-ଇନ୍ଦ୍ରେଣ ରାଜସୂୟେନ ପାଣ୍ଡବଃ ।**
**ପାରମେଷ୍ଠ୍ୟ କାମୋ ନୃପତିଃ ତତ୍ ଭବାନ୍ ଅନୁମୋଦତାମ୍ ॥୪୧॥**

ଉ. ଶ୍ରୀକୃଷ୍ଣ ଯେ କେବଳ ତ୍ରି-ଜଗତର ବନ୍ଦନୀୟ ଏହା ସାରା ରାଜ୍ୟବାସୀ ଜାଣିବେ । ସେ ଭାରତ ବର୍ଷର ସକଳ ରାଜା ମହାରାଜାମାନଙ୍କର ଯେ ଶ୍ରେଷ୍ଠତମ ଚକ୍ରବର୍ତ୍ତୀ ସମ୍ରାଟ୍ (ପାରମେଷ୍ଠ୍ୟ) ଏକଥା ଭଗବାନ ଘୋଷଣା କରିପାରିବେ ଜଗତରେ । ଯୁଧିଷ୍ଠିର କେବଳ ସର୍ବୋଚ୍ଚ ସମ୍ରାଟ୍ ନୁହନ୍ତି ଭଗବାନଙ୍କର ପ୍ରିୟ ଭକ୍ତ ମଧ୍ୟ ।

ପ୍ରଶ୍ନ-୮: ଯାଦବ ରାଜ ସଭାରେ ଏହି ପ୍ରସ୍ତାବକୁ ସମସ୍ତେ ଅସମ୍ଭବ ବୋଲି କହି ହସି ପକାଇଲେ । କାରଣ ମହାବୀର କୃଷ୍ଣ ଅଭକ୍ତ ଜରାସନ୍ଧ କେବେ ବି ନିଜକୁ ଯୁଧିଷ୍ଠିରଙ୍କର ଅଧୀନସ୍ଥ ରାଜା ବୋଲି ସ୍ୱୀକାର କରିବ ନାହିଁ । ଭଗବାନ ସ୍ୱୟଂ କର୍ତ୍ତୁଂ ସମର୍ଥ, ଅକର୍ତ୍ତୁଂ ସମର୍ଥ ପୁଣି ଅନ୍ୟଥା କର୍ତ୍ତୁଂ ସମର୍ଥ । ଏଭଳି ଏକ ବିଷମ ପରିସ୍ଥିତିରେ ମନ୍ତ୍ରୀ ପ୍ରବର ଅକ୍ରୂରଙ୍କଠାରୁ ସେ କିଛି ପରାମର୍ଶ ଆଶାକଲେ କି ?

ଶ୍ରୀ ଭଗବାନ ଉବାଚ

**ତ୍ୱଂ ହି ନଃ ପରମଂ ଚକ୍ଷୁଃ ସୁହୃତ୍ ମନ୍ତ୍ର-ଅର୍ଥ ତତ୍ତ୍ୱବିତ୍ ।**
**ଅଥ-ଅତ୍ର ବ୍ରୂହି ଅନୁଷ୍ଠେୟଂ ଶ୍ରଦ୍ଦଧ୍ମଃ କରବାମ ତତ୍ ॥୪୬॥**

ଉ. ଭଗବାନ ମହାମନ୍ତ୍ରୀ ଉଦ୍ଧବଙ୍କୁ ନିଜର ସୁହୃଦ୍, ମନ୍ତ୍ରଣାଦାତା, ବେଦଜ୍ଞ (ପରମଂ ଚକ୍ଷୁଃ) ଭାବରେ ମାନୁଥିଲେ । ସୁତରାଂ ଏ ଘଡ଼ି ସନ୍ଧି ବେଳରେ କ'ଣ କରଣୀୟ (ଅନୁଷ୍ଠେୟଂ) ବୋଲି ଶ୍ରଦ୍ଧାର ସହିତ ପରାମର୍ଶଲୋଡ଼ି ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

# ଅଥ ୭୧ମ ଅଧ୍ୟାୟଃ

## (ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ପାଇଁ ଭଗବାନଙ୍କ ଇନ୍ଦ୍ରପ୍ରସ୍ଥ ଯାତ୍ରା)

ପ୍ରଶ୍ନ-୯ : ଉଦ୍ଧବଜୀ ଯାଦବ ସଭାରେ ସୁନ୍ଦର ଏବଂ କଲ୍ୟାଣକାରୀ ପ୍ରସ୍ତାବ ରଖିଲେ । ଜରାସନ୍ଧକୁ ମାରି କୋଡ଼ିଏ ହଜାର ଆଠଶହ ରାଜାଙ୍କୁ ପ୍ରଥମେ ମୁକ୍ତ କରାଯାଉ । ପୁଣି ନିଷ୍କଣ୍ଟକ ଭାବରେ ଭକ୍ତ ଯୁଧିଷ୍ଠିର ରାଜସୂୟ ଯଜ୍ଞ କରନ୍ତୁ । ଠାକୁରଜୀଙ୍କ ଅଗ୍ରପୂଜା କରି ନିଜେ ଆନନ୍ଦ ପ୍ରାପ୍ତ ହୁଅନ୍ତୁ ଓ ଲୀଳାମୟଙ୍କ ଲୀଳା ଆଗକୁ ବଢୁ । ପ୍ରଶ୍ନ ଉଠିଲା ଏ ପ୍ରସ୍ତାବରେ ଯଦୁବଂଶୀମାନେ କାହିଁକି ସହଯୋଗ କରିବେ ?

ଉଦ୍ଧବ ଉବାଚ

**ଅସ୍ମାକଂ ଚ ମହାନ୍ ଅର୍ଥୋ ହି-ଏତେନ-ଏବ ଭବିଷ୍ୟତି ।**
**ଯଶଃ ଚ ତବ ଗୋବିନ୍ଦ ରାଜ୍ଞୋ ବଦ୍ଧାନ୍ ବିମୁଞ୍ଚତଃ ॥୪॥**

ଉ. ଯଦୁବଂଶୀମାନେ (ଅସ୍ମାକଂ) ଜରାସନ୍ଧ ଭୟରେ ଏବେ ବି ଦ୍ୱାରକାରେ ଲୁଚିବା ଅପମାନ ଜର୍ଜରିତ । ଠାକୁରଜୀଙ୍କ ନାମ ରଣଛୋଡ଼ଜୀ ହୋଇଛି । କୌଶଳରେ ଭୀମଙ୍କ ଦ୍ୱାରା ଗଦାଯୁଦ୍ଧ ବିଶାରଦ ଜରାସନ୍ଧଙ୍କୁ ମରାଯାଉ । ବନ୍ଦୀ ଥିବା ରାଜାମାନେ ସ୍ୱତଃ ମୁକ୍ତ ହୋଇଯିବେ । ଠାକୁରଜୀଙ୍କୁ (ଗୋବିନ୍ଦ) ଅମାପ ଯଶ ମଧ୍ୟ ପ୍ରାପ୍ତି ହେବ । ମୁକ୍ତ ହୋଇଥିବା ରାଜାମାନଙ୍କ ଭେଟିସବୁ ରାଜସୂୟ ଯଜ୍ଞ କାମରେ ଲାଗିବ ।

ପ୍ରଶ୍ନ-୧୦: ମହାମନ୍ତ୍ରୀ ଉଦ୍ଧବଜୀଙ୍କ ପ୍ରସ୍ତାବକୁ ଅବିଳମ୍ବେ ଅନୁମୋଦନ କଲେ ଶ୍ରୀକୃଷ୍ଣ । ଉଗ୍ରସେନ, ବଳରାମ, ପିତାମାତାଙ୍କ ଅନୁମତି ନେଇ ବଛା ବଛା ଯୁଦ୍ଧ ବୀରଙ୍କୁ ସାଙ୍ଗରେ ଧରି ବାହାରିଲେ । ଯୁଦ୍ଧ ବାଜା ବାଜିଲା । ଭଗବାନ ଚତୁରଙ୍ଗିଣୀ ସେନା ଧରି ପହଞ୍ଚିଗଲେ ଇନ୍ଦ୍ରପ୍ରସ୍ଥ ନଗରୀ । ସାଙ୍ଗରେ ଥାଆନ୍ତି ଅଷ୍ଟପାଟ ମହିଷୀ । ଦେବର୍ଷି ନାରଦ ମଧ୍ୟ ପବନ ବେଶରେ ଚାଲିଗଲେ ଆକାଶ ମାର୍ଗରେ । ସୂଚନା ଦେଲେ ରାଜାଙ୍କୁ । ଇନ୍ଦ୍ରପ୍ରସ୍ଥରେ ଅଜାତଶତ୍ରୁ ରାଜା ଯୁଧିଷ୍ଠିର କିଭଳି ସ୍ୱାଗତ କଲେ ଭଗବାନଙ୍କୁ ?

ଶ୍ରୀଶୁକ ଉବାଚ

**ତଂ ଉପାଗତ୍ୟଂ ଆକର୍ଣ୍ଣ୍ୟ ପ୍ରୀତୋ ଦୁର୍ଦର୍ଶନଂ ନୃଣାମ୍ ।**
**ଅଜାତଶତ୍ରୁଃ ନିରଗାତ୍ ସ-ଉପାଧ୍ୟାୟଃ ସୁହୃତ୍‌ବୃତ୍ତଃ ।।୨ ୩।।**

ଉ. ଅତୀବ ପ୍ରସନ୍ନ ହୋଇଗଲେ ରାଜା । ସାଧାରଣ ଲୋକଙ୍କ ପାଇଁ ଯାହାଙ୍କ ଦର୍ଶନ ଅତ୍ୟନ୍ତ ଦୁର୍ଲ୍ଲଭ ସେ ସ୍ୱୟଂ ଆସୁଛନ୍ତି ତାଙ୍କୁ ଦର୍ଶନ ଦେବାକୁ । ଏ ସମାଚାର ପାଇଁ ନିଜର ଆହୋ ଭାଗ୍ୟ ମନେ କଲେ । ସଖା, ସହୋଦର ପୂଜା ଉପକରଣ ଓ ପୁରୋହିତଙ୍କୁ ସଙ୍ଗରେ ନେଇ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଲେ ଦେବକୀନନ୍ଦନ କୃଷ୍ଣଙ୍କୁ । ବାରମ୍ବାର ଆଲିଙ୍ଗନ କଲେ ତାଙ୍କୁ ।

ପ୍ରଶ୍ନ-୧୧: ଶ୍ରୀକୃଷ୍ଣ ସଦଳବଳେ ନଗର ପ୍ରବେଶ କଲେ । କୃଷ୍ଣ ଦର୍ଶନ ଲାଳସାରେ ପ୍ରଜାମାନେ ରାଜପଥର ଦୁଇ ଧାଡ଼ିରେ ଦଣ୍ଡାୟମାନ ହେଲେ । ଅନ୍ତଃପୁର ନର ନାରୀମାନେ ନିଜ ନିଜ କୋଠାର ବାଲକୋନି ଉପରେ ଦର୍ଶନ କରିବା ଲାଭ ଉଠାଇଲେ । ରାଣୀମାନେ ମିଳିମିଶି କୃଷ୍ଣ ପତ୍ନୀମାନଙ୍କର ଅଫୁରନ୍ତ ସୌଭାଗ୍ୟର ପ୍ରଶଂସା କଲେ । ମହାରାଣୀ କୁନ୍ତୀଙ୍କ ପାଦ ତଳେ ଜୁହାର କଲେ ପ୍ରଭୁ । ସୁଭଦ୍ରା, ଦ୍ରୌପଦୀ ଆଦି ସମସ୍ତଙ୍କର ସଭକ୍ତିକ ପ୍ରଣାମ ସ୍ୱୀକାର କଲେ । ଆଶୀର୍ବାଦ କଲେ । ଧର୍ମରାଜ ଯୁଧିଷ୍ଠିର ଏତେ ସଂଖ୍ୟକ ଅତିଥି ଏକାବେଳକେ ପାଇ ହଡ଼ବଡ଼େଇ ଗଲେ କି ?

**ସୁଖଂ ନିବାସୟାମାସ ଧର୍ମରାଜୋ ଜନାର୍ଦ୍ଦନମ୍ ।**
**ସସୈନ୍ୟଂ ସ-ଅନୁଗ-ଅମାତ୍ୟଂ ସଭାର୍ଯ୍ୟଂ ଚ ନବଂ ନବମ୍ ।।୪ ୩।।**

ଉ. ବିଲ୍‌କୁଲ ନୁହେଁ । ଭଗବାନ (ଜନାର୍ଦ୍ଦନ)ଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରି ତାଙ୍କୁ ରଖାଇଦେଲେ । କୃଷ୍ଣ ପତ୍ନୀମାନଙ୍କର, ମନ୍ତ୍ରୀ, ସେବକ ଓ ସର୍ବୋପରି ସୈନ୍ୟମାନଙ୍କର ରହିବାର ସୁବନ୍ଦୋବସ୍ତ (ସୁଖଂ) କରିଦେଲେ । ପୁଣି ରହଣି କାଳରେ ପ୍ରତିଦିନ ସେମାନଙ୍କ ନୂଆ ନୂଆ ଆଡ଼ମ୍ବର ଢ଼ଙ୍ଗରେ ଆରତି ଉତାରିବାର ପ୍ରବନ୍ଧ ମଧ ରାଜା କଲେ ।

# ଅଥ ୭୨ମ ଅଧ୍ୟାୟଃ

## (ଜରାସନ୍ଧଙ୍କ ସହ ଭୀମସେନଙ୍କ ଗଦା ଯୁଦ୍ଧ)

ପ୍ରଶ୍ନ-୧୨: ଥରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଆଚାର୍ଯ୍ୟ ଓ କୁଳବୃଦ୍ଧଙ୍କୁ ନେଇ ରାଜସଭାରେ ଯୁଧିଷ୍ଠିର ବସିଥାନ୍ତି । ବସୁଦେବ ନନ୍ଦନଙ୍କୁ ପ୍ରସନ୍ନ କରିବା ପାଇଁ କି ପ୍ରସ୍ତାବ ବାଢ଼ିଲେ ରାଜା ନିଜ ରାଜ ସଭାରେ ସେତେବେଳେ ?

**ଯୁଧିଷ୍ଠିର ଉବାଚ**

**କ୍ରତୁରାଜେନ ଗୋବିନ୍ଦ ରାଜସୂୟେନ ପାବନୀଃ ।**
**ଯକ୍ଷ୍ୟେ ବିଭୂତିଃ ଭବତଃ ତତ୍ ସମ୍ପାଦୟ ନଃ ପ୍ରଭୋ ॥୩॥**

ଉ. କହିଲେ, ''ହେ ପ୍ରଭୋ, ଆପଣ ସ୍ୱୟଂ ଗୋବିନ୍ଦ । ଆପଣଙ୍କର ଐଶ୍ୱର୍ଯ୍ୟର (ବିଭୂତିଃ) ପରିପ୍ରକାଶ ଇନ୍ଦ୍ର, ଅଗ୍ନି, ବରୁଣ, କୁବେର, ଯମ, ବାୟୁଦେବତା ଇତ୍ୟାଦି । ଏମାନଙ୍କୁ ଯଜ୍ଞଦ୍ୱାରା ଇନ୍ଦ୍ରପ୍ରସ୍ଥର ପ୍ରଜାମାନେ ପ୍ରସନ୍ନ କରି ଧର୍ମ, ଅର୍ଥ, କାମ, ମୋକ୍ଷ ପ୍ରାପ୍ତି ଇଛା କରିଥାନ୍ତି । ମୁଁ କିନ୍ତୁ ଆପଣଙ୍କ ସହିତ ଏହି ଦେବତାମାନଙ୍କୁ ରାଜସୂୟ ଯଜ୍ଞରେ (କ୍ରତୁରାଜେନ) ପ୍ରସନ୍ନ କରିବାକୁ (ଯକ୍ଷେ) ସଂକଳ୍ପ କରିଛି । ଆପଣ କୃପା କରି ଏ ଶୁଭକାର୍ଯ୍ୟଟିକୁ ଆମ ଦ୍ୱାରା କରାନ୍ତୁ (ସମ୍ପାଦୟ) ।''

ପ୍ରଶ୍ନ-୧୩: ଯୁଧିଷ୍ଠିର ଏଭଳି ମହାଯଜ୍ଞ ପ୍ରସ୍ତାବ ଦ୍ୱାରା ଜଣାଇଦେଲେ ଯେ ପ୍ରଜାମାନେ ବୁଝିଯିବେ ଏଥର ଈଶ୍ୱର ଭକ୍ତି ଓ ପରମେଶ୍ୱର ଭକ୍ତିରେ ପାର୍ଥକ୍ୟ କ'ଣ । ଯୁଧିଷ୍ଠିରଙ୍କର ଏକ ସୁନ୍ଦର ନାମ ଅଜାତଶତ୍ରୁ । ବିନା ଯୁଦ୍ଧରେ ଶତ୍ରୁକୁ ଜିଣିବା ଉପାୟ ତାଙ୍କୁ ଏକା ଜଣା (ଶତ୍ରୁ କର୍ଶନ) । ଏହି ଉପାୟ ହିଁ ଶ୍ରେଷ୍ଠ କଲ୍ୟାଣକର ମାର୍ଗ ବୋଲି ଭଗବାନ କ'ଣ ସେହି ରାଜସଭାରେ ଘୋଷଣା କରିଦେଲେ ?

**ଶ୍ରୀ ଭଗବାନ ଉବାଚ**

**ସମ୍ୟକ୍ ବ୍ୟବସିତଂ ରାଜନ୍ ଭବତା ଶତ୍ରୁ କର୍ଶନ ।**
**କଲ୍ୟାଣୀ ଯେନ ତେ କୀର୍ତ୍ତିଃ ଲୋକାନ୍ ଅନୁଭବିଷ୍ୟତି ॥୭॥**

ଉ. ହଁ, ହଁ, ଠିକ୍ ଏହି କଥା ରାଜସଭାରେ ତୁରନ୍ତ ଜଣାଇ ଦେଲେ । ରାଜାଙ୍କୁ ପ୍ରଶଂସାରେ ଜୁଡୁବୁଡୁ କରିଦେଲେ । ଏହା ଅତ୍ୟନ୍ତ ପ୍ରଶଂସନୀୟ ସଂକଳ୍ପ (ସମ୍ୟକ୍ ବ୍ୟବସିତଂ) ବୋଲି କହିଲେ । ଏହି ଯଜ୍ଞ କଲେ କେବଳ ପୃଥିବୀ କଅଣ ସ୍ୱର୍ଗ ଓ ପାତାଳ ଲୋକରେ ମଧ୍ୟ ତାଙ୍କ ଯଶ ବ୍ୟାପିଯିବ ବୋଲି ଭବିଷ୍ୟବାଣୀ କରିଦେଲେ ।

ଭଗବାନ ଖୋଲି କହିଦେଲେ ଯେ ତାଙ୍କର ଭକ୍ତକୁ ଶକ୍ତିଶାଳୀ ରାକ୍ଷସ କଅଣ ଦେବତାମାନେ ମଧ୍ୟ ଜିଣିପାରନ୍ତି ନାହିଁ । ରାଜସୂୟ ଯଜ୍ଞର ଏକ ଆବଶ୍ୟକୀୟ ସର୍ତ୍ତ ରହେ ସେ ସମୟର ସମସ୍ତ ରାଜା ଓ ମହାରାଜା ତାଙ୍କ ଅଧୀନସ୍ଥ ବୋଲି ସ୍ୱୀକାର କରିନେବା । ଯେଉଁମାନେ ନ ମାନିବେ ସେମାନଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କ ସ୍ଥାନରେ ଅଧୀନସ୍ଥ ରାଜାଙ୍କୁ ନିଯୁକ୍ତ କରିବାକୁ ହେବ । ଠାକୁରଜୀଙ୍କ ପ୍ରସ୍ତାବରେ ଅନ୍ୟ ପାଣ୍ଡବ ଚାରିଭାଇ ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦିଗକୁ ଯାଇ ସମସ୍ତଙ୍କୁ ଅଧୀନସ୍ଥ ବୋଲି ଘୋଷଣା କଲେ । କେବଳ ମଗଧ ରାଜା ଜରାସନ୍ଧ ଏକଥା ମାନିବାକୁ ନାରାଜ ହେଲେ ।

ପ୍ରଶ୍ନ-୧୪: ବୃହଦ୍ରଥଙ୍କ ପୁତ୍ର ଜରାସନ୍ଧକୁ ଯୁଦ୍ଧରେ ଜିଣିବାକୁ କି ଉପାୟ କଲେ ଭଗବାନ ?

ଶ୍ରୀଶୁକ ଉବାଚ

**ଭୀମସେନୋଽର୍ଜ୍ଜୁନଃ କୃଷ୍ଣୋ ବ୍ରହ୍ମ ଲିଙ୍ଗଧରାଃ ତ୍ରୟଃ ।**
**ଜଗ୍ମୁଃ ଗିରିବ୍ରଜଂ ତାତ ବୃହଦ୍ରଥ ସୁତୋ ଯତଃ ॥୧୬॥**

ଉ. ସ୍ୱୟଂ ଠାକୁରଜୀ, ଭୀମସେନ ଓ ଅର୍ଜ୍ଜୁନ ତିନି ଜଣ ଯାକ ଚିତା ଚଇତନ କାଟି ଏବଂ ପଇତା ପକାଇ ବ୍ରାହ୍ମଣ ବେଶ (ବ୍ରହ୍ମଲିଙ୍ଗଧରାଃ) ଧରିଲେ । ପହଞ୍ଚିଗଲେ ମଗଧର ରାଜଧାନୀ ଗିରିବ୍ରଜପୁର । ଭେଟିବାକୁ ଚାହିଁଲେ ରାଜା ଜରାସନ୍ଧଙ୍କୁ ।

ପ୍ରଶ୍ନ-୧୫: ଜରାସନ୍ଧ ନିଜକୁ ଏକ ମହାଦାନୀ ବୋଲି ଘୋଷଣା କରିଥାନ୍ତି । ସ୍ନାନ ପରେ ବୈଦିକ ବ୍ରାହ୍ମଣମାନେ ତାଙ୍କୁ ଯେ ଯାହା ମାଗିବ ଦେଇଦିଅନ୍ତି ବିନା ଦ୍ୱିଧାରେ । ଏ ତିନିଜଣ ଯାକ ଠିକ ସେଇ ସମୟରେ ପହଞ୍ଚି ଯୁଦ୍ଧଦାନ ମାଗିବା ସୁଯୋଗ ଅପେକ୍ଷାରେ ରହିଲେ । ରାଜାଙ୍କୁ ବ୍ରାହ୍ମଣ ପରିଚୟ ଦେଇ କି ଶବ୍ଦରେ ତାଙ୍କର ପ୍ରଶଂସା କଲେ ଓ କ'ଣ ଦାନ ମାଗିଲେ ?

**ହରିଶ୍ଚନ୍ଦ୍ରୋ ରନ୍ତିଦେବ ଉଞ୍ଛବୃତ୍ତିଃ ଶିବିଃ ବଳିଃ ।**
**ବ୍ୟାଧଃ କପୋତୋ ବହବୋ ହି-ଅଧ୍ରୁବେଣ ଧ୍ରୁବଂ ଗତାଃ ॥୨୧॥**

ଉ. ଶ୍ରୀକୃଷ୍ଣ କହିଲେ, ''ହେ ରାଜନ ଜୀବର ଦେହ ନାଶବାନ(ଅଧ୍ରୁବ) । ଈଶ୍ୱର କିନ୍ତୁ ଅବିନାଶୀ । ପୂର୍ବ କାଳରେ ରାଜା ହରିଶ୍ଚନ୍ଦ୍ର ରାଜ୍ୟ ଦେଇ, ରନ୍ତିଦେବ ଅନ୍ନ ଦେଇ, ତପସ୍ୱୀ ମୁଦ୍‌ଗଳ ଉଞ୍ଛବୃତ୍ତି ଅବଲମ୍ବନ କରି, ରାଜା ଶିବି ନିଜ ଅଙ୍ଗରୁ ମାଂସ ଦାନ କରି, ବଳି ସର୍ବସ୍ୱଦାନ କରି, ବ୍ୟାଧ ତପସ୍ୟା କରି ଓ କପୋତ ଚଢ଼େଇଟିଏ ନିଜର ଶରୀର ଦାନ କରି ନିଜ ଜୀବନକୁ କୃତାର୍ଥ କରିଛନ୍ତି । ପୁରାଣ ଇତିହାସ ସେମାନଙ୍କ ନାମ ଏବେ ମଧ ଘୋଷଣା କରୁଛନ୍ତି ।''

ଧୈର୍ଯ୍ୟର ସହିତ ସବୁ ଶ୍ରବଣ କଲେ ଜରାସନ୍ଧ । ଅଜସ୍ର ପ୍ରଶଂସାରେ ତରଳି ଯାଇ ନିଜ ମନୋଭାବ ଜଣାଇଲେ ଏତିକି କହି ଯେ ମୁଁ ମୋର ମୁଣ୍ଡ ମାଗିଲେ ମଧ ଦେଇ ଦେବି । ଭଗବାନ କହିଲେ ଯେ ସେ ଭିକ ମାଗୁଥିବା ବ୍ରାହ୍ମଣ ଭିକାରୀ ନୁହନ୍ତି । ବଡ଼ ଜଣକ ମଧମ ପାଣ୍ଡବ ଭୀମସେନ, ସାନ ଜଣକ ମହାବୀର ଅର୍ଜୁନ ଓ ସେ ନିଜେ ଯାଦବ ପତି କୃଷ୍ଣ । ରାଜାଙ୍କ ଠାରୁ ସେମାନେ କେବଳ ଦ୍ୱନ୍ଦ୍ୱ ଯୁଦ୍ଧ ଭିକ୍ଷା କରୁଛନ୍ତି । ଯୁଦ୍ଧ କରିବାକୁ ସେ ତିନି ଜଣକ ମଧରୁ କାହାକୁ ହେଲେ ଜଣକୁ ବାଛି ପାରନ୍ତି ।

ପ୍ରଶ୍ନ-୧୬: ବାସୁଦେବ କୃଷ୍ଣଙ୍କ ପ୍ରସ୍ତାବରେ ଜରାସନ୍ଧ ହସିଲେ କାହିଁକି ?

ଶ୍ରୀ ଭଗବାନ ଉବାଚ

**ନ ତ୍ୱୟା ଭୀରୁଣା ଯୋତ୍ସ୍ୟେ ଯୁଦ୍ଧି ବିକ୍ଳବ ତେଜସା ।**
**ମଥୁରାଂ ସ୍ୱପୁରୀଂ ତ୍ୟକ୍ତ୍ୱା ସମୁଦ୍ରଂ ଶରଣଂ ଗତଃ ॥୩୧॥**

ଉ. ରାଜା କହିଲେ, ''ବୀର ଯୁଦ୍ଧକରେ ଜଣେ ସମାସ୍କନ୍ଧ ଯୋଦ୍ଧା ସହିତ । କୃଷ୍ଣଙ୍କ ସହିତ ସତର ଥର ଯୁଦ୍ଧ କରି ସେ ପରାସ୍ତ ସିନା ହୋଇଥିଲେ । ଅଠରତମ ଯୁଦ୍ଧ ବେଳକୁ ଶ୍ରୀକୃଷ୍ଣ କାପୁରୁଷ (ଭୀରୁଣା) ଭଳି ଭୟରେ ରଣକ୍ଷେତ୍ର ଛାଡ଼ି ପଳାୟନ କରିଛନ୍ତି । ଦ୍ୱାରକାରେ ଦୁର୍ଗ ଭିତରେ ଲୁଚି ରହିବା କେଉଁ ଯୋଦ୍ଧାର ଲକ୍ଷଣ କି ।'' ଅର୍ଜୁନ ଦେଖିବାକୁ ଦୁବ୍‌ଲା ପତ୍‌ଲା । ତାଙ୍କ ସଙ୍ଗେ ଯୁଦ୍ଧ କଲେ ବୀରଜାତିକୁ ଅପମାନ ହେବ । ତେଣୁ ସେ ଭୀମସେନଙ୍କ ସହ ଲଢ଼ିବାକୁ ସମ୍ମତ ହେଲେ । ତାଙ୍କୁ ଗୋଟିଏ ଗଦା ଧରାଇ ଦେଲେ । ନିଜେ ଆଉ ଗୋଟିଏ ଗଦା ଧରି ଆଖଡ଼ା ଭୂଇଁରେ ଲଢ଼େଇରେ ମାତିଗଲେ । ଦର୍ଶକ ଥାଆନ୍ତି ଅର୍ଜୁନ, କୃଷ୍ଣ ଓ ଅନ୍ୟାନ୍ୟ ଅନେକ ରାଜା ପ୍ରଜାଗଣ ।

ପ୍ରଶ୍ନ-୧୭: ଭୀମ ଜରାସନ୍ଧଙ୍କ ଘମାଘୋଟ ଲଢ଼େଇ ଦିନ ସାରା ଚାଲିଲା । କେହି କାହାକୁ ହରାଇ ପାରିଲେନି । ସଂଧ୍ୟାରେ ଭଗବାନ ଶଙ୍ଖ ବାଦନ କଲେ । ଯୁଦ୍ଧ ବନ୍ଦ ହେଲା । ରାଜା ବୈଦ୍ୟ ପଠାଇ ଭୀମସେନଙ୍କ କ୍ଷତ ଚିକିତ୍ସା କରାଇଲେ । ସକାଳୁ ପୁଣି ସଂଧ୍ୟାଯାଏ ଯୁଦ୍ଧ । ସତେଇଶ ଦିନ ଯୁଦ୍ଧ ଶେଷରେ ଭୀମସେନ ଠାକୁରଜୀଙ୍କୁ

କହିଲେ, ''ବାସୁଦେବ, ଆଉ ଯୁଦ୍ଧ ମୋ ଦେଇ ହେବନି । ତୁମେ ତ କେବଳ ଦେଖଣାହାରୀ । ଦେଖ ମୋ ଶରୀର, ମନ, ବୁଦ୍ଧିଙ୍କର ଅବସ୍ଥା'' । ଭଗବାନ କୃପାମୟ । କହିଲେ, ''ଭାଇ ଭୀମସେନ, ଆଜି ଶେଷ ଦିନ ଯୁଦ୍ଧ କରି ଦେଖ ।'' ସେଦିନ ଭୀମସେନ କ'ଣ ଜିଣିଗଲେ ଯୁଦ୍ଧରେ ?

**ଏକଂ ପାଦଂ ପଦ୍‌-ଆକ୍ରମ୍ୟ ଦୋର୍ଭ୍ୟାଂ ଅନ୍ୟଂ ପ୍ରଗୃହ୍ୟ ସଃ ।**
**ଗୁଦତଃ ପାଟୟାଂ ଆସ ଶାଖାଂ ଇବ ମହାଗଜଃ ॥୪୩॥**

ଉ. ଯୁଦ୍ଧ ସମୟରେ ଭଗବାନ ଛଣ ପଟ ଖଣେ ଦୁଇଫାଳ କରି ଚିରି ଦେଖାଇଦେଲେ ଜରାସନ୍ଧଙ୍କର ମୃତ୍ୟୁ ଭେଦ ସଂକେତ ଜରା ରାକ୍ଷସୀ ମନ୍ତ୍ର କରି ଯୋଡ଼ିଥିବା ଦୁଇଫାଳ ଶରୀରକୁ । ଅତଏବ ଭୀମସେନ ହାତୀଟିଏ ଗଛ ଡ଼ାଳକୁ ଚିରିବା ଭଳି ଜରାସନ୍ଧଙ୍କର ଗୋଟିଏ ପାଦକୁ ଗୋଡ଼ରେ ମାଡ଼ିବସି ଆରଟିକୁ ହାତରେ ଧରି ଚିରି ପରସ୍ପର ବିପରୀତ ଦିଗକୁ ଫିଙ୍ଗିଦେଲେ । ନିଷ୍ପ୍ରାଣ ହେଲେ ଜରାସନ୍ଧ । ନିଷ୍କଣ୍ଟକ ହେଲେ ରାଜା ଯୁଧିଷ୍ଠିର ।

# ୩୪. ବିଭସ୍ସ ରସ ପ୍ରକରଣ ସାର
# (ଅଧ୍ୟାୟ ୬୪ମ-୭୨ମ)

ଦଶଟି ଯାକ ରସ ମଧ୍ୟରେ ବିଭତ୍ସ ରସ ଏକ ଆଣ୍ଟି କ୍ଲାଇମାକ୍ସ । କାରଣ କ୍ଲାଇମାକ୍ସ ହେଉଛି ପ୍ରେମରସ । ବିଭସ୍ସ ରସ ଏପରି ଏକ ରସ ଯେ ଏହା ଭୟାନକ ରସଠାରୁ ମଧ୍ୟ ଅଧିକ ଭୟାନକ । ସେଥିପାଇଁ ସିନା ଏ ରସବର୍ଣ୍ଣନାକୁ ବ୍ୟାସଦେବ ଶୃଙ୍ଗାରରସ ଓ ରୌଦ୍ରରସ ମଧ୍ୟରେ ସ୍ଥାନିତ କରିଛନ୍ତି ।

ବୈଦିକ ହିନ୍ଦୁ ଶାସ୍ତ୍ରରେ ଆଠପ୍ରକାରର ବିବାହ ବିଧି ବର୍ଣ୍ଣନା କରାଯାଇଛି । ତନ୍ମଧ୍ୟରେ ଆର୍ଷ, ବ୍ରାହ୍ମ ପ୍ରାଜାପତ୍ୟ, ଗାନ୍ଧର୍ବ, ଦୈବ ଓ ସ୍ୱୟମ୍ବର ବିବାହ ଯଦିଚ ସୁନ୍ଦର ବିଧାନ ତଥାପି ରାକ୍ଷସ, ଆସୁର ଓ ପୈଶାଚ ବିବାହର ବିଧି ମଧ୍ୟ ରଖାଯାଇଛି । କନ୍ୟାର ଅସମ୍ମତିରେ କିମ୍ବା କନ୍ୟା ପିତାମାତା ବନ୍ଧୁ ବାନ୍ଧବଙ୍କ ଅସମ୍ମତିରେ ଯୋର ଜବରଦସ୍ତି ଧନ ରତ୍ନ ଲୋଭ ଦେଖାଇ, ଭୟ ଦେଖାଇ ଦରକାର ପଡ଼ିଲେ ଯୁଦ୍ଧ କରି ପିତାମାତା ଆଦିଙ୍କୁ ଜୀବନରେ ମାରି କନ୍ୟା ଅପହରଣ କରିବା ଉପାୟ ମଧ୍ୟ ଖଞ୍ଜା ଯାଇଛି । ବିଭସ୍ସ ରସର ଏସବୁ ଏକ ଏକ ଉଦାହରଣ । ସୁତରାଂ ଏହା ପ୍ରମାଣିତ ହେଲା ଯେ ଶ୍ରୀକୃଷ୍ଣଙ୍କ ସକଳ ବିବାହ ରୀତି ବେଦ ସମ୍ମତ ଓ ଧର୍ମ ଅନୁମୋଦିତ ମଧ୍ୟ । ଏହା ଅବଶ୍ୟ ବିଭସ୍ସ ରସ ଆଧାରିତ ।

ପ୍ରକରଣ ଆରମ୍ଭରେ ଇକ୍ଷ୍ୱାକୁଙ୍କ ପୁତ୍ର ନୃଗ ରାଜାଙ୍କ ପୋହଳା ଏଣ୍ଟୁଅ ଜନ୍ମ ପ୍ରାପ୍ତି ବିଭସ୍ସରସର ସୂଚନା ଦିଏ । ଦୋଷ ତାଙ୍କର ଅଜାଣତରେ ଥରେ ଜଣେ ବ୍ରାହ୍ମଣକୁ ଦେଇଥିବା ଗୋଦାନ(ଗାଈ ଆଉ ଥରେ ରାଜାଙ୍କ ଗୋଶାଳାକୁ ପଶି ଆସନ୍ତେ) ଆଉ ଜଣକୁ ଦାନ କରିଦେବା ଜନିତ । ଧର୍ମର ନିକିତିରେ ଶ୍ରୀକୃଷ୍ଣ ଏହାକୁ ନିଜ ପୁଅ ନାତିଙ୍କୁ ବ୍ରହ୍ମସ୍ୱ ଅପହରଣ ବୋଲି କହିଛନ୍ତି । ବ୍ରହ୍ମସ୍ୱ ଅପହରଣ ମଧ୍ୟ ବିଭସ୍ସତାର ଅନ୍ୟ ଏକ ରୂପ ।

ବଳରାମଜୀ ଦ୍ୱାରକାକୁ ଆସି ଗୋପୀମାନଙ୍କ ସହ ରାସକ୍ରୀଡ଼ା କରିଛନ୍ତି । ନିଜ ଭାଇ ବୋହୂ ଯମୁନାଙ୍କୁ ରାସରେ ଭାଗ ନେବାକୁ ଆହ୍ୱାନ କରିଛନ୍ତି । ସେ ଅମଙ୍ଗ ହୁଅନ୍ତେ ନିଜ ଲଙ୍ଗଳ ମୁନରେ ନିଜ ଯୋଗଶକ୍ତି ବଳରେ ନଦୀକୁ ଟାଣି ବକ୍ର କରିଦେବା ରସ ବିଚାରରେ ବିଭସ୍ସତା ନୁହେଁ କି ? ଅର୍ଥାତ୍ ନିଶ୍ଚୟ ବିଭସ୍ସ ରସ ।

କରୁଷ ଦେଶର ରାଜା ନିଜକୁ ନକଲି ବାସୁଦେବ ସଜାଇଛନ୍ତି । କାଠରେ

ଆଉ ଦୁଇଟି ହାତ ନିର୍ମାଣ କରି ବେକରେ ଓହଳାଇ ପିନ୍ଧିଛନ୍ତି । ମସ୍ତକରେ ମୟୂରଚୂଳ ଖୋସି ନକଲି କୃଷ୍ଣ ରୂପ ସାଜିଛନ୍ତି । ଦୂତ ପଠାଇଛନ୍ତି ଦ୍ୱାରକା ଭଗବାନଙ୍କୁ ତାଙ୍କର ବଶ୍ୟତା ସ୍ୱୀକାର କରିବାକୁ କିମ୍ବା ଯୁଦ୍ଧ କରି ପ୍ରାଣତ୍ୟାଗ କରିବାକୁ । କୃପାମୟ ଠାକୁର ପୌଣ୍ଡ୍ରକ ବାସୁଦେବଙ୍କ ସାମନା କରିଛନ୍ତି । ତାର ବନ୍ଧୁ କାଶିରାଜ ସହିତ ପୌଣ୍ଡ୍ରକଙ୍କ ମସ୍ତକକୁ ସୁଦର୍ଶନ ଚକ୍ରରେ ଛେଦନ କରିଛନ୍ତି । ଦୁହିଁଙ୍କ ଜୀବନ ଜ୍ୟୋତିକୁ ନିଜ ଜ୍ୟୋତିରେ ଲୀନ କରାଇଛନ୍ତି । ବିଭତ୍ସରସର ଏହା ଏକ ଅନନ୍ୟ ନିଦର୍ଶନ ।

ଦ୍ୱିବିଦ ବାନର ଦ୍ୱାରକା ନାରୀମାନଙ୍କ ଗହଣରେ ଉତ୍ପାତ କରିଛି । ଏପରିକି ଅଭଦ୍ରତାର ସୀମା ଲଙ୍ଘନ କରିଯାଇଛି । ମହିଳାମାନଙ୍କୁ ନିଜ ଗୁପ୍ତାଙ୍ଗ ପ୍ରଦର୍ଶନ କରି ସେମାନଙ୍କୁ ଭୟଭୀତ କରାଇଛି । ଅସୀମ କ୍ରୋଧରେ ଅନନ୍ତଦେବ ହଳମୂଷଳ ପ୍ରୟୋଗ କରି ତାର ମସ୍ତକ ଓ ବକ୍ଷ ବିଦାରଣ କରି ବିଭତ୍ସ ରସର ଉଦାହରଣ ରଖି ଯାଇଛନ୍ତି ।

ଦୁର୍ଯ୍ୟୋଧନଙ୍କ କନ୍ୟା ଲକ୍ଷ୍ମଣାଙ୍କ ଅପହରଣ କରିବାକୁ ଚେଷ୍ଟା କରି ମହାବୀର ଯାଦବ ଶାମ୍ବ ବନ୍ଦୀ ହୋଇଛନ୍ତି । ବଳରାମଜୀ ଏଠାରେ ବହୁତ ବୁଝାସୁଝା ପରେ ଦୁର୍ଯ୍ୟୋଧନ ଆଦି ତାଙ୍କ ଉପଦେଶ ମାନିବା ପରିବର୍ତ୍ତେ ଯୁଦ୍ଧ କରିବାକୁ ଧାଇଁ ଆସିଛନ୍ତି । ଅନନ୍ତ ଦେବ କ୍ରୋଧରେ ଲଙ୍ଗଳ ମୁନରେ ହସ୍ତିନାପୁରକୁ ଉଖାଡ଼ି ପକାଇ ଅଛନ୍ତି । ସେହିଦିନୁ ହସ୍ତିନାପୁର ଭୂମିକମ୍ପର ଶିକାର ହୋଇ ଯମୁନା ନଦୀର ଗୋଟିଏ ପଟକୁ ଢ଼ଳି ରହିଛି । ଯୁଦ୍ଧ ଭୂମିରେ ଦୁଃଶାସନକୁ ମାରି ଭୀମସେନ ରକ୍ତପାନ କରିବା ଭଳି ଏହା ମଧ୍ୟ ବିଭତ୍ସ ରସର ଉଦ୍ରେକ କରେ ପାଠକର ଅନ୍ତର ମଧ୍ୟରେ ।

ବିଭତ୍ସ ରସର ଅସଲି ପରିପାକ ହୋଇଛି ପ୍ରକରଣର ପରିସମାପ୍ତି ସମୟରେ ଯେତେବେଳେ ଧର୍ମରାଜ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ପାଇଁ ଭଗବାନ ନିଜେ ଉପସ୍ଥିତ ରହି ବଳି ଧର୍ମର ଅଗ୍ନିକୁଣ୍ଡରେ ମୁଣ୍ଡ ବଳି ପକାଇଛନ୍ତି ପ୍ରବଳ ପ୍ରତାପୀ ବୀର ମଗଧରାଜ ଜରାସନ୍ଧଙ୍କୁ । ସତେଇଶ ଦିନ ମଲ୍ଲଯୁଦ୍ଧରେ କେହି ପରାଜୟ ସ୍ୱୀକାର କରିନାହାନ୍ତି । ଭୀମସେନ କିନ୍ତୁ ଭଗବାନଙ୍କୁ ନିଜ ମାଂସ ପେଶୀର ଦୁରବସ୍ଥାର ସୂଚନା ଦେଇଛନ୍ତି । କୃପମାୟ ଭଗବାନ ଯୁଦ୍ଧରେ ଜିଣିବାର କୌଶଳ ମହାବୀର ଭୀମସେନଙ୍କୁ ଜଣାଇ ଦେଇଛନ୍ତି । ସେ ଜରାସନ୍ଧଙ୍କର ଗୋଟିଏ ଗୋଡ଼କୁ ଗୋଡ଼ରେ ମାଡ଼ି ବସି ଅନ୍ୟ ଗୋଡ଼କୁ ଉପରକୁ ଉଠାଇ ଜିଅନ୍ତା ଅବସ୍ଥାରେ ଦୁଇଫାଳ କରି ଚିରି ଦେଇଛନ୍ତି । ଦୁଇ ଫାଳ ଦେହକୁ ବିପରୀତ ଦିଗକୁ ଫିଙ୍ଗି ଦେଇଛନ୍ତି । ଭାରତ ଇତିହାସରେ ଏଭଳି ବିରଳ ବିଭତ୍ସ ଦୃଶ୍ୟ ହୁଏତ ପ୍ରଥମ ଥର ଲାଗି ଦେଖା ଯାଇଥିବ । ଏଭଳି ବର୍ଣ୍ଣନା ମଧ୍ୟ ଭଗବାନଙ୍କ ଜ୍ଞାନ ଅବତାର ବ୍ୟାସଦେବଙ୍କ ଲେଖନୀ ମୁନରେ ସମ୍ଭବ । ତଥାପି ଦଶ ରସ ମଧ୍ୟରେ ବିଭତ୍ସ ରସ ବର୍ଣ୍ଣନା ଲାଗି ଶ୍ରୀମଦ୍ଭାଗବତ ମହାଗ୍ରନ୍ଥରେ ନଅ ଅଧ୍ୟାୟ ସ୍ଥାନ ମିଳିଛି ।

|| ଅପଣ୍ଡିତ ଦାମୋଦର ବଳୀୟାରସିଂହ ||

# ପ୍ରକରଣ -୩୫ ରୌଦ୍ରରସ

## (ଅଧ୍ୟାୟ ୭୩ମ-୮୧ମ)

## ଅଥ ୭୩ମ ଅଧ୍ୟାୟଃ

### (ଜରାସନ୍ଧ କାରଗାରରୁ ୨୦,୮୦୦ରାଜାଙ୍କ ମୁକ୍ତି)

ପ୍ରଶ୍ନ-୧୮ : ଜରାସନ୍ଧଙ୍କ ମୃତ୍ୟୁ ପରେ ତାଙ୍କ କାରାଗାରକୁ ଗଲେ ଭଗବାନ । ମୁକ୍ତ କଲେ ୨୦,୮୦୦ରାଜାଙ୍କୁ । ସକଳ ରାଜା ଭୂମିରେ ମସ୍ତକ ଲଗାଇ ପ୍ରଣାମ କଲେ ଦେବକୀ ନନ୍ଦନଙ୍କୁ । ସେମାନେ ସବୁ କାହିଁକି ପୁଣି ନିଜ ନିଜ ରାଜ୍ୟକୁ ଫେରିଯାଇ ରାଜ୍ୟ ଶାସନ ଦାୟିତ୍ୱ ସମ୍ଭାଳିବାକୁ ଅରାଜି ହେଲେ ?

ରାଜାନଃ ଉଚୁଃ

**ମୃଗତୃଷ୍ଣାଂ ଯଥା ବାଲା ମନ୍ୟନ୍ତ ଉଦକ-ଆଶୟମ୍ ।**
**ଏବଂ ବୈକାରିକୀଂ ମାୟାଂ ଅଯୁକ୍ତା ବସ୍ତୁ ଚକ୍ଷତେ ॥୧୧॥**

ଉ. ସେମାନେ ଠାକୁରଜୀଙ୍କ ଶରଣାଗତ ହୋଇସାରିଥିଲେ । ତାଙ୍କ କୃପା ପ୍ରସାଦ ପ୍ରାପ୍ତ ହୋଇ ସମସ୍ତେ ମାଲାମାଲ୍ । ସେମାନଙ୍କୁ ସଂସାରର ସକଳ ଐଶ୍ୱର୍ଯ୍ୟ ଭୋଗ ବିଳାସ ପିଲାଙ୍କ (ବାଲା) ମୃଗତୃଷ୍ଣାକୁ ଜଳାଶୟ ମାନିବା ଭଳି ଅସତ୍ୟ ମନେ ହେଲାଣି । ଚିହ୍ନି ସାରିଲେଣି ବିଷ୍ଣୁ ମାୟାଙ୍କର ଅଚିନ୍ତ୍ୟ କାରସାଦୀ । ଅବିବେକୀ (ଅଯୁକ୍ତା) ସିନା ମାୟାର ପ୍ରଲୋଭନର ଶିକାର (ବୈକାରିକୀଂ) ହୁଏ । ସିଂହାସନରେ ବସି ରାଜା ବୋଲାଏ । ସୁତରାଂ ରାଜାମାନେ ଉଦାସୀନ ରହିଗଲେ ।

ପ୍ରଶ୍ନ-୧୯ : ରାଜାମାନେ ଜନ୍ମ-ଜନ୍ମାନ୍ତରରେ ତାଙ୍କ ଚରଣ କମଳର ସେବକ ହେବାକୁ ଚାହିଁଲେ । କେଉଁ ମନ୍ତ୍ରରେ ସେମାନେ ସ୍ତୁତି କଲେ ଲୀଳାମୟ ଠାକୁରଜୀଙ୍କର ?

**କୃଷ୍ଣାୟ ବାସୁଦେବାୟ ହରୟେ ପରମ-ଆତ୍ମନେ ।**
**ପ୍ରଣତ କ୍ଲେଶ ନାଶାୟ ଗୋବିନ୍ଦାୟ ନମୋ ନମଃ ॥୧୬॥**

ଉ. ଏହା ପଣ୍ଡିତ ମଦନ ମୋହନ ମାଲବ୍ୟଙ୍କର ଅତି ପ୍ରିୟ ମନ୍ତ୍ର । କହିଲେ,

"ହେ, ବାସୁଦେବ କୃଷ୍ଣ, ଆପଣ ଆମ ପାଇଁ ସ୍ୱୟଂ ଶ୍ରୀହରି, ପରମାତ୍ମା ଓ ଗୋପୀଜନ ବଲ୍ଲଭ ଗୋବିନ୍ଦ। ଆପଣ ଶରଣାଗତ (ପ୍ରଣତ) ଜନର ଦୁଃଖ ନିବାରଣ କର୍ତ୍ତା (କ୍ଲେଶ ଯଶାୟ)। ଅତଏବ ଆପଣଙ୍କୁ ବାରମ୍ବାର ନମସ୍କାର।"

ପ୍ରଶ୍ନ-୨୦: ଭଗବାନ ରାଜାମାନଙ୍କର ଶରଣାଗତି ସ୍ୱୀକାର କଲେ। ପୁଣି ଐଶ୍ୱର୍ଯ୍ୟ ଗର୍ବରେ (ଶ୍ରୀମଦାତ୍) ଅସୁର, ମନୁଷ୍ୟ, ଦେବତା ଗଣ ମଧ୍ୟ ବୈଦିକ ଅନୁଶାସନ ନମାନି ବିପଦରେ ପଡ଼ିଥିବାର କେଉଁ କେଉଁ ଦୃଷ୍ଟାନ୍ତ ଦେଲେ ?

**ଶ୍ରୀ ଭଗବାନ ଉବାଚ**

**ହୈହୟୋ ନହୁଷୋ ବେଣୋ ରାବଣୋ ନରକୋଽପରେ ।**
**ଶ୍ରୀମଦାତ୍ ଭ୍ରଂଶିତାଃ ସ୍ଥାନାତ୍ ଦେବ ଦୈତ୍ୟ ନର-ଈଶ୍ୱରାଃ ॥୨୦॥**

ଉ. ରାଜା ହୈହୟ ଜମଦଗ୍ନିଙ୍କ ଗାଈ ପାଇଁ, ନହୁଷ ଇନ୍ଦ୍ରପତ୍ନୀ ଶଚିଙ୍କ ପାଇଁ, ବେଣ ଅହଂକାର ପାଇଁ, ରାବଣ କାମବାସନା ଚରିତାର୍ଥ କରିବା ପାଇଁ, ଏବଂ ନରକାସୁର ଦେବତାଙ୍କ ଛତ୍ର, କୁଣ୍ଡଳ ଲାଗି ଅତ୍ୟନ୍ତ ଉତ୍ପାତ କଲେ। କାରଣ ତ ସେଇ ଗୋଟିଏ ଐଶ୍ୱର୍ଯ୍ୟ ବା କ୍ଷମତାର ଗର୍ବ।

ପ୍ରଶ୍ନ-୨୧: ଭଗବାନ ଅଙ୍ଗୁଳି ନିର୍ଦ୍ଦେଶ କଲେ ସେମାନଙ୍କୁ ଜରାସନ୍ଧଙ୍କ ସଦ୍ୟ ମୃତଶବକୁ ଦେଖାଇ। ଅହଂକାରର ସଦ୍ୟ ଶିକାର ବୋଲି କହି ନିଜ କୃପାଶକ୍ତିଦ୍ୱାରା ରାଜାମାନଙ୍କ ବୁଦ୍ଧିକୁ ଶୁଦ୍ଧ କରାଇ ଦିଅନ୍ତେ ସେମାନେ କିଭଳି ପ୍ରସନ୍ନ ଦେଖାଗଲେ ?

**ଶ୍ରୀଶୁକ ଉବାଚ**

**ତେ ପୂଜିତା ମୁକୁନ୍ଦେନ ରାଜାନୋ ମୃଷ୍ଟ କୁଣ୍ଡଳାଃ ।**
**ବିରେଜୁଃ ମୋଚିତାଃ କ୍ଲେଶାତ୍ ପ୍ରାବୃଟ୍ ଅନ୍ତେ ଯଥା ଗ୍ରହାଃ ॥୨୭॥**

ଉ. ମୁକ୍ତିଦାତା ନାରାୟଣ (ମୁକୁନ୍ଦେନ) ରାଜାମାନଙ୍କୁ ଜରାସନ୍ଧ ବୋଲରେ ପଡ଼ି ନାରାୟଣଙ୍କ ଅଭକ୍ତ ହେବାକୁ ନାପସନ୍ଦ କରିବା ଓ ବନ୍ଦୀ ହେବାକୁ ବରଂ ଆଦରି ନେବାକୁ ସାବାସ୍ ବୋଲି କହିଛନ୍ତି। ଏବେ ହରି ଦର୍ଶନରେ ସେମାନଙ୍କର ମାନସିକ କ୍ଲେଶ ଦୂର ହୋଇଛି। ପୁଣି ନିଜ ନିଜର ଭିତରର ପ୍ରସନ୍ନତା ନିଜ ମୁଖ ମଣ୍ଡଳରେ ଉକୁଟି ଉଠିଛି। ଫଳରେ ପିନ୍ଧିଥିବା ସ୍ୱର୍ଣ୍ଣ କୁଣ୍ଡଳ ସବୁ ଚମକି ଉଠିଛନ୍ତି (ମୃଷ୍ଟ କୁଣ୍ଡଳାଃ ବିରେଜୁଃ)। ଏହି ଦୃଶ୍ୟଟିକୁ ସୁନ୍ଦର ଉପମା ଅଳଙ୍କାରରେ ସଜେଇଛନ୍ତି ବ୍ୟାସଦେବ। ସତେକି ବର୍ଷାଋତୁ (ପ୍ରାବୃଟ୍) ସରିଯାଇଛି (ଅନ୍ତେ)। ନୀଳ ଆକାଶରେ ଗ୍ରହ ତାରକାମାନେ ନିଜ ନିଜ ଉଜ୍ଜ୍ୱଳତା ଫେରିପାଇଛନ୍ତି। ସତେକି ଅବିଦ୍ୟା ବାଦଲରୁ ମୁକ୍ତି ପ୍ରାପ୍ତ ହେଲେ ବ୍ରହ୍ମ ବିଦ୍ୟା ଦେବୀ ସରସ୍ୱତୀ !!!

ପ୍ରଶ୍ନ-୨୨: ଭଗବତ ଦର୍ଶନ ଓ ଭଗବତ କୃପାପ୍ରାପ୍ତିର କି କି ଲକ୍ଷଣ ସେ ରାଜାମାନଙ୍କଠାରେ ସେତେବେଳେ ଦେଖାଯାଇଥିଲା ?

**ତେ ଏବଂ ମୋଚିତାଃ କୃଚ୍ଛ୍ରାତ୍ କୃଷ୍ଣେନ ସୁମହାତ୍ମନା ।**
**ଯଯୁଃ ତଂ ଏବ ଧ୍ୟାୟନ୍ତଃ କୃତାନି ଚ ଜଗତ୍‌ପତେଃ ॥୨୯॥**

ଉ. ଏକଦା ଅସମ୍ଭବ ମନେ ହେଉଥିବା କଷ୍ଟକର (କୃଚ୍ଛ୍ରାତ୍) ବନ୍ଦୀ ଜୀବନରୁ ମୁକ୍ତ ହେଲେ ସେମାନେ । ରାଜ୍ୟ ବାହୁଡ଼ିବା ବେଳେ ସେମାନେ ନିଜ ଦେହ ରାଜ୍ୟ ପରିବାର ସୁଖ କଥା ଆଦୌ ମନରେ ଚିନ୍ତନ କରୁନଥିଲେ । ବରଂ ସମସ୍ତଙ୍କ ହୃଦୟରେ ଜଗନ୍ନାଥ(ଜଗତ୍ ପତେଃ)ଙ୍କର ମଧୁର ଲୀଳା (କୃତାନି ଯତ୍) ଧ୍ୟାନ ହେଉଥିଲା । ସେମାନଙ୍କର ସକଳ ଇନ୍ଦ୍ରିୟ ଶ୍ରୀକୃଷ୍ଣ ସେବା ଅଭିଳାଷୀ ହୋଇଯାଇଥିଲେ । ଏହାହିଁ ତ ଜୀବର ହୃଦୟ, ମନ ଓ ଇନ୍ଦ୍ରିୟମାନଙ୍କ ଶୁଦ୍ଧି କରଣର ସଙ୍କେତ ।

ପ୍ରଶ୍ନ-୨୩: ଠାକୁରଜୀ ଜରାସନ୍ଧଙ୍କ ରାଜସିଂହାସନରେ ଜରାସନ୍ଧଙ୍କର ପୁତ୍ର ସହଦେବଙ୍କୁ ବସାଇଲେ । ଭୀମସେନ ଓ ଅର୍ଜୁନଙ୍କ ସହ ସେ ଫେରି ଆସିଲେ ଇନ୍ଦ୍ରପ୍ରସ୍ଥ । ସେମାନଙ୍କୁ ପାଇ ରାଜା ଯୁଧିଷ୍ଠିର କେତେ ଖୁସି ହେଲେ ?

**ନିଶମ୍ୟ ଧର୍ମରାଜଃ ତତ୍ କେଶବେନ-ଅନୁକମ୍ପିତମ୍ ।**
**ଆନନ୍ଦ-ଅଶ୍ରୁକଳାଂ ମୁଞ୍ଚନ୍ ପ୍ରେମ୍‌ଣା ନ-ଉବାଚ କିଞ୍ଚନ ॥୩୫॥**

ଉ. କୃଷ୍ଣ ଅଭକ୍ତ ଜରାସନ୍ଧ ବଧର ଶୁଭ ଖବର ପାଇ ରାଜା ବୁଝିଗଲେ ଏହା କେବଳ ଶ୍ରୀକୃଷ୍ଣଙ୍କ ଅପାର ଦୟାରୁ ସମ୍ଭବ ହୋଇଛି । ଯୁଧିଷ୍ଠିର ନାମ ତାଙ୍କର ସାର୍ଥକ ହୋଇଛି ଯୁଦ୍ଧରେ ସ୍ଥିର ବା ଅବିଚଳିତ ରହିପାରନ୍ତି ବୋଲି । ତଥାପି ତାଙ୍କର ହୃଦୟ ତରଳିଯାଇଛି ଭଗବାନଙ୍କ ଅସୀମ, ଅଯାଚିତ କୃପାଲାଭ କରି । ତାଙ୍କ ନେତ୍ର ଦ୍ୱୟରେ ଆନନ୍ଦର ଅଶ୍ରୁପ୍ଲାବନ ହୋଇଛି । ପ୍ରେମର ଆତିଶଯ୍ୟ ହେତୁ ତାଙ୍କର ବାକ୍‌ରୁଦ୍ଧ ହୋଇଯିବାର ବର୍ଣ୍ଣନା କରୁଛନ୍ତି ଶୁକଦେବ ଗୋସ୍ୱାମୀ ।

# ଅଥ ୭୪ମ ଅଧ୍ୟାୟଃ

## (ରାଜସୂୟ ଯଜ୍ଞ ଆରମ୍ଭ ଓ ଶିଶୁପାଳଙ୍କ ଉଦ୍ଧାର)

ପ୍ରଶ୍ନ-୨୪: ପାଣ୍ଡବମାନଙ୍କ ରାଜସଭାରେ ସମସ୍ତଙ୍କୁ ଶୁଣାଇ ରାଜା ଯୁଧିଷ୍ଠିର ଠାକୁରଜୀଙ୍କୁ କିପରି ସ୍ତୁତି କଲେ ?

ଯୁଧିଷ୍ଠିର ଉବାଚ

**ସ ଭବାନ୍ ଅରବିନ୍ଦ-ଅକ୍ଷୋ ଦୀନାନାଂ ଈଶ ମାନିନାମ୍ ।**
**ଧତ୍ତେଽନୁଶାସନଂ ଭୂମନ୍ ତତ୍ ଅତ୍ୟନ୍ତ ବିଡ଼ମ୍ବନମ୍ ।।୩।।**

ଉ. ଅତ୍ୟନ୍ତ ନମ୍ରତାର ସହିତ ରାଜା କହିଲେ, ''ହେ ଭୂମା (ସର୍ବବ୍ୟାପୀ) ପୁରୁଷ, ଆପଣ କମଳନୟନ ନାରାୟଣ କେଉଁଠି, ଆମେ ସାମାନ୍ୟ ମାୟାଧୀନ ଜୀବ କେଉଁଠି ? ଆମେ ନିଜକୁ ରାଜା ଭାବୁଛୁ (ମାନିନାଂ) । ଆମେ ଆପଣଙ୍କୁ ଚିହ୍ନି ନପାରି ଏହା କରନ୍ତୁ, ତାହା କରନ୍ତୁ ନିର୍ଦ୍ଦେଶ ଦେବା କିଛି ବିଚିତ୍ର ନୁହେଁ । କାରଣ ଆମେ ସବୁ ମାୟାଧୀନ ଜୀବ ଅଜ୍ଞ । ଅଳ୍ପଜ୍ଞ । ଆପଣ କିନ୍ତୁ ସର୍ବଜ୍ଞ ହୋଇ ସେ ଧୂର୍ତ୍ତ ଆଦେଶକୁ ପାଳନ କରିବା ଆମ ପାଇଁ ଧୋକା (ଆଡ଼ମ୍ବର) ନୁହେଁ କି ?''

ପ୍ରଶ୍ନ-୨୫: ରାଜା ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ସମୁଚିତ ନିର୍ଦ୍ଦେଶରେ ରାଜସୂୟ ଯଜ୍ଞ ଆୟୋଜନରେ ପ୍ରାଣପଣେ ଲାଗି ପଡ଼ିଲେ । କେଉଁ କେଉଁ ଦେବତା, ମୁନି, ଋଷି, ମହାତ୍ମା, ସାଧୁ ପୁରୁଷଙ୍କୁ ନିମନ୍ତ୍ରଣ କଲେ ସେ ?

ଶ୍ରୀ ଶୁକ ଉବାଚ

**ଦ୍ୱୈପାୟନୋ ଭରଦ୍ୱାଜଃ ସୁମନ୍ତୁଃ ଗୌତମୋଽସିତଃ ।**
**ବଶିଷ୍ଠ ଚ୍ୟବନଃ କଣ୍ୱୋ ମୈତ୍ରେୟଃ କବଷଃ ତ୍ରିତଃ ।।୭।।**

ଉ. ଦ୍ୱୈପାୟନ ବ୍ୟାସ, ଭରଦ୍ୱାଜ, ସୁମନ୍ତୁ, ଗୌତମ, ଅସିତ୍, ବଶିଷ୍ଠ, ଚ୍ୟବନ, କଣ୍ୱ, ମୈତ୍ରେୟ, କବଷ ଓ ତ୍ରିତ ଇତ୍ୟାଦି ଅଗଣିତ ମୁନି ଋଷିଙ୍କୁ ନିମନ୍ତ୍ରଣ କଲେ । ହସ୍ତିନା ପୁରରୁ ଗୁରୁ ଦ୍ରୋଣ, କୃପାଚାର୍ଯ୍ୟ, ପିତାମହ ଭୀଷ୍ମ, ଧୃତରାଷ୍ଟ୍ର, ମନ୍ତ୍ରୀ ବିଦୁର, ଦୁର୍ଯ୍ୟୋଧନଙ୍କ ସହିତ ଅନ୍ୟାନ୍ୟ ଅଧୀନସ୍ଥ ରାଜା ଓ ରାଜନ୍ୟ ବର୍ଗଙ୍କୁ ମଧ୍ୟ

ନିମନ୍ତ୍ରଣ କରିଥିଲେ । ସ୍ୱର୍ଗ ରାଜ୍ୟରୁ ଇନ୍ଦ୍ର ଆଦି ଅନେକ ଦେବୀ, ଦେବତା ମଧ୍ୟ ତାଙ୍କ ନିମନ୍ତ୍ରଣ ପାଇଁ ଯଜ୍ଞରେ ଭାଗନେଲେ ।

ପ୍ରଶ୍ନ-୨୬: ପ୍ରଥମେ ସୁନାର ଲଙ୍ଗଳରେ ଭୂମି କର୍ଷଣ କରାଗଲା । ରାଜା ଯୁଧିଷ୍ଠିର ଯଜ୍ଞ ଦୀକ୍ଷା ନେଲେ ପୁରୋହିତ ଧୌମ୍ୟଙ୍କ ଠାରୁ । ନିମନ୍ତ୍ରିତ ଅତିଥିମାନଙ୍କୁ ସ୍ୱାଗତ କଲେ ରାଜା ଓ ତାଙ୍କ ଚାରିଭାଇ । ଉପଯୁକ୍ତ ଥଇଥାନ ଓ ରହିବାର ସୁବନ୍ଦୋବସ୍ତ କରାଗଲା ସମସ୍ତଙ୍କ ପାଇଁ । ଇନ୍ଦ୍ର, ବରୁଣ, ଅଗ୍ନି ଆଦି ଦେବଗଣଙ୍କ ସହିତ କୃଷ୍ଣ ବଳରାମ ମଧ୍ୟ ଭବ୍ୟ ରାଜସୂୟ ସଭା ମଧ୍ୟରେ ଶୋଭାୟମାନ ହେଲେ । ଚେଦୀରାଜ ଶିଶୁପାଳ ଆଦି ଥାଆନ୍ତି । ବିଚାର ବିମର୍ଷ ଆରମ୍ଭ ହେଲା ଏତେ ବଡ଼ ରାଜସୂୟ ଯଜ୍ଞରେ ଅଗ୍ରପୂଜନ କାହାର କରାଯିବ ? ଅନେକ ଯୁକ୍ତି ତର୍କ ପରେ କନିଷ୍ଠ ପାଣ୍ଡବ ସହଦେବ ସୁନ୍ଦର ପ୍ରସ୍ତାବଟିଏ ଉପସ୍ଥାପନ କରି କ'ଣ କହିଲେ ?

**ଅର୍ହତି ହି-ଅଚ୍ୟୁତଃ ଶ୍ରୈଷ୍ଠ୍ୟଂ ଭଗବାନ ସାତ୍ୱତାଂ ପତିଃ ।**
**ଏଷ ବୈ ଦେବତାଃ ସର୍ବା ଦେଶକାଳ ଧନ-ଆଦୟଃ ॥୧୯॥**

ଉ. ସହଦେବ କହିଲେ, ''ହେ ସଭାସଦ୍‌ଗଣ, ଏଠାରେ ସ୍ୱୟଂ ଉପସ୍ଥିତ ଯଦୁପତି କୃଷ୍ଣ ବାସୁଦେବ କେବଳ ଅଗ୍ରପୂଜା ଗ୍ରହଣ କରିବା ଯୋଗ୍ୟ (ଶ୍ରେଷ୍ଠ୍ୟଂ) । ସେ ନିଜେ ଭଗବାନ ପୁଣି ଭକ୍ତବତ୍ସଳ । ସକଳ ଦେବୀ ଦେବତା ସର୍ବଦା ଓ ସର୍ବଥା ତାଙ୍କର ପୂଜା କରୁଥିବା ବେଦବିଧି ।'

ପ୍ରଶ୍ନ-୨୭: ଭଗବାନ ସର୍ବଦା ଅଭକ୍ତଙ୍କୁ ଅଜ୍ଞେୟ କିନ୍ତୁ ଭକ୍ତ ପାଖରେ ଧରାପଡ଼ିଯାଆନ୍ତି ତାଙ୍କ ସ୍ୱରୂପ ଦର୍ଶନ କରାଇ । ଭକ୍ତ ସହଦେବ କି କି ଅକାଟ୍ୟ ପ୍ରମାଣ ଦର୍ଶାଇଲେ ଶ୍ରୀକୃଷ୍ଣଙ୍କୁ ଭଗବାନ ବୋଲି ସ୍ୱୀକାର କରିବାକୁ ?

**ଯତ୍ ଆତ୍ମକଂ ଇଦଂ ବିଶ୍ୱଂ କ୍ରତବଃ ଚ ଯତ୍ ଆତ୍ମକାଃ ।**
**ଅଗ୍ନିଃ ଆହୂତୟୋ ମନ୍ତ୍ରାଃ ସାଂଖ୍ୟଂ ଯୋଗଃ ଚ ତତ୍‌ପରଃ ॥୨୦॥**

ଉ.ଯେହେତୁ ନିଖିଳ ସୃଷ୍ଟିର ଆଧାର ଉପାଦାନ କାରଣ ଏହି ଦେବକୀନନ୍ଦନ କୃଷ୍ଣ । ବେଦରେ ଯଜ୍ଞ (କ୍ରତବଃ) ପୁରୋଧା, ଆହୂତି, ମନ୍ତ୍ର, ଅଗ୍ନି ସକଳ ଦ୍ରବ୍ୟ ଆଦି କୃଷ୍ଣମୟ । ସାଂଖ୍ୟ ଦର୍ଶନ, ଅଷ୍ଟାଙ୍ଗ ଯୋଗ ଦର୍ଶନ ଆଦି ସକଳ ବୈଦିକ ଶାସ୍ତ୍ର ଆଙ୍ଗୁଠି ଦେଖାଇ ଦିଅନ୍ତି ଏଇ କୃଷ୍ଣ ନାରାୟଣଙ୍କୁ ପ୍ରସନ୍ନ କରିବା ନିମିତ୍ତ । ସେ କେବଳ ଜଗତର ସ୍ରଷ୍ଟା, ପାଳନ କର୍ତ୍ତା ଓ ସଂହାର କର୍ତ୍ତା ସବୁ କିଛି ।

ପ୍ରଶ୍ନ-୨୮: ପ୍ରଶ୍ନ ହୋଇପାରେ ଯେ ଇନ୍ଦ୍ରାଦି ଦେବତାମାନେ ରାଜସୂୟ ଯଜ୍ଞରେ ଅଗ୍ରପୂଜ୍ୟ ନହେଲେ ଅସମ୍ମାନୀତ ହୋଇଯିବେ ନାହିଁକି ?

**ସର୍ବଭୂତ-ଆତ୍ମଭୂତାୟ କୃଷ୍ଣାୟ-ଅନନ୍ୟ ଦର୍ଶିନେ ।**
**ଦେୟଂ ଶାନ୍ତାୟ ପୂର୍ଣ୍ଣାୟ ଦତ୍ତସ୍ୟ-ଅନନ୍ତ୍ୟଂ-ଇଚ୍ଛତା ॥୨୪॥**

ଉ. ଆଦୌ ମନ ଊଣା କରିବେ ନାହିଁ କୌଣସି ଦେବୀ ଦେବତା । ବରଂ ଅଧିକ ଖୁସି ହେବେ ଯେ ସେମାନଙ୍କ ପ୍ରଭୁଙ୍କୁ ସମ୍ମାନୀତ କରାଗଲା ବୋଲି । ଯେହେତୁ ସକଳ ଜୀବଙ୍କର ଆତ୍ମାଙ୍କର ଆତ୍ମା ଶ୍ରୀକୃଷ୍ଣ । ତାଙ୍କଠାରୁ ଭିନ୍ନ ଅନ୍ୟ କିଏ କିପରି ନିଜର ସମ୍ମାନ ଦାବୀ କରିପାରିବ ? ଦେବୀ ଦେବତା ବଦଳରେ କୃଷ୍ଣଙ୍କୁ ସିଧାସଳଖ ଯାହା ସମର୍ପଣ କରାଯାଏ ତାର ଅନନ୍ତଗୁଣା ଫଳ ଦାତାଙ୍କୁ ପ୍ରାପ୍ତି ହେବା ବେଦ ପ୍ରମାଣ ଅଟେ ।

ପ୍ରଶ୍ନ-୨୯ : ସହଦେବଙ୍କ ପ୍ରସ୍ତାବ ଶୁଣି ସଭାମଧ୍ୟସ୍ଥିତ ବୟୋଜ୍ୟେଷ୍ଠ ଭୀଷ୍ମ ପିତାମହ ଆନନ୍ଦରେ ଗଦ୍ ଗଦ୍ ହୋଇଗଲେ । ଯୁଧିଷ୍ଠିର ମହାରାଣୀ ଦ୍ରୌପଦୀଙ୍କ ସହିତ ଠାକୁରଜୀଙ୍କ ପାଦପୂଜା କଲେ । ଭଗବାନଙ୍କର ଚରଣ ଧୌତ ଲୋକ ପାବନି ଜଳକୁ ମସ୍ତକରେ ଧାରଣ କଲେ । ତାଙ୍କୁ ବହୁମୁଲ୍ୟ ବସ୍ତ୍ର ଆଭୂଷଣ ପ୍ରଦାନ କଲେ । ଉପସ୍ଥିତ ସଭାସଦଗଣ ଶ୍ରୀକୃଷ୍ଣଙ୍କର ଜୟ ଜୟକାର ଘୋଷଣା କଲେ । ସ୍ୱର୍ଗରୁ ଦିବ୍ୟ ପୁଷ୍ପ ବୃଷ୍ଟି ହେଲା । ଏକାକୀ ଶିଶୁପାଳ କିନ୍ତୁ, ସହିପାରିନଥିଲେ ଏ ସବୁକୁ । କ୍ରୋଧରେ କମ୍ପମାନ ହେଲେ ସେ । ଆସନରୁ ଉଠିପଡ଼ି ଭଗବାନଙ୍କୁ ନିନ୍ଦା କରିବାରେ ଲାଗିଗଲେ । ଉପସ୍ଥିତ ଦେବତାମାନେ ପ୍ରମାଦ ଗଣିଲେ । ଦୁର୍ଯ୍ୟୋଧନ ଆଦି ଦୁଷ୍ଟ ରାଜାମାନେ ମଧ ଶିଶୁପାଳଙ୍କ ସମର୍ଥନ କଲେ । ଦାଉଜୀ ଭୀମସେନ, ଅର୍ଜ୍ଜୁନ, ଭୀଷ୍ମ, ଆଦି ଶିଶୁପାଳଙ୍କ ବାଧାଦେଲେ । ଭଗବାନ ଦେଖିଲେ ଦୁଇଦଳଙ୍କ କଳହ ବଢ଼ିଲେ ଯଜ୍ଞ କାର୍ଯ୍ୟରେ ବିଘ୍ନ ଘଟିବ । ଶ୍ରୀକୃଷ୍ଣ କି ଉପାୟରେ ଅବସ୍ଥାକୁ ସମ୍ଭାଳି ନେଲେ ?

**ତାବତ୍ ଉତ୍‌ଥାୟ ଭଗବାନ ସ୍ୱାନ୍ ନିବାର୍ଯ୍ୟ ସ୍ୱୟଂ ରୁଷା ।**
**ଶିରଃ କ୍ଷୁର-ଅନ୍ତ ଚକ୍ରେଣ ଜହାର-ଆପତତୋ ରିପୋଃ ॥୪୩॥**

ଉ. ଗଣି ଗଣି ଏକ ଶତ ଦୋଷକୁ କ୍ଷମା କରିସାରିବା ପରେ ସହସା ଭଗବାନ ନିଜ ଆସନରୁ ଉଠି ପଡ଼ିଲେ । ଭକ୍ତମାନଙ୍କର ମିଳିତ କ୍ରୋଧକୁ ନିଜେ ଗ୍ରହଣ କରିନେଲେ । ସ୍ମରଣ କଲେ ସୁଦର୍ଶନ ଚକ୍ରଙ୍କୁ । ନାରାୟଣଙ୍କ ଇଛାରେ ଚକ୍ରରାଜ ସୁଦର୍ଶନ ସମସ୍ତଙ୍କ ସାମନାରେ ଶିଶୁପାଳଙ୍କ ମସ୍ତକକୁ ଗଣ୍ଡିରୁ ଅଲଗା କରିଦେଲେ (ଜହାର) । ସେ ଜାଣିଥିଲେ ଜୟ-ବିଜୟ ବିଷ୍ଣୁ ପାର୍ଷଦଙ୍କ ତୃତୀୟ ଓ ଶେଷ ଜନ୍ମ ଏହି ଶତ୍ରୁ (ରିପୋଃ) ଶିଶୁପାଳ ଏବଂ ଦନ୍ତବକ୍ର । ସେମାନଙ୍କ ଉଦ୍ଧାର କରିବା ଭଗବାନଙ୍କର ଇଛା ।

ପ୍ରଶ୍ନ-୩୦: ଶିଶୁପାଳଙ୍କ ଆତ୍ମଜ୍ୟୋତି ସଭାମଧ୍ୟସ୍ଥ ସମସ୍ତ ସଭାସଦଙ୍କ ସମ୍ମୁଖରେ ନାରାୟଣଙ୍କ ଅଙ୍ଗରେ ବିଲୀନ ହୋଇଗଲା । ସମଗ୍ର ରାଜସଭା ସ୍ତବ୍ଧ ହୋଇଗଲା । ଏଣିକି ଯଜ୍ଞକାର୍ଯ୍ୟ ସୁରୁଖୁରୁରେ ଚାଲିଲା । ନିର୍ବିଘ୍ନରେ ସମାପ୍ତ ମଧ୍ୟ ହେଲା । ଉପଯୁକ୍ତ ଦକ୍ଷିଣା ଦେଇ ରାଜା ସମସ୍ତଙ୍କୁ ବିଦାୟ ଦେଲେ । ସମସ୍ତେ ଅବଭୃତ ସ୍ନାନ କଲେ । କିଛି ମାସ ପର୍ଯ୍ୟନ୍ତ ଭଗବାନ ଇନ୍ଦ୍ରପ୍ରସ୍ଥରେ ରହି ସଦଳବଳେ ସୁକୁଟୁମ୍ବେ ଦ୍ୱାରକା ଫେରିଗଲେ । ମହାଯଜ୍ଞରେ ଦୁର୍ଯ୍ୟୋଧନ ବ୍ୟତୀତ (ଋତେ) ସମସ୍ତେ ପରମ ଆନନ୍ଦ ହେଲାବେଳେ ଦୁର୍ଯ୍ୟୋଧନ କାହିଁକି ଇର୍ଷ୍ୟାରେ ଜଳିଗଲେ ?

**ଦୁର୍ଯ୍ୟୋଧନଂ ଋତେ ପାପଂ କଲିଂ କୁରୁକୁଳ-ଆମୟମ୍ ।**
**ଯୋ ନ ସେହେ ଶ୍ରିୟଂ ସ୍ଫୀତାଂ ଦୃଷ୍ଟ୍ୱା ପାଣ୍ଡୁସୁତସ୍ୟ ତାମ୍ ।।୫୩।।**

ଉ. ଦୁର୍ଯ୍ୟୋଧନଙ୍କର ମନ ବୁଦ୍ଧି ଦୂଷିତ ଥିଲା । ସ୍ୱଭାବ କୁଟିଳ ଥିଲା । ସେ କଳିକାଳର ପ୍ରତିନିଧି । କୁରୁବଂଶର ବ୍ୟାଧି (ଆମୟଂ) ସ୍ୱରୂପ । ସେ ନିଜର ଭାଇ ପାଣ୍ଡବ ମାନଙ୍କର ଐଶ୍ୱର୍ଯ୍ୟର ବୃଦ୍ଧି (ସ୍ଫୀତାଂ) ସହି ପାରୁନଥିଲେ ।

# ଅଥ ୭୫ମ ଅଧ୍ୟାୟଃ

## (ରାଜସୂୟ ଯଜ୍ଞର ପରିସମାପ୍ତି ଓ ଦୁର୍ଯ୍ୟୋଧନଙ୍କ ମାନମର୍ଦ୍ଦନ)

ପ୍ରଶ୍ନ-୩୧: ରାଜା ପରୀକ୍ଷିତ ବିସ୍ତୃତ ରୂପେ ଜାଣିବାକୁ ଚାହିଁଲେ ଦୁର୍ଯ୍ୟୋଧନଙ୍କର ଈର୍ଷ୍ୟାର କାରଣ । ବକ୍ତା ଶୁକଦେବଜୀ ପୁଣି କହି ଚାଲିଲେ ଯେ ରାଜା ଯୁଧିଷ୍ଠିର ଜଣେ ସାମାନ୍ୟ ରାଜା ନଥିଲେ । ଭଗବାନ କୃଷ୍ଣଙ୍କର ଜଣେ ଅତି ଅନ୍ତରଙ୍ଗ ଭକ୍ତ ଭାବରେ ସେ ଜଣାଶୁଣା । ସେ ଯଜ୍ଞ ମଧ୍ୟ କିଛି ସାଧାରଣ ଯଜ୍ଞ ନଥିଲା । ସେଥିରେ ବ୍ୟବହୃତ ସକଳ ବସ୍ତ୍ର ରେଶମୀ ଓ ସକଳ ପାତ୍ର ସ୍ୱର୍ଣ୍ଣ ନିର୍ମିତ ଥିଲା । ମୁନି, ଋଷି, ମହାତ୍ମାମାନଙ୍କର ସେବା କୌଣସି ଦାସ ଦାସୀ କରୁ ନଥିଲେ । ସ୍ୱୟଂ ରାଜା ମହାରାଜାମାନେ ରାଜନ୍ୟବର୍ଗ ନିଜ ହାତରେ କି କି ସେବା ସବୁ କରୁଥିଲେ ?

ଶ୍ରୀ ଶୁକ ଉବାଚ

**ଗୁରୁ ଶୁଶ୍ରୁଷଣେ ଜିଷ୍ଣୁଃ କୃଷ୍ଣଃ ପାଦ-ଅବନେଜନେ ।**
**ପରିବେଷଣେ ଦ୍ରୁପଦଜା କର୍ଣ୍ଣୋ ଦାନେ ମହାମନାଃ ॥୫॥**

ଉ. ବୀର ଭୀମସେନ ରୋଷେଇଶାଳ ଦାୟିତ୍ୱ, ରାଜା ଦୁର୍ଯ୍ୟୋଧନ ଭଣ୍ଡାର ଗୃହ ଦାୟିତ୍ୱ, ସହଦେବ ଅତିଥି ସ୍ୱାଗତ ସତ୍କାର ଓ ନକୁଳ ଦ୍ରବ୍ୟ ସଂଗ୍ରହ ଦାୟିତ୍ୱରେ ଥିଲେ । ମହାବୀର ଅର୍ଜୁନ(ଜିଷ୍ଣୋଃ) ଗୁରୁ ଗୁରୁଜନଙ୍କ ସେବାରେ ନିଯୁକ୍ତ ଥିଲେ । ମହାରାଣୀ ଦ୍ରୌପଦୀ ଭୋଜନ ପରିବେଷଣ କରୁଥିଲେ । ବସ୍ତ୍ର, ଅଳଙ୍କାର ଭୂମି ଆଦି ଦ୍ରବ୍ୟ ଦାନ ଦେବା ଦାୟିତ୍ୱ ମହାଦାନୀ କର୍ଣ୍ଣ ନିର୍ବାହ କରୁଥିଲେ । କାରଣ ଦାନ ନେବା ବାଲା ଯେପରି ଅସନ୍ତୁଷ୍ଟ ନ ହୁଅନ୍ତି । ସ୍ୱୟଂ ଅଗ୍ରପୂଜା ଅର୍ଘ୍ୟ ଗ୍ରହଣ କରିଥିବା ଷୋଳକଳା ଯୁକ୍ତ ନାରାୟଣ କୃଷ୍ଣ ଅତିଥି, ମୁନି, ଋଷି, ଦେବୀ ଦେବତାଙ୍କ ଚରଣ ପ୍ରକ୍ଷ୍ୟାଳନ (ଅବନଜନେ) ସହିତ ଅଇଁଠା ଖଲିପତ୍ର ଗୋଟାଇବା ଦାୟିତ୍ୱ ନେଇଥିଲେ ! ! !

ପ୍ରଶ୍ନ-୩୨ : ସ୍ୱୟଂ ଭଗବାନଙ୍କ ନିର୍ଦ୍ଦେଶରେ ତୁମ ପିତାମହ ଯୁଧିଷ୍ଠିର ରାଜସୂୟଯଜ୍ଞ କରୁଥାନ୍ତି । ସେଥିରେ ପୁଣି ଶିଶୁପାଳଙ୍କ ଭଳି ମହାବୀର ପୈତୃକ ପ୍ରାଣଟି ହରାଇ ସଦ୍‌ଗତି ପ୍ରାପ୍ତ ହେଲେ । ଶ୍ରୀକୃଷ୍ଣ ଚରଣ କମଳରେ ସ୍ଥାନ ପ୍ରାପ୍ତ ହୋଇ ଜୀବନ ଧନ୍ୟ କଲେ । ଅବଭୃତ ସ୍ନାନ ବେଳେ ନାନା ବାଦ୍ୟ ସବୁ ବାଜିଲା । ରାଜା ପ୍ରଜା ସମସ୍ତେ ନାଚି ଗାଇ ପଟୁଆରରେ ଯମୁନା ସ୍ନାନକୁ ବାହାରିଲେ । ବେଦମନ୍ତ୍ର ଗାନ କରୁଥାନ୍ତି ମୁନି ଋଷିମାନେ । ଧରାରାଣୀ ଆନନ୍ଦରେ ଆତ୍ମହରା ହେଲେ । ଚର, ଅଚର, ସ୍ଥାବର, ଜଙ୍ଗମ ସମସ୍ତେ ଥରି ଉଠିଲେ ପ୍ରେମ ଆତିଶଯ୍ୟରେ । ସ୍ନାନକାରୀମାନେ ଫୁଲ, ଚନ୍ଦନ, ବସ୍ତ୍ର, ଅଳଙ୍କାର ଫିଙ୍ଗା ଫିଙ୍ଗି ହୋଇ ଖେଳରେ ମାତିଲେ । ନାରୀ ପୁରୁଷମାନେ ଅବୀର, ରଙ୍ଗରେ ମସ୍ତିଭରା ସୁନ୍ଦର ହୋରି ଖେଳିଲେ । ଅପ୍‌ସରା ଓ ଦେବାଙ୍ଗନାମାନେ ଆକାଶରେ ନୃତ୍ୟଗୀତରେ ମାତିଥିବା ଦୃଶ୍ୟମାନ ହେଲେ ।

ସେତେବେଳେ ମନେ ହେଉଥିଲା ସତେ କି ରାଜସୂୟ ଯଜ୍ଞ ସ୍ୱୟଂ ଦେହ ଧରି ଯୁଧିଷ୍ଠିର ରୂପରେ ଶୋଭାୟମାନ ହେଉଛନ୍ତି କି ! ! ! ଏଭଳି ମହାଯଜ୍ଞ ଉତ୍ସବ ଦର୍ଶନରେ କିଏ କିଏ ସବୁ ରାଜାଙ୍କର ପ୍ରଶଂସା କରିଥିଲେ ?

**ହରିଦାସସ୍ୟ ରାଜର୍ଷେ ରାଜସୂୟ ମହା-ଉଦୟମ୍ ।**
**ନ-ଏବ-ଅତୃପ୍ୟନ୍ ପ୍ରଶଂସନ୍ତଃ ପିବନ୍ ମର୍ତ୍ତ୍ୟୋଽମୃତଂ ଯଥା ॥୨୭॥**

ଉ. ଯଜ୍ଞ ଉତ୍ସବରେ ଉପସ୍ଥିତ ସକଳ ଦେବତା, ଋଷି, ବ୍ରାହ୍ମଣ, ବୈଷ୍ଣବ

ଏକସ୍ୱରରେ ରାଜର୍ଷି ଯୁଧିଷ୍ଠିରଙ୍କର ଭୂରି ଭୂରି ପ୍ରଶଂସା କଲେ । ସେମାନେ ପ୍ରଶଂସା କରି ଆଦୌ ତୃପ୍ତି ଅନୁଭବ କରିପାରୁନଥିଲେ । ମନେ ହେଉଥିଲା ସତେ କି ମରଣଶୀଳ ମଣିଷ ଅମୃତ ପାନ କରି କରି ଆହୁରି ପିଇଯିବାକୁ ଆତୁର ହେଉଛି ।

ପ୍ରଶ୍ନ-୩୩: ମହାଯଜ୍ଞର ଭବ୍ୟ ପରିସମାପ୍ତି ଘଟିଲା । ଦୁର୍ଯ୍ୟୋଧନ ଦିନେ ନିଜ ଭାଇ ମାନଙ୍କ ସହ ପାଣ୍ଡବଙ୍କ ଅଲୌକିକ ସଭାଗୃହକୁ ଯାଉଥାନ୍ତି । ସେ ସଭାଗୃହ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ମୟଦାନବଙ୍କ ଅଦ୍ଭୁତ କଳା କୌଶଳରେ ନିର୍ମିତ ହୋଇଥାଏ । ଦୁର୍ଯ୍ୟୋଧନ ସେ କାରିଗରୀ କୌଶଳରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ (ବିମୋହିତଃ) କାହିଁକି ?

**ସ୍ଥଳେଽଭ୍ୟଗୃହ୍ଣାତ୍ ବସ୍ତ୍ର-ଅନ୍ତଂ ଜଳଂ ମତ୍ୱା ସ୍ଥଳେଽପତତ୍ ।**
**ଜଳେ ଚ ସ୍ଥଳବତ୍ ଭ୍ରାନ୍ତ୍ୟା ମୟମାୟା ବିମୋହିତଃ ।।୩୭।।**

ଉ. ଦୁର୍ଯ୍ୟୋଧନଙ୍କ ମୋଟା ବୁଦ୍ଧି ସେଠାରେ ଆଦୌ କାମ କଲାନି । ସେ ଗଲାବେଳେ ସ୍ଥଳକୁ ଜଳଭାବି ଲୁଗା ଉପରକୁ ଟେକିଦେଲେ(ଅଭ୍ୟଗୃହଣାତ୍) ପୁଣି ଅନ୍ୟ ଏକ ସ୍ଥାନରେ ଜଳଥିବା ସ୍ଥାନରେ ସ୍ଥଳ ବୋଲି ଭାବି ପଡ଼ିଗଲେ । ସଂପୂର୍ଣ୍ଣ ଓଦା ହୋଇଗଲେ । ଉପସ୍ଥିତ ଦର୍ଶକ ଗହଣରେ ବୀର ଭୀମସେନ, ଦ୍ରୌପଦୀ ଆଦି ରାଣୀମାନେ ଅନ୍ୟାନ୍ୟ ରାଜାମାନେ ସବୁ ଉଚ୍ଚ ସ୍ୱରରେ ହସି ପକାଇଲେ (ଜହାସ) ।

ପ୍ରଶ୍ନ-୩୪ : ଦର୍ଶକଙ୍କ ମଧରେ ସ୍ୱୟଂ ଶ୍ରୀକୃଷ୍ଣ ଉପସ୍ଥିତ ଥାଇ କ'ଣ କଲେ ?

**ଜହାସ ଭୀମଃ ତଂ ଦୃଷ୍ଟ୍ୱା ସ୍ତ୍ରିୟୋ ନୃପତୟୋଽପରେ ।**
**ନିବାର୍ଯ୍ୟମାଣା ଅପି-ଅଙ୍ଗ ରାଜ୍ଞା କୃଷ୍ଣ-ଅନୁମୋଦିତଃ ।।୩୮।।**

ଉ. ଶୁକଦେବଜୀ କହିଲେ, ''ହେ ପ୍ରିୟ ପରୀକ୍ଷିତ(ଅଙ୍ଗ), ସ୍ୱୟଂ ରାଜା ଯୁଧିଷ୍ଠିର ସେଭଳି ଦୃଶ୍ୟ ମଧ ଦେଖୁଥିଲେ । ସେ ନିଜେ ହସିଲେ ନାହିଁ । ହସୁଥିବା ଲୋକଙ୍କୁ ହସିବାକୁ ବାରଣ (ନିବାର୍ଯ୍ୟମାଣା) କଲେ ଅବଶ୍ୟ । ଭଗବାନ କୃଷ୍ଣ କିନ୍ତୁ ହସିବାରେ କିଛି ଅପ୍ରାସଙ୍ଗିକତା ନାହିଁ ବୋଲି ଜଣାଇଦେଲେ (ଅନୁମୋଦିତଃ) । କାରଣ ଅହଂକାରୀ ସବ୍‌ଜାନତା ଲୋକ ବୁଦ୍ଧି ଭ୍ରଷ୍ଟ ହେଲେ ବିବେକୀ ଲୋକ ନ ହସି ରହିବ କିପରି ? ପୁଣି ସେ ଲୀଳାମୟ ଆଗକୁ ତାଙ୍କର ମହାଭାରତ ଯୁଦ୍ଧ କରାଇବାର ଅଛି । ଦୁର୍ଯ୍ୟୋଧନ କ୍ରୋଧ କଲେ ସିନା ଦୁଷ୍ଟମାନେ ଶିଷ୍ଟମାନଙ୍କୁ ପୀଡ଼ାଦେବେ । ଦୁଷ୍ଟଦଳନ, ସନ୍ଥପାଳନ ଓ ଧର୍ମ ସଂସ୍ଥାପନ ଏକାବେଳକେ ତିନି ଲକ୍ଷ୍ୟ ପୂରଣ ହେବ ଭଗବାନଙ୍କର ଯୁଦ୍ଧଟିଏ କରିଦେଇ ! !

# ଅଥ ୭୬ମ ଅଧ୍ୟାୟଃ

## (ଶାଲ୍ୱଙ୍କ ଦ୍ୱାରକା ଆକ୍ରମଣ ଓ ପ୍ରଦ୍ୟୁମ୍ନଙ୍କ ସହ ଯୁଦ୍ଧ)

ପ୍ରଶ୍ନ-୩୫: ରୁକ୍ମିଣୀ ହରଣ ସମୟରେ ଜରାସନ୍ଧ, ଶିଶୁପାଳ ଆଦିଙ୍କ ସହିତ ଶାଲ୍ୱ ମଧ୍ୟ ଯୁଦ୍ଧରେ ଭାଗ ନେଇଥିଲେ । ହାରିଗଲା ପରେ ପ୍ରତିଜ୍ଞା କରିଥିଲେ ଯେ ପୃଥିବୀକୁ ସେ ଯାଦବ ଶୂନ୍ୟ କରିବେ । ବର୍ଷେ କାଳ କଠିନ ତପସ୍ୟା କରି ସେ ଶଙ୍କରଜୀଙ୍କୁ ପ୍ରସନ୍ନ କଲେ । ଭଗବାନ ବର ଯାଚନ୍ତେ ଏକ ଅଦ୍ଭୁତ କାମଗ ଯାନ ମାଗିଲେ । ସର୍ତ୍ତ ରଖିଲେ ସେ ବିମାନରେ ଡ଼ିଜେଲ, ପେଟ୍ରୋଲ, କିରୋସିନି ନଥାଇ ଆରୋହୀଙ୍କ ଇଚ୍ଛାରେ ବା କାମନା ଅନୁସାରେ ଗତି କରିପାରିବ ଓ ବୃଷ୍ଣି ବଂଶୀଙ୍କୁ ଡ଼ରାଇ ପାରିବ । ଆକାଶରେ ଉଡ଼ିବ, ଜଳରେ ବୁଡ଼ିବ ଓ ସ୍ଥଳରେ ଗଡ଼ିବ ସେ ବିମାନ । କେତେବେଳେ ଦୃଶ୍ୟମାନ ପୁଣି କେତେବେଳେ ଅଦୃଶ୍ୟ ମଧ୍ୟ ହୋଇପାରିବ । ଶାଲ୍ୱ ନିଜ ଆକ୍ରମଣ ଶକ୍ତିକୁ ମଜଭୂତ କରିବା ଲାଗି ଏହି ଲୌହ ବିମାନ ଶଙ୍କର ଭଗବାନଙ୍କୁ ପ୍ରାର୍ଥନା କଲେ । ଶିବଜୀ ସଙ୍ଗେ ସଙ୍ଗେ ମୟଦାନବଙ୍କୁ ଡ଼କାଇଲେ । ଏଭଳି ଏକ ବିମାନ ତୁରନ୍ତ ନିର୍ମାଣ କରାଗଲା । ନାମ ରଖାଗଲା ସୌଭ । ଦେବ ଅସୁର, ମନୁଷ୍ୟ, ଗନ୍ଧର୍ବ ଓ ରାକ୍ଷସ ଆଦିଙ୍କ ଅଭେଦ୍ୟ ବିମାନ ନେଇ ଶାଲ୍ୱ ପ୍ରଥମେ ଦ୍ୱାରକା ଆକ୍ରମଣ କଲେ । ସେତେବେଳେ କୃଷ୍ଣ ବଳରାମ ହେଡ୍‌କ୍ୱାର୍ଟରରେ ନଥାନ୍ତି । କେଉଁ କେଉଁ ବୃଷ୍ଣିବଂଶୀ ଯୋଦ୍ଧାମାନେ ତାଙ୍କ ଆକ୍ରମଣର ପ୍ରତିରୋଧ କଲେ ?

ଶ୍ରୀଶୁକ ଉବାଚ

**ସାତ୍ୟକିଃ ଚାରୁଦେଷ୍ଣଃ ଚ ଶାମ୍ବୋଽକ୍ରୂରଃ ସହ-ଅନୁଜଃ ।**
**ହାର୍ଦ୍ଦିକ୍ୟୋ ଭାନୁବିନ୍ଦଃ ଚ ଗଦଃ ଚ ଶୁକ ସାରଣୌ ॥୧୪॥**

ଉ. ମହାରଥୀ ସାତ୍ୟକି, ଚାରୁଦେଷ୍ଣ, ଶାମ୍ବ, ଅକ୍ରୂର, ଅକ୍ରୂରଙ୍କ ସାନ ଭାଇ, ହାର୍ଦ୍ଦିକ୍ୟ, ଭାନୁବିନ୍ଦ, ଗଦ, ଶୁକ ଓ ସାରଣ ଇତ୍ୟାଦି ଅଗଣିତ ଯୋଦ୍ଧାମାନେ ଭିଡ଼ିଗଲେ ସମ୍ମୁଖ ସମର ଲାଗି । ଅଗ୍ରଣୀ ଭୂମିକାରେ ରହିଲେ ମହାବୀର ପ୍ରଦ୍ୟୁମ୍ନ । ଶାଲ୍ୱଙ୍କର ବାଣ ସବୁ ସୂର୍ଯ୍ୟଙ୍କ ସଦୃଶ ତେଜୀୟାନ ଥିଲା । ତଥାପି ପ୍ରଦ୍ୟୁମ୍ନଙ୍କୁ ବାଣ ସେ ସବୁକୁ ନିସ୍ତେଜ କରି ପାରୁଥିଲା ।

ପ୍ରଶ୍ନ-୩୬: ଭୟାନକ ଯୁଦ୍ଧ ଚାଲିଲା । ଦିନ ପରେ ଦିନ ୨୭ଦିନ ଧରି ଯୁଦ୍ଧ ଲାଗି ରହିଲା । କେହି କାହାକୁ ହରାଇ ପାରିଲେନି । ଯାଦବ ବୀରମାନେ ସମ୍ମୁଖ ଯୁଦ୍ଧ କରି ବୀର ଗତିକୁ ପ୍ରାପ୍ତ ହେବାକୁ ବରଂ ପସନ୍ଦ କଲେ । ଛତ୍ରଭଙ୍ଗ ଦେଇ ପଳାୟନ କଲେ ନାହିଁ । ଅନେକ ଯୋଦ୍ଧା ମୂର୍ଚ୍ଛିତ ହୋଇ ଯୁଦ୍ଧ କ୍ଷେତ୍ରରେ ପଡ଼ି ରହୁଥିଲେ । ଶେଷ ଦିନ ଯୁଦ୍ଧରେ କେଉଁ ଅଦ୍ଭୁତ ଘଟଣାଟି ଯୁଦ୍ଧର ଏକ ନିର୍ଣ୍ଣାୟକ ଦଶାରେ ପହଞ୍ଚାଇଲା ?

**ଶାଲ୍ୱ-ଆମାତ୍ୟୋ ଦ୍ୟୁମାନ୍ ନାମ ପ୍ରଦ୍ୟୁମ୍ନଂ ପ୍ରାକ୍ ପ୍ରପୀଡ଼ିତଃ ।**
**ଆସାଦ୍ୟ ଗଦୟା ମୌର୍ବ୍ୟା ବ୍ୟାହତ୍ୟ ବ୍ୟନଦଦ୍ ବଲୀ ॥୨୬॥**

ଉ. ଶାଲ୍ୱଙ୍କର ମନ୍ତ୍ରୀ (ଅମାତ୍ୟ)ଙ୍କ ନାମ ଦ୍ୟୁମାନ୍ । ସେ ପୂର୍ବଦିନ ଯୁଦ୍ଧରେ ପ୍ରଦ୍ୟୁମ୍ନଙ୍କ ଶର ମାଡ଼ରେ ଗୁରୁତର ଆହତ ହୋଇଥିଲେ । ସେ ଆଜି ଘୋର ଗର୍ଜନ କରି (ବ୍ୟନଦଦ୍) ଲୌହ (ମୌର୍ବ୍ୟା) ଗଦାଧରି ପ୍ରଦ୍ୟୁମ୍ନଙ୍କ ସମ୍ମୁଖକୁ ଆସିଗଲେ(ଆସାଦ୍ୟ) । ଶକ୍ତିଶାଳୀ ଗଦା ପ୍ରହାର କଲେ ପ୍ରଦ୍ୟୁମ୍ନଙ୍କ ବକ୍ଷରେ ।

ବଜ୍ର ଭଳି ବକ୍ଷ ରାଜକୁମାର ପ୍ରଦ୍ୟୁମ୍ନଙ୍କର । ତଥାପି ସେ ଗଦା ପ୍ରହାରରେ ପ୍ରଦ୍ୟୁମ୍ନ ମୂର୍ଚ୍ଛା ହରାଇଲେ । ତାଙ୍କ ସାରଥି ରଥ ପଛକୁ ଫେରାଇ ସେନା ଶିବିରକୁ ଚାଲି ଆସିଲା । ମୂର୍ଚ୍ଛା ଭଙ୍ଗ ହୁଅନ୍ତେ ପ୍ରଦ୍ୟୁମ୍ନ ସାରଥୀ କାର୍ଯ୍ୟର ନିନ୍ଦା କଲେ । ସେତେବେଳେ ସାରଥୀ ରଥ ପଛକୁ ଫେରାଇବାରଏକ ଯୁକ୍ତି ଯୁକ୍ତ ମନକୁ ମାନିଲା ଭଳି କାରଣ ତାଙ୍କୁ କହିଥିଲେ । ସାରଥି ଉତ୍ତରରେ କହିଥିଲେ, 'ହେ ରାଜ କୁମାର, ଧର୍ମଯୁଦ୍ଧରେ ରଥୀ ସାରଥିର ଓ ସାରଥି ରଥୀର ପ୍ରାଣ ବଞ୍ଚାଇବାକୁ ଚେଷ୍ଟା କରିବା ନିୟମ ଆଦି କାଳରୁ ରହିଛି ।' ଅତଏବ ମହାଯୋଦ୍ଧା ପ୍ରଦ୍ୟୁମ୍ନଙ୍କର ନିନ୍ଦା ଏଠାରେ ଅଯଥାର୍ଥ ।

# ଅଥ ୭୭ମ ଅଧ୍ୟାୟଃ

## (ଶ୍ରୀକୃଷ୍ଣଙ୍କ ଦ୍ୱାରା ଶାଲ୍ୱ ଅସୁର ବଧ)

ପ୍ରଶ୍ନ-୩୭: ଭଗବାନ ଜାଣିପାରିଲେ ଦ୍ୱାରକା ପୁରୀରେ ମାୟାବୀ ଅସୁର ଶାଲ୍ୱଙ୍କ ଉତ୍ପାତ କଥା । ସାରଥି ଦାରକଙ୍କୁ ଧରି ପହଞ୍ଚିଲେ ରଣାଙ୍ଗନରେ । ପ୍ରଦ୍ୟୁମ୍ନ ସେତେବେଳକୁ ଶିବିରରୁ ଫେରି ଆସି ଲଢ଼େଇରେ ଲାଗିଛନ୍ତି । ସେ ଶାଲ୍ୱଙ୍କ ମାୟା ରହସ୍ୟ ସଂପୂର୍ଣ୍ଣ ବୁଝିପାରୁ ନଥିଲେ । ଭଗବାନ ପହଞ୍ଚୁ ପହଞ୍ଚୁ ବୁଝିଗଲେ ସକଳ

ରହସ୍ୟ । ଶାଲ୍ୱ ମଧ ନିଜର ମାୟାର ଅନ୍ତିମ ଜାଲ ବିଛାଇବାକୁ ଯାଇ କେଉଁ ଅଲୌକିକ ଶକ୍ତିର ପ୍ରଦର୍ଶନ କଲେ ?

ଶ୍ରୀଶୁକ ଉବାଚ

**ଏବଂ ନିର୍ଭର୍ତ୍ସ୍ୟ ମାୟାବୀ ଖଡ୍‌ଗେନ-ଆନକ ଦୁନ୍ଦୁଭେଃ ।**
**ଉତ୍‌କୃତ୍ୟ ଶିର ଆଦାୟ ଖସ୍ଥଂ ସୌଭଂ ସମାବିଶତ୍ ॥୨୭॥**

ଉ. ଶ୍ରୀକୃଷ୍ଣଙ୍କ ବଳବୀର୍ଯ୍ୟର ପରାକାଷ୍ଠାକୁ ହସରେ ଉଡ଼େଇ ଦେଇ (ନିର୍ଭର୍ତ୍ସ୍ୟ) ଯୁଦ୍ଧଭୂମିରେ ଏକ ନକଲି ବସୁଦେବ (ଆନକ ଦୁନ୍ଦୁଭେଃ) ଙ୍କ ଶିରକୁ ଖଣ୍ଡାରେ ହାଣିଦେଲେ । ଦୌଡ଼ିଯାଇ ନିଜ ସୌଭରଥରେ ବସିପଡ଼ିଲେ ।

ଅସୁର ସିନା ମାୟାବୀ । କିଛି ସିଦ୍ଧିର ଅଧିକାରୀ । ଭଗବାନ କିନ୍ତୁ ମାୟାଧୀଶ । ସକଳ ମାୟାରହସ୍ୟକୁ ବୁଝିପାରୁଥିବା ମହାମାୟାଙ୍କର ନିୟନ୍ତଣ କର୍ତ୍ତା । ସେ ବୁଝିଗଲେ ଏ ସତ ସତିକା ପିତା ବସୁଦେବ ନୁହନ୍ତି । ମାୟା ବସୁଦେବ ମାତ୍ର ।

ପ୍ରଶ୍ନ-୩୮ : ଭଗବାନ ଦେଖିଲେ ଠିକଣା ସୁଯୋଗ ବେଳ ଉପସ୍ଥିତ । ସୁଦର୍ଶନ ଚକ୍ର ଦ୍ୱାରା ଶାଲ୍ୱଙ୍କ ମସ୍ତକ ଛେଦନ କଲେ । ଶାଲ୍ୱଙ୍କ ମୃତ ଦେହ ନିଜର ବିମାନ ସହ ଭୂମିରେ ଖସି ପଡ଼ିଲା । ଦେବତାମାନେ ଆକାଶରେ ଥାଇ ଏ ଭୟଙ୍କର ଯୁଦ୍ଧ ଦେଖୁଥିଲେ । ଏବେ ସେମାନେ ପରମ ଆନନ୍ଦରେ ଦିବ୍ୟ ପୁଷ୍ପ ବୃଷ୍ଟି କଲେ । ଦୁନ୍ଦୁଭି ବଜାଇଲେ । ଏ ଯୁଦ୍ଧ ପରେ ଯୁଦ୍ଧକ୍ଷେତ୍ରରେ କ'ଣ ଶାନ୍ତି ବିରାଜମାନ କଲା କି ?

**ତସ୍ମିନ୍ ନିପତିତେ ପାପେ ସୌଭେ ଚ ଗଦୟା ହତେ ।**
**ନେଦୁଃ ଦୁନ୍ଦୁଭୟୋ ରାଜନ୍ ଦିବି ଦେବଗଣ-ଇରିତାଃ ।**
**ସଖିନାଂ ଅପଚିତିଂ କୁର୍ବନ୍ ଦନ୍ତବକ୍ରୋ ରୁଷା-ଅଭ୍ୟଗାତ୍ ॥୩୭॥**

ଉ. ପୂର୍ବ ଜନ୍ମର ହରିଣ୍ୟାକ୍ଷ, କୁମ୍ଭକର୍ଣ୍ଣ ଏବେ ଦନ୍ତବକ୍ର ନାମରେ କରୁଷ ଦେଶରେ ଜନ୍ମ ହୋଇଥିଲେ । ନିଜ ବନ୍ଧୁ (ସଖିନାଂ) ଶିଶୁପାଳ ଓ ଶାଲ୍ୱଙ୍କ ବଧ ହେବା ଖବର ପାଇ ଅତୀବ ଦୁଃଖିତ ହେଲେ । ମିତ୍ରବଧର ବଦଲା ନେବା ନିମିତ୍ତ(ଅପଚିତିଂ) ସେ ସଂକଳ୍ପ କଲେ । ଅତ୍ୟନ୍ତ କ୍ରୋଧରେ ସଙ୍ଗେ ସଙ୍ଗେ ଯୁଦ୍ଧ ଭୂମିରେ ପହଞ୍ଚି ଶ୍ରୀକୃଷ୍ଣଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ କଲେ ।

# ଅଥ ୭୮ମ ଅଧ୍ୟାୟଃ

## (କୃଷ୍ଣଙ୍କ ଦ୍ୱାରା ଦନ୍ତବକ୍ର, ବିଦୁରଥ ବଧ ଓ ବଳରାମଙ୍କ ଦ୍ୱାରା ରୋମହର୍ଷଣ ବଧ)

ପ୍ରଶ୍ନ-୩୯: ଶ୍ରୀକୃଷ୍ଣଙ୍କୁ ରଣାଙ୍ଗନରେ ଦେଖି ଦୁଷ୍ଟ ଦନ୍ତବକ୍ର ନିଜର ମାମୁଁ ପୁଅ ଭାଇ (ମାତୁଳେୟ) ବୋଲି ପରିଚୟ ଦେଲେ । ମିତ୍ର ଶିଶୁପାଳ, ପୌଣ୍ଡ୍ରକ, ଶାଲ୍ୱଙ୍କ ବଧ କର୍ତ୍ତା ବୋଲି ମଧ୍ୟ କହିଲେ । ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ରୂପରେ ଲୀଳା କରୁଥିଲେ । ସୁତରାଂ(ଅତଃ) ଦନ୍ତବକ୍ର ଠାକୁରଜୀଙ୍କର ଶରଣାଗତ ହୋଇ ଲାଭବାନ ହେଲେ କି ?

ଶ୍ରୀ ଶୁକ ଉବାଚ

**ତ୍ୱଂ ମାତୁଳେୟୋ ନଃ କୃଷ୍ଣ ମିତ୍ରଧ୍ରୁକ୍ ମାଂ ଜିଘାଂସସି ।**
**ଅତଃ ତ୍ୱା ଗଦୟା ମନ୍ଦ ହନିଷ୍ୟେ ବଜ୍ର କଳ୍ପୟା ।।୫।।**

ଉ. ସତ୍ୟ ଓ ତ୍ରେତା ଯୁଗରେ ଦୁଇ ଜନ୍ମ ହେଲା ଶତ୍ରୁତା କଲେ ମଧ୍ୟ ତାଙ୍କୁ ମୁକ୍ତି ମିଳି ନଥିଲା । ଏବେ ସେ ଶରଣ ପଶିବେ କିପରି ? ପୁଣି ଶତ୍ରୁ ଭାବ ଜାଗି ଉଠିଲା ତାଙ୍କ ମନରେ । ବଜ୍ର ଭଳି (କଳ୍ପୟା) ନିଜର ଗଦା ଉତ୍ତୋଳନ କରି ମାଡ଼ି ଆସିଲେ ଶ୍ରୀକୃଷ୍ଣଙ୍କ ମାରିବାକୁ (ହନିଷ୍ୟେ) ମୂର୍ଖ ମନ୍ଦ ବୋଲି ସମ୍ବୋଧନ କରି । ଭଗବାନ କାଳ ବିଳମ୍ବ ନ କରି କୌମଦକୀ ଗଦା ପ୍ରହାରରେ ତାଙ୍କ ବକ୍ଷ ବିଦାରଣ କଲେ । ରକ୍ତ ବାନ୍ତି କରି ମଲେ ଦନ୍ତବକ୍ର । ତାଙ୍କର ଆତ୍ମା ଜ୍ୟୋତି ରୂପରେ ଉପରକୁ ଉଠି ଶ୍ରୀକୃଷ୍ଣଙ୍କ ଆତ୍ମାରେ ସ୍ଥାନିତ ହେଲେ ।

ପରେ ପରେ ତାଙ୍କ ଭାଇ ବିଦୁରଥ ଦୌଡ଼ିଲେ ଯୁଦ୍ଧ ପାଇଁ । କୃପାମୟ ଭଗବାନ ତାଙ୍କୁ ମଧ୍ୟ ସଦ୍‌ଗତି ଦେଲେ ସୁଦର୍ଶନ ଚକ୍ରରେ ମସ୍ତକ କାଟି । ମହାଭାରତ ଅନୁସାରେ ଶିଶୁପାଳ ଓ ଦନ୍ତବକ୍ର ଉଭୟେ ରାଜସୂୟ ଯଜ୍ଞ ପ୍ରାରମ୍ଭରେ ଏକ ସମୟରେ ଏକ ସ୍ଥାନରେ ସଦ୍‌ଗତି ପ୍ରାପ୍ତ ହେଲେ । ମାତ୍ର ଭାଗବତ ମହାପୁରାଣରେ ଉପରୋକ୍ତ ପ୍ରକାରେ ଅଲଗା ସ୍ଥାନରେ ଅଲଗା ସମୟରେ ମୁକ୍ତ ହେବା କଥା ବର୍ଣ୍ଣିତ ହୋଇଛି ।

ପ୍ରଶ୍ନ-୪୦: ଦ୍ୱାରକାରୁ ଭଗବାନ ହସ୍ତିନା ଯାଇ ନିଜ ପ୍ରିୟ ଭକ୍ତ ପାଣ୍ଡବମାନଙ୍କର ରାଜ ସିଂହାସନ ପ୍ରାପ୍ତି ଉଦ୍ୟମରେ ଲାଗି ପଡ଼ିଥିଲେ । ଶେଷରେ ସେ ନିଜେ ଦୂତ ରୂପରେ ଧୃତରାଷ୍ଟ୍ରଙ୍କ ସଭାରେ ଶାନ୍ତି ପ୍ରସ୍ତାବ ରଖିଲେ । ପାଞ୍ଚ ଖଣ୍ଡି ପଡ଼ା ଗ୍ରାମ ମଧ୍ୟ ଯାଚନା କଲେ । ଧୃତରାଷ୍ଟ୍ରଙ୍କ ଦୁର୍ଭାଗ୍ୟ । ସବୁ ପ୍ରସ୍ତାବ ଆଗ୍ରାହ୍ୟ କଲେ ତାଙ୍କ ଅହଂକାରୀ ପୁତ୍ର ଦୁର୍ଯ୍ୟୋଧନ ।

ଭଗବାନ ପାଣ୍ଡବମାନଙ୍କ ପାଖକୁ ଫେରି ଆସି ଯୁଦ୍ଧର ସଜବାଜ ଆରମ୍ଭ କରିଦେଲେ । ତେଣେ ବଳରାମଜୀ ଯୁଦ୍ଧରେ ନିରପେକ୍ଷ ରହିବାକୁ ପସନ୍ଦ କଲେ । ଭାରତ ଦର୍ଶନ ତୀର୍ଥଯାତ୍ରା କାଳରେ ବଡ଼ ଠାକୁର କେଉଁ କେଉଁ ତୀର୍ଥରେ ଋଷି, ବ୍ରାହ୍ମଣ ଓ ପିତୃ ପୁରୁଷଙ୍କୁ କିଭଳି କେଉଁଠି ତର୍ପଣ କରିଥିଲେ ?

**ସ୍ନାତ୍ୱା ପ୍ରଭାସେ ସନ୍ତର୍ପ୍ୟ ଦେବ-ଋଷି ପିତୃ ମାନବାନ୍ ।**
**ସରସ୍ୱତୀଂ ପ୍ରତିସ୍ରୋତଂ ଯଯୌ ବ୍ରାହ୍ମଣ ସଂବୃତ୍ତଃ ॥୧୮॥**

ଉ. ଆଧୁନିକ ସହର ସୋମନାଥ ଠାରେ ପ୍ରଭାସ ତୀର୍ଥରେ ସେ ସମୁଦ୍ର ସ୍ନାନ କଲେ । ତର୍ପଣ କର୍ମ ସମାପନ ପରେ ସେତେବେଳର ସରସ୍ୱତୀ ନଦୀ କୂଳେ କୂଳେ ବିପରୀତ ଦିଗରେ କିଛି ବ୍ରାହ୍ମଣ ଦେବତାଙ୍କୁ ସାଙ୍ଗରେ ଧରି ଚାଲିଲେ । ବିନ୍ଦୁସର ପୃଥୁଦକ, ତ୍ରିତକୂପ ଆଦି ତୀର୍ଥ ଦର୍ଶନ କରି ପହଞ୍ଚିଲେ ପ୍ରାଚୀନ ତୀର୍ଥ ନୈମିଷାରଣ୍ୟରେ ।

ପ୍ରଶ୍ନ-୪୧: ବଳରାମଜୀ ପହଞ୍ଚିବା ବେଳକୁ ନୈମିଷାରଣ୍ୟରେ ଏକ ମହାସତ୍‌ସଙ୍ଗ ଚାଲିଥାଏ । ଶ୍ରୋତାମଣ୍ଡଳୀରେ ୮୮,୦୦୦ ମୁନି ଋଷି ଥାଆନ୍ତି । ବ୍ୟାସ ଆସନରେ ରୋମହର୍ଷଣ ସୂତ ପୁରାଣ ବ୍ୟାଖ୍ୟାନ କରୁଥାଆନ୍ତି । ବଳରାମଜୀଙ୍କୁ ଦେଖି ସମସ୍ତ ଶ୍ରୋତାମଣ୍ଡଳୀ ତତ୍‌କ୍ଷଣାତ ଦଣ୍ଡାୟମାନ ହେଲେ । ଆଦର ସତ୍କାର ସମ୍ମାନ କଲେ । ବ୍ୟାସ ଆସନ ମର୍ଯ୍ୟାଦା ଅନୁଯାୟୀ ସୂତଜୀ କେବଳ ଠିଆ ହେଲେ ନାହିଁ । ବଳରାମଜୀ କ୍ରୋଧରେ ଏକ ମନ୍ତ୍ର ପୂତ କୁଶ ଫିଙ୍ଗି ତାଙ୍କୁ ବଧ କରି ଦିଅନ୍ତେ ଋଷିମଣ୍ଡଳୀ ମଧ୍ୟରେ କି ପ୍ରତିକ୍ରିୟା ହେଲା ?

**ହା ହା-ଇତି ବାଦିନଃ ସର୍ବେ ମୁନୟଃ ଖିନ୍ନ ମାନସାଃ ।**
**ଉଚୁଃ ସଂକର୍ଷଣଂ ଦେବଂ ଅଧର୍ମଃ ତେ କୃତଃ ପ୍ରଭୋ ॥୨୯॥**

ଉ. ସତ୍‌ସଙ୍ଗ ମଧ୍ୟରେ ହା ହା କାର ପଡ଼ିଗଲା । ସମସ୍ତେ ପରିଷ୍କାର ଜଣାଇଦେଲେ ଯେ ବକ୍ତା ଜଣକ ବର୍ଣ୍ଣରେ ଜନ୍ମରୁ ସୂତ ହେଲେ ମଧ୍ୟ ସେ ବ୍ରହ୍ମ ଅନୁଭବୀ ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇସାରିଥିଲେ । ଅତଏବ ବଳରାମଜୀଙ୍କୁ ବ୍ରହ୍ମହତ୍ୟା

ଦୋଷ ଲାଗିଲା । ମହାପୁରୁଷ ହୋଇ ବ୍ରହ୍ମହତ୍ୟା ଦୋଷର ପ୍ରାୟଶ୍ଚିତ ନ କଲେ ଭବିଷ୍ୟତରେ ଭାରତଭୂମିରେ ଧର୍ମ ଧାରା ଭୁଷୁଡ଼ି ପଡ଼ିବ ।

ଅଡୁଆ ପରିସ୍ଥିତିରେ ପଡ଼ିଗଲେ ବଳରାମଜୀ । ତଥାପି ସୁନ୍ଦର ସମାଧାନଟିଏ କରିଦେଲେ ତତ୍‌କ୍ଷଣାତ୍ । ରୋମହର୍ଷଣ ସୂତଙ୍କର ପୁତ୍ର ସୂତଜୀଙ୍କୁ ପୁରାଣ ପଣ୍ଡାରେ ନିଯୁକ୍ତ କଲେ । ଦର୍ଶନ, ସ୍ପର୍ଶ ଆଦି ଦ୍ୱାରା ତାଙ୍କର ବ୍ରହ୍ମ, ତେଜ, ଆୟୁଷ ଆଦି ବୃଦ୍ଧି କରିଦେଲେ । ପୁରାଣ ପାଠ ପୁଣି ଚାଲିଲା ହଜାରେ ବର୍ଷ ବ୍ୟାପି ବ୍ରହ୍ମସତ୍ରରେ ।

ତଥାପି ବଳରାମଜୀ ସନ୍ତୁଷ୍ଟ ହୋଇ ପାରିଲେନି । ସତ୍‌ସଙ୍ଗ କିଭଳି ବାଧାଶୂନ୍ୟ ଭାବରେ ଚାଲିପାରିବ ତାର ବ୍ୟବସ୍ଥା ମଧ କରିଦେଲେ । ସେଠାରେ ଇଲ୍ୱଳ ବୋଲି ଏକ ଅସୁର ଥାଏ । ତାର ପୁତ୍ରର ନାମ ବଲ୍ୱଳ । ସେ ପ୍ରତ୍ୟେକ ମାସର ଶୁକ୍ଳ ପ୍ରତିପଦା ତିଥିରେ ନୈମିଷାରଣ୍ୟ ଆସେ । ଯଜ୍ଞ କୁଣ୍ଡକୁ ଅପବିତ୍ର କରିଦିଏ ମଳ, ମୂତ୍ର, ରକ୍ତ, ମାଂସ, ଅସ୍ଥି ଇତ୍ୟାଦି ବର୍ଷା କରି । ବଳରାମଜୀ ଏକ ମଉକା ପାଇଗଲେ ଏବେ ଋଷିମାନଙ୍କର ସମୁଚିତ ଉପକାର ଲାଗି ।

# ଅଥ ୭୯ମ ଅଧ୍ୟାୟଃ

## (ବଳରାମଙ୍କ ବଲ୍ୱଳ ବଧ ଓ ଭାରତ ଦର୍ଶନ ଯାତ୍ରା)

ପ୍ରଶ୍ନ-୪୨ : ବଳରାମଜୀ ଯଜ୍ଞଶାଳାରେ ଅବସ୍ଥାନ କରୁଥିବାବେଳେ ବଲ୍ୱଳ ତାର ଆକ୍ରମଣ ଆରମ୍ଭ କରିଦେଲା । ମଳ, ମୂତ୍ର, ରକ୍ତ, ପୂଜ ଆଦି ବର୍ଷଣ କରିବାରେ ଲାଗିଲା । ବଡ଼ ଠାକୁର ତାଙ୍କ ହଳ ମୂଷଳଙ୍କୁ ସ୍ମରଣ କଲେ । ହଳକୁ ଯୋଗ ବଳରେ ଅନେକ ଦୀର୍ଘ କରି ତାକୁ ଟାଣି ଧରିଲେ । ମୂଷଳ ପ୍ରହାର କରି ଏକାଥରକେ ବଲ୍ୱଳକୁ ଅକ୍ଳେଶରେ ନିଷ୍ପ୍ରାଣ କରିଦେଲେ । ମୁନି ଋଷିଗଣ ଆନନ୍ଦ ଉତ୍ସାହରେ କୁରୁଳି ଉଠିଲେ । ଏ ଅପୂର୍ବ ଆନନ୍ଦକୁ କିଭଳି ପ୍ରକାଶ କଲେ ସେମାନେ ?

ଶ୍ରୀ ଶୁକ ଉବାଚ

**ସଂସ୍ତୁତ୍ୟ ମୁନୟୋ ରାମଂ ପ୍ରଯୁଜ୍ୟ-ଅବିତଥ-ଆଶିଷଃ ।**
**ଅଭ୍ୟଷିଞ୍ଚନ୍ ମହାଭାଗା ବୃତ୍ରଘ୍ନଂ ବିବୁଧା ଯଥା ॥୭॥**

ଉ. ଋଷିମାନେ (ମହାଭାଗା) ଭବ୍ୟ ସ୍ତୁତି କରି ଅନନ୍ତ ନାରାୟଣଙ୍କୁ(ଅବିତଥ) ପ୍ରସନ୍ନ କଲେ । ପବିତ୍ର ଗୋମତୀ ନଦୀ ଜଳରେ ଔପଚାରିକ ସ୍ନାନ କରାଇଲେ (ଅଭ୍ୟଷିଞ୍ଚନ) । ସତେ କି ବୃତ୍ତାସୁର ବଧ ପରେ ଦେବରାଜ ଇନ୍ଦ୍ରଙ୍କୁ ଦେବତାମାନେ ପାପ ମୁକ୍ତି ଲାଗି ସ୍ନାନ କରାଉଛନ୍ତି ।

ପ୍ରଶ୍ନ-୪୩: ବଳରାମଜୀ ବିଦାୟ ନେଲେ ଋଷିମାନଙ୍କ ଠାରୁ । ପୁଣି କୌଶିକି ନଦୀରେ ସ୍ନାନ କଲେ । ପ୍ରୟାଗରେ ପହଞ୍ଚିଲେ । ସ୍ନାନ ତର୍ପଣ କଲେ । ପୁଲହ ଆଶ୍ରମ ପହଞ୍ଚି ଗୋମତୀ, ଗଣ୍ଡକୀ ନଦୀରେ ସ୍ନାନ କଲେ । ଯାଇ ପହଞ୍ଚିଲେ ଗୟା ତୀର୍ଥ ସେଠାରେ ମଧ୍ୟ ସ୍ନାନ ତର୍ପଣ ଆଦି କଲେ । ଗଙ୍ଗା ସାଗର ସଙ୍ଗମସ୍ଥଳରେ କପିଳ ଭଗବାନଙ୍କ ଦର୍ଶନ କଲେ । ଓଡ଼ିଶାର ମହେନ୍ଦ୍ର ପର୍ବତରେ ଭଗବାନ ପର୍ଶୁରାମଙ୍କୁ ଦର୍ଶନ କଲେ । ଶ୍ରୀ ଶୈଳରେ ସ୍କନ୍ଦଙ୍କୁ ଦର୍ଶନ କଲେ । ଦ୍ରବିଡ଼ ଦେଶରେ ଭେଙ୍କଟ ନାରାୟଣ ଦର୍ଶନ କଲେ । ପହଞ୍ଚିଲେ ରାମେଶ୍ୱର, କାଞ୍ଚି କାବେରୀ ଇତ୍ୟାଦି ତୀର୍ଥସ୍ଥାନରେ । ଅଗସ୍ତି ଋଷିଙ୍କୁ ଦର୍ଶନ କରି ପହଞ୍ଚିଲେ କନ୍ୟା କୁମାରୀ ମନ୍ଦିର ।

ତାପ୍ତି, ପୟୋଷ୍ଣି ଓ ନିର୍ବିନ୍ଧ୍ୟା ନଦୀରେ ସ୍ନାନ ଓ ଗୋକର୍ଣ୍ଣ ଆଦି ଅନେକ ତୀର୍ଥ ଦର୍ଶନ କରି ପୁନର୍ବାର ପ୍ରଭାସ ତୀର୍ଥରେ ପହଞ୍ଚିଲେ । ଶୁଣିଲେ କୌରବ ପାଣ୍ଡବଙ୍କ ଯୁଦ୍ଧ ଶେଷ ହୋଇଛି । ଦୁଷ୍ଟ ଦଳନ, ସନ୍ଥପାଳନ ସହିତ ଧର୍ମ ସଂସ୍ଥାପନ ଠାକୁରଜୀ କରିସାରିଲେଣି ଭାବି ପହଞ୍ଚିଲେ କୁରୁକ୍ଷେତ୍ର ଯୁଦ୍ଧ ଭୂମିରେ । ଦେଖିଲେ ତାଙ୍କର ଦୁଇ ଗଦା ଯୁଦ୍ଧ ବିଶାରଦ ଶିଷ୍ୟ ଦୁର୍ଯ୍ୟୋଧନ ଓ ଭୀମସେନ ଗଦା ଯୁଦ୍ଧରେ ତନ୍ମୟ । ସେଠାରେ ଉଭୟଙ୍କ ଯୁଦ୍ଧ ସ୍ଥଳରେ ଧର୍ମରାଜ ଯୁଧିଷ୍ଠିରଙ୍କ ସହିତ ଶ୍ରୀକୃଷ୍ଣ ସ୍ୱୟଂ ଉପସ୍ଥିତ । ତଥାପି ଯୁଦ୍ଧ ନ କରିବା ଲକ୍ଷ୍ୟରେ ଦୁଇ ଧୁରନ୍ଧର ଯୋଦ୍ଧାଙ୍କୁ କି ଉପଦେଶ ଶୁଣାଇଲେ ?

**ଯୁବାଂ ତୁଲ୍ୟ ବଳୌ ବୀରୌ ହେ ରାଜନ୍ ହେ ବୃକୋଦର ।**
**ଏକଂ ପ୍ରାଣ-ଅଧିକଂ ମନ୍ୟେ ଉତ-ଏକଂ ଶିକ୍ଷୟା-ଅଧିକମ୍ ॥୨୬॥**

ଉ. ବଳଦେବ ଭଗବାନ କହିଲେ, ''ହେ ଦୁର୍ଯ୍ୟୋଧନ (ରାଜନ୍), ହେ ଭୀମସେନ (ବୃକୋଦର), ତୁମେ ଦୁହେଁ (ଯୁବାଂ) ସମାସ୍କନ୍ଧ ଯୁଦ୍ଧ ବିଶାରଦ (ତୁଲ୍ୟ ବଳୌ) । ଭୀମସେନଙ୍କ ପ୍ରାଣଶକ୍ତି ଅଧିକ କାରଣ ସେ ପବନପୁତ୍ର । ଅନ୍ୟ ଜଣକର (ଉତ-ଏକଂ) ରଣକୌଶଳ ଅଧିକ । ସୁତରାଂ ଦୁହେଁ ମୋ କଥା ମାନି ନିଅ । ମୁଁ ତୁମ ଦୁହିଁଙ୍କର ଗୁରୁ । ଯୁଦ୍ଧ ବନ୍ଦ କର ।

ପ୍ରଶ୍ନ-୪୪: ନିଜ ନିଷ୍ପତ୍ତି ଓ ସଂକଳ୍ପରେ ଦୁର୍ଯ୍ୟୋଧନ ଓ ଭୀମସେନ ଉଭୟେ ଏତେ ଦୃଢ଼ ଥିଲେ ଯେ କେହି ଜଣେ ହେଲେ ତାଙ୍କ କଥା ମାନିଲେ ନାହିଁ । ଈଶ୍ୱର ଇଛା ବଳବାନ୍ ଭାବି ସେ ବିରକ୍ତିରେ ରଣଭୂମି ତ୍ୟାଗ କରି ପୁନଃ ପହଞ୍ଚିଲେ ଯାଇ ନୈମିଷାରଣ୍ୟରେ । ଭଗବାନ ଅନନ୍ତଙ୍କ ଅବତାର (ବିଭୁଃ) ବଳରାମଜୀ ଋଷିମାନଙ୍କ ଦିବ୍ୟ ଭଗବତ୍ ଜ୍ଞାନର ମହିମା ପ୍ରଚାର କରିବାକୁ ଯାଇ ସେଠାରେ କି ଅଲୌକିକ ଲୀଳା କରିଥିଲେ ?

**ତେଭ୍ୟୋ ବିଶୁଦ୍ଧଂ ବିଜ୍ଞାନଂ ଭଗବାନ୍ ବ୍ୟତରତ୍ ବିଭୁଃ ।**
**ଯେନ-ଏବ-ଆତ୍ମନି-ଅଦୋ ବିଶ୍ୱଂ ଆତ୍ମାନଂ ବିଶ୍ୱଗଂ ବିଦୁଃ ॥୩୧॥**

ଉ. କୃପା ସାଗର ବଳରାମ ଭଗବାନ ସେମାନଙ୍କୁ ନିଜ ବିଶ୍ୱରୂପ ନିଜ ନିଜର ବୁଦ୍ଧିକୁ (ବିଶ୍ୱ ଆତ୍ମନଂ) ଦର୍ଶନ କରାଇ ଦେଲେ । କାରଣ ସେତେବେଳକୁ ସେଇ ଶ୍ରୋତାମାନେ ଶୁଦ୍ଧ କରାଇ ସମସ୍ତେ ବିଶ୍ୱରୂପ ଦର୍ଶନର ଅଧିକାରୀ ହୋଇ ସାରିଥିଲେ ।

# ଅଥ ୮୦ମ ଅଧ୍ୟାୟଃ

## (ଦ୍ୱାରକାରେ ଶ୍ରୀକୃଷ୍ଣ ସୁଦାମା ଭେଟ)

ପ୍ରଶ୍ନ-୪୫: ରାଜା ପରୀକ୍ଷିତ ଦଶମ ସ୍କନ୍ଧ ସାରା କୃଷ୍ଣଙ୍କର ଏଗାର ବର୍ଷର ଗୋକୁଳ ଲୀଳା ବିସ୍ତୃତ ଭାବରେ ଶ୍ରବଣ କଲେ । ଚଉଦ ବର୍ଷର ମଥୁରା ଲୀଳା ଶ୍ରବଣ ବି କଲେ । ଶେଷରେ ଶହେ ବର୍ଷର ଦ୍ୱାରକା ଲୀଳା ଶୁଣି କହିଲେ, 'ହେ ଗୁରୁଦେବ, ଆପଣ ଶ୍ରୀକୃଷ୍ଣ ବଳରାମଙ୍କର ଅନେକ ଅଲୌକିକ ଶକ୍ତିର କରାମତି କଥା ଶୁଣାଇଲେଣି । ମୋ ଭଳି ଗୃହସ୍ଥ ଆଶ୍ରମୀ ଲୋକ ବୈଦିକ କର୍ମ କାଣ୍ଡରେ ବିରକ୍ତ ହେଲେ (ବିଷଣ୍ଣକାମ ମାର୍ଗଣୈଃ) ଭଗବାନଙ୍କ କୃପା ଶକ୍ତି କଥା ଶୁଣିବାକୁ ନିଶ୍ଚୟ ଆଗ୍ରହୀ ହେବ । ଏହା ଏକ ସ୍ୱାଭାବିକ କଥା । କାରଣ ସଂସାର ଜଞ୍ଜାଳରେ ବିରକ୍ତ ପୀଡ଼ାକୁ ସେ ହାଡ଼େ ହାଡ଼େ ଅଙ୍ଗେ ନିଭାଇଛି । ଆମ ଭଳି (ବିଷଣ୍ଣଃ) କୌଣସି କଞ୍ଚା ଗୃହସ୍ଥକୁ ଭଗବାନ ବିଶେଷ କୃପା କରିଥିବା ନଜିର ବା ଦୃଷ୍ଟାନ୍ତ ଅଛି କି ?

ରାଜା ଉବାଚ

**କୋ ନୁ ଶ୍ରୁତ୍ୱା-ଅସକୃତ୍ ବ୍ରହ୍ମନ୍ ଉତ୍ତମଶ୍ଲୋକ ସତ୍ କଥାଃ ।**
**ବିରମେତ ବିଶେଷଜ୍ଞୋ ବିଷଣ୍ଣଃ କାମ ମାର୍ଗଣୈଃ ॥୨॥**

ଉ. ଭଗବାନ (ଉତ୍ତମଶ୍ଲୋକ) ଶ୍ରୀକୃଷ୍ଣଙ୍କର ଦିବ୍ୟ (ସତ୍) କଥା ବାରମ୍ବାର (ଅସକୃତ୍) ଅତି ବିସ୍ତୃତ ଭାବରେ ଶ୍ରବଣ କରିବାକୁ ରାଜାଙ୍କ ହୃଦୟରେ ଅତ୍ୟନ୍ତ ଆଗ୍ରହ ଜାତ ହୋଇଛି । ତେଣୁ ସେ ଓଲଟି ପ୍ରଶ୍ନ କରୁଛନ୍ତି ଏଭଳି କଥା ଶୁଣିବାକୁ କିଏ କେବେ (କୋ ନୁ)ଅନାଗ୍ରହୀ (ବିରମେତ) ହେବ କି ?

ପ୍ରଶ୍ନ-୪୬: ଶାସ୍ତ୍ର ମତରେ ଅସଲି ବାଣୀ ତ କେବଳ ସେଇ ଯାହା ଶ୍ରୀହରିଙ୍କ ଗୁଣଗାନ କିମ୍ବା ଲୀଳାଗାନ କରେ । ସେଇ ହାତ କେବଳ ହାତରେ ଗଣା ଯେ ବିଷ୍ଣୁ ବୈଷ୍ଣବଙ୍କ ସେବାରେ ଲାଗେ । ସେଇ କାନ କେବଳ କାନରେ ଲେଖା ଯାହା କୃଷ୍ଣ କଥା ଶ୍ରବଣ ଲାଗି ଆଗୁସାର ହୁଏ । ବକ୍ତା ଶ୍ରୀ ଶୁକଦେବଜୀ ଏଥର ତାଙ୍କର କାହାଣୀ ପେଡ଼ି ଖୋଲିଲେ କାହା ଚରିତ କହିବାକୁ ଯାଇ ?

ଶ୍ରୀ ଶୁକ ଉବାଚ

**କୃଷ୍ଣସ୍ୟ-ଆସୀତ୍ ସଖା କଶ୍ଚିତ୍ ବ୍ରାହ୍ମଣୋ ବ୍ରହ୍ମବିତ୍‌ତମଃ ।**
**ବିରକ୍ତ ଇନ୍ଦ୍ରିୟ-ଅର୍ଥେଷୁ ପ୍ରଶାନ୍ତ-ଆତ୍ମା ଜିତ-ଇନ୍ଦ୍ରିୟଃ ॥୬॥**

ଉ. ସାନ୍ଦିପନୀ ମୁନିଙ୍କ ଆଶ୍ରମର ପାଠପଢ଼ା ସାଥୀ ସୁଦାମାଙ୍କ କଥା । ସେ ବର୍ଣ୍ଣରେ ବ୍ରାହ୍ମଣ । ବୈଦିକ ଜ୍ଞାନରେ ଧୁରନ୍ଧର ପଣ୍ଡିତ (ବ୍ରହ୍ମବିତ୍‌ତମ) । ସଂସାର ଭୋଗ ବିଳାସ ବିମୁଖ (ବିରକ୍ତ) । ମନ ବିଲ୍‌କୁଲ ସ୍ଥିର ବା ଅଚଞ୍ଚଳ । ସଂପୂର୍ଣ୍ଣ ଇନ୍ଦ୍ରିୟ ଜୟୀ (ଜିତେନ୍ଦ୍ରିୟ) ଆଧୁନିକ ଗୁଜୁରାଟର ପୋର ବନ୍ଦର ନିବାସୀ । ନାମ ସୁଦାମା । ଆଜନ୍ମ ଧନସଂପଦ ସମୃଦ୍ଧି ରହିତ । ତଥାପି ସଦା ସନ୍ତୁଷ୍ଟ । ହୋଇପାରନ୍ତି ସେ ଅନ୍ନ, ବସ୍ତ୍ର, ଅଭାବଗ୍ରସ୍ତ । ତାଙ୍କ ପତ୍ନୀ ବସୁନ୍ଧରା ବାସ୍ତବରେ ସମଦୁଃଖିନୀ କିନ୍ତୁ ପତିବ୍ରତା ।

ପ୍ରଶ୍ନ-୪୭: ବାସ୍ତବରେ ଧର୍ମପତ୍ନୀ କେବଳ ସେଇ ଯେ ପତିଙ୍କୁ ଧର୍ମ ମାର୍ଗରେ ଚାଲିବାରେ ସାହାଯ୍ୟ କରନ୍ତି । ଭଗବତ ଦର୍ଶନ ଲାଗି ପ୍ରେରଣା ମଧ୍ୟ ଦିଅନ୍ତି । ଦିନକର ଘଟଣା । ପତ୍ନୀ ବସୁନ୍ଧରା କହିଲେ, "ହେ ପ୍ରିୟତମ, ତୁମ ମିତ୍ର ଶ୍ରୀକୃଷ୍ଣ ଏବେ ଦ୍ୱାରକାର ରାଜା । ସେ ବ୍ରାହ୍ମଣ ପ୍ରିୟ, ଶରଣ ବତ୍ସଳ ଓ ଭକ୍ତ ବତ୍ସଳ । ଲୋକେ ତାଙ୍କୁ ଭଗବାନ ବୋଲି କହୁଛନ୍ତି । ସେ କୁଆଡ଼େ ବହୁତ ଦାନ ଧର୍ମ କରନ୍ତି । ଏପରିକି କେବେ କେବେ ଉପଯୁକ୍ତ ପାତ୍ର ଦେଖିଲେ ନିଜକୁ ମଧ୍ୟ ଦେଇଦିଅନ୍ତି ।" ପତ୍ନୀ

ବାରମ୍ବାର କୃଷ୍ଣଙ୍କ ପ୍ରଶଂସା କରିବାରୁ ଓ ତାଙ୍କୁ ଦେଖା କରିଯିବା ଉଚିତ ବୋଲି କହିବାରୁ ସୁଦାମା ମନେ ମନେ କ'ଣ ସଂକଳ୍ପ କଲେ ?

**ସ ଏବ ଭାର୍ଯ୍ୟୟା ବିପ୍ରୋ ବହୁଶଃ ପ୍ରାର୍ଥିତୋ ମୁହୁଃ ।**
**ଅୟଂ ହି ପରମୋ ଲାଭ ଉତ୍ତମଶ୍ଳୋକ ଦର୍ଶନମ୍ ॥୧୨॥**

ଉ. ସୁଦାମା(ବିପ୍ରୋ) ଭାବିଲେ ଭଗବତ୍ ଦର୍ଶନର ଏ ସୁଯୋଗ ହାତ ଛଡ଼ା କରିବା ଅନୁଚିତ । ମିତ୍ର ପାଖରେ ଯାଇ ହାତ ପତେଇବା କଥା ମିଛ । ସୁତରାଂ ଖାଲି ହାତରେ ବନ୍ଧୁ ଦ୍ୱାରକୁ ଯିବା ଅନୁଚିତ । ଘରେ କିଛି ଉପାୟନ ଥିଲେ ଦେବାକୁ କହିଲେ । ପାଖ ପଡ଼ିଶା ବୁଲିଲେ ତାଙ୍କ ପତ୍ନୀ । ଚାରି ଘରୁ ଚାରି ପ୍ରକାର ଖୁଦ ଚାଉଳ ଭଜା (ସରୁ, ବଗଡ଼ା, ସଫା, ମଇଳା) ଆଣିଲେ । ଚିରା, ଫଟା, ମଇଳା ବସ୍ତ୍ର କାନିରେ ବାନ୍ଧିଲେ । ବଢ଼େଇ ଦେଲେ ସ୍ୱାମୀଙ୍କ ହାତକୁ । ତାଙ୍କ ପରିବାର ଦାରିଦ୍ର୍ୟର ସକଳ ଭୂଗୋଳ ଏବଂ ଇତିହାସ ସତେ ଯେମିତି ସେଥିରେ ଭରି ରହିଛି । ମନେ ହେଲା ଏ ଚାଉଳ ଚାରିମୁଠା ଜୀବର ଧର୍ମ-ଅର୍ଥ-କାମ-ମୋକ୍ଷ ରୂପୀ ପୁରୁଷାର୍ଥକୁ ସେ ଚାହୁଁଛି ଭଗବାନଙ୍କୁ ସମର୍ପଣ କରିବାକୁ ।

ପ୍ରଶ୍ନ-୪୮ : ଦୁର୍ବଳ ଶରୀର ଧରି ସୁଦାମା ବହୁଶ୍ରମ ସ୍ୱୀକାର କରି ପହଞ୍ଚିଗଲେ ବାଲ୍ୟ କାଳର ମିତ୍ର ଶ୍ରୀକୃଷ୍ଣଙ୍କ ଦ୍ୱାରକା ନଗରୀରେ । ବାଟ ପଚାରି ପଚାରି ସେ ରୁକ୍ମିଣୀଙ୍କ ମହଲ ସମ୍ମୁଖରେ କ'ଣ ସବୁ ଦେଖିଲେ ?

**ତଂ ବିଲୋକ୍ୟ-ଅଚ୍ୟୁତୋ ଦୂରାତ୍ ପ୍ରିୟା ପର୍ଯ୍ୟଙ୍କଂ-ଆସ୍ଥିତଃ ।**
**ସହସା-ଉତ୍ଥାୟ ଚ-ଅଭେତ୍ୟ ଦୋର୍ଭ୍ୟାଂ ପର୍ଯ୍ୟଗ୍ରହୀତ୍ ମୁଦା ॥୧୮॥**

ଉ. ଠାକୁର ଆମର ଚାରି ଆଖିଆ । ଭକ୍ତ ତାଙ୍କୁ ଦର୍ଶନ କରିବା ପୂର୍ବରୁ ସେ ଦୂରରୁ ଦେଖିଦେଲେ ସଖା ବ୍ରାହ୍ମଣ ସୁଦାମାଙ୍କୁ । ସେ ରୁକ୍ମିଣୀଙ୍କ ସହିତ ପଲଙ୍କରେ ବସି ବିନୋଦ କରୁଥିଲେ । ହଠାତ୍ (ସହସା) ରୁକ୍ମିଣୀଙ୍କ ପଲଙ୍କରୁ ଉଠି ପଡ଼ିଲେ । ସୁଦାମାଙ୍କ ପାଖରେ ପହଞ୍ଚିଗଲେ (ଅଭେତ୍ୟ) । ଦୁଇ ବାହୁରେ ଦୁହେଁ ଦୁହିଁଙ୍କୁ ଦୃଢ଼ ଆଲିଙ୍ଗନ କଲେ । ଭଗବାନ ଭୁଲିଗଲେ ତାଙ୍କ ଭଗବତ୍ତା । ଭକ୍ତ ଭୁଲିଗଲେ ସେ ଜୀବ ମାତ୍ର ।

ଭକ୍ତକୁ ଆଲିଙ୍ଗନ କରି ସାରି ସ୍ୱୟଂ ଭଗବାନ ପିଢ଼ା ପାଣିର ବନ୍ଦୋବସ୍ତରେ ଲାଗିଗଲେ । ବ୍ରାହ୍ମଣ ସେବକ ସେ । ପାଦ ଧୌତ କରିବାକୁ ଅନ୍ୟ ଜଳ ଦରକାର ପଡ଼ିଲା ନାହିଁ । ନିଜ ଆନନ୍ଦ ଅଶ୍ରୁଜଳରେ ବୁଡ଼େଇ ଦେଲେ ସୁଦାମାଙ୍କ ଦୁଇ ପାଦକୁ । ସେଇ ଜଳକୁ ନିଜ ମସ୍ତକରେ ଧାରଣ କଲେ । ଚନ୍ଦନ, ଅଗୁରୁ, କୁଙ୍କୁମ ଆଦି

ଷୋଡ଼ଶ ଉପଚାରରେ ବାଲ୍ୟ ବନ୍ଧୁଙ୍କର ପୂଜନ କଲେ । ସଖାଙ୍କୁ ପଲଙ୍କରେ ବସାଇଲେ । ନିଜେ ତାଙ୍କ ପାଖରେ ହସ ହସ ହୋଇ ବସି ପଡ଼ିଲେ । ମା'ରୁକ୍ମିଣୀ ପଙ୍ଖା ସେବାରେ ଲାଗିଗଲେ ।

ସୁଦାମାଙ୍କ ମହଲ ପ୍ରବେଶ ଓ ପତିଙ୍କ ଅତିଥି ସତ୍କାର ଦର୍ଶନ କରିବାକୁ ଅନ୍ୟ ମହଲମାନଙ୍କରୁ ରାଣୀ, ପାଟ ରାଣୀମାନଙ୍କର ଭିଡ଼ ଜମିଗଲା । ସମସ୍ତେ ମସ୍ତକ ନୁଆଇଁ ସୁଦାମାଙ୍କୁ ପ୍ରଣାମ କଲେ । ବ୍ରାହ୍ମଣଙ୍କ ଆଶିର୍ବାଦ ପାଇ ନିଜକୁ ଧନ୍ୟ ମନେ କରୁଥାନ୍ତି । ଏତେ ଲମ୍ବା ଧାଡ଼ି ଦେଖି ସୁଦାମା ଆଶ୍ଚର୍ଯ୍ୟ ହେଲେ । ପଚାରି ବସିଲେ ଏ ସମସ୍ତେ କ'ଣ କୃଷ୍ଣଙ୍କର ପ୍ରଜାଗଣ । ହସି ହସି ଭଗବାନ ଉତ୍ତର ଦେଲେ ଯେ, ସେମାନେ ସବୁ ଖାସ୍ ପ୍ରଜା ଅର୍ଥାତ୍ ନିଜ ପତ୍ନୀଗଣ । ସଂଖ୍ୟାରେ ମାତ୍ର ଷୋହଳ ହଜାର ଏକ ଶହ ଆଠ ।

ପ୍ରଶ୍ନ-୪୯ : କିଛି ଜଳ ଯୋଗ, ବିଶ୍ରାମ ବନ୍ଦୋବସ୍ତ କଲା ପରେ ଭଗବାନ ସୁଦାମାଙ୍କ କୁଶଳ ମଙ୍ଗଳ ପଚାରି ବସିଲେ । ତାଙ୍କୁ ସାନ୍ଦିପନୀ ଗୁରୁଙ୍କ ଆଶ୍ରମର ଅନୁଭୂତି କଥା ମନେ ପକାଇଦେଲେ । ଗୁରୁଦେବ ସେମାନଙ୍କୁ ଗୃହସ୍ଥାଶ୍ରମ ସଫଳ ହେଉ ବୋଲି କହି ଆଶିର୍ବାଦ କରିଥିବା କଥା କହିଲେ । ସେ ତ ଲୀଳାମୟ । ତାଙ୍କର ଲୀଳାର ଉଦ୍ଦେଶ୍ୟ ସଖା ସୁଦାମାଙ୍କ ଗୃହସ୍ଥାଶ୍ରମ ଲକ୍ଷ୍ୟ ପୂର୍ଣ୍ଣ ହୋଇଛି କି ନାହିଁ ପଚାରି ବୁଝିବା । ତା ଜାଣିପାରି ସୁଦାମା ବ୍ରାହ୍ମଣ କି ଉତ୍ତର ଦେଲେ ସେତେବେଳେ ?

ବ୍ରାହ୍ମଣ ଉବାଚ

**କିଂ ଅସ୍ମାଭିଃ ଅନିବୃତ୍ତଂ ଦେବଦେବ ଜଗଦ୍‌ଗୁରୋ ।**
**ଭବତା ସତ୍ୟକାମେନ ଯେଷାଂ ବାସୋ ଗୁରୋଃ ଅଭୂତ୍ ।।୪୪।।**

ଉ. ଗୁରୁ ଆଶ୍ରମରେ ଗୁରୁଙ୍କ ମୃତପୁତ୍ରକୁ ଯମ ଲୋକରୁ ଜୀବନ୍ତ ଆଣି ଦେବା କଥା ମନେ ପଡ଼ିଥିଲା ତାଙ୍କର । ସେ ଜାଣି ସାରିଥିଲେ ତାଙ୍କ ସଖା ସ୍ୱୟଂ ବୈକୁଣ୍ଠ ବିହାରୀ ନାରାୟଣ । ତେଣୁ ସମ୍ବୋଧନ କଲେ ଦେବ ଦେବ ଜଗଦ୍‌ଗୁରୁ ବୋଲି । କହିଲେ, ''ହେ ପ୍ରଭୋ, ଆପଣ ସତ୍ୟକାମ ଓ ସତ୍ୟ ସଂକଳ୍ପ । ଆପଣଙ୍କ ଇଛାରୁ ଓ କୃପାରୁ ମୁଁ ସିନା ଆପଣଙ୍କ ସହିତ ଗୁରୁ ଗୃହରେ ବିଦ୍ୟା ଅଧ୍ୟୟନ କରିପାରିଲି । ତାପରେ ଆଉ ମୋ ପାଇଁ କ'ଣ ପାଇବା ଲକ୍ଷ୍ୟ (ଅନିବୃତ୍ତଂ) ବାକି ରହିପାରେ କି ?''

ଶେଷରେ କହିଲେ, ''ହେ ପ୍ରଭୋ, ଆପଣଙ୍କ ଦେହ ସ୍ୱୟଂ ବେଦମନ୍ତ୍ରମୟ । ଆପଣ ମୋତେ ଓ ଗୁରୁ ସନ୍ଦିପନୀଙ୍କୁ କୃପା କରିବା ନିମିତ୍ତ ବେଦ ଅଧ୍ୟୟନ ନାଟକ କରୁଥିଲେ । ଏହା ତ ବିଧି (ବ୍ରହ୍ମା) ଙ୍କ ଲିଖିତ ବିଧାନର ବିଡ଼ମ୍ବନା ମାତ୍ର ।''

# ଅଥ ୮୧ମ ଅଧ୍ୟାୟଃ

## (ସୁଦାମାଙ୍କ ଦାରିଦ୍ର୍ୟ ଭଞ୍ଜନ)

ପ୍ରଶ୍ନ-୫୦: ଦୁଇ ବନ୍ଧୁଙ୍କର ବାଲ୍ୟ କାଳର ପାଠ ପଢ଼ା, ଗୁରୁ ଗୃହ ବାସ କଥା ସ୍ମରଣ ଆଦି ପ୍ରସଙ୍ଗ ଚାଲିଥାଏ । ହଠାତ୍ ଭଗବାନଙ୍କର ମନେ ପଡ଼ିଲା ସଖା ଏତେ ଦିନରେ ଆସିଛନ୍ତି । ବନ୍ଧୁ ପତ୍ନୀ ପଠାଇଥିବା ଉପାୟନ କାହିଁ ? ହୁଏତ ଲଜ୍ଜା ସଙ୍କୋଚରେ ସେ ଦେଉ ନଥିବେ । ଭାବୁଥିବେ ରାଜାଙ୍କୁ କେଉଁ ଖଜା ଅବା ଅପୂର୍ବ । ସଖାଙ୍କ ସନ୍ଦେହ ମୋଚନ ପାଇଁ ଶ୍ରୀକୃଷ୍ଣ ମହାଭାରତ ଯୁଦ୍ଧବେଳେ ଅର୍ଜୁନଙ୍କୁ କହିଥିବା କେଉଁ ମୂଲ୍ୟବାନ ଶ୍ଳୋକଟି ସ୍ମରଣ କରାଇଦେଲେ ?

ଶ୍ରୀ ଭଗବାନ ଉବାଚ

**ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରୟଚ୍ଛତି ।**
**ତତ୍ ଅହଂ ଭକ୍ତି-ଉପହୃତଂ ଅଶ୍ନାମି ପ୍ରୟତ-ଆତ୍ମନଃ ॥୪॥**

ଉ. ସଙ୍ଗେ ସଙ୍ଗେ ଶ୍ଳୋକଟିର ଭାବାର୍ଥ ବୁଝିଗଲେ ସୁଦାମା । ଶ୍ରଦ୍ଧା ଭକ୍ତିର ସହିତ ଶ୍ରୀକୃଷ୍ଣଙ୍କୁ ତାଙ୍କ ଭକ୍ତ ପତ୍ରଟିଏ (ରୁକ୍ମିଣୀଙ୍କ ତୁଳସୀ ପତ୍ରରେ କୃଷ୍ଣଙ୍କୁ ଓଜନ କରିବା ବେଳେ), ଫୁଲଟିଏ (ଗଜରାଜଙ୍କ ପଦ୍ମଫୁଲ), ଫଳଟିଏ (ଶବରୀ ରାମଙ୍କୁ ବା ଦାସିଆ ବାଉରୀ ଜଗନ୍ନାଥଙ୍କୁ ନଡ଼ିଆ) କିମ୍ବା ଜଳ ଟିକିଏ (ରନ୍ତିଦେବ ଅତିଥିଙ୍କୁ ଦେବା, ସନ୍ଥ ଏକ ନାଥ ଗଙ୍ଗାଜଳକୁ ତୃଷାର୍ତ୍ତ ଗଧକୁ ଦେବା) ସମର୍ପଣ କଲେ ସେ ମହାଆନନ୍ଦର ସ୍ୱୀକାର କରିଥାନ୍ତି ।

ମହାତ୍ମାମାନେ ଏହାର ଅନ୍ୟ ଏକ ଭାବାର୍ଥ ବାହାର କରି କୁହନ୍ତି ଯେ ଏଠାରେ ପତ୍ରଂ ଶବ୍ଦ ନିର୍ଦ୍ଦେଶ କରନ୍ତି ଭକ୍ତ ନିଜ ହାତକୁ ଯୋଡ଼ି ବିନୀତ ଭାବରେ କରପତ୍ର ଦେଉ । ପୁଷ୍ପ ଶବ୍ଦ ଲକ୍ଷ୍ୟ କରନ୍ତି ଭକ୍ତ ତାର ମନ ପୁଷ୍ପକୁ ଦେଉ । ଫଳଂ ଶବ୍ଦ ଦ୍ୱାରା କର୍ମଫଳକୁ ସମର୍ପଣ କରିବାକୁ ଓ ତୋୟଂ ଶବ୍ଦ ଦ୍ୱାରା ନେତ୍ର ଜଳ ନିବେଦନ କରିବାର ସଙ୍କେତ କରୁଛନ୍ତି । ଉଭୟ ଅର୍ଥ ଆମ ପାଇଁ ଶିକ୍ଷାପ୍ରଦ ।

ପ୍ରଶ୍ନ-୫୧ : ଏବେ ଭଗବାନଙ୍କର ପିଲାଦିନର ନଟଖଟିଆ ସ୍ୱଭାବ ଦେଖା ଦେଇଛି । ସେ ସର୍ବଅନ୍ତର୍ଯ୍ୟାମୀ । ବନ୍ଧୁ ତାଙ୍କ କାଖରେ ଲୁଚେଇ ରଖିଥିବା ଗାମୁଛା ବନ୍ଧା ଚାରିମୁଠା ଚାଉଳକୁ ଟଣା ଓଟରା କରିଛନ୍ତି । କଳେ ବଳେ ଛଡ଼େଇ ନେଇଛନ୍ତି । ପୁଟୁଳି ଖୋଲି ମୁଠାଏ ସପ୍ରେମ ଖାଇଦେଇଛନ୍ତି । ଆଉ ମୁଠାଏ ଖାଇବାକୁ ଯିବା ବେଳେ ମା'ରୁକ୍ମିଣୀ କାହିଁକି ଅଟକେଇ ଦେଇଛନ୍ତି ?

**ଏତାବତ୍ ଅଲଂ ବିଶ୍ୱ-ଆତ୍ମନ୍ ସର୍ବସମ୍ପତ୍ ସମୃଦ୍ଧୟେ ।**
**ଅସ୍ମିନ୍ ଲୋକେଽଥ ବା-ଅମୁଷ୍ମିନ୍ ପୁଂସଃ ତ୍ୱତ୍ ତୋଷ କାରଣମ୍ ॥୧୧॥**

ଉ. ରୁକ୍ମିଣୀ ତୀବ୍ର ପ୍ରତିବାଦ କରି କହିଛନ୍ତି, ''ହେ ବିଶ୍ୱ-ଆତ୍ମନ୍ ପ୍ରଭୋ, ଢ଼େର ହୋଇଗଲା (ଏତାବତ୍ ଅଲଂ) । ଯେଉଁ ମୁଠାଏ ତଣ୍ଡୁଳ ସ୍ୱୀକାର କରିଛନ୍ତି ସେତକ ଶୁଝିବାକୁ ମୁଁ ମହାଲକ୍ଷ୍ମୀ ରୂପରେ ତାଙ୍କୁ ଇହଲୋକ (ଅସ୍ମିନ୍) ପରଲୋକ (ଅମୁଷ୍ମିନ୍) ପରଲୋକ ଉଭୟ ସୁଖ ସମୃଦ୍ଧି ଦେବାକୁ ବାଧ୍ୟ । କାରଣ ଆପଣଙ୍କୁ କିଛି ଦେଇ ସନ୍ତୋଷ କରିବା ଅର୍ଥ ସାରା ବିଶ୍ୱ ବ୍ରହ୍ମାଣ୍ଡର ସକଳ ପ୍ରାଣୀଗଣଙ୍କର ଦେବୀ ଦେବତାଙ୍କର ସନ୍ତୋଷ ବିଧାନ କରିବା । ଆଉ ଅଧିକ କିଛି ଗ୍ରହଣ କଲେ ମୋତେ ପୁଣି ତାଙ୍କ ପାଖରେ ହାତ ପତେଇବାକୁ ପଡ଼ିପାରେ ।''

ପ୍ରଶ୍ନ-୫୨ : ଦୁଇ ସଖା ହସ ଖୁସି କରି ରାତିରେ ବିଶ୍ରାମ ନେଲେ । ରାତି ପାହି ସକାଳ ହେଲା । ସୁଦାମାଙ୍କ ଘର ଘରଣୀଙ୍କ କଥା ମନେ ପଡ଼ିଲା । ସେ ସ୍ନାନ ଆଦି କର୍ମ ଶେଷ କରି ରେଶମ ବସ୍ତ୍ର ଆଦି ନ ପିନ୍ଧି ନିଜର ପୁରୁଣା ବସ୍ତ୍ର ପିନ୍ଧି ଗାଁକୁ ବାହାରିଲେ । ରାତିଟିଏ ରହି ରାଜା ଘରୁ ବିଦାୟ ନେଲେ । ଭଗବାନ ଯାଚି କରି କିଛି ବି ଦେଲେ ନାହିଁ । ଲାଜରେ ସୁଦାମା ମଧ୍ୟ କିଛି ମାଗିଲେ ନାହିଁ(ବ୍ରୀଡ଼ିତୋ) । ରାଜ ଉଆସରେ ଥିବାବେଳେ ଯେଉଁ ସୁବର୍ଣ୍ଣ କଠଉ ଦୁଇଟି ପିନ୍ଧିଥିଲେ ଭଗବାନ ତାକୁ ମଧ୍ୟ ମାଗି ରଖିଲେ । ରୁକ୍ମିଣୀ ଆଦି ରାଣୀମାନେ ଆଶ୍ଚର୍ଯ୍ୟ ହୋଇ କାରଣ ପଚାରିଲେ । ଭଗବାନ ଓଲଟି କହିଲେ, 'ସେ ବ୍ରାହ୍ମଣ ଖାଲି ପାଦରେ ଚାଲିଲେ ମୋ ଦ୍ୱାରକା ରାଜ୍ୟ ପବିତ୍ର ହୋଇଯିବ ।' ଧନ୍ୟ ତୁମେ ଭଗବାନ, ଧନ୍ୟ ତୁମ ଭକ୍ତ ଓ ଧନ୍ୟ ତୁମର ଭକ୍ତି ମାର୍ଗ । ଗଲାବେଳେ ଠାକୁରଜୀ ମଧ୍ୟ କିଛି ବାଟ ପର୍ଯ୍ୟନ୍ତ ସାଙ୍ଗରେ ଗଲେ । ବାଟରୁ ବିଦାୟ ମାଗି ରାଜ ଉଆସକୁ ଫେରି ଆସିଲେ । ତଥାପି ସୁଦାମା ଘରକୁ ଫେରିବା ବେଳେ ଆନନ୍ଦ ସାଗରରେ ଉବୁଟୁବୁ ହେଉଥିଲେ (ନିବୃତଃ) କାହିଁକି ?

**ସ ଚ- ଅଲବ୍‌ଧ୍ୱା ଧନଂ କୃଷ୍ଣାତ୍ ନ ତୁ ଯାଚିତବାନ୍ ସ୍ୱୟମ୍ ।**
**ସ୍ୱ ଗୃହାନ୍ ବ୍ରୀଡ଼ିତୋଽଗଚ୍ଛତ୍ ମହତ୍ ଦର୍ଶନ ନିର୍ବୃତଃ ॥୧୪॥**

ଉ. ସୁଦାମା ନିଜ ପରମ ମିତ୍ର କୃଷ୍ଣଙ୍କଠାରୁ କିଛି ଧନ ଦରବ ପାଇ ନାହାନ୍ତି ସତ । ଭଗବାନ ମଧ୍ୟ ଯାଚି ନାହାନ୍ତି । ତଥାପି ସେଇ ନଦେବାକୁ ଭଗବାନଙ୍କ ଅଶେଷ କୃପା ବୋଲି ଭାବି ଭାବି ଆନନ୍ଦ ପ୍ରାପ୍ତ ହେଉଛନ୍ତି । ଭଗବତ ଦର୍ଶନ ତ ଭକ୍ତର ସର୍ବଶ୍ରେଷ୍ଠ ସମ୍ପତ୍ତି । ସେ ପୁଣି ଭଗବାନଙ୍କର ସ୍ପର୍ଶ, ଆଲିଙ୍ଗନ, ପାଦପୂଜା ଇତ୍ୟାଦି ସେବା ପାଇଛନ୍ତି । ଏହା କେବଳ ଗର୍ବର କଥା ନୁହେଁ ବରଂ ମହାନ ଗୌରବର କଥା । ସେ ମନେ ମନେ ବିଚାର କଲେ, 'କାଳେ ମୋତେ କିଛି ଧନ ସଂପତ୍ତି ଦେଇ ଦେଲେ ମୁଁ ଧନ ପାଇଁ ଗର୍ବ କରିବି । ତାଙ୍କ ଭଜନ କୀର୍ତ୍ତନ ସ୍ମରଣ ଭୁଲିଯିବି । ମୋର ପତନ ହୋଇଯିବ । ଏଥିପାଇଁ ସିନା ସେ କିଛି ଦେବାକୁ ଇଚ୍ଛା କରିନାହାନ୍ତି ।'

ପ୍ରଶ୍ନ-୫୩: ଘରକୁ ଫେରିବାବେଳେ ସୁଦାମା ପଥଶ୍ରାନ୍ତ ହୋଇ ବାଟରେ ଏକ ବୃକ୍ଷମୂଳରେ ବିଶ୍ରାମ ନେଇଛନ୍ତି । ନିଦ ଆସିଯାଇଛି ତାଙ୍କୁ । ପୁଣି ଉଠି ଦେଖନ୍ତି ଯେ ସଖା ଲୀଳାମୟ କୃଷ୍ଣ ତାଙ୍କୁ ଯୋଗ ବଳରେ ପୋର ବନ୍ଦର ସୁଦାମା ପୁରୀରେ ଆଣି ପହଞ୍ଚାଇ ଦେଇଛନ୍ତି । ରାତାରାତି କୁଆଡ଼େ ଉଭେଇଗଲା ତାଙ୍କ ବାସ ଖଣ୍ଡିକ । ତା ସ୍ଥାନରେ ଏ ସୁନ୍ଦର ରାଜ ପ୍ରାସାଦ । ଗାଁ ସାରା ସମସ୍ତଙ୍କର କୋଠାଘର, ନାନା ବିଳାସ ଦ୍ରବ୍ୟ, ମୂଲ୍ୟବାନ ସାଜ ସାମନାରେ ଭର୍ତ୍ତି ସମସ୍ତଙ୍କ ଘର ଦ୍ୱାର । ମନର ଅସ୍ଥିରତା ମଧ୍ୟରେ ସେ କାହାର ଦର୍ଶନ, ସ୍ପର୍ଶ ଆଦି ପାଇ ଆଶ୍ଚର୍ଯ୍ୟ ହେଲେ ?

**ଶ୍ରୀ ଶୁକ ଉବାଚ**

**ପତିବ୍ରତା ପତିଂ ଦୃଷ୍ଟ୍ୱା ପ୍ରେମ-ଉତ୍କଣ୍ଠା-ଅଶ୍ରୁଲୋଚନା ।**
**ମୀଲିତ-ଅକ୍ଷୋ-ଅନମତ୍ ବୁଦ୍ଧ୍ୟା ମନସା ପରିଷ୍ୱସଜେ ॥୨୬॥**

ଉ. ସୁଦାମା ବ୍ରାହ୍ମଣ ଦେଖିଲେ ତାଙ୍କ ପତ୍ନୀ ବସୁନ୍ଧରା ବାଜା ଗାଜା ଧରି ଅନେକ ଦାସ ଦାସୀଙ୍କ ସହିତ ତାଙ୍କୁ ସ୍ୱାଗତ କରୁଛନ୍ତି । ଆରତୀ ବନ୍ଦନା କରି ଘରକୁ ନେଉଛନ୍ତି । ଦେହରେ ନୂତନ ଯୌବନ । ପୁଣି ରତ୍ନ ଜଡ଼ିତ ବସ୍ତ୍ର ଅଳଙ୍କାରରେ ତାଙ୍କ ପତ୍ନୀ ସଜ୍ଜିତା । ସ୍ୱର୍ଗର କୌଣସି ଅପ୍‌ସରା ଭୁଲରେ ଆସି ପହଞ୍ଚିଯାଇଛନ୍ତି କି ଆଉ । ପତ୍ନୀ ବସୁନ୍ଧରା ଶ୍ରୀକୃଷ୍ଣଙ୍କ ଠାରୁ ପ୍ରାପ୍ତ ସୁଖ ସମୃଦ୍ଧିକୁ ପତି ସେବାରେ ଲଗାଇଲେ । ସୁଦାମା କିନ୍ତୁ ସେ ସବୁକୁ ଭଗବାନଙ୍କ ପରୀକ୍ଷା ବୋଲି ମନେ କଲେ । ଭୋଗ ଲାଳସା

ଶୂନ୍ୟ ହୋଇ ନିଜ ଗୃହରେ ରହି ବୈରାଗୀ ବୈଷ୍ଣବ ଜୀବନ କଟାଇଲେ । ଶେଷରେ ସପରିବାର ବିମାନରେ ବସି ବୈକୁଣ୍ଠ ଗମନ କରିଥିଲେ ।

ପ୍ରଶ୍ନ-୫୪: ଭକ୍ତ ଭଗବାନଙ୍କର ଏହି ଲୀଳା ଚରିତ ପବିତ୍ରାତି ପବିତ୍ର । ଏହି ଲୀଳା ଶ୍ରବଣ, କୀର୍ତ୍ତନ ଓ ସ୍ମରଣର ଫଳଶ୍ରୁତି କଅଣ ହୋଇପାରେ ?

**ଏତତ୍ ବ୍ରହ୍ମଣ୍ୟଦେବସ୍ୟ ଶ୍ରୁତ୍ୱା ବ୍ରହ୍ମଣ୍ୟତାଂ ନରଃ ।**
**ଲବ୍ଧୋ ଭାବୋ ଭଗବତି କର୍ମ ବନ୍ଧାତ୍ ବିମୁଚ୍ୟତେ ।।୪୧।।**

ଉ. ଅତି ଅଲୌକିକ ଫଳପ୍ରାପ୍ତି ହୁଏ ଏଥିରେ । ବ୍ରାହ୍ମଣଙ୍କ ପ୍ରତି ଭଗବାନଙ୍କର ଏ ପକ୍ଷପାତୀ ସ୍ୱଭାବ ବୁଝିଗଲା ପରେ ଜୀବ ବ୍ରାହ୍ମଣ ବୈଷ୍ଣବ ଜୀବନକୁ ଆପଣେଇବାକୁ ଆଗ୍ରହୀ ହେବ । ସେ ଭଗବାନଙ୍କ ଭାବ ରାଜ୍ୟରେ ସହଜରେ ପ୍ରବେଶ କରିପାରିବ । କର୍ମବନ୍ଧନରୁ କେବଳ ମୁକ୍ତ ହେବ ନାହିଁ, ବରଂ ଜନ୍ମ-ଜନ୍ମାନ୍ତରରେ ସତ୍‌କର୍ମ କରିବାକୁ ଭକ୍ତ ବତ୍ସଳ ଭଗବାନଙ୍କର ଜୟ ପତାକା ଟେକି ଧରିବ । ପାଞ୍ଚ ମୁକ୍ତିକୁ ମନେ କରିବ ତୁଚ୍ଛା କାଇଁଚ ମାଳି ।

# ୩୫. ରୌଦ୍ର ରସ ପ୍ରକରଣ ସାର
# (ଅଧ୍ୟାୟ ୭୩ମ-୮୧ମ)

ବୈଦିକ ସାହିତ୍ୟରେ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ତିନି ଠାକୁର ସମାନ ଭାବରେ ମାନ୍ୟତା ପ୍ରାପ୍ତ । ଶଙ୍କରଙ୍କ ଅନ୍ୟ ଏକ ନାମ ରୁଦ୍ର । ପୁଣି ସେ ଶିବ ଭାବରେ ମଧ୍ୟ ପୂଜା ପାଆନ୍ତି । ଭକ୍ତର ମଙ୍ଗଳ ବିଧାନ କରନ୍ତି ବୋଲି ସେ ଶଙ୍କର । ତଥାପି ସେ ଧ୍ୟାନସ୍ଥ ବେଳେ ପ୍ରଶାନ୍ତ ଭାବରେ ଅବସ୍ଥାନ କରିଥାନ୍ତି । ସଂସାରରେ କେଉଁଠାରେ ନାରାୟଣ ବିମୁଖ ଲୋକ ଦେଖିଲେ ବୁଝାଇ ସୁଝାଇ ବାଟକୁ ଅଣାନ୍ତି । ନଚେତ କ୍ରୋଧରେ ଅଗ୍ନିଶର୍ମା ହୋଇଯାଆନ୍ତି । ସେଇ ରୂପ ତାଙ୍କର ରୁଦ୍ର ରୂପ । ମହା ପ୍ରଳୟଙ୍କରୀ ରୁଦ୍ର ରୂପ । ତ୍ରିଶୂଳ ଧରି, ଡ଼ମ୍ବରୁ ବଜାଇ, ଜଟା ଫିଟେଇ ସେ ନାଚନ୍ତି । ସେ ଏକାଧାରରେ ଭୀମ (ଭୟଙ୍କର) ଓ କାନ୍ତ (ପ୍ରଶାନ୍ତ ଓ ସୁନ୍ଦର) । ତାଙ୍କର ସେଇ ଉଦ୍ଦଣ୍ଡ ନୃତ୍ୟକୁ ଶିବ ତାଣ୍ଡବ କୁହାଯାଏ । ଶିବ ଭକ୍ତଙ୍କ ସେ ନାଚରୁ ଯେଉଁ ନୈସର୍ଗିକ

ଆନନ୍ଦ ମିଳେ ତାହା ହିଁ ରୌଦ୍ର ରସ । ଏହି ରସ ସାଧକର ମନକୁ ଯେଉଁଭଳି ରସାଣିତ କରେ ତାର ହୃଦୟକୁ ମଧ ସେହିଭଳି ଆନ୍ଦୋଳିତ, ଆହ୍ଲାଦିତ କରିପାରେ ।

ଭାଗବତ ଗ୍ରନ୍ଥରେ ଏ ରସ ପରିବେଷଣର ଶ୍ରୀଗଣେଶ କରାଯାଇଛି ଯୁଧିଷ୍ଠିର ମହାରାଜାଙ୍କ ରାଜସୂୟ ମହାଯଜ୍ଞ ଅନୁଷ୍ଠାନ ପୂର୍ବରୁ ପ୍ରବଳ ପ୍ରତାପି ରାଜା ଜରାସନ୍ଧ ବଧ ପରେ ପରେ । ଜରାସନ୍ଧ ଥିଲେ ବିଶାଳ ମଗଧର ରାଜ୍ୟ ସମ୍ରାଟ୍ । ତାଙ୍କ ରାଜ୍ୟର ଅନ୍ୟ ଅଧୀନସ୍ଥ ରାଜାମାନେ ତାଙ୍କ ଆଜ୍ଞା ଅବଜ୍ଞା କରୁ କରୁ ତାଙ୍କ କାରାଗାରରେ ବନ୍ଦୀ ହୁଅନ୍ତି । ଜରାସନ୍ଧଙ୍କ ଆଦେଶ ହେଉ ପଛେ ବେଦ ବିରୋଧୀ । ଭଗବାନ କୃଷ୍ଣ ଜରାସନ୍ଧ ବଧ(ଉଦ୍ଧାର) ପରେ ପରିଦର୍ଶନ କରିଛନ୍ତି ତାଙ୍କର ବିରାଟ ବନ୍ଦୀଶାଳା । ରୌଦ୍ର ରସର ସମୁଦ୍ରରେ ଅଣ ନିଃଶ୍ୱାସୀ ହୋଇଥିବା ୨୦,୮୦୦ଭାରତୀୟ ରାଜାଙ୍କୁ ମୁକ୍ତି ମିଳିଛି । ସେମାନେ ସମସ୍ତେ ନିଜ ନିଜ ରାଜ୍ୟ ଫେରି ପାଇଛନ୍ତି ।

ପରବର୍ତ୍ତୀ ଅଧ୍ୟାୟରେ ଦେଖାଯାଇଛି ସେଇ ରାଜସୂୟ ଯଜ୍ଞରେ ଅଗ୍ରପୂଜ ଅଧିକାରରେ ତୀବ୍ର ବିବାଦ । ଶ୍ରୀକୃଷ୍ଣ ଦ୍ୱେଷୀ ଚେଦି ରାଜ୍ୟର ରାଜା ଶିଶୁପାଳ ଅନେକ ବାରଣ ସତ୍ତ୍ୱେ ନିନ୍ଦନୀୟ ଭାଷାରେ ରାଜ ସଭାରେ ଶ୍ରୀକୃଷ୍ଣଙ୍କୁ ଗାଳି ମନ୍ଦ ଶୁଣାଇଲେ ତାଙ୍କ ଉପସ୍ଥିତିରେ । ପ୍ରଭୁ ସଙ୍କର୍ଷଣ, ଭୀମ, ଅର୍ଜୁନ ଇତ୍ୟାଦିଙ୍କ ଉଗ୍ରରୂପ ଦେଖିବାକୁ ମିଳିଛି ଶିଶୁପାଳଙ୍କୁ ହତ୍ୟା କରିବାକୁ ଅଗ୍ରସର ହେବାବେଳେ । ଶହେ ଗାଳିକୁ ଅପେକ୍ଷା କରିଥିଲେ ଭଗବାନ । ଦେଖିଲେ ଶହେ ଗାଳି ପୂର୍ଣ୍ଣ କଲେଣି ଶିଶୁପାଳ । ସୁଦର୍ଶନ ଚକ୍ର ଏଥର ରୌଦ୍ରରସର ପରିପ୍ରକାଶ କରିଛନ୍ତି ପ୍ରଭୁଙ୍କ ନିର୍ଦ୍ଦେଶରେ । ତଥାପି ଶିଶୁପାଳଙ୍କୁ ସାଯୁଜ୍ୟ ମୁକ୍ତି ମଧ ମିଳିପାରିଛି । କାରଣ ଶ୍ରୀକୃଷ୍ଣ ସ୍ୱୟଂ ନାରାୟଣ!!

ରାଜସୂୟ ଯଜ୍ଞ ଶେଷରେ ଆଉ ଥରେ ରୌଦ୍ର ରସର ଅନୁଭବ ହୋଇଛି ଦୁର୍ଯ୍ୟୋଧନଙ୍କ ମାଧ୍ୟମରେ । ମୟ ଦାନବ ନିର୍ମିତ ଅଲୌକିକ କଳା କୌଶଳ ଦେଖି ବୁଦ୍ଧି ହଜି ଯାଇଛି ତାଙ୍କର । ଜଳକୁ ସ୍ଥଳ ଓ ସ୍ଥଳକୁ ଜଳ ମନେ କରି ଅପଦସ୍ତ ହୋଇଛନ୍ତି ରାଜମହଲର ଦେଖଣାହାରିଙ୍କ ସମ୍ମୁଖରେ । ଦ୍ରୌପଦୀ ଅନ୍ଧପୁତ୍ର ମଧ ଅନ୍ଧ ବୋଲି କହି ସେ କ୍ରୋଧ ଅଗ୍ନିରେ ଆହୁତି ଢ଼ାଳିଛନ୍ତି ।

ଜରାସନ୍ଧ ଓ ଶିଶୁପାଳଙ୍କ ଅନ୍ତରଙ୍ଗ ବନ୍ଧୁ ଥିଲେ ଶାଲ୍ୱ ରାଜା । ଦୁଇ ବନ୍ଧୁଙ୍କ ହତ୍ୟା ଖବର ଶୁଣି ସମୁଚିତ ପ୍ରତିଶୋଧ ପାଇଁ ସେ ଅଣ୍ଟା ଭିଡ଼ିଛନ୍ତି । ତପସ୍ୟା ଲବ୍ଧ ଅଦ୍ଭୁତ ବିମାନ ଧରି ଆକ୍ରମଣ କରିଛନ୍ତି ଦ୍ୱାରକା ନଗରୀକୁ । ସୁଦର୍ଶନ ଚକ୍ରଙ୍କୁ ପୁଣି ଏକ ସୁଯୋଗ ମିଳିଛି ଠାକୁରଙ୍କୀଙ୍କ ରୌଦ୍ର ରସ ପରିବେଷଣ ଲାଗି । ସୁଦର୍ଶନ

ଚକ୍ରରେ ମସ୍ତକ ହରାଇ ବସିଛନ୍ତି ଶାଲ୍ୱ ୨୭ଦିନର ଭୟଙ୍କର ଯୁଦ୍ଧ ପରେ ।

ପୂର୍ବ ଦୁଇ ଜନ୍ମର ହିରଣ୍ୟାକ୍ଷ ଓ କୁମ୍ଭକର୍ଣ୍ଣ ଏବେ ତୃତୀୟ ଜନ୍ମ ପାଇ ହୋଇଛନ୍ତି ଦନ୍ତବକ୍ର । ଅପେକ୍ଷା କରିଛନ୍ତି ଠାକୁରଜୀଙ୍କ ହସ୍ତରେ ମରି ଉଦ୍ଧାର ହେବେ । ସେ ଓ ତାଙ୍କ ଭାଇ ବିଦୁରଥ କ୍ରୋଧ ଓ ହିଂସାରେ ମାତି ଉଠିଛନ୍ତି । ଭଗବାନଙ୍କ ରୌଦ୍ର ରସ ତାର କାମ କରାମତି ଦେଖାଇଛି । ସେମାନେ ଏବେ ଅନ୍ତିମ ବିଶ୍ରାମ ପ୍ରାପ୍ତ ।

ଋଷି ରୋମହର୍ଷଣଙ୍କ ମୃତ୍ୟୁ ମଧ୍ୟ ଏକ ମନୋଜ୍ଞ ଉଦାହରଣ ଏହି ରୌଦ୍ର ରସର । ବଳରାମଜୀ ମହାଭାରତ ଯୁଦ୍ଧକୁ ଏଡ଼ାଇବାକୁ ଯାଇ ବାହାରିଛନ୍ତି ତୀର୍ଥ ଦର୍ଶନରେ । ନୈମିଷ୍ୟ ଅରଣ୍ୟରେ ପହଞ୍ଚି ଅଯଥା କ୍ରୋଧ କରି ବଧ କରିଛନ୍ତି ପୁରାଣ ସତ୍‌ସଙ୍ଗର ବକ୍ତା ରୋମହର୍ଷଣ ସୂତଙ୍କୁ । ଋଷି ମୁନିମାନେ ଭୀଷଣ କ୍ଷୁବ୍‌ଧ ହୋଇଛନ୍ତି ଭଗବାନ ସଙ୍କର୍ଷଣଙ୍କର ଏହି ଅଦ୍ଭୁତ, ଅବାଞ୍ଛିତ କାଣ୍ଡ ଦେଖି । ବଳରାମ ତୁରନ୍ତ ଶାନ୍ତ ହୋଇ ସମାଧାନ କରିଛନ୍ତି ସମସ୍ୟାର ବକ୍ତାଙ୍କ ପୁତ୍ରଙ୍କୁ ଦିବ୍ୟଜ୍ଞାନ ପ୍ରଦାନ କରି ।

ପ୍ରକରଣର ଶେଷ ଦୁଇ ଅଧ୍ୟାୟରେ ରୌଦ୍ର ରସର ବଢ଼ିଆ ପରିପାକ ହୋଇଛି । ଏଥିରେ କ୍ରୋଧ ପ୍ରକାଶ କରିଛନ୍ତି ଶ୍ରୀମନ୍ ନାରାୟଣଙ୍କ ବକ୍ଷ ବିହାରିଣୀ ମା'ମହାଲକ୍ଷ୍ମୀ । ସାନ୍ଦୀପନି ଆଶ୍ରମରେ ଥିବା ବେଳେ ଗୁରୁ ମାଆ ଦେଇଥିବା ବୁଟ ଭଜାକୁ କୃଷ୍ଣଙ୍କୁ ନ ଦେଇ ସମିଧା ସଂଗ୍ରହ ବେଳେ ଜଙ୍ଗଲରେ ସବୁ ନିଜେ ଆତ୍ମସାତ୍ କରିଦେଇଛନ୍ତି । ଭଗବାନ ତ ନିଦା ବିଷ୍ଣୁ । କିଛି ଭାବିନାହାନ୍ତି । କିଛି କରି ବି ନାହାନ୍ତି । ମହାଲକ୍ଷ୍ମୀ କି ଛାଡ଼ିବା ଲୋକ ? ତାଙ୍କ ରୌଦ୍ର ରସର ପରିପାକ ହୋଇଛି ସୁଦାମାଙ୍କ ସାରା ଗୃହସ୍ଥ ଜୀବନକୁ ଦାରିଦ୍ର୍ୟ କଷାଘାତରେ ଜର୍ଜରିତ କରି । ଶେଷରେ ଶ୍ରୀକୃଷ୍ଣଙ୍କ ଅହେତୁକୀ କୃପାରୁ ସେଇ ରସ ଧାରାରେ ପରିବର୍ତ୍ତନ ହୋଇଛି । ପରବର୍ତ୍ତୀ ପ୍ରକରଣର ଶାନ୍ତ ରସ ଆଡ଼କୁ ଏବେ ମୁହାଁଇଛି ଭଗବାନଙ୍କ ଅଲୌକିକ ମାନବ ଲୀଳା ଅଭିନୟ ।

# ପ୍ରକରଣ-୩୬ ଶାନ୍ତରସ

## (ଅଧ୍ୟାୟ ୮୨ମ-୯୦ମ)

## ଅଥ ୮୨ମ ଅଧ୍ୟାୟଃ

## (ସୂର୍ଯ୍ୟ ପରାଗ ବେଳେ କୁରୁକ୍ଷେତ୍ରରେ ଯଜ୍ଞାନୁଷ୍ଠାନ ଓ ଗୋପୀଗୋପାଳଙ୍କ ସହ ଯାଦବମାନଙ୍କ ମହାମିଳନ)

ପ୍ରଶ୍ନ-୫୫: ଏ ଘଟଣାଟି ପୂର୍ବ ବର୍ଣ୍ଣିତ ୬୪ ଓ ୬୫ଅଧ୍ୟାୟ ବର୍ଣ୍ଣିତ କଥା ଓ ମହାଭାରତ ଯୁଦ୍ଧ ପୂର୍ବର କାହାଣୀ । ଏକଦା କୃଷ୍ଣ ବଳରାମ ଦ୍ୱାରାବତୀ ପୁରରେ ଥିବାବେଳେ ଭାରତ ଭୂମିରେ ପୂର୍ଣ୍ଣଗ୍ରାସ ସୂର୍ଯ୍ୟ ପରାଗ ବେଳା ଉପସ୍ଥିତ ହେଲା । ଏହିଭଳି ବେଳା ପ୍ରାୟ କଳ୍ପାନ୍ତ ପ୍ରଳୟକାଳରେ ହୋଇଥାଏ । ଭାରତ ବର୍ଷର ପ୍ରତ୍ୟେକ ରାଜ୍ୟ ବା ଅଞ୍ଚଳ ଭଗବାନଙ୍କର ଲୀଳାକ୍ଷେତ୍ର ଏବଂ ପବିତ୍ର । ତଥାପି କେଉଁ ପବିତ୍ର କ୍ଷେତ୍ରକୁ ଠାକୁରଜୀ ବାଛିଲେ ଏହି ଅବସରରେ ସ୍ନାନ, ଦାନ, ପୁଣ୍ୟ, ତପସ୍ୟା ଆଦି କରି ଲାଭାନ୍ୱିତ(ଶ୍ରେୟୋ ବିଧିତ୍ସୟା) ହେବାକୁ ?

ଶ୍ରୀ ଶୁକ ଉବାଚ

**ତଂ ଜ୍ଞାତ୍ୱା ମନୁଜା ରାଜନ୍ ପୁରସ୍ତାତ୍ ଏବ ସର୍ବତଃ ।**
**ସମନ୍ତ ପଞ୍ଚକଂ କ୍ଷେତ୍ରଂ ଯଯୁଃ ଶ୍ରେୟୋ ବିଧିତ୍ସୟା ।।୨।।**

ଉ. ତ୍ରେତାଯୁଗ ଶେଷ ବେଳକୁ ଭାରତରେ କ୍ଷତ୍ରିୟ ରାଜାମାନେ ବୈଦିକ ଧର୍ମ ନ ମାନି ମନଇଛା ଶାସନ କଲେ । ବ୍ରାହ୍ମଣ ବୈଷ୍ଣବମାନେ ରାଜାଙ୍କ ଅତ୍ୟାଚାରରେ ତ୍ରାହି ତ୍ରାହି ଡ଼ାକିଲେ । ଫଳରେ ଭଗବାନ ପର୍ଶୁରାମ ଅବତାର ନେଲେ । ସାରା ଭାରତ ବୁଲି ବୁଲି ଏକୋଇଶ ଥର ପୃଥିବୀକୁ କ୍ଷତ୍ରିୟ ଶୂନ୍ୟ କଲେ । ଯୋଗ ବଳରେ ଫାର୍ଶା ଦ୍ୱାରା କଟାମୁଣ୍ଡକୁ ବର୍ତ୍ତମାନର ଦିଲ୍ଲୀ ନିକଟସ୍ଥ କୁରୁକ୍ଷେତ୍ର ପଡ଼ିଆରେ ଜମା କଲେ । ସେଥିରୁ ବାହାରୁଥିବା ତାଜା ରକ୍ତରୁ ପାଞ୍ଚଟି ରକ୍ତ ସରୋବର ସୃଷ୍ଟି ହେଲା ।

ନର ହତ୍ୟା ହିଂସା କର୍ମର ପ୍ରାୟଶ୍ଚିତ ପାଇଁ ଭଗବାନ ପର୍ଶୁରାମ ଗଭୀର ତପସ୍ୟା କଲେ ସେହି କ୍ଷେତ୍ରରେ । ତାଙ୍କ ଅସାମାନ୍ୟ ତପ ଶକ୍ତି ବଳରେ ସେ ସ୍ଥାନ ଏକ ସର୍ବମାନ୍ୟ ତୀର୍ଥ ଭାବରେ ଖ୍ୟାତି ଲାଭ କରିଥିଲା । ଏବେ ଶ୍ରୀକୃଷ୍ଣ ଯାଦବମାନଙ୍କୁ ସେହି ସ୍ଥାନକୁ ଯିବାକୁ ପରାମର୍ଶ ଦେଲେ । ଏ ତୀର୍ଥ ମାହାତ୍ମ୍ୟ ଜାଣିପାରି ସମଗ୍ର ଭାରତ ବର୍ଷରୁ ସକଳ ରାଜା, ମହାରାଜା ସେମାନଙ୍କୁ ପ୍ରଜାମାନଙ୍କ (ମନୁଜା) ସହ ସେଠାରେ ଭିଡ଼ ଜମାଇଲେ । ଏବେ କୁରୁକ୍ଷେତ୍ରର ସେହି ସ୍ଥାନର ନାମ ସମନ୍ତ ପଞ୍ଚକ ।

ପ୍ରଶ୍ନ-୫୬: ସେତେବେଳେ ଯାଦବମାନଙ୍କର ମଧ୍ୟ ଶତ୍ରୁ ଭୟ ଥାଏ । ଦ୍ୱାରକା ନଗରୀ ସୁରକ୍ଷା ଦାୟିତ୍ୱ ଅନିରୁଦ୍ଧଙ୍କ ସହିତ ସୁଚନ୍ଦ୍ର, ଶୁକ, ସାରଣ ଓ କୃତବର୍ମାଙ୍କୁ ଦିଆଗଲା । ଯାଦବମାନେ କୃଷ୍ଣ ବଳରାମଙ୍କୁ ଆଗୁସାର କରି ସକୁଟୁମ୍ବେ ସଦଳବଳେ ଅଶ୍ୱ, ହସ୍ତୀ, ରଥ, ଶକଟ ଆଦିରେ ବସି କୁରୁକ୍ଷେତ୍ର ଯଜ୍ଞ ସ୍ଥଳରେ ପହଞ୍ଚିଗଲେ । ସେଠାରେ ସୁନ୍ଦର ଶିବିର ବ୍ୟବସ୍ଥା ହୋଇଥିଲା ସେମାନଙ୍କ ଲାଗି ପୁଣି ଅନ୍ୟାନ୍ୟ ଅତିଥି ରାଜା, ପ୍ରଜାଙ୍କ ଲାଗି । ସ୍ୱୟଂ ଭଗବାନଙ୍କ ପିତା ବସୁଦେବ ଏ ମହାନ ଯଜ୍ଞ କରୁଛନ୍ତି । ବିଶ୍ୱକର୍ମା, ମହାଲକ୍ଷ୍ମୀ, ଗାୟତ୍ରୀ ଏବଂ ଅମ୍ବିକା ସମସ୍ତଙ୍କ ସହଯୋଗରେ ଯଜ୍ଞ କାର୍ଯ୍ୟ ଆଗେଇ ଚାଲିଲା । ଯାଦବମାନେ କ'ଣ କ'ଣ ଶୁଭ କର୍ମ କଲେ ସେ ଯଜ୍ଞରେ ?

**ତତ୍ର ସ୍ନାତ୍ୱା ମହାଭାଗା ଉପୋଷ୍ୟ ସୁସମାହିତାଃ ।**
**ବ୍ରାହ୍ମଣେଭ୍ୟୋ ଦଦୁଃ ଧେନୁଃ ବାସଃ ସ୍ରକ୍ ରୁକ୍ମମାଳିନୀଃ ॥୯॥**

ଉ. ସମନ୍ତପଞ୍ଚକର ପଞ୍ଚସରୋବରରେ ଯାଦବମନେ ଉପବାସ (ଉପୋଷ୍ୟ) କରି ମନରେ ଇଷ୍ଟ ଧ୍ୟାନପୂର୍ବକ (ସୁସମାହିତାଃ) ପବିତ୍ର ସ୍ନାନ କଲେ । ବ୍ରାହ୍ମଣମାନଙ୍କୁ ଅନ୍ନ, ବସ୍ତ୍ରଦାନ ଦେଲେ । ବାଛୁରୀ ସହିତ ଧେନୁକୁ ଫୁଲମାଳ ଓ ସୁବର୍ଣ୍ଣହାର ପିନ୍ଧାଇ ସତ୍‌ପାତ୍ର ହସ୍ତରେ ଦାନ ଦେଲେ । ସମସ୍ତଙ୍କ ପାନ ଭୋଜନରେ ତୃପ୍ତ କଲେ ।

ମତ୍ସ୍ୟ, ଉଶୀନର, କୋଶଳ, ବିଦର୍ଭ, କୁରୁ, କାମ୍ବୋଜ, ମଦ୍ର ଓ କୈକେୟ ଆଦି ଅନେକ ଦେଶର ରାଜା, ମହାରାଜା, ପ୍ରଜାଗଣଙ୍କ ଦର୍ଶନ, ସ୍ପର୍ଶ, ଆଲିଙ୍ଗନ ପୂର୍ବକ ମହାମିଳନ ଯୋଗୁ ଏହି କୁରୁକ୍ଷେତ୍ର ଯଜ୍ଞ ଏକ ମହୋତ୍ସବରେ ପରିଣତ ହେଲା । ସମସ୍ତଙ୍କ ମୁଖରେ କେବଳ ଭଗବାନ କୃଷ୍ଣଙ୍କ ପ୍ରଶଂସା । ପୁଣି ଦେବକୀ, ବସୁଦେବ, ଉଗ୍ରସେନ, ଉଦ୍ଧବ, ଅକ୍ରୂର ଆଦିଙ୍କର ଭାଗ୍ୟର ପ୍ରଶଂସା କଲେ ସମସ୍ତେ ।

ପ୍ରଶ୍ନ-୫୭: କୁନ୍ତୀଙ୍କ ସହ ବସୁଦେବ ଦେବକୀଙ୍କ ମିଳନ ଅତ୍ୟନ୍ତ ମାର୍ମିକ ମନେ ହେଲା । ଭୀଷ୍ମ, ଦ୍ରୋଣ, ଧୃତରାଷ୍ଟ୍ର, ଗାନ୍ଧାରୀ, ଦୁର୍ଯ୍ୟୋଧନ ଆଦି ଶତ ଭ୍ରାତା,

ପଞ୍ଚ ପାଣ୍ଡବ ଓ ସେମାନଙ୍କ ପତ୍ନୀ, ବିରାଟ, ଭୀଷ୍ମକ, ଶଲ୍ୟ, ଦମଘୋଷ, ସୁଶର୍ମା ଓ ବାହ୍ଲିକ ଆଦି ସହସ୍ର ସହସ୍ର ରାଜା ମହାରାଜାଙ୍କ ରହିବା ଖାଇବା ଆଦି ସକଳ ବ୍ୟବସ୍ଥା କରିଛନ୍ତି ଭଗବାନ । ଅତ୍ୟାଚାରୀ କଂସଙ୍କର ପିତା ଦ୍ୱାରକାର ରାଜା ଉଗ୍ରସେନଙ୍କର (ଭୋଜପତେଃ) କାହିଁକି ଜୟ ଜୟକାର କଲେ ସମସ୍ତେ ?

**ଅହୋ ଭୋଜପତେ ଯୂୟଂ ଜନ୍ମଭାଜୋ ନୃଣାଂଇହ ।**
**ଯତ୍ ପଶ୍ୟଥ-ଅସକୃତ୍ କୃଷ୍ଣଂ ଦୁର୍ଦ୍ଦର୍ଶଂ ଅପି ଯୋଗିନାମ୍ ॥୨୮॥**

ଉ. ହଜାର ହଜାର ବର୍ଷ ଧ୍ୟାନ ତପସ୍ୟା କରି କରି ଯେଉଁ ନାରାୟଣ ପରମାତ୍ମାଙ୍କ ଦର୍ଶନର ଏକ ଝଲକ ମଧ୍ୟ ପାଇବା ସମ୍ଭବ ହୁଏନାହିଁ ଉଗ୍ରସେନ ତାଙ୍କୁ ଜଣେ ପ୍ରଜା ରୂପେ ପାଇ ନିଜ ଜନ୍ମ ସଫଳ (ଜନ୍ମଭାଜୋ) କରିପାରିଛନ୍ତି । ଏହା କ'ଣ କମ ଗୌରବ କଥା ? ଉଗ୍ରସେନ ସଦା ସର୍ବଦା ତାଙ୍କ ଦର୍ଶନ (ପଶ୍ୟଥ) ଏବଂ ସାନ୍ନିଧ ବାରମ୍ବାର (ଅସକୃତ୍) ପ୍ରାପ୍ତ ହେଉଛନ୍ତି ।

ପ୍ରଶ୍ନ-୫୮: ସବୁଠାରୁ ଉଲ୍ଲେଖନୀୟ ଘଟଣାଟି ହେଲା ନନ୍ଦ ଯଶୋଦାଙ୍କ ସହିତ ବ୍ରଜମଣ୍ଡଳର ଗୋପୀ ଗୋପାଳମାନଙ୍କ ଏହି ମହାଯଜ୍ଞରେ ଯୋଗଦାନ । ସେମାନଙ୍କ ଦର୍ଶନରେ ବୃଷ୍ଣିବଂଶଜମାନେ ଅତୀବ ଖୁସି ହୋଇଗଲେ । ଶେଷରେ ନନ୍ଦ ବସୁଦେବଙ୍କ ଭେଟ ବେଳେ କିଭଳି ଆନନ୍ଦ ସମୁଦ୍ର ଉଛୁଳି ଉଠିଲା ?

**ବସୁଦେବଃ ପରିଷ୍ୱଜ୍ୟ ସଂପ୍ରୀତଃ ପ୍ରେମ ବିହ୍ୱଳଃ ।**
**ସ୍ମରନ୍ କଂସ କୃତାନ୍ କ୍ଲେଶାନ୍ ପୁତ୍ରନ୍ୟାସଂ ଚ ଗୋକୁଳେ ॥୩୩॥**

ଉ. ନନ୍ଦଜୀଙ୍କୁ ଗାଢ଼ ଆଲିଙ୍ଗନ କଲେ (ପରିଷ୍ୱଜ୍ୟ) ବସୁଦେବ । ପ୍ରସନ୍ନତାରେ ଭରିଗଲା ଦୁହିଁଙ୍କ ହୃଦୟ । ବସୁଦେବଙ୍କର ସ୍ମରଣ ହେଲା କଂସ ଭୟରେ, ବନ୍ଦୀଶାଳାରେ ଆବଦ୍ଧ ହେବା ବେଳେ ଏହି କୃଷ୍ଣଙ୍କ ଆଦେଶରେ ସେ ନିଶାର୍ଦ୍ଧରେ ବଢ଼ନ୍ତା ଯମୁନା ନଦୀର ଜଳସ୍ରୋତ ପାର ହୋଇଥିଲେ । ଗୋକୁଳରେ ପୁତ୍ରକୁ ଯଶେଦାଙ୍କ କୋଳର ନିର୍ଭୟରେ ଶୁଆଇ ଦେଇ ଆସି ବନ୍ଦୀ ଜୀବନ ଆଦରି ନେଲେ ଦୀର୍ଘ ନିଃଶ୍ୱାସଟିଏ ପକାଇ । ଭାବିଥିଲେ ଏବେ ତାଙ୍କ ପୁତ୍ର ନନ୍ଦ ଭବନରେ ସୁରକ୍ଷିତ ।

ପ୍ରଶ୍ନ-୫୯: ଭଗବାନ ସ୍ୱୟଂ ସଚ୍ଚିଦାନନ୍ଦ, ଆନନ୍ଦକନ୍ଦ । ଭାଇ ବଳରାମଙ୍କୁ ଧରି ସେ ନନ୍ଦ ଯଶୋଦାଙ୍କ ସହ ମିଶିବା ବେଳେ କିଭଳି ଆନନ୍ଦିତ ହୋଇଥିଲେ ?

**କୃଷ୍ଣରାମୌ ପରିଷ୍ୱଜ୍ୟ ପିତରୌ ଅଭିବନ୍ଦ୍ୟ ଚ ।**
**ନ କିଞ୍ଚିତ୍ ମୋଚତୁଃ ପ୍ରେମ୍ଣା ସାଶ୍ରୁକଣ୍ଠୌ କୁରୁଦ୍‌ବହ ॥୩୪॥**

ଉ. ଦୁଇ ଭାଇ ପିତାମାତାଙ୍କୁ (ପିତରୌ) ନମସ୍କାର କଲେ(ଅଭିବନ୍ଦ୍ୟ) ଶୁକଦେବଜୀ କହିଲେ, 'ହେ ରାଜନ (କୁରୁଦବହ) ସେମାନେ ପ୍ରେମରେ ଏଭଳି ଗଦ୍‌ଗଦ୍ ହୋଇଗଲେ ଯେ ତାଙ୍କ ପାଟିରୁ କଥା ବାହାରିଲା ନାହିଁ (କିଞ୍ଚିତ୍ ମୋଚତୁଃ) ଓ ଦୁହିଁଙ୍କର ନେତ୍ର ଆନନ୍ଦାଶ୍ରୁରେ ଭରିଗଲା ।'

ପ୍ରଶ୍ନ-୬୦(କ): ମା'ରୋହିଣୀ ଓ ଦେବକୀଙ୍କର ନନ୍ଦରାଣୀ ଯଶୋଦାଙ୍କ ମିଳନ ମଧ୍ୟ ଅପୂର୍ବ ରୋଚକ ମନେ ହେଉଥିଲା । ସହଜେ ତ ଭକ୍ତ ଭଗବାନଙ୍କ ମିଳନ ସର୍ବଦା ମଧୁର ବା ଭବ୍ୟ ହୁଏ । ଗୋପ ଲଳନାମାନେ ତ ଆଉ ସାଧାରଣ ଶ୍ରେଣୀର ଭକ୍ତ ନଥିଲେ । ସେମାନଙ୍କ ସହିତ ଗୋବିନ୍ଦଙ୍କ ମିଳନ କେତେ ମାତ୍ରାରେ ମଧୁର ଓ ଦର୍ଶନୀୟ ହୋଇଥିଲା ?

**ଭଗବାନ୍ ତାଃ ତଥା ଭୂତା ବିବିକ୍ତ ଉପସଙ୍ଗତଃ ।**
**ଆଶ୍ଳିଷ୍ୟ-ଅନାମୟଂ ପୃଷ୍ଟ୍ୱା ପ୍ରହସନ୍ ଇଦଂ ଅବ୍ରବୀତ୍ ।।୪୦।।**

ଉ. ଗୋପୀମାନେ (ତାଃ) ଲୋକ ଲୋଚନରୁ ଟିକିଏ ଦୂରରେ ବିବିକ୍ତ କୃଷ୍ଣ ଭାବ ମଗ୍ନ (ତଥା-ଭୂତା) ଥିବା ସମୟରେ ତାଙ୍କ ପାଖରେ ପହଞ୍ଚିଗଲେ (ଉପସଙ୍ଗତଃ) । ସଂପୂର୍ଣ୍ଣ ମର୍ଯ୍ୟାଦାପୂର୍ଣ୍ଣ ଭାବରେ (ଅନାମୟଂ) ସେମାନେ ଶ୍ରୀକୃଷ୍ଣଙ୍କୁ ମାନସିକ ଆଲିଙ୍ଗନ କଲେ । ଠାକୁରଜୀ ଦରହାସ ଯୁକ୍ତ ବଦନରେ ସେମାନଙ୍କର କୁଶଳ ମଙ୍ଗଳ ପଚାରି ବସିଲେ ।

ପ୍ରଶ୍ନ-୬୦(ଖ):ଭଗବାନ କହିଲେ, 'ହେ ଗୋପୀଗଣ, ମୋର ଅନ୍ୟ ଭକ୍ତମାନଙ୍କର ଶତ୍ରୁ କ୍ଳେଶ ଦୂର କରିବାକୁ ତୁମମାନଙ୍କ ଠାରୁ ଏତେଦିନ ଧରି ଦୂରରେ ରହିଗଲି । ତୁମେମାନେ କିଛି ମନେ କରି ନାହିଁ ତ ?' ପୁଣି ସଫେଇ ଦେବାକୁ ଯାଇ କହିଥିଲେ ଯେ କାହାର କାହା ସହିତ କେତେବେଳେ ମିଳନ ହେବ ପୁଣି ବିଚ୍ଛେଦ ହେବ ଏ ସବୁ ବିଧି (ବ୍ରହ୍ମା)ଙ୍କର ବିଧାନ । କାଳେ ଗୋପୀମାନେ କଥାଟିକୁ ଠିକ୍ ଠିକ୍ ବୁଝି ପାରିବେନି ସେଥିପାଇଁ କେଉଁ ସୁନ୍ଦର ଦୃଷ୍ଟାନ୍ତଟିଏ ରଖିଥିଲେ ସେତେବେଳେ ?

**ବାୟୁଃ ଯଥା ଘନ-ଅନୀକଂ ତୃଣଂ ତୂଳଂ ରଜାଂସି ଚ ।**
**ସଂଯୋଜ୍ୟ-ଆକ୍ଷିପତେ ଭୂୟଃ ତଥା ଭୂତାନି ଭୂତ କୃତ୍ ।।୪୩।।**

ଉ. ଶ୍ରୀ ଗୋବିନ୍ଦ କହିଲେ, ''ହେ ଗୋପାଙ୍ଗନାଗଣ, ବାୟୁ ଆକାଶରେ ବହିଲେ ମେଘମାନଙ୍କୁ ଏକାଠି କରେ ପୁଣି ଥରେ ବିଚ୍ଛେଦ କରିବାକୁ । ସେଇ ବାୟୁ

ପୃଥିବୀ ପୃଷ୍ଠରେ ବହିଥାଏ ଘାସ, କୁଟା, କାଠି (ତୃଣଂ)କୁ, ତୂଳା ଓ ଧୂଳି କଣାମାନଙ୍କୁ ଏକାଠି କରିବାକୁ ଶେଷରେ ପୁଣି ବିଚ୍ଛେଦ କରିବାକୁ । ସଂକ୍ଷେପରେ ସୃଷ୍ଟିର ନିମୟରେ ମିଳନ ସ୍ଥାୟୀ ନୁହେଁ ବରଂ ଅସ୍ଥାୟୀ । ମାତ୍ର ବିରହ ଅସ୍ଥାୟୀ ନୁହେଁ ସ୍ଥାୟୀ ।

କୌଣସି ଜୀବ ମୋତେ ଭକ୍ତି କଲେ ଆଉ ମରଣକୁ କିମ୍ବା ବିଚ୍ଛେଦକୁ ଡ଼ରେ ନାହିଁ । ତୁମେମାନେ ଏତେ ସୌଭାଗ୍ୟଶାଳିନୀ ଯେ ତୁମର ଐକାନ୍ତିକ, ନିଷ୍କାମ, ନିରନ୍ତର ଭକ୍ତି ପ୍ରବାହରେ ମୋତେ ନିତ୍ୟ ପ୍ରାପ୍ତ ହୋଇଛ । ତୁମର ପୁଣି ବିରହ ବିଚ୍ଛେଦ ଅବସ୍ଥା କ'ଣ ?''

ପ୍ରଶ୍ନ-୬୧ : ଗୋପୀ-ଗୋବିନ୍ଦଙ୍କ ବିରହ ବିଚ୍ଛେଦ ଅସମ୍ଭବ ବୋଲି କେଉଁ ଉଦାହରଣ ମାଧ୍ୟମରେ ପୁଣି ଥରେ ଗୋବିନ୍ଦ ବୁଝାଇଥିଲେ ସେ ପରିସ୍ଥିତିରେ ?

**ଅହଂ ହି ସର୍ବଭୂତାନାଂ ଆଦିଃ ଅନ୍ତୋଽନ୍ତରଂ ବହିଃ ।**
**ଭୌତିକାନାଂ ଯଥା ଖଂ ବା ଭୂଃ ବାୟୁଃ ଜ୍ୟୋତିଃ ଅଙ୍ଗନାଃ ॥୪୫॥**

ଉ. ନିଖିଳ ବିଶ୍ୱାତ୍ମା ଶ୍ରୀକୃଷ୍ଣ ତତ୍ତ୍ୱ କଥାଟିକୁ ପ୍ରାଞ୍ଜଳ କରିବାକୁ ଯାଇ କହିଲେ, 'ହେ ମୋର ପ୍ରିୟଭକ୍ତଗଣ ( ଅଙ୍ଗନାଃ) । ଯେଉଁଭଳି କ୍ଷିତି, ଅପ୍, ତେଜ, ବାୟୁ ଓ ଆକାଶ ସୃଷ୍ଟିର ସକଳ ଜୀବ ଦେହ ଓ ବସ୍ତୁ ମଧ୍ୟରେ ଥାଆନ୍ତି ପୁଣି ସେମାନଙ୍କ ବାହାରେ ମଧ୍ୟ ପରିବ୍ୟାପ୍ତ ରହିଥାଆନ୍ତି ଠିକ୍ ସେହିଭଳି ମୁଁ ସର୍ବାତ୍ମା ହୋଇଥିବାରୁ ସେମାନଙ୍କ ଭିତରେ ଆତ୍ମା ରୂପରେ ବିଦ୍ୟମାନ ଓ ବାହାରେ ପରମାତ୍ମା ନାମରେ ସଦା ବିଦ୍ୟମାନ । ଏ ହେଲା ମୋର ଭୂଗୋଳ ପାଠ । ସୃଷ୍ଟିର ସକଳ ଜୀବ ସୃଷ୍ଟିହେବା ବା ଦୃଶ୍ୟ ହେବା ପୂର୍ବରୁ ମୁଁ ଥାଏ । ସେମାନେ ବିଲୟ ବା ଅଦୃଶ୍ୟ ହେବା ପରେ ମଧ୍ୟ ମୁଁ ରହିଥାଏ । ସୁତରାଂ ମୋ ସହିତ ତୁମମାନଙ୍କର ବିଚ୍ଛେଦ ହେବ କିପରି ?''

ପ୍ରଶ୍ନ-୬୨ : ଦୃଶ୍ୟମାନ ସୃଷ୍ଟିର ସକଳ ଜଡ଼ ବସ୍ତୁ ଓ ଚେତନ ଜୀବ ଅନ୍ତର ବାହାରେ ପରିବ୍ୟାପ୍ତ (ତତଃ) ଶ୍ରୀକୃଷ୍ଣ ସ୍ୱୟଂ ବିଦ୍ୟମାନ । ଜୀବମାନେ ସମସ୍ତେ ମାୟାଧୀନ ହେବା ବେଳେ ସେ କିପରି ମାୟାର ଊର୍ଦ୍ଧ୍ୱରେ ଅବସ୍ଥାନ କରୁଛନ୍ତି ?

**ଏବଂ ହି ଏତାନି ଭୂତାନି ଭୂତେଷ୍ୱ-ଆତ୍ମା-ଆତ୍ମନା ତତଃ ।**
**ଉଭୟଂ ମୟି-ଅଥ ପରେ ପଶ୍ୟତ-ଆଭାତଂ-ଅକ୍ଷରେ ॥୪୬॥**

ଉ. ଅତ୍ୟନ୍ତ ସଂକ୍ଷେପରେ ବୁଝାଇବାକୁ ଯାଇ ଗୋବିନ୍ଦ କହିଲେ, 'ହେ ଗୋପାଙ୍ଗନାଗଣ ! ମୋତେ ତୁମେ ଜୀବ କୋଟିକ (ଅକ୍ଷରେ) ଭାବନା କରନାହିଁ ।

ଦେଖ (ପଶ୍ୟତ) ମୁଁ ଏକ ସମୟରେ ବିଶ୍ୱରୂପ ଏବଂ ବିଶ୍ୱାତୀତ ମଧ୍ୟ । ତୁମେ ଯେଉଁ ମାୟାର ପ୍ରାସଙ୍ଗିକତା ଚିନ୍ତନ କରୁଛ ଯେ ମାୟା ସର୍ବଦା ଜୀବକୁ ଅଧୀନସ୍ଥ କରି ରଖୁଛି ସେ ମୋର ଅଂଶ ବା ଶକ୍ତି ବିଶେଷ । ସେ ମୋର ଅଧୀନସ୍ଥ । ତାର ଏକମାତ୍ର କର୍ମ ହେଲା ଯେ ଜୀବ ମୋର ବିମୁଖ ହେଲେ ତାକୁ ଅଳ୍ପ ବେଶୀ ଦଣ୍ଡ ବିଧାନ କରାଇ ମୋର ଉନ୍ମୁଖ କରାଇବା । ବିଷୟ ଭୋଗ ଲୋଲୁପ ଜୀବ ଅବଶ୍ୟ ମାୟାଧୀନ । ଭଗବତ ପ୍ରେମ ଲୋଲୁପ ସାଧୁ, ମହାପୁରୁଷ ମାୟାତୀତ ହେବା ବେଳେ ମୁଁ କିନ୍ତୁ ଉଭୟରୁ ଅତୀତ ମାୟାଧୀଶ ।' ଜୀବ ଓ ମାୟା ଉଭୟେ ଶକ୍ତି । ଭଗବାନ କିନ୍ତୁ ଉଭୟଙ୍କର ଶାସକ । ସୁତରାଂ ଶ୍ରୀକୃଷ୍ଣ ମାୟାଧୀଶ । ମାୟାଧୀନ କିମ୍ବା ମାୟାତୀତ ମହାପୁରୁଷ ନୁହନ୍ତି ।

ପ୍ରଶ୍ନ-୬୩: କୃଷ୍ଣପ୍ରେମ ମନ୍ଦିରର ଧ୍ୱଜା ରୂପୀ ଗୋପାଙ୍ଗନାମାନେ ଏ ପର୍ଯ୍ୟନ୍ତ କାହାରିଠାରୁ ଅଧ୍ୟାତ୍ମବିଦ୍ୟା ଶିକ୍ଷା କରି ନଥିଲେ । ଏବେ ଜଗଦ୍‌ଗୁରୁ ଶ୍ରୀକୃଷ୍ଣଙ୍କଠାରୁ ତତ୍ତ୍ୱଜ୍ଞାନ ଲାଭ କରିବା ପରେ କି ରୂପେ ଲାଭବାନ ହୋଇପାରିଲେ ?

**ଅଧ୍ୟାତ୍ମ୍ୟ ଶିକ୍ଷୟା ଗୋପ୍ୟ ଏବଂ କୃଷ୍ଣେନ ଶିକ୍ଷିତାଃ ।**
**ତତ୍ ଅନୁସ୍ମରଣ ଧ୍ୱସ୍ତ ଜୀବକୋଶାଃ ତଂ ଅଧ୍ୟଗନ୍ ।।୪୭।।**

ଉ. ମାୟାର ପାଞ୍ଚ ବଳୟ ଅବିଦ୍ୟା(ମୁଁ ଦେହ), ଅସ୍ମିତା (ମୋର ଦେହ), ରାଗ (ବିଷୟ ଲୋଲୁପତା), ଦ୍ୱେଷ (ବିଷୟ ସୁଖ ଅପ୍ରାପ୍ତିରେ କ୍ରୋଧ) ଓ ଅଭିନିବେଶ (ବିଚ୍ଛେଦ ଭୟ ବା ମୃତ୍ୟୁ ଭୟ)କୁ ଆବରଣାତ୍ମିକା ମାୟା ବା ଅବିଦ୍ୟାମାୟା କୁହାଯାଏ । ସଦ୍‌ଗୁରୁଙ୍କ ତତ୍ତ୍ୱଜ୍ଞାନ ଦ୍ୱାରା ଏହା ଦୂରୀଭୂତ ହୋଇଥାଏ । ଏଠାରେ ଗୋପୀମାନଙ୍କର ଯେଉଁ ସୂକ୍ଷ୍ମ ଅହଂକାର ମାୟାରୂପରେ ଥିଲା ସେହି ଆବରଣ ଭଙ୍ଗ(ଧ୍ୱସ୍ତ ଜୀବ କୋଶାଃ) ହୋଇଗଲା । ସେମାନଙ୍କ ମନରେ କୃଷ୍ଣ ପ୍ରେମର ସ୍ମରଣ ଅବାରିତ ଗତିରେ ପ୍ରବାହିତ ହେଲା (ଅନୁସ୍ମରଣ) । ଏବେ ସେମାନେ କୃଷ୍ଣ ତାଙ୍କର କିଏ ବୋଲି ସଂପୂର୍ଣ୍ଣ ପରିଚୟ ପ୍ରାପ୍ତ ହେଲେ (ଅଧ୍ୟଗନ୍) ।

ଗୋପୀମାନେ ବୁଝିଗଲେ ଗୋବିନ୍ଦ କେବଳ ଆମର ପ୍ରେମିକ ନୁହନ୍ତି । ସେ ଆମର ଅସଲି ଗୁରୁ, ପତି, ଗତି, ପ୍ରାଣ ଓ ସର୍ବସ୍ୱ ।

# ଅଥ ୮୩ମ ଅଧ୍ୟାୟଃ

## (କୃଷ୍ଣପତ୍ନୀମାନଙ୍କ ସହ ଯାଜ୍ଞସେନୀ ଦ୍ରୌପଦୀଙ୍କ ଭେଟ)

ପ୍ରଶ୍ନ-୬୪ : ଗୋଟେ ପଟେ ଯାଦବ ଓ କୁରୁବଂଶୀ ପୁରୁଷମାନଙ୍କ କଥାବାର୍ତ୍ତା (କୃଷ୍ଣ କୈନ୍ଦ୍ରିକ) ଚାଲିଥିବାବେଳେ ଅନ୍ୟପଟେ ମହିଳାମାନଙ୍କର ପୁଣି ଗୋଟେ ଆସର ଜମିଗଲା । ପ୍ରସଙ୍ଗ ସେଇ ଗୋଟିଏ ଅଲୌକିକ କୃଷ୍ଣ ଲୀଳାର ଶ୍ରବଣ କୀର୍ତ୍ତନ । ସେଠାରେ ନେତାଗିରି ଦେଖାଇଲେ ପାଣ୍ଡବ ମହାରାଣୀ ଦ୍ରୌପଦୀ କେଉଁ ବିଷୟରେ କାହାକୁ କି କି ପ୍ରଶ୍ନ ପଚାରି ?

ଦ୍ରୌପଦୀ ଉବାଚ

**ହେ ବୈଦର୍ଭି-ଅଚ୍ୟୁତୋ ଭଦ୍ରେ  ହେ ଜାମ୍ବବତି କୌଶଳେ ।**
**ହେ ସତ୍ୟଭାମେ କାଳିନ୍ଦି  ଶୈବ୍ୟେ ରୋହିଣି ଲକ୍ଷ୍ମଣେ ॥୬॥**

ଉ. ସେ ଗୋଟି ଗୋଟି କରି ଅଷ୍ଟପାଟରାଣୀଙ୍କ ନାମ ରୁକ୍ମିଣୀ(ବୈଦର୍ଭୀ) ଭଦ୍ରା, ଜାମ୍ବବତୀ, ନାଗ୍ନଜିତୀ(କୌଶଳେ) ସତ୍ୟଭାମା, କାଳିନ୍ଦୀ, ମିତ୍ରବିନ୍ଦ୍ୟା(ଶୈବ୍ୟା) ଓ ଲକ୍ଷ୍ମଣାଙ୍କ ନାମ ଧରିଲେ । ଅନ୍ୟ ଷୋହଳ ହଜାର ଶହେ ପତ୍ନୀଙ୍କ ପକ୍ଷରୁ ରୋହିଣୀଙ୍କୁ ପ୍ରଶ୍ନ କଲେ, ‘‘ସେମାନେ କେଉଁ କେଉଁ ଗୁଣ ଦେଖି ଶ୍ରୀକୃଷ୍ଣଙ୍କୁ ବରଣ କଲେ ? କେତେ ତପସ୍ୟା କରିଥିଲେ ସେମାନେ ? ଅଥବା ସେମାନଙ୍କର କେଉଁ କେଉଁ ଗୁଣ ଥିବାରୁ ଶ୍ରୀକୃଷ୍ଣ ସେମାନଙ୍କୁ ଘରଣୀ ପଦରେ ନିଯୁକ୍ତି ଦେଲେ ?

ଦ୍ରୌପଦୀ ଜାଣିବାକୁ ଚାହୁଁଥିଲେ ମୁଁ ମଧ୍ୟ ଶ୍ରୀକୃଷ୍ଣଙ୍କ ଘରଣୀ ହେବାକୁ ଚାହିଁଥିଲି । ମୋ, ପିତା ଦ୍ରୁପଦ ମଧ୍ୟ ପ୍ରସ୍ତାବ ବାଢ଼ିଥିଲେ ତାଙ୍କ ସମ୍ମୁଖରେ । ତେବେ ମୋଠାରେ କ’ଣ ଉଣା ଦେଖି ମୋତେ ବିବାହ ପାଇଁ ଠାକୁରଜୀ ନିଜେ ଅସମ୍ମତ ହେଲେ ଏବଂ କାହିଁକି ? ପୁଣି ନିଜ ସଖା ଅର୍ଜୁନ ହସ୍ତରେ ମୋତେ ଦେବା ଲାଗି ଏତେ କଷ୍ଟକର ଲାଖ ବିନ୍ଧା ସ୍ୱୟମ୍ବର କରିବାକୁ ଉପାୟ ବତାଇଦେଲେ । ଯଦି ଚ ସେତେବେଳକୁ ସାରା ସଂସାର ଜାଣିଥାଏ ଅର୍ଜୁନ ଅନ୍ୟ ଚାରି ଭାଇ ଓ ମାତା କୁନ୍ତୀଙ୍କ ସହିତ ଜତୁ ଗୃହ ଦାହ ବେଳେ ମରି ସାରିଛନ୍ତି ବୋଲି ।’’

ପ୍ରଥମେ ରୁକ୍ମିଣୀ ତାଙ୍କ କଥା କହିଲେ, ''ମୁଁ ଦେବର୍ଷି ନାରଦଙ୍କ ମୁଖରୁ ତାଙ୍କ ରୂପ ଗୁଣର ପ୍ରଶଂସା ଶୁଣି ତାଙ୍କ ପ୍ରତି ଅତି ଆସକ୍ତ ହୋଇ ପଡ଼ିଥିଲି । ଶିଶୁପାଳଙ୍କୁ ବିବାହ ନକରି ବଡ଼ ଭାଇ ରୁକ୍ମୀଙ୍କ ଇଛା ବିରୁଦ୍ଧରେ ଗଲି । ପ୍ରେମ ସନ୍ଦେଶ ପଠାଇଲି ଜଣେ ବ୍ରାହ୍ମଣ ଦେବତାଙ୍କ ହାତରେ । ବିବାହ ମଣ୍ଡପକୁ ଯାଉ ଯାଉ ହରଣ କରି ନେବାକୁ ଅସୁର ବିବାହର ଉପାୟ ମଧ୍ୟ କହି ପଠାଇଥିଲି । ଧମକ ମଧ୍ୟ ଦେଇଥିଲି ମୋତେ ଉଠାଇ ନ ନେଲେ ଆତ୍ମହତ୍ୟା କରି ପୁଣି ତପସ୍ୟା କରି ପରଜନ୍ମରେ ତାଙ୍କୁ ପାଇବାକୁ । ସେଥିପାଇଁ ସେ କୃପା କରି ମୋତେ ଦାସୀପଣରେ ରଖି ନେଇଛନ୍ତି ।''

ସତ୍ୟଭାମା ତାଙ୍କ କଥା କହିଲେ, ''ମୋର ପିତା ସତ୍ରାଜିତ ଅନେକ ତପସ୍ୟା କରି ବହୁମୂଲ୍ୟ ସ୍ୟମନ୍ତକ ମଣି ପାଇଥିଲେ । ଶ୍ରୀକୃଷ୍ଣ ସେଇ ମଣି ମାଗିଲେ । ପିତା ଦେବାକୁ ନାସ୍ତିକଲେ ଅତ୍ୟନ୍ତ ଲୋଭ ହେତୁ । ଦିନେ ମଣି ହଜିଗଲା । ପିତା କୃଷ୍ଣଙ୍କ ନାମରେ କଳଙ୍କ ବୋଳିଲେ । ଠାକୁରଜୀ ମଣି ଉଦ୍ଧାର କରି ପିତାଙ୍କୁ ଦେଲେ । ନିଜକୁ ଅପମାନରୁ ରକ୍ଷା କରିବାକୁ ଯାଇ ପିତା ମଣି ସହ ମୋତେ ଶ୍ରୀକୃଷ୍ଣଙ୍କୁ ଦେଇ ଦେଲେ ।''

ଜାମ୍ବବତୀ କହିଲେ, ''ସେଇ ମଣି ମୋର ପିତା ଜାମ୍ବବାନଙ୍କ ହାତକୁ ମଧ୍ୟ ଯାଇଥିଲା । ଭଗବାନ ସେଇ ମଣି ପାଇଁ ମୋ ପିତାଙ୍କ ସହ ଯୁଦ୍ଧ କଲେ । ସତେଇଶ ଦିନ ଯୁଦ୍ଧରେ ଦୁହେଁ ଅପରାଜିତ ରହିଲେ । ପରଦିନ ଠାକୁରଜୀ ନିଜ ସୁନ୍ଦର ଶ୍ରୀରାମ ରୂପ ଦର୍ଶନ କରାଇ ନିଜ ପରିଚୟ ଦେଲେ । ଖୁସିରେ ମୋ ପିତା ମଣି ସହିତ ମୋତେ ତାଙ୍କ ଦାସୀ ପଣେ ଖଟିବାକୁ ଉପହାର ରୂପେ ପ୍ରଦାନ କଲେ ।''

ପ୍ରଶ୍ନ-୬୫: କାଳିନ୍ଦୀ ତାଙ୍କ କଠୋର ତପସ୍ୟା କଥା କହିଲେ, ''ହେ ଯାଜ୍ଞସେନୀ, ମୁଁ ସୂର୍ଯ୍ୟଦେବଙ୍କ କନ୍ୟା କାଳିନ୍ଦୀ ନଦୀ । ଠାକୁରଜୀଙ୍କ ଗୋକୁଳ ଲୀଳା ବେଳେ ଅଝଟ କରି ତାଙ୍କ ଚରଣ ସ୍ପର୍ଶ କରିଛି । ତାଙ୍କ ମହାରାସ ଲୀଳାବେଳେ ରମଣରେତିରେ ନଦୀ କୂଳରେ ସ୍ଥାନ ଯୋଗାଇବା ସେବା ପ୍ରାପ୍ତ ହୋଇଛି । ଦିନେ ତପସ୍ୟା କଲାବେଳେ ଶ୍ରୀକୃଷ୍ଣ ନିଜ ସଖା ଅର୍ଜୁନଙ୍କ ସଙ୍ଗେ ପହଞ୍ଚି(ଉପେତ୍ୟ) ମୋତେ ସେଠାରୁ ଆଣି ଦ୍ୱାରକାଲୀଳାରେ ସ୍ଥାନ ଦେଇଛନ୍ତି ।'' କାଳନ୍ଦୀ କେଉଁ ବିଶେଷ କାମ ଦ୍ୱାରକା କରିବାକୁ ଆସିଛନ୍ତି ବୋଲି ପ୍ରକାଶ କଲେ ?

**କାଳିନ୍ଦୀ ଉବାଚ**

**ତପଃ ଚରନ୍ତୀଂ ଆଜ୍ଞାୟ ସ୍ୱପାଦ ଦର୍ଶନ ଆଶୟା ।**
**ସଖା-ଉପେତ୍ୟ ଅଗ୍ରହୀତ୍ ପାଣିଂ ଯୋଽହଂ ତତ୍‌ଗୃହମାର୍ଜନୀ ॥୧୧॥**

ଉ. ନିଃସଙ୍କୋଚରେ କାଳିନ୍ଦୀ କହିଲେ, 'ହେ ପାଣ୍ଡବ ପାଟରାଣୀ, ମୁଁ ତାଙ୍କ ହାତ ଧରିନି ବରଂ ସେ ମୋ ହାତ ଧରିଛନ୍ତି । ମୁଁ ଏବେ ତାଙ୍କ ଅଗଣା ଓଳାଇବା କାମ (ଗୃହ ମାର୍ଜନୀ) କରୁଛି । ସେବା ହାତରୁ ଖସିଗଲେ ସେ ଖସିଯିବେ ଏହି ଭୟରେ ।''

ପଞ୍ଚମ ପାଟରାଣୀ ମିତ୍ରବିନ୍ଦା (ଶୈବ୍ୟା) କହିଲେ, ''ବିବାହ ଆଦୌ ପୁରୁଷାର୍ଥର ଅଧୀନ ନୁହେଁ ବରଂ ପ୍ରାରବ୍ଧର ଅଧୀନ ଅଟେ । ମୋ ପିତା ମୋ ପାଇଁ ଏକ କଠିନ ସ୍ୱୟମ୍ବର ଯୋଗାଡ଼ କଲେ । ଅନେକ ବୀର, ମହାବୀର, ରାଜା, ମହାରାଜା ମୋ ରୂପ, ଗୁଣ ଓ ପିତାଙ୍କ ଯୌତୁକ ଲୋଭରେ ଜମାହେଲେ । ମୋର ମନ କିନ୍ତୁ ଦ୍ୱାରକାଧୀଶଙ୍କ ଚରଣ ସେବା କରିବାକୁ ଚାହୁଁଥିଲା । ଅନ୍ତର୍ଯ୍ୟାମୀ ଭଗବାନ ମୋ ଗୁହାରି ଶୁଣିଲେ । ସେ ସମସ୍ତ ରାଜାଙ୍କୁ ବଳ, ବିଦ୍ୟା, ବୁଦ୍ଧିରେ ପରାସ୍ତ କଲେ । ମୁଁ ଆଜି ତାଙ୍କ ଦାସୀ ହୋଇ ନିଜକୁ ଧନ୍ୟ ମନେ କରୁଛି ।''

ଅନ୍ୟତମ ପାଟରାଣୀ ସତ୍ୟା (ନାଗ୍ନଜିତୀ) କହିଲେ, ''ମୋ ପିତା ମଧ୍ୟ ସ୍ୱୟମ୍ବରର ଏକ ଅଦ୍ଭୁତ ସର୍ତ୍ତ ରଖିଥିଲେ । ସାତ ସାତଟା ଦୁର୍ଦ୍ଦାନ୍ତ ବୃଷଭଙ୍କୁ ଆୟତ କରିବା କୌଶଳ ଜାଣିଥିବା ବୀରକୁ ଜୋଇଁ ପଣରେ ବରିବେ । ଭଗବାନ ସେ ସର୍ତ୍ତ ପୂରଣ କରି ମୋତେ ତାଙ୍କ ସେବା ସୁଯୋଗ ଦେଇଛନ୍ତି ।''

ପ୍ରଶ୍ନ-୬୬: ଭଦ୍ରା କହିଲେ, ''ଭଗବାନ ମୋର ମାମୁଁଙ୍କ ପୁଅ ଭାଇ । ମୁଁ ଓ ମୋ ପିତା ଉଭୟେ କୃଷ୍ଣ ସେବା ଅଭିଳାଷୀ ଜାଣି ନନ୍ଦ କହ୍ନାଇ ମୋତେ ତାଙ୍କ ଘର ଚଳାଇବା ଦାୟିତ୍ୱ ଦେଇଛନ୍ତି ।''

ଅଷ୍ଟମ ପାଟରାଣୀ ଲକ୍ଷ୍ମଣା, ରାଜା ବୃହତ୍‌ସେନଙ୍କ ଅଲିଅଳି କନ୍ୟା । ସେ ଦ୍ରୁପଦଙ୍କ ସ୍ୱୟମ୍ବର ଠାରୁ ଅଧିକ କଠିନ ସ୍ୱୟମ୍ବର କରିବସିଲେ ଯେମିତି ଭଗବାନଙ୍କ ବ୍ୟତୀତ ଅନ୍ୟ କେହି ଯୋଦ୍ଧା ଲାଖ ବିନ୍ଧା କାର୍ଯ୍ୟ କରିପାରିବେନି । ଲକ୍ଷ୍ମଣା କହିଲେ, ''ହେ ଦ୍ରୌପଦୀ, ତୁମ ସ୍ୱୟମ୍ବରରେ ମାଛ ତଳେ ଥିବା କୁଣ୍ଡରେ ଦିଶୁଥିଲା । ତେଣୁ ଅର୍ଜୁନ ମତ୍ସ୍ୟର ଲକ୍ଷ୍ୟ ଭେଦ କରିବା ସହଜ ଥିଲା । ତୁମେ ତାଙ୍କୁ ପାଇ ନିଜକୁ ଧନ୍ୟ ମଣୁଥାଇପାରେ । ମୋ ସ୍ୱୟମ୍ବରରେ ମହାବୀର ଜରାସନ୍ଧ, ଶିଶୁପାଳ, କର୍ଣ୍ଣ, ଦୁର୍ଯ୍ୟୋଧନ ଆଦି ସମସ୍ତେ ଥିଲେ । କେହିହେଲେ ବି ମତ୍ସ୍ୟଙ୍କୁ ଦର୍ଶନ କରିପାରିଲେନି । ଲାଜରେ ଲାଖ ବିନ୍ଧିବାକୁ ସାହସ କଲେନି । ତୁମ ପତି ଅର୍ଜୁନ ମତ୍ସ୍ୟ ଦେଖିପାରିଲେ କିନ୍ତୁ ଲକ୍ଷ୍ୟଭେଦ କରି ନପାରି ନିରାଶ ହେଲେ । ସର୍ବସମର୍ଥ ଭଗବାନ ସଫଳ କରିପାରିଲେ ଏ ଲାଖ ବିନ୍ଧା କାର୍ଯ୍ୟ । ଏ ଅଲୌକିକ କାର୍ଯ୍ୟକୁ ଦେବତାମାନେ ଆକାଶରେ ଥାଇ ଦର୍ଶନ କରୁଥିଲେ । ସେମାନେ ଆନନ୍ଦରେ ଦୁନ୍ଦୁଭି ବାଦ୍ୟ ବାଦନ କଲେ । ସ୍ୱୟମ୍ବର

ସଭାରେ ପୁଷ୍ପ ବର୍ଷଣ କଲେ । ରାଜସଭାରେ ଶ୍ରୀକୃଷ୍ଣ ଭଗବାନଙ୍କର ଜୟ ଜୟକାର ଧ୍ୱନି ମୁଖରିତ ହେଲା । ସେଇଦିନଠାରୁ ମୁଁ ତାଙ୍କର ଘରଣୀ ସାଜିଲି । ତେବେ ମୁଁ ଏତିକି ଜାଣେ ଆମ ପ୍ରଭୁ ଆତ୍ମାରାମ, ଆପ୍ତକାମ ଓ ଆଜନ୍ମ ବ୍ରହ୍ମଚାରୀ । ଆମେ ଆଠଜଣ ଯାକ ଜନ୍ମ ଜନ୍ମାନ୍ତରରେ ତାଙ୍କ ଆଶ୍ରୟରେ ଥିଲୁ, ଅଛୁ ଏବଂ ରହିବାକୁ ଚାହୁଁ ମଧ୍ୟ ।''

ସର୍ବଶେଷରେ ଷୋହଳ ହଜାର ଏକଶତ ରାଣୀଙ୍କ ପକ୍ଷରୁ ରୋହିଣୀ କହିଲେ, ''ହେ ଦ୍ରୁପଦ ନନ୍ଦିନୀ, ଆମେ ସମସ୍ତେ ଅତ୍ୟାଚାରୀ ଅସୁର ରାଜା ଭୌମଙ୍କ ବନ୍ଦୀଘରେ ଥିଲୁ । ଭଗବାନ କୃପା କରି ଭୌମାସୁରକୁ ମାରି ତାକୁ ଉଦ୍ଧାର କଲେ । ଆମକୁ ବନ୍ଦୀ ଘରୁ ମୁକୁଳାଇଲେ । ଆମମାନଙ୍କ କାମନା ବାସନା ବିଷୟରେ ପ୍ରଶ୍ନ କଲେ । ଆମେ ସେତେବେଳେ ସଂପୂର୍ଣ୍ଣ ନିରାଶ୍ରୟା ଥିଲୁ । କେବଳ ତାଙ୍କର ଅଭୟ ଆଶ୍ରୟ ପ୍ରାର୍ଥନା କଲୁ ସମସ୍ତେ ସ୍ୱୟମ୍ବରରେ । ଏବେ ଦ୍ୱାରକାରେ ତାଙ୍କ ସେବାରେ ମନ ପ୍ରାଣ ଢ଼ାଳି ଦେଇଛୁ ।'' ଶ୍ରୀକୃଷ୍ଣ ପତ୍ନୀମାନେ ଯଦି ପରଜନ୍ମ ମାନଙ୍କରେ ଏ ସେବା ସେମାନଙ୍କୁ ନ ମିଳେ ତେବେ ଦିବ୍ୟ ବୃନ୍ଦାବନର ହେଲେ ଗୁଳ୍ମଲତା (ତୃଣ, ବିରୁଧଃ) ଜନ୍ମ ମିଳୁଥାଉ ବୋଲି କାହିଁକି ପ୍ରାର୍ଥନା କଲେ ?

**ମହିଷ୍ୟ ଉଚୁଃ**

**ବ୍ରଜସ୍ତ୍ରିୟୋ ଯତ୍‌ବାଞ୍ଛନ୍ତି ପୁଳିନ୍ଦ୍ୟଃ ତୃଣ ବିରୁଧଃ ।**
**ଗାବଃ ଚାରଣତୋ ଗୋପାଃ ପାଦସ୍ପର୍ଶଂ ମହାତ୍ମନଃ ॥୪୩॥**

ଉ.କୃଷ୍ଣ ପ୍ରେମର ଅସଲି ସ୍ୱାଦ ପ୍ରାପ୍ତ ହୋଇଥିଲେ କେବଳ ବ୍ରଜ ଗୋପୀକାମାନେ (ବ୍ରଜସ୍ତ୍ରିୟୋଃ), ଗୋପାଳମାନେ, ଆଦିବାସୀ (ପୁଳିନ୍ଦ୍ୟଃ)ଶବର ଜାତୀୟା ସ୍ତ୍ରୀମାନେ । ସେମାନେ ସମସ୍ତେ ଭଗବାନଙ୍କର(ମହାତ୍ମନଃ) ଗୋଚାରଣ ଲୀଳା କାଳର ଗୋ ଚରଣ ରଜ ଲୋଭୀ ଥିଲେ । ବର୍ତ୍ତମାନ ଏହି କୃଷ୍ଣପତ୍ନୀଗଣ କୃଷ୍ଣ ସେବାର ସ୍ୱାଦ ବୁଝିଯାଇଥିବାରୁ କେବଳ ତାହାହିଁ କାମନା କରୁଥିଲେ ।

ଦ୍ରୌପଦୀ ଶେଷରେ ବୁଝିଗଲେ ଯେ କେହି ଜୀବ କେବେ ବି ଇଚ୍ଛା କରି, ନିଜେ ଚେଷ୍ଟା କରି କାହାକୁ ବିବାହ କରି ପାରିବ ନାହିଁ । ବିଧିର ବିଧାନ ସମସ୍ତଙ୍କୁ ମାନିବାକୁ ପଡ଼େ । ଭଗବାନଙ୍କୁ ମଧ୍ୟ । ଜୀବ ପାଇଁ ଏହା ପୁରୁଷାର୍ଥ ଅଧୀନ ନୁହେଁ ବରଂ ପ୍ରାରବ୍ଧ ଅଧୀନ ଅଟେ ।

# ଅଥ ୮୪ମ ଅଧ୍ୟାୟଃ

## (ଭଗବାନଙ୍କ ବାପାଙ୍କୁ ମଧ୍ୟ ସତ୍‌ସଙ୍ଗ ଲୋଡ଼ା)

ପ୍ରଶ୍ନ-୬୭: କୁରୁକ୍ଷେତ୍ର ମହାସମ୍ମେଳନରେ ଯାଦବବଂଶୀ ଓ କୁରୁବଂଶୀ ରାଜା ମହାରାଜାଙ୍କ ବ୍ୟତୀତ ଅନ୍ୟାନ୍ୟ ଅନେକ ପ୍ରଜାଗଣଙ୍କୁ ସତ୍‌ପୁରୁଷଙ୍କ ସାନ୍ନିଧ୍ୟ ମିଳିଲା । କୃଷ୍ଣ ବଳରାମଙ୍କୁ ଦର୍ଶନ କରିବାକୁ ପହଞ୍ଚିଗଲେ ବ୍ୟାସ, ନାରଦ, ଚ୍ୟବନ, ଦେବଳ, ଅସିତ, ବିଶ୍ୱାମିତ୍ର ଆଦି ବହୁ ବଡ଼ ବଡ଼ ମୁନି ଋଷିଗଣ । ଭଗବାନ ଅନ୍ୟମାନଙ୍କ ସହିତ ସେମାନଙ୍କର ଭବ୍ୟ ସ୍ୱାଗତ, ସତ୍କାର, ସେବା ଶୁଶ୍ରୂଷା ଆଦି କରି କଅଣ କହିଲେ ?

ଶ୍ରୀ ଭଗବାନ ଉବାଚ

**ଅହୋ ବୟଂ ଜନ୍ମଭୃତୋ ଲବ୍‌ଧଂ କାର୍ତ୍ସ୍ନ୍ୟେନ ତତ୍‌ଫଳମ୍ ।**
**ଦେବାନାଂ ଅପି ଦୁଷ୍ପ୍ରାପଂ ଯତ୍ ଯୋଗେଶ୍ୱର ଦର୍ଶନମ୍ ॥୯॥**

ଉ. ଭଗବାନ ଶଙ୍କର ଯୋଗୀମାନଙ୍କର ଈଶ୍ୱର । ମୁନି ଋଷିମାନେ ଯୋଗର ଈଶ୍ୱର । ଶ୍ରୀକୃଷ୍ଣଙ୍କ କିନ୍ତୁ ଯୋଗୀଶ୍ୱରମାନଙ୍କର ମଧ୍ୟ ଈଶ୍ୱର ସର୍ବେଶ୍ୱର । ତଥାପି ସେ ମୁନିଋଷିମାନଙ୍କୁ ଯୋଗୀଶ୍ୱର କହି ବହୁମାନନ କଲେ । ବିଷୟୀ ମାନଙ୍କ ପାଇଁ ସେମାନଙ୍କ ଦର୍ଶନ ଅତ୍ୟନ୍ତ ଦୁର୍ଲଭ । ଇନ୍ଦ୍ର, ବରୁଣ, କୁବେର ଆଦି ଦେବତାମାନେ ଭୋଗବାଦୀ ବୋଲି ମୁନି ଋଷିମାନେ ସେମାନଙ୍କ ପାଖ ମାଡ଼ନ୍ତି ନାହିଁ । କୁରୁକ୍ଷେତ୍ରରେ ସେମାନଙ୍କ ଦର୍ଶନ, ପାଦସେବାଦି ପ୍ରାପ୍ତହେବାକୁ ଜଣେ ଜୀବର ଜନ୍ମର ଓ ଜୀବନର ସଂପୂର୍ଣ୍ଣ(କାର୍ତ୍ସ୍ନେନ) ସଫଳତା ବୋଲି ଭଗବାନ ନିଜେ କହିଛନ୍ତି ।

ପ୍ରଶ୍ନ-୬୮: ଅନେକ ଲୋକ ମନ୍ଦିରରେ ଖୁବ୍ ଶ୍ରଦ୍ଧା ଭକ୍ତିରେ ପୂଜା କରନ୍ତି ଦେବୀ ଦେବତାମାନଙ୍କର (ଦେବ ଚକ୍ଷୁଷାଂ) । ସେଭଳି ଈଶ୍ୱରଭକ୍ତଙ୍କୁ ଭଗବାନ ଅଳ୍ପଭାଗ୍ୟବାନ୍ (ସ୍ୱଳ୍ପ ତପସାଂ) ବୋଲି କହିବା କାରଣ କ'ଣ ?

**କିଂ ସ୍ୱଳ୍ପ ତପସାଂ ନୃଣାଂ ଅର୍ଚ୍ଚାୟାଂ ଦେବଚକ୍ଷୁଷାମ୍ ।**
**ଦର୍ଶନ ସ୍ପର୍ଶନ ପ୍ରଶ୍ନ ପ୍ରହ୍ୱ ପାଦ-ଅର୍ଚ୍ଚନ-ଆଦିକମ୍ ॥୧୦॥**

ଉ. ସାଧୁ, ସନ୍ଥ, ମୁନି ଋଷିମାନଙ୍କର ଦର୍ଶନ, ସ୍ପର୍ଶ, ପ୍ରଶ୍ନ(ପଚାରିବା) ନମସ୍କାର କରିବା (ପ୍ରହ୍ୱ), ପାଦ ପୂଜା କରିବାରେ ସେମାନଙ୍କର ବିଶ୍ୱାସ କମ୍ ଥାଏ । ଏହା କେବଳ ଦ୍ୱୈତ ବୁଦ୍ଧିରେ ବିଗ୍ରହ ପୂଜନ କରିବାର ଫଳ । ଅଦ୍ୱୈତ ବୁଝିବା ପରେ ଦ୍ୱୈତ ବୁଦ୍ଧିରେ ପୂଜିଲେ ସିନା ସହଜରେ ଅଧ୍ୟାତ୍ମ୍ୟ ରାଜ୍ୟରେ ପ୍ରବେଶ ହୁଅନ୍ତା । ତେଣୁ ସେମାନେ ସାଧୁ ସନ୍ଥ ପୂଜା ନ କରି କେବଳ ଦେବୀଦେବତା ପୂଜିଥାନ୍ତି ବୋଲି ସ୍ୱଳ୍ପବୁଦ୍ଧି କହିଛନ୍ତି ଭଗବାନ ।

ପ୍ରଶ୍ନ-୬୯ : କେବଳ ଦେବ ବିଗ୍ରହ ପୂଜନରେ କ'ଣ ଭକ୍ତ ଭଗବତ କୃପାରୁ ବଞ୍ଚିତ ହେବାର ସମ୍ଭାବନା ଥାଏ କି ?

**ନ ହି-ଅପ୍‌ମୟାନି ତୀର୍ଥାନି ନ ଦେବା ମୃତ୍ ଶିଳାମୟାଃ ।**
**ତେ ପୁନନ୍ତି-ଉରୁ କାଳେନ ଦର୍ଶନାତ୍ ଏବ ସାଧବଃ ॥୧୧॥**

ଉ. ନା ନା ସେ କଥା ମଧ୍ୟ ଆଦୌ ସତ୍ୟ ନୁହେଁ । ଗଙ୍ଗା ସ୍ନାନ, ପବିତ୍ର ସରୋବର ସ୍ନାନ ଓ ମାଟି ପଥର ଶିବଲିଙ୍ଗ, ଶାଳଗ୍ରାମ ପୂଜାର ଫଳ ମିଳିବ କିନ୍ତୁ ଦୀର୍ଘକାଳ (ଉରୁକାଳେନ) ସେବା ପରେ । ମାତ୍ର ସନ୍ଥ ଦର୍ଶନ, ସନ୍ଥ ସେବାର ଫଳ ଅବିଳମ୍ବେ ବା ତତ୍‌କାଳ ମିଳିଥାଏ ।

ପ୍ରଥମେ ଅଦ୍ୱୈତ ଉପାସନା ନକଲେ ସୂର୍ଯ୍ୟ, ଅଗ୍ନି, ଆଦି ଦେବତାଗଣ ମଧ୍ୟ ସାଧକର ଜଡ଼-ଚେତନ ବୁଦ୍ଧିକୁ ନିର୍ମଳ କରିପାରନ୍ତି ନାହିଁ । ବିବେକୀ ବ୍ରାହ୍ମଣ, ବୈଷ୍ଣବ ମୁନି ଋଷିଗଣଙ୍କ ସେବା ପାରନ୍ତି ଏକଥା । ଏ ପ୍ରସଙ୍ଗରେ କେଉଁ ମନୁଷ୍ୟକୁ ଭଗବାନ ପଶୁ ଓ ଗଧ ଆଖ୍ୟା ଦେଲେ ?

**ଯସ୍ୟ-ଆତ୍ମବୁଦ୍ଧି କୁଣପେ ତ୍ରିଧାତୁକେ**
**ସ୍ୱଧୀଃ କଳତ୍ର-ଆଦିଷୁ ଭୌମ ଇଜ୍ୟଧୀଃ ।**
**ଯତ୍‌ତୀର୍ଥ ବୁଦ୍ଧିଃ ସଲିଳେ ନ କର୍ହିଚିତ୍**
**ଜନେଷୁ-ଅଭିଜ୍ଞେଷୁ ସ ଏବ ଗୋ ଖରଃ ॥୧୩॥**

ଉ. ଯେଉଁ ବ୍ୟକ୍ତି ବାତ-ପିତ୍ତ-କଫ(ତ୍ରିଧାତୁକେ) ତିଆରି ଜଡ଼ ଦେହକୁ (କୁଣପେ) ମୁଁ ମନେ କରେ, ପୁଣି ପତ୍ନୀ, ପୁତ୍ର ଆଦିକୁ ମୋର ମାନେ, କାଠ ପଥର ମୂର୍ତ୍ତି ଓ ଜଳକୁ ତୀର୍ଥ ମାନେ ଅଥଚ ତୀର୍ଥରେ ବାସ କରୁଥିବା ସାଧୁ ମାହାତ୍ମାଙ୍କୁ ଆତ୍ମା ମାନେ ନାହିଁ କିମ୍ବା ଆତ୍ମୀୟ ମାନେ ନାହିଁ କିମ୍ବା ପୂଜ୍ୟ ମାନେ ନାହିଁ ତାର ଅନ୍ଧ ବୁଦ୍ଧି ଦୃଷ୍ଟିରୁ ସେ ଗାଈ, ବଳଦ ବା ଗଧ ସଙ୍ଗେ ସମାନ ।

ପ୍ରଶ୍ନ-୭୦ : ଭଗବାନଙ୍କ ଶ୍ରୀମୁଖରୁ ନିଜର ପ୍ରଶଂସା ଶୁଣିବାକୁ ମୁନି ଋଷିମାନଙ୍କୁ ସଂଙ୍କୋଚ ଲାଗିଲା । ସେମାନେ ମିଳିତ ଭାବେ ଅନେକ ପ୍ରକାର ସ୍ତୁତି ଗାନ କଲେ ପ୍ରଭୁଙ୍କର । ସେମାନେ କୁରୁକ୍ଷେତ୍ର ଯଜ୍ଞରେ ସମ୍ମିଳିତ ହୋଇଥିବା ଲୋକେ ଠାକୁରଜୀଙ୍କୁ ଚିହ୍ନି ନ ପାରିବାର କାରଣ କ'ଣ ବୋଲି ନିଜ ସ୍ତୁତିରେ କହିଲେ ?

ଶ୍ରୀ ଶୁକ ଉବାଚ

**ନ ଯଂ ବିଦନ୍ତି-ଅମୀ ଭୂପା ଏକ ଆରାମାଃ ଚ ବୃଷ୍ଣୟଃ ।**
**ମାୟା ଜବନିକା-ଆଚ୍ଛନ୍ନଂ ଆତ୍ମାନଂ କାଳଂ ଈଶ୍ୱରମ୍ ।।୨୩।।**

ଉ. ଋଷିମାନେ କହିଲେ, ''ହେ ମାୟାଧୀଶ ପ୍ରଭୁ, ଏ ରାଜାମାନେ (ଭୂପା) ଏ ଅଗଣିତ ରାଣୀ ପାଟରାଣୀ (ଏକ ଆରାମାଃ), ବୃଷ୍ଣି ବଂଶର ଆପଣଙ୍କର ଏ ପୁଅ, ନାତିମାନେ ଆପଣଙ୍କ ସ୍ୱରୂପ ଜାଣିବାରେ ଅକ୍ଷମ । କାରଣଟି ହେଲା ଆପଣ ମାୟାର ଚଦରଟିଏ ନିଜ ରୂପରେ ଘୋଡ଼େଇ ହୋଇ(ଜବନିକା-ଆଚ୍ଛନ୍ନ) ଜଣାଇ ଦେଉନାହାନ୍ତି ଯେ ଆପଣ ହିଁ ସ୍ୱୟଂ ସେମାନଙ୍କ ଆତ୍ମାଙ୍କର ଆତ୍ମା ପରମାତ୍ମା ଓ ସେମାନଙ୍କ ଶରୀରକୁ ଗ୍ରାସ କରିବାକୁ ଛକି ବସିଥିବା କାଳର କାଳ ମହାକାଳ ।''

ପ୍ରଶ୍ନ-୭୧ : ମୁନି ଋଷିମାନେ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରିସାରିଥାନ୍ତି । ବିଶ୍ରାମ ନେବା ପାଇଁ ତାଙ୍କଠାରୁ ବିଦାୟ ନେବାକୁ ବସିଥିବା ବେଳେ ବସୁଦେବଜୀ ପହଞ୍ଚି କି କର୍ମ କଲେ ଆଉ କର୍ମ ଫଳରେ ଜୀବ ବନ୍ଧା ହେବ ନାହିଁ ବୋଲି ପ୍ରଶ୍ନଟିଏ କରିଦେଲେ । ମୁନିମାନେ ସ୍ତବ୍ଧ ହୋଇଗଲେ । ଭାବିଲେ ଭଗବାନଙ୍କ ପିତାଙ୍କ ମୁଖରେ ଏ ପ୍ରଶ୍ନ ଶୋଭନୀୟ ଲାଗୁ ନାହିଁ । ନାରଦଜୀ ପ୍ରସଙ୍ଗଟିକୁ ପ୍ରାଞ୍ଜଳ କରି ବୁଝାଇଦେଲେ । କହିଲେ ଯେ ବସୁଦେବଜୀ ଭଗବାନଙ୍କୁ କେବଳ ପୁତ୍ର ଜ୍ଞାନ କରୁଥିବାରୁ ତାଙ୍କଠାରେ ଏ ଅଜ୍ଞାନ ପ୍ରବେଶ କରିଯିବା ଭଳି ମନେ ହେଉଛି । ଏତିକି ବୁଝାଇବାକୁ ଚେଷ୍ଟା କରି ଦେବର୍ଷି ନାରଦ କେଉଁ ଉଦାହରଣଟିଏ ସଭାରେ ଉପସ୍ଥାପନ କଲେ ?

ନାରଦ ଉବାଚ

**ସନ୍ନିକର୍ଷୋଽତ୍ର ମର୍ତ୍ତ୍ୟାନାଂ ଅନାଦରଣ କାରଣମ୍ ।**
**ଗାଙ୍ଗଂ ହିତ୍ୱା ଯଥା-ଅନ୍ୟ-ଅମ୍ବ ତତ୍ରତ୍ୟୋ ଯାତି ଶୁଦ୍ଧୟେ ।।୩୧।।**

ଉ. ଅତି ପରିଚୟେ ଗୌରବ ନଷ୍ଟ । ଗଙ୍ଗା କୂଳରେ ବାସ କରୁଥିବା ଲୋକେ ଗଙ୍ଗା ସ୍ନାନ ନ କରି ନିଜ ବାଡ଼ିରେ କୂଅ, ଗାଁରେ ପୋଖରୀ ଖୋଳିବା ଭଳି ଏହା ବସୁଦେବଜୀଙ୍କର ପ୍ରଶ୍ନ ଆମ ପାଖରେ । ତଥାପି ସେମାନେ ସମୁଚିତ ଉତ୍ତର

ଦେବାକୁ ଯାଇ କହିଲେ, "ହେ ବସୁଦେବଜୀ, ବୈଦିକ ଯଜ୍ଞ କରି ବିଷ୍ଣୁ ଭିନ୍ନ ଅନ୍ୟ ଦେବତାଙ୍କୁ ପ୍ରସନ୍ନ କଲେ ସାଧକ କର୍ମଫଳରେ ବନ୍ଧା ହୁଏ । ବିଷ୍ଣୁଙ୍କୁ କିନ୍ତୁ ପ୍ରସନ୍ନ କଲେ କର୍ମଫଳରୁ ମୁକ୍ତ ରହିପାରେ । ଏହା ହିଁ ଚିତ୍ତ ଶୁଦ୍ଧିର ମୂଳମନ୍ତ୍ର ।

ପୁତ୍ର ଏଷଣା, ବିତ୍ତ ଏଷଣା ଓ ଲୋକ ଏଷଣାରେ ପ୍ରାୟ ସମସ୍ତେ ମାୟାବଦ୍ଧ । ଜନ୍ମବେଳେ ମୁଖ୍ୟତଃ ତିନି ଋଣ ସାଙ୍ଗରେ ଧରି ଜୀବ ଏ ସଂସାରରେ ଜନ୍ମ ହୁଏ । ପିତୃ ଋଣ, ଋଷିଋଣ ଓ ଦେବଋଣ । ସନ୍ତାନଟିଏ ଜନ୍ମଦେଲେ ପିତୃ ଋଣ ଶୁଝାଯାଏ । ବୈଦିକ ସାହିତ୍ୟ ଅଧ୍ୟୟନ କଲେ ସେ ଋଷି ଋଣରୁ ମୁକ୍ତ ହୁଏ । ବୈଦିକ ଯଜ୍ଞ କରି ଦେବଋଣରୁ ମୁକ୍ତିର ବିଧାନ ବେଦରେ ସ୍ୱୟଂ ପରମେଶ୍ୱର କରିଛନ୍ତି । ଆପଣ ପ୍ରଥମ ଦୁଇ ଋଣରୁ ମୁକ୍ତ ହୋଇସାରିଛନ୍ତି । ବର୍ତ୍ତମାନ ଯଜ୍ଞଟିଏ କରି ଶ୍ରୀମନ୍ ନାରାୟଣଙ୍କୁ ତୃପ୍ତ କରି ତୃତୀୟ ଋଣରୁ ମୁକ୍ତ ହୋଇଯାଆନ୍ତୁ ।"

ପ୍ରଶ୍ନ-୭୨ : ବସୁଦେବଜୀ ମୁନିମାନଙ୍କ ଉପଦେଶ ଅନୁସାରେ ବହୁ ଆଡ଼ମ୍ବର ସହକାରେ ନିଜେ ଯଜ୍ଞ ଆୟୋଜନରେ ଲାଗିଗଲେ । ସେ ନିଜର ପତ୍ନୀ, ପୁତ୍ର, ପୁତ୍ର ବଧୂ, ବନ୍ଧୁବାନ୍ଧବ ସମସ୍ତଙ୍କୁ ଏ ଶୁଭକାର୍ଯ୍ୟରେ ନିୟୋଜିତ କରି କିଭଳି ଯଜ୍ଞ କର୍ମକୁ ସର୍ବାଙ୍ଗ ସୁନ୍ଦର କରିପାରିଲେ ?

ଶ୍ରୀ ଶୁକ ଉବାଚ

**ଇଜେଽନୁଯଜ୍ଞଂ ବିଧିନା ଅଗ୍ନିହୋତ୍ର-ଆଦି ଲକ୍ଷଣୈଃ ।**
**ପ୍ରାକୃତୈଃ ବିକୃତୈଃ ଯଜ୍ଞୈଃ ଦ୍ରବ୍ୟ ଜ୍ଞାନ କ୍ରିୟା-ଈଶ୍ୱରମ୍ ॥୫୧॥**

ଉ. ସେ ଗୋଟିଏ ଯଜ୍ଞ ନୁହେଁ କୁଳ ପୁରୋହିତଙ୍କ ନିର୍ଦ୍ଦେଶ ଅନୁସାରେ ଅନେକ ପ୍ରକାର ଶ୍ରୌତ ଯଜ୍ଞ ଓ ସ୍ମାର୍ତ୍ତ ଯଜ୍ଞ ଠିକ୍ ଠିକ୍ ବିଧି ବିଧାନ ଅନୁସାରେ ସୁସମ୍ପନ୍ନ କଲେ । ଦ୍ରବ୍ୟ ଶୁଦ୍ଧି, ମନ୍ତ୍ର ଶୁଦ୍ଧି, ସ୍ଥାନ ଶୁଦ୍ଧି, କାଳ ଶୁଦ୍ଧି ଆଦିରେ କିଛି ଅଭାବ ଘଟିଲା ନାହିଁ । କାରଣ ସ୍ୱୟଂ କୃଷ୍ଣ, ବଳରାମ ଯଜ୍ଞ କର୍ମର ତଦାରଖ କରୁଥାନ୍ତି । ବସୁଦେବଜୀ ଅନ୍ନ, ବସ୍ତ୍ର, ଭୂମି, ଗୋ, କନ୍ୟା ଆଦି ବ୍ରାହ୍ମଣ ବୈଷ୍ଣବଙ୍କୁ ଦାନ କଲେ ସ୍ୱହସ୍ତରେ ପୁଣି ଅକୁଣ୍ଠିତ ଚିତ୍ତରେ । ଯଜ୍ଞ ସମାପନ ପରେ ମଧ୍ୟ କୃଷ୍ଣ-ବଳରାମଙ୍କ ସ୍ନେହରେ ବାନ୍ଧି ହୋଇ ନନ୍ଦ ଯଶୋଦା, ଗୋପୀ, ଗୋପାଳ ସମସ୍ତେ ସେଠାରେ ରହିଗଲେ ।

ପ୍ରଶ୍ନ-୭୩: କୁରୁକ୍ଷେତ୍ରରେ ତିନିମାସ କାଳ ରହିବା ପରେ ରାଜା ନନ୍ଦ, ରାଣୀ ଯଶୋମତୀ, ସକଳ ଗୋପାଳଙ୍କ ସହିତ ଗୋପୀମାନେ ନିଜ ନିଜ ଘରକୁ ଫେରିବା ପାଇଁ କି ନିଷ୍ପତ୍ତି ନେଲେ ?

**ନନ୍ଦୋ ଗୋପାଃ ଚ ଗୋପ୍ୟଃ ଚ   ଗୋବିନ୍ଦ ଚରଣ-ଅମ୍ବୁଜେ ।**
**ମନଃ କ୍ଷିପ୍ତଂ ପୁନଃ ହର୍ତ୍ତୁଂ   ଅନୀଶା ମଥୁରାଂ ଯଯୁଃ ।।୬୯।।**

ଉ. ସେମାନେ ସମସ୍ତେ ଏତେଦିନ ଗୋବିନ୍ଦଙ୍କ ସାନ୍ନିଧରେ ରହିଗଲେ । ନିଜ ନିଜର ମନ ପ୍ରାଣକୁ ତାଙ୍କ ଚରଣ କମଳରେ ଅର୍ପଣ କରିସାରିଥିଲେ (କ୍ଷିପ୍ତଂ) । ଏବେ ନନ୍ଦଗାଁଓ, ବରସାନା ଓ ମଥୁରା ଯିବାବେଳକୁ ଅନେକ ଚେଷ୍ଟା କରି ମଧ ନିଜ ନିଜର ମନକୁ ସେଠାରୁ ଫେରାଇ ଆଣିବାରେ (ହର୍ତ୍ତୁଂ) ସେମାନେ ଅସମର୍ଥ(ଅନୀଶା) । ଅତଏବ ସମସ୍ତେ ସିନା ଘରକୁ ଫେରିଲେ ହେଲେ ମନଟି ମାନ ମନମୋହନଙ୍କ ପାଖରେ ଛାଡ଼ିଦେଇଗଲେ । ଅନ୍ୟ ଶବ୍ଦରେ କହିଲେ ସେମାନଙ୍କର ମନରେ ନିରନ୍ତର ହରିସ୍ମରଣ ହେଉଥିଲା । ମୁନି ଋଷି, କୃଷ୍ଣ ଓ ବସୁଦେବଙ୍କ ସତ୍‌ସଙ୍ଗର ଅଲୌକିକ ତାଜା ଫଳ ସେମାନେ ସମସ୍ତେ ହାତେ ହାତେ ପାଇପାରିଲେ ।

# ଅଥ ୮୫ମ ଅଧ୍ୟାୟଃ

## (ବସୁଦେବଙ୍କୁ ତତ୍ତ୍ୱଜ୍ଞାନ ପ୍ରଦାନ ଓ ଦେବକୀଙ୍କ ମୃତ ଛଅ ପୁତ୍ରଙ୍କ ଜୀବନ ଦାନ)

ପ୍ରଶ୍ନ-୭୪: କୁରୁକ୍ଷେତ୍ରରେ ଯଜ୍ଞ ଶେଷ କରି ଦ୍ୱାରକାପୁରକୁ ବସୁଦେବ ଇତ୍ୟାଦି ସମସ୍ତେ ଫେରିଆସିଥାନ୍ତି । ସବୁଦିନ ଭଳି ସେଦିନ କୃଷ୍ଣବଳରାମ ପିତା ବସୁଦେବଙ୍କୁ ପ୍ରଣାମ କଲେ । ସେ କିନ୍ତୁ ସେମାନଙ୍କୁ ଆଶୀର୍ବାଦ କଲେନି କାହିଁକି ?

ଶ୍ରୀ ବାଦରାୟଣିଃ ଉବାଚ

**କୃଷ୍ଣ କୃଷ୍ଣ ମହାଯୋଗିନ୍   ସଂକର୍ଷଣ ସନାତନ ।**
**ଜାନେ ବାଂ ଅସ୍ୟ ଯତ୍ ସାକ୍ଷାତ୍   ପ୍ରଧାନ ପୁରୁଷୌ ପରୌ ।।୩।।**

ଉ. ମୁନି ଋଷିମାନଙ୍କ ସତ୍‌ସଙ୍ଗର ପ୍ରଭାବ ପଡ଼ିଛି ଏବେ ତାଙ୍କ ଉପରେ । କୃଷ୍ଣ ବଳରାମଙ୍କୁ ସେ ଆଉ କେବଳ ପୁତ୍ର ଜ୍ଞାନ କରୁ ନାହାନ୍ତି । କୃଷ୍ଣଙ୍କୁ ପରମ ପୁରୁଷ ଓ ବଳରାମଙ୍କୁ କୃଷ୍ଣଙ୍କର ଅଚିନ୍ତ୍ୟ ନିତ୍ୟ (ସନାତନ) ଶକ୍ତିର ଉତ୍ସ ବୋଲି ବୁଝିଗଲେଣି (ଜାନେ) ଦୁହେଁ ।

ପ୍ରଶ୍ନ-୭୫: ବ୍ୟାକରଣ ଶାସ୍ତ୍ରରେ କର୍ତ୍ତା ଓ କ୍ରିୟା ମୁଖ୍ୟ । ବାକି ସବୁ ପଦ କ୍ରିୟା କିମ୍ବା କର୍ତ୍ତାଙ୍କର ସମ୍ବନ୍ଧ ଦର୍ଶାଇବା ଲାଗି ଉଦ୍ଦିଷ୍ଟ । ଯଥା ବିଶେଷଣ, କ୍ରିୟାବିଶେଷଣ କିମ୍ବା କାରକ ମାତ୍ର । ବସୁଦେବ ଭଗବାନଙ୍କ ଅଦ୍ୱୟ ଜ୍ଞାନ ସ୍ୱରୂପକୁ ବ୍ୟାକରଣର ମାପ କାଠିରେ ମାପି ଆଶୀର୍ବାଦ ନ ଦେଇ ସେମାନଙ୍କର ସ୍ତୁତି କରିଥିଲେ କି କି ଶବ୍ଦ ପ୍ରୟୋଗ କରି ?

**ଯତ୍ର ଯେନ ଯତୋ ଯସ୍ୟ ଯସ୍ମୈ ଯତ୍ ଯତ୍ ଯଥା ଯଦା ।**
**ସ୍ୟାତ୍ ଇଦଂ ଭଗବାନ୍ ସାକ୍ଷାତ୍ ପ୍ରଧାନ ପୁରୁଷ-ଈଶ୍ୱରଃ ॥୪॥**

ଉ. ପ୍ରକୃତି (ପ୍ରଧାନ) ବ୍ରହ୍ମ (ପୁରୁଷ)ଙ୍କ ସର୍ବୋଚ୍ଚ ନିୟନ୍ତ୍ରଣ କର୍ତ୍ତା (ଈଶ୍ୱର) ରୂପରେ ସୃଷ୍ଟିର ସକଳ କ୍ରିୟା ଚାଲୁଛି । ଯାହାଙ୍କୁ (୨ୟା ବିଭକ୍ତି), ଯାହାଦ୍ୱାରା (୩ୟା ବିଭକ୍ତି), ଯାହା ନିମିତ୍ତ (୪ର୍ଥୀ), ଯାହାଠାରୁ (୫ମୀ), ଯାହାର (ଷଷ୍ଠୀ) ଓ ଯାହା ମଧ୍ୟରେ (ସ୍ଥାନ ଓ କାଳ ରୂପୀ(୭ମୀ) ବିଭକ୍ତି ଇତ୍ୟାଦି ସବୁକିଛି ସେଇ ଏକ ବ୍ରହ୍ମଙ୍କର ବିସ୍ତୃତି । ସଂକ୍ଷେପରେ କୃଷ୍ଣ ବଳରାମ କେବଳ ଏ ବିଶ୍ୱ ବ୍ରହ୍ମାଣ୍ଡର ଅଭିନ୍ନ ନିମିତ୍ତ ଓ ଉପାଦାନ କାରଣ ଉଭୟ । ସୁତରାଂ ସେ ପୁତ୍ର ଦୁହିଁଙ୍କୁ ସର୍ବଶକ୍ତିମାନ, ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବନିୟନ୍ତା ଓ ସର୍ବସ୍ୱରୂପ କହିଛନ୍ତି । ପୂର୍ବରୁ ସେ ଦୁଇ ପୁତ୍ରଙ୍କ ସାଙ୍ଗରେ କେବଳ ଦ୍ୱୈତ ଭାବ ରଖୁଥିଲେ । ଏବେ ଅଦ୍ୱୈତ ଭାବ ବୁଝିଗଲେ । ସେ ହିଁ ନାଦ, ବର୍ଣ୍ଣ, ଓଁକାର, ଆକୃତି ଓ ପ୍ରକୃତି ସବୁକିଛି । ସେ ଇଚ୍ଛାମୟ ଓ ଲୀଳାମୟ କିନ୍ତୁ ମାୟା ମହାଶକ୍ତି ଆଢୁଆଳରେ ରହି ସବୁ କିଛି କରୁଛନ୍ତି । ସମଗ୍ର ସୃଷ୍ଟି ପ୍ରବାହକୁ ସତ୍ତ୍ୱ, ରଜୋ ଓ ତମୋଗୁଣ ଦ୍ୱାରା ସୃଜନ, ପାଳନ ଓ ସଂହାର କରୁଛନ୍ତି ।

ପ୍ରଶ୍ନ-୭୬: ଭଗବାନ ଦେଖିଲେ କଥା ପୁଣି ଅଡୁଆ ହେବାକୁ ବସିଲାଣି । ପିତାଜୀ ପ୍ରଥମେ ଦ୍ୱୈତ ଭାବରେ ଥିଲେ ଅଦ୍ୱୈତ ସ୍ୱୀକାର କରୁ ନଥିଲେ । ଏବେ ଅଦ୍ୱୈତ ଭାବରେ ରହି ଦ୍ୱୈତକୁ ମାନିବକୁ ନାରାଜ । ଆମକୁ ଆଶିର୍ବାଦ ଦେବାକୁ ପଛଘୁଞ୍ଚା ଦେଲେଣି । ତେବେ ଭଗବାନ କୃଷ୍ଣ କିଭଳି ତତ୍ତ୍ୱଜ୍ଞାନ ପ୍ରଦାନ କରି ପିତା ବସୁଦେବଙ୍କୁ ଭକ୍ତି ମାର୍ଗର ବିଲକ୍ଷଣ କାଇଦା ବତାଇ ଦେଲେ ?

ଶ୍ରୀ ଭଗବାନ ଉବାଚ

**ଅହଂ ଯୂୟଂ ଅସୌ ଆର୍ଯ୍ୟ ଇମେ ଚ ଦ୍ୱାରକା-ଓକସଃ ।**
**ସର୍ବେଽପି ଏବଂ ଯଦୁଶ୍ରେଷ୍ଠ ବିମୃଗ୍ୟାଃ ସଚର-ଅଚରମ୍ ॥୨୩॥**

ଉ. ଭଗବାନ କହିଲେ, ''ହେ ପିତାଜୀ( ଯଦୁବଂଶର ମୁକୁଟମଣି, ମୁଁ, ଆପଣ (ଯୁୟଂ), ଏ ଦ୍ୱାରକାବାସୀ, ମୁନି, ଋଷିଗଣ (ଅସୌ), ଭାଇ ବଳରାମ (ଆର୍ଯ୍ୟ) ଏମାନେ ସମସ୍ତେ ଅଚର (ସ୍ଥାବର ବୃକ୍ଷଲତା ଜଗତ), ସଚର (ଜୀବ ଜଗତ) ସେଇ ଏକ ବ୍ରହ୍ମଙ୍କର ଅଂଶ । ଏକ ପରିବାରର ସଦସ୍ୟ । ଭାବନାରେ ଅଦ୍ୱୈତ । କାର୍ଯ୍ୟରେ କିନ୍ତୁ ଆମକୁ ଦ୍ୱୈତ ରଖିବାକୁ ହୁଏ । (ଭାବ ଅଦ୍ୱୈତଂ ସଦା କୁର୍ଯ୍ୟାତ୍ କାର୍ଯ୍ୟ-ଅଦ୍ୱୈତଂ ନ କର୍ହିଚିତ୍) ତାହା ନହେଲେ ଗୁରୁ-ଶିଷ୍ୟ, ପିତା-ପୁତ୍ର, ଭକ୍ତ-ଭଗବାନ ଇତ୍ୟାଦି ସଂସାର ଚଳଣି ଚାଲିବ କିପରି ? ଆମେ ସବୁ ନିଜକୁ ଭଗବାନଙ୍କ ଦାସ କି ସେବକ ମନେ କରି ତାଙ୍କ ସେବା କରିଚାଲିବା (ବିମୃଗ୍ୟାଃ) ଉଚିତ । ବର୍ତ୍ତମାନ ବସୁଦେବଜୀଙ୍କର କେବଳ ଦ୍ୱୈତଭାବ ଧାରଣାଟି ମଧ୍ୟ ପରିମାର୍ଜନ ହୋଇଗଲା । ଦ୍ୱୈତ-ଅଦ୍ୱେତର ସମନ୍ୱୟ ସାଧିତ ହେଲା ।

ପ୍ରଶ୍ନ-୭୭: ବସୁଦେବଙ୍କ ଅନ୍ତଃକରଣ (ମନ) ଶୁଦ୍ଧ ହେଲା ତତ୍ତ୍ୱଜ୍ଞାନ (ଶ୍ରଦ୍ଧା) ଦ୍ୱାରା । ଏବେ ଭଗବାନଙ୍କ ମାତା ଦେବକୀଙ୍କ ବୁଦ୍ଧିକୁ ଶୁଦ୍ଧ କରିବା ଦରକାର ପଡ଼ିଲା । ବୁଦ୍ଧି ଶୁଦ୍ଧିକୁ ବିଶ୍ୱାସ କହିଥାଆନ୍ତି । ଦେବକୀ କାଳିଆ ବଳିଆ ଦୁଇ ଭାଇଙ୍କୁ ଶୁଣାଇ କହିଲେ, ''ହେ ପିଲାଏ, ତୁମ ଦୁହିଁଙ୍କ ମାହାତ୍ମ୍ୟ ମୁନି ଋଷିଙ୍କ ଠାରୁ ଶୁଣିଥିଲି । ଏବେ ତୁମ ପିତାଙ୍କଠାରୁ ଶୁଣିଲି । ତୁମେ ସ୍ୱୟଂ ଭଗବାନ । ସଂସାରର ସକଳ ଦେବୀଦେବତା ଏପରିକି ଯମରାଜା ତୁମ ଅଧୀନସ୍ଥ । ତୁମେ ସାନ୍ଦିପନି ଗୁରୁଙ୍କ ମୃତ ପୁତ୍ରକୁ ଯମଙ୍କ ଦରବାରରୁ ଆଣି ଦେଇଛ ।'' କେଉଁ ଅଲୌକିକ, ଅସମ୍ଭବ କାର୍ଯ୍ୟ କରିପାରିଲେ ଦେବକୀ ସେ ଦୁହିଁଙ୍କୁ ଭଗବାନ ବୋଲି ବିଶ୍ୱାସ କରିବେ ବୋଲି ସର୍ତ୍ତ ବାଢ଼ିଲେ ?

**ଦେବକୀ ଉବାଚ**

**ତଥା ମେ କୁରୁତ କାମଂ ଯୁବାଂ ଯୋଗେଶ୍ୱରେଶ୍ୱରୌ ।**
**ଭୋଜରାଜ ହତାନ୍ ପୁତ୍ରାନ୍ କାମୟେ ଦ୍ରଷ୍ଟୁଂ ଆହୃତାନ୍ ॥୩୩॥**

ଉ. ଦେବକୀ କହିଲେ, ''ହେ କୃଷ୍ଣ ବଳରାମ ତୁମେ ଦୁହେଁ(ଯୁବାଂ) ମହାଯୋଗେଶ୍ୱର । କଂସ(ଭୋଜରାଜ) ମୋର ଛଅ ପୁତ୍ରଙ୍କୁ ମାରିଦେଇଛି । ମୁଁ ଚାହୁଁଛି (କାମୟେ) ସେମାନଙ୍କୁ ଦେଖିବାକୁ । ମୋତେ ଆଣି ଦିଅ ।''

ପ୍ରଶ୍ନ-୭୮: କୃଷ୍ଣ ବଳରାମ ଦୁଇ ଭାଇ ମାତାଙ୍କ ଇଚ୍ଛା ପୂରଣ କରିବା ନିମିତ୍ତ ବାହାରି ପଡ଼ିଲେ । ଭଗବାନ ସ୍ୱୟଂ ସର୍ବାନ୍ତର୍ଯ୍ୟାମୀ । ସେ ଜାଣିଗଲେ ଯେ ସେ ଛଅ ପୁତ୍ର ଏବେ ଯମଲୋକରେ ନାହାନ୍ତି । ଯୋଗମାୟାଙ୍କ ଇଚ୍ଛାରେ ତୃତୀୟ ପାତାଳ

ବା ସୁତଳ ଲୋକରେ ରାଜା ବଳିଙ୍କ ପୁରରେ ଶିଶୁ ଅବସ୍ଥାରେ ଅଛନ୍ତି । ଦୁଇ ଭାଇ ଯୋଗମାୟାଙ୍କୁ ଆଶ୍ରୟ କରି ପହଞ୍ଚିଗଲେ ରାଜା ବଳିଙ୍କ ଦରବାରରେ । ରାଜା ସଙ୍ଗେ ସଙ୍ଗେ ଚିହ୍ନିଗଲେ ଏ ସେଇ ପ୍ରଭୁ ବାମନଦେବ । ଏବେ କୃଷ୍ଣ ବଳରାମ ରୂପରେ ମନୁଷ୍ୟ ଲୀଳା କରୁଛନ୍ତି । ସେ ଦୁଇ ଠାକୁରଙ୍କୁ ପାଛୋଟି ନେଲେ । ଭବ୍ୟ ଆସନରେ ବସାଇଲେ । ପଦ ଧୌତ କଲେ ଦୁଇ ଭାଇଙ୍କର । ଜଳକୁ ସ୍ୱମସ୍ତକରେ ଧାରଣ କଲେ । ପରିବାର ବର୍ଗଙ୍କୁ ମଧ୍ୟ ଧାରଣ କରାଇଲେ । ଭଗବାନଙ୍କ ଅହୈତୁକୀ (ନ ମାଗୁଣୁ ବା ଯଦୃଚ୍ଛୟା) ଦର୍ଶନରେ ମହାରାଜ ବଳି କୃତ କୃତ୍ୟ ହୋଇ କିଭଳି ସ୍ତୁତି କରିଥିଲେ ?

ବଳିଃ ଉବାଚ

**ଦର୍ଶନଂ ବ ହି ଭୂତାନାଂ ଦୁଷ୍ପ୍ରାପଂ ଚ-ଅପି-ଅଦୁର୍ଲ୍ଲଭମ୍ ।**
**ରଜଃ ତମଃ ସ୍ୱଭାବାନାଂ ଯତ୍ ନଃ ପ୍ରାପ୍ତୌ ଯଦୃଚ୍ଛୟା ॥୪୦॥**

ଉ. ସ୍ୱର୍ଗରେ ଥିବା ଇନ୍ଦ୍ରାଦି ଦେବତାମାନଙ୍କୁ (ଭୂତାନାଂ) ଯାହାଙ୍କର ଦର୍ଶନ ଦୁର୍ଲ୍ଲଭ (ଦୁଷ୍ପ୍ରାପଂ) ତାଙ୍କ ଭଳି ଅସୁର ରାଜାଙ୍କୁ (ରଜଃ ତମଃ ସ୍ୱଭାବାନାଂ) ଦର୍ଶନ ସହଜରେ ମିଳିଯିବା (ଅଦୁର୍ଲ୍ଲଭମ୍) କ'ଣ କମ ବିଡ଼ମ୍ବନାର କଥା । ଏହି ସ୍ତୁତିଟି ଅତ୍ୟନ୍ତ ସଂକ୍ଷିପ୍ତ କିନ୍ତୁ ଭାବପୂର୍ଣ୍ଣ ।

ପ୍ରଶ୍ନ-୭୯ : ରାଜା ବଳିଙ୍କ ମନୋମୁଗ୍‌ଧକର ସ୍ତୁତି ଶୁଣି ଭଗବାନ ଏବେ ତାଙ୍କର ଆଗମନର କାରଣ କହିଲେ, ''ସ୍ୱାୟମ୍ଭୁବ ମନ୍ୱନ୍ତରରେ ମରୀଚି ମୁନିଙ୍କର ପତ୍ନୀ ଊର୍ଣ୍ଣାଙ୍କ ଗର୍ଭରେ ଏହି ଛଅ ପୁତ୍ର ପୂର୍ବରୁ ଜନ୍ମ ନେଇଥିଲେ । ଏମାନେ ସମସ୍ତେ ଦେବତା ଥିଲେ । ସୃଷ୍ଟିର ଆଦିକାଳରେ ସୃଷ୍ଟିକର୍ତ୍ତା ବ୍ରହ୍ମା ନିଜ କନ୍ୟା ସରସ୍ୱତୀଙ୍କୁ ଭୋଗ ଲାଳସା ଦୃଷ୍ଟି ପକାନ୍ତେ ଏମାନେ ହସି ଦେଇ ଘୋର ଅପରାଧ କରିଥିଲେ । ଅଭିଶାପ ଗ୍ରସ୍ତ ହେବା ପରେ ତିନି ଜନ୍ମରେ ମୁକ୍ତ ହେବେ ବୋଲି ବ୍ରହ୍ମାଙ୍କ ଆଦେଶ ହୋଇଥିଲା । ପୂର୍ବରୁ ଏମାନେ ଥରେ ହିରଣ୍ୟକଶିପୁର ପୁତ୍ର ରୂପେ ପରେ କାଳନେମୀ ଅସୁରର ପୁତ୍ର ରୂପେ ଜନ୍ମ ନେଇ ମରି ସାରିଛନ୍ତି । ଦେବକୀଙ୍କ ଗର୍ଭରେ ଜନ୍ମ ହୋଇ କଂସ ଦ୍ୱାରା ମରି ସାରି ଏବେ ତୁମ ସୁତଳ ଲୋକରେ ଅଛନ୍ତି । ଏମାନେ ପୁଣି ଦେବକୀ ଦେବୀଙ୍କ ସ୍ତନ୍ୟ ପାନ କଲେ ମୁକ୍ତ ହୋଇ ଦେବଲୋକକୁ ଯିବେ ।''

ଏହା ଶୁଣି ରାଜା ବଳି ସହର୍ଷ ଛଅ ଶିଶୁଙ୍କୁ ଭଗବାନଙ୍କ ହସ୍ତରେ ଅର୍ପଣ କଲେ । ଦୁଇ ଭାଇ ସେମାନଙ୍କୁ ନେଇ ମାତାଙ୍କ କୋଳରେ ସମର୍ପଣ କଲେ ।

ଯୋଗମାୟାଙ୍କ କୃପାରୁ ଦେବ ମାତା ଦେବକୀଙ୍କ ସ୍ତନରୁ ଦୁଗ୍ଧ ସ୍ରବିଲା । ଭଗବାନଙ୍କ ଦ୍ୱାରା ଆଗରୁ ଏହା ପାନ କରାଯାଇଥିଲା । ଏବେ ଭଗବାନଙ୍କର ସେଇ ଉଚ୍ଛିଷ୍ଟ ପ୍ରାପ୍ତ ହୁଅନ୍ତେ କଅଣ ଅବସ୍ଥା ହେଲା ସେମାନଙ୍କର ?

ଶ୍ରୀ ଶୁକ ଉବାଚ

**ତେ ନମସ୍କୃତ୍ୟ ଗୋବିନ୍ଦଂ ଦେବକୀଂ ପିତରଂ ବଳମ୍ ।**
**ମିଷତାଂ ସର୍ବଭୂତାନାଂ ଯଯୁଃ ଧାମ ଦିବ-ଔକସାମ୍ ॥୫୬॥**

ଉ. ଲୀଳାମୟ ଭଗବାନଙ୍କର ଅମୃତ ପ୍ରସାଦ ତୁଣ୍ଡରେ ଲାଗନ୍ତେ ସେମାନେ ବ୍ରହ୍ମଶାପରୁ ମୁକ୍ତ ହେଲେ । ସମସ୍ତେ ଗୋବିନ୍ଦଙ୍କୁ, ମାତାଙ୍କୁ, ପିତାଙ୍କୁ ଓ ବଳରାମଙ୍କୁ ସଭକ୍ତିକ ନମସ୍କାର କଲେ । ସମସ୍ତଙ୍କ ସାମନାରେ ଦେଖୁ ଦେଖୁ (ମିଷତାଂ) ସେମାନେ ଦେବ ଲୋକକୁ ଯାତ୍ରା କଲେ । ଦେବ ମାତା ଦେବକୀଦେବୀଙ୍କୁ ପରମଶାନ୍ତି ପ୍ରାପ୍ତହେଲା ।

# ଅଥ ୮୬ମ ଅଧ୍ୟାୟଃ

## (ଅର୍ଜୁନଙ୍କ ଦ୍ୱାରା ସୁଭଦ୍ରା ହରଣ ଓ ରାଜା ବହୁଳାଶ୍ୱ, ଶ୍ରୁତଦେବଙ୍କୁ ଭଗବାନଙ୍କ କୃପା)

ପ୍ରଶ୍ନ-୮୦: ଥରେ ଦ୍ୱାରକାଧୀଶ ଭଗବାନ ସକୁଟୁମ୍ବେ ପ୍ରଭାସ ତୀର୍ଥରେ ରହୁଥାନ୍ତି । ଚାତୁର୍ମାସ୍ୟ ସମୟ । ତୃତୀୟ ପାଣ୍ଡବ ଅର୍ଜୁନ ତୀର୍ଥଯାତ୍ରାରେ ଥାଆନ୍ତି । ଦୈବାତ୍ ପ୍ରଭାସ ନିକଟରେ ଶ୍ରୀକୃଷ୍ଣ ପହଞ୍ଚି ଶୁଣିଲେ ବଳରାମଜୀ ନିଜ ଭଗିନୀ ସୁଭଦ୍ରାଙ୍କୁ ବିବାହ ଦେବାକୁ ଚାହୁଁଛନ୍ତି ନିଜ ଗଦାଯୁଦ୍ଧ ଶିଷ୍ୟ ଦୁର୍ଯ୍ୟୋଧନଙ୍କ ସହିତ । ଏଥିରେ ଦେବକୀ, ବସୁଦେବ ଓ ଶ୍ରୀକୃଷ୍ଣ କେହି ସୁଖୀ ନୁହନ୍ତି । ସୁଭଦ୍ରାଙ୍କ ରୂପ ଗୁଣ ଶୀଳ ଅର୍ଜୁନ ପୂର୍ବରୁ ଶୁଣିଥିଲେ । ତାଙ୍କୁ ପତ୍ନୀ ରୂପେ ପାଇବା ଲୋଭରେ (ତତ୍ ଲିପ୍ସୁଃ) ସେ ଗୋପନରେ କି କୌଶଳ କଲେ ?

ଶ୍ରୀ ଶୁକ ଉବାଚ

**ଦୁର୍ଯ୍ୟୋଧନାୟ ରାମଃ ତାଂ ଦାସ୍ୟତି-ଇତି ନ ଚ-ଅପରେ ।**
**ତତ୍ ଲିପ୍ସୁଃ ସ ଯତିଃ ଭୂତ୍ୱା ତ୍ରିଦଣ୍ଡୀ ଦ୍ୱାରକାଂ ଅଗାତ୍ ॥୩॥**

ଉ. ଅର୍ଜୁନ ଜାଣିଲେ ମହାଯୋଦ୍ଧା ବଳରାମଜୀ ଅନ୍ୟ କାହାକୁ ଆଉ ତାଙ୍କ ଭଉଣୀଙ୍କୁ ଏତେ ସହଜରେ ଦେବେ ନାହିଁ ( ନ ଚ ଅପରେ) । ସେ କ୍ଷତ୍ରିୟ ବେଶ ଛାଡ଼ିଲେ । ଗେରୁଆ ବସ୍ତ୍ର ପିନ୍ଧିଲେ ଏବଂ ଶିଖା-ସୂତ୍ର ଧାରଣ କରି ତ୍ରିଦଣ୍ଡୀ ବ୍ରାହ୍ମଣ ସନ୍ନ୍ୟାସୀ ବେଶ ପକାଇଲେ । ଏକ ଦଣ୍ଡୀ ସନ୍ନ୍ୟାସୀ ବିବାହ ବିମୁଖତାର ସୂଚନା ଦିଏ । ତ୍ରିଦଣ୍ଡୀ ସନ୍ନ୍ୟାସୀ ଗୃହସ୍ଥାଶ୍ରମୀ ହେବା ଶାସ୍ତ୍ର ଅନୁମୋଦିତ । ସେ ଡ଼େରା ପକାଇଲେ ସେଇ ପ୍ରଭାସ ତୀର୍ଥରେ । ବର୍ଷା ଚାରିମାସ କାଟିବେ ସେଠାରେ ।

ପ୍ରଶ୍ନ-୮୧ : ବଳରାମଜୀ ଆଦୌ ଚିହ୍ନିପାରିଲେ ନି ଅର୍ଜୁନଙ୍କୁ ନିଖୁଣ ବୈରାଗୀ ବେଶରେ । ସେମାନେ ତ ସ୍ୱଭାବତଃ ସାଧୁ ସନ୍ଥ ସେବକ । ଦିନେ ନିମନ୍ତ୍ରଣ କରି ବାବାଜୀଙ୍କୁ ଘରେ ଖୁଆଇଲେ । ଶ୍ରୀକୃଷ୍ଣ ଦେଖିଲେ ସୁନ୍ଦର ଅବସର । ମାତା ରୁକ୍ମିଣୀ ଓ ସୁଭଦ୍ରାଙ୍କୁ ଭେଟ କରାଇଦେଲେ ପ୍ରିୟ ସଖା ଅର୍ଜୁନଙ୍କ ସହିତ । ଅର୍ଜୁନ ଓ ସୁଭଦ୍ରାଙ୍କର ଚାରି ଚକ୍ଷୁ ମିଳନ ହେଲା । ରୁକ୍ମିଣୀଙ୍କ ସହାୟତାରେ ସୁଭଦ୍ରା ହରଣ ଉପାୟ ସ୍ଥିରିକୃତ ହେଲା । ଯାଦବମାନଙ୍କର ବର୍ଷକରେ ଥରେ ରଥ ଯାତ୍ରା ହୁଏ । ପରିବାରରେ ସମସ୍ତେ ଭାଗନିଅନ୍ତି ସେ ଉତ୍ସବରେ । ରଥଯାତ୍ରା ଉତ୍ସବ ପାଳନ ସହିତ ସୁଭଦ୍ରାଙ୍କର କଅଣ ସମ୍ବନ୍ଧ ?

**ମହତ୍ୟାଂ ଦେବଯାତ୍ରାୟାଂ ରଥସ୍ଥାଂ ଦୁର୍ଗ ନିର୍ଗତାମ୍ ।**
**ଜହାର-ଅନୁମତଃ ପିତ୍ରୋଃ କୃଷ୍ଣସ୍ୟ ଚ ମହାରଥଃ ॥୯॥**

ଉ. ଏହି ମହୋତ୍ସବରେ (ମହତ୍ୟାଂ) ସମସ୍ତ ନଗରବାସୀ ଆନନ୍ଦରେ ମାତିଥାନ୍ତି । ସୁଭଦ୍ରା ରୁକ୍ମିଣୀ-କୃଷ୍ଣଙ୍କ ଯୋଜନା ଅନୁଯାୟୀ ରଥ ଚଢ଼ି ଦୁର୍ଗ ବାହାରକୁ ବାହାରିଲେ । ମହାରଥୀ ଅର୍ଜୁନ ପରିସ୍ଥିତିର ଠିକ୍ ଫାଇଦା ଉଠାଇଲେ । ନିଜ ଧନୁଶର ଧରି ସୁଭଦ୍ରାଙ୍କ ରଥ ଉପରକୁ ଉଠି ଆସିଲେ ।

ପ୍ରଶ୍ନ-୮୨ : ସୁଭଦ୍ରା ଓ ଅର୍ଜୁନ ଦୁହେଁ ଇନ୍ଦ୍ରପ୍ରସ୍ଥ ଅଭିମୁଖେ ରଥ ଧରି ପଳାୟନ କଲେ । ସୈନ୍ୟମାନେ ବିରୋଧ କଲେ ସିନା ଅର୍ଜୁନଙ୍କ ଧନୁ ତୀର ସାମନା କରି ନପାରି ବଳରାମଙ୍କୁ ଏ କଥାର ସୂଚନା ଦେଲେ ବାଧ ହୋଇ । ବଳରାମଜୀ ସୁଭଦ୍ରା ହରଣ କଥା ଶୁଣି କି ପ୍ରକାରେ ନିଜ ଭଉଣୀଙ୍କୁ ଉଦ୍ଧାର କରିଥିଲେ ?

**ତତ୍ ଶ୍ରୁତ୍ୱା କ୍ଷୁଭିତୋ ରାମଃ ପର୍ବଣି-ଇବ ମହା-ଅର୍ଣ୍ଣବଃ ।**
**ଗୃହୀତ ପାଦଃ କୃଷ୍ଣେନ ସୁହୃତ୍ ଭିଃ ଚ-ଅନୁଶାନ୍ତ୍ୱିତଃ ॥୧୧॥**

ଉ. ଉଦ୍ଧାର କରିବା ପ୍ରଶ୍ନ ଆଦୌ ଉଠି ପାରିଲା ନାହିଁ । ପୂର୍ଣ୍ଣିମା ତିଥିରେ (ପର୍ବଣି-ଇବ) ପୂର୍ଣ୍ଣଚନ୍ଦ୍ର ଉଦୟ ହେଲେ ମହା ସମୁଦ୍ରରେ ଉତ୍ତାଳ ଲହରି ଉଠେ ।

ସମୁଦ୍ର ମହାଗର୍ଜନ କରି ଅତ୍ୟନ୍ତ ବିଚଳିତ (କ୍ଷୁଭିତ) ହୁଏ । ଠିକ୍ ସେହିଭଳି ବଳରାମଜୀ ନିଜ ହଳ ମୂଷଳ ଧରି ପୃଥିବୀକୁ ଓଲଟାଇ ଦେବାକୁ ଡ଼େଇଁ ପଡ଼ିଲେ । ଭଗବାନ କୃଷ୍ଣ ଦେଖିଲେ ଅବସ୍ଥା ଅସମ୍ଭାଳ । ତୁରନ୍ତ ପିତା ମାତାଙ୍କୁ ଧରି ତାଙ୍କ ପାଦ ଧରି ପକାଇଲେ (ଗୃହୀତ ପାଦଃ) ଶାନ୍ତ କରାଇବାକୁ ଯାଇ କହିଲେ, ''ଭାଇ, ଯାହା ସାଙ୍ଗରେ ସୁଭଦ୍ରା ଯାଇଛି ସେ ଅନ୍ୟ କେହି ନୁହେ, ଆମ ପିଉସୀ କୁନ୍ତୀଙ୍କ ମଧ୍ୟମ ପୁତ୍ର ଅର୍ଜ୍ଜୁନ । ସେ ତ ସେପରି କିଛି ଅଯୋଗ୍ୟ ବର ନୁହେଁ । ପୁଣି ଅର୍ଜ୍ଜୁନ ହରଣ କରି ନାହିଁ ଆମ ସୁଭଦ୍ରାକୁ । ବରଂ ସୁଭଦ୍ରା ହରଣ କରିଛି ଅର୍ଜ୍ଜୁନକୁ । ଆପଣ ପଚାରି ବୁଝନ୍ତୁ ଯେ ସୁଭଦ୍ରା ଓ ଅର୍ଜୁନ ମଧ୍ୟରୁ ରଥ କିଏ ଚଳାଉଥିଲା । ବଡ଼ ଠାକୁର ବୁଝିଗଲେ ଏସବୁ କହ୍ନେଇର ଚତୁର କାଣ୍ଡ । ସଙ୍ଗେ ସଙ୍ଗେ କ୍ରୋଧ ସମ୍ବରଣ କଲେ । ଭଉଣୀ ଭିଣୋଇଙ୍କୁ ବାଟରୁ ଫେରାଇ ଆଣିଲେ । ବେଦୀରେ ବସାଇଲେ ବିଭାଘର କରାଇଲେ । ଯଥାଯୋଗ୍ୟ ଯୌତୁକ ଦେଇ ଭବ୍ୟ ବିଦାୟ ମଧ୍ୟ କରିଥିଲେ ।

ପ୍ରଶ୍ନ-୮୩: ଭଗବାନଙ୍କର ଦ୍ୱାରକାପୁରୀରେ ଥିବା ବେଳର କଥା । ଥରେ ତାଙ୍କର ଭାରତ ଭୂମିରେ ଭକ୍ତ ଦର୍ଶନ ଲାଳସା ଉତ୍ପନ୍ନ ହୋଇଛି । ମିଥିଳା ରାଜ୍ୟର ରାଜାଙ୍କୁ ସେତେବେଳେ ବିଦେହ (ଦେହଭାବଶୂନ୍ୟ ଆତ୍ମଭାବ ଜାଗ୍ରତ) ରାଜନ ବହୁଳାଶ୍ୱ କୁହାଯାଉଥିଲା । ତାଙ୍କ ରାଜ୍ୟରେ ଜଣେ ନୈଷ୍ଠିକ ବ୍ରାହ୍ମଣ ମଧ୍ୟ ଥାଆନ୍ତି । ନାମ ତାଙ୍କର ଶ୍ରୁତଦେବ । ଉଭୟେ ନାରାୟଣ ଭକ୍ତ । ବୈଷ୍ଣବ ରାଜା ଓ ବୈଷ୍ଣବ ପ୍ରଜାଙ୍କର ଭକ୍ତିର ପରୀକ୍ଷା ନେବାକୁ ଗରୁଡ଼ ପିଠିରେ ଭଗବାନ ବାହାରି ପହଞ୍ଚିଲେ ମିଥିଳା । ସାଙ୍ଗରେ ଥାଆନ୍ତି ନାରଦ, କାମଦେବ, ଅତ୍ରି, ବ୍ୟାସ, ପର୍ଶୁରାମ, ଅସିତ, ଅରୁଣି, ଶୁକଦେବ, ବୃହସ୍ପତି, କଣ୍ୱ, ମୈତ୍ରେୟ ଓ ଚ୍ୟବନ ଆଦି ଅନେକ ମୁନି ଋଷି ସମୂହ । ସେମାନେ ଭିନ୍ନ ଭିନ୍ନ ରାଜ୍ୟ ମଧ୍ୟ ଦେଇଗଲା ବେଳେ ରାଜା ପ୍ରଜାଙ୍କ ଠାରୁ ସେମାନଙ୍କୁ ସ୍ଥାନେ ସ୍ଥାନେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ମିଳୁଥାଏ ।

ମିଥିଳା ରାଜ୍ୟ ସୀମାରେ ପହଞ୍ଚିଲେ ଭଗବାନ । ଅସଂଖ୍ୟ ପ୍ରଜାଗଣଙ୍କ ସହିତ ରାଜା ଅଞ୍ଜଳିରେ ଭେଟି ଧରି ସ୍ୱାଗତ କଲେ ସମସ୍ତଙ୍କୁ । ରାଜା ନିଜେ ଠାକୁରଜୀଙ୍କ ପାଦତଳେ ପଡ଼ିଲେ । ଶ୍ରୁତଦେବ ବ୍ରାହ୍ମଣ ସେତେବେଳେ କଅଣ କଲେ ?

**ନ୍ୟମନ୍ତ୍ରୟେତାଂ ଦାଶାର୍ହଂ ଆତିଥ୍ୟେନ ସହ ଦ୍ୱିଜୈଃ ।**
**ମୈଥିଳଃ ଶ୍ରୁତଦେବଃ ଚ ଯୁଗପତ୍ ସଂହତ-ଅଞ୍ଜଳୀ ॥୨୫॥**

ଉ. ମିଥିଳାର ରାଜା ବହୁଳାଶ୍ୱ (ମୈଥିଳଃ) ଓ ଶ୍ରୁତଦେବ ବ୍ରାହ୍ମଣ ଉଭୟେ ଏକାସଙ୍ଗେ (ଯୁଗପତ) ଭଗବାନଙ୍କ (ଦାଶାର୍ହଂ) ଦୁଇ କରମଳକୁ ଜାବୁଡ଼ି ଧରିଲେ

(ସଂହତ-ଅଞ୍ଜଳୀ) । ନିଜ ନିଜ ଘରକୁ ନିମନ୍ତ୍ରଣ କରି ବସିଲେ ଆତିଥ୍ୟର ସୁଯୋଗ ଦେବାକୁ ଭଗବାନଙ୍କୁ ଓ ମୁନି, ଋଷି, ବ୍ରାହ୍ମଣ ମଣ୍ଡଳୀକୁ (ଦ୍ୱିଜୈଃ) ।

ପ୍ରଶ୍ନ-୮୪: ଲୋକେ ଜାଣିବାକୁ ଭଗବାନ ଅଡୁଆ ପରିସ୍ଥିତିରେ ପଡ଼ିଗଲେ । କାହାକୁ ହଁ କହିବେ । କାହାକୁ ନାହିଁ କହିବେ । ସେ ତ ଲୀଳାମୟ । ଭକ୍ତ ବତ୍ସଳ । ଭଗବାନ ଏକ ବଡ଼ ଚମତ୍କାର ଦେଖାଇଲେ । ଦୁହିଁଙ୍କର ଆତିଥ୍ୟ ସତ୍କାର ସ୍ୱୀକାର କଲେ । ନିଜେ ଦୁଇ ଜଣ କୃଷ୍ଣ ହୋଇଗଲେ । ଦୁଇ ଜଣଙ୍କ ସାଙ୍ଗରେ ଚାଲିଲେ । ପୁଣି ମୁନି ଋଷିଗଣ ମଧ୍ୟ ଦୁଇ ଦୁଇ ଭାଗ ହୋଇ ଦୁଇ ଜଣଙ୍କ ସାଥିରେ ଗଲେ । ଯୋଗମାୟାଙ୍କ ଇଚ୍ଛାରେ ଏ ରହସ୍ୟ କାହାକୁ ବୁଝାପଡ଼ିଲା ନାହିଁ । ରାଜାଙ୍କ ଘରେ ବହୁ ଆଡ଼ମ୍ବରରେ ସେମାନଙ୍କୁ ସ୍ୱାଗତ କରାଗଲା । ରାଜା ସୁନ୍ଦର ସ୍ତୁତି କଲେ ଭଗବାନଙ୍କର ଏବଂ ସାଧୁ ସନ୍ଥଙ୍କର । ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ବାସସ୍ଥାନ ଭୋଜନ ରହଣି ରାଜକୀୟ କାଇଦାରେ ହେଉଥାଏ । ସମୟ ଜଣା ପଡୁନଥାଏ । ରାଜାଙ୍କ ଗୃହରେ ଅନେକ ଦିନ ରହିଗଲେ ସମସ୍ତେ ।

ଅନ୍ୟ ପକ୍ଷରେ ଶ୍ରୁତଦେବ ବ୍ରାହ୍ମଣ ସମସ୍ତଙ୍କୁ ଧରି ନିଜ ଗୃହକୁ ପାଛୋଟି ନେବା ବେଳେ କେତେ ଆନନ୍ଦିତ (ସୁସଂହୃଷ୍ଟୋ) ହେଉଥିଲେ ?

**ଶ୍ରୁତଦେବୋଽଚ୍ୟୁତଂ ପ୍ରାପ୍ତଂ ସ୍ୱଗୃହାନ୍ ଜନକୋ ଯଥା ।**
**ନତ୍ୱା ମୁନୀନ୍ ସୁସଂହୃଷ୍ଟୋ ଧୁନ୍ୱନ୍ ବାସୋ ନନର୍ତ୍ତ ହ ॥୩୮॥**

ଉ. ଭଗବାନଙ୍କୁ (ଅଚ୍ୟୁତଂ) ଅତିଥି ରୂପେ ବରଣ କରି ସମସ୍ତଙ୍କୁ ନେଇ ଠିକ ରାଜାଙ୍କ ଭଳି ସମସ୍ତଙ୍କୁ ବିନମ୍ର ପ୍ରଣାମ କଲେ । ସେ ଏତେ ଖୁସିହେଲେ ଯେ ନିଜ ଗାମୁଛ ।(ବାସୋ) ଖଣ୍ଡକ ମୁଣ୍ଡ ଉପରକୁ ଟେକି ହାତରେ ହଲାଇ ହଲାଇ (ଧୁନ୍ୱନ୍) ନାଚି ନାଚି (ନିମିତ୍ତ) ସେମାନଙ୍କ ଆଗେ ଆଗେ ଚାଲୁଥିଲେ ।

ପ୍ରଶ୍ନ-୮୫: ବ୍ରାହ୍ମଣ ଘରେ ପହଞ୍ଚିଲା ପରେ ସ୍ୱାମୀ ସ୍ତ୍ରୀ ଉଭୟେ ସମସ୍ତଙ୍କର ଯଥା ଯୋଗ୍ୟ ସତ୍କାରରେ ପ୍ରାଣ ପଣେ ଲାଗି ପଡ଼ିଲେ । ଜଣ ଜଣ କରି ଚରଣ ଧୌତ କଲେ । ଧୌତ ଜଳକୁ ମସ୍ତକରେ ଧାରଣ କଲେ । କୃତକୃତ୍ୟ ହେଲେ । ଭାବିଲେ କୋଟି ଜନ୍ମର ତପସ୍ୟାର ଫଳ ମିଳିଛି ଆଜି ତାଙ୍କୁ । ଶ୍ରୁତଦେବ ବ୍ରାହ୍ମଣ କିଭଳି ସ୍ତୁତି କଲେ ଭକ୍ତ ଭଗବାନଙ୍କ ମହାସଭାକୁ ?

**ଶ୍ରୁତଦେବ ଉବାଚ**

**ଶୃଣ୍ୱତାଂ ଗଦତାଂ ଶଶ୍ୱତ୍ ଅର୍ଚ୍ଚତାଂ ତ୍ୱା-ଅଭିବନ୍ଦତାମ୍ ।**
**ନୃଣାଂ ସମ୍ବଦତାଂ ଅନ୍ତଃ ହୃଦି ଭାସି-ଅମଲ-ଆତ୍ମନାମ୍ ॥୪୬॥**

ଉ. ଶ୍ରୁତଦେବ କହିଲେ, ‘‘ହେ ପ୍ରଭୋ, ଆପଣ କେବଳ ସେଇ ସେଇ ଭକ୍ତମାନଙ୍କର ନିର୍ମଳ ଅନ୍ତରରେ (ଅନ୍ତଃ ହୃଦି) ପ୍ରକଟ ହୋଇ (ଭାସି) ସେମାନଙ୍କୁ ପ୍ରେମ ପ୍ରଦାନ କରନ୍ତି ଯେଉଁମାନେ ଆପଣଙ୍କ ନାମ, ରୂପ, ଲୀଳା, ଗୁଣ ଆଦିର ଶ୍ରବଣ, କୀର୍ତ୍ତନ, ଅର୍ଚ୍ଚନ, ନମନ ନିରବଛିନ୍ନ ଭାବରେ (ଶଶ୍ୱତ୍) କରୁଥାନ୍ତି । ବିପରୀତ ପକ୍ଷରେ ଅଭକ୍ତମାନଙ୍କ ହୃଦୟରେ ଗୋଟାସୁଦ୍ଧା ଥିଲେ ମଧ୍ୟ ସେମାନେ ସେ ପ୍ରେମାନନ୍ଦର ଟେର ପାଇବାରେ ଅକ୍ଷମ । ଆପଣଙ୍କର ସ୍ମରଣକାରୀ ପାଇଁ ଆପଣା ପ୍ରେମ ସ୍ୱରୂପ ଓ ବିସ୍ମରଣକାରୀ ପାଇଁ ମହାଭୟଙ୍କର ମୃତ୍ୟୁ ସ୍ୱରୂପ ଅଟନ୍ତି ।

ପ୍ରଶ୍ନ-୮୬: ଭଗବାନ ତ ନିଦା ବିଷ୍ଣୁ । ତାଙ୍କୁ ପାଞ୍ଚ ଉପଚାରରେ କି ଷୋଡ଼ଶ ଉପଚାରରେ ପୂଜା କରାଗଲା ସେ କଥା ଦେଖନ୍ତି ନାହିଁ । ଆଞ୍ଜୁଳାଏ ଜଳ ସହ ତୁଳସୀ ପତ୍ର ଶ୍ରଦ୍ଧା ସହ ଅର୍ପଣ କଲେ ସେ ପ୍ରସନ୍ନ ହୋଇଯାଆନ୍ତି । ଏଠାରେ ଏତେ ମୁନି ଋଷି ସାଧୁ ସନ୍ଥ ସମବେତ ହୋଇଛନ୍ତି । ଶ୍ରୁତଦେବଙ୍କ ଘରେ ବସିବାକୁ ଯାଗା ନାହିଁ । ପିଢ଼ା, ପାଣି, ଜଳ ଯୋଗ ବ୍ୟବସ୍ଥା କଥା ଉଠୁଛି କେତେବେ ? ଅତଏବ ଭଗବାନଙ୍କୁ କ’ଣ କହିବାକୁ ମୁହଁ ଖୋଲିବାକୁ ପଡ଼ିଲା ?’’

ଶ୍ରୀ ଭଗବାନ ଉବାଚ

**ବ୍ରହ୍ମନ୍ ତେଽନୁଗ୍ରହ-ଅର୍ଥାୟ ସଂପ୍ରାପ୍ତାନ୍ ବିଦ୍ଧି-ଅମୂନ୍ ମୁନୀନ୍ ।**
**ସଞ୍ଚରନ୍ତି ମୟା ଲୋକାନ୍ ପୁନନ୍ତଃ ପାଦରେଣୁଭିଃ ॥୫୧॥**

ଉ. ଭଗବାନ କହିଲେ, ‘‘ହେ ବ୍ରହ୍ମନ୍, ତୁମେ ଜାଣି ରଖ ଯେ ତୁମକୁ କେବଳ ଆଶୀର୍ବାଦ ଦେଇ କୃତାର୍ଥ କରିବାକୁ ଏ ମହା ମହାଯୋଗୀ ଋଷିମାନେ ଆସିଛନ୍ତି । ସେମାନଙ୍କ ଭ୍ରମଣରେ ଯେଉଁ ପାଦଧୂଳି ଉଡ଼ିଥାଏ ତାହା ଜଗତ (ଲୋକାନ୍) ପବିତ୍ର କରିଥାଏ । ମନ୍ଦିରର ବିଅଁ, ଦେବତା, ତୀର୍ଥ ଧାମ ସବୁ ବହୁ ବିଳମ୍ବରେ କୃପା କରନ୍ତି । ଅଥଚ ସାଧୁ ଦର୍ଶନ ମାତ୍ରକେ ସାଧକ କୃପାପ୍ରାପ୍ତ ହୁଏ । ଜଡ଼ ଠାରୁ ଚେତନ ଶ୍ରେଷ୍ଠ । ଚେତନ ମଧ୍ୟରେ ଜଙ୍ଗମ ଶ୍ରେଷ୍ଠ । ଅଣ୍ଡଜ ଜରାୟୁଜ ମଧ୍ୟରେ ମନୁଷ୍ୟ ଶ୍ରେଷ୍ଠ । ପୁଣି ମନୁଷ୍ୟ ମଧ୍ୟରେ ବ୍ରାହ୍ମଣ ଶ୍ରେଷ୍ଠ । ସେ ବ୍ରାହ୍ମଣ ଯଦି ତପ କଲା, ବେଦ ପଢ଼ିଲା, ଯଦୃଚ୍ଛା ଲାଭ ସନ୍ତୁଷ୍ଟ ରହିପାରିଲା ସେ ଆତ୍ମଜ୍ଞାନ ରୂପୀ ବ୍ରହ୍ମତେଜ ପ୍ରାପ୍ତ ହେବ । ଯଦି ସେ ନାରାୟଣ ଧ୍ୟାନ କଲା ତେବେ ତାର ଦର୍ଶନ, ସ୍ପର୍ଶ, ଆଲିଙ୍ଗନ, ପାଦ ପୂଜନର ମହିମା ଆଉ କଅଣ କହିବା ।’’

ପ୍ରଶ୍ନ-୮୭: ଭଗବାନ ନାରାୟଣ ସ୍ୱୟଂ ଦେବମୟ। ବ୍ରାହ୍ମଣ କିନ୍ତୁ ବେଦମୟ। ନାରାୟଣ ପୁଣି ବେଦ ସ୍ୱରୂପ। ଭଗବାନଙ୍କ ପାଇଁ ବ୍ରାହ୍ମଣ କେତେ ପ୍ରିୟ(ଦୟିତ) ବୋଲି ସେ ବ୍ରାହ୍ମଣଙ୍କୁ ଜଣେଇ ଦେଲେ ?

**ନ ବ୍ରାହ୍ମଣାତ୍ମେ ଦୟିତଂ ରୂପଂ ଏତତ୍ ଚ ଚତୁର୍ଭୁଜମ୍ ।**
**ସର୍ବ ବେଦମୟୋ ବିପ୍ରଃ ସର୍ବଦେବ ମୟୋ ହି-ଅହମ୍ ॥୫୪॥**

ଉ. ସାରା ସଂସାରକୁ ଜଣାଇବା ଉଦ୍ଦେଶ୍ୟରେ ଭଗବାନ କହିଲେ, ‘‘ମୋର ଏ ଚତୁର୍ଭୁଜ ବା ଚାରି ହାତ ଏତେ ପ୍ରିୟ ନୁହନ୍ତି ଯେତେ ପ୍ରିୟ ମୋ ପାଇଁ ଏହି ବ୍ରାହ୍ମଣ ସମାଜ । ସୁତରାଂ ଯଦି ପାରୁଛ ଏ ଋଷି ବ୍ରାହ୍ମଣଙ୍କୁ ଶ୍ରଦ୍ଧାପୂର୍ବକ ପ୍ରସନ୍ନ କର । କେବଳ ମୁନି ଋଷିଙ୍କୁ ନିମନ୍ତ୍ରଣ କରି ଆଣି ଆଦର ସତ୍କାର କରି ନପାରି ଅପରାଧ ଭାଗୀ ହୁଅ ନାହିଁ ।’’ ଆଧୁନିକ ସମାଜ ପାଇଁ ଭଗବାନଙ୍କର ଏହା ଏକ ସ୍ମରଣଯୋଗ୍ୟ ଚେତାବନି ।

ପ୍ରଶ୍ନ-୮୮: ପରିଶେଷରେ ଭକ୍ତ ରାଜା ବହୁଳାଶ୍ୱ ଓ ଦରିଦ୍ର ବ୍ରାହ୍ମଣ ଶ୍ରୁତଦେବ ଉଭୟଙ୍କର ସଦ୍‌ଗତି ହୋଇଛି । ଯୋଗମାୟାଙ୍କର ରହସ୍ୟ ଏବେ ଖୋଲି ଯାଇଛି । ରାଜା ଘରେ ଭଗବାନ ଅଠେଇଶ ଦିନ ରହିଲେ । ବ୍ରାହ୍ମଣଙ୍କ ଘରେ ମାତ୍ର କେଇ ଘଣ୍ଟା । ଫେରିବା ବେଳକୁ କିନ୍ତୁ କାଳ ଆଦୌ ଅମେଳ ନ ହୋଇ ମେଳ ହୋଇଯାଇଛି । ପୁଣି ପୂର୍ବଭଳି ଦୁଇ କୃଷ୍ଣ ମିଶି ଏକ ଓ ଦୁଇ ଦଳ ମୁନି ଋଷି ମିଶି ଏକ ଦଳ ହୋଇଯାଇଛନ୍ତି । ଯୋଗମାୟାଙ୍କର କମାଲ ଦେଖି ବ୍ୟାସ, ନାରଦ, ପର୍ଶୁରାମ ଆଦି ବିସ୍ମୟ ପ୍ରକାଶ କରିଛନ୍ତି । ତେବେ ସବୁଠାରୁ ବିସ୍ମୟକାରୀ ଆଉ କେଉଁ ଘଟଣା ଲକ୍ଷ୍ୟ କରାଗଲା ସେ ଲୀଳାରେ ?

ଶ୍ରୀ ଶୁକ ଉବାଚ

**ଏବଂ ସ୍ୱ ଭକ୍ତୟୋ ରାଜନ୍ ଭଗବାନ୍ ଭକ୍ତଭକ୍ତିମାନ୍ ।**
**ଉଷିତ୍ୱା-ଆଦିଶ୍ୟ ସତ୍ମାର୍ଗଂ ପୁନଃ ଦ୍ୱାରବତୀଂ ଅଗାତ୍ ॥୫୯॥**

ଉ. ଉଭୟ ପରିସ୍ଥିତିରେ ଭଗବାନ ଉଚିତ ମାର୍ଗ ଦର୍ଶନ କଲେ। ପୁଣି ଭକ୍ତର ମଧ୍ୟ ଭକ୍ତ ହୋଇଗଲେ (ଭକ୍ତଭକ୍ତିମାନ୍)। ସମଗ୍ର ଭାଗବତ ଗ୍ରନ୍ଥ ମଧ୍ୟରେ କେବଳ ଏହି ଗୋଟିଏ ସ୍ଥାନରେ ଭକ୍ତଭକ୍ତିମାନ ଶବ୍ଦର ପ୍ରୟୋଗ ସାର୍ଥକ ହୋଇଛି । ଭକ୍ତ ବତ୍ସଳ ଗୁଣଠାରୁ ଏ ପଦବୀ ଆହୁରି ଗାରିମା ବଢ଼ାଇଦେଲା ଭଗବାନ ଶ୍ରୀକୃଷ୍ଣଙ୍କର ।

ଭକ୍ତ-ଭକ୍ତି-ଭଗବାନଙ୍କର ଜୟ ହେଉ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

# ଅଥ ୮୭ମ ଅଧ୍ୟାୟଃ

## (ବ୍ରହ୍ମ ସ୍ତୁତି ବା ବେଦ ସ୍ତୁତି)

ପ୍ରଶ୍ନ-୮୯: ବୈଷ୍ଣବ ଭକ୍ତମାନେ ସଗୁଣ ସାକାର ଶ୍ରୀକୃଷ୍ଣଙ୍କର ଓ କର୍ମଯୋଗୀମାନେ ସଗୁଣ ନିରାକାର ପରମାତ୍ମା ନାରାୟଣଙ୍କ ବର୍ଣ୍ଣନା କରିଥାନ୍ତି । ପୂର୍ବ ଅଧ୍ୟାୟରେ ଶ୍ରୀକୃଷ୍ଣ ଶ୍ରୁତଦେବ ବ୍ରାହ୍ମଣଙ୍କୁ ସତ୍‌ମାର୍ଗର ଉପଦେଶ ଦେବା କଥା କୁହାଗଲା । ଶ୍ରୁତଦେବଙ୍କୁ ଅଦ୍ୱୈତ ବ୍ରହ୍ମଜ୍ଞାନର ଅନୁଭବ ନଥିବାରୁ ସେ ବ୍ୟାସ, ନାରଦ, ଶୁକ ଆଦି ମୁନିଋଷିଙ୍କ ଯଥୋଚିତ ସେବା ସତ୍କାର କରିପାରିନାହାନ୍ତି । ସେଥିପାଇଁ ଭଗବାନ ଯାହା ଶବ୍ଦ ପ୍ରୟୋଗ କରିଥିବେ ତାହା ନିଶ୍ଚୟ ବ୍ରହ୍ମ ବିଷୟକ ବେଦବାଣୀ ହୋଇଥିବ । ଏ ଜଟିଳ ବେଦବାଣୀରେ ମୁଣ୍ଡ ପୁରାଇ ପରୀକ୍ଷିତ ମହାରାଜା କ'ଣ ଏମିତି ପ୍ରଶ୍ନଟିଏ କରି ବସିଲେ ଯେ ଶୁକଦେବ ପରମହଂସଙ୍କ ପକ୍ଷେ ତାର ଉତ୍ତର ଦେବା ଅସମ୍ଭବ ମନେ ହେଲା ?

ରାଜା ଉବାଚ

**ବ୍ରହ୍ମନ୍ ବ୍ରହ୍ମଣି-ଅନିର୍ଦ୍ଦେଶ୍ୟେ ନିର୍ଗୁଣେ ଗୁଣବୃତ୍ତୟଃ ।**
**କଥଂ ଚରନ୍ତି ଶ୍ରୁତୟଃ ସାକ୍ଷାତ୍ ସତ୍‌ଅସତଃ ପରେ ।।୧।।**

ଉ. ସେହି ବ୍ରହ୍ମ ବିଷୟକ ପ୍ରଶ୍ନଟି ଯେତିକି ଅଡୁଆ ସେତିକି ଗମ୍ଭୀର ମଧ୍ୟ । ରାଜା କହିଲେ, ''ହେ ଶ୍ରଦ୍ଧେୟ ଗୁରୁଦେବ (ବ୍ରହ୍ମନ୍), ବ୍ରହ୍ମ ସ୍ୱୟଂ ନିର୍ଗୁଣ, ଅନିର୍ବଚନୀୟ (ଅନିର୍ଦ୍ଦେଶ୍ୟେ), କାର୍ଯ୍ୟ-କାରଣ (ସତ୍‌ଅସତଃ) ଉଭୟରୁ ଅତୀତ । ତ୍ରିଗୁଣା ବିଷୟା ବେଦାଃ କହି ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୁଝାଇଛନ୍ତି ବେଦ ବାଣୀ ସବୁ ସତ୍ତ୍ୱ-ରଜୋ-ତମୋ ଗୁଣୀ ବର୍ଣ୍ଣନା ବୋଲି । ସେପରି ସ୍ଥଳେ ବେଦବାଣୀ (ଶ୍ରୁତୟଃ) ସବୁ ବ୍ରହ୍ମଙ୍କ ବର୍ଣ୍ଣନା କଲେ କେମିତି ?''

ପ୍ରଶ୍ନ-୯୦: ଏ ପ୍ରଶ୍ନଟି ଏତେ ଗମ୍ଭୀର ଯେ ଏହି ବେଦ ସ୍ତୁତି ଅଧ୍ୟାୟର ଟୀକା ଲେଖିଲା ବେଳେ ପ୍ରସିଦ୍ଧି ପ୍ରସିଦ୍ଧ ସ୍ୱନାମ ଧନ୍ୟ ଧୂରୀଣ ଟୀକାକାର ଯଥା ଶ୍ରୀଧର ସ୍ୱାମୀ, ବିଶ୍ୱନାଥ ଚକ୍ରବର୍ତ୍ତୀ, ସନାତନ ଗୋସ୍ୱାମୀ, ଜୀବ ଗୋସ୍ୱାମୀ ଆଦି

ମହାପୁରୁଷମାନେ ବିଚଳିତ ହୋଇ ନିଜ ନିଜ ଇଷ୍ଟ ସ୍ମରଣ କରି ସାରି ଟୀକା ଲେଖିବାକୁ ସାହସ କରିଛନ୍ତି । ଶୁକଦେବଜୀ ଏ ସମ୍ବନ୍ଧରେ କିଛି କହିବା ପୂର୍ବରୁ ଆଗରୁ ଏ ପ୍ରଶ୍ନ ନାରଦଜୀ ବଦ୍ରିନାଥ ଆଶ୍ରମରେ ନାରାୟଣଙ୍କୁ ପଚାରିଥିବା କଥା କହିଛନ୍ତି । ପୁଣି ସେହି ପ୍ରଶ୍ନ ନାରାୟଣ ଦେଇ ନପାରି ନାରଦଙ୍କୁ ବୁଝାଇଛନ୍ତି ଯେ ସ୍ୱର୍ଗଲୋକର ଉପରଲୋକ ମହଲୋକ ଉପରେ ଥିବା ଜନଲୋକରେ ମହାନ୍ ମହାନ ଜ୍ଞାନୀମାନଙ୍କ ସଭାରେ ଏ ବିଷୟରେ ଥରେ ଜଟିଳ ବିବାଦ ଉପୁଜିଥିଲା । ସେତେବେଳ ଚତୁଃସନକ ମଧ୍ୟରୁ ସନନ୍ଦନ ବ୍ରହ୍ମଙ୍କର ବ୍ୟାଖ୍ୟା ଶୁଣାଇଛନ୍ତି । ତାହା ପୁଣି ତାଙ୍କର ନିଜର ବ୍ୟାଖ୍ୟା ନୁହେଁ । ବ୍ରହ୍ମ ପ୍ରଳୟ ପରେ ଆଉ ଥରେ ସୃଷ୍ଟି ହେବା ପୂର୍ବରୁ କାରଣାର୍ଣ୍ଣବଶାୟୀ ନାରାୟଣଙ୍କୁ ବେଦ ଋଚାମାନେ ଗୋଟିଏ ଗୋଟିଏ ନାରୀ ରୂପ ଧାରଣ କରି ଯାହା ଶୁଣାଇଥିଲେ ଅଠେଇଶି ଶ୍ଳୋକରେ (୧୪ଶ ଠାରୁ ୪୧ମ) ସେ ସବୁକୁ ସେ ଅବିକଳ ଶୁଣାଇଦେଲେ । ଯାହାକୁ ନାରାୟଣ ପରେ ନାରଦଙ୍କୁ, ନାରଦ ବ୍ୟାସଙ୍କୁ ଶୁଣାଇଥିଲେ । ବ୍ୟାସଦେବ ତାକୁ ଭାଗବତରେ ଉଲ୍ଲେଖ କରନ୍ତେ ଆଜି ଶୁକଦେବ ପରୀକ୍ଷିତଙ୍କୁ ଶୁଣାଉଛନ୍ତି ମନରେ ସାହସ ବାନ୍ଧି । ପରୀକ୍ଷିତଙ୍କୁ ବୁଝାଇବା ଭଳି ଭାଷାରେ କଅଣ କହିଥିଲେ ଶୁକଦେବଜୀ ନିର୍ଗୁଣ ବ୍ରହ୍ମଙ୍କ ବର୍ଣ୍ଣନ ବିଷୟରେ ?

ଶ୍ରୀ ଶୁକ ଉବାଚ

**ବୁଦ୍ଧି-ଇନ୍ଦ୍ରିୟ ମନଃ ପ୍ରାଣାନ୍ ଜନାନାଂ ଅସୃଜତ୍ ପ୍ରଭୁଃ ।**
**ମାତ୍ରା-ଅର୍ଥଂ ଚ ଭବ-ଅର୍ଥଂ ଚ ଆତ୍ମନେଽକଳ୍ପନାୟ ଚ ॥୨॥**

ଉ. ସୃଷ୍ଟି ଆରମ୍ଭବେଳେ ଭଗବାନ ମହାନାରାୟଣ (ପ୍ରଭୁଃ) ଜୀବମାନଙ୍କୁ ଜାଗ୍ରତ କରାଇଲେ ବ୍ରହ୍ମପ୍ରଳୟର ମହାନିଦ୍ରାରୁ । ଅନେକ କାମନା ବାସନା ଧରି ସେମାନେ ପଡ଼ି ରହିଥିଲେ କୋଟି କୋଟି ବର୍ଷ ଧରି । ସେମାନେ କିଭଳି ଭୌତିକ କାମନା ବାସନାରୁ ମୁକ୍ତ ହେବେ ତାର ବ୍ୟବସ୍ଥା କଲେ । କୃପା କରି ସେମାନଙ୍କୁ ନିଜ ନିଜର ବୁଦ୍ଧି, ଦଶ ଇନ୍ଦ୍ରିୟ, ମନ ଓ ଦଶ ପ୍ରାଣ ଦେଲେ(ଅସୃଜତ୍) ।

ଭଗବାନ ଏ ସବୁ ଦେବା ପଛରେ ଉଦ୍ଦେଶ୍ୟ ରଖିଲେ ସେମାନେ ଭୌତିକ ସୃଷ୍ଟିର ରୂପ, ରସ, ଗନ୍ଧ, ଶବ୍ଦ ଓ ସ୍ପର୍ଶକୁ ନିଜ ନିଜ ଇନ୍ଦ୍ରିୟ ଦ୍ୱାରା ଜାଣନ୍ତୁ ଭୋଗ କରନ୍ତୁ । ନିଜ ନିଜର ବୁଦ୍ଧି ପ୍ରୟୋଗ କରି ପ୍ରଥମେ ସ୍ୱର୍ଗ ସୁଖ ଲାଭ କରନ୍ତୁ । ସେଥିରେ ଅଶାନ୍ତ, ବିରକ୍ତ ଅତୃପ୍ତ ହୋଇ ଗୁରୁ ଶରଣାଗତ ହୋଇ ମନକୁ ବ୍ରହ୍ମରେ ଲଗାଇବା ବ୍ୟାବସ୍ଥା କରନ୍ତୁ ସାଧୁ ସନ୍ଥଙ୍କ ମାର୍ଗଦର୍ଶନ ପ୍ରାପ୍ତ ହୋଇ । ଜନ୍ମମରଣ ଚକ୍ରରୁ ମୁକୁଳିବାକୁ

(ଭବ-ଅର୍ଥଂ) ବାଟ ଖୋଜି ନିଜକୁ ଦେହ ନ ମାନି ଆତ୍ମା ବା ବ୍ରହ୍ମ ବୋଲି ଅନୁଭବ କରନ୍ତୁ(ଆତ୍ମନେ) । ସର୍ବଶେଷରେ ମୋର (ସଗୁଣ ସାକାର ଭଗବାନଙ୍କର) ଭକ୍ତିକରି ଭୌତିକ ବାସନା ଜାଲରୁ ମୁକ୍ତି ଲାଭ କରି(ଅକଞ୍ଚନାୟ) ପ୍ରେମ ପ୍ରାପ୍ତ ହୁଅନ୍ତୁ ।

ପ୍ରଶ୍ନ-୯୧: ଅଠେଇଶ ବେଦ ରଚା ଅଠେଇଶ ଜଣ ସୁନ୍ଦରୀ ନାରୀଙ୍କର ଚିନ୍ମୟ ରୂପ ଧାରଣ କରି (ସକାଳେ ରାଜାଙ୍କ ନିଦ୍ରାରୁ ଜାଗ୍ରତ କରିବା ପାଇଁ ବନ୍ଦି, ମାଗଧ, ଭାଟଙ୍କ ସଦୃଶ ସ୍ତୁତି ଗାନ କରିବା ଭଳି) ଭଗବାନଙ୍କୁ କଳ୍ପାନ୍ତ ମହାନିଦ୍ରାରୁ ଜାଗ୍ରତ କରାଇବାକୁ ଗୋଟିଏ ଗୋଟିଏ ମନ୍ତ୍ର ଗାନ କରିଛନ୍ତି । ନମସ୍ତେ ନମସ୍ତେ ଜୟ ଜୟକାର କରି ସେମାନେ ସ୍ତବ ଆରମ୍ଭ କଲେ । କହିଲେ, ‘‘ବ୍ରହ୍ମଙ୍କ ମଧ୍ୟରେ ସୃଷ୍ଟି-ପାଳନ-ସଂହାର ତିନି କଥା ହୁଏ । ଭିନ୍ନ ଭିନ୍ନ ଅବତାର ଲୀଳା ଓ ହରି ଲୀଳା କଥା ଶ୍ରବଣର ମାହାତ୍ମ୍ୟ ପ୍ରକାଶ କରାଯାଏ । ସେହି ହରି କଥା ଶ୍ରବଣରେ ଜୀବର ନିଜ ତପସ୍ୟାର ଲୋଭ ହଜିଯାଏ । ତପସ୍ୟାର ମୂଳ କାରଣ ଦୁଃଖ ହଜି ଯାଏ । ଦୁଃଖର ମୂଳ କାରଣ ପାପ ମଧ୍ୟ ହଜିଯାଏ । ପାପର ମୂଳ କାରଣ କାମନା ବାସନା ହଜିଯାଏ । କାମନା ବାସନାର ମୂଳ କର୍ତ୍ତୃତ୍ୱ-ଭୋକ୍ତୃତ୍ୱ ହଜିଯାଏ । କର୍ତ୍ତୃତ୍ୱ-ଭୋକ୍ତୃତ୍ୱର ମୂଳ କାରଣ ଅବିଦ୍ୟାମାୟା ହଜିଯାଏ । ଜୀବର ହରି ଭଜନ, ସାଧୁ ସଙ୍ଗ ପ୍ରାପ୍ତିର ପଥ ପରିଷ୍କାର ହୋଇଯାଏ । ସାଧୁ ସଙ୍ଗରେ ଅନାୟସରେ ତାର ଆତ୍ମଜ୍ଞାନ ଲାଭ ହୁଏ । ଫଳରେ ବ୍ରହ୍ମ ଧ୍ୟାନ, ପରାମାତ୍ମା ଧ୍ୟାନ ଓ ଶେଷରେ ଭଗବତ ଧ୍ୟାନ କରି ଜୀବ ହୁଏ ମାଲାମାଲ୍ ।

ଯେଉଁ ଭାଗ୍ୟବାନ ଗୃହସ୍ଥଙ୍କୁ ସତ୍‌ସଙ୍ଗ ମିଳିଲା ସେ ଆଉ ସାଯୁଜ୍ୟମୁକ୍ତି କାହିଁକି ଖୋଜିବ ? ଧର୍ମ-ଅର୍ଥ-କାମ-ମୋକ୍ଷ ସବୁ ଖାରିଆ ଲାଗିବ ତେଣିକି ହରି ଭକ୍ତି ବ୍ୟତିରେକେ ତପ, ଯୋଗ ସିଦ୍ଧି, ତୀର୍ଥ ଗମନ, ବେଦ ଅଧ୍ୟୟନ, ଯଜ୍ଞ ଅନୁଷ୍ଠାନ ଇତ୍ୟାଦି ଜୀବକୁ ମୃତ୍ୟୁ ଭୟରୁ ରକ୍ଷା କରିପାରନ୍ତି ନାହିଁ । ନିର୍ଗୁଣ ବ୍ରହ୍ମ ଇନ୍ଦ୍ରିୟ ରହିତ ହେଲେ ମଧ୍ୟ ସେ ନିଖିଳ ସୃଷ୍ଟିର ସର୍ବୋଚ୍ଚ ନିୟନ୍ତା ଏବଂ ପରୋକ୍ଷ ଶାସକ । ସ୍ୱର୍ଗର ଦେବୀ ଦେବତାମାନେ ଅନ୍ୟମାନଙ୍କର ପୂଜା ଗ୍ରହଣ କରୁଛନ୍ତି । ତଥାପି ଆପଣଙ୍କୁ ଧ୍ୟାନ କରି ଆପଣଙ୍କ ପୂଜନ କରୁଛନ୍ତି । ବ୍ରହ୍ମାଜୀ ସୃଷ୍ଟି କର୍ତ୍ତା ହୋଇ ମଧ୍ୟ ଆପଣଙ୍କୁ ଭୟ କରି ସ୍ୱଧର୍ମ ପାଳନ କରୁଛନ୍ତି ।

ନିର୍ଗୁଣ ନିରାକାର ବ୍ରହ୍ମ ରୂପରେ ଆପଣ ଆକାଶ ଭଳି ଅସଙ୍ଗ-ଅନାସକ୍ତ, ଅପଦ, ଅନାମ ଓ ଅରୂପ । ଆପଣଙ୍କ ଅଧୀନସ୍ଥ ପ୍ରକୃତି(ମାୟା)ଓ ପୁରୁଷ(ଜୀବ) । ଉଭୟେ ଅନାଦି । ଏମାନଙ୍କର ସୃଷ୍ଟି ବା ଆତ୍ୟନ୍ତିକ ବିନାଶ କେବେ ମଧ୍ୟ ହୁଏନା ।

ଦୃଶ୍ୟ-ଅଦୃଶ୍ୟ ଅବସ୍ଥାରେ ଏମାନେ ସର୍ବଦା ରହନ୍ତି ଅବଶ୍ୟ । ଏମାନଙ୍କ ମିଳନକୁ ଜୀବର ଜନ୍ମ ଓ ବିଚ୍ଛେଦକୁ ଜୀବର ମୃତ୍ୟୁ କୁହାଯାଏ । ଆପଣଙ୍କ ଭଳି ଜୀବ ମଧ୍ୟ ସଚ୍ଚିଦାନନ୍ଦମୟ । ବାସନାକୁ ପୂରଣ କରିବାକୁ ଦେହ ଧରୁଥିବାରୁ ସେ ନିଜକୁ ଦେହ ଭାବି ଭୋଗ ସଂଗ୍ରହରେ ମାତେ । ଆପଣଙ୍କୁ ଭୁଲିଯାଏ । ଆପଣ କିନ୍ତୁ ଅବତାର କାଳରେ ସଗୁଣ ସାକାର ସଚ୍ଚିଦାନନ୍ଦ ମୟ ଦେହଟିଏ ଧରି ଅଷ୍ଟ ଐଶ୍ୱର୍ଯ୍ୟ ଭୋଗ କରନ୍ତି ମାୟାର ଅନ୍ତରାଳରେ । ଅଭକ୍ତ ସିନା ଆପଣଙ୍କୁ ଚିହ୍ନିପାରେ ନା ହେଲେ ଭକ୍ତ ଆପଣଙ୍କୁ ଠିକ୍ ଚିହ୍ନିପାରେ ।'' ଶେଷରେ ଋଚାମାନଙ୍କ ସ୍ତୁତି ଶେଷ ହେବା କଥା ଘୋଷଣା କଲେ ସନନ୍ଦନଜୀ (ବ୍ରହ୍ମଣଃ ପୁତ୍ରା) । ନିର୍ଗୁଣ ଆମ୍ନାଙ୍କର ଗୁପ୍ତ କଥା ଶ୍ରବଣ କରି କେଉଁ ନିଷ୍ପତ୍ତିରେ ପହଞ୍ଚିଲେ ଶ୍ରୋତା ମଣ୍ଡଳୀ ?

ଶ୍ରୀ ଭଗବାନ ଉବାଚ

**ଇତି-ଏତଦ୍ ବ୍ରହ୍ମଣଃ ପୁତ୍ରା ଆଶ୍ରୁତ୍ୟ-ଆମ୍ନା-ଅନୁଶାସନମ୍ ।**
**ସନନ୍ଦନଂ ଅଥ-ଆନର୍ଚ୍ଚୁଃ ସିଦ୍ଧା ଜ୍ଞାତ୍ୱା-ଆତ୍ମନୋ ଗତିମ୍ ।।୪୨।।**

ଉ. ସମଗ୍ର ଜ୍ଞାନୀ ସମାଜ କୃତକୃତ୍ୟ (ସିଦ୍ଧା) ହୋଇଗଲେ । ବକ୍ତା ମହାଶୟଙ୍କୁ ପୂଜା ଅର୍ଚ୍ଚନା କଲେ । ସମସ୍ତେ ଏବେ ବୁଝିଗଲେ ଯେ ଯଦିଚ ନିର୍ଗୁଣ ବ୍ରହ୍ମଙ୍କ ସ୍ତୁତି କଲେ ଅଠେଇଶ ଜଣ ଋଚା ତଥାପି ସେ ସବୁର ଉଦ୍ଦେଶ୍ୟ କେବଳ ଏକମାତ୍ର ଆଶ୍ରୟ ସଗୁଣ ସାକାର ଭଗବାନଙ୍କୁ ଚିହ୍ନେଇ ଦେବା ଓ ତାଙ୍କ ଶରଣାପନ୍ନ ହେବା । ଜଣେ ନିର୍ଗୁଣ ବ୍ରହ୍ମଙ୍କର ଶରଣ ଯିବ କେମିତି ? ଶରଣାଗତି କେବଳ ଭଗବାନଙ୍କ ଭକ୍ତିରେ ସମ୍ଭବ ହୁଏ ।

ପ୍ରଶ୍ନ-୯୨ : ପରିଶେଷରେ ଶ୍ରୀ ଶୁକଦେବଜୀ ନିର୍ଗୁଣ ବ୍ରହ୍ମଙ୍କର ବର୍ଣ୍ଣନାର ଉପସଂହାର କିଭଳି ଭାବରେ କରିଥିଲେ ?

ଶ୍ରୀ ଶୁକ ଉବାଚ

**ଇତି ଏତତ୍ ବର୍ଣ୍ଣିତଂ ରାଜନ୍ ଯତ୍ ନଃ ପ୍ରଶ୍ନଃ କୃତଃ ତ୍ୱୟା ।**
**ଯଥା ବ୍ରହ୍ମଣି-ଅନିର୍ଦ୍ଦେଶ୍ୟେ ନିର୍ଗୁଣେଽପି ମନଃ ଚରେତ୍ ।।୪୯।।**

ଉ. ସୁନ୍ଦର ନାଟକୀୟ ଭଙ୍ଗୀରେ ସେ ପୂର୍ଣ୍ଣଚ୍ଛେଦଟିଏ ଟାଣିଲେ ବ୍ରହ୍ମ ବର୍ଣ୍ଣନା ପ୍ରସଙ୍ଗର । କହିଲେ, ''ହେ ରାଜନ୍, ଯାହା ପ୍ରଶ୍ନ କରିଥିଲ ମୁଁ ଯାହା ପୂର୍ବେ ଶୁଣିଥିଲି ତାହା ହିଁ କହିଲି । ଯାହାକୁ ଶ୍ରବଣ କଲେ ମନ ତାଙ୍କ ଠାରେ ଲାଗେ (ଚରେତ୍) ।

ମୁଁ ଏ ସଗୁଣ ସାକାର ଭଗବାନଙ୍କ ଶରଣାଗତ ହେବା ପୂର୍ବରୁ ଏହି ନିର୍ଗୁଣ ବ୍ରହ୍ମଙ୍କ ଧ୍ୟାନ କରି କରି ନିର୍ବିକଳ୍ପ ସମାଧିରେ ବର୍ଷ ବର୍ଷ ଧରି ରହୁଥିଲି । ମୋର ନିର୍ବିକଳ୍ପ ଜଡ଼ ସମାଧି ଭାଙ୍ଗିଗଲା ବ୍ୟାସଦେବଙ୍କ ଚାରୋଟି ଅଲୌକିକ ଭାଗବତ ଶ୍ଳୋକ (**୧.ଅହୋ ବକୀ ଯଂ, ୨.ଜୟତି ତେଽଧିକଂ, ୩.ବର୍ହ-ଆପୀଡ଼ଂ ନଟବର ବପୁଃ, ୪.ତାସାଂ ଆବିର୍ଭୂଃ ଶୌରିଃ**) ଶ୍ରବଣ କରି ।

ନିର୍ଗୁଣ ବ୍ରହ୍ମ ଓ ସଗୁଣ ବ୍ରହ୍ମ ଉଭୟ ଅବଶ୍ୟ ସତ୍ୟ । ଆତ୍ୟନ୍ତିକ ଦୁଃଖ ନିବୃତ୍ତି ଦୁହେଁ କରିପାରିବେ । ଅଳ୍ପ ପରିଶ୍ରମରେ ସହଜ ସରଳ ହରି ଶରଣାଗତି କିନ୍ତୁ ସମ୍ଭବ ହୋଇଥାଏ ସଗୁଣ ବ୍ରହ୍ମ ଧ୍ୟାନରେ । ଏହା ଶୁକଦେବ ପରମହଂସଙ୍କର ନିଜ ଅନୁଭୂତି କଥା । ପଢ଼ା ଶୁଣା କଥା ନୁହେଁ ।

# ଅଥ ୮୮ମ ଅଧ୍ୟାୟଃ

## (ଭଗବାନ ଶଙ୍କରଙ୍କ ସଂକଟ ମୋଚନ)

ପ୍ରଶ୍ନ-୯୩: ପୂର୍ବବର୍ତ୍ତୀ ଅଧ୍ୟାୟରେ ବେଦକନ୍ୟାମାନେ କହିଲେ ବଦ୍ଧ ଜୀବ ଶ୍ରୀମନ୍ ନାରାୟଣଙ୍କ ଧ୍ୟାନ କରିବା ଉଚିତ । ନାରାୟଣ କେବଳ ମୋକ୍ଷ ପ୍ରଦାତା । ଶିବ ନୁହନ୍ତି । ଏବେ ରାଜା ପରୀକ୍ଷିତଙ୍କ ମୁଣ୍ଡ ଗୋଳମାଳ ଧରିଲା । ନାରାୟଣ ଐଶ୍ୱର୍ଯ୍ୟର ଠାକୁର । ଶଙ୍କରଜୀ ପୂର୍ଣ୍ଣ ସଂସାର ବୈରାଗୀ ଓ ଭୋଗ ବିମୁଖ ଦେବତା । ଦେବ ଅସୁର ଓ ମନୁଷ୍ୟମାନେ ଉଭୟଙ୍କର ପୂଜନ କରି ବିପରୀତ ଫଳ ଲାଭ କରନ୍ତି କାହିଁକି ?

ରାଜା ଉବାଚ

**ଦେବ-ଅସୁର ମନୁଷ୍ୟେଷୁ ଯେ ଭଜନ୍ତି-ଅଶିବଂ ଶିବମ୍ ।**
**ପ୍ରାୟଃ ତେ ଧନିନୋ ଭୋଜା ନ ତୁ ଲକ୍ଷ୍ମ୍ୟାଃ ପତିଂ ହରିମ୍ ॥୧॥**

ଉ. ଐଶ୍ୱର୍ଯ୍ୟ ବିମୁଖ ଶିବଙ୍କ ଭକ୍ତଙ୍କୁ ଐଶ୍ୱର୍ଯ୍ୟ ମିଳେ । ଅନ୍ୟ ପକ୍ଷରେ ଶ୍ରୀହରି ଐଶ୍ୱର୍ଯ୍ୟମୟୀ ଲକ୍ଷ୍ମୀଦେବୀଙ୍କ ସ୍ୱାମୀ । ସେ ସର୍ବଦା ଏକତ୍ର ଆହାର ବିହାର କରି ଦିନ କାଟୁଛନ୍ତି । ତାଙ୍କ ଭକ୍ତ ଥିବା ଐଶ୍ୱର୍ଯ୍ୟକୁ ହରାଇ ଦରିଦ୍ର ହେବାର ଅନେକ ଦୃଷ୍ଟାନ୍ତ ଅଛି । ଏହି ରହସ୍ୟକୁ ଜାଣିବାକୁ ଚାହିଁଛନ୍ତି ରାଜା ।

ପ୍ରଶ୍ନ-୯୪: ଶଙ୍କର ଭଗବାନ ସର୍ବଦା (ଶାଶ୍ୱତ) ନିଜ ଶକ୍ତି ପ୍ରକୃତି (ମାୟା) ସହିତ ସଂଯୁକ୍ତ ହୋଇ ଅବସ୍ଥାନ କରନ୍ତି। ପ୍ରକୃତିର କେଉଁ କେଉଁ ବିକାରର ଶିକାର ହୁଏ ସାଧକ ଶଙ୍କରଜୀଙ୍କୁ ଧ୍ୟାନ କଲେ ?

ଶ୍ରୀ ଶୁକ ଉବାଚ

**ଶିବଃ ଶକ୍ତିଯୁକ୍ତଃ ଶଶ୍ୱତ୍ ତ୍ରିଲିଙ୍ଗୋ ଗୁଣ ସଂବୃତ୍ତଃ ।**
**ବୈକାରିକଃ ତେଜସଃ ଚ ତାମସଃ ଚ-ଇତି-ଅହଂ ତ୍ରିଧା ।।୩।।**

ଉ. ମାୟା ସର୍ବଦା ସତ୍ୱ, ରଜ ଓ ତମୋ ଗୁଣମୟୀ ହୋଇ ଥାଆନ୍ତି। ସାଧକର ମାୟିକ ମନ ମଧ୍ୟ ଏ ତିନିଗୁଣରେ (ତ୍ରିଲିଙ୍ଗୋ) ଦୂଷିତ ଥାଏ। ଅତଏବ ଧ୍ୟାନ ବେଳେ ସେ ଯେଉଁଭଳି ଅନ୍ତଃ କରଣରେ ସାଧନା କରେ ସେଇ ସେଇ ମାୟିକ ଐଶ୍ୱର୍ଯ୍ୟ ଜଣେ ଶିବ ଭକ୍ତ ସ୍ୱତଃ ପ୍ରାପ୍ତ ହୁଏ।

ପ୍ରଶ୍ନ-୯୫: ଶ୍ରୀହରି ବିଷ୍ଣୁ କିନ୍ତୁ ମାୟାର ତିନିଗୁଣରୁ ଉର୍ଦ୍ଧ୍ୱରେ ଥାଆନ୍ତି। ସେ ମାୟାଧୀଶ ନିର୍ଗୁଣ ସ୍ୱରୂପ। ବିଷ୍ଣୁଙ୍କୁ ଭକ୍ତି କଲେ ସାଧକ ଐଶ୍ୱର୍ଯ୍ୟରୁ ବଞ୍ଚିତ ହେବା କାରଣ କଅଣ ହୋଇପାରେ ?

**ହରିଃ ହି ନିର୍ଗୁଣଃ ସାକ୍ଷାତ୍ ପୁରୁଷଃ ପ୍ରକୃତେଃ ପରଃ ।**
**ସ ସର୍ବଦୃକ୍ ଉପଦ୍ରଷ୍ଟା ତଂ ଭଜନ୍ ନିର୍ଗୁଣୋ ଭବତ୍ ।।୫।।**

ଉ. ଧ୍ୟେୟ ବ୍ୟକ୍ତି ନାରାୟଣ ମାୟାଧୀଶ, ସର୍ବଦ୍ରଷ୍ଟା ଓ ସାକ୍ଷୀ(ଉପଦ୍ରଷ୍ଟା) ହୋଇଥିବାରୁ ତାଙ୍କ ଭକ୍ତ ଐଶ୍ୱର୍ଯ୍ୟକୁ ଧରି ହଟହଟା ହେବ କାହିଁକି ? ସେ ତ ସହଜରେ ମାୟା କବଳରୁ ଓ ଜନ୍ମ-ମରଣ ଚକ୍ରରୁ ମୁକ୍ତି କିମ୍ବା ପରମ ଆନନ୍ଦ ପ୍ରତି ଆଗ୍ରହୀ ହେବ। ତା ପାଖରେ ଥିବା ଐଶ୍ୱର୍ଯ୍ୟକୁ ସେ ଆନନ୍ଦରେ ବିଷ୍ଣୁ ବୈଷ୍ଣବଙ୍କ ସେବାରେ ଲଗାଇବାକୁ ପସନ୍ଦ କରିବ। ଏଇ ତ ଶ୍ରୀହରି ଭଜନର କମାଲ୍।

ପ୍ରଶ୍ନ-୯୬: ଶୁକଦେବଜୀ ଏହିଭଳି ଏକ ପ୍ରଶ୍ନ ପୂର୍ବରୁ କିଏ କାହାକୁ କେବେ ପଚାରିଥିଲେ ବୋଲି ସ୍ମରଣ କରାଇଥିଲେ ସେତେବେଳେ ରାଜାଙ୍କୁ ?

**ନିବୃତ୍ତେଷୁ-ଅଶ୍ୱମେଧେଷୁ ରାଜା ଯୁଷ୍ମତ୍ ପିତାମହଃ ।**
**ଶୃଣ୍ୱନ୍ ଭଗବତୋ ଧର୍ମାନ୍ ଅପୃଚ୍ଛତ୍ ଇଦଂ ଅଚ୍ୟୁତମ୍ ।।୬।।**

ଉ. ମହାଭାରତ ଯୁଦ୍ଧ ସମାପ୍ତ ହୋଇସାରିଥାଏ। ତିନି ଅଶ୍ୱମେଧ ଯଜ୍ଞ ରାଜା ଯୁଧିଷ୍ଠିର କରିସାରିଥାନ୍ତି। ଶ୍ରୀକୃଷ୍ଣଙ୍କୁ (ଅଚ୍ୟୁତମ୍) ଯୁଧିଷ୍ଠିର (ଯୁଷ୍ମତ୍ ପିତାମହଃ) ଭାଗବତ ଧର୍ମ ପ୍ରସଙ୍ଗ ଶୁଣିବା ବେଳେ ଏହି ପ୍ରଶ୍ନଟି ମଧ୍ୟ ପଚାରିଥିଲେ।

ପ୍ରଶ୍ନ-୯୭: ବିଷ୍ଣୁ କୃପାର (ଅନୁଗୃହ୍ଣାମି) ବା ଭଗବତ ଧର୍ମର ପ୍ରକୃତ ଅଧିକାରୀ କିଏ ବୋଲି ଉତ୍ତର ଦେଇଥିଲେ ଭଗବାନ୍ ?

ଶ୍ରୀ ଭଗବାନ ଉବାଚ

**ଯସ୍ୟ-ଅହଂ ଅନୁଗୃହ୍ଣାମି ହରିଷ୍ୟେ ତତ୍ ଧନଂ ଶନୈଃ ।**
**ତତୋଽଧନଂ ତ୍ୟଜନ୍ତି-ଅସ୍ୟ ସ୍ୱଜନା ଦୁଃଖ ଦୁଃଖିତମ୍ ॥୮॥**

ଉ. ଧନର ଆସକ୍ତି ଏବଂ ଗର୍ବ ସାଧକକୁ ଉତ୍ପାତ କରାଇଥାଏ । ତେଣୁ ଭଗବାନ କୃପାକରି ତାଙ୍କର ଭକ୍ତକୁ ଏଥିରୁ ରକ୍ଷା କରିବା ଦାୟିତ୍ୱ ନିଅନ୍ତି ସ୍ୱୟଂ । ନିର୍ଦ୍ଧନ ହେଲେ ତାର ପରିବାର କୁଟୁମ୍ବ ସମ୍ବନ୍ଧୀ ସମସ୍ତେ ତାଠାରୁ ଦୂରେଇ ଯାଆନ୍ତି । ଅନ୍ୟ ସମସ୍ତ ଆଶ୍ରୟ ଦୂରେଇ ଯାଆନ୍ତେ 'ନିରାଶ୍ରୟ ମାଂ ଜଗଦୀଶ ରକ୍ଷ' ମନ୍ତ୍ର ଜପରେ ସେ ଲାଗିଯାଏ । ଅନ୍ୟାୟ ଧନ ଅର୍ଜନ ଲକ୍ଷ୍ୟ ଛାଡ଼େ ସେ । ହରି ପ୍ରେମ ଅର୍ଜନ ଏଣିକି ତାର ଲକ୍ଷ୍ୟ ହୁଏ । ସ୍ୱୟଂ ଭଗବାନ ତାକୁ ହାତ ଧରି ଚଲାନ୍ତି । ବିଚରାର ଯୋଗକ୍ଷେମ ସେ ନିଜେ ବହନ କରନ୍ତି । ତ୍ରିଦୋଷ, ପଞ୍ଚକୋଷ, ପଞ୍ଚରଣରୁ ମୁକ୍ତି ମିଳେ ସାଧକକୁ । ଜଣେ ସଂସାରୀ ମଣିଷ ସହଜରେ ବୁଝିପାରେ ନାହିଁ ଶିବ ଭକ୍ତିରୁ ମିଳୁଥିବା ଅମାପ ଐଶ୍ୱର୍ଯ୍ୟ ଓ ବିଷ୍ଣୁ ଭକ୍ତିରୁ ମିଳୁଥିବା ଅମାପ ପ୍ରେମର ପାର୍ଥକ୍ୟ । ଭକ୍ତ କିନ୍ତୁ ବୁଝିଯାଏ ।

ପ୍ରଶ୍ନ-୯୮: ନାରାୟଣଙ୍କର ତିନି ମହାଶକ୍ତିର ପ୍ରକାଶ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର । ସେମାନେ ସମସ୍ତେ ଭକ୍ତକୁ ଶାପ ଓ ବର ଉଭୟ ଦେବାରେ ସମର୍ଥ (ଈଶା) । ତିନି ଠାକୁରଙ୍କ ଭକ୍ତିରେ କ'ଣ କିଛି ପାର୍ଥକ୍ୟ ଥାଏ କି ?

ଶ୍ରୀ ଶୁକ ଉବାଚ

**ଶାପ ପ୍ରସାଦୟୋଃ ଈଶା ବ୍ରହ୍ମା ବିଷ୍ଣୁ ଶିବ-ଆଦୟଃ ।**
**ସଦ୍ୟଃ ଶାପ ପ୍ରସାଦୋଽଙ୍ଗ ଶିବୋ ବ୍ରହ୍ମା ନ ଚ-ଅଚ୍ୟୁତଃ ॥୧୨॥**

ଉ. ବହୁତ ପାର୍ଥକ୍ୟ ଥାଏ । ଶିବ ଓ ବ୍ରହ୍ମା ଅଳ୍ପ ତପସ୍ୟା ବା ଭକ୍ତିରେ(ସଦ୍ୟଃ) ଶାପ କିମ୍ବା ବର (ପ୍ରସାଦୋ) ଦେଇଥାଆନ୍ତି । ବିପରୀତ ପକ୍ଷେ ଭଗବାନ ବିଷ୍ଣୁ ଏପରି କରି ନଥାନ୍ତି (ନ ଚ ଅଚ୍ୟୁତଃ) । ସେଥିପାଇଁ ଦୀର୍ଘଦିନର ସାଧନା ତପସ୍ୟା ଲୋଡ଼ାପଡ଼େ ।

ପ୍ରଶ୍ନ-୯୯: ତିନି ଠାକୁରଙ୍କ ବରଦେବା ଢ଼ଙ୍ଗକୁ ପ୍ରାଞ୍ଜଳ କରି ବୁଝାଇବା ପାଇଁ କେଉଁ ଦୃଷ୍ଟାନ୍ତଟିଏ ଦେଲେ ବକ୍ତା ମହାଶୟ ?

**ବୃକୋ ନାମ-ଅସୁରଃ ପୁତ୍ରଃ ଶକୁନେଃ ପଥି ନାରଦମ୍ ।**
**ଦୃଷ୍ଟ୍ୱା-ଆଶୁତୋଷଂ ପପ୍ରଚ୍ଛ ଦେବେଷୁ ତ୍ରିଷୁ ଦୁର୍ମତିଃ ॥୧୪॥**

ଉ. ଶକୁନି ନାମକ ଅସୁରର ଦୁଷ୍ଟ (ଦୁର୍ମତିଃ) ପୁତ୍ରଟିଏ ଥାଏ । ନାମ ତାର ବୃକ ଅସୁର ବା ଭସ୍ମ ଅସୁର । ସେ ତପସ୍ୟା କରି ଶୀଘ୍ର ବର ପ୍ରାପ୍ତିର ଇଛା କଲା । ନାରଦ ମହର୍ଷିଙ୍କୁ ବାଟରେ ଦେଖି ତ୍ରିଦେବଙ୍କ ମଧରୁ କାହାକୁ ଧ୍ୟାନ କଲେ ଶୀଘ୍ର ବର ମିଳିବ ବୋଲି ପ୍ରଶ୍ନ କରିଥିଲା । ଦେବର୍ଷି ନାରଦଜୀ ପୂର୍ବୋକ୍ତ ସତ କଥାଟି ବତେଇ ଦେଲେ । ବୃକାସୁର ଆଶୁତୋଷ ଶଙ୍କରଜୀଙ୍କୁ ତପସ୍ୟା କରି ପ୍ରସନ୍ନ କରିବାକୁ ପହଞ୍ଚିଲା କେଦାରନାଥ ଧାମରେ । ନିଜ ଦେହରୁ ତାଜା ମାଂସ କାଟି ଯଜ୍ଞ କୁଣ୍ଡରେ ନିକ୍ଷେପ କଲା । ଦିନେ ଅଧୈର୍ଯ୍ୟ ହୋଇ ମୁଣ୍ଡ କାଟିବାକୁ ବାହାରନ୍ତେ ଭଗବାନ ଶଙ୍କର ଦର୍ଶନ ଦେଲେ । ବର ମାଗିବାକୁ କହିଲେ ।

ପ୍ରଶ୍ନ-୧୦୦: ବୃକାସୁର ଶଙ୍କର ଭଗବାନଙ୍କୁ (ଦେବଂ) କେଉଁ ଭୟାନକ ବିଚିତ୍ର ବର ପ୍ରାର୍ଥନା କଲା (ବବ୍ରେ) ?

**ଦେବଂ ସ ବବ୍ରେ ପାପୀୟାନ୍ ବରଂ ଭୂତଂ ଭୟାବହମ୍ ।**
**ଯସ୍ୟ ଯସ୍ୟ କରଂ ଶୀର୍ଷ୍ଣି ଧାସ୍ୟେ ସ ମ୍ରିୟତାଂ ଇତି ॥୨୧॥**

ଉ. ସେ ଅସୁରର ଅନ୍ତଃକରଣ ସେତେବେଳେ ପାପ ଭରା ଥିଲା । ସେ ବର ମାଗିଲା ଯେ ଯାହା ମସ୍ତକରେ (ଶୀର୍ଷ୍ଣି) ହାତ ରଖିବ ସେ ମରିଯିବ । ଗଦାଏ ପାଉଁଶ ହୋଇଯିବ । ଭଗବାନ ଶଙ୍କର ଭୋଳାନାଥ । କୃଷ୍ଣ ପ୍ରେମ ଧ୍ୟାନରେ ସେ ପାଗଳ । କିଛି ନ ବୁଝି ନ ବିଚାରି ଅସ୍ତୁ ବୋଲି କହିଦେଲେ ।

ପାପାତ୍ମା ବୃକାସୁର ଶିବଙ୍କ ଗୃହିଣୀ ବା ପାର୍ବତୀଙ୍କୁ ପାପ ଦୃଷ୍ଟିରେ ଦେଖିଲା । ତାଙ୍କୁ ହାତେଇବା ଲକ୍ଷ୍ୟରେ ଶିବଙ୍କୁ ନିଜ ବାଟରୁ ହଟାଇବାକୁ ଧାଇଁଲା ଶିବଙ୍କ ମସ୍ତକରେ ହସ୍ତ ରଖି ମାରିବ ବୋଲି । ପରମ ବୈଷ୍ଣବ ଶିବଜୀ ଏବେ ବୁଝିଲେ ନିଜର ବିପଦ ସଙ୍ଗୀନ । ସାରା ମର୍ତ୍ତ୍ୟ ଲୋକ ସ୍ୱର୍ଗଲୋକ ଧାଇଁଲେ । ଅସୁର ପିଛା ଛାଡୁନଥାଏ । ଶେଷରେ ଶ୍ୱେତଦ୍ୱୀପରେ ଶ୍ରୀହରିଙ୍କ ପାଖରେ ଶଙ୍କରଜୀ ପହଞ୍ଚିଗଲେ ।

ପ୍ରଶ୍ନ-୧୦୧: ଭଗବାନ ବିଷ୍ଣୁ ବୁଝିଗଲେ ଶଙ୍କରଜୀଙ୍କ ଦୁରବସ୍ଥାର କାରଣ । ସେତେବେଳେ ବୃକାସୁର ସାମନାରେ ପ୍ରକଟ ହୋଇ ବିଷ୍ଣୁ ଭଗବାନ ତାକୁ କଅଣ କହିଲେ ?

ଶ୍ରୀ ଭଗବାନ ଉବାଚ

**ଯଦି ବଃ ତତ୍ର ବିଶ୍ରୟୋ ଦାନବ-ଇନ୍ଦ୍ର ଜଗଦ୍‌ଗୁରୌ ।**
**ତର୍ହି-ଅଙ୍ଗ-ଆଶୁ ସ୍ୱ ଶିରସି ହସ୍ତଂ ନ୍ୟସ୍ୟ ପ୍ରତୀୟତାମ୍ ॥୩୩॥**

ଉ. ଭଗବାନଙ୍କ ଦିବ୍ୟ ତେଜ ପ୍ରଭାବରେ ବୃକାସୁରର ବୁଦ୍ଧି ହଜିଗଲା । ଭଗବାନ କହିଲେ, ''ହେ ଅସୁର ଶ୍ରେଷ୍ଠ ବୃକ, ତୁମେ ଏ ଭୂତ ପ୍ରେତ ପିଶାଚଙ୍କ ସ୍ୱାମୀଙ୍କ କଥାକୁ ବିଶ୍ୱାସ କରିବା (ପ୍ରତୀୟେତ) ଶୋଭନୀୟ ନୁହେଁ । ହେ ମିତ୍ର(ଅଙ୍ଗ) ଯଦି ବିଶ୍ୱାସ କରୁଥାଅ (ବିଶ୍ରୟୋ) ତେବେ ନିଜ ମସ୍ତକରେ ହସ୍ତ ରଖି ପରୀକ୍ଷା କରି ପାର ।'' ବୃକାସୁର ତତ୍‌କ୍ଷଣାତ୍ ନିଜ ମସ୍ତକରେ ହସ୍ତ ରଖନ୍ତେ ପାଉଁଶ ଗଦାଟିଏ ହୋଇଗଲା ।

ଶଙ୍କର ଭଗବାନଙ୍କ ସଂକଟ ଦୂର ହେବା କଥା ଦେବତାମାନେ ସ୍ୱର୍ଗରେ ଥାଇ ଦର୍ଶନ କରୁଥିଲେ । ଖୁସିରେ ସେମାନେ ଦୁନ୍ଦୁଭି ବଜାଇଲେ ସେ ସ୍ଥାନରେ ପୁଷ୍ପ ବର୍ଷଣ କଲେ । ନୃତ୍ୟ ଗୀତରେ ହରି-ହରଙ୍କର ମନୋରଞ୍ଜନ କଲେ । ଉଭୟଙ୍କର ଜୟଜୟକାର କରିଥିଲେ । ସଂସାର ଏବେ ଶିକ୍ଷା ଲାଭ କଲା ବୈଷ୍ଣବ ଅପରାଧ କଲେ ସାଧକକୁ କିଭଳି ଦୁର୍ଦ୍ଦଶା ଭୋଗିବାକୁ ହୁଏ । ପୁଣି ଶଙ୍କରଜୀଙ୍କ ସଦୃଶ ପରମବୈଷ୍ଣବଙ୍କ ଅମଙ୍ଗଳ ଚିନ୍ତନରେ କ'ଣ ଅବା ନ କରିବେ ବିଶ୍ୱନିୟନ୍ତା ପ୍ରଭୁ ଶ୍ରୀମନ୍ ନାରାୟଣ । ଶାସ୍ତ୍ର ପୁରାଣ ବର୍ଣ୍ଣନା କରନ୍ତି ଶ୍ରୀହରି ଓ ଶ୍ରୀହରଙ୍କ ମଧ୍ୟରେ ଭେଦ ଯେତିକି ଅଭେଦ ମଧ୍ୟ ସେତିକି । ଏ ଅତୁଆ କଥା ଯେ ବୁଝାଇପାରନ୍ତି ସେ ସଦ୍‌ଗୁରୁ ।

# ଅଥ ୮୯ମ ଅଧ୍ୟାୟଃ

## (ଭୃଗୁ ଉପାଖ୍ୟାନ ଓ ଦ୍ୱାରକାପୁରୀରେ ଅକାଳମୃତ୍ୟୁ)

ପ୍ରଶ୍ନ-୧୦୨: ପୂର୍ବ ଅଧ୍ୟାୟରେ ପରୀକ୍ଷିତ ଶୁଣିଲେ ବିଷ୍ଣୁଙ୍କ ଦ୍ୱାରା ଶିବଙ୍କ ସଙ୍କଟମୋଚନ ପ୍ରସଙ୍ଗ । ଶୁକଦେବଜୀ ଜାଣିପାରିଲେ ରାଜାଙ୍କ ସଂଶୟ ଉପୁଜିବ ଯେ ବିଷ୍ଣୁ ବୋଧେ ବଡ଼ ଭଗବାନ ଓ ଶିବ ସାନ ଭଗବାନ ହୋଇଥିବେ । ଗୁରୁଙ୍କ କାମ ହେଲା ଶିଷ୍ୟର ସଂଶୟ ଛେଦନ । ଶୁକଦେବ ଏଥିପାଇଁ ସେଠାରେ କେଉଁ ସୁନ୍ଦର ଦୃଷ୍ଟାନ୍ତର ଅବତାରଣା କଲେ ?

ଶ୍ରୀ ଶୁକ ଉବାଚ

**ସରସ୍ୱତ୍ୟାଃ ତଟେ ରାଜନ୍ ରଷୟଃ ସତ୍ରଂ ଆସତ ।**
**ବିତର୍କଃ ସମଭୂତ୍ ତେଷାଂ ତ୍ରିଷ୍ୱ-ଅଧୀଶେଷୁ କୋ ମହାନ୍ ॥୧॥**

ଉ. ସେ ଭୃଗୁ ଋଷିଙ୍କ ତ୍ରିଦେବ ପରୀକ୍ଷା କଥା କହିଲେ । ଏକଦା ସରସ୍ୱତୀ ନଦୀ କୂଳରେ ଅନେକ ମୁନି ଋଷିମାନେ ଯଜ୍ଞ (ସତ୍ରଂ) କରୁଥାଆନ୍ତି । ସେମାନଙ୍କ ମଧ୍ୟରେ ତର୍କ ଯୁଦ୍ଧ ଚାଲିଥାଏ ବ୍ରହ୍ମା, ବିଷ୍ଣୁ ଓ ଶଙ୍କରଙ୍କ ମଧ୍ୟରେ (ତ୍ରିଷ୍ୱ-ଅଧୀଶେଷୁ) କିଏ ସବୁଠୁ ବଡ଼ ଆଶ୍ରୟ ବୋଲି ।

ଶେଷରେ ସମାଧାନର ବାଟ ଫିଟିଲା । ସମସ୍ତେ ଜାଣିଥାନ୍ତି ଯେ ମହାଋଷି ରାଜା ଭୃଗୁ ବଦ୍‌ରାଗୀ । କଠିନ ପରୀକ୍ଷା ସେ କେବଳ କରିପାରିବେ ତିନି ଠାକୁରଙ୍କର । ତାଙ୍କୁ ହିଁ ପଠାଗଲା ପରୀକ୍ଷା ନିମିତ୍ତ । ବ୍ରହ୍ମଲୋକରେ ପହଞ୍ଚିଲେ ଭୃଗୁ ଋଷି । ଜାଣି ଜାଣି ପ୍ରଣାମ କଲେନି ପିତା ବ୍ରହ୍ମଦେବଙ୍କୁ । ବ୍ରହ୍ମାଜୀ କ୍ରୋଧରେ ଏଣୁ ତେଣୁ କଥା କହି ଘଉଡ଼ାଇଦେଲେ । ଏବେ କୈଳାସ ପୁରୀରେ ପହଞ୍ଚିଲେ ମୁନି ମହାଶୟ । ଶଙ୍କରଜୀ ଆନନ୍ଦରେ ତାଙ୍କୁ ଭାଇ ବୋଲି ସମ୍ବୋଧନ କଲେ । ଆଲିଙ୍ଗନ କରିବାକୁ ଆସିଲେ । ଭୃଗୁ କିନ୍ତୁ ତାଙ୍କୁ ପାଉଁଶ ବୋଳା, ସାପ ଖେଳା, ସନ୍ଧ୍ୟା ବନ୍ଦନା ହୀନ, ଅଗ୍ନିହୋତ୍ର ତ୍ୟାଗୀ ଅବୈଦିକ କହି ଘୁଞ୍ଚିଗଲେ । ଶିବଜୀ କ୍ରୋଧରେ ତ୍ରିଶୂଳ ଧରି ମାରି ଗୋଡ଼େଇଲେ । ମା'ପାର୍ବତୀ ଆସି ସମ୍ଭାବ୍ୟ ଦୁର୍ଘଟଣାରୁ ଦୁହିଁଙ୍କୁ ରକ୍ଷା କଲେ ।

ପରୀକ୍ଷା ସରିନି ଏଯାଏ । ଭୃଗୁ ପହଞ୍ଚିଲେ ବୈକୁଣ୍ଠଲୋକରେ । ଭଗବାନ ଶ୍ରୀବିଷ୍ଣୁ ଶୟନରତ । ଶ୍ରୀ ମହାଲକ୍ଷ୍ମୀ ପାଦ ସେବାରେ ନିଯୁକ୍ତ । କିଛି କାରଣ ନଥାଇ ଗୋଇଠା ମାଡ଼ କଲେ ବିଷ୍ଣୁଙ୍କ ବକ୍ଷରେ । ଭଗବାନ କ୍ରୋଧ କଲେ ନାହିଁ । ବରଂ ଭୃଗୁଙ୍କ ପାଦକୁ କାଳେ କଷ୍ଟ ହୋଇଥିବ ବୋଲି ଆଉଁଷି ପକାଇଲେ । ପରୀକ୍ଷା ଶେଷ ହେଲା । ଭୃଗୁ ଋଷିମେଳରେ ଆସି ସବୁ ବଖାଣିଲେ । ନାରାୟଣ ହିଁ ଜୀବ ପାଇଁ ସର୍ବଶେଷ ଓ ସର୍ବଶ୍ରେଷ୍ଠ ଆଶ୍ରୟ ବୋଲି ଘୋଷଣା କଲେ । କାଳ କାଳକୁ ମଣିଷ, ଦେବତା, ଅସୁର ସାଇତି ରଖିଲେ ନିଜ ନିଜ ମନ ମଧ୍ୟରେ ଏହି ପରୀକ୍ଷା ଫଳକୁ ।

ପ୍ରଶ୍ନ-୧୦୩: ଦ୍ୱାରକାପୁରୀର ଅନ୍ତିମ ଚମକପ୍ରଦ ଘଟଣା ବର୍ଣ୍ଣନ କଲେ ଶ୍ରୀ ଶୁକଦେବ ପରମହଂସ । ଏକଦା ମହାବୈକୁଣ୍ଠରେ ଥାଇ ନାରାୟଣ ନାରଦଙ୍କ ମୁଖରୁ ଦିବ୍ୟ କୃଷ୍ଣ ଲୀଳା ଶୁଣୁଥାନ୍ତି । ଥରେ ସେଇ ଦ୍ୱାରକାଧୀଶ ଗୋଲୋକ ବିହାରୀ କୃଷ୍ଣଙ୍କୁ ନର-ନାରାୟଣ ଦର୍ଶନ କରିବାକୁ ଇଛା କରି କି ଲୀଳା ଅଭିନୟ କଲେ ?

**ଏକଦା ଦ୍ୱାରବତ୍ୟାଂ ତୁ ବିପ୍ରପତ୍ନ୍ୟାଃ କୁମାରକଃ ।**
**ଜାତମାତ୍ରୋ ଭୁବଂ ସ୍ପୃଷ୍ଟ୍ୱା ମମାର କିଳ ଭାରତ ॥୨୧॥**

ଉ. ଦ୍ୱାରକାରେ ଲୀଳାମୟଙ୍କ ଲୀଳା ଚାଲୁଥାଏ । ଜଣେ ବ୍ରାହ୍ମଣଙ୍କର ପୁତ୍ର ସନ୍ତାନ ପ୍ରାପ୍ତି ଘଟିଲା । ଭୂମି ସ୍ପର୍ଶ କରୁ କରୁ ପିଲାଟି ମରିଗଲା । ଆଶ୍ଚର୍ଯ୍ୟ ହେଲେ ଦ୍ୱାରକାବାସୀ । ଦ୍ୱାରକାରେ ପୁଣି ଅକାଳ ମୃତ୍ୟୁ । ସେ ବ୍ରାହ୍ମଣ ଉଗ୍ରସେନଙ୍କ ସଭାରେ ମୃତ ପୁତ୍ରକୁ ଆଣି ଶୋଇଦେଲେ । ନିଜକୁ ଜଣେ ନିଷ୍ପାପ ବ୍ରାହ୍ମଣ ବୋଲି ଦାବୀ କଲେ । ରାଜା ଉଗ୍ରସେନଙ୍କ ପାପ ହିଁ ତାଙ୍କ ପୁତ୍ରର ଅକାଳ ମୃତ୍ୟୁର କାରଣ ବୋଲି ଲାଞ୍ଛନ ଲଗାଇଲେ । କଥାର ସମାପ୍ତି ଏଇଠି ହେଲା ନାହିଁ । ପର ପର ଆଠ ସନ୍ତାନଙ୍କ ଭାଗ୍ୟରେ ଏହାହିଁ ଘଟିଲା । ପୁତ୍ରମାନଙ୍କ ପ୍ରାଣକୁ ଯମ ରାଜା କିମ୍ବା ଯମ ଦୂତମାନେ ନେଉ ନ ଥାନ୍ତି । ମୃତ ଶିଶୁମାନେ ମହାବିଷ୍ଣୁଙ୍କ ଲୋକରେ ଜମା ହେଉଥାନ୍ତି ।

ନବମ ସନ୍ତାନ ବେଳକୁ ଅର୍ଜୁନ ଥାଆନ୍ତି ଦ୍ୱାରକାରେ । ବ୍ରାହ୍ମଣ ସେଇ ସୁଧର୍ମା ସଭାରେ ପାଟିଗୋଳ କଲେ । ଅର୍ଜୁନ ପ୍ରତିବାଦ କଲେ । ଶପଥ କଲେ ଦଶମ ସନ୍ତାନଙ୍କୁ ବଞ୍ଚାଇ ନ ପାରିଲେ ସେ ଅଗ୍ନିପ୍ରବେଶ କରି ପ୍ରାଣତ୍ୟାଗ କରିବେ । ବ୍ରାହ୍ମଣ ଏହାକୁ ହାସ୍ୟାସ୍ପଦ କଥା ବୋଲି କହିଲେ । ସଙ୍କର୍ଷଣ, ଶ୍ରୀକୃଷ୍ଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ଆଦି ଯାହା ପାରୁ ନାହାନ୍ତି ଅର୍ଜୁନଙ୍କ ଦମ୍ଭ ପାରିବାର ପଣିଆ କେବଳ ଶିମିଳ ତୂଳା ସିନା ।

ଦଶମ ସନ୍ତାନ ପ୍ରସବ ସମୟରେ ଅର୍ଜୁନ ଶରମାରି ଏକ ଅଭେଦ୍ୟ ପଞ୍ଜର ନିର୍ମାଣ କରିଥିଲେ । କି ବିଚିତ୍ର କଥା ସନ୍ତାନ ଜନ୍ମ ହେଲା ମାତ୍ରେ ପୁଣି ଅଦୃଶ୍ୟ ହୋଇଗଲା । ଅର୍ଜୁନ ବ୍ରାହ୍ମଣଙ୍କ ମର୍ମଭେଦୀ କଥା ସହିନପାରି ନିଜର ଚିତା ପ୍ରସ୍ତୁତ କଲେ । ଠାକୁରଜୀ ସମ୍ବାଦ ପାଇ ପହଞ୍ଚିଲେ ସେଠାରେ । ଅର୍ଜୁନଙ୍କୁ କହିଲେ, ‘‘ହେ ସଖା, ଦରକାର ନାହିଁ ତୁମର ଆତ୍ମହତ୍ୟା କରିବା । ମୋ ସାଙ୍ଗରେ ଆସ । ବ୍ରାହ୍ମଣଙ୍କ ଦଶପୁତ୍ରଙ୍କୁ ଫେରାଇ ଆଣିବା ।’’ ପାର୍ଥ ଓ ପାର୍ଥ ସାରଥୀ ନନ୍ଦିଘୋଷ ଚଢ଼ି ଚାଲିଲେ ଦୂରଦୂରାନ୍ତ ରାଇଜକୁ । ସପ୍ତଦ୍ୱୀପ, ସପ୍ତ ସମୁଦ୍ର, ସପ୍ତ କୁଳାଚଳ ପାରହେଲେ । ଲୋକାଲୋକ ପର୍ବତ ଡେ଼ଇଁ ଦେଖିଲେ ଘୋର ଅନ୍ଧକାର । ସୁଦର୍ଶନଙ୍କୁ ନିଯୁକ୍ତି ଦେଲେ ରଥ ଆଗେ ଆଗେ ବାଟ ଦେଖାଇବାକୁ ।

ଅବିଳମ୍ବେ ଦୁହେଁ ପହଞ୍ଚିଗଲେ ମହାବୈକୁଣ୍ଠରେ । ଅର୍ଜୁନ ଦେଖିଲେ ସହସ୍ର ଫଣାଯୁକ୍ତ ଅନନ୍ତ ନାଗ ଶଯ୍ୟାରେ ଶାୟିତ ମହାବିଷ୍ଣୁ । ସେ ଏ ଦୁହିଁଙ୍କୁ ଦେଖୁ ଦେଖୁ ସ୍ୱାଗତ କଲେ । ବ୍ରାହ୍ମଣ ପୁତ୍ରଙ୍କୁ ମାଗିବା ଦରକାର ପଡ଼ିଲା ନାହିଁ । ସେ କହିଲେ, ‘‘ହେ ନର-ନାରାୟଣ ଲୀଳା କରୁଥିବା ଗୋଲୋକ ବିହାରୀ ଲୀଳାମୟ କୃଷ୍ଣ । ମୁଁ ଜାଣିଜାଣି ଏ ଘଟଣାଟି ଘଟାଇଛି । ଉଦ୍ଦେଶ୍ୟ କେବଳ ଆପଣଙ୍କ ବିରଳ ଦର୍ଶନ । ଗୋଟିଏ କଳ୍ପରେ ୪୩୨କୋଟି ବର୍ଷରେ ଥରେ ଏମିତି କୃଷ୍ଣ ଲୀଳା ହେଉଛି । ଦୁହିଁଙ୍କ ଦର୍ଶନରେ ମୁଁ କୃତକୃତ୍ୟ ହେଲି । ଏବେ ଏମାନଙ୍କୁ ନିଅନ୍ତୁ ।’’

ବ୍ରାହ୍ମଣଙ୍କ ଦଶ ସନ୍ତାନଙ୍କୁ ଧରି ଦୁହେଁ ଦ୍ୱାରକା ଫେରି ଆସିଲେ । ବ୍ରାହ୍ମଣ ଓ ଦ୍ୱାରକାବାସୀ ଯେତିକି ବିସ୍ମିତ ହେଲେ ତାହା ଠାରୁ ଅଧିକ ବିସ୍ମିତ ହେଲେ ସ୍ୱୟଂ ଅର୍ଜୁନ । ଭାବିଲେ ଏ ଲୀଳା ତ ବିଶ୍ୱରୂପ ଦର୍ଶନ ଲୀଳାକୁ ବଳିଗଲା । ନିଜର ସୌଭାଗ୍ୟର ପ୍ରଶଂସା କରି ନୀରବ ରହିବାକୁ ସେ ଉଚିତ ମଣିଲେ ।

# ଅଥ ୯୦ମ ଅଧ୍ୟାୟଃ

## (କୃଷ୍ଣଲୀଳାର ମହିମା ବର୍ଣ୍ଣନାତୀତ)

ପ୍ରଶ୍ନ-୧୦୪: ବୃନ୍ଦାବନର କୃଷ୍ଣ ଗୋପୀନାଥ । ଦ୍ୱାରକାର କୃଷ୍ଣ ଲକ୍ଷ୍ମୀପତି ବିଷ୍ଣୁ(ଶ୍ରିୟଃପତିଃ) । ଶୁକଦେ୍ଵବଜୀଙ୍କ ଦ୍ୱାରା ଭଗବାନ କୃଷ୍ଣଙ୍କର ଦ୍ୱାରକାକୃତ ଶହେ ବର୍ଷର ଲୀଳା ବର୍ଣ୍ଣନ ଶେଷ ହୋଇ ଆସୁଥାଏ । ଜରାସନ୍ଧ ଭୟରେ ଦୁର୍ଗ ମଧ୍ୟରେ ଲୁଚିଥିଲେ ବୋଲି କୃଷ୍ଣଦ୍ୱେଷୀ ଲୋକେ ତାଙ୍କୁ ଥଟ୍ଟା କରି ରଣଛୋଡ଼ ରାୟ ବୋଲି ନାମ ଦେଲେ । ଶୁକଦେବ ପରମହଂସ ହସ ହସ ହୋଇ କୃଷ୍ଣଙ୍କ ଆପାତତଃ ଦୁଃଖପୂର୍ଣ୍ଣ ଗୃହସ୍ଥାଶ୍ରମ କଥା ବର୍ଣ୍ଣିତ କଲେ କେଉଁ ସାହସରେ ?

ଶ୍ରୀ ଶୁକ ଉବାଚ

**ସୁଖଂ ସ୍ୱପୁର୍ଯ୍ୟାଂ ନିବସନ୍ ଦ୍ୱାରକାୟାଂ ଶ୍ରିୟଃ ପତିଃ ।**
**ସର୍ବ ସଂପତ୍ ସମୃଦ୍ଧାୟାଂ ଜୁଷ୍ଟାୟାଂ ବୃଷ୍ଣି ପୁଙ୍ଗବୈଃ ॥୧॥**

ଉ. ଠାକୁରଜୀଙ୍କ ଗୃହସ୍ଥାଶ୍ରମ ଆଦୌ ଦୁଃଖପୂର୍ଣ୍ଣ ନଥିଲା । ବରଂ ବର୍ଣ୍ଣନାତୀତ ସୁଖ ସମୃଦ୍ଧିରେ ପୂର୍ଣ୍ଣ ଥିଲା । ନିଖିଳ ବିଶ୍ୱର ସମ୍ପତ୍ତି-ଐଶ୍ୱର୍ଯ୍ୟ ତାଙ୍କ ପାଦତଳେ ଲୋଟୁଥିଲା । ମହାବୈକୁଣ୍ଠର ମହାଲକ୍ଷ୍ମୀ ଆଠଟି ରୂପ ପରିଗ୍ରହ କରି ଅଷ୍ଟପାଟବଂଶୀ ନାମରେ ନିରନ୍ତର ତାଙ୍କ ସେବାରତ ଥିଲେ । ପୁତ୍ର ମହାବଳୀ ପ୍ରଦ୍ୟୁମ୍ନ, ଚାରୁଦେଷ୍ଣ, ନାତି ଅନିରୁଦ୍ଧ ଆଦି ଅସଂଖ୍ୟ ବୃଷ୍ଣିବଂଶୀ ବୀର ମହାବୀରଙ୍କ ସହିତ ସଂକର୍ଷଣ ଓ ଚକ୍ର ସୁଦର୍ଶନ ଦିନରାତି ପହରା ଦେଉଥିଲେ (ଜୁଷ୍ଟାୟାଂ) । ସେହି ଆଦର୍ଶ ଗୃହସ୍ଥାଶ୍ରମର ବର୍ଣ୍ଣନା ଏକ ରୋଲ୍ ମଡ଼େଲ୍ ବୋଲି ବର୍ଣ୍ଣନା କରାଯିବ ଏ ଅଧ୍ୟାୟ ସାରା ।

ପ୍ରଶ୍ନ-୧୦୫: ଦ୍ୱାରକାରେ ସେତେବେଳେ ଅନେକ ବନ ଉପବନ ପ୍ରମୋଦ ଉଦ୍ୟାନ ସବୁ ନିର୍ମିତ ହୋଇଥିଲା । ରାଣୀ, ରାଜକୁମାରୀ, ରାଜବଧୂ ମାନଙ୍କର ଜଳକ୍ରୀଡ଼ା ଓ ଉପବନ ବିହାର ବେଳେ ସ୍ୱର୍ଗର ଦେବତା ଗନ୍ଧର୍ବମାନେ ଆନନ୍ଦରେ ନୃତ୍ୟ, ଗୀତ, ଗାଉଣା, ବାଜଣା ବନ୍ଦୋବସ୍ତ କରୁଥିଲେ । ଭଗବାନ ତାଙ୍କ ରାଣୀମାନଙ୍କ ସହ କରୁଥିବା

ଜଳକ୍ରୀଡ଼ା ଦେଖି ମନେ ହେଉଥିଲା ସତେ କି ଏକ ମହାବଳଶାଳୀ ଦନ୍ତା ହାତୀ ନିର୍ଭୟରେ ଅନେକ ମାଈ ହାତୀମାନଙ୍କ ସହ ଜଳ ବିହାର କରୁଛି କି ଆଉ ! ! ଭଗବାନଙ୍କର ଜଳକ୍ରୀଡ଼ା (ବିହରତୋ), ଚଳ ପ୍ରଚଳ ଢ଼ଙ୍ଗ (ଗତି), କଥାବାର୍ତ୍ତା(ଆଳାପ), ଦୃଷ୍ଟିଭଙ୍ଗୀ (ଈକ୍ଷିତ), ଦରହାସ (ସ୍ମିତୈଃ), ପରିହାସ (ନର୍ମ), ହସକୌତୁକ (କ୍ଷ୍ୱେଳି) ନିଜ ପତ୍ନୀମାନଙ୍କ ସହିତ ଆଲିଙ୍ଗନ (ପରିଷ୍ୱଙ୍ଗୈଃ) ଇତ୍ୟାଦିର ଉଦ୍ଦେଶ୍ୟ ତେବେ କ'ଣ ଥିଲା ବୋଲି କୁହାଯାଇପାରେ ?

**କୃଷ୍ଣସ୍ୟ-ଏବଂ ବିହରତୋ ଗତି-ଆଳାପ-ଈକ୍ଷିତ ସ୍ମିତୈଃ ।**
**ନର୍ମ କ୍ଷ୍ୱେଳି ପରିଷ୍ୱଙ୍ଗୈଃ ସ୍ତ୍ରୀଣାଂ କିଳ ହୃତା ଧିୟଃ ॥୧୩॥**

ଉ. ଏସବୁ ଲୀଳାର ଏକମାତ୍ର ଉଦ୍ଦେଶ୍ୟ ନିଶ୍ଚିତ ରୂପେ (କିଳ) ଅର୍ଦ୍ଧାଙ୍ଗିନୀ ପତ୍ନୀମାନଙ୍କର ମନ, ବୁଦ୍ଧି, ଚିତ୍ତ, ଅହଂକାରକୁ ଐଶ୍ୱର୍ଯ୍ୟ ମଧ୍ୟରେ ବୁଡ଼ାଇ ରଖିବା । ଏମାନେ ତ ଆଉ ଗୋପୀ ଗୋପାଳଙ୍କ ମାଧୁର୍ଯ୍ୟ ପ୍ରେମର ଅଧିକାରୀ ନୁହନ୍ତି । ତାହା ହୋଇଥିଲେ ସିନା ସେମାନେ ଠାକୁରଜୀଙ୍କୁ ଆଙ୍ଗୁଠି ଅଗରେ ନଚେଇ ପାରନ୍ତେ ।

ପ୍ରଶ୍ନ-୧୦୬: କୃଷ୍ଣପତ୍ନୀମାନେ ଐଶ୍ୱର୍ଯ୍ୟ ଶକ୍ତିରେ ଏଭଳି ଦଣ୍ଡବତ୍-ଉନ୍ମତ୍ତବତ୍ ହୋଇ ଯାଇଥିଲେ ଯେ ସେମାନଙ୍କୁ କେବେ ଦିନ ହେଉଛି କେବେ ରାତି ପାହୁଛି ଜଣାପଡୁନଥିଲା । ଐଶ୍ୱର୍ଯ୍ୟରେ ବିମୋହିତା ହୋଇ ୧୦ଟି ଶ୍ଳୋକରେ ୧୦ଜଣ କୃଷ୍ଣପତ୍ନୀ ଯାହା ଗାଇଛନ୍ତି ତାର ନାମ ମହିଷୀ ଗୀତ ଶୁକଦେବଜୀ ଖୋଲି କହିଛନ୍ତ (ଶ୍ଳୋକ ୧୫ଶ-୨୪ମ) ରେ ।

ଚକ୍ରବାକୀକୁ ଦେଖି ସେମାନେ ପ୍ରଶ୍ନ କରୁଛନ୍ତି ତୁମେମାନେ କ'ଣ ଆମ ଭଳି କୃଷ୍ଣପ୍ରେମ ବିରହିଣୀ କି ? ତୁମେମାନେ କାନ୍ଦୁଛ କାହିଁକି ? ସମୁଦ୍ର ଗର୍ଜନ ଶୁଣି ଶୁଣାଉଥିଲେ ସମୁଦ୍ରରୁ କୌସ୍ତୁଭମଣି ଓ ଲକ୍ଷ୍ମୀଙ୍କୁ ଆମ ପତି ହାତେଇ ନେଇଛନ୍ତି ବୋଲି ତୁମେ କ'ଣ ଏ ଗର୍ଜନ ଛାଡୁଛ ଦିନ ରାତି ? ମଳୟ ପବନକୁ କହୁଛନ୍ତି ଆମ ପତି ପ୍ରେମ ଦେଖି ଈର୍ଷା କରୁଛ କି ? ଏଭଳି କାମ ଉଦ୍ଦୀପକ ସଙ୍କେତ ଦେଉଅଛ । କଳା ବର୍ଣ୍ଣର ମେଘକୁ ଦେଖି ପ୍ରଶ୍ନ କରୁଛନ୍ତି ଆମ ପ୍ରିୟତମଙ୍କ ରଙ୍ଗ ଧାରଣ କରିଛ ତୁମେ । ଆମ ଭଳି ବିରହ ଆଶଙ୍କା କରି ତୁମେ କଅଣ ବର୍ଷରେ ବର୍ଷା ଋତୁ ଚାରିମାସ କାନ୍ଦୁଛ ? ପର୍ବତକୁ ଦେଖି ପ୍ରଶ୍ନ କରୁଛନ୍ତି ଯେ ପର୍ବତ କଅଣ ତାର ଜ୍ଞାନ, ଭକ୍ତି ଦ୍ୱାରା କୃଷ୍ଣ ଚିନ୍ତନ କରି ସମାଧିସ୍ଥ ହୋଇଯାଇଛି କି ? କୋକିଳଟିଏ ଦେଖି କହୁଛନ୍ତି, "ହେ କୋକିଳ କ'ଣ ଦେଇ ତୁମେ ପ୍ରିୟତମଙ୍କଠାରୁ ଏ ମଧୁର କଣ୍ଠ ସ୍ୱର ହାତେଇ

ନେଇଛ ?'' ଗ୍ରୀଷ୍ମ ଋତୁରେ ନଦୀମାନେ ଜଳଶୂନ୍ୟ ହେବା ଦେଖି କହୁଛନ୍ତି, ତୁମେ କୃଷ୍ଣଙ୍କୁ ଝୁରି ଝୁରି ସବୁତକ ଲୋତକ ଶୁଖାଇ ଦେଇଛ କି ଆଉ ? ହଂସଟିଏ ଦେଖି କହୁଛନ୍ତି, ''ହେ ହଂସ ପ୍ରିୟତମଙ୍କ ସନ୍ଦେଶ କିଛି ଆଣିଛ କି । ଶୁଣାଅ ତ ଦେଖି । ଆମେ ପୁରସ୍କାର ଦେବୁ ନିଶ୍ଚୟ ।''

ଏହି ଐଶ୍ୱର୍ଯ୍ୟ ଲୋଭୀ କୃଷ୍ଣ ପତ୍ନୀ ଗଣ କୃଷ୍ଣ ଅବତାର କାଳରେ ନାରାୟଣଙ୍କ ରୂପ ଗୁଣ ଲୀଳାର ବର୍ଣ୍ଣନା ଶ୍ରବଣ କରି ତାଙ୍କ ପ୍ରତି ଆସକ୍ତ ହୋଇ ପଡ଼ିଥିଲେ । ତାଙ୍କୁ ବିବାହ କରିବାକୁ ପ୍ରାଣର ବାଜି ଲଗାଇଦେଲେ । ବିବାହ ମଧ କଲେ । ଘର ସଂସାର କଲେ । ଭୌତିକ ସଂସାରରେ ଦୁଇ ତିନି ପତ୍ନୀରେ ସଂସାର ଚଳାଇବା ମୁସ୍କିଲ ମନେ ହୁଏ । ଭଗବାନ କୃଷ୍ଣ ତାଙ୍କର ଏହି ଗୃହସ୍ଥାଶ୍ରମଲୀଳାରେ କ'ଣ ଧର୍ମ, ଅର୍ଥ, କାମ, ମୋକ୍ଷ ଲକ୍ଷ୍ୟ ପ୍ରାପ୍ତି ସମ୍ଭବ ବୋଲି ଦର୍ଶାଇ ପାରିଲେ ?

**ଆସ୍ଥିତସ୍ୟ ପରଂ ଧର୍ମଂ କୃଷ୍ଣସ୍ୟ ଗୃହମେଧିନାମ୍ ।**
**ଆସନ୍ ଷୋଡ଼ଶ ସାହସ୍ରଂ ମହିଷ୍ୟଃ ଚ ଶତ-ଅଧିକମ୍ ॥୨୯॥**

ଉ. ନିଜେ ବାଜିମାରି ଏବଂ ପାଳନ କରି ଚାରି ଲକ୍ଷ୍ୟ ଉପରକୁ ଉଠିବା ଦେଖାଇ ଦେଇଗଲେ । ଗୃହସ୍ଥ ଆଶ୍ରମରେ ରହି (ଆସ୍ଥିତସ୍ୟ ଗୃହମେଧିନାଂ) ଭାଗବତ ଧର୍ମ (ପରଂ ଧର୍ମଂ) ପାଳନ କରି ପାରିଲେ ତାହା ପୁଣି ଚାରି ପାଞ୍ଚ ଜଣ ପତ୍ନୀଙ୍କୁ ଧରି ନୁହେଁ ଷୋହଳ ହଜାର ଏକଶତ ଆଠ ପତ୍ନୀଙ୍କୁ ସୁଖରେ ସମୃଦ୍ଧିରେ ଚଳାଇ । ସଂକ୍ଷେପରେ ସେଇ ଶ୍ରୀକୃଷ୍ଣ ଏକାଧାରରେ ମହାଗୃହସ୍ଥ ଓ ମହାସନ୍ୟାସୀ । ସେ କେବେବି ସନ୍ନ୍ୟାସ ଧର୍ମର ନିନ୍ଦା କରିନାହାନ୍ତି । ବରଂ ଗୃହସ୍ଥ ଧର୍ମର ଜୟଗାନ କରିଯାଇଛନ୍ତି ।

ପ୍ରଶ୍ନ-୧୦୭: ଶ୍ରୀକୃଷ୍ଣଙ୍କର ୧୬୧୦୮ ପତ୍ନୀ ଥିଲେ । ପ୍ରତ୍ୟେକଙ୍କର ଦଶ ଦଶ ପୁତ୍ର ଓ ଏକ ଏକ କନ୍ୟା ହେଲେ । ସେମାନଙ୍କର ମଧ ପୁତ୍ର ନାତି ହେଲେ ଶହେ ବର୍ଷ ଦ୍ୱାରକା ଲୀଳାରେ । ସେମାନଙ୍କ ସଂଖ୍ୟା ଗଣନା କରିବା କୌଣସି ମନୁଷ୍ୟ ବା ଦେବତା ପକ୍ଷରେ ଅସମ୍ଭବ । ତେବେ ସେମାନଙ୍କ ସଂଖ୍ୟାର ଏକ ମୋଟାମୋଟି ଧାରଣା କରାଯାଇପାରେ ଯଦୁବଂଶୀ ବାଳକମାନଙ୍କୁ ବେଦ ପଢ଼ାଇବାକୁ ନିଯୁକ୍ତି ପାଇଥିବା ଶିକ୍ଷକମାନଙ୍କ ସଂଖ୍ୟାରୁ । ଯାହାଙ୍କର ସଂଖ୍ୟା ଥିଲା ତିନିକୋଟି ଅଠାଅଶୀ ଲକ୍ଷ । ଯାଦବମାନଙ୍କ ସଂଖ୍ୟା ଥିଲା ତିନି ଅଙ୍କର ଡ଼ାହାଣ ପଟେ ତେରଟି ଶୂନ୍ୟ ଲଗାଇଲେ ଯେଉଁ ସଂଖ୍ୟା ହେବ ବାସ ସେତିକି । ପୂର୍ବେ ଘଟିଥିବା ଦେବାସୁର ସଂଗ୍ରାମରେ ଯେଉଁ ଅସୁମାରୀ ଅସୁରମାନେ ମରିଯାଇଥିଲେ ସେମାନେ ଯାଦବ ବଂଶରେ

ଜନ୍ମ ହୋଇ କୃଷ୍ଣ ଲୀଳାରେ ଅଂଶଗ୍ରହଣ କରିବାର ସୌଭାଗ୍ୟ ପ୍ରାପ୍ତ ହୋଇଥିଲେ ।

ଗ୍ରନ୍ଥ ଆରମ୍ଭରେ ଶୌନକାଦି ଋଷିମାନଙ୍କର ଏକ ପ୍ରଶ୍ନ ଏ ପର୍ଯ୍ୟନ୍ତ ଅସମାହିତ ହୋଇ ରହିଯାଇଛି । କୃଷ୍ଣ ଅବତାରର କାରଣ କିସ ? କାଳ ଯାହାଙ୍କର ଆୟୁଧ ତାଙ୍କ ପକ୍ଷେ ଭୂଭାର ହରଣ କିବା ଛାର କଥା ! ! ପ୍ରଥମ କାରଣ କୃଷ୍ଣଙ୍କର ରୂପମାଧୁରୀ, ବେଣୁ ମାଧୁରୀ, ପ୍ରେମ ମାଧୁରୀ ଓ ବାଳ ଲୀଳା ମାଧୁରୀ ପ୍ରକଟ କରାଇବା ଯାହା ବିଷ୍ଣୁ କିମ୍ବା ମହାବିଷ୍ଣୁଙ୍କ ଦ୍ୱାରା ସମ୍ଭବ ହୋଇପାରେନା । ଦ୍ୱିତୀୟ କାରଣ ଭାଗବତ ଧର୍ମ ପ୍ରକଟ କରାଇବା । ତୃତୀୟ କାରଣ ନାରାୟଣ ପରମାତ୍ମା ଅଜନ୍ମା ସିନା ହେଲେ ଖାସ୍ କୃଷ୍ଣ ଭକ୍ତକୁ ଆନନ୍ଦ ଦେବା ନିମିତ୍ତ ଭକ୍ତବାଞ୍ଛା କଳ୍ପତରୁ କୃଷ୍ଣ ଭୂମିକାରେ ଜନ୍ମନେବା । ଚତୁର୍ଥ କାରଣ ଜ୍ଞାନ ଗଙ୍ଗାଠାରୁ ଭକ୍ତି ଯମୁନାଙ୍କ ମାହାତ୍ମ୍ୟ ଅଧିକତର ଜଣାଇବା ନିମିତ୍ତ ଶ୍ରେଷ୍ଠ ବୋଲି ଭାଗବତ ଧର୍ମର ପତାକା ଉଡ଼ାଇବା । ଶୁକଦେବ ପରମହଂସ ଦ୍ୱାରକାଲୀଳା ବର୍ଣ୍ଣନାର ଉପସଂହାର କରିବା ପୂର୍ବରୁ କିଭଳି ତନ୍ମୟ, ତଲ୍ଲୀନ, ତଦ୍‌ଗତ ତଦ୍ଭାବ ଭାବିତ ହୋଇ ଗଦ୍‌ଗଦ୍ ହୋଇଯିବାର ପ୍ରମାଣ ମିଳେ ଏ ମହାଗ୍ରନ୍ଥ ମଧ୍ୟରେ ?

**ଜୟତି ଜନନିବାସୋ ଦେବକୀ ଜନ୍ମବାଦୋ**
**ଯଦୁବର ପରିଷତ୍ ସ୍ୱୈଃ ଦୋର୍ଭିଃ ଅସ୍ୟନ୍ ଅଧର୍ମମ୍ ।**
**ସ୍ଥିର ଚର ବୃଜିନଘ୍ନଂ ସୁସ୍ମିତ ସ୍ମୁମୁଖେନ**
**ବ୍ରଜପୁର ବନିତାନାଂ ବର୍ଦ୍ଧୟନ୍ କାମଦେବମ୍ ॥୪୮॥**

ଉ. ଭାଗବତ ବକ୍ତା ମହାଶୟ ଦଶମ ସ୍କନ୍ଧ ଶେଷ ବେଳକୁ ଆଉ ନିଜକୁ ନିଜ ନିୟନ୍ତ୍ରଣ ମଧ୍ୟରେ ରଖିପାରିନାହାନ୍ତି । ୬୬,୦୦୦ଋଷିମଣ୍ଡଳୀ ମଧ୍ୟରେ ସେହି ଶ୍ରୀକୃଷ୍ଣଙ୍କର କେବଳ ବାରମ୍ବାର ଜୟଘୋଷ କରିଛନ୍ତି (ଜୟତି) । ଯେ ଘଟଘଟ ବାସୀ (ଜନ ନିବାସୋ) । ଯେ ଅଜନ୍ମା ହୋଇ ମଧ୍ୟ ଦେବକୀଙ୍କ ପୁତ୍ରତ୍ୱ ସ୍ୱୀକାର କରିଛନ୍ତି । ଯେ ଯଦୁବଂଶରେ ଜନ୍ମ ଲାଭ କରି ନିଜ ନିତ୍ୟ ପାର୍ଷଦ ଓ ନିଜର ଅଭିନ୍ନ ସ୍ୱରୂପ ବୀର ଅର୍ଜ୍ଜୁନଙ୍କ ଦୁଇ ଭୁଜା ଦ୍ୱାରା (ଦୋର୍ଭିଃ) ଭୂଭାର ହରଣ ଲୀଳା କରିଛନ୍ତି । ଯେ ନିଜ ନାମ, ରୂପ, ଲୀଳା, ଧାମ, ସନ୍ଥ ମାହାତ୍ମ୍ୟ ଗାନ କରାଇ ଚର ଅଚର ଜୀବମାନଙ୍କ ପାପ ନାଶ (ବୃଜିନଘ୍ନଂ) କରିପାରନ୍ତି । ଯେ ବ୍ରଜାଙ୍ଗନା ଓ ଦ୍ୱାରକାପୁର ବାସିନୀମାନଙ୍କୁ ନିଜ ସ୍ମିତ ହାସ୍ୟ ଦ୍ୱାରା ଯଥାକ୍ରମେ ମାଧୁର୍ଯ୍ୟପ୍ରେମ ଓ ଐଶ୍ୱର୍ଯ୍ୟ ଲୀଳାରେ ପ୍ରେମ ଲୁଡୁବୁଡୁ କରିପାରନ୍ତି ତାଙ୍କରି ଉଦ୍‌ଘୋଷ କରିଛନ୍ତି ବାରମ୍ବାର ସଭା ମଧ୍ୟରେ ନିଜ ପରମ ଇଷ୍ଟଦେବଙ୍କ ଜୟଗାନ କରାଇ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

ପ୍ରଶ୍ନ-୧୦୮: ନବେ ଅଧ୍ୟାୟ ବିଶିଷ୍ଟ କୃଷ୍ଣପ୍ରେମ ଲୀଳା ଶ୍ରବଣ କୀର୍ତ୍ତନ ଓ ସ୍ମରଣର ଫଳଶ୍ରୁତି କ'ଣ ବୋଲି ଶ୍ରୀ ଶୁକଦେବ ସଭା ମଧ୍ୟରେ ଘୋଷଣା କରିଥିଲେ ?

**ମର୍ତ୍ତ୍ୟଃ ତୟା-ଅନୁସବଂ ଏଧିତୟା ମୁକୁନ୍ଦ**
**ଶ୍ରୀମତ୍ କଥା ଶ୍ରବଣ କୀର୍ତ୍ତନ ଚିନ୍ତୟା-ଏତି ।**
**ତତ୍ ଧାମ ଦୁସ୍ତର କୃତ-ଅନ୍ତ ଜବ-ଅପବର୍ଗଂ**
**ଗ୍ରାମାତ୍ ବନଂ କ୍ଷିତିଭୁଜୋଽପି ଯଯୁଃ ଯତ୍ ଅର୍ଥାଃ ॥୫୦॥**

ଉ. ଜ୍ଞାନୀମାନଙ୍କ ପାଇଁ ମୁକୁନ୍ଦ ଶବ୍ଦର ଅର୍ଥ (ମୁକ୍ତିଂ ଦଦାତି ଇତି) ମୁକ୍ତିଦାତା ବୈକୁଣ୍ଠ ବିହାରୀ ନାରାୟଣ । ଭକ୍ତମାନଙ୍କ ପାଇଁ ମୁକ୍ତିଂ କୁଂ (ତୁଚ୍ଛ ପ୍ରତିପାଦନ କରି) ନିଷ୍କାମ ଗୋପୀପ୍ରେମ ପ୍ରଦାନ କରିପାରୁଥିବା ଗୋଲୋକ ବିହାରୀ ଶ୍ରୀକୃଷ୍ଣଙ୍କୁ ବୁଝାଏ । ପୂର୍ବ କାଳରେ ଧାର୍ମିକ ପ୍ରଜାମାନେ ସନ୍ୟାସୀ ହୋଇ ଗାଁ ଛାଡୁଥିଲେ । ରାଜା (କ୍ଷିତିଭୁଜୋଽପି) ମଧ୍ୟ ରାଜସିଂହାସନ ତ୍ୟାଗ କରି ବଣ ଜଙ୍ଗଲରେ ରହି କଠୋର ଅତି କଠୋର ସାଧନା କରୁଥିଲେ ମୁକୁନ୍ଦଙ୍କ କୃପା ପ୍ରାପ୍ତି ଲାଗି । କୃଷ୍ଣଲୀଳା ପରେ କିନ୍ତୁ ବର୍ତ୍ତମାନ ପରିସ୍ଥିତି କିନ୍ତୁ ବଦଳି ଯାଇଛି । କୃଷ୍ଣ ଲୀଳା ଅଭିନୟ ସରିଛି । ବ୍ୟାସଙ୍କ ଦ୍ୱାରା ଏହା ଲେଖା ମଧ୍ୟ ସରିଛି । ବକ୍ତା ଶୁକଦେବଙ୍କ ଦ୍ୱାରା ଖୋଲାଖୋଲି ଶୁଣାଇ ଦିଆଯାଇଛି । ଏହି ନବେ ଅଧ୍ୟାୟ ବର୍ଣ୍ଣିତ ଲୀଳାକୁ ପ୍ରତିଦିନ (ଅନୁସବଂ) ମରଣକୁ ଭୟ କରୁଥିବା ମନୁଷ୍ୟ(ମର୍ତ୍ତ୍ୟଃ ଉଦାହରଣତଃ ବକ୍ତା ପରୀକ୍ଷିତ ରାଜା) ଭାଗବତଙ୍କୁ (ଶ୍ରୀମଦ୍ କଥା) ଶ୍ରବଣ, କୀର୍ତ୍ତନ ଓ ମନନ କଲେ ମୋକ୍ଷ(ଅପବର୍ଗ) କିବା ଛାର କଥା ବୈକୁଣ୍ଠ, ମହାବୈକୁଣ୍ଠ ବା ଗୋଲକ ଧାମରେ(ତତ୍ ଧାମ) ସେବା ସୁଯୋଗ ପ୍ରାପ୍ତ ହେବ । ଦେବ ଦୁର୍ଲଭ ନିଷ୍କାମ ଗୋପୀ ପ୍ରେମର ଅଧିକାରୀ ହେବ । ଯାହାକୁ ଯମଦୂତଙ୍କ କଥା କ'ଣ କହିବା ସ୍ୱୟଂ ଯମରାଜା(କୃତାନ୍ତ) ଲୋଭ କରିଥାନ୍ତି । ସେ ପ୍ରେମର ସ୍ୱାଦ ଜାଣି ନଥିବାରୁ ମନୁଷ୍ୟ, ଅସୁର ଦେବତା ନିଜ ନିଜ ମୃତ୍ୟୁରୁ ରକ୍ଷା ପାଇବାକୁ ନାନା ତୀର୍ଥ, ବ୍ରତ, ତପସ୍ୟା କରି ମଧ୍ୟ ମୃତ୍ୟୁ ସାଗରକୁ ପାର ହୋଇପାରିନ୍ତି ନାହିଁ (ଦୁସ୍ତର) ତାକୁ ପୁଣି ଜନ୍ମ ଜନ୍ମାନ୍ତରରେ ମଧ୍ୟ ଆସ୍ୱାଦନ କରାଯାଇପାରେ ।

ପରବର୍ତ୍ତୀ ଏକାଦଶ ସ୍କନ୍ଧରେ ପାଞ୍ଚ ପ୍ରକାର ମୁକ୍ତି ପାଞ୍ଚ ପ୍ରକରଣରେ ବୁଝେଇବେ ଶୁକଦେବଜୀ ପରୀକ୍ଷିତଙ୍କୁ ଏକତ୍ରିଶ ଅଧ୍ୟାୟରେ ।

# ୩୬. ଶାନ୍ତରସ ପ୍ରକରଣ ସାର
## (ଅଧ୍ୟାୟ ୮୨ମ-୯୦ମ)

ସୃଷ୍ଟିର ସାରା ଜୀବଜଗତ ଖୋଜେ ତିନି କଥା । ଦେହକୁ ସୁଖ । ମନକୁ ଶାନ୍ତି ଓ ହୃଦୟକୁ ଆନନ୍ଦ । ଭାରତୀୟ ବାଙ୍ମୟ ଜଗତର ଦୁଇ ମହାକାବ୍ୟ ରାମାୟଣ ଓ ମହାଭାରତ । ଉଭୟେ ନଅ ପ୍ରକାରର ରସ ବର୍ଣ୍ଣନା ଅବଶ୍ୟ କରିଛନ୍ତି । ତଥାପି ସକଳ ରସର ସମନ୍ୱୟପରେ ଶେଷ ନିଷ୍କର୍ଷରେ ପାଠକଙ୍କୁ ପହଞ୍ଚାଇଛନ୍ତି ଶାନ୍ତ ରସରେ । ଶୃଙ୍ଗାର, ଭୟାନକ, ବିଭତ୍ସ ଆଦି ରସଙ୍କର ବିଳୟ ଘଟିଥାଏ ଏହି ଶାନ୍ତ ରସରେ ।

ଭାଗବତ ମହାଗ୍ରନ୍ଥଙ୍କର ଦଶମସ୍କନ୍ଧ ଶେଷରେ ଠିକ୍ ତାହାହିଁ ଘଟିଛି । ଦଶରସର ବର୍ଣ୍ଣନା ହେଲେ ମଧ କୃଷ୍ଣ ଲୀଳାର ପରିସମାପ୍ତି ଘଟିଛି ସେଇ ଶାନ୍ତ ରସରେ । ଗ୍ରନ୍ଥ ଆରମ୍ଭ ହୋଇଥିଲେ ବ୍ୟାସଦେବଙ୍କ ମନ ଅଶାନ୍ତିରୁ । ନାରଦଜୀଙ୍କ ଦିବ୍ୟ ଉପଦେଶରେ ବ୍ୟାସଜୀ ପ୍ରଥମେ ଗୁରୁପ୍ରଦତ୍ତ ମନ୍ତ୍ର ଜପ କରିଛନ୍ତି । ମନ୍ତ୍ର ଚୈତନ୍ୟ କଲା ପରେ ଇଷ୍ଟଧ୍ୟାନ କରିଛନ୍ତି । ଧ୍ୟାନରେ ମାୟାଧୀଶ ଶ୍ରୀକୃଷ୍ଣ, ଯୋଗମାୟା ଶ୍ରୀରାଧାଙ୍କ ସହିତ ମହାମାୟାଙ୍କ ଦର୍ଶନ କରି ଗ୍ରନ୍ଥ ନିର୍ମାଣ ଆରମ୍ଭ କରିଛନ୍ତି । ପରିଶେଷରେ ତାଙ୍କ ମନରେ ଶାନ୍ତି ଆସିଛି ।

ଏହି ଶାନ୍ତ ରସ ପ୍ରକରଣରେ ନଅ ଅଧ୍ୟାୟ ମଧ୍ୟରୁ ପ୍ରଥମ ଅଧ୍ୟାୟରେ ପୂର୍ଣ୍ଣଗ୍ରାସ ସୂର୍ଯ୍ୟପରାଗ କାଳରେ ଭଗବାନ କୃଷ୍ଣଙ୍କ ପିତା କୁରୁକ୍ଷେତ୍ର ଯଜ୍ଞାନୁଷ୍ଠାନ କରିଛନ୍ତି । ମୁନି ଋଷିମାନଙ୍କ ସତ୍‌ସଙ୍ଗ ପ୍ରାପ୍ତ ହୋଇ ଶ୍ରୀମନ୍ ନାରାୟଣଙ୍କୁ ପ୍ରସନ୍ନ କରିଛନ୍ତି ଦ୍ରବ୍ୟ ଯଜ୍ଞ କରି । କରି ନାହାନ୍ତି ସେ ଦେବୀ ଦେବତା ତୁଷ୍ଟିକରଣ ଯଜ୍ଞ । ସୁତରାଂ ସେ ଶାନ୍ତି ରସ ପ୍ରାପ୍ତ ହୋଇଛନ୍ତି ।

ପାଣ୍ଡବ ପାଟରାଣୀ ଦ୍ରୌପଦୀ ଶ୍ରୀକୃଷ୍ଣଙ୍କୁ ବିବାହ କରି ନପାରି ଅନେକ ଦିନ ହେଲା ନିଜ ମନରେ ଅଶାନ୍ତିକୁ ଧରି ବୁଲୁଥିଲେ । କୁରୁକ୍ଷେତ୍ରରେ ଜଣ ଜଣ କରି ପଚାରି ବୁଝିଛନ୍ତି କୃଷ୍ଣଙ୍କୁ ବିବାହ କରିବାର କି କି ଅଧିକ ଯୋଗ୍ୟତା ଥିଲା ସେମାନଙ୍କ ନିକଟରେ ଯାହା ନିଜ ନିକଟରେ ନଥିଲା । ସମସ୍ତେ ସେଇ ଗୋଟିଏ କଥା କହିଛନ୍ତି

ପୂର୍ଣ୍ଣ ଆତ୍ମସମର୍ପଣ କଥା । କାହାରି ହେଲେ ଜଣକର ଭୌତିକ ରୂପଗୁଣ ଗାରିମା ସାମାଜିକ ଧନ, ପ୍ରତିଷ୍ଠା, ପାରିବାର ପଣିଆ କୃଷ୍ଣଙ୍କୁ ବିବାହ କରିବାରେ ଲାଗିନି । ଜୀବର ବିବାହ ପାଇଁ ପୁରୁଷାର୍ଥ କିଛି କାମ ଦିଏନା ବରଂ ଜୀବର ପ୍ରାରବ୍ଧ ବିବାହ କରାଇବାରେ ମୁଖ୍ୟ ଭୂମିକା ନିଭାଏ ଜାଣି ତାଙ୍କୁ ଶାନ୍ତି ମିଳିଛି ।

ଦେବମାତା ଦେବକୀ ତାଙ୍କ ପ୍ରଥମ ଛଅପୁତ୍ରଙ୍କୁ ଭାଇ କଂସ ମାରିବାରୁ ଅଶାନ୍ତିରେ ପୀଡ଼ିତା ଥିଲେ । ଭଗବାନଙ୍କୁ ପୁତ୍ର ରୂପରେ ପ୍ରାପ୍ତ ହୋଇ ସେଥିରୁ ମୁକ୍ତହେବା ସୁଯୋଗର ସେ ଉପଯୁକ୍ତ ବିନିଯୋଗ କରିଛନ୍ତି । ଠାକୁରଜୀଙ୍କ ଦ୍ୱାରା ଯମଲୋକରୁ ଛଅ ପୁଅଙ୍କୁ ଅଣାଇ ବାତ୍ସଲ୍ୟ ଭାବନାରେ ଡୁବି ଯାଇଛନ୍ତି । ପରିଣତ ବୟସରେ ମଧ୍ୟ ତାଙ୍କ ଶୁଷ୍କ ବକ୍ଷରୁ ବାତ୍ସଲ୍ୟର ଦୁଗ୍ଧ ସ୍ରବିଛି । ସନ୍ତାନମାନଙ୍କୁ ସ୍ତନ୍ୟ ପାନ କରାଇ ସେମାନଙ୍କୁ ଦିବ୍ୟ ଲୋକ ପଠାଇ ସେ ଶାନ୍ତ ରସ ଅନୁଭବ କରିଛନ୍ତି । ତତ୍ ସହିତ ବସୁଦେବ ମଧ୍ୟ ଶ୍ରୀକୃଷ୍ଣ ଓ ନାରଦଜୀଙ୍କ ଠାରୁ ତତ୍ତ୍ୱଜ୍ଞାନ ପ୍ରାପ୍ତ ହୋଇ ଦ୍ୱୈତ ଓ ଅଦ୍ୱୈତ ଉଭୟ ଅନୁଭବର ସଫଳ ପ୍ରୟୋଗ କରିଛନ୍ତି । ତାଙ୍କୁ ମଧ୍ୟ ଶାନ୍ତ ରସ ମିଳିଛି ।

ସୁଭଦ୍ରାଙ୍କ ବିବାହ ଭାଇ ସଙ୍କର୍ଷଣ ମହାଦୁଷ୍ଟ ଦୁର୍ଯ୍ୟୋଧନଙ୍କ ସହିତ କରାଇବାକୁ ନିଷ୍ପତ୍ତି ନେଇଛନ୍ତି । ଏ ପ୍ରସ୍ତାବ ଶୁଣି ସୁଭଦ୍ରାଙ୍କ ମନ ଚହଲି ଯାଇଛି ଅଶାନ୍ତ ହୋଇଛି । ଶେଷରେ ଭାଇ ଚିନ୍ତାମଣି ଭଗବାନ ଶ୍ରୀକୃଷ୍ଣ ଓ ଭାଉଜ ରୁକ୍ମିଣୀଙ୍କ କୃପାରୁ ମହାବୀର ଅର୍ଜ୍ଜୁନଙ୍କୁ ବିବାହ କରି ଶାନ୍ତ ରସର ସ୍ୱାଦ ଚାଖିପାରିଛନ୍ତି । ମିଥିଳାର ରାଜା ବହୁଳାଶ୍ୱ ଓ ବ୍ରାହ୍ମଣ ଶ୍ରୁତଦେବ ଋଷି ମୁନିଙ୍କ ସହିତ ଭଗବାନଙ୍କୁ ଅତିଥି ରୂପେ ବରଣ କରି ଦୁର୍ଲଭ ସତ୍‌ସଙ୍ଗ ସହିତ ସଦୁପଦେଶ ପାଇ ଉଭୟେ ଶାନ୍ତ ରସର ଅଧିକାରୀ ହୋଇଛନ୍ତି ।

ସନାତନ ଧର୍ମଶାସ୍ତ୍ର ବେଦରେ ଦୁଇ ପ୍ରକାର ଋଚା ଦେଖିବାକୁ ମିଳନ୍ତି । ତନ୍ମଧ୍ୟରୁ ନିର୍ଗୁଣ ବ୍ରହ୍ମଙ୍କ ସ୍ତୁତି କରିବା ଋଚାମାନେ ବ୍ରହ୍ମଙ୍କ ବର୍ଣ୍ଣନା କରିନପାରି ସଦା ଅଶାନ୍ତ ଓ ଅସନ୍ତୁଷ୍ଟ ରହନ୍ତି । କାରଣ ବ୍ରହ୍ମ ଅନିର୍ଦ୍ଦେଶ୍ୟ ଓ ଅନିର୍ବଚନୀୟ । ବାଣୀ ତାଙ୍କ ପାଖରେ ପହଞ୍ଚିବା ଅସମ୍ଭବ । ଏହି ମହାଗ୍ରନ୍ଥରେ ଅଠେଇଶ ଋଚା ଅଠେଇଶ ବେଦକନ୍ୟାଙ୍କ ରୂପ ପରିଗ୍ରହ କରିଥିବାର ପ୍ରମାଣ ମିଳେ । ସେମାନେ ସଗୁଣା ସାକାର ଭଗବାନଙ୍କ ସ୍ତୁତି କରି ଶାନ୍ତରସ ପ୍ରାପ୍ତ ହେବାର ସୌଭାଗ୍ୟ ଅର୍ଜନ କରିଛନ୍ତି ।

ଶଙ୍କର ଭଗବାନ ପରମ ବୈଷ୍ଣବ । ଜନ କୋଳାହଳକୁ ଏଡ଼ାଇ ଟିକିଏ ଶାନ୍ତି ପାଇବାକୁ ଶ୍ମସାନରେ ରହନ୍ତି । ତଥାପି ଅଶାନ୍ତି ତାଙ୍କର ପିଛା ଛାଡୁନାହିଁ । ସେ

ଭୋଳା ଶଙ୍କର । ପୁଣି ଆଶୁତୋଷ । ବୃକାସୁର ପରି ପାପାତ୍ମାକୁ ବରଦେଇ ହଇରାଣ ହରକତ ହୋଇଛନ୍ତି । ଭଗବାନ ବିଷ୍ଣୁଙ୍କ କୃପାରୁ ସେ ବିପଦ ମୁକ୍ତ ହୋଇ ଶାନ୍ତିରସ ଆସ୍ୱାଦନ କରିଛନ୍ତି ।

ମୁନି ଋଷିମାନେ ଆତ୍ମାରାମ ଓ ଆପ୍ତକାମ । ତଥାପି ଯଜ୍ଞ କଲାବେଳେ କଳି ଝଗଡ଼ା ତର୍କ ବିତର୍କରେ ମାତି ଅସନ୍ତୋଷ ଅନୁଭବ କରିଛନ୍ତି । ତର୍କର ବିଷୟ ବ୍ରହ୍ମା, ବିଷ୍ଣୁ, ମହାଦେବ ମଧ୍ୟରେ ଶ୍ରେଷ୍ଠ ଓ ଶେଷ ଆଶ୍ରୟ କିଏ ? ଏହି ଅଶାନ୍ତିରୁ ସେମାନଙ୍କୁ ଭୃଗୁମୁନି ମୁକ୍ତ କରିଛନ୍ତି । କଠିନ ପରୀକ୍ଷାଦ୍ୱାରା ନାରାୟଣ ବା ବିଷ୍ଣୁ ହିଁ ଶେଷ ଆଶ୍ରୟ ବୋଲି ପ୍ରମାଣ କରିଛନ୍ତି । ଦ୍ୱାରକାରେ ଅକାଳ ମୃତ୍ୟୁ ଦେଖି ଜଣେ ନୈଷ୍ଠିକ ବ୍ରାହ୍ମଣ ଓ ମଧ୍ୟମ ପାଣ୍ଡବ ଅର୍ଜୁନ ଆଶ୍ଚର୍ଯ୍ୟ ଚକିତ ଓ ଅଶାନ୍ତ ହୋଇଛନ୍ତି । ଭଗବାନ ଦଶ ମୃତ ପୁତ୍ରଙ୍କୁ ବୈକୁଣ୍ଠରୁ ଜୀବନ୍ତ ଆଣିବା ପରେ ସେମାନଙ୍କୁ ଶାନ୍ତି ମିଳିଛି ।

ସର୍ବଶେଷରେ ଅନ୍ତିମ ଅଧ୍ୟାୟରେ କୃଷ୍ଣ ପତ୍ନୀମାନେ କୃଷ୍ଣଲୀଳା ସ୍ମରଣ କୀର୍ତ୍ତନ କରି ସେଇ ଶାନ୍ତରସର ଅଲୌକିକ ମାହାତ୍ମ୍ୟ ପ୍ରକଟ କରିପାରିଛନ୍ତି ।

ଇତି ଶ୍ରୀମଦ୍ଭାଗବତେ ମହାମୁନି କୃତେ ମହାପୁରାଣେ ବୈୟାସିକ୍ୟାଂ
ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ
ନବତିତମୋଽଧ୍ୟାୟଃ ।
। ।ହରିଃ ଓଁ ତତ୍‌ସତ । ।
ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।

ପରିଶିଷ୍ଟ - ୧

## ଶ୍ରୀମଦ୍ଭାଗବତରେ ଶ୍ରୀକୃଷ୍ଣଙ୍କର ପାଞ୍ଚ ପ୍ରକାର ରାସ (ରସ ବିତରଣ) ଲୀଳା

୧. ବ୍ରହ୍ମଚାରୀଙ୍କ ସହ ରାସ - ବୃନ୍ଦାବନରେ ଗୋପାଳବାଳକ ମେଳରେ ବେଣୁ ବାଦନ ଲୀଳା

୨. ବିବାହିତ ଗୃହସ୍ଥଙ୍କ ସହ ରାସ - ମଥୁରାର ଯାଜ୍ଞିକ ବ୍ରାହ୍ମଣ ପତ୍ନୀଙ୍କ ସହ ଭୋଜନ ଲୀଳା

୩. ବାନପ୍ରସ୍ଥୀଙ୍କ ସହ ରାସ - ଗିରି ଗୋବର୍ଦ୍ଧନ ଧାରଣ ଲୀଳା

୪. ପ୍ରେମ ସନ୍ୟାସିନୀଙ୍କ ସହ ରାସ - ବସ୍ତ୍ରହରଣ ଲୀଳା ଏବଂ ଶରଦ ମହାରାସ ଲୀଳା

୫. ସାର୍ବଜନୀନ ରାସ (ଗୋପୀଗୋପାଳ, ପଶୁପକ୍ଷୀ ଓ ବୃକ୍ଷଲତାଙ୍କ ସହ ରାସ) - ବସ୍ତ୍ରହରଣ ଲୀଳା ଏବଂ ବସନ୍ତ ହୋରି ଖେଳ ଲୀଳା

ପରିଶିଷ୍ଟ - ୨

## ଭକ୍ତି ଦରବାରରେ ବିନୋଦ

**ପ୍ରଶ୍ନ - ଭଗବାନ (କୃଷ୍ଣ) ବଡ ନା ଭକ୍ତି (ରାଧାରାଣୀ) ବଡ ?**

ଉତ୍ତର- ପ୍ରେମ ଜଗତରେ ଭଗବାନ ସତ୍ ଚିତ୍ ଆନନ୍ଦମୟ । ଭକ୍ତି ମଧ୍ୟ ସତ୍ ଚିତ୍ ଆନନ୍ଦମୟ । ଏ ବିଚାରରେ ଉଭୟେ ସମାନ । କିନ୍ତୁ ଭକ୍ତିଙ୍କର ଏକ ବିଶେଷ ଗୁଣ ହ୍ଲାଦିନୀ ଶକ୍ତି ପ୍ରକଟିତ ହେଲେ ଭଗବାନ ତାଙ୍କର ଅଧୀନସ୍ଥ ହୋଇ ସର୍ବୋଚ୍ଚ ପ୍ରେମ ଆନନ୍ଦର ଅଧିକାରୀ ବୋଲାନ୍ତି । ଏହାହିଁ ଭକ୍ତି ମହାରାଣୀଙ୍କର କମାଲ୍ ।

॥ ଅପଣ୍ଡିତ ଦାମୋଦର ବଳୀୟାରସିଂହ ॥

## ବୈଦିକ ସାହିତ୍ୟରେ ତେତିଶ (କୋଟି ସଂଖ୍ୟାରେ ନୁହେଁ ପ୍ରମୁଖ / ପ୍ରକାର) ଦେବତା କିଏ କିଏ ?

**ସ୍ଥୂଳ ଶରୀର ନିୟନ୍ତକ (ଅଷ୍ଟବସୁ)**

୧. ଅନଳ (ଅଗ୍ନି)
୨. ଅନିଳ (ବାୟୁ)
୩. ଆପ (ଜଳ)
୪. ଧରା (ପୃଥିବୀ)
୫. ଧ୍ରୁବତାରା (ଶୂନ ଏବଂ ଅୟନାଂଶ)
୬. ପ୍ରତ୍ୟୁଷ (ସୂର୍ଯ୍ୟ ଏବଂ ଲଗ୍ନ)
୭. ସୋମ (ଚନ୍ଦ୍ର)
୮. ପ୍ରଭା (୨୭ ବା ୨୮ ନକ୍ଷତ୍ର ମଣ୍ଡଳ)

**କାରଣ ଶରୀର ନିୟନ୍ତକ (୧୧ ରୁଦ୍ର)**

୯. ବୀରଭଦ୍ର
୧୦. ଶମ୍ଭୁ
୧୧. ଗିରୀଶ
୧୨. ଅଜୈକପାଦ
୧୩. ଅର୍ହବ୍ୟୁଧ୍ନ
୧୪. ପିନାକୀ
୧୫. ଭବାନୀ ଈଶ୍ୱର
୧୬. କପାଳୀ
୧୭. ଦିକ୍‌ପତି
୧୮. ସ୍ଥାଣୁ
୧୯. ଭର୍ଗ

**ସୂକ୍ଷ୍ମ ଶରୀର ପରିଚାଳକ (୧୨ ଆଦିତ୍ୟ)**

୨୦. ଅଂଶ
୨୧. ଅର୍ଯ୍ୟମା
୨୨. ଭଗ
୨୩. ଧାତ୍ରୀ
୨୪. ତ୍ୱଷ୍ଟା
୨୫. ମିତ୍ର
୨୬. ପୂଷନ୍ ବା ରବି
୨୭. ସବିତା ବା ପର୍ଜ୍ଜନ୍ୟ
୨୮. ସୂର୍ଯ୍ୟ ବା ବିବସ୍ୱାନ
୨୯. ବରୁଣ
୩୦. ବାମନ
୩୧. ଇନ୍ଦ୍ର ବା ଶକ୍ର

୩୨. ପ୍ରଜାପତି ବ୍ରହ୍ମା
୩୩. ଶ୍ରୀହରି ବିଷ୍ଣୁ
} (ମତାନ୍ତରେ ଦୁଇ ଅଶ୍ୱିନୀକୁମାର ବା ସ୍ୱର୍ଗ ବୈଦ୍ୟ।)